# ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗ

## ଦ୍ୱିତୀୟ ଖଣ୍ଡ

### ଗୁରୁଭାବ—ଉତ୍ତରାର୍ଦ୍ଧ ଏବଂ
### ଦିବ୍ୟଭାବ ଓ ନରେନ୍ଦ୍ରନାଥ

ସ୍ୱାମୀ ସାରଦାନନ୍ଦ



ରାମକୃଷ୍ଣ ମଠ
ଭୁବନେଶ୍ୱର

ପ୍ରକାଶକ
ଅଧ୍ୟକ୍ଷ
ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର - ୭୫୧ ୦୦୨
ଫୋନ୍ : (୦୬୭୪) ୨୪୩ ୦୦୫୯, ୨୪୩ ୨୦୨୮
Email : bhubaneswar@rkmm.org



ପ୍ରଥମ ସଂସ୍କରଣ : ୧୯ ଜାନୁୟାରୀ ୨୦୧୮
ସ୍ୱାମୀ ବ୍ରହ୍ମାନନ୍ଦ ଜୟନ୍ତୀ
୨୦୦୦

ସୁଲଭ ମୂଲ୍ୟ (ସେଟ୍)—ଟ. ୧୦୦.୦୦

ମୁଦ୍ରାକର :
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର - ୨

*SRIRAMAKRISHNALILAPRASANGA (Vol. - II)*
By Swami Saradananda; Published by Ramakrishna Math, Vivekananda Marg, Bhubaneswar - 2; 1st Edition on 19th January 2018; **Subsidized Price (Per Set) ₹. One Hundred only.**

# ପ୍ରକାଶକଙ୍କ ନିବେଦନ

ଭଗବାନ ଶ୍ରୀରାମକୃଷ୍ଣଦେବଙ୍କ ଅଶେଷ କରୁଣାରୁ ବହୁଦିନ ପ୍ରତୀକ୍ଷାର ଅନ୍ତ ଘଟାଇ **'ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗ'**ର ଓଡ଼ିଆ ଅନୁବାଦ ପ୍ରକାଶିତ ହେଲା । ଉଦ୍‌ବୋଧନ କାର୍ଯ୍ୟାଳୟରୁ ମୂଳ ବଙ୍ଗଳାରେ ପ୍ରକାଶିତ ଶ୍ରୀଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗ ଆଧ୍ୟାତ୍ମିକ ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥ । ସ୍ୱାମୀ ସାରଦାନନ୍ଦଙ୍କ ଦ୍ୱାରା ପ୍ରସ୍ତୁତ ଉକ୍ତ ଗ୍ରନ୍ଥ ପ୍ରଥମେ ପାଞ୍ଚ ଖଣ୍ଡରେ ପ୍ରକାଶିତ ହୋଇଥିଲା । ପରେ ଉଦ୍‌ବୋଧନ କାର୍ଯ୍ୟାଳୟରୁ ତାହା ଦୁଇ ଖଣ୍ଡରେ ପ୍ରକାଶିତ କରାଯାଇଥିଲା । ପ୍ରଥମ ଖଣ୍ଡରେ ଠାକୁରଙ୍କର ପୂର୍ବକଥା ଓ ବାଲ୍ୟ ଜୀବନ, ସାଧକଭାବ ଏବଂ ଗୁରୁଭାବ — ପୂର୍ବାର୍ଦ୍ଧ ସ୍ଥାନ ପାଇଥିବା ବେଳେ ଦ୍ୱିତୀୟ ଖଣ୍ଡରେ ଗୁରୁଭାବ — ଉତ୍ତରାର୍ଦ୍ଧ ଏବଂ ଦିବ୍ୟଭାବ ଓ ନରେନ୍ଦ୍ରନାଥ ସନ୍ନିହିତ ହୋଇଥିଲା । ପ୍ରସ୍ତୁତ ଓଡ଼ିଆ ଅନୁବାଦରେ ଏହି ମୌଳିକ କ୍ରମ ଅପରିବର୍ତ୍ତିତ ରହିଛି । ପ୍ରତି ଭାଗର ପ୍ରାରମ୍ଭରେ ଗ୍ରନ୍ଥକାରଙ୍କ ଦ୍ୱାରା ଲିପିବଦ୍ଧ ଭୂମିକା ବା ଗ୍ରନ୍ଥ-ପରିଚୟ ପ୍ରଦାନ କରାଯାଇଛି । ଏହି ଗ୍ରନ୍ଥଟି କେବଳ ଶ୍ରୀରାମକୃଷ୍ଣଦେବଙ୍କର ଜୀବନ ଆଖ୍ୟାୟିକା ନୁହେଁ, ବରଂ ଲେଖକଙ୍କର ଦାର୍ଶନିକ ଓ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ସଂସାରର ବିଭିନ୍ନ ଧର୍ମସମ୍ପ୍ରଦାୟ ଓ ମତବାଦର ଏକ ସୂକ୍ଷ୍ମ ଅଧ୍ୟୟନ ।

ମୂଳ ଗ୍ରନ୍ଥରେ ଥିବା ବଙ୍ଗଳା ଗୀତଗୁଡ଼ିକର ଭାଷାନ୍ତରରେ ଭାବ କ୍ଷୁଣ୍ଣ ହେବାର ସମ୍ଭାବନା ଥିବାରୁ ସେଗୁଡ଼ିକ ଅପରିବର୍ତ୍ତିତ ରଖି ଓଡ଼ିଆରେ ତାହାର ଭାବାର୍ଥ ପ୍ରଦାନ କରାଯାଇଛି । ହିନ୍ଦୀ ଦୋହାବଳୀ ଓଡ଼ିଶାରେ ପ୍ରଚଳିତ ଥିବାରୁ ସେଗୁଡ଼ିକର ଭାବାର୍ଥ ପ୍ରଦାନ କରାଯାଇ ନାହିଁ ।

ପ୍ରସ୍ତୁତ ଗ୍ରନ୍ଥର ପାଣ୍ଡୁଲିପି ପ୍ରଥମେ ଇଂ. ବିଭୂତି ଭୂଷଣ ମହାନ୍ତିଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା । ଭାଷା ଓ ଭାବର ସଂଗତି ଅକ୍ଷୁଣ୍ଣ ରଖିବା ପାଇଁ ପରେ ଏଥିରେ ଆବଶ୍ୟକୀୟ ପରିବର୍ତ୍ତନ କରାଯାଇଛି । ସ୍ୱାମୀ ଶିବଧ୍ୟାନାନନ୍ଦଙ୍କ ତତ୍ତ୍ୱାବଧାନରେ ସ୍ୱାମୀ ଅଖଣ୍ଡରୂପାନନ୍ଦ, ଶ୍ରୀମତୀ ଉମା ଭଟ୍ଟାଚାର୍ଯ୍ୟ ଓ ଶ୍ରୀମତୀ ରେଣୁକା ଚାଟାର୍ଜୀଙ୍କ ଆନ୍ତରିକ ସହଯୋଗ ଯୋଗୁଁ ଗ୍ରନ୍ଥଟି ବର୍ତ୍ତମାନ ଆକାରରେ ପ୍ରକାଶିତ ହୋଇପାରିଛି ।

ଶ୍ରୀଯୁକ୍ତ ପ୍ରଦୀପ ସାହୁ, ଇଂ. ସୂର୍ଯ୍ୟନାରାୟଣ ମିଶ୍ର, ଶ୍ରୀଯୁକ୍ତ ପାର୍ଥସାରଥି ଦେ, ଶ୍ରୀମତୀ ତପତୀ ଦତ୍ତ, ଶ୍ରୀମତୀ ଅରୁଣା ଦତ୍ତ ଓ ଶ୍ରୀଯୁକ୍ତ ଅରବିନ୍ଦ ପଣ୍ଡା ମିଳିତ ଭାବରେ ଗ୍ରନ୍ଥର ମୁଦ୍ରଣ ପାଇଁ ଆର୍ଥିକ ସହାୟତା କରିଥିବାରୁ ଏହା ସୁଲଭ

ମୂଲ୍ୟରେ ପାଠକମାନଙ୍କ ପାଇଁ ଉପଲବ୍ଧ କରାଯାଇପାରିଛି । ପୁସ୍ତକ ପ୍ରକାଶନ ଅବସରରେ ଆମେ ସମସ୍ତଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ ।

ଆଶା କରୁଛୁ, ପୁସ୍ତକଟି ପାଠକମାନଙ୍କ ଦ୍ୱାରା ବିଶେଷଭାବରେ ସମାଦୃତ ହେବ ।

ଭୁବନେଶ୍ୱର ବିନୀତ

୧୯ ଜାନୁୟାରୀ ୨୦୧୮ **ପ୍ରକାଶକ**

# ସୂଚୀପତ୍ର

# ଗୁରୁଭାବ — ଉତ୍ତରାର୍ଦ୍ଧ

## ଦ୍ୱିତୀୟ ଅଧ୍ୟାୟ

### ଗୁରୁଭାବ ଓ ନାନା ସାଧୁସମ୍ପ୍ରଦାୟ

# ତୃତୀୟ ଅଧ୍ୟାୟ

## ଗୁରୁଭାବରେ ତୀର୍ଥଭ୍ରମଣ ଓ ସାଧୁସଙ୍ଗ

## ଚତୁର୍ଥ ଅଧ୍ୟାୟ

### ଗୁରୁଭାବ-ସମ୍ବନ୍ଧରେ ଶେଷ କଥା

## ପଞ୍ଚମ ଅଧ୍ୟାୟ

## ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ—୧୮୮୫ ଖ୍ରୀଷ୍ଟାବ୍ଦର ନବଯାତ୍ରା

## ଷଷ୍ଠ ଅଧ୍ୟାୟ

### ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣଦେବ—ଗୋପାଳର ମା'ଙ୍କର ପୂର୍ବକଥା

## ସପ୍ତମ ଅଧ୍ୟାୟ

### ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ — ୧୮୮୫ ମସିହା

### ପୁନର୍ଯାତ୍ରା ଓ ଗୋପାଳର ମା'ଙ୍କ ଶେଷକଥା

# ପରିଶିଷ୍ଟ

# ଠାକୁରଙ୍କର ଦିବ୍ୟଭାବ ଓ ନରେନ୍ଦ୍ରନାଥ

## ପ୍ରଥମ ଅଧ୍ୟାୟ—ଦ୍ୱିତୀୟ ପାଦ

### ମଣିମୋହନ ମଲ୍ଲିକଙ୍କ ଘରେ ବ୍ରାହ୍ମୋତ୍ସବ



## ପ୍ରଥମ ଅଧ୍ୟାୟ—ତୃତୀୟ ପାଦ

### ଜୟଗୋପାଳ ସେନଙ୍କ ଘରେ ଠାକୁର



## ଦ୍ୱିତୀୟ ଅଧ୍ୟାୟ

### ପୂର୍ବ-ପରିଦୃଷ୍ଟ ଭକ୍ତଗଣଙ୍କର ଠାକୁରଙ୍କ ନିକଟକୁ ଆଗମନ

## ତୃତୀୟ ଅଧ୍ୟାୟ

### ନରେନ୍ଦ୍ରନାଥଙ୍କର ପ୍ରଥମ ଆଗମନ ଓ ପରିଚୟ

## ଚତୁର୍ଥ ଅଧ୍ୟାୟ

### ନରେନ୍ଦ୍ରନାଥଙ୍କର ଦ୍ୱିତୀୟ ଓ ତୃତୀୟଥର ଆଗମନ

## ପଞ୍ଚମ ଅଧ୍ୟାୟ

### ଠାକୁରଙ୍କର ଅହେତୁକ ଭଲପାଇବା ଓ ନରେନ୍ଦ୍ରନାଥ



## ଷଷ୍ଠ ଅଧ୍ୟାୟ-ପ୍ରଥମ ପାଦ

### ଠାକୁର ଓ ନରେନ୍ଦ୍ରନାଥଙ୍କର ଅଲୌକିକ ସମ୍ବନ୍ଧ

## ଷଷ୍ଠ ଅଧ୍ୟାୟ– ଦ୍ୱିତୀୟ ପାଦ

### ଠାକୁର ଓ ନରେନ୍ଦ୍ରନାଥଙ୍କ ଅଲୌକିକ ସମ୍ବନ୍ଧ

## ସପ୍ତମ ଅଧ୍ୟାୟ

### ଠାକୁରଙ୍କର ପରୀକ୍ଷାପ୍ରଣାଳୀ ଓ ନରେନ୍ଦ୍ରନାଥ

## ଅଷ୍ଟମ ଅଧ୍ୟାୟ—ପ୍ରଥମ ପାଦ

### ସଂସାରରେ ଓ ଠାକୁରଙ୍କ ନିକଟରେ ନରେନ୍ଦ୍ରନାଥଙ୍କର ଶିକ୍ଷା



## ଅଷ୍ଟମ ଅଧ୍ୟାୟ—ଦ୍ୱିତୀୟ ପାଦ

### ସଂସାରରେ ଓ ଠାକୁରଙ୍କ ନିକଟରେ ନରେନ୍ଦ୍ରନାଥଙ୍କର ଶିକ୍ଷା

## ନବମ ଅଧ୍ୟାୟ

### ଠାକୁରଙ୍କର ଭକ୍ତସଂଘ ଏବଂ ନରେନ୍ଦ୍ରନାଥ

## ଦଶମ ଅଧ୍ୟାୟ

### ପାନିହାଟିର ମହୋତ୍ସବ

## ଏକାଦଶ ଅଧ୍ୟାୟ

### ଠାକୁରଙ୍କର କଲିକତା ଆଗମନ



## ଦ୍ୱାଦଶ ଅଧ୍ୟାୟ—ପ୍ରଥମ ପାଦ

### ଠାକୁରଙ୍କର ଶ୍ୟାମପୁକୁରରେ ଅବସ୍ଥାନ

## ଦ୍ୱାଦଶ ଅଧ୍ୟାୟ—ଦ୍ୱିତୀୟ ପାଦ

### ଠାକୁରଙ୍କର ଶ୍ୟାମପୁକୁରରେ ଅବସ୍ଥାନ

## ଦ୍ୱାଦଶ ଅଧ୍ୟାୟ—ତୃତୀୟ ପାଦ

### ଠାକୁରଙ୍କର ଶ୍ୟାମପୁକୁରରେ ଅବସ୍ଥାନ

## ପରିଶିଷ୍ଟ



*****



ଶ୍ରୀରାମକୃଷ୍ଣଦେବ (୧୮୩୬-୧୮୮୬)



ସ୍ୱାମୀ ବିବେକାନନ୍ଦ (୧୮୬୩-୧୯୦୨)

# ନିବେଦନ

ଗୁରୁଭାବର ଉତ୍ତରାର୍ଦ୍ଧ ପ୍ରକାଶିତ ହେଲା । ଶ୍ରୀରାମକୃଷ୍ଣଙ୍କ ଜୀବନର ମଧ୍ୟଭାଗର ପରିଚୟମାତ୍ର ଗ୍ରନ୍ଥରେ ପ୍ରାପ୍ତ ହୋଇ ପାଠକମାନେ ହୁଏତ କହିବେ, ଏହି ବିପରୀତ ପ୍ରଥାର ଅବଲମ୍ବନ କାହିଁକି ? ଠାକୁରଙ୍କର ଜନ୍ମଠାରୁ ସାଧନକାଳ ପର୍ଯ୍ୟନ୍ତ ସମୟର ଜୀବନ-ଇତିହାସ ପୂର୍ବରୁ ଲିପିବଦ୍ଧ ନ କରି ତାଙ୍କର ସିଦ୍ଧାବସ୍ଥାର କଥା ପ୍ରଥମେ କାହିଁକି କୁହାଗଲା ? ତାର ଉତ୍ତରରେ ଆମକୁ କହିବାକୁ ହେବ ଯେ —

ପ୍ରଥମତଃ — ପୂର୍ବରୁ କୌଣସି ଉଦ୍ଦେଶ୍ୟ ନେଇ ଆମେ ଏହି ଲୋକୋତ୍ତର ପୁରୁଷଙ୍କର ଜୀବନୀ ଲେଖିବାକୁ ବସି ନାହୁଁ । ତାଙ୍କର ମହଦୁଦାର ଜୀବନ ଇତିହାସ ଆମପରି କ୍ଷୁଦ୍ର ବ୍ୟକ୍ତିଙ୍କ ଦ୍ୱାରା ଯଥାଯଥ ଲିପିବଦ୍ଧ ହେବା ଯେ ସମ୍ଭବପର, ଏପରି ଉଚ୍ଚାଶା ମଧ୍ୟ କେବେହେଲେ ହୃଦୟରେ ପୋଷଣ କରିବାକୁ ସାହସୀ ହୋଇ ନାହୁଁ । ଘଟଣାଚକ୍ରରେ ପଡ଼ି ଶ୍ରୀରାମକୃଷ୍ଣଙ୍କ ଜୀବନର ଦୁଇ ଚାରୋଟି କଥା ମାତ୍ର 'ଉଦ୍‌ବୋଧନ' ପତ୍ରିକାର ପାଠକବର୍ଗଙ୍କୁ ଜଣାଇବା ଅଭିପ୍ରାୟରେ ହିଁ ଆମେ ଏହି କାର୍ଯ୍ୟରେ ହସ୍ତକ୍ଷେପ କରିଥିଲୁ । ଏଥିରେ ଯେ ଏତେଦୂର ଆମକୁ ଅଗ୍ରସର ହେବାକୁ ପଡ଼ିବ ସେକଥା ସେତେବେଳେ ବୁଝିପାରି ନ ଥିଲୁ । ଅତଏବ ସେପରି ଅବସ୍ଥାରେ ପରବର୍ତ୍ତୀ କଥା ଯେ ପୂର୍ବେ କୁହା ହେବ ଏଥିରେ ଆଉ ବିଚିତ୍ରତା କ'ଣ ?

ଦ୍ୱିତୀୟତଃ — ଶ୍ରୀରାମକୃଷ୍ଣଙ୍କ ଜୀବନର ଅଲୌକିକ ଘଟଣାବଳୀ ଏବଂ ଅଦୃଷ୍ଟପୂର୍ବ ସାଧନ କଥା ଲିପିବଦ୍ଧ କରିବାକୁ ଆମ ପୂର୍ବରୁ ଅନେକେ ହିଁ ସଚେଷ୍ଟ ହୋଇଥିଲେ । ସ୍ଥାନେ ସ୍ଥାନେ ଭ୍ରମ-ପ୍ରମାଦ ପରିଲକ୍ଷିତ ହେଲେ ମଧ୍ୟ ଠାକୁରଙ୍କ ଜୀବନର ପ୍ରାୟ ସମସ୍ତ ଘଟଣା ହିଁ ସେହିରୂପରେ ସାଧାରଣଭାବରେ ଜନସାଧାରଣଙ୍କର ନୟନଗୋଚର ହୋଇଥିଲା । ସେଥିପାଇଁ ପୁନର୍ବାର ସେହି ସକଳ କଥା ଲିପିବଦ୍ଧ କରିବାକୁ ଯାଇ ବୃଥା ଶକ୍ତିକ୍ଷୟ ନ କରି ଏପର୍ଯ୍ୟନ୍ତ କେହି ଯେଉଁ କାର୍ଯ୍ୟରେ ହସ୍ତକ୍ଷେପ କରି ନାହାନ୍ତି ସେବିଷୟରେ ଅର୍ଥାତ୍ ଠାକୁରଙ୍କର ଅଲୌକିକ ଭାବସମୂହ ପାଠକଙ୍କୁ ଯଥାଯଥ ବୁଝାଇବାକୁ ଯତ୍ନ କରିବା ହିଁ ଆମେ ଯୁକ୍ତିଯୁକ୍ତ ବିବେଚନା କରିଥିଲୁ । ପୁଣି ଠାକୁରଙ୍କର ଭାବମୁଖରେ ଅବସ୍ଥାନ ଏବଂ ତାଙ୍କଠାରେ ଗୁରୁଭାବର ସ୍ୱାଭାବିକ ବିକାଶପ୍ରାପ୍ତି, ଏବିଷୟଟି ପ୍ରଥମେ ବୁଝି ନ ପାରିଲେ ତାଙ୍କର ଅଦ୍ଭୁତ ଚରିତ୍ର, ଅଦୃଷ୍ଟପୂର୍ବ ମନୋଭାବ ଏବଂ ଅସାଧାରଣ କାର୍ଯ୍ୟକଳାପ ଆଦୌ ବୁଝି ହେବ ନାହିଁ ବୋଲି ଆମେ ସେହି ବିଷୟ ପାଠକଙ୍କୁ ସର୍ବାଗ୍ରେ ବୁଝାଇବାକୁ ପ୍ରୟାସ କରିଥିଲୁ ।

କେହି କେହି ହୁଏତ' କହିବେ, କିନ୍ତୁ ଗ୍ରନ୍ଥମଧ୍ୟରେ ସ୍ଥାନେ ସ୍ଥାନେ ଠାକୁରଙ୍କର ବିଶେଷ ବିଶେଷ କାର୍ଯ୍ୟ ଓ ମନୋଭାବର କଥା ବୁଝାଇବାକୁ ଯାଇ ତୁମେମାନେ ନିଜେ ସେହି ସମସ୍ତ ଯେପରି ବୁଝିଅଛ ତାହା ହିଁ ପାଠକଙ୍କୁ କହିବାକୁ ଚେଷ୍ଟା କରିଅଛ । ସେଥିରେ ତୁମମାନଙ୍କର ବୁଦ୍ଧି ଓ ବିବେଚନାକୁ ହିଁ ଠାକୁରଙ୍କର

ଦୁରବଗାହ ଚରିତ୍ର ଓ ମନୋଭାବର ପରିମାପକ କରାହୋଇଛି । ସେହି ପ୍ରକାରରେ ତୁମମାନଙ୍କ ବୁଦ୍ଧି ଓ ବିବେଚନା ଯେ ଠାକୁରଙ୍କୁ ମଧ୍ୟ ଅତିକ୍ରମ କରିବାକୁ ସମର୍ଥ ଏକଥା ସ୍ପଷ୍ଟ ନ ହେଲେ ବି ପରୋକ୍ଷଭାବରେ ସ୍ୱୀକାର କରି ତୁମେମାନେ କ'ଣ ତାହାଙ୍କୁ ସାଧାରଣଲୋକଙ୍କ ଚକ୍ଷୁରେ ଛୋଟ କରି ନାହଁ ? ସେପରି ନ କରି ଯଥାର୍ଥ ଘଟଣାର କେବଳ ଯଥାଯଥ ଉଲ୍ଲେଖ କରି କ୍ଷାନ୍ତ ରହିଥିଲେ ତ' ହୋଇଥାଆନ୍ତା । ସେଥିରେ ଠାକୁରଙ୍କୁ ଛୋଟ କରିବା ହୋଇ ନ ଥାନ୍ତା ଏବଂ ଯାହାର ଯେପରି ବୁଦ୍ଧି ସେ ସେହି ଭାବରେ ହିଁ ଏସମସ୍ତର ଅର୍ଥ ବୁଝିପାରି ଥାଆନ୍ତା ।

କଥାଗୁଡ଼ିକ ଆପାତମନୋହର ହେଲେ ମଧ୍ୟ ଅଳ୍ପ ଚିନ୍ତା ଦ୍ୱାରା ଏଗୁଡ଼ିକର ଅନ୍ତଃସାରଶୂନ୍ୟତା ପ୍ରତୀୟମାନ ହେବ । କାରଣ, କୌଣସି ବିଷୟକୁ ଧରିବା ଓ ବୁଝିବା ପାଇଁ ମନୁଷ୍ୟ ସର୍ବଦା ତାହାର ଇନ୍ଦ୍ରିୟ, ମନ ଓ ବୁଦ୍ଧିର ସହାୟତା ଗ୍ରହଣ କରିଆସିଛି ଏବଂ ଭବିଷ୍ୟତରେ ମଧ୍ୟ ତଦ୍ରୂପ କରିବ । ସେହିପରି କରିବା ଛଡ଼ା ତା'ର ଗତ୍ୟନ୍ତର ନାହିଁ । ସେଥିରେ ଏକଥା କିନ୍ତୁ କଦାପି ପ୍ରତିପନ୍ନ ହୁଏ ନାହିଁ ଯେ, ଗ୍ରାହ୍ୟ ବିଷୟ ଅପେକ୍ଷା ତାହାର ମନ ବୁଦ୍ଧି ଆଦି ବଡ଼ । ଦେଶ, କାଳ, ବିଶ୍ୱ, ଆତ୍ମା, ଈଶ୍ୱର ପ୍ରଭୃତି ସମସ୍ତ ଅନନ୍ତ ପଦାର୍ଥକୁ ହିଁ ମାନବ, ମନ-ବୁଦ୍ଧିର ଅତୀତ ଜାଣି ମଧ୍ୟ ପୂର୍ବୋକ୍ତଭାବରେ ସର୍ବଦା ଧରିବାକୁ ଓ ବୁଝିବାକୁ ଚେଷ୍ଟା କରୁଅଛି । କିନ୍ତୁ ସେହି ସମସ୍ତ ପଦାର୍ଥକୁ ତାହାର ସେପରି ବୁଝିବାର ଚେଷ୍ଟାକୁ ଆମେ ପରିମାଣ କରିବା କହୁ ନାହୁଁ କିମ୍ବା ଦୂଷଣୀୟ ମଧ୍ୟ ବିବେଚନା କରୁ ନାହୁଁ; ବରଂ ଏହା ହିଁ ବୁଝିଥାଉ ଯେ, ସେହି ଚେଷ୍ଟା ଫଳରେ ତାର ନିଜର ମନ-ବୁଦ୍ଧି ହିଁ ପରିଶେଷରେ ପ୍ରଶସ୍ତତା ଲାଭ କରି ତାହାର କଲ୍ୟାଣସାଧନ କରିବ ।

ଅତଏବ ଲୋକୋତ୍ତର ପୁରୁଷମାନଙ୍କର ଅଲୌକିକ ଚେଷ୍ଟାଗୁଡ଼ିକର ସେହି ପ୍ରକାରରେ ଅନୁଧାବନ କଲେ ସେଥିରେ ଆମର ନିଜର କଲ୍ୟାଣ ହିଁ ସାଧିତ ହୋଇଥାଏ, ତଦ୍ଦ୍ୱାରା ସେମାନଙ୍କୁ ପରିମାପ କରାଯାଏ ନାହିଁ । ମନ ଓ ବୁଦ୍ଧିର ସାଧନପ୍ରସୂତ ଶୁଦ୍ଧତା ଓ ସୂକ୍ଷ୍ମତାର ତାରତମ୍ୟ ଅନୁସାରେ ହିଁ ଲୋକେ ସେମାନଙ୍କର ଦିବ୍ୟଭାବ ଓ କାର୍ଯ୍ୟକଳାପ ଅଳ୍ପ ବା ଅଧିକ ପରିମାଣରେ ବୁଝିବାକୁ ଓ ବୁଝାଇବାକୁ ସକ୍ଷମ ହୋଇଥାନ୍ତି । ଶ୍ରୀରାମକୃଷ୍ଣଦେବଙ୍କ ଚରିତ୍ର-ସମ୍ବନ୍ଧରେ ଆମେ ଯେତେଦୂର ବୁଝିବାକୁ ସମର୍ଥ ହୋଇଅଛୁ, ସମଧିକ ସାଧନାସମ୍ପନ୍ନ ବ୍ୟକ୍ତି ତଦପେକ୍ଷା ଅଧିକତର ଭାବରେ ତାହା ବୁଝିବାକୁ ସମର୍ଥ ହେବେ । ଅତଏବ ସେହି ଦେବଚରିତ୍ର ବୁଝିବା ପାଇଁ ଆମେ ନିଜ ନିଜର ମନ-ବୁଦ୍ଧି ପ୍ରୟୋଗ କଲେ ସେଥିରେ ଦୋଷଣୀୟ କିଛି ନାହିଁ; କେବଳ ଠାକୁରଙ୍କର ଚରିତ୍ରର ସବୁକିଛି ବୁଝିପକାଇଛି—ଏକଥା ମନରେ ନ ଆଣିଲେ ହିଁ ହେବ । ଏହି କଥାଟିର ଦୃଢ଼ ଧାରଣା ହୃଦୟରେ ବିଦ୍ୟମାନ ରହିଲେ ସେସବୁ ବୃଥା ଆଶଙ୍କାର ଆଉ କୌଣସି ସମ୍ଭାବନା ରହିବ ନାହିଁ । ଇତି ।

ବିନୀତ
ଗ୍ରନ୍ଥକାର

# ପ୍ରଥମ ଅଧ୍ୟାୟ

## ବୈଷ୍ଣବଚରଣ ଓ ଗୌରୀଙ୍କର କଥା

ଯେ ମେ ମତମିଦଂ ନିତ୍ୟମନୁତିଷ୍ଠନ୍ତି ମାନବାଃ ।
ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ମୁଚ୍ୟନ୍ତେ ତେଽପି କର୍ମଭିଃ ।। – ଗୀତା, ୩/୩୧

### ଦକ୍ଷିଣେଶ୍ୱରରେ ସମାଗତ ସାଧୁ ଓ ସାଧକମାନଙ୍କ ସହିତ ଠାକୁରଙ୍କର ଗୁରୁଭାବର ସମ୍ବନ୍ଧ ବିଷୟରେ କଲିକତାବାସୀଙ୍କ ଅଜ୍ଞତା :

କଲିକତାର ଜନସାଧାରଣଙ୍କର ଧାରଣା, ଠାକୁର କଲିକତାର କେଶବଚନ୍ଦ୍ର ସେନ୍‌ପ୍ରମୁଖ କେତେଗୁଡ଼ିଏ ଇଂରାଜୀଶିକ୍ଷିତ, ପାଶ୍ଚାତ୍ୟଭାବରେ ଭାବିତ ନୂତନ ହିନ୍ଦୁଧର୍ମର ଲୋକମାନଙ୍କ ମଧ୍ୟରେ ହିଁ ଧର୍ମଭାବ ସଞ୍ଚାରିତ କରିଥିଲେ କିମ୍ବା ସେମାନଙ୍କ ଭିତରେ ହିଁ ପୂର୍ବରୁ ପ୍ରଦୀପ୍ତ ଧର୍ମଭାବକୁ ଅଧିକତର ଉଜ୍ଜ୍ୱଳ କରିଥିଲେ । କିନ୍ତୁ କଲିକତାର ଲୋକମାନେ ଠାକୁରଙ୍କର ଦକ୍ଷିଣେଶ୍ୱରରେ ଅବସ୍ଥାନ କଥା ଜାଣିପାରିବାର ବହୁ ପୂର୍ବରୁ ହିଁ ଯେ ଠାକୁରଙ୍କ ନିକଟକୁ ବଙ୍ଗ ଏବଂ ଉତ୍ତର ଭାରତର ପ୍ରାୟ ସମସ୍ତ ପ୍ରଦେଶରୁ ସମସ୍ତ ସମ୍ପ୍ରଦାୟର ବିଶିଷ୍ଟ ବିଶିଷ୍ଟ ସାଧୁ, ସାଧକ ଏବଂ ଶାସ୍ତ୍ରଜ୍ଞ ପଣ୍ଡିତମାନେ ଆସି ଉପସ୍ଥିତ ହୋଇଥିଲେ ଏବଂ ଠାକୁରଙ୍କର ଜ୍ୱଳନ୍ତ ଜୀବନ୍ତ ଧର୍ମାଦର୍ଶ ଓ ଗୁରୁଭାବସହାୟରେ ନିଜ ନିଜର ନିର୍ଜୀବ ଧର୍ମଜୀବନରେ ପ୍ରାଣସଞ୍ଚାର ଲାଭ କରି ଅନ୍ୟତ୍ର ବହୁ ଲୋକଙ୍କ ମଧ୍ୟରେ ସେହି ନବ ଭାବ, ନବ ଶକ୍ତି ସଞ୍ଚାରିତ କରିବାକୁ ଗମନ କରିଥିଲେ — ଏ କଥା କଲିକତାର ଇତରସାଧାରଣ ଅବଗତ ନ ଥିଲେ ।

### ‘ଫୁଲ ଫୁଟିଲେ ଭ୍ରମର ଆସେ ।’ ଧର୍ମଦାନର ଯୋଗ୍ୟତା ଦରକାର, ନ ହେଲେ ପ୍ରଚାର ବୃଥା :

ଠାକୁର କହୁଥିଲେ — ‘ଫୁଲ ଫୁଟିଲେ ହିଁ ଭ୍ରମର ଆପେ ଆସି ଜୁଟିଯାଏ’, ତାକୁ ଡାକିବାକୁ ପଡ଼େ ନାହିଁ । ତୁମ ଭିତରେ ଈଶ୍ୱରଭକ୍ତି ଓ ପ୍ରେମ ଯଥାର୍ଥ ବିକଶିତ ହେଲେ ଯେଉଁମାନେ ଈଶ୍ୱରତତ୍ତ୍ୱର ଅନୁସନ୍ଧାନରେ ସତ୍ୟଲାଭ ନିମିତ୍ତ ଜୀବନୋତ୍ସର୍ଗ କରିଛନ୍ତି ବା କରିବାକୁ କୃତସଂକଳ୍ପ ହୋଇଛନ୍ତି, ସେମାନେ ସମସ୍ତେ କେଉଁ ଏକ ଅନିର୍ଦ୍ଦିଷ୍ଟ ଆଧ୍ୟାତ୍ମିକ ନିୟମବଶରେ ତୁମ ନିକଟକୁ ଆସିବେ ହିଁ ଆସିବେ । ସେଥିପାଇଁ ଠାକୁରଙ୍କର ମତ ଥିଲା — ଆଗେ ଈଶ୍ୱର ଲାଭ କର, ତାଙ୍କର ଦର୍ଶନ ଓ କୃପା ଲାଭ କରି ଯଥାର୍ଥ ଲୋକହିତ ପାଇଁ କାର୍ଯ୍ୟ କରିବାର କ୍ଷମତାରେ ବିଭୂଷିତ ହୁଅ, ସେହି ବିଷୟରେ ତାଙ୍କର ଆଦେଶ ବା ‘କ୍ଷମତାପତ୍ର’ଲାଭ କର, ତା’ପରେ ଧର୍ମପ୍ରଚାର ବା ବହୁଜନହିତାୟ କର୍ମ କରିବାକୁ ଅଗ୍ରସର ହୁଅ; ନହେଲେ, ‘‘ତୁମ

କଥା କିଏ ଗ୍ରହଣ କରିବ ? ତୁମେ ଯାହା କରିବାକୁ କହିବ, ଅନ୍ୟମାନେ ତାହା ମାନିବେ କାହିଁକି, ଶୁଣିବେ କାହିଁକି ?''

**ଆଧ୍ୟାତ୍ମିକ ବିଷୟରେ ସମସ୍ତେ ସମଭାବରେ ଅନ୍ଧ :**

ବାସ୍ତବିକ ଏହି ଜନ୍ମ-ଜରା-ମୃତ୍ୟୁ-ସଙ୍କୁଳ ଦୁଃଖ-ଦାରିଦ୍ର୍ୟ-ଅଜ୍ଞାନ-ଅନ୍ଧକାରପୂର୍ଣ୍ଣ ଜଗତରେ ଆମେମାନେ ଅହଂକାରରେ ଫୁଲି ଉଠି ନିଜକୁ ଅନ୍ୟମାନଙ୍କଠାରୁ ଯେତେ ବଡ଼ ଭାବୁନା କାହିଁକି, ଆମ ସମସ୍ତଙ୍କର ଅବସ୍ଥା ସମାନ । ଜଡ଼ ବିଜ୍ଞାନର ଉନ୍ନତି କରି ଅଘଟଣ-ଘଟଣ-ପଟୀୟସୀ ଜଗଜ୍ଜନନୀଙ୍କ ମାୟାର ରାଜ୍ୟରେ ଦୁଇ ଚାରୋଟି ଦ୍ରବ୍ୟଗୁଣ ଜାଣିନେଇ ଆମେ ଯେତେ କଳକାରଖାନାର ବିସ୍ତାର କରୁନା କାହିଁକି, ଆମମାନଙ୍କର ଦୁର୍ଦ୍ଦଶା ଚିରକାଳ ସମାନ ରହିଅଛି ! ସେହି ଇନ୍ଦ୍ରିୟ-ତାଡ଼ନା, ସେହି ଲୋଭ-ଲାଳସା, ସେହି ନିରନ୍ତର ମୃତ୍ୟୁଭୟ, ସେହି ମୁଁ କିଏ, ଏଠାକୁ କାହିଁକି ଆସିଛି, ପରେ କେଉଁଠାକୁ ଯିବି — ପଞ୍ଚେନ୍ଦ୍ରିୟ ଓ ମନବୁଦ୍ଧି-ସହାୟରେ ସତ୍ୟଲାଭର ପ୍ରୟାସୀ ହେଲେ ମଧ୍ୟ ସେସମସ୍ତ ଦ୍ୱାରା ହିଁ ପଦେ ପଦେ ପ୍ରତାରିତ ଓ ବିପଥଗାମୀ — ମୋର ଏହି ଖେଳର ଉଦ୍ଦେଶ୍ୟ କ'ଣ ଏବଂ ଏଥିରୁ ମୁକ୍ତିଲାଭ କେବେ ହେବ କି ନାହିଁ — ଏହି ସମସ୍ତ ବିଷୟରେ ପୂର୍ଣ୍ଣମାତ୍ରାରେ ଅଜ୍ଞାନତା ନିରନ୍ତର ହିଁ ବିଦ୍ୟମାନ ! ଏହି ଚିର ଅଭାବଗ୍ରସ୍ତ ସଂସାରରେ ଯଥାର୍ଥ ତତ୍ତ୍ୱଜ୍ଞାନ ପ୍ରାପ୍ତ କରିବା ପାଇଁ ସମସ୍ତେ ଅଭିଳାଷୀ ! କିନ୍ତୁ ସେମାନଙ୍କୁ ତାହା ଦେବ କିଏ ? ବାସ୍ତବିକ୍ କାହାର ଯଦି କିଛି ଦାନ କରିବାର ଥାଏ ତେବେ ସେ ନିଜ ଇଚ୍ଛାନୁସାରେ ତାହା ବିତରଣ କରୁ ନାହିଁ କାହିଁକି ? କିନ୍ତୁ ଭ୍ରାନ୍ତ — ଶତ ଭ୍ରାନ୍ତ ମାନବ ସେ କଥା ବୁଝେ ନାହିଁ । କିଛି ନ ଥିଲେ ମଧ୍ୟ ସେ ନାମ, ଯଶ ବା ଅନ୍ୟ କିଛି ସ୍ୱାର୍ଥର ପ୍ରରୋଚନାରେ ଯାହା ତା'ର ନାହିଁ ଅନ୍ୟକୁ ତାହା ଦେବାକୁ ଧାଏଁ ବା ସେ ଯେ ତାହା ଦେଇପାରେ ଏପରି ଛଳନା କରେ ଏବଂ 'ଅନ୍ଧେନୈବ ନୀୟମାନା ଯଥାନ୍ଧାଃ' ନ୍ୟାୟରେ ନିଜେ ହାୟ ହାୟ ହୋଇ ପଶ୍ଚାତ୍ତାପ କରେ ଏବଂ ଅନ୍ୟକୁ ମଧ୍ୟ ସେପରି କରାଏ !

**ଠାକୁର କେଉଁ ଭାବରେ ଧର୍ମପ୍ରଚାର କରିଛନ୍ତି :**

ସେଥିପାଇଁ ଠାକୁର ସଂସାରରେ ସମସ୍ତେ ଯେଉଁ ପଥରେ ଚାଲୁଛନ୍ତି ତାହାର ସମ୍ପୂର୍ଣ୍ଣ ବିପରୀତ ପଥ ଅବଲମ୍ବନ କରି ପୂର୍ଣ୍ଣମାତ୍ରାରେ ତ୍ୟାଗ, ବୈରାଗ୍ୟ ଓ ସଂଯମାଦି ଅଭ୍ୟାସରେ ନିଜକୁ ଶ୍ରୀଶ୍ରୀଜଗଦମ୍ବାଙ୍କର ହସ୍ତର ଠିକ୍ ଠିକ୍ ଯନ୍ତ୍ରସ୍ୱରୂପ ଗଢ଼ିତୋଳିଲେ ଏବଂ ସତ୍ୟବସ୍ତୁ ଲାଭ କରି ସ୍ଥିର ନିଶ୍ଚିନ୍ତ ହୋଇ ଗୋଟିଏ ସ୍ଥାନରେ ବସି ଜୀବନ ବିତାଇ ଯଥାର୍ଥ କାର୍ଯ୍ୟାନୁଷ୍ଠାନର ଏକ ନୂତନ ଧାରା ଦେଖାଇ ଗଲେ । ଦେଖାଇଲେ ଯେ, ବସ୍ତୁଲାଭ କରି ଅନ୍ୟକୁ ଦେବା ପାଇଁ ଯଥାର୍ଥ କିଛି ସଂଗ୍ରହ କରି ଯେଉଁ ମୁହୂର୍ତ୍ତରେ ସେ ତାହା ବିତରଣ ନିମିତ୍ତ ତାଙ୍କର ଜ୍ଞାନଭଣ୍ଡାର

ଉନ୍ମୁକ୍ତ କରିଦେଲେ, ସେହି ମୁହୂର୍ତ୍ତରେ ଅନାହୂତ ହୋଇ ମଧ୍ୟ କେଉଁଠାରୁ ପିପାସୁ ବ୍ୟକ୍ତିଗଣ ଆସି ଜୁଟିବାକୁ ଲାଗିଲେ ଏବଂ ତାଙ୍କର ଦିବ୍ୟଦୃଷ୍ଟି ଓ ସ୍ପର୍ଶରେ ପୂତ ହୋଇ ନିଜେ ହିଁ ଯେ କେବଳ ଧନ୍ୟ ହେଲେ ତାହା ନୁହେଁ, କିନ୍ତୁ ସେହି ନବ ଭାବ ସେମାନେ ଯେଉଁଠାକୁ ଗଲେ ସେଠାରେ ହିଁ ପ୍ରସାରିତ କରି ଅନ୍ୟମାନଙ୍କୁ ଧନ୍ୟ କରିବାକୁ ଲାଗିଲେ । କାରଣ ଆମେ ଯେଉଁଠି ଥାଉ ନା କାହିଁକି ଭିତରେ ଯେଉଁ ଭାବରାଶି ଥାଏ ତାହା ହିଁ ଆମେ ବାହାରେ ପ୍ରକାଶ କରିଥାଉ । ଠାକୁର ତାଙ୍କର ସରଳ ଗ୍ରାମ୍ୟ ଭାଷାରେ ଯେପରି କହୁଥିଲେ, ''ଯିଏ ଯାହା ଖାଏ ତାର ହାକୁଟିରେ ସେଇ ଗନ୍ଧ ହିଁ ବାହାରିଥାଏ—କାକୁଡ଼ି ଖାଅ, କାକୁଡ଼ି ଗନ୍ଧ ଆସିବ; ମୂଳା ଖାଅ, ମୂଳାର ଗନ୍ଧ ବାହାରିବ—ଏହିପରି ହିଁ ହୋଇଥାଏ ।''

**ବ୍ରାହ୍ମଣୀଙ୍କ ସହିତ ମିଳନକାଳରେ ଠାକୁରଙ୍କର ଅବସ୍ଥା :**

ଭୈରବୀ ବ୍ରାହ୍ମଣୀଙ୍କ ସହିତ ଭେଟ ହେବା ଠାକୁରଙ୍କ ଜୀବନରେ ଏକ ବିଶେଷ ଘଟଣା । ଦେଖିବାକୁ ପାଉ, ଏହି ସମୟଠାରୁ ହିଁ ସେ ଶାସ୍ତ୍ରମର୍ଯ୍ୟାଦା ରକ୍ଷା କରି ତତ୍ପ୍ରଦର୍ଶିତ ସାଧନମାର୍ଗରେ ଯେପରି ଦୃଢ଼ ଓ ଦ୍ରୁତପଦରେ ଅଗ୍ରସର ହେଲେ, ଠିକ୍ ସେପରି ତାଙ୍କଠାରେ ଗୁରୁଭାବର ବିଶେଷ ପ୍ରକାଶ ହେବାକୁ ଆରମ୍ଭ ହେଲା । କିନ୍ତୁ ସେହି ସମୟ ପୂର୍ବରୁ ତାଙ୍କଠାରେ ଯେ ସେହି ଭାବ ଆଦୌ ନ ଥିଲା, ତାହା କହିପାରିବା ନାହିଁ । କାରଣ ପୂର୍ବ ପୂର୍ବ ପ୍ରବନ୍ଧମାନଙ୍କରେ ଆମେ ଦେଖିଛୁ ଯେ, ଠାକୁରଙ୍କ ଜୀବନରେ ଗୁରୁଭାବର ବିକାଶ ବାଲ୍ୟକାଳରୁ ସବୁ ସମୟରେ ହିଁ ଅଳ୍ପାଧିକ ପରିମାଣରେ ରହିଥିଲା ଏବଂ ଏପରିକି, ତାଙ୍କର ନିଜ ଦୀକ୍ଷାଗୁରୁମାନେ ମଧ୍ୟ ସେହି ଗୁରୁଭାବ ସହାୟରେ ନିଜ ନିଜର ଧର୍ମ-ଜୀବନର ଅଭାବ, ତ୍ରୁଟି ଓ ଅବସାଦ ଦୂରୀଭୂତ କରି ପୂର୍ଣ୍ଣତାପ୍ରାପ୍ତିର ସୁଯୋଗ ପାଇଥିଲେ ।

**ଠାକୁରଙ୍କର ଉଚ୍ଚାବସ୍ଥା ସମ୍ବନ୍ଧରେ ଅନ୍ୟମାନଙ୍କର ଧାରଣ :**

ବ୍ରାହ୍ମଣୀ ଆସିବା ପୂର୍ବରୁ ଠାକୁରଙ୍କର ଅଦୃଷ୍ଟପୂର୍ବ ଈଶ୍ୱରାନୁରାଗ ଓ ବ୍ୟାକୁଳତା, ଉନ୍ମତ୍ତତା ଓ ଶାରୀରିକ ବ୍ୟାଧି ବୋଲି ହିଁ ଗଣ୍ୟ ହୋଇଥିଲା ଏବଂ ଏହାର ଉପଶମ ପାଇଁ ଚିକିତ୍ସା ମଧ୍ୟ ହେଉଥିଲା । ୰ଗଙ୍ଗାପ୍ରସାଦ ସେନଙ୍କ ଘରେ ପୂର୍ବବଙ୍ଗୀୟ ଜନୈକ ସାଧକ କବିରାଜ ଚିକିତ୍ସା ନିମିତ୍ତ ଆଗତ ଠାକୁରଙ୍କୁ ଦେଖି ସେହି ସମସ୍ତ ଶାରୀରିକ ଲକ୍ଷଣସମୂହକୁ 'ଯୋଗଜ ବିକାର' ବା ଯୋଗାଭ୍ୟାସ କରୁ କରୁ ଶରୀରରେ ଯେଉଁ ସମସ୍ତ ଅସାଧାରଣ ପରିବର୍ତ୍ତନ ଆସିଥାଏ, ତାହା ବୋଲି ନିର୍ଦ୍ଦେଶ କରିଥିଲେ ମଧ୍ୟ ସେକଥାରେ ସେତେବେଳେ କେହି ବିଶେଷ ଆସ୍ଥା ସ୍ଥାପନ କରି ନ ଥିଲେ । ମଥୁରପ୍ରମୁଖ ସମସ୍ତେ ସ୍ଥିର କରିଥିଲେ, ତାହା ଈଶ୍ୱରାନୁରାଗ ସହିତ ବାୟୁରୋଗର ସମ୍ମିଳନ ଯୋଗୁଁ ହୋଇଅଛି । ଭକ୍ତିଶାସ୍ତ୍ରଜ୍ଞା ବିଦୁଷୀ ବ୍ରାହ୍ମଣୀ ହିଁ ସେହି ସକଳ ଶାରୀରିକ ବିକାରକୁ ପ୍ରଥମେ ଅସାଧାରଣ

ଈଶ୍ୱରଭକ୍ତି-ପ୍ରସୂତ ଦେବବାଞ୍ଛିତ ମାନସିକ ପରିବର୍ତ୍ତନର ଅନୁରୂପ ଦିବ୍ୟ ଶାରୀରିକ ପରିବର୍ତ୍ତନ ବୋଲି ସମସ୍ତଙ୍କ ସମ୍ମୁଖରେ ପ୍ରକାଶ କଲେ । କେବଳ ପ୍ରକାଶ କରି କ୍ଷାନ୍ତ ହେଲେ ନାହିଁ, କିନ୍ତୁ ସାକ୍ଷାତ୍ ପ୍ରେମ-ଭକ୍ତିରୂପିଣୀ ବ୍ରଜେଶ୍ୱରୀ ଶ୍ରୀମତୀ ରାଧାରାଣୀଙ୍କଠାରୁ ମହାପ୍ରଭୁ ଚୈତନ୍ୟଦେବଙ୍କ ପର୍ଯ୍ୟନ୍ତ ପୂର୍ବର ସମସ୍ତ ଯୋଗୀ ଆଚାର୍ଯ୍ୟଗଣଙ୍କର ଜୀବନରେ ହିଁ ଯେ ଅପୂର୍ବ ମାନସିକ ଅନୁଭବ ସଙ୍ଗେ ସଙ୍ଗେ ଶାରୀରିକ ସେହିପ୍ରକାର ଅନୁଭୂତିସମୂହ ସମୟ ସମୟରେ ଉପସ୍ଥିତ ହୋଇଥିଲା ଏବଂ ସେକଥା ଯେ ଭକ୍ତିଗ୍ରନ୍ଥମାନଙ୍କରେ ଲିପିବଦ୍ଧ ରହିଛି, ତାହା ମଧ୍ୟ ସେ ଶାସ୍ତ୍ରବଚନ ଉଦ୍ଧୃତ କରି ଦେଖାଇ ଏବଂ ଠାକୁରଙ୍କର ଶାରୀରିକ ଲକ୍ଷଣ ସହିତ ସେଗୁଡ଼ିକ ମିଳାଇ ନିଜ ବାକ୍ୟ ପ୍ରମାଣିତ କରିବାକୁ ଲାଗିଲେ । ତାଙ୍କର ସେକଥାରେ ଜନନୀଙ୍କ ଆଶ୍ୱାସନାରେ ବାଳକ ଯେପରି ସାହସ ଓ ବଳ ପାଇ ଆନନ୍ଦ ପ୍ରକାଶ କରେ, ଠାକୁର ତଦ୍ରୂପ କରିବାକୁ ଲାଗିଲେ ଏବଂ ମଥୁରପ୍ରମୁଖ କାଳୀମନ୍ଦିରର ଅନ୍ୟ ସମସ୍ତେ ମଧ୍ୟ କିଛି କମ୍ ଆଶ୍ଚର୍ଯ୍ୟାନ୍ୱିତ ହେଲେ ନାହିଁ । ତା'ପରେ ଯେତେବେଳେ ବ୍ରାହ୍ମଣୀ ମଥୁରଙ୍କୁ କହିଲେ, ''ଶାସ୍ତ୍ରଜ୍ଞ ସୁପଣ୍ଡିତ ସମସ୍ତଙ୍କୁ ଆଣ, ମୁଁ ସେମାନଙ୍କ ନିକଟରେ ମୋର ଏକଥା ପ୍ରମାଣିତ କରିବାକୁ ପ୍ରସ୍ତୁତ'', ସେତେବେଳେ ସେମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

### ଠାକୁରଙ୍କର ଅବସ୍ଥା ବୁଝି ବ୍ରାହ୍ମଣୀଙ୍କ କଥାରେ ମଥୁରବାବୁଙ୍କର ଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କୁ ଆଣିବା ପାଇଁ ସିଦ୍ଧାନ୍ତ :

କିନ୍ତୁ ଆଶ୍ଚର୍ଯ୍ୟ ହେଲେ କ'ଣ ହେବ ? ଭିକ୍ଷାବ୍ରତାବଲମ୍ବିନୀ ଏକ ନଗଣ୍ୟା ଅପରିଚିତା ସ୍ତ୍ରୀଲୋକର କଥାରେ ଏବଂ ପାଣ୍ଡିତ୍ୟରେ ସହସା କିଏ ବିଶ୍ୱାସ ସ୍ଥାପନ କରିପାରିବ ? ସୁତରାଂ ପୂର୍ବ ବଙ୍ଗର କବିରାଜଙ୍କ କଥା ପରି ଭୈରବୀ ବ୍ରାହ୍ମଣୀଙ୍କ କଥା ମଧ୍ୟ ମଥୁରାନାଥ ପ୍ରଭୃତିଙ୍କ ଏକାନରେ ପଶି ସେକାନରେ ବାହାରି ଯାଇଥାନ୍ତା ନିଶ୍ଚୟ, ତେବେ ଠାକୁରଙ୍କର ଆଗ୍ରହ ଓ ଅନୁରୋଧରେ ଏହା ଅନ୍ୟ ପ୍ରକାରର ହେଲା । ବାଳକବତ୍ ଠାକୁର ମଥୁରବାବୁଙ୍କୁ ଧରି ବସିଲେ, 'ଭଲ ଭଲ ପଣ୍ଡିତଙ୍କୁ ଅଣାଇ ବ୍ରାହ୍ମଣୀ ଯାହା କହୁଛନ୍ତି, ତାହା ପରୀକ୍ଷା କରି ନେବାକୁ ହେବ ।' ଧନୀ ମଥୁର ମଧ୍ୟ ଭାବିଲେ, ଛୋଟ ଭଟ୍ଟାଚାର୍ଯ୍ୟଙ୍କ ପାଇଁ ଔଷଧ ଏବଂ ଡାକ୍ତର ଖର୍ଚ୍ଚରେ ତ' ଏତେ ଟଙ୍କା ବ୍ୟୟ ହେଉଅଛି, ତେଣୁ ତାହା କଲେ ଦୋଷ କ'ଣ ? ପଣ୍ଡିତମାନେ ଆସି ଶାସ୍ତ୍ରପ୍ରମାଣରେ ବ୍ରାହ୍ମଣୀଙ୍କର କଥା କାଟି ଦେଲେ—ଏବଂ ନିଶ୍ଚିତ କାଟି ଦେବେ—ଅନ୍ତତଃ ଗୋଟିଏ ଲାଭ ହେବ । ପଣ୍ଡିତମାନଙ୍କ କଥାରେ ବିଶ୍ୱାସ କରି ଛୋଟ ଭଟ୍ଟାଚାର୍ଯ୍ୟଙ୍କ ସରଳ ବିଶ୍ୱାସୀ ହୃଦୟରେ ଅନ୍ତତଃ ଏଧାରଣା ହେବ ଯେ, ତାଙ୍କର କୌଣସି ବିଶେଷ ରୋଗ ହୋଇଅଛି, ସେଥିରେ ତାଙ୍କର ନିଜ ମନ ଉପରେ ଲଗାମ ଦେବାକୁ ମଧ୍ୟ ଇଚ୍ଛା ହୋଇପାରେ । ଲୋକେ ଏହିପରି

ହିଁ ପାଗଳ ହୋଇଥାଆନ୍ତି—ନିଜେ ଯାହା କରୁଛନ୍ତି, ବୁଝୁଛନ୍ତି, ତାହା ଠିକ୍ ଏବଂ ଅନ୍ୟମାନେ ଯାହା ବୁଝିଛନ୍ତି ଓ କରିବାକୁ କହୁଛନ୍ତି, ସେସମସ୍ତ ଭୁଲ ଏହା ନିଶ୍ଚୟ କରି ନିଜ ମନ ଉପରେ, ଚିନ୍ତା ଉପରେ ନିୟନ୍ତ୍ରଣ କରି ମନକୁ ନିଜର ବଶୀଭୂତ ରଖିବାର ଚେଷ୍ଟା ନ କରି ହିଁ ତ ଲୋକେ ପାଗଳ ହୁଅନ୍ତି ! ପୁଣି ପଣ୍ଡିତମାନଙ୍କୁ ନ ଡାକି ଛୋଟ ଭଟ୍ଟାଚାର୍ଯ୍ୟଙ୍କୁ ବ୍ରାହ୍ମଣୀଙ୍କ କଥାରେ ବିନା ବାଧାରେ ବିଶ୍ୱାସ କରିବାକୁ ଦେଲେ ତାଙ୍କର ମାନସିକ ବିକାର ଆହୁରି ବଢ଼ି ଶାରୀରିକ ରୋଗ ମଧ୍ୟ ଯେ ବୃଦ୍ଧିହେବ, ସେଥିରେ ଆଉ ସନ୍ଦେହ କ'ଣ । ଏହିପରି କିଛିଟା କୌତୁହଳରେ, କିଛିଟା ଠାକୁରଙ୍କୁ ଭଲପାଇବା କାରଣରୁ ଠାକୁରଙ୍କ ଅନୁରୋଧରେ ମଥୁରବାବୁ ପଣ୍ଡିତଗଣଙ୍କୁ ଆଣିବାକୁ ସମ୍ମତ ହୋଇଥିଲେ, ଏହା ଆମେ ବେଶ ବୁଝିପାରୁ ।

### ବୈଷ୍ଣବଚରଣ ଓ ଇଁଦେଶର ଗୌରୀଙ୍କୁ ଆମନ୍ତ୍ରଣ :

କଲିକତାର ପଣ୍ଡିତମହଲରେ ସେତେବେଳେ ବୈଷ୍ଣବଚରଣଙ୍କର ବେଶ୍ ପ୍ରତିପତ୍ତି ଥିଲା । ପୁଣି ଅନେକ ସ୍ଥାନରେ ସମସ୍ତଙ୍କ ସମ୍ମୁଖରେ ସେ ଶ୍ରୀମଦ୍‌ଭାଗବତ ଗ୍ରନ୍ଥ ସୁନ୍ଦରଭାବରେ ବ୍ୟାଖ୍ୟା କରି ପାଠ କରୁଥିବାରୁ ଜନସାଧାରଣଙ୍କ ନିକଟରେ ମଧ୍ୟ ତାଙ୍କର ଖୁବ୍ ସୁଖ୍ୟାତି ଥିଲା । ସେଥିପାଇଁ ଠାକୁର, ମଥୁରବାବୁ ଓ ବ୍ରାହ୍ମଣୀ ସମସ୍ତେ ତାଙ୍କ କଥା ଏହାପୂର୍ବରୁ ଶୁଣିଥିଲେ । ମଥୁର ତାଙ୍କୁ ଆଣିବାକୁ ମନୋନୀତ କଲେ ଏବଂ ବାଙ୍କୁଡ଼ା ଅଞ୍ଚଳର ଇଁଦେଶର ଗୌରୀ ପଣ୍ଡିତଙ୍କର ଅସାଧାରଣ କ୍ଷମତା ଓ ପାଣ୍ଡିତ୍ୟ କଥା ଶୁଣି ତାଙ୍କୁ ମଧ୍ୟ ଆଣିବାକୁ ମନସ୍ଥ କଲେ । ଏହି ଭାବରେ ବୈଷ୍ଣବଚରଣ ଓ ଇଁଦେଶର ଗୌରୀଙ୍କର ଦକ୍ଷିଣେଶ୍ୱରକୁ ଆଗମନ ହୁଏ । ଠାକୁରଙ୍କ ନିକଟରୁ ଆମେ ଏମାନଙ୍କ କଥା ଅନେକ ସମୟରେ ଶୁଣିଛୁ । ତାହା ହିଁ ଏବେ ପାଠକଙ୍କୁ ଉପହାର ଦେଲେ ମନ୍ଦ ହେବ ନାହିଁ ।

### ବୈଷ୍ଣବଚରଣଙ୍କର ସେତେବେଳେ କେତେଦୂର ଖ୍ୟାତି ଥିଲା :

ବୈଷ୍ଣବଚରଣ କେବଳ ଯେ ପଣ୍ଡିତ ଥିଲେ ତାହା ନୁହେଁ, କିନ୍ତୁ ଜଣେ ଭକ୍ତ ସାଧକ ବୋଲି ମଧ୍ୟ ସାଧାରଣରେ ପରିଚିତ ଥିଲେ । ତାଙ୍କର ଈଶ୍ୱରଭକ୍ତି ଓ ଦର୍ଶନାଦି ଶାସ୍ତ୍ରରେ ବିଶେଷତଃ ଭକ୍ତିଶାସ୍ତ୍ରରେ ସୂକ୍ଷ୍ମଦୃଷ୍ଟି ତାଙ୍କୁ ତତ୍‌କାଳୀନ ବୈଷ୍ଣବସମାଜର ଜଣେ ନେତା କରି ତୋଳିଥିଲା କୁହାଯାଇପାରେ । ବିଦାୟ-ଆଦାୟ ନିମନ୍ତ୍ରଣ ଆଦିରେ ବୈଷ୍ଣବସମାଜ ତାଙ୍କୁ ସର୍ବାଗ୍ରେ ସାଦର ଆହ୍ୱାନ କରୁଥିଲେ । ଧର୍ମବିଷୟକ କୌଣସି ପ୍ରକାର ମୀମାଂସାରେ ଉପନୀତ ହେବାକୁ ହେଲେ ସମାଜ ଅନେକ ସମୟରେ ତାଙ୍କୁ ପଚାରୁଥିଲେ ଏବଂ ତାଙ୍କର ମୁଖାପେକ୍ଷୀ ହୋଇ ରହୁଥିଲେ । ପୁଣି ସାଧନପଥର ସଠିକ୍ ନିର୍ଦ୍ଦେଶ ପାଇବା ପାଇଁ ଅନେକ ଭକ୍ତ ସାଧକ ମଧ୍ୟ ତାଙ୍କ ନିକଟକୁ ଆସି ତାଙ୍କର ପରାମର୍ଶ ନେଇ ଗନ୍ତବ୍ୟପଥରେ ଅଗ୍ରସର ହେଉଥିଲେ । ତେଣୁ ଭକ୍ତିର ଆତିଶଯ୍ୟରେ ଠାକୁରଙ୍କର ସେପ୍ରକାର

ଭାବାଦି ହେଉଛି କିମ୍ବା କୌଣସି ପ୍ରକାର ଶାରୀରିକ ବ୍ୟାଧିଗ୍ରସ୍ତ ହେବାରୁ ଏପରି ହେଉଛି, ତାହା ନିର୍ଣ୍ଣୟ କରିବାକୁ ଯେ ବୈଷ୍ଣବଚରଣଙ୍କୁ ମଥୁର ଆଣିବାକୁ ସଂକଳ୍ପ କରିବେ, ଏଥିରେ ଆଉ ବୈଚିତ୍ର୍ୟ କ'ଣ ?

**ଠାକୁରଙ୍କର ଗାତ୍ରଦାହ ନିବାରଣ ପାଇଁ ବ୍ରାହ୍ମଣୀଙ୍କର ବ୍ୟବସ୍ଥା :**

ଭୈରବୀ ବ୍ରାହ୍ମଣୀ ଇତି ମଧ୍ୟରେ ଠାକୁରଙ୍କ ଅବସ୍ଥା ସମ୍ବନ୍ଧରେ ତାଙ୍କର ଧାରଣା ଯେ ସତ୍ୟ ସେହି ବିଷୟରେ ଏକ ବଳିଷ୍ଠ ପ୍ରମାଣ ପାଇ ନିଜେ ମଧ୍ୟ ଉଲ୍ଲସିତ ହୋଇଥିଲେ ଏବଂ ଅନ୍ୟମାନଙ୍କର ମଧ୍ୟ ବିସ୍ମୟ ଉତ୍ପାଦନ କରିଥିଲେ । ତାହା ଏହିପରି ହୋଇଥିଲା — ବ୍ରାହ୍ମଣୀଙ୍କର ଆଗମନକାଳର କିଛି ପୂର୍ବରୁ ଠାକୁର ଗାତ୍ରଦାହ ଯୋଗୁଁ ଖୁବ୍ କଷ୍ଟ ପାଉଥିଲେ । ସେହି ଜ୍ୱାଳା ନିବାରଣ ପାଇଁ ଅନେକ ଚେଷ୍ଟା କରାଯାଇଥିଲା, କିନ୍ତୁ କିଛି ଫଳ ମିଳି ନ ଥିଲା । ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛୁ, ସୂର୍ଯ୍ୟୋଦୟ ପରଠାରୁ ବେଳ ବଢ଼ିବା ସଙ୍ଗେ ସଙ୍ଗେ ଦେହର ଜ୍ୱାଳା ଅଧିକତର ବୃଦ୍ଧି ପାଉଥିଲା । ଦ୍ୱିପ୍ରହରରେ ଏହି ଜ୍ୱାଳା ଏତେ ଅସହ୍ୟ ହେଉଥିଲା ଯେ, ଗଙ୍ଗାପାଣିରେ ଶରୀର ବୁଡ଼ାଇ ମୁଣ୍ଡରେ ଖଣ୍ଡିଏ ଭିଜା ଗାମୁଛା ଗୁଡ଼ାଇ ହୋଇ ଦୁଇ ତିନିଘଣ୍ଟା ବସି ରହିବାକୁ ପଡୁଥିଲା । ପୁଣି ଏତେ ବେଶି ସମୟ ପାଣିରେ ବୁଡ଼ି ରହି ଯଦି ଥଣ୍ଡା ଧରିଯାଇ ଅନ୍ୟ ପ୍ରକାର ଅସୁସ୍ଥତା ଉପୁଜେ, ଏଥିପାଇଁ ଇଚ୍ଛା ନ ହେଲେ ମଧ୍ୟ ପାଣିରୁ ଉଠି ଆସି ବାବୁମାନଙ୍କର କୋଠିଘରର ମାର୍ବଲ ପଥର ନିର୍ମିତ ଚଟାଣକୁ ଭିଜା ଲୁଗାରେ ପୋଛି ଘରର ସମସ୍ତ ଦ୍ୱାର ବନ୍ଦ କରି ସେହି ଚଟାଣରେ ଗଡ଼ିବାକୁ ହେଉଥିଲା ।

ବ୍ରାହ୍ମଣୀ ଠାକୁରଙ୍କର ସେହିପରି ଅବସ୍ଥା କଥା ଶୁଣି ଅନ୍ୟ ପ୍ରକାର ଧାରଣା କଲେ । କହିଲେ, ଏହା ବ୍ୟାଧି ନୁହେଁ; ଏହା ମଧ୍ୟ ଠାକୁରଙ୍କ ମନର ପ୍ରବଳ ଆଧ୍ୟାତ୍ମିକତା ବା ଈଶ୍ୱରାନୁରାଗ ଫଳରେ ହିଁ ସୃଷ୍ଟି ହୋଇଛି । ସେ କହିଲେ, ଈଶ୍ୱରଦର୍ଶନର ଅତ୍ୟୁଗ୍ର ବ୍ୟାକୁଳତା ଯୋଗୁଁ ଶରୀରରେ ଏପରି ବିକାର ଲକ୍ଷଣସମୂହ ଶ୍ରୀମତୀ ରାଧାରାଣୀ ଓ ଶ୍ରୀଚୈତନ୍ୟଦେବଙ୍କର ଜୀବନରେ ଅନେକ ସମୟରେ ଉପସ୍ଥିତ ହେଉଥିଲା । ଏହି ରୋଗର ଔଷଧ ମଧ୍ୟ ଅପୂର୍ବ — ସୁଗନ୍ଧିତ ପୁଷ୍ପର ମାଲ୍ୟଧାରଣ ଓ ସର୍ବାଙ୍ଗରେ ସୁବାସିତ ଚନ୍ଦନଲେପନ ।

କହିବା ବାହୁଲ୍ୟ, ବ୍ରାହ୍ମଣୀଙ୍କର ସେହି ପ୍ରକାର ରୋଗ ଚିହ୍ନଟ କଥା ବିଶ୍ୱାସ କରିବା ଦୂରରେ ଥାଉ, ମଥୁରପ୍ରମୁଖ ସମସ୍ତେ ଏକଥାରେ ହାସ୍ୟ ସମ୍ବରଣ କରିପାରି ନ ଥିଲେ । ଭାବିଥିଲେ, କେତେ ଔଷଧସେବନ, ମଧ୍ୟମ ନାରାୟଣ, ବିଷ୍ଣୁତୈଳାଦି କେତେପ୍ରକାର ତୈଳମର୍ଦ୍ଦନ କରି ମଧ୍ୟ ଯାହାର କିଛି ଉପଶମ ହେଲା ନାହିଁ, ତାହାକୁ ସେ କହୁଛନ୍ତି 'ରୋଗ ନୁହେଁ' । ତେବେ ବ୍ରାହ୍ମଣୀ ଯେଉଁ ସହଜ ଔଷଧର ବ୍ୟବସ୍ଥା କଲେ ତାହାର ବ୍ୟବହାରରେ କାହାର କିଛି ଆପତ୍ତି

ହୋଇପାରେ ନାହିଁ । ଦିନେ-ଦୁଇଦିନ ଲଗାଇ କିଛି ଫଳ ନ ମିଳିଲେ ରୋଗୀ ସ୍ୱୟଂ ହିଁ ଏହା ତ୍ୟାଗ କରିବେ । ଅତଏବ ବ୍ରାହ୍ମଣୀଙ୍କର କଥା ମୁତାବକ ଠାକୁରଙ୍କ ଶରୀରରେ ସୁଗନ୍ଧ ଚନ୍ଦନଲେପ ଓ ପୁଷ୍ପହାରରେ ଭୂଷିତ କରାହେଲା । ମାତ୍ର ତିନିଦିନ ସେପରି କରିବା ପରେ ଦେଖାଗଲା, ଠାକୁରଙ୍କର ସେହି ଗାତ୍ରଦାହ ସମ୍ପୂର୍ଣ୍ଣ ତିରୋହିତ ହୋଇଅଛି । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ଅବିଶ୍ୱାସୀ ମନ କ'ଣ ସହଜରେ ଛାଡ଼ିବ ? —କହିଲା ଏହା କାକତାଳିୟ ନ୍ୟାୟ ସଦୃଶ ହୋଇଅଛି, ତା ନୁହେଁ ଆଉ କ'ଣ ! ଭଟ୍ଟାଚାର୍ଯ୍ୟ ମହାଶୟଙ୍କୁ ଶେଷରେ ସେହି ଯେଉଁ ବିଷ୍ଣୁତୈଳଟା ବ୍ୟବହାର କରିବାକୁ ଦିଆଯାଇଥିଲା, ତାହା ପୂରା ଖାଣ୍ଟି ତେଲ ଥିଲା; କବିରାଜଙ୍କ କଥାରେ ହିଁ ତାହା ବୁଝାଯାଇଥିଲା — ସେହି ତୈଳରେ ହିଁ ଉପକାର ହୋଇ ଆସୁଥିଲା; ଆଉ ଦିନେ-ଦୁଇ ଦିନ ବ୍ୟବହାର କରିଥିଲେ ଜ୍ୱଳାପୋଡ଼ା ସମ୍ପୂର୍ଣ୍ଣ ଦୂର ହୋଇଥାନ୍ତା, ଏହି ସମୟରେ ଭୈରବୀ ଚନ୍ଦନ ଲଗାଇବା ବ୍ୟବସ୍ଥା କରିଛନ୍ତି, ସେଥିପାଇଁ ଏପ୍ରକାର ହୋଇଅଛି । ବ୍ରାହ୍ମଣୀ ଯାହା ହିଁ କୁହନ୍ତୁ ଆଉ ବ୍ୟବସ୍ଥା କରନ୍ତୁ ନା କାହିଁକି, ସେହି ତୈଳ କିନ୍ତୁ ବରାବର ଲଗାଇବା ଉଚିତ୍ ।

## ଠାକୁରଙ୍କର ବିପରୀତ କ୍ଷୁଧା ନିବାରଣରେ ବ୍ରାହ୍ମଣୀଙ୍କ ବ୍ୟବସ୍ଥା :

କିଛିଦିନ ପରେ ଠାକୁରଙ୍କର ପୁଣି ଏକ ଉପସର୍ଗ ଦେଖାଗଲା । ବ୍ରାହ୍ମଣୀଙ୍କ ସହଜ ବ୍ୟବସ୍ଥା ଦ୍ୱାରା ତାହା ମଧ୍ୟ ତିନି ଦିନରେ ନିବାରିତ ହୋଇଥିଲା ଏକଥା ମଧ୍ୟ ଆମେ ଠାକୁରଙ୍କଠାରୁ ଶୁଣିଛୁ । ଠାକୁର କହୁଥିଲେ, ''ଏହି ସମୟରେ ଏକ ବିପରୀତ କ୍ଷୁଧାର ଉଦ୍ରେକ ହୋଇଥିଲା । ଯେତେ ଖାଇଲେ ମଧ୍ୟ ପେଟ ପୁରୁ ନ ଥିଲା । ଏହିକ୍ଷଣି ଖାଇ ଉଠିଲି, ପୁଣି ସେହିକ୍ଷଣି ଆଉ କିଛି ଯେପରି ଖାଇବି— ସମାନ ଖାଇବା ଇଚ୍ଛା ! ଦିନ-ରାତି କେବଳ ଖାଇବାକୁ ଇଚ୍ଛା — ତାର ଆଉ ବିରାମ ନାହିଁ । ଭାବିଲି, ଏପୁଣି କ'ଣ ବେମାର ହେଲା ? ବ୍ରାହ୍ମଣୀକୁ କହିଲି, ସେ କହିଲେ — 'ବାବା, ଭୟ କରନା, ଈଶ୍ୱରପଥର ପଥିକମାନଙ୍କର ଏପରି ଅବସ୍ଥା ବେଳେ ବେଳେ ହୋଇଥାଏ, ଶାସ୍ତ୍ରରେ ଏକଥା ଅଛି; ମୁଁ ତୁମର ଏହା ଭଲ କରି ଦେବି ।' ଏହା କହି, ମଥୁରଙ୍କୁ କହି ଘର ଭିତରେ ଚୂଡ଼ା, ଉଖୁଡ଼ାଠାରୁ ଆରମ୍ଭ କରି ରସଗୋଲା, ସନ୍ଦେଶ, ଲୁଚି ଇତ୍ୟାଦି ଯେତେ ପ୍ରକାର ଖାଦ୍ୟ ଥିଲା, ସବୁ ଥାକ ଥାକ କରି ସଜାଇ ରଖିଲେ ଆଉ କହିଲେ, 'ବାବା, ତୁମେ ଏହିଘରେ ଦିନରାତ୍ରି ରୁହ ଏବଂ ଯେତେବେଳେ ଯାହା ଇଚ୍ଛା ହେବ ସେତେବେଳେ ହିଁ ତାହା ଖାଇବ ।' ମୁଁ ସେଇ ଘରେ ରହେ, ବୁଲେ; ସେହି ସବୁ ଖାଦ୍ୟ ଦେଖେ, ହାତରେ ଧରେ; କେତେବେଳେ ଏଥିରୁ ଟିକିଏ, କେତେବେଳେ ସେଥିରୁ ଟିକିଏ ଖାଏ — ଏହିପରି ତିନିଦିନ କଟିବା ପରେ ସେ ବିପରୀତ କ୍ଷୁଧା ଓ ଖାଇବା ଇଚ୍ଛା ଚାଲିଗଲା, ତେବେ ରକ୍ଷା ପାଇଲି ।''

**ଯୋଗସାଧନା ଫଳରେ ସେହି ସକଳ ଅବସ୍ଥାର ଉଦୟ । ଠାକୁରଙ୍କର ଏପରି କ୍ଷୁଧା ସମ୍ବନ୍ଧରେ ଆମେ ଯାହା ଦେଖିଛୁ । :**

ଯୋଗ ବା ଈଶ୍ୱରଙ୍କଠାରେ ମନର ତନ୍ମୟଭାବରେ ସ୍ଥିର ହେବା ଅବସ୍ଥା ସହଜ ହୋଇ ଆସିବା ପୂର୍ବରୁ ଏବଂ କେବେକେବେ ପରେ ମଧ୍ୟ ଏପରି ବିପରୀତ କ୍ଷୁଧାଦିର ଉଦ୍ରେକ ହେବା କଥା ସାଧକମାନଙ୍କ ଜୀବନରେ ଘଟିବା ଶୁଣିଅଛୁ ଏବଂ ଠାକୁରଙ୍କ ଜୀବନରେ ମଧ୍ୟ ଅନେକ ଥର ଏହାର ପରିଚୟ ପାଇ ଆଶ୍ଚର୍ଯ୍ୟ ହୋଇଛୁ । ତେବେ ଠାକୁରଙ୍କ ସମ୍ବନ୍ଧରେ ଆମେ ଯାହା ଦେଖିଛୁ, ତାହା ସାମାନ୍ୟ ଅନ୍ୟ ପ୍ରକାରର ଅବସ୍ଥା । ଉପରୋକ୍ତ ସମୟ ପରି ସେତେବେଳେ ଠାକୁର ନିରନ୍ତର ସେପରି କ୍ଷୁଧାରେ ପୀଡ଼ିତ ହେଉ ନ ଥିଲେ । କିନ୍ତୁ ସହଜ ଅବସ୍ଥାରେ ସାଧାରଣତଃ ତାଙ୍କର ଯେଉଁ ପରିମାଣର ଆହାର ଥିଲା ତାହାର ଚାରିଗୁଣ ବା ତତୋଽଧିକ ପରିମାଣର ଖାଦ୍ୟ ଭାବାବସ୍ଥାରେ ଉଦରସ୍ଥ କଲେ ମଧ୍ୟ ସେଥିଯୋଗୁଁ ତାଙ୍କର କୌଣସି ଶାରିରୀକ ଅସୁସ୍ଥତା ହେଉ ନ ଥିଲା—ଏପରି ହେବା ହିଁ ଦେଖିଛୁ । ସେହି ପ୍ରକାର ଗୋଟିଏ ଦୁଇଟି ଘଟଣା କଥା ଏଠାରେ ଉଲ୍ଲେଖ କଲେ ପାଠକ ତାହା ସହଜରେ ବୁଝିପାରିବେ ।

**ପ୍ରଥମ ଦୃଷ୍ଟାନ୍ତ—ଏକ ବଡ଼ ସର[1] ଖାଇବା :**

ଇତିପୂର୍ବରୁ ଆମେ ପାଠକଙ୍କୁ ଏବିଷୟରେ ଆଭାସ ଦେଇଛୁ ।[2] ସ୍ତ୍ରୀଭକ୍ତମାନଙ୍କ ସହିତ ଠାକୁରଙ୍କର ଦିବ୍ୟଲୀଳା-ପ୍ରସଙ୍ଗରେ ପୂର୍ବରୁ ଆମେ କହିଥିବା ଘଟଣା ପାଠକଙ୍କର ସ୍ମରଣ ଥାଇପାରେ ଯେ, ଥରେ ବାଗବଜାରର କେତେଜଣ ଭଦ୍ରମହିଳା ଭୋଳାଗୁଡ଼ିଆ ଦୋକାନରୁ ଖଣ୍ଡିଏ ବଡ଼ ସର ନେଇ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଦକ୍ଷିଣେଶ୍ୱରରେ ପହଞ୍ଚିଲେ । ସେଠାରେ ଠାକୁରଙ୍କର ଦର୍ଶନ ନ ପାଇ କୌଣସି ପ୍ରକାରେ ଶ୍ରୀଯୁକ୍ତ ମହେନ୍ଦ୍ର ନାଥ ଗୁପ୍ତ ବା ମାଷ୍ଟର ମହାଶୟଙ୍କ ଘରକୁ ଆସି ଠାକୁରଙ୍କ ଦର୍ଶନ ଲାଭ କଲେ । ଏହି ସମୟରେ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ମୁଖୋପାଧ୍ୟାୟ, ଠାକୁର ଯାହାଙ୍କୁ ମୋଟା ବ୍ରାହ୍ମଣ ବୋଲି କହୁଥିଲେ ହଠାତ୍ ସେଠାକୁ ଆସିବାରୁ ସଙ୍କୋଚବଶତଃ ସ୍ତ୍ରୀଭକ୍ତମାନେ ଠାକୁର ବସିଥିବା ତକ୍ତପୋଷ ତଳେ ଲୁଚି ରହିବା କଥା ପୂର୍ବରୁ ଲିପିବଦ୍ଧ କରିଛୁ । ସେହି ରାତିରେ ଠାକୁର ଆହାରାଦି ପରେ ଦକ୍ଷିଣେଶ୍ୱର ଆସି ପୁନରାୟ କିପରି କ୍ଷୁଧାରେ କାତର ହୋଇ ସ୍ତ୍ରୀ-ଭକ୍ତମାନେ ଆଣିଥିବା ବଡ଼ ସରଖଣ୍ଡିକୁ ପ୍ରାୟ ଖାଇ ଦେଇଥିଲେ, ସେକଥା ମଧ୍ୟ ଆମେ ପାଠକଙ୍କୁ କହିଛୁ । ସେହିପରି ଆଉ କେତୋଟି ଘଟଣାର ଉଲ୍ଲେଖ ଆମେ ଏଠାରେ କରିବୁ । ଅଳ୍ପ କେତୋଟି ଘଟଣା ହିଁ କହିବୁ, କାରଣ ଠାକୁରଙ୍କର

---

୧. ଘନ କ୍ଷୀରରୁ ପ୍ରସ୍ତୁତ ମଲାଇ ଜାତୀୟ ମିଠା ।

୨. ପୂର୍ବାର୍ଦ୍ଧ, ପ୍ରଥମ ଅଧ୍ୟାୟ ଦେଖ ।

ଜୀବନରେ ସେହି ପ୍ରକାର ଘଟଣା ପ୍ରାୟ ପ୍ରତିଦିନ ଘଟୁଥିଲା । ତେଣୁ ସେବିଷୟରେ ସମସ୍ତ ଘଟଣା ଲିପିବଦ୍ଧ କରିବା ଅସମ୍ଭବ ।

### ଦ୍ୱିତୀୟ ଦୃଷ୍ଟାନ୍ତ—କାମାରପୁକୁରରେ ସେରେ ମିଠାଇ ଓ ମୁଢ଼ି ଖାଇବା :

ମ୍ୟାଲେରିଆର ପ୍ରଥମ ଆଗମନ ଓ ପ୍ରକୋପରେ 'ସୁଜଳା ସୁଫଳା ଶସ୍ୟଶ୍ୟାମଳା' ବଙ୍ଗର ଅଧିକାଂଶ ଅଞ୍ଚଳ ପ୍ରପୀଡ଼ିତ ହୋଇ ବିଧ୍ୱସ୍ତ ଓ ଜନଶୂନ୍ୟ ହେବା ପୂର୍ବ ପର୍ଯନ୍ତ ହୁଗୁଳୀ, ବର୍ଦ୍ଧମାନ ପ୍ରଭୃତି ଜିଲ୍ଲାର ଲୋକମାନଙ୍କର ସ୍ୱାସ୍ଥ୍ୟ ଯେ ଭାରତବର୍ଷର ଉତ୍ତର-ପଶ୍ଚିମ ପ୍ରଦେଶର ଲୋକମାନଙ୍କ ସ୍ୱାସ୍ଥ୍ୟ ଅପେକ୍ଷା କୌଣସି ଅଂଶରେ ନ୍ୟୂନ ନ ଥିଲା, ସେ କଥା ଏବେ ମଧ୍ୟ ପ୍ରାଚୀନଲୋକମାନଙ୍କ ମୁହଁରୁ ଶୁଣିବାକୁ ମିଳେ । ସେମାନେ କହନ୍ତି, ଲୋକମାନେ ସେତେବେଳେ ବର୍ଦ୍ଧମାନ ପ୍ରଭୃତି ସ୍ଥାନକୁ ଜଳବାୟୁ ପରିବର୍ତ୍ତନ ପାଇଁ ଯାଉଥିଲେ । କାମାରପୁକୁର ବର୍ଦ୍ଧମାନଠାରୁ ବାର-ତେର କ୍ରୋଶ ଦୂରରେ ଅବସ୍ଥିତ । ସେହି ସ୍ଥାନର ଜଳବାୟୁ ସେତେବେଳେ ବିଶେଷ ସ୍ୱାସ୍ଥ୍ୟକର ଥିଲା । ଦ୍ୱାଦଶ ବର୍ଷ ଅଦୃଷ୍ଟପୂର୍ବ କଠୋର ତପସ୍ୟାରେ ଏବଂ ପରେ ମଧ୍ୟ ଶରୀର ପ୍ରତି ଲକ୍ଷ୍ୟ ନ ରଖି ନିରନ୍ତର 'ଭାବମୁଖ'ରେ ରହିବାରୁ ଠାକୁରଙ୍କର ବଜ୍ରସମ ଦୃଢ଼ ଶରୀର ମଧ୍ୟ କ୍ରମେ କ୍ରମେ ଯେ ଶାରୀରିକ ପରିଶ୍ରମରେ ଅପାରଗ ଏବଂ ବେଳେ ବେଳେ ପ୍ରବଳ ରୋଗାକ୍ରାନ୍ତ ହୋଇପଡ଼ିଥିଲା, ଏକଥା ଆମେ ପୂର୍ବରୁ କହିଛୁ । ସେଥିପାଇଁ ଠାକୁର ସାଧନକାଳ ପରେ ପ୍ରତିବର୍ଷ ଚାତୁର୍ମାସ୍ୟ ସମୟ ନିଜର ଜନ୍ମଭୂମି କାମାରପୁକୁରରେ ହିଁ କଟାଇ ଆସୁଥିଲେ । ପରମ ଅନୁଗତ ସେବକ ଭଣଜା ହୃଦୟ ତାଙ୍କ ସହିତ ଯାଉଥିଲେ ଏବଂ ମଥୁରବାବୁ ଯିବା-ଆସିବାର ସମସ୍ତ ଖର୍ଚ୍ଚ ବ୍ୟତୀତ ପଲ୍ଲୀ ଗ୍ରାମରେ ତାଙ୍କର ଯେପରି ଅଭାବ ନ ହୁଏ, ସେଥିପାଇଁ ସଂସାରର ଆବଶ୍ୟକୀୟ ଯାବତୀୟ ପଦାର୍ଥ ତାଙ୍କ ସହିତ ପଠାଇ ଦେଉଥିଲେ । ଆମେ ଶୁଣିଛୁ ଲୋକେ ନିଜ କନ୍ୟାକୁ ପ୍ରଥମ ଥର ଶ୍ୱଶୁରାଳୟ ପଠାଇବା ବେଳେ ଯେପରି ଦ୍ୱୀପ-ସଳିତା ଏବଂ ଆହାରାନ୍ତେ ବ୍ୟବହାର୍ଯ୍ୟ ଦାନ୍ତ ସଫା କରିବା କାଠି ପର୍ଯ୍ୟନ୍ତ ସଙ୍ଗରେ ଦେଇଥାଆନ୍ତି, ମଥୁରବାବୁ ଓ ତାଙ୍କର ପରମ ଭକ୍ତିମତୀ ଗୃହିଣୀ ଶ୍ରୀମତୀ ଜଗଦମ୍ବା ଦାସୀ ଠାକୁରଙ୍କୁ କାମାରପୁକୁର ପଠାଇବା ବେଳେ ସେହିପରି ଭାବରେ ସଙ୍ଗରେ ସମସ୍ତ 'ଘରକରଣା' ଜିନିଷ ଦେଇ ପଠାଉଥିଲେ । କାରଣ ଏକଥା ତାଙ୍କୁ ଅବିଦିତ ନ ଥିଲା ଯେ, କାମାରପୁକୁରରେ ଠାକୁରଙ୍କର ସଂସାର ଯେପରି ଶିବଙ୍କ ସଂସାର । ସଞ୍ଚୟର ନାମଗନ୍ଧ ଠାକୁରଙ୍କ ପିତୃ-ପିତାମହ କାଳରୁ ନ ଥିଲା । ସତ୍‌ପଥରେ ରହି ଯାହା ଯେତେବେଳେ ମିଳିଥାଏ ତାହା ଖାଇବା ଏବଂ ରଘୁବୀରଙ୍କର ନାମରେ ପ୍ରଦତ୍ତ ମାତ୍ର ଦେଢ଼ ବିଘା ଜମିରେ ଯେତିକି ଧାନ ଫସଲ ହୁଏ ସେଥିରେ ହିଁ ସାରା ବର୍ଷ ସଂସାର ଚଳାଇବା

ସେହି ପରିବାରର ରୀତି ଥିଲା ! ଗ୍ରାମର ତେଜରାତି ଦୋକାନ ହିଁ ଏହି ପବିତ୍ର ଦେବ ସଂସାରର ଭଣ୍ଡାର-ସ୍ୱରୂପ ଥିଲା । ଯଦି ବିଦାଖିରୁ କିଛି ପଇସା ପତ୍ର ମିଳିଲା ତେବେ ହିଁ ସେହି ଭଣ୍ଡାରରୁ ସଂସାରର ବ୍ୟବହାର୍ଯ୍ୟ ପନିପରିବା ତେଲ-ଲୁଣ ଇତ୍ୟାଦି ସେଦିନ ପାଇଁ ଆସୁଥିଲା, ନହେଲେ ପୋଖରୀ କୂଳରେ ଅଯତ୍ନରେ ବଢ଼ିଥିବା ଶାଗ ତୋଳିଆଣି ଆନନ୍ଦରେ ଜୀବନଧାରଣ କରାହେଉଥିଲା । ଆଉ ସବୁ ସମୟରେ ସମସ୍ତ ବିଷୟରେ ଯାହା କିଛି କରିବା ପାଇଁ ଜୀବନ୍ତ ଜାଗ୍ରତ କୁଳଦେବତା ରଘୁବୀର ଥିଲେ । ସେସମସ୍ତ କଥା ଜଣାଥିଲା ବୋଲି ହିଁ ମଥୁରବାବୁ କେତେବିଘା ଧାନଜମି ରଘୁବୀରଙ୍କ ନାମରେ କିଣି ଦେବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ ଏବଂ ଠାକୁରଙ୍କୁ ଗ୍ରାମକୁ ପଠାଇବାବେଳେ ସଂସାରର ଆବଶ୍ୟକୀୟ ସମସ୍ତ ପଦାର୍ଥ ତାଙ୍କ ସାଙ୍ଗରେ ପଠାଉଥିଲେ ।

ପୂର୍ବରୁ କହିଛୁ, ଠାକୁର ଚାତୁର୍ମାସ୍ୟ ସମୟରେ ପ୍ରାୟ ପ୍ରତିବର୍ଷ କାମାରପୁକୁର ଆସୁଥିଲେ । ମ୍ୟାଲେରିଆ ପ୍ରାଦୁର୍ଭାବ ସମୟରେ ଏହିପରି ଗୋଟିଏ ବର୍ଷ ଆସି ଜ୍ୱରରୋଗରେ ବିଶେଷ କଷ୍ଟ ଭୋଗ କରିବାରୁ, ସେବେଠାରୁ ଆଉ ଗ୍ରାମକୁ ଯିବେ ନାହିଁ ବୋଲି ସଂକଳ୍ପ କରିଥିଲେ ଏବଂ ଆଉ କେବେ ସେଠାକୁ ଯାଇ ନ ଥିଲେ । ଠାକୁରଙ୍କର ତିରୋଧାନର ୮/୧୦ ବର୍ଷ ପୂର୍ବରୁ ସେ ସେହି ପ୍ରକାର ସଂକଳ୍ପ କରିଥିଲେ । ଯାହାହେଉ, ସେବର୍ଷ ସେ ପୂର୍ବ ଥର ପରି କାମାରପୁକୁର ଆସି ଅବସ୍ଥାନ କରୁଥିଲେ । ତାଙ୍କୁ ଦେଖିବାକୁ ଏବଂ ତାଙ୍କର ଧର୍ମ-ଆଳାପ ଶୁଣିବା ପାଇଁ ଗୃହରେ ପଡ଼ୋଶୀ ସ୍ତ୍ରୀ-ପୁରୁଷମାନଙ୍କର ଭିଡ଼ ସର୍ବଦା ଲାଗିରହୁଥିଲା । ଆନନ୍ଦର ସତେ ଯେପରି ହାଟ-ବଜାର ବସିଯାଇଥିଲା । ଘରର ସ୍ତ୍ରୀଲୋକମାନେ ତାଙ୍କୁ ପାଇ ଆନନ୍ଦ ମନରେ ତାଙ୍କର ଏବଂ ତାଙ୍କୁ ଦେଖିବାକୁ ଆସୁଥିବା ସମସ୍ତ ଲୋକଙ୍କ ସେବାରେ ଲାଗିଥାଆନ୍ତି । ଦିନ ପରେ ଦିନ, ସୁଖ ଦିନଗୁଡ଼ିକ କିପରି ଯେ କଟିଯାଉଛି ତାହା କେହି କେବେ ଅନୁଭବ କରିପାରୁ ନ ଥିଲେ । ଘରେ ଏହି ସମୟରେ ଠାକୁରଙ୍କର ଭ୍ରାତୃଷ୍ପୁତ୍ର ଶ୍ରୀଯୁକ୍ତ ରାମଲାଲ ଦାଦାଙ୍କର ପୂଜନୀୟା ମାତାଠାକୁରାଣୀ ହିଁ ଗୃହିଣୀ ସ୍ୱରୂପା ଥିଲେ ଏବଂ ତାଙ୍କର କନ୍ୟା ଶ୍ରୀମତୀ ଲକ୍ଷ୍ମୀଦିଦି ଓ ପରମାରାଧ୍ୟା ଶ୍ରୀଶ୍ରୀମାତାଠାକୁରାଣୀ ବାସ କରୁଥିଲେ ।

ରାତ୍ରି ପ୍ରାୟ ଏକପ୍ରହର । ପ୍ରତିବେଶୀ ସ୍ତ୍ରୀ-ପୁରୁଷମାନେ ରାତି ପାଇଁ ବିଦାୟ ନେଇ ନିଜ ନିଜ ଗୃହକୁ ପ୍ରସ୍ଥାନ କରିଛନ୍ତି । ଠାକୁରଙ୍କର କେତେଦିନ ହେଲା ଅଗ୍ନିମାନ୍ଦ୍ୟ ଓ ପେଟ ଖରାପ ହୋଇଛି, ତେଣୁ ରାତ୍ରିରେ ସାଗୁ-ବାର୍ଲି ବ୍ୟତୀତ ଅନ୍ୟ କିଛି ଖାଉ ନ ଥାନ୍ତି । ଆଜି ମଧ୍ୟ ରାତ୍ରିରେ ଦୁଧ-ବାର୍ଲି ପିଇ ଶୟନ କଲେ । ଘରର ସ୍ତ୍ରୀଲୋକମାନେ ତାଙ୍କର ଭୋଜନ ଓ ଶୟନ ପରେ ନିଜେ ଆହାରାଦି କରି ଏବଂ ରାତ୍ରିରେ କରଣୀୟ ସଂସାରର କର୍ମ ଶେଷ କରି ଶୟନର ଉଦ୍ୟୋଗ କରୁଥାଆନ୍ତି ।

ହଠାତ୍ ଠାକୁରେ ତାଙ୍କର ଶୟନଗୃହର ଦ୍ୱାର ଖୋଲି ଭାବାବେଶରେ ଟଳମଳ ଅବସ୍ଥାରେ ବାହାରକୁ ଆସିଲେ ଏବଂ ରାମଲାଲ ଦାଦାଙ୍କର ମାତା ପ୍ରଭୃତିଙ୍କୁ ଡାକି କହିବାକୁ ଲାଗିଲେ—"ତୁମେ ସବୁ ଶୋଇଲ ଯେ ? ମୋତେ କିଛି ଖାଇବାକୁ ନ ଦେଇ ଶୋଇଲ ଯେ ?" ରାମଲାଲଙ୍କ ମାତା ଆଶ୍ଚର୍ଯ୍ୟ ହୋଇ କହିଲେ—ଓ ମା, ସେ କ'ଣ ଗୋ ? ତୁମେ ଯେ ଏଇମାତ୍ର ଖାଇଲ ?

ଠାକୁର—'କେଉଁଠି ଖାଇଲି ? ଖାଇ ନାହିଁ ତ ? ମୁଁ ତ ଏଇ ମାତ୍ର ଦକ୍ଷିଣେଶ୍ୱରରୁ ଆସିଲି—କିଏ ଖାଇବାକୁ ଦେଲା ?' ସ୍ତ୍ରୀ-ଲୋକମାନେ ଅବାକ୍ ହୋଇ ପରସ୍ପରର ମୁହଁକୁ ଚାହିଁବାକୁ ଲାଗିଲେ । ବୁଝିଲେ, ଠାକୁର ଭାବାବେଶରେ ଏପରି କହୁଛନ୍ତି । କିନ୍ତୁ ଉପାୟ କ'ଣ ? ଘରେ ତ ଏପରି କିଛି ଖାଇବା ଜିନିଷ ନାହିଁ ଯାହା ଠାକୁରଙ୍କୁ ଖାଇବାକୁ ଦିଆଯାଇପାରିବ ! ଏବେ ଉପାୟ କ'ଣ ? ତେଣୁ ରାମଲାଲ ଦାଦାଙ୍କ ମାତା ଡରି ଡରି କହିଲେ—"ଘରେ ଏବେ ତ' ମୁଢ଼ି ବ୍ୟତୀତ ଅନ୍ୟ କିଛି ଖାଦ୍ୟ ନାହିଁ, ତେଣୁ ମୁଢ଼ି ଖାଇବେ ? ମୁଢ଼ି ଦିଟା ଖାଅ, ସେଥିରେ ପେଟ ଖରାପ ହେବ ନାହିଁ ।" ଏହା କହି ଥାଳିରେ ମୁଢ଼ି ଆଣି ଠାକୁରଙ୍କ ସମ୍ମୁଖରେ ରଖିଲେ । ଠାକୁର ତାହା ଦେଖି ଛୋଟ ପିଲାଙ୍କ ପରି ରାଗିଯାଇ ପଛକୁ ଫେରି ବସିଲେ ଏବଂ କହିବାକୁ ଲାଗିଲେ—"ଖାଲି ମୁଢ଼ି ମୁଁ ଖାଇବି ନାହିଁ ।" ବହୁତ ବୁଝାଇ କୁହାଗଲା, "ତୁମର ପେଟ ଖରାପ, ଅନ୍ୟ କିଛି ଖାଇବା ଚଳିବ ନାହିଁ; ପୁଣି ଦୋକାନ ସବୁ ଏତେ ରାତିରେ ବନ୍ଦ, ତେଣୁ ସାଗୁ-ବାର୍ଲି କିଣି ଆଣି ତିଆରି କରିଦେବି ତାର ମଧ୍ୟ ଉପାୟ ନାହିଁ । ଆଜି ଏତିକି ଖାଇ ରୁହ, କାଲି ସକାଳୁ ଉଠି ଝୋଳ-ଭାତ ରାନ୍ଧିଦେବୁ"ଇତ୍ୟାଦି; କିନ୍ତୁ ସେକଥା ଶୁଣୁଛି କିଏ ? ଅଭିମାନୀ ବାଳକ ସଦୃଶ ଠାକୁରଙ୍କ ସେହି ଗୋଟେ କଥା—"ତାହା ମୁଁ ଖାଇବି ନାହିଁ" ।

ଅଗତ୍ୟା ରାମଲାଲ ଦାଦା ବାହାରକୁ ଯାଇ ଡକାଡକି କରି ଦୋକାନୀକୁ ନିଦରୁ ଉଠାଇ ତା ନିକଟରୁ ଏକ ସେର (୨କିଲୋରୁ ଉର୍ଦ୍ଧ୍ୱ) ମିଠାଇ କିଣି ଆଣିଲେ । ସେହି ଏକ ସେର ମିଠାଇ ସହିତ ଜଣେ ସାଧାରଣ ଲୋକ ଯେତେ ଖାଇପାରେ ତା' ଅପେକ୍ଷା ଅଧିକ ମୁଢ଼ି ଥାଳିରେ ଢାଳି ଦିଆଗଲା । ତେବେ ଯାଇ ଠାକୁର ଆନନ୍ଦ କରି ଖାଇବାକୁ ବସିଲେ ଏବଂ ତାହା ସବୁଯାକ ଖାଇ ଦେଲେ । ସେତେବେଳେ ଘରେ ସମସ୍ତଙ୍କର ଅତ୍ୟନ୍ତ ଭୟ ହେଲା—'ଏହି ପେଟରୋଗୀ ମଣିଷ, ମାସର ଅଧାଦିନ ସାଗୁ-ବାର୍ଲି ଖାଇ ରହନ୍ତି, ଆଉ ଏତେ ରାତିରେ ଏତେ ସବୁ ଖାଇବା ! କାଲି ନିଶ୍ଚୟ କିଛି ଗୋଟାଏ ଅଘଟଣା ଘଟିବ !' କିନ୍ତୁ କି ଆଶ୍ଚର୍ଯ୍ୟ, ପରଦିନ ଦେଖାଗଲା ଠାକୁରଙ୍କ ଶରୀର ବେଶ୍ ଭଲ ଅଛି, ରାତିରେ ଖାଇବା ଯୋଗୁଁ କୌଣସି ପ୍ରକାର ଅସୁସ୍ଥତା ନାହିଁ ।

### ତୃତୀୟ ଦୃଷ୍ଟାନ୍ତ—ଜୟରାମବାଟୀରେ ଗୋଟିଏ ମହୁରାଳୀ ମାଛ ଦେଇ ମାଣେ ଚାଉଳର ପଖାଳ ଭାତ ଖାଇବା :

ଆଉ ଥରେ କାମାରପୁକୁରରେ ଥିବା ସମୟରେ ଠାକୁରଙ୍କୁ ତାଙ୍କ ଶ୍ୱଶୁରାଳୟ ଜୟରାମବାଟୀକୁ ନିଆଯାଇଥିଲା । ରାତ୍ରି ଭୋଜନ ପରେ ଶୟନ କରିବାର କିଛିକ୍ଷଣ ପରେ ଠାକୁର ଉଠି କହିଲେ—''ବହୁତ ଭୋକ ହେଉଛି ।'' ଘରର ସ୍ତ୍ରୀଲୋକମାନେ ଅତ୍ୟନ୍ତ ଚିନ୍ତିତ—କ'ଣ ଖାଇବାକୁ ଦେବେ, ଘରେ ତ କିଛି ନାହିଁ । କାରଣ ସେଦିନ ଘରେ ପୂର୍ବପୁରୁଷମାନଙ୍କର କାହାରି ଜଣଙ୍କର ବାର୍ଷିକ ଶ୍ରାଦ୍ଧ ବା ସେପରି କିଛି କ୍ରିୟାକର୍ମ ହୋଇଥିଲା ଏବଂ ସେଥିପାଇଁ ଗୃହରେ ଅନେକ ଲୋକଙ୍କ ସମାଗମ ହୋଇଥିବାରୁ ସମସ୍ତ ପ୍ରକାର ଖାଦ୍ୟାଦି ଶେଷ ହୋଇଯାଇଥିଲା । କେବଳ ହାଣ୍ଡିରେ କିଛି ପଖାଳ ଭାତ ଥିଲା । ଶ୍ରୀଶ୍ରୀମାତାଠାକୁରାଣୀ ଡରି ଡରି ଠାକୁରଙ୍କୁ ସେକଥା ଜଣାଇବାରୁ ଠାକୁର କହିଲେ, ''ତାହା ନେଇ ଆସ ।'' ସେ କହିଲେ, ''କିନ୍ତୁ ତରକାରୀ ତ' ନାହିଁ ।'' ଠାକୁର କହିଲେ, ଦେଖୁନା, ଭଲ କରି ଖୋଜି ଦେଖ; ତୁମେ 'ମାଛ ଝାଲ (ରାଗ-ହଳଦୀ ମାଛ) କରିଥିଲ । ଦେଖ ତ ଯାଇ, ତାହା ଟିକିଏ ଅଛି କି ନାହିଁ ?'

ଶ୍ରୀଶ୍ରୀମାତାଠାକୁରାଣୀ ଅନୁସନ୍ଧାନ କରି ଦେଖିଲେ, ମାଛ ରନ୍ଧା ପାତ୍ରରେ ଗୋଟିଏ କ୍ଷୁଦ୍ର ମହୁରାଳୀ ମାଛ ଓ ସାମାନ୍ୟ ଝୋଳ ଅଛି । ଅଗତ୍ୟା ତାହା ହିଁ ଆଣିଲେ । ଏହା ଦେଖି ଠାକୁରଙ୍କର କି ଆନନ୍ଦ ! ସେହି ରାତ୍ରିରେ ସେ ପଖାଳ ଖାଇବାକୁ ବସିଲେ ଏବଂ ସେହି ଗୋଟିଏ କ୍ଷୁଦ୍ର ମାଛ ଦେଇ ପ୍ରାୟ ମାଣେ ଚାଉଳର ଭାତ ଖାଇ ଶାନ୍ତ ହେଲେ ।

### ଚତୁର୍ଥ ଦୃଷ୍ଟାନ୍ତ—ଦକ୍ଷିଣେଶ୍ୱରରେ ରାତି ଦୁଇପ୍ରହରରେ ସେରେ ହାଲୁଆ ଖାଇବା :

ଦକ୍ଷିଣେଶ୍ୱରରେ ଥିବା ସମୟରେ ମଧ୍ୟ ବେଳେ ବେଳେ ସେପ୍ରକାର ହେଉଥିଲା । ଦିନେ ରାତି ଦୁଇପ୍ରହର ସମୟରେ ଉଠି ଠାକୁର ରାମଲାଲ ଦାଦାଙ୍କୁ ଡାକି କହିଲେ, ''ଖୁବ୍ ଭୋକ ହେଉଅଛି, କ'ଣ ହେବ ?''

ଘରେ ଅନ୍ୟ ଦିନମାନଙ୍କରେ ନାନାପ୍ରକାର ମିଷ୍ଟାନ୍ନ ଆଦି ମହଜୁତ ଥାଏ, ସେଦିନ ଖୋଜିଲା ବେଳକୁ କିଛି ନାହିଁ ! ଅଗତ୍ୟା ରାମଲାଲ ଦାଦା ନହବତ ନିକଟକୁ ଯାଇ ଶ୍ରୀଶ୍ରୀମାତାଠାକୁରାଣୀ ଓ ତାଙ୍କ ସହିତ ଥିବା ସ୍ତ୍ରୀଭକ୍ତମାନଙ୍କୁ ସେହିକଥା ଜଣାଇଲେ । ସେମାନେ ତରତର ହୋଇ ଉଠି କୁଟାକାଠି ଦେଇ ଚୁଲ୍ଲୀ ଜାଳି ଏକ ବଡ଼ ପଥରବେଲାରେ ପ୍ରାୟ ସେରେ ହାଲୁଆ ତିଆରି କରି ଠାକୁରଙ୍କ ଘରକୁ ପଠାଇଲେ । ଜଣେ ସ୍ତ୍ରୀ-ଭକ୍ତ ହିଁ ତାହା ନେଇ ଆସିଲେ । ସ୍ତ୍ରୀ-ଭକ୍ତ ଜଣକ ଘରେ ପ୍ରବେଶ କରି ଚମକିପଡ଼ି ଦେଖିଲେ ଘରର ଏକ କୋଣରେ ଦୀପଟିଏ ମିଞ୍ଜି

ମିଞ୍ଜି ହୋଇ ଜଳୁଛି, ଠାକୁର ଘର ମଧ୍ୟରେ ଭାବାବିଷ୍ଟ ହୋଇ ପଦଚାରଣ କରୁଛନ୍ତି ଏବଂ ଭ୍ରାତୁଷ୍ପୁତ୍ର ରାମଲାଲ ନିକଟରେ ବସିଛନ୍ତି । ସେଇ ଧୀର ସ୍ଥିର ନିରବ ନିସ୍ତବ୍ଧ ନିଶୀଥରେ ଠାକୁରଙ୍କର ଗମ୍ଭୀର ଭାବୋଜ୍ଜ୍ୱଳ ବଦନ, ସେହି ଉନ୍ମାଦବତ୍ ମତୁଆଲା ନଗ୍ନ ବେଶ ଓ ବିଶାଳ ନୟନରେ ସ୍ଥିର ଅନ୍ତର୍ମୁଖୀ ଦୃଷ୍ଟି — ଯାହା ସମକ୍ଷରେ ସମଗ୍ର ବିଶ୍ୱ ଇଚ୍ଛାମାତ୍ରେ ସମାଧିରେ ଲୁପ୍ତ ହୋଇ ଇଚ୍ଛାମାତ୍ରେ ପ୍ରକାଶିତ ହେଉଥିଲା — ସେହି ଅନନ୍ୟମନରେ ଗୁରୁଗମ୍ଭୀର ପଦବିକ୍ଷେପ ଓ ଉଦ୍ଦେଶ୍ୟବିହୀନ ସାନନ୍ଦ ବିଚରଣ ଦେଖି ସ୍ତ୍ରୀଭକ୍ତର ହୃଦୟ କେଉଁ ଏକ ଅପୂର୍ବ ଭାବରେ ପୂର୍ଣ୍ଣ ହେଲା ! ତାଙ୍କର ମନେହେବାକୁ ଲାଗିଲା, ଠାକୁରଙ୍କ ଶରୀର ଯେପରି ଦୈର୍ଘ୍ୟ ପ୍ରସ୍ଥରେ ବଢ଼ି ବହୁତ ବଡ଼ ହୋଇଯାଇଛି । ସେ ଯେପରି ଏହି ପୃଥିବୀର ଲୋକ ନୁହଁନ୍ତି ! ଯେପରି ସ୍ୱର୍ଗର କୌଣସି ଦେବତା ନରଶରୀର ଧାରଣ କରି ଦୁଃଖ-ହାହାକାର-ପୂର୍ଣ୍ଣ ନରଲୋକରେ ରାତ୍ରିର ତିମିରାବରଣରେ ଗୁପ୍ତ ଲୁକ୍କାୟିତ ଭାବରେ ନିର୍ଭୀକ ପଦସଞ୍ଚାରରେ ବିଚରଣ କରୁଛନ୍ତି ଏବଂ କିପରି ଭାବରେ ଏହି ଶ୍ମଶାନଭୂମିକୁ ଦେବଭୂମିରେ ପରିଣତ କରିବେ, କରୁଣାପୂର୍ଣ୍ଣ ହୃଦୟରେ ତାହାର ଉପାୟ ନିର୍ଦ୍ଧାରଣରେ ଅନନ୍ୟମନା ହୋଇ ରହିଛନ୍ତି ! ଯେଉଁ ଠାକୁରଙ୍କୁ ସେ ସର୍ବଦା ଦେଖନ୍ତି ଇଏ ସେଇ ଠାକୁର ନୁହଁନ୍ତି । ତାଙ୍କର ଶରୀର ରୋମାଞ୍ଚିତ ହୋଇ ଉଠିଲା ଏବଂ ତାଙ୍କ ନିକଟକୁ ଯିବାକୁ ଏକ ଅବ୍ୟକ୍ତ ଭୟ ହେବାକୁ ଲାଗିଲା ।

ଠାକୁର ବସିବାପାଇଁ ରାମଲାଲ ପୂର୍ବରୁ ଆସନ ପକାଇଥିଲେ । ସ୍ତ୍ରୀ-ଭକ୍ତ ଜଣକ କୌଣସି ପ୍ରକାରେ ଯାଇ ସେହି ଆସନ ସମ୍ମୁଖରେ ହାଲୁଆ ପାତ୍ରଟିକୁ ରଖିଦେଲେ । ଠାକୁର ଖାଇବାକୁ ବସିଲେ ଏବଂ କ୍ରମେ କ୍ରମେ ଭାବାବିଷ୍ଟ ଅବସ୍ଥାରେ ସମସ୍ତ ହାଲୁଆ ଖାଇଦେଲେ । ଠାକୁର କ'ଣ ସ୍ତ୍ରୀ ଭକ୍ତଟିର ମନୋଭାବ ବୁଝି ପାରିଥିଲେ ? କିଏ ଜାଣେ ! କିନ୍ତୁ ଖାଉ ଖାଉ ସ୍ତ୍ରୀ-ଭକ୍ତ ଜଣକ ନିର୍ବାକ ଭାବରେ ତାଙ୍କୁ ଅନାଇ ରହିଥିବା ଦେଖି ପଚାରିଲେ — "କୁହ ଦେଖି, କିଏ ଖାଉଛି ? ମୁଁ ଖାଉଛି, ନା ଅନ୍ୟ କିଏ ଖାଉଛି ?"

ସ୍ତ୍ରୀ-ଭକ୍ତଟି କହିଲେ, ମୋର ମନେ ହେଉଛି, ଆପଣଙ୍କ ଭିତରେ ଯେପରି ଆଉ ଜଣେ କେହି ରହିଛନ୍ତି, ସେ ହିଁ ଖାଉଛନ୍ତି । 'ଠିକ୍ କହିଛ' କହି ଠାକୁର ହସିବାକୁ ଲାଗିଲେ ।

### ପ୍ରବଳ ମାନସିକ-ଭାବ ଯୋଗୁଁ ଠାକୁରଙ୍କର ଶରୀର ପରିବର୍ତ୍ତିତ ହେବା :

ଏହିପରି ଅନେକ ଘଟଣା ଉଲ୍ଲେଖ କରାଯାଇପାରେ । ଦେଖାଯାଏ, ପ୍ରବଳ ମାନସିକ ଭାବତରଙ୍ଗରେ ସେସବୁ ସମୟରେ ଠାକୁରଙ୍କ ଶରୀରର ଏତେଟା ପରିବର୍ତ୍ତନ ହେଉଥିଲା ଯେ, ତାଙ୍କୁ ସେତେବେଳେ ଅନ୍ୟ ଏକ ବ୍ୟକ୍ତି ବୋଲି

ବୋଧ ହେଉଥିଲା ଏବଂ ତାଙ୍କର ଚାଲି-ଚଳନ, ଆହାର-ବିହାର, ବ୍ୟବହାର ପ୍ରଭୃତି ସମସ୍ତ ବିଷୟ ଯେପରି ଅନ୍ୟ ପ୍ରକାରର ହୋଇଯାଉଥିଲା । ଅଥଚ ସେପରି ବିପରୀତ ଆଚରଣରେ ଭାବଭଙ୍ଗ ପରେ ମଧ୍ୟ ତାଙ୍କ ଶରୀରରେ କୌଣସି ପ୍ରକାର ବିକାର ଲକ୍ଷିତ ହେଉ ନ ଥିଲା । ଭିତରେ ଅବସ୍ଥିତ ମନ ଆମମାନଙ୍କର ସ୍ଥୂଳ ଶରୀରକୁ ସର୍ବକ୍ଷଣ ଭାଙ୍ଗୁଛି, ଗଢୁଛି, ନୂତନ କରି ନିର୍ମାଣ କରୁଛି—ଏହା ଆମେ ଜାଣି ମଧ୍ୟ ଜାଣିପାରୁ ନାହୁଁ, ଶୁଣି ମଧ୍ୟ ବିଶ୍ୱାସ କରୁ ନାହୁଁ । କିନ୍ତୁ ବାସ୍ତବିକ ଯେ ସେପରି ହେଉଅଛି ତାହାର ପ୍ରମାଣ ଆମେ ଏହି ଅଦ୍ଭୁତ ଠାକୁରଙ୍କର ଜୀବନର ଏହି ସାମାନ୍ୟ ଘଟଣାସମୂହର ଆଲୋଚନାରୁ ବେଶ୍ ବୁଝିପାରୁ । କିନ୍ତୁ ଏବେ ସେବିଷୟ ଏଠାରେ ସ୍ଥଗିତ ରଖି ଆମେ ପୂର୍ବ କଥାର ହିଁ ଅନୁସରଣ କରିବା ।

**ବୈଷ୍ଣବଚରଣଙ୍କ ଆଗମନରେ ଦକ୍ଷିଣେଶ୍ୱରରେ ପଣ୍ଡିତସଭା :**

କେହି କେହି କହନ୍ତି, ଭୈରବୀ ବ୍ରାହ୍ମଣୀଙ୍କ ନିକଟରୁ ମଥୁରବାବୁ ବୈଷ୍ଣବଚରଣଙ୍କ କଥା ପ୍ରଥମେ ଜାଣିପାରିଥିଲେ ଏବଂ ତାଙ୍କୁ ଆଣି ଠାକୁରଙ୍କ ଆଧ୍ୟାତ୍ମିକ ଅବସ୍ଥାସମୂହ ଶାରୀରିକ ବ୍ୟାଧିବିଶେଷ ସହିତ ଯେ ସମ୍ମିଳିତ ନୁହେଁ, ତାହା ପରୀକ୍ଷା କରିବା ପାଇଁ ମନସ୍ଥ କରିଥିଲେ । ଯାହାହେଉ, କିଛିଦିନ ପରେ ବୈଷ୍ଣବଚରଣ ନିମନ୍ତ୍ରିତ ହୋଇ ଦକ୍ଷିଣେଶ୍ୱରରେ ପହଞ୍ଚିଲେ । ସେହିଦିନ ଯେ ଏକ ଛୋଟ ପଣ୍ଡିତସଭାର ଆୟୋଜନ ହୋଇଥିଲା, ତାହା ଆମେ ଅନୁମାନ କରିପାରୁ । ବୈଷ୍ଣବଚରଣଙ୍କ ସହିତ କେତେଜଣ ଭକ୍ତ ସାଧକ ଓ ପଣ୍ଡିତ ନିଶ୍ଚିତ ଭାବରେ ଦକ୍ଷିଣେଶ୍ୱର ଆସିଥିଲେ; ତା'ସହିତ ବିଦୁଷୀ ବ୍ରାହ୍ମଣୀ ଓ ମଥୁରବାବୁଙ୍କର ଦଳବଳ, ସମସ୍ତେ ଠାକୁରଙ୍କ ପାଇଁ ଏକତ୍ର ସମ୍ମିଳିତ ହୋଇଥିଲେ । ସେଥିପାଇଁ ଆମେ ତାହାକୁ ସଭା ନାମରେ ଉଲ୍ଲେଖ କରୁଛୁ ।

**ଠାକୁରଙ୍କର ଅବସ୍ଥା ସମ୍ବନ୍ଧରେ ସେହି ସଭାରେ ଆଲୋଚନା :**

ଏଥର ଠାକୁରଙ୍କର ଅବସ୍ଥା ସମ୍ବନ୍ଧରେ ଆଲୋଚନା ଆରମ୍ଭ ହେଲା । ବ୍ରାହ୍ମଣୀ ଠାକୁରଙ୍କ ଅବସ୍ଥା ସମ୍ବନ୍ଧରେ ଯାହା ଲୋକମୁଖରେ ଶୁଣିଥିଲେ ଏବଂ ଯାହା ସ୍ୱୟଂ ନିଜେ ପ୍ରତ୍ୟକ୍ଷ କରିଥିଲେ, ସେସମସ୍ତ ଉଲ୍ଲେଖ କରି ଭକ୍ତିପଥର ପୂର୍ବ ପୂର୍ବ ପ୍ରସିଦ୍ଧ ଆଚାର୍ଯ୍ୟମାନଙ୍କ ଜୀବନରେ ଯେଉଁ ସମସ୍ତ ଅନୁଭବ ଆସି ଉପସ୍ଥିତ ହୋଇଥିଲା, ଶାସ୍ତ୍ରରେ ଲିପିବଦ୍ଧ ସେହି ସମସ୍ତ କଥା ସହିତ ଠାକୁରଙ୍କର ବର୍ତ୍ତମାନ ଅବସ୍ଥା ମିଳାଇ ତାହା ଏକଜାତୀୟ ଅବସ୍ଥା ବୋଲି ନିଜର ମତ ପ୍ରକାଶ କଲେ । ବୈଷ୍ଣବଚରଣଙ୍କୁ ସମ୍ବୋଧନ କରି କହିଲେ, ''ଆପଣ ଯଦି ଏବିଷୟରେ ଅନ୍ୟ ପ୍ରକାର ବିବେଚନା କରନ୍ତି, ତେବେ ସେପରି କାହିଁକି କରୁଛନ୍ତି, ତାହା ମୋତେ ବୁଝାଇ ଦିଅନ୍ତୁ ।'' ମାତା ଯେପରି ନିଜ ସନ୍ତାନକୁ ରକ୍ଷା କରିବା ପାଇଁ ବୀରଦର୍ପରେ ଦଣ୍ଡାୟମାନା ହୁଅନ୍ତି, ବ୍ରାହ୍ମଣୀ ମଧ୍ୟ ଯେପରି ଆଜି ସେହିପରି

କୌଣସି ଦୈବବଳରେ ବଳଶାଳିନୀ ହୋଇ ଠାକୁରଙ୍କ ପକ୍ଷ ସମର୍ଥନରେ ଅଗ୍ରସର ହେଲେ । ଆଉ ଠାକୁର—ଯାହା ପାଇଁ ଏତେ କାଣ୍ଡ ହେଉଛି—ତାଙ୍କର ଅବସ୍ଥା କଣ ଥିଲା ? ଆମେ ଯେପରି ଚକ୍ଷୁ ସମ୍ମୁଖରେ ଦେଖୁଛୁ, ଠାକୁର ବାଦାନୁବାଦରେ ନିବିଷ୍ଟ ସେସମସ୍ତ ଲୋକଙ୍କ ଭିତରେ ଅସଜଡ଼ା ଭାବରେ ବସି 'ନିଜ ଭିତରେ ନିଜେ' ଆନନ୍ଦ ଅନୁଭବ କରୁଛନ୍ତି ଓ ହସୁଛନ୍ତି; ପୁଣି କେତେବେଳେ ନିକଟସ୍ଥ ବଟୁଆରୁ ମହୁରି ବା କବାବ୍‌ଚିନି ପାଟିରେ ପକାଇ ସେମାନଙ୍କର କଥାବାର୍ତ୍ତା ଏପରି ଭାବରେ ଶୁଣୁଛନ୍ତି, ଯେପରି ସେସମସ୍ତ କଥା ଅନ୍ୟ କାହା ସମ୍ବନ୍ଧରେ ହେଉଅଛି ! ପୁଣି କେତେବେଳେ ଅବା ନିଜର ଅବସ୍ଥା ବିଷୟରେ କୌଣସି କଥା ''ଆଗୋ, ଏହିପରି ହୁଏ'' କହି ବୈଷ୍ଣବଚରଣଙ୍କ ଅଙ୍ଗ ସ୍ପର୍ଶ କରି ତାହାଙ୍କୁ କହୁଛନ୍ତି ।

**ଠାକୁରଙ୍କର ଅବସ୍ଥା ସମ୍ବନ୍ଧରେ ବୈଷ୍ଣବଚରଣଙ୍କ ସିଦ୍ଧାନ୍ତ :**

କେହି କେହି କହନ୍ତି, ବୈଷ୍ଣବଚରଣ ସାଧନପ୍ରସୂତ ସୂକ୍ଷ୍ମଦୃଷ୍ଟିସହାୟରେ ଠାକୁରଙ୍କୁ ଦେଖିବାମାତ୍ରେ ହିଁ ମହାପୁରୁଷ ବୋଲି ଚିହ୍ନି ପାରିଥିଲେ । କିନ୍ତୁ ଚିହ୍ନି ପାରନ୍ତୁ ବା ନ ପାରନ୍ତୁ, ଏହି କ୍ଷେତ୍ରରେ ସମସ୍ତ କଥା ଶୁଣି ଠାକୁରଙ୍କ ସମ୍ବନ୍ଧରେ ସେ ବ୍ରାହ୍ମଣୀଙ୍କର ସକଳ କଥା ହିଁ ହୃଦୟର ସହିତ ଯେ ଅନୁମୋଦନ କରିଥିଲେ, ସେହି କଥା ଆମେ ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ । କେବଳ ସେତିକି ନୁହେଁ—କହିଥିଲେ ଯେ, ଯେଉଁ ପ୍ରଧାନ ପ୍ରଧାନ ଉନବିଂଶ ପ୍ରକାର ଭାବ ବା ଅବସ୍ଥାର ସମ୍ମିଳନକୁ ଭକ୍ତିଶାସ୍ତ୍ର 'ମହାଭାବ' ବୋଲି ଆଖ୍ୟା ଦେଇଅଛି ଏବଂ ଯାହା କେବଳ ଭାବମୟୀ ଶ୍ରୀରାଧିକା ଓ ଭଗବାନ ଶ୍ରୀଚୈତନ୍ୟଦେବଙ୍କର ଜୀବନରେ ହିଁ ଏପର୍ଯ୍ୟନ୍ତ ଲକ୍ଷିତ ହୋଇଅଛି, ସେସମସ୍ତ ଲକ୍ଷଣଗୁଡ଼ିକ ଆଶ୍ଚର୍ଯ୍ୟ ଭାବରେ (ଠାକୁରଙ୍କୁ ଦେଖାଇ) ଏହାଙ୍କଠାରେ ପ୍ରକାଶିତ ବୋଲି ବୋଧ ହେଉଅଛି ! ଜୀବର ଭାଗ୍ୟକ୍ରମେ ଯଦି କେବେ ମଧ୍ୟ ଜୀବନରେ ମହାଭାବର ଆଭାସ ଉପସ୍ଥିତ ହୁଏ, ତେବେ ସେହି ଉଣେଇଶ ପ୍ରକାର ଅବସ୍ଥା ମଧ୍ୟରୁ ଖୁବ୍ ବେଶୀ ହେଲେ ଦୁଇ-ଚାରୋଟି ଅବସ୍ଥା ହିଁ ପ୍ରକାଶ ପାଏ । ଜୀବର ଶରୀର ସେହି ଉଣେଇଶ ପ୍ରକାର ଭାବର ଉଦ୍ଦାମ ବେଗ କଦାପି ଧାରଣ କରିବାକୁ ସମର୍ଥ ହୋଇ ନାହିଁ ଏବଂ ଶାସ୍ତ୍ର କହନ୍ତି, ପରେ ମଧ୍ୟ ଧାରଣ କରିବାକୁ ସମର୍ଥ ହେବ ନାହିଁ । ମଥୁରବାବୁ ପ୍ରଭୃତି ଉପସ୍ଥିତ ସମସ୍ତେ ବୈଷ୍ଣବଚରଣଙ୍କ କଥା ଶୁଣି ପୂରା ଅବାକ୍ ହୋଇଗଲେ ! ଠାକୁର ମଧ୍ୟ ସ୍ୱୟଂ ବାଳକ ପରି ବିସ୍ମୟ ଓ ଆନନ୍ଦରେ ମଥୁରଙ୍କୁ କହିଲେ, ''ଆହେ, କ'ଣ କହୁଛନ୍ତି ? ଯାହା ହେଉ, ବାଃ ଏଇଟା ରୋଗ ନୁହେଁ ଶୁଣି ମନରେ ଆନନ୍ଦ ହେଉଅଛି ।''

## କର୍ତ୍ତାଭଜାଦି ସମ୍ପ୍ରଦାୟ ସମ୍ବନ୍ଧରେ ଠାକୁରଙ୍କ ମତ :

ଠାକୁରଙ୍କର ଅବସ୍ଥା ସମ୍ବନ୍ଧରେ ସେହିପରି ମତପ୍ରକାଶ ବୈଷ୍ଣବଚରଣ ଯେ ସାଧାରଣ କଥା ଭାବରେ କରି ନ ଥିଲେ, ତାହାର ପ୍ରମାଣ ଆମେ ସେହି ଦିନଠାରୁ ବୈଷ୍ଣବଚରଣଙ୍କ ଠାକୁରଙ୍କ ପ୍ରତି ଶ୍ରଦ୍ଧା ଓ ଭଲପାଇବାର ଆଧିକ୍ୟରୁ ହିଁ ପାଇଥାଉ । ସେବେଠାରୁ ବୈଷ୍ଣବଚରଣ ଠାକୁରଙ୍କର ଦିବ୍ୟ ସଙ୍ଗ ପାଇଁ ପ୍ରାୟ ମଝିରେ ମଝିରେ ଦକ୍ଷିଣେଶ୍ୱର ଆସୁଥିଲେ । ନିଜର ଗୋପନୀୟ ରହସ୍ୟ ସାଧନସମୂହର କଥା ଠାକୁରଙ୍କୁ କହି ତାଙ୍କର ମତାମତ ଗ୍ରହଣ କରୁଥିଲେ ଏବଂ ବେଳେ ବେଳେ ନିଜ ସାଧନପଥର ସହଚର ଭକ୍ତ-ସାଧକଗଣ ମଧ୍ୟ ଯେପରି ଠାକୁରଙ୍କ ସହିତ ପରିଚିତ ହୋଇ ତାଙ୍କ ପରି କୃତାର୍ଥ ହୋଇପାରିବେ, ସେଥିପାଇଁ ସେମାନଙ୍କ ନିକଟକୁ ମଧ୍ୟ ଠାକୁରଙ୍କୁ ବୁଲାଇବାକୁ ନେଉଥିଲେ । ପବିତ୍ରତାର ଘନୀଭୂତ ପ୍ରତିମା-ସଦୃଶ ଦେବସ୍ୱଭାବ ଠାକୁର ଏମାନଙ୍କ ସହିତ ମିଳିତ ହୋଇ ଏବଂ ଏମାନଙ୍କର ଜୀବନ ଓ ଗୁପ୍ତ ସାଧନପ୍ରଣାଳୀସମୂହ ଅବଗତ ହୋଇ ଏହା ହୃଦୟଙ୍ଗମ କରିପାରିଥିଲେ ଯେ, ସାଧାରଣ ଦୃଷ୍ଟିରେ ଦୂଷଣୀୟ ଏବଂ ନିନ୍ଦନୀୟ ଅନୁଷ୍ଠାନଗୁଡ଼ିକ ମଧ୍ୟ ଯଦି କେହି 'ଭଗବାନ-ଲାଭ ନିମିତ୍ତ କରୁଅଛି', ବୋଲି ଦୃଢ଼ ଭାବ ହୃଦୟରେ ଧାରଣ କରି ସାଧନା ଭାବରେ ଅନୁଷ୍ଠାନ କରେ, ତେବେ ସେସମସ୍ତ ଦ୍ୱାରା ମଧ୍ୟ ଅଧଃପତନ ନ ହୋଇ କାଳକ୍ରମେ କ୍ରମଶଃ ତ୍ୟାଗ ଓ ସଂଯମର ଅଧିକାରୀ ହୋଇ ଧର୍ମପଥରେ ଅଗ୍ରସର ହୁଏ ଏବଂ ଭଗବଦ୍‌ଭକ୍ତି ଲାଭ କରେ । ଠାକୁରଙ୍କ ଶ୍ରୀମୁଖରୁ ଆମେ ଅନେକ ସମୟରେ ଶୁଣିଛୁ ଯେ, ତେବେ ପ୍ରାରମ୍ଭରେ ଏସମସ୍ତ ଅନୁଷ୍ଠାନର କଥା ଶୁଣି ଏବଂ କିଛି କିଛି ସ୍ୱଚକ୍ଷୁରେ ଦେଖି ଠାକୁରଙ୍କର ମନରେ ଏପରି ଭାବର ମଧ୍ୟ ଉଦୟ ହୋଇଥିଲା ଯେ, 'ଏମାନେ ସବୁ ବଡ଼ ବଡ଼ କଥା କହନ୍ତି ଅଥଚ ଏପରି ସବୁ ହୀନ ଅନୁଷ୍ଠାନ କାହିଁକି କରନ୍ତି ?' କିନ୍ତୁ ପରିଶେଷରେ ଏମାନଙ୍କ ମଧ୍ୟରେ ଯେଉଁମାନେ ଯଥାର୍ଥ ସରଳ ବିଶ୍ୱାସୀ ଥିଲେ, ସେମାନଙ୍କର ଆଧ୍ୟାତ୍ମିକ ଉନ୍ନତି ହେବା ଦେଖି ଠାକୁରଙ୍କର ମତ ପରିବର୍ତ୍ତନ କଥା ମଧ୍ୟ ଆମେ ତାଙ୍କଠାରୁ ଶୁଣିଛୁ । ସେହି ସମସ୍ତ ସାଧନାପଥ ଅବଲମ୍ବନକାରୀମାନଙ୍କ ଉପରୁ ଆମର ବିଦ୍ୱେଷବୁଦ୍ଧି ଦୂର କରିବା ପାଇଁ ଠାକୁର ତାଙ୍କର ସେହି ବିଷୟକ ଧାରଣା ଆମ ନିକଟରେ ବେଳେ ବେଳେ ଏହି ପ୍ରକାରରେ ପ୍ରକାଶ କରୁଥିଲେ—"ଆରେ ଦ୍ୱେଷବୁଦ୍ଧି କରିବୁ କାହିଁକି ? ଜାଣିବୁ ଏହା ମଧ୍ୟ ଗୋଟିଏ ପଥ, ତେବେ ଅଶୁଦ୍ଧ ପଥ । ଘର ଭିତରକୁ ପଶିବା ପାଇଁ ଯେପରି ଅନେକ ଦରଜା ଥାଏ—ମୁଖ୍ୟ ଫାଟକ, ବାଡ଼ିପଟ ଦରଜା, ପୁଣି ମଇଳା ସଫା କରିବା ପାଇଁ ମେହନ୍ତର ପଶିବା ପାଇଁ ମଧ୍ୟ ଗୋଟିଏ ଦରଜା ଥାଏ—ଏହା ମଧ୍ୟ ଜାଣିବ ସେହିପରି ଏକ ପଥ । ତେଣୁ ଯିଏ ଯେଉଁ ବାଟେ ପଶୁନା କାହିଁକି, ଘର ମଧ୍ୟରେ ପଶିଲେ ସମସ୍ତେ ଗୋଟିଏ

ସ୍ଥାନରେ ପହଞ୍ଚିଥାଆନ୍ତି । ତା'ବୋଲି କ'ଣ ତୁମମାନଙ୍କୁ ଏପରି କରିବାକୁ ହେବ ? ସେମାନଙ୍କ ସହିତ ମିଶିବାକୁ ହେବ !— ନା । ତେବେ ଦ୍ୱେଷ କରିବୁ ନାହିଁ ।''

## ପ୍ରବୃତ୍ତିପୂର୍ଣ୍ଣ ମନୁଷ୍ୟ କେଉଁ ପରି ଧର୍ମ ଚାହେଁ :

ପ୍ରବୃତ୍ତିପୂର୍ଣ୍ଣ ମାନବମନ ସହଜରେ କ'ଣ ନିବୃତ୍ତିପଥରେ ଯାଇପାରେ ? ସହଜରେ କ'ଣ ସେ ଶୁଦ୍ଧ ସରଳଭାବରେ ଈଶ୍ୱରଙ୍କୁ ଡାକିବାକୁ ଏବଂ ତାଙ୍କର ଶ୍ରୀପାଦପଦ୍ମ ଲାଭ କରିବାକୁ ଅଗ୍ରସର ହୁଏ ? ଶୁଦ୍ଧତା ଭିତରେ ସେ କିଛି କିଛି ଅଶୁଦ୍ଧତା ସ୍ୱେଚ୍ଛାରେ ଧରି ରଖିବାକୁ ଚାହେଁ; କାମକାଞ୍ଚନ ତ୍ୟାଗ କରି ମଧ ଏହାର ଟିକିଏ ଅଧେ ବାସନା ପ୍ରିୟବୋଧ କରିଥାଏ; ଅଶେଷ କଷ୍ଟ ସ୍ୱୀକାର କରି ଶୁଦ୍ଧଭାବରେ ଜଗଦମ୍ବାଙ୍କର ପୂଜା କରିବାକୁ ହେବ ଏକଥା ଲିପିବଦ୍ଧ କରିବା ପରେ ତାଙ୍କର ସନ୍ତୋଷ ନିମିତ୍ତ ବିପରୀତ କାମଭାବସୂଚକ ସଙ୍ଗୀତ ଗାଇବା ବିଧାନ ପୂଜାପଦ୍ଧତି ଭିତରେ ପୁରାଇ ଦିଏ ! ଏଥିରେ ବିସ୍ମିତ ହେବା କିମ୍ବା ନିନ୍ଦା କରିବାର କିଛି ନାହିଁ । ତେବେ ଏଥିରୁ ଏହା ହିଁ ବୁଝାଯାଏ ଯେ, ଅନନ୍ତକୋଟିବ୍ରହ୍ମାଣ୍ଡ–ନାୟିକା ମହାମାୟାଙ୍କ ପ୍ରବଳ ପ୍ରତାପରେ ଦୁର୍ବଳ ମାନବ କାମକାଞ୍ଚନର କି ସାଙ୍ଘାତିକ ବଜ୍ର–ବନ୍ଧନରେ ଆବଦ୍ଧ ରହିଅଛି ! ଆହୁରି ବୁଝାଯାଏ ଯେ, ସେ କୃପା ପରବଶ ହୋଇ ଏହି ବନ୍ଧନ ନ ଘୁଞ୍ଚାଇଲେ ଜୀବର ମୁକ୍ତିଲାଭ ଏକାନ୍ତ ଅସାଧ । ବୁଝାଯାଏ ଯେ, ସେ କାହାକୁ କେଉଁ ପଥ ଦେଇ ମୁକ୍ତିପଥରେ ଅଗ୍ରସର କରାଇ ଦେଉଛନ୍ତି ତାହା ମାନବବୁଦ୍ଧିର ଅଗମ୍ୟ । ପୁଣି ସ୍ପଷ୍ଟ ବୁଝାଯାଏ ଯେ, ନିଜର ଅନ୍ତରର କଥା ତନ୍ନ ତନ୍ନ କରି ବିଶ୍ଳେଷଣ କରିବା ପରେ ଆମେ ତାହାର ତୁଳନା ପରମ ଅଦ୍ଭୁତ ଶ୍ରୀରାମକୃଷ୍ଣଦେବଙ୍କ ଜୀବନ–ରହସ୍ୟ ସହିତ କଲେ ଏହା ସ୍ପଷ୍ଟ ପ୍ରତୀତ ହେବ ଯେ, ସେ ଏକ ଅପୂର୍ବ, ଅମାନବ, ପୁରୁଷୋତ୍ତମ ପୁରୁଷ ସ୍ୱଇଚ୍ଛାରେ, ଲୀଳାରେ ବା ଆମମାନଙ୍କ ପ୍ରତି କରୁଣାରେ ଆମର ଏହି ହୀନ ସଂସାରରେ କିଛି କାଳ ପାଇଁ ବାହାର ଦୃଷ୍ଟିରେ ଦୀନରୁ ଦୀନ ଭାବରେ ହେଲେ ମଧ ଜ୍ଞାନଦୃଷ୍ଟିରେ ରାଜରାଜେଶ୍ୱର ସଦୃଶ ବାସ କରିଯାଇଛନ୍ତି ।

## ତନ୍ତ୍ର–ଉତ୍ପତ୍ତିର ଇତିହାସ ଓ ତନ୍ତ୍ରର ନୂତନତ୍ୱ :

ବୈଦିକ ଯୁଗର ଯାଗଯଜ୍ଞାଦିପୂର୍ଣ୍ଣ କର୍ମକାଣ୍ଡରେ ଯୋଗ ସହିତ ଭୋଗର ମିଳନ ଥିଲା; ଦେବତାଙ୍କର ଉପାସନା କରି ରୂପରସାଦି ସମସ୍ତ ବିଷୟର ନିୟମିତ ଭୋଗ ଲାଭ କରିବା ହିଁ ମାନବଜୀବନର ଉଦ୍ଦେଶ୍ୟ ବୋଲି ନିର୍ଦ୍ଦିଷ୍ଟ ଥିଲା । ସେହି ସକଳ ଅନୁଷ୍ଠାନ କରୁ କରୁ ମାନବମନ ଯେତେବେଳେ ଅନେକାଂଶରେ ବାସନାବର୍ଜିତ ହୋଇ ଆସୁଥିଲା ସେତେବେଳେ ହିଁ ସେ ଉପନିଷଦୋକ୍ତ ଶୁଦ୍ଧାଭକ୍ତି ସହିତ ଈଶ୍ୱରଙ୍କ ଉପାସନା କରି କୃତାର୍ଥ ହେଉଥିଲା । କିନ୍ତୁ ବୌଦ୍ଧ ଯୁଗରେ ଚେଷ୍ଟା ହେଲା ଅନ୍ୟ ପ୍ରକାରର । ଅରଣ୍ୟବାସୀ ବାସନାଶୂନ୍ୟ ସାଧକମାନଙ୍କର

ଶୁଦ୍ଧଭାବର ଉପାସନା ବିନା ଭେଦଭାବରେ ଭୋଗବାସନାପୂର୍ଣ୍ଣ ସଂସାରୀ ମାନବକୁ ଶିକ୍ଷା ଦେବାର ବନ୍ଦୋବସ୍ତ ହେଲା । ସେହି ସମୟର ରାଜ୍ୟଶାସନ ମଧ୍ୟ ବୌଦ୍ଧ ସନ୍ନ୍ୟାସୀମାନଙ୍କର ଉକ୍ତ ଚେଷ୍ଟାରେ ସହାୟତା କରିବାକୁ ଲାଗିଲା । ଫଳରେ ବୈଦିକ ଯାଗଯଜ୍ଞାଦି ଯାହା ପ୍ରବୃତ୍ତିମାର୍ଗସ୍ଥିତ ମାନବମନକୁ ନିୟମିତ ଭୋଗାଦି ପ୍ରଦାନ କରୁ କରୁ ଧୀରେ ଧୀରେ ଯୋଗର ନିବୃତ୍ତିମାର୍ଗରେ ଉପନୀତ କରାଉଥିଲା, ତାହା ବାହାରେ ଉଚ୍ଛେଦ ହେଲେ ମଧ୍ୟ ଭିତରେ ଭିତରେ ନୀରବ ନିଶୀଥରେ ଜନଶୂନ୍ୟ ବିଭୀଷିକାପୂର୍ଣ୍ଣ ଶ୍ମଶାନାଦି ସ୍ଥାନରେ ଅନୁଷ୍ଠିତ ହୋଇ ତନ୍ତ୍ରୋକ୍ତ ଗୁପ୍ତସାଧନପ୍ରଣାଳୀ ରୂପରେ ପ୍ରକାଶ ପାଇଲା । ତନ୍ତ୍ରରେ ଅଛି, ମହାଯୋଗୀ ମହେଶ୍ୱର ବୈଦିକ ଅନୁଷ୍ଠାନସମୂହ ନିର୍ଜୀବ ହୋଇଯିବା ଦେଖି ସେଗୁଡ଼ିକୁ ପୁନରାୟ ସଜୀବ କରି ଭିନ୍ନ ଆକାରରେ ତନ୍ତ୍ରରୂପରେ ପ୍ରକାଶିତ କଲେ । ଏହି ପ୍ରବାଦରେ ବାସ୍ତବରେ ମହାସତ୍ୟ ନିହିତ ରହିଅଛି । କାରଣ, ତନ୍ତ୍ରରେ ବୈଦିକ କ୍ରିୟାକାଣ୍ଡ ପରି ଯୋଗ ସହିତ ଭୋଗର ସମ୍ମିଳନ ତ ଲକ୍ଷିତ ହୁଏ, ତଦ୍‌ଭିନ୍ନ ବୈଦିକ କର୍ମକାଣ୍ଡସମୂହ ଯେପରି ଉପନିଷଦର ଜ୍ଞାନକାଣ୍ଡରୁ ସୁଦୂରରେ ପୃଥକ୍‌ଭାବରେ ଅବସ୍ଥାନ କରୁଥିଲା, ତାନ୍ତ୍ରିକ ଅନୁଷ୍ଠାନସକଳ ସେପରି ନ ରହି ପ୍ରତ୍ୟେକଟି କ୍ରିୟା ହିଁ ଅଦ୍ୱୈତ ଜ୍ଞାନ ସହିତ ଘନିଷ୍ଠ ଭାବରେ ଜଡ଼ିତ ରହିଛି—ଏହା ମଧ୍ୟ ପରିଲକ୍ଷିତ ହୁଏ । ଯଥା—ତୁମେ କୌଣସି ଦେବତାଙ୍କ ପୂଜା କରିବାକୁ ବସିଲେ ପ୍ରଥମେ ହିଁ କୁଳକୁଣ୍ଡଳିନୀଙ୍କୁ ମସ୍ତକସ୍ଥ ସହସ୍ରାରରେ ଉଠାଇ ଈଶ୍ୱରଙ୍କ ସହିତ ଅଦ୍ୱୈତଭାବରେ ଅବସ୍ଥାନର ଚିନ୍ତା ତୁମକୁ କରିବାକୁ ହେବ; ପରେ ପୁନରାୟ ତୁମେ ତାଙ୍କଠାରୁ ଭିନ୍ନ ହୋଇ ଜୀବଭାବ ଧାରଣ କଲ ଏବଂ ଈଶ୍ୱରଜ୍ୟୋତିଃ ଘନୀଭୂତ ହୋଇ ତୁମର ପୂଜ୍ୟ ଦେବତାରୂପରେ ପ୍ରକାଶିତ ହେଲେ ଏବଂ ତୁମେ ତାହାଙ୍କୁ ତୁମ ଭିତରୁ ବାହାରକୁ ଆଣି ପୂଜା କରିବାକୁ ବସିଲ—ଏହା ହିଁ ଚିନ୍ତା କରିବାକୁ ହେବ । ମାନବଜୀବନର ଯଥାର୍ଥ ଉଦ୍ଦେଶ୍ୟ—ପ୍ରେମରେ ଈଶ୍ୱରଙ୍କ ସହିତ ଏକୀଭୂତ ହୋଇଯିବାର କି ସୁନ୍ଦର ଚେଷ୍ଟା ସେହି କ୍ରିୟାରେ ଲକ୍ଷିତ ହୋଇଥାଏ ! ଅବଶ୍ୟ ସହସ୍ରଙ୍କ ଭିତରେ ହୁଏତ ଜଣେ ଉନ୍ନତ ଉପାସକ ସେହି କ୍ରିୟାଟିକୁ ଠିକ୍ ଠିକ୍ କରିପାରନ୍ତି; କିନ୍ତୁ ସମସ୍ତେ ସେପରି କରିବାକୁ ଅଳ୍ପାଧିକ ଚେଷ୍ଟା ତ କରନ୍ତି, ସେଥିରେ ହିଁ ଯେ ବିଶେଷ ଲାଭ—କାରଣ, ଏହିପରି କରୁ କରୁ ତ' ସେମାନେ ଧୀରେ ଧୀରେ ଉନ୍ନତ ହେବେ । ତନ୍ତ୍ରର ପ୍ରତ୍ୟେକ କ୍ରିୟା ସହିତ ଏହିପ୍ରକାର ଅଦ୍ୱୈତ ଜ୍ଞାନର ଭାବ ସମ୍ମିଳିତ ରହି ସାଧକକୁ ଚରମ ଲକ୍ଷ୍ୟର କଥା ସ୍ମରଣ କରାଇ ଦିଏ । ଏହା ହିଁ ତନ୍ତ୍ରୋକ୍ତ ସାଧନପ୍ରଣାଳୀର ବୈଦିକ କ୍ରିୟାକଳାପଠାରୁ ନୂତନତ୍ୱ ଏବଂ ଏଥିପାଇଁ ହିଁ ତନ୍ତ୍ରୋକ୍ତ ସାଧନପ୍ରଣାଳୀ ଭାରତର ଜନସାଧାରଣଙ୍କ ମନରେ ଏତେଦୂର ପ୍ରଭୁତ୍ୱ-ବିସ୍ତାର କରିପାରିଥିଲା ।

## ତନ୍ତ୍ରରେ ବୀରାଚାର ପ୍ରବେଶର ଇତିହାସ :

ତନ୍ତ୍ରରେ ଅନ୍ୟ ଏକ ନୂତନତ୍ତ୍ୱ—ଜଗତ୍‌କାରଣ ମହାମାୟାଙ୍କର ମାତୃତ୍ୱଭାବର ପ୍ରଚାର ଏବଂ ତା ସହିତ ଯାବତୀୟ ସ୍ତ୍ରୀ-ମୂର୍ତ୍ତିଙ୍କ ଠାରେ ଏକ ଶୁଦ୍ଧ ପବିତ୍ର ଭାବ ଆନୟନ । ବେଦ ପୁରାଣ ଆଦି ବିଶ୍ଳେଷଣ ଦେଖିଲେ, ଏହି ଭାବ ଆଉ କେଉଁଠି ନାହିଁ । ଏହା ତନ୍ତ୍ରର ସମ୍ପୂର୍ଣ୍ଣ ନିଜସ୍ୱ । ବେଦର ସଂହିତାଭାଗରେ ସ୍ତ୍ରୀ-ଶରୀର ଉପାସନାର ଟିକିଏ ଅଧେ ବୀଜମାତ୍ର ହିଁ ଦେଖିବାକୁ ମିଳିଥାଏ । ଯଥା, ବିବାହ ସମୟରେ କନ୍ୟାର ଇନ୍ଦ୍ରିୟକୁ 'ପ୍ରଜାପତେର୍ଦ୍ୱିତୀୟଂ ମୁଖଂ' ବା ସୃଷ୍ଟିକର୍ତ୍ତାଙ୍କର ସୃଷ୍ଟି କରିବାର ଦ୍ୱିତୀୟ ମୁଖ ଭାବେ ନିର୍ଦ୍ଦେଶ କରି ତାହା ଯେପରି ସୁନ୍ଦର ତେଜସ୍ୱୀ ଗର୍ଭ ଧାରଣ କରେ ଏଥିପାଇଁ 'ଗର୍ଭଂ ଧେହି ସିନୀବାଲୀ' ଇତ୍ୟାଦି ମନ୍ତ୍ରରେ ସେଥିରେ ଦେବତାମାନଙ୍କର ଉପାସନାର ଏବଂ ସେହି ଇନ୍ଦ୍ରିୟକୁ ପବିତ୍ରଭାବରେ ଦେଖିବାର ବିଶେଷ ବିଧାନ ଅଛି । କିନ୍ତୁ ତାହା ବୋଲି କେହି ଯେପରି ମନେ ନ କରନ୍ତି, ବୈଦିକ କାଳରୁ ହିଁ ଯୋନି-ଲିଙ୍ଗର ଉପାସନା ଭାରତରେ ପ୍ରଚଳିତ ଥିଲା । ବେବିଲନ (Babylon) ନିବାସୀ ସୁମେର ଜାତି ଏବଂ ତା'ର ଶାଖା ଦ୍ରାବିଡ଼ ଜାତି ମଧ୍ୟରେ ହିଁ ସ୍ଥୂଳ ଭାବରେ ସେହି ଉପାସନା ଯେ ପ୍ରଥମ ପ୍ରଚଳିତ ଥିଲା, ଇତିହାସ ତାହା ପ୍ରମାଣିତ କରିଅଛି । ଭାରତୀୟ ତନ୍ତ୍ର ବେଦର କର୍ମକାଣ୍ଡ ଓ ଜ୍ଞାନକାଣ୍ଡର ଭାବ ଯେପରି ନିଜ ଶରୀରରେ ପ୍ରତ୍ୟେକ ଅନୁଷ୍ଠାନ ସହିତ ଏକତ୍ର ସମ୍ମିଳିତ କରାଇଥିଲା, ସେହିପରି ପୁଣି ଅଧିକାରୀ ବିଶେଷଙ୍କର ଆଧ୍ୟାତ୍ମିକ ଉନ୍ନତି ସେହି ଉପାସନା ଭିତର ଦେଇ ହିଁ ସହଜରେ ହେବ ଦେଖି ଦ୍ରାବିଡ଼ ଜାତି ଭିତରେ ନିବଦ୍ଧ ସ୍ତ୍ରୀ-ଶରୀରର ଉପାସନାଟିର ସ୍ଥୂଳଭାବ ଅନେକାଂଶରେ ବଦଳାଇ ଏହା ସହିତ ପୂର୍ବୋକ୍ତ ବୈଦିକ ଯୁଗର ଉପାସନାର ଉଚ୍ଚ ଆଧ୍ୟାତ୍ମିକ ଭାବଟି ସମ୍ମିଳିତ କରି ପୂର୍ଣ୍ଣ ବିକଶିତ କଲା; ଏବଂ ସେହି ପ୍ରକାରରେ ତାହା ମଧ୍ୟ ନିଜ ଭାବ ସହ ମିଳିତ କରିନେଲା । ତନ୍ତ୍ରରେ ବୀରାଚାରର ଉତ୍ପତ୍ତି ଏହି ଭାବରେ ହୋଇଥିଲା ବୋଲି ମନେ ହୁଏ । ତନ୍ତ୍ରକାର କୁଳାଚାର୍ଯ୍ୟଗଣ ଠିକ୍ ବୁଝିଥିଲେ ପ୍ରବୃତ୍ତିପୂର୍ଣ୍ଣ ମାନବ ସ୍ଥୂଳ ରୂପରସାଦିର ଅଳ୍ପାଧିକ ଭୋଗ କରିବ ହିଁ କରିବ; କିନ୍ତୁ ଯଦି କୌଣସି ମତେ ତାହାର ପ୍ରିୟ ଭୋଗ୍ୟବସ୍ତୁ ଉପରେ ସଠିକ୍ ଆନ୍ତରିକ ଶ୍ରଦ୍ଧାର ଉଦୟ କରିଦେଇପାରନ୍ତି, ତା'ହେଲେ ସେ ଯେତେ ଭୋଗ କରୁ ନା କାହିଁକି—ସେହି ତୀବ୍ର ଶ୍ରଦ୍ଧାବଳରେ ସ୍ୱଳ୍ପକାଳରେ ହିଁ ସଂଯମାଦି ଆଧ୍ୟାତ୍ମିକ ଭାବର ଅଧିକାରୀ ନିଶ୍ଚୟ ହୋଇ ଉଠିବେ । ସେଥିପାଇଁ ସେମାନେ ପ୍ରଚାର କଲେ—ନାରୀଶରୀର ପବିତ୍ର ତୀର୍ଥସ୍ୱରୂପ, ନାରୀଠାରେ ମନୁଷ୍ୟବୁଦ୍ଧି ତ୍ୟାଗ କରି ସର୍ବଦା ଦେବୀବୁଦ୍ଧି ରଖିବ ଏବଂ ଜଗଦମ୍ବାଙ୍କର ବିଶେଷ ଶକ୍ତିପ୍ରକାଶ ଭାବନା କରି ସର୍ବଦା ସ୍ତ୍ରୀ-ମୂର୍ତ୍ତିରେ ଭକ୍ତି ଶ୍ରଦ୍ଧା କରିବ; ନାରୀର ପାଦୋଦକ ଭକ୍ତି-ପରାୟଣ ହୋଇ ପାନ

କରିବ ଏବଂ ଭ୍ରମରେ ମଧ୍ୟ କେବେ ନାରୀର ନିନ୍ଦା ବା ନାରୀଙ୍କୁ ପ୍ରହାର କରିବ ନାହିଁ । ଯଥା—

ଯସ୍ୟାଃ ଅଙ୍ଗେ ମହେଶାନି ସର୍ବତୀର୍ଥାନି ସନ୍ତି ବୈ ।
—ପୁରଶ୍ଚରଣୋଲ୍ଲାସତନ୍ତ୍ର, ୧୪ ପଟଳ

ଶକ୍ତୌ ମନୁଷ୍ୟବୁଦ୍ଧିସ୍ତୁ ଯଃ କରୋତି ବରାନନେ ।
ନ ତସ୍ୟ ମନ୍ତ୍ରସିଦ୍ଧିଃ ସ୍ୟାଦ୍‌ବିପରୀତଂ ଫଳଂ ଲଭେତ୍ ।।
—ଉତ୍ତରତନ୍ତ୍ର, ୨ୟ ପଟଳ

ଶକ୍ତ୍ୟାଃ ପାଦୋଦକଂ ଯସ୍ତୁ ପିବେଦ୍ଭକ୍ତିପରାୟଣଃ ।
ଉଚ୍ଛିଷ୍ଟଂ ବାପି ଭୁଞ୍ଜୀତ ତସ୍ୟ ସିଦ୍ଧିରଖଣ୍ଡିତା ।।
—ନିଗମକଳ୍ପଦ୍ରୁମ

ସ୍ତ୍ରିୟୋ ଦେବାଃ ସ୍ତ୍ରିୟଃ ପୁଣ୍ୟାଃ ସ୍ତ୍ରିୟ ଏବ ବିଭୂଷଣମ୍ ।
ସ୍ତ୍ରୀଦ୍ୱେଷୋ ନୈବ କର୍ତ୍ତବ୍ୟସ୍ତାସୁ ନିନ୍ଦାଂ ପ୍ରହାରକମ୍ ।।
—ମୁଣ୍ଡମାଳାତନ୍ତ୍ର, ୫ମ ପଟଳ

## ପ୍ରତ୍ୟେକ ତନ୍ତ୍ରରେ ଉତ୍ତମ ଓ ଅଧମ ଦୁଇଭାଗ ଅଛି :

କିନ୍ତୁ ହେଲେ କ'ଣ ହେବ ? ସମୟାନୁକ୍ରମେ ତାନ୍ତ୍ରିକ ସାଧକମାନଙ୍କ ଭିତରେ ମଧ୍ୟ ଏପରି ଏକ ଯୁଗ ଆସିଥିଲା ଯେତେବେଳେ ଈଶ୍ୱରୀୟ ଜ୍ଞାନଲାଭ ତ୍ୟାଗ କରି ସେମାନେ ସାମାନ୍ୟ ସାମାନ୍ୟ ମାନସିକ ଶକ୍ତି ବା ସିଦ୍ଧିସମୂହ-ଲାଭରେ ହିଁ ମନୋନିବେଶ କରିଥିଲେ । ସେହି ସମୟରେ ହିଁ ନାନା ପ୍ରକାର ଅସ୍ୱାଭାବିକ ସାଧନାପ୍ରଣାଳୀ ଏବଂ ଭୂତପ୍ରେତାଦିର ଉପାସନା ତନ୍ତ୍ରଶରୀରରେ ପ୍ରବିଷ୍ଟ ହୋଇ ତାହାକୁ ବର୍ତ୍ତମାନର ଆକାର ଧାରଣ କରାଇଥିଲା । ପ୍ରତି ତନ୍ତ୍ର ଭିତରେ ହିଁ ସେଥିପାଇଁ ଉତ୍ତମ ଓ ଅଧମ, ଉଚ୍ଚ ଓ ହୀନ—ଏହି ଦୁଇ ସ୍ତରର ବିଦ୍ୟମାନତା ଦେଖିବାକୁ ମିଳେ ଏବଂ ଉଚ୍ଚାଙ୍ଗର ଈଶ୍ୱରୋପାସନା ସହିତ ହୀନାଙ୍ଗର ସାଧନାସକଳ ମଧ୍ୟ ସନ୍ନିବେଶିତ ଦେଖାଯାଏ । ପୁଣି ଯାହାର ଯେପରି ପ୍ରକୃତି, ସେ ଏବେ ତା ମଧ୍ୟରୁ ସେହି ମତକୁ ବାଛି ନିଏ ।

## ଗୌଡ଼ୀୟ ବୈଷ୍ଣବସମ୍ପ୍ରଦାୟପ୍ରବର୍ତ୍ତିତ ନୂତନ ପୂଜାପ୍ରଣାଳୀ :

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ପ୍ରାଦୁର୍ଭାବରେ ଆଉ ଏକ ନୂତନ ପରିବର୍ତ୍ତନ ତନ୍ତ୍ରୋକ୍ତ ସାଧନପ୍ରଣାଳୀ ଆସି ଉପସ୍ଥିତ ହେଲା । ସେ ଓ ତାଙ୍କର ପରବର୍ତ୍ତୀ ବୈଷ୍ଣବାଚାର୍ଯ୍ୟଗଣ ସାଧାରଣରେ ଦ୍ୱୈତଭାବର ବିସ୍ତାରରେ ହିଁ ମଙ୍ଗଳ ହେବ ଧାରଣା କରି ତାନ୍ତ୍ରିକ ସାଧନପ୍ରଣାଳୀ ଭିତରୁ ଅଦ୍ୱୈତଭାବର କ୍ରିୟାଗୁଡ଼ିକ ଅନେକାଂଶରେ ବାଦ ଦେଇ କେବଳ ତନ୍ତ୍ରୋକ୍ତ ମନ୍ତ୍ରଶାସ୍ତ୍ର ଓ ବାହ୍ୟିକ ଉପାସନାକୁ ଜନସାଧାରଣରେ ପ୍ରଚଳିତ କଲେ । ସେହି ଉପାସନା ଓ ପୂଜାଦିରେ ମଧ୍ୟ ସେମାନେ ନୂତନ ଭାବ ପ୍ରକାଶ କରାଇ ଆତ୍ମବତ୍ ଦେବତାଙ୍କ ସେବା କରିବାକୁ

ଉପଦେଶ ଦେଲେ । ସାଧାରଣ ଲୋକଙ୍କର ବିଶ୍ୱାସ ଯେ, ତାନ୍ତ୍ରିକ ଦେବତାଗଣ ନିବେଦିତ ଫଳମୂଳ ଆହାର୍ଯାଦି ଦୃଷ୍ଟିମାତ୍ରେ ହିଁ ସାଧକ ନିମିତ୍ତ ପୂତ କରିଦିଅନ୍ତି ଏବଂ ତାହା ଗ୍ରହଣରେ ସାଧକର କାମକ୍ରୋଧ ଆଦି ପଶୁଭାବର ବୃଦ୍ଧି ନ ଘଟି ଆଧ୍ୟାତ୍ମିକ ଭାବ ହିଁ ବୃଦ୍ଧି ପାଇଥାଏ । ବୈଷ୍ଣବାଚାର୍ଯ୍ୟଗଣଙ୍କର ନବ-ପ୍ରବର୍ତ୍ତିତ ପ୍ରଣାଳୀରେ ଦେବତାଗଣ ସେହି ସମସ୍ତ ଆହାର୍ଯ୍ୟର ସୂକ୍ଷ୍ମାଂଶ ଏବଂ ସାଧକର ଭକ୍ତିର ଆତିଶଯ୍ୟ ଓ ଆଗ୍ରହ ଯୋଗୁଁ ବେଳେ ବେଳେ ସ୍ଥୂଳାଂଶ ମଧ୍ୟ ଗ୍ରହଣ କରିଥାଆନ୍ତି—ଏହିପରି ବିଶ୍ୱାସ ପ୍ରଚଳିତ ହେଲା । ଉପାସନା-ପ୍ରଣାଳୀରେ ଏହି ପ୍ରକାରରେ ଆହୁରି ଅନେକ ପରିବର୍ତ୍ତନ ବୈଷ୍ଣବାଚାର୍ଯ୍ୟଗଣକର୍ତ୍ତୃକ ସଂସାଧିତ ହେଲା । ତନ୍ମଧ୍ୟରୁ ଏହା ପ୍ରଧାନ ବୋଲି ବୋଧହୁଏ ଯେ, ସେମାନେ ଯେତେଦୂର ସମ୍ଭବ ତନ୍ତ୍ରୋକ୍ତ ପଶୁଭାବର ହିଁ ପ୍ରାଧାନ୍ୟ ସ୍ଥାପନ କରି ବାହ୍ୟିକ ଶୌଚାଚାରର ପକ୍ଷପାତୀ ହୋଇଥିଲେ ଏବଂ ଆହାରରେ ଶୌଚ, ବିହାରରେ ଶୌଚ, ସମସ୍ତ ବିଷୟରେ ଶୁଚିଶୁଦ୍ଧ ରହି 'ଜପାତ୍ ସିଦ୍ଧିର୍ଜପାତ୍ ସିଦ୍ଧିର୍ଜପାତ୍ ସିଦ୍ଧିର୍ନସଂଶୟଃ'— ନାମ ହିଁ ବ୍ରହ୍ମ, ଏହି ଜ୍ଞାନରେ କେବଳ ଶ୍ରୀଭଗବାନଙ୍କର ନାମ-ଜପ ଦ୍ୱାରା ଜୀବ ସିଦ୍ଧକାମ ହେବ, ଏହି ମତ ସାଧାରଣରେ ପ୍ରଚାର କରିଥିଲେ ।

**ସେହି ପ୍ରଣାଳୀରୁ କାଳକ୍ରମେ କର୍ତ୍ତାଭଜାଦି ମତର ଉତ୍ପତ୍ତି ଏବଂ ସେସମସ୍ତ ବିଷୟର ସାର କଥା :**

କିନ୍ତୁ ସେମାନେ ଏପରି କଲେ କ'ଣ ହେବ ? ସେମାନଙ୍କର ତିରୋଭାବର ସ୍ୱଳ୍ପକାଳ ପରେ ହିଁ ପ୍ରବୃତ୍ତିପୂର୍ଣ୍ଣ ମାନବମନ ସେମାନଙ୍କର ପ୍ରବର୍ତ୍ତିତ ଶୁଦ୍ଧମାର୍ଗରେ ମଧ୍ୟ କଳୁଷିତ ଭାବଗୁଡ଼ିକ ପ୍ରବେଶ କରାଇଲା । ସୂକ୍ଷ୍ମ ଭାବଟିକୁ ତ୍ୟାଗ କରି ସ୍ଥୂଳ ବିଷୟ ଗ୍ରହଣ କଲା—ପରକୀୟା ନାୟିକାର ଉପପତି ପ୍ରତି ଆନ୍ତରିକ ଟାଣଟିକୁ ଗ୍ରହଣ କରି ଈଶ୍ୱରଙ୍କଠାରେ ତାହାର ଆରୋପ ନ କରି ପରକୀୟା ସ୍ତ୍ରୀ ହିଁ ଗ୍ରହଣ କଲା ଏବଂ ଏହି ଭାବରେ ତାଙ୍କ ପ୍ରବର୍ତ୍ତିତ ଶୁଦ୍ଧଯୋଗମାର୍ଗ ଭିତରେ ମଧ୍ୟ କିଛି କିଛି ଭୋଗ ପ୍ରବେଶ କରାଇ ତାହାକୁ କେତେକାଂଶରେ ନିଜ ପ୍ରବୃତ୍ତି ସୁହାଇଲା ପରି କରିନେଲା । ସେହିପ୍ରକାର ନ କରି ସେ ଆଉ କ'ଣ କରିଥାଆନ୍ତା ? ସେ ଯେ ଏତେ ଶୁଦ୍ଧଭାବରେ ଚଳିବାକୁ ଅକ୍ଷମ । ସେ ଯେ ଯୋଗ ଓ ଭୋଗର ମିଶ୍ରିତ ଭାବ ଗ୍ରହଣ କରିପାରେ । ସେ ଯେ ଧର୍ମଲାଭ ଚାହେଁ; କିନ୍ତୁ ତା' ସହିତ ଟିକିଏ ଅଧେ ରୂପରସାଦି-ଭୋଗର ମଧ୍ୟ ଲାଳସା ରଖେ । ସେଥିପାଇଁ ହିଁ ବୈଷ୍ଣବ ସମ୍ପ୍ରଦାୟ ଭିତରେ କର୍ତ୍ତାଭଜା, ଆଉଲ, ବାଉଲ, ଦରବେଶ, ସାଇଁ ପ୍ରଭୃତି ମତର ଉପାସନା ଓ ଗୁପ୍ତ ସାଧନପ୍ରଣାଳୀସବୁର ଉତ୍ପତ୍ତି ହେଲା । ଅତଏବ ଏସମସ୍ତ ମୂଳରେ ସେହି ବହୁ ପ୍ରାଚୀନ ବୈଦିକ କର୍ମକାଣ୍ଡର ପ୍ରବାହ, ସେହି ଯୋଗ ଓ ଭୋଗର ସମ୍ମିଳନ ଦେଖିବାକୁ ମିଳେ ଏବଂ ପୁଣି ସେହି ତାନ୍ତ୍ରିକ କୁଳାଚାର୍ଯ୍ୟଗଣଙ୍କ ଦ୍ୱାରା ପ୍ରବର୍ତ୍ତିତ

ଅଦ୍ୱୈତଜ୍ଞାନ ସହିତ ପ୍ରତ୍ୟେକ କ୍ରିୟାର ସମ୍ମିଳନର କିଛି କିଛି ଭାବ ଦେଖିବାକୁ ମିଳେ ।

**କର୍ତ୍ତାଭଜାଦି ମତରେ ସାଧ୍ୟ ଓ ସାଧନାବିଧି ସମ୍ବନ୍ଧରେ ଉପଦେଶ :**

କର୍ତ୍ତାଭଜା ପ୍ରଭୃତି ସମ୍ପ୍ରଦାୟର ଈଶ୍ୱର, ମୁକ୍ତି, ସଂଯମ, ତ୍ୟାଗ, ପ୍ରେମ ପ୍ରଭୃତି ବିଷୟକ କେତୋଟି କଥା ଏଠାରେ ଉଲ୍ଲେଖ କଲେ ହିଁ ପାଠକ ଆମର ପୂର୍ବୋକ୍ତ କଥା ସହଜରେ ବୁଝିପାରିବେ । ଠାକୁର ସେହି ସକଳ ସମ୍ପ୍ରଦାୟର କଥା କହୁ କହୁ ଅନେକ ସମୟରେ ଏସମସ୍ତ କଥା ଆମମାନଙ୍କୁ କହୁଥିଲେ । ସରଳ ଭାଷାରେ ଓ ଛନ୍ଦ ବନ୍ଧନରେ ଲିପିବଦ୍ଧ ହୋଇ ଏସବୁ ଅଶିକ୍ଷିତ ଜନସାଧାରଣଙ୍କୁ ସେସମସ୍ତ ବିଷୟ ବୁଝିବାକୁ କେତେଦୂର ସହାୟତା କରିଥାଏ, ତାହା ପାଠକ ଏସମସ୍ତ ଶ୍ରବଣ କଲେ ହିଁ ବୁଝିପାରିବେ ।  ସେହି ସବୁ ସମ୍ପ୍ରଦାୟର ଲୋକମାନେ ଈଶ୍ୱରଙ୍କୁ 'ଆଲେକ୍‌ଲତା' ବୋଲି କହିଥାଆନ୍ତି । କହିବା ବାହୁଲ୍ୟ ଯେ, ସଂସ୍କୃତ 'ଅଲକ୍ଷ୍ୟ' ଶବ୍ଦରୁ 'ଆଲେକ୍' ଶବ୍ଦର ଉତ୍ପତ୍ତି । ସେହି 'ଆଲେକ୍' ଶୁଦ୍ଧସତ୍ତ୍ୱ ମାନବମନରେ ପ୍ରବିଷ୍ଟ ବା ତଦବଲମ୍ବନରେ ପ୍ରକାଶିତ ହୋଇ 'କର୍ତ୍ତା' ବା 'ଗୁରୁ' ରୂପରେ ଆବିର୍ଭୂତ ହୁଅନ୍ତି । ସେହି ପ୍ରକାର ମାନବକୁ ଏମାନେ 'ସହଜ' ଉପାଧି ଦେଇଥାଆନ୍ତି । ଯଥାର୍ଥ ଗୁରୁଭାବରେ ଭାବିତ ମାନବ ହିଁ ଏହି ସମ୍ପ୍ରଦାୟର ଉପାସ୍ୟ ବୋଲି ନିର୍ଦ୍ଦିଷ୍ଟ ହୋଇଥିବାରୁ ତାହାଙ୍କ ନାମ 'କର୍ତ୍ତାଭଜା' ହୋଇଅଛି । 'ଆଲେକ୍‌ଲତା' ର ସ୍ୱରୂପ ଓ ବିଶୁଦ୍ଧ ମାନବଠାରେ ତାହାର ଆବେଶ ସମ୍ବନ୍ଧରେ ସେମାନେ ଏପରି କହନ୍ତି—

ଆଲେକେ ଆସେ, ଆଲେକେ ଯାଏ,
ଆଲେକେର ଦେଖା କେଉ ନ ପାଏ ।
ଆଲେକ୍‌କେ ଚିନିଛେ ଯେଇ,
ତିନିଲୋକେର ଠାକୁର ସେଇ ।

[—ଅର୍ଥାତ୍ ସମସ୍ତଙ୍କର ଅଲକ୍ଷ୍ୟରେ ସେ ଆସନ୍ତି ସମସ୍ତଙ୍କର ଅଲକ୍ଷିତ ହୋଇ ଚାଲିଯାଆନ୍ତି; କାହାକୁ ହେଲେ ଅଲକ୍ଷ୍ୟର ଦର୍ଶନ ହୁଏ ନାହିଁ । ଯିଏ ଅଲକ୍ଷ୍ୟକୁ ଜାଣିପାରନ୍ତି ସେ ତିନି ଲୋକର ପ୍ରଭୁ ଅଟନ୍ତି ।]

'ସହଜ' ମନୁଷ୍ୟର ଲକ୍ଷଣ—ସେ 'ଅଟୁଟ' ହୋଇ ରହନ୍ତି ଅର୍ଥାତ୍ ରମଣୀ ସହିତ ସର୍ବଦା ରହିଥିଲେ ମଧ୍ୟ ତାଙ୍କର କେବେ ମଧ୍ୟ କାମଭାବରେ ଧୈର୍ଯ୍ୟଚ୍ୟୁତି ହୁଏ ନାହିଁ । ଏସମ୍ବନ୍ଧରେ ଏମାନେ କହନ୍ତି—

ରମଣୀର ସଙ୍ଗେ ରହି, ନକରେ ରମଣ ।

ସଂସାରରେ କାମକାଞ୍ଚନ ଭିତରେ ଅନାସକ୍ତଭାବରେ ନ ରହିଲେ ସାଧକ ଆଧ୍ୟାତ୍ମିକ ଉନ୍ନତି ଲାଭ କରିପାରେ ନାହିଁ, ସେଥିପାଇଁ ସାଧକମାନଙ୍କ ପ୍ରତି ଉପଦେଶ—

ରାନ୍ଧୁନି ହଇବି, ବ୍ୟଞ୍ଜନ ବାଣ୍ଟିବି, ହାଣ୍ଡି ନ ଛୁଁଇବି ତାୟ ।
ସାପେର ମୁଖେତେ, ଭେକେରେ ନାଚିବି, ସାପ ନ ଗିଲିବେ ତାୟ ।
ଅମିୟ-ସାଗରେ ସିନାନ କରିବି, କେଶ ନ ଭିଜିବେ ତାୟ ।

[—ଅର୍ଥାତ୍ ରୋଷେଇୟା ହୋଇ ରୋଷେଇ କରିବ, ବ୍ୟଞ୍ଜନ ପରଶିବ, କିନ୍ତୁ ହାଣ୍ଡି ସ୍ପର୍ଶ କରିବ ନାହିଁ । ସାପ ମୁହଁରେ ବେଙ୍ଗ ନଚାଇବ, କିନ୍ତୁ ସାପ ତାକୁ ଗିଳିବନି । ଅମୃତ ସାଗରରେ ଗାଧୋଇବ କିନ୍ତୁ ବାଳ ଓଦା ହେବ ନାହିଁ ।]

ତନ୍ତ୍ର ମଧ୍ୟରେ ସାଧକମାନଙ୍କୁ ଯେପରି ପଶୁ, ବୀର ଓ ଦିବ୍ୟଭାବରେ ଶ୍ରେଣୀବଦ୍ଧ କରାହୋଇଛି, ଏମାନଙ୍କ ଭିତରେ ମଧ୍ୟ ସେପରି ସାଧକମାନଙ୍କର ଉଚ୍ଚନୀଚ ଶ୍ରେଣୀର କଥା ଅଛି ।

'ଆଉଲ, ବାଉଲ, ଦରବେଶ, ସାଁଇ—
ସାଁଇ ଉପରେ ଆଉ ନାହିଁ ।'

[—ଅର୍ଥାତ୍ ସିଦ୍ଧିପ୍ରାପ୍ତ ହେଲେ ତେବେ ମାନବ ସାଁଇ ପଦ ଲାଭ କରେ ।]

ଠାକୁରେ କହୁଥିଲେ, ''ଏମାନେ ସମସ୍ତେ ଈଶ୍ୱରଙ୍କର 'ଅରୂପ ରୂପ'ର ଭଜନ କରନ୍ତି'' ଏବଂ ସେହି ସମ୍ପ୍ରଦାୟର କେତୋଟି ଗୀତ ମଧ୍ୟ ଆମ ନିକଟରେ ଅନେକ ସମୟରେ ଗାଉଥିଲେ । ଯଥା—

(ବାଉଲର ସୁର)

ଡୁବ୍ ଡୁବ୍ ଡୁବ୍ ରୂପସାଗରେ ଆମାର ମନ ।
ତଲାତଲ ପାତାଲ ଖୁଁଜଲେ ପାବିରେ ପ୍ରେମରତ୍ନଧନ ।।
(ଓରେ) ଖୋଁଜ୍ ଖୋଁଜ୍ ଖୋଁଜ୍ ଖୁଁଜଲେ ପାବି, ହୃଦୟମାଝେ ବୃନ୍ଦାବନ ।
(ଆବାର) ଦୀପ୍ ଦୀପ୍ ଦୀପ୍ ଜ୍ଞାନେର ବାତି ହୃଦେ ଜ୍ୱଲବେ ଅନୁକ୍ଷଣ ।।
ଡ୍ୟାଂ ଡ୍ୟାଂ ଡ୍ୟାଂ ଡାଙ୍ଗାଏ ଡ଼ିଙ୍ଗି, ଚଲାୟ ଆବାର ସେ କୋନ୍ ଜନ ?
କୁବୀର ବଲେ ଶୋନ୍ ଶୋନ୍ ଶୋନ୍ ଭାବ ଗୁରୁର ଶ୍ରୀଚରଣ ।।

[—ଗୀତର ଭାବାର୍ଥ ହେଉଛି : ହେ ମୋର ମନ, ତୁ ରୂପସାଗରରେ ବୁଡ଼ି ଯାଆ । ତଳାତଳ ତଥା ପାତାଳରେ ଅନ୍ୱେଷଣ କଲେ ତୋତେ ପ୍ରେମରତ୍ନଧନ ପ୍ରାପ୍ତ ହେବ । ଆରେ ଖୋଜ, ଖୋଜ, ଖୋଜିଲେ ତୋ ହୃଦୟରେ ବୃନ୍ଦାବନ ପାଇବୁ । ତାସହିତ ଜ୍ଞାନର ବତୀ ତୋ ହୃଦୟରେ ନିରନ୍ତର ଜଳିବ । ଅସୀମ ସାହସ ସହିତ ମାଟିରେ ଡ଼ଙ୍ଗା ଚଳାଇବା ବାଲା ସେ କିଏ ? କବୀର କହୁଛି ଯେ ଶୁଣ, ଶୁଣ, ଗୁରୁଦେବଙ୍କ ଶ୍ରୀଚରଣ ଚିନ୍ତନ କର ।]

ଏହି ପ୍ରକାରରେ ଗୁରୁଙ୍କ ଉପାସନା ଓ ସମସ୍ତେ ଏକତ୍ରିତ ହୋଇ ଭଜନ ଇତ୍ୟାଦିରେ ନିବିଷ୍ଟ ରହିବା—ଏହା ହିଁ ସେମାନଙ୍କର ପ୍ରଧାନ ସାଧନା । ଏମାନେ ଦେବଦେବୀଙ୍କର ମୂର୍ତ୍ତିକୁ ଅସ୍ୱୀକାର ନ କଲେ ମଧ୍ୟ ଉପାସନା ପ୍ରାୟ କରନ୍ତି ନାହିଁ । ଭାରତରେ ଗୁରୁ ବା ଆଚାର୍ଯ୍ୟଙ୍କର ଉପାସନା ଅତୀବ ପ୍ରାଚୀନ; ଉପନିଷଦ କାଳରୁ ଏହା ପ୍ରବର୍ତ୍ତିତ ବୋଲି ବୋଧ ହୁଏ । କାରଣ ଉପନିଷଦରେ ହିଁ ଅଛି

''ଆଚାର୍ଯ୍ୟଦେବୋ ଭବ'' । ସେତେବେଳେ ଦେବଦେବୀଙ୍କର ଉପାସନା ଆଦୌ ପ୍ରଚଳିତ ହୋଇ ନ ଥିଲା ବୋଲି ମନେ ହୁଏ । ସେଇ ଆଚର୍ଯ୍ୟୋପାସନା କାଳକ୍ରମେ ଭାରତରେ କେତେ ପ୍ରକାର ରୂପ ଧାରଣ କରିଅଛି, ତାହା ଦେଖି ଆଶ୍ଚର୍ଯ୍ୟ ଲାଗେ ।

ଏହା ବ୍ୟତୀତ ଶୁଚି-ଅଶୁଚି, ଭଲ-ମନ୍ଦ ପ୍ରଭୃତି ଭେଦଜ୍ଞାନ ମନରୁ ତ୍ୟାଗ କରିବା ନିମିତ୍ତ ନାନାପ୍ରକାର ଅନୁଷ୍ଠାନ ମଧ୍ୟ ସାଧକମାନଙ୍କୁ କରିବାକୁ ହୁଏ । ଠାକୁର କହୁଥିଲେ, ସାଧକମାନେ ସେସବୁ ସାଧନା ଗୁରୁପରମ୍ପରାରେ ଅବଗତ ହୋଇଥାଆନ୍ତି । ଠାକୁର ତାହାର କିଛି କିଛି ବେଳେ ବେଳେ ଉଲ୍ଲେଖ କରୁଥିଲେ ।

## ବୈଷ୍ଣବଚରଣଙ୍କର ଠାକୁରଙ୍କୁ କାଛିବାଗାନର ଆଖଡ଼ାକୁ ନେଇଯାଇ ପରୀକ୍ଷା କରିବା :

ଠାକୁରଙ୍କୁ ଅନେକ ସମୟରେ କହିବାର ଶୁଣାଯାଉଥିଲା, 'ବେଦ ପୁରାଣ କାନରେ ଶୁଣିବାକୁ ହୁଏ; ତନ୍ତ୍ରର ସାଧନସକଳ କାର୍ଯ୍ୟରେ କରିବାକୁ ହୁଏ, ନିଜେ କରିବାକୁ ହୁଏ ।' ଦେଖିବାକୁ ମଧ୍ୟ ମିଳେ, ଭାରତରେ ପ୍ରାୟ ସର୍ବତ୍ର ହିଁ ସ୍ମୃତି ଅନୁଗାମୀ ସମସ୍ତେ କୌଣସି ନା କୌଣସି ପ୍ରକାରର ତାନ୍ତ୍ରିକୀ ସାଧନପ୍ରଣାଳୀ ଅନୁସରଣ କରିଥାଆନ୍ତି । ଦେଖିବାକୁ ମିଳେ, ବଡ଼ ବଡ଼ ନ୍ୟାୟ-ବେଦାନ୍ତର ପଣ୍ଡିତମାନେ ଅନୁଷ୍ଠାନରେ ତାନ୍ତ୍ରିକ । ବୈଷ୍ଣବସମ୍ପ୍ରଦାୟଗୁଡ଼ିକ ଭିତରେ ମଧ୍ୟ ଅନେକ ସ୍ଥାନରେ ଦେଖିବାକୁ ମିଳେ ଯେ, ଭାଗବତାଦି ଭକ୍ତିଶାସ୍ତ୍ରର ବଡ଼ ବଡ଼ ପଣ୍ଡିତଗଣ କର୍ତ୍ତାଭଜାଦି ସମ୍ପ୍ରଦାୟର ଗୁପ୍ତ ସାଧନପ୍ରଣାଳୀ ଅନୁସରଣ କରୁଛନ୍ତି । ପଣ୍ଡିତ ବୈଷ୍ଣବଚରଣ ମଧ୍ୟ ଏହି ଦଳଭୁକ୍ତ ଥିଲେ । କଲିକତାର କେତେ ମାଇଲ ଉତ୍ତରରେ କାଛିବାଗାନରେ ସେହି ସମ୍ପ୍ରଦାୟର ଆଖଡ଼ା ସହିତ ତାଙ୍କର ଘନିଷ୍ଠ ସମ୍ବନ୍ଧ ଥିଲା । ସେହି ସମ୍ପ୍ରଦାୟଭୁକ୍ତ ଅନେକଗୁଡ଼ିଏ ସ୍ତ୍ରୀପୁରୁଷ ସେହି ସ୍ଥାନରେ ରହି ତାଙ୍କର ଉପଦେଶାନୁସାରେ ସାଧନାରେ ରତ ଥିଲେ । ଠାକୁରଙ୍କୁ ବୈଷ୍ଣବଚରଣ ସେଠାକୁ କେତେଥର ନେଇଯାଇଥିଲେ । ଆମେ ଶୁଣିଛୁ, ସେଠାର କେତେଗୁଡ଼ିଏ ସ୍ତ୍ରୀଲୋକ ଠାକୁରଙ୍କୁ ସଦାସର୍ବଦା ସମ୍ପୂର୍ଣ୍ଣ ନିର୍ବିକାର ରହିବା ଦେଖି ଏବଂ ଭଗବତ୍-ପ୍ରେମରେ ତାଙ୍କର ଅଦୃଷ୍ଟପୂର୍ବ ଭାବାଦି ହେବା ଦେଖି ସେ ସମ୍ପୂର୍ଣ୍ଣରୂପରେ ଇନ୍ଦ୍ରିୟଜୟରେ ସମର୍ଥ ହୋଇଛନ୍ତି କି ନାହିଁ ଜାଣିବା ପାଇଁ ପରୀକ୍ଷା କରିବାକୁ ଅଗ୍ରସର ହୋଇଥିଲେ ଏବଂ ତାଙ୍କୁ 'ଅଟୁଟ ସହଜ' ବୋଲି ସମ୍ମାନ ପ୍ରଦର୍ଶନ କରିଥିଲେ । ଅବଶ୍ୟ ବାଳକସ୍ୱଭାବ ଠାକୁର ବୈଷ୍ଣବଚରଣଙ୍କ ସହିତ ତାଙ୍କର ଅନୁରୋଧରେ ସେଠାକୁ ସରଳଭାବରେ ହିଁ ବୁଲିବାକୁ ଯାଇଥିଲେ । ସେମାନେ ଯେ ତାଙ୍କୁ ସେହିପରି ପରୀକ୍ଷା କରିବେ, ସେ ତାହା ଆଦୌ ଜାଣି ନ ଥିଲେ । ଯାହା ହେଉ, ସେହିଦିନଠାରୁ ଠାକୁର ଆଉ ସେଠାକୁ ଗମନ କରି ନ ଥିଲେ ।

## ବୈଷ୍ଣବଚରଣଙ୍କର ଠାକୁରଙ୍କୁ ଈଶ୍ୱରାବତାର ଜ୍ଞାନ କରିବା :

ଠାକୁରଙ୍କର ଅଦ୍ଭୁତ ଚରିତ୍ରବଳ, ପବିତ୍ରତା ଓ ଭାବସମାଧି ଦେଖି ତାଙ୍କ ଉପରେ ବୈଷ୍ଣବଚରଣଙ୍କର ଭକ୍ତିବିଶ୍ୱାସ ଦିନକୁ ଦିନ ଏତେଦୂର ବର୍ଦ୍ଧିତ ହୋଇଥିଲା ଯେ, ପରିଶେଷରେ ସେ ଠାକୁରଙ୍କୁ ସମସ୍ତଙ୍କ ସମକ୍ଷରେ ଈଶ୍ୱରଙ୍କ ଅବତାର ବୋଲି ସ୍ୱୀକାର କରିବାକୁ ମଧ୍ୟ କୁଣ୍ଠିତ ହେଉ ନ ଥିଲେ ।

## ତାନ୍ତ୍ରିକ ଗୌରୀ ପଣ୍ଡିତଙ୍କର ସିଦ୍ଧି :

ବୈଷ୍ଣବଚରଣ ଠାକୁରଙ୍କ ନିକଟକୁ କିଛିଦିନ ଯିବା ଆସିବା କରୁଥିବା ବେଳେ ଇଁଦେଶର ଗୌରୀ ପଣ୍ଡିତ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । ଗୌରୀ ପଣ୍ଡିତ ଜଣେ ବିଶିଷ୍ଟ ତାନ୍ତ୍ରିକ ସାଧକ ଥିଲେ । ଦକ୍ଷିଣେଶ୍ୱର କାଳୀମନ୍ଦିରରେ ସେ ପହଞ୍ଚିବା ମାତ୍ରେ ତାଙ୍କୁ ନେଇ ଗୋଟିଏ ମଜାର ଘଟଣା ଘଟିଲା । ଏକଥା ଆମେ ଠାକୁରଙ୍କଠାରୁ ହିଁ ଶୁଣିଛୁ । ଠାକୁର କହୁଥିଲେ, ଗୌରୀର ଗୋଟିଏ ସିଦ୍ଧି ବା ତପସ୍ୟାଲବ୍ଧ କ୍ଷମତା ଥିଲା । ଶାସ୍ତ୍ରୀୟ ତର୍କବିଚାରରେ ଆହୂତ ହୋଇ ସେ ଯେଉଁଠାକୁ ଯାଆନ୍ତି, ସେହି ଘରେ ପ୍ରବେଶ ସମୟରେ ଏବଂ ଯେଉଁଠାରେ ବିଚାର ହେବ ସେଇ ସଭାସ୍ଥଳରେ ପ୍ରବେଶ ସମୟରେ ଉଚ୍ଚସ୍ୱରରେ କେତେଥର 'ହା ରେ ରେ ରେ, ନିରାଲମ୍ବୋ ଲମ୍ବୋଦରଜନନୀ କଂ ୟାମି ଶରଣମ୍' — ଏହି କଥାଗୁଡ଼ିକ ଉଚ୍ଚାରଣ କରିବା ପରେ ସେହି ଘରେ ତଥା ସଭାସ୍ଥଳରେ ପ୍ରବେଶ କରୁଥିଲେ । ଠାକୁର କହୁଥିଲେ, ଜଳଦଗମ୍ଭୀରସ୍ୱରରେ ବୀରଭାବଦ୍ୟୋତକ 'ହା ରେ ରେ ରେ' ଶବ୍ଦ ଏବଂ ଆଚାର୍ଯ୍ୟକୃତ ଦେବୀସ୍ତୋତ୍ରର ଏହି ଗୋଟିଏ ପଦ ତାଙ୍କ ମୁହଁରୁ ଶୁଣିଲେ ସମସ୍ତଙ୍କର ହୃଦୟ କିପରି ଏକ ଅବ୍ୟକ୍ତ ତ୍ରାସରେ ଚମକିତ ହୋଇ ଉଠୁଥିଲା ! ସେଥିରେ ଦୁଇଟି କାର୍ଯ୍ୟ ସିଦ୍ଧ ହେଉଥିଲା । ପ୍ରଥମ, ସେହି ଶବ୍ଦରେ ଗୌରୀଙ୍କର ଅନ୍ତରର ଶକ୍ତି ସମ୍ୟକ୍ ଜାଗରିତ ହୋଇଉଠୁଥିଲା; ଏବଂ ଦ୍ୱିତୀୟ, ସେ ତାହା ଦ୍ୱାରା ଶତ୍ରୁପକ୍ଷକୁ ଚମକିତ ଓ ମୁଗ୍ଧ କରି ସେମାନଙ୍କର ଶକ୍ତିହରଣ କରୁଥିଲେ । ସେହିପରି ଶବ୍ଦ କରିବା ପରେ କୁସ୍ତି ଲଢୁଥିବା ଲୋକମାନେ ଯେପରି ବାହୁରେ ତାଳ ମାରିଥାଆନ୍ତି ସେହିପରି ତାଳ ମାରୀ ଗୌରୀ ସଭାମଧ୍ୟରେ ପ୍ରବେଶ କରୁଥିଲେ ଏବଂ ବାଦଶାହୀ ଦରବାରରେ ସଭ୍ୟମାନେ ଯେଉଁଭାବରେ ଉପବେଶନ କରନ୍ତି, ସେହିଭାବରେ ପଦଦ୍ୱୟ ମୋଡ଼ି ତାହା ଉପରେ ସଭାସ୍ଥଳରେ ବସି ସେ ତର୍କ ସଂଗ୍ରାମରେ ପ୍ରବୃତ୍ତ ହେଉଥିଲେ । ଠାକୁର କହୁଥିଲେ, ସେତେବେଳେ ଗୌରୀଙ୍କୁ ପରାଜୟ କରିବା କାହାରି ଆୟତ୍ତସାଧ ନ ଥିଲା ।

ଗୌରୀଙ୍କର ସେହି ସିଦ୍ଧି ବିଷୟ ଠାକୁର ଜାଣି ନ ଥିଲେ । କିନ୍ତୁ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ପଦାର୍ପଣ କରିବା ମାତ୍ରେ ଗୌରୀ ଯେମିତି ଉଚ୍ଚସ୍ୱରରେ 'ହା ରେ ରେ ରେ' ଶବ୍ଦ କଲେ, ସଙ୍ଗେ ସଙ୍ଗେ ଠାକୁରଙ୍କ ଭିତରେ କିଏ ଯେପରି ଠେଲି

ଉଠି ତାଙ୍କୁ ଗୌରୀଙ୍କ ଅପେକ୍ଷା ଆହୁରି ଉଚ୍ଚସ୍ୱରରେ ସେପରି ଶବ୍ଦ କରାଇବାକୁ ଲାଗିଲା । ଠାକୁରଙ୍କର ମୁଖନିଃସୃତ ସେହି ଶବ୍ଦରେ ଗୌରୀ ଉଚ୍ଚତର ସ୍ୱରରେ ସେହି ଶବ୍ଦ କରିବାକୁ ଲାଗିଲେ । ଠାକୁର ସେଥିରେ ଉତ୍ତେଜିତ ହୋଇ ତାଙ୍କ ଅପେକ୍ଷା ଅଧିକତର ଉଚ୍ଚ ଶବ୍ଦରେ 'ହା ରେ ରେ ରେ' କରି ଉଠିଲେ । ଠାକୁର ହସି ହସି କହୁଥିଲେ, ବାରମ୍ବାର ସେଇ ଦୁଇ ପକ୍ଷର 'ହା ରେ ରେ ରେ' ଶବ୍ଦରେ ଯେପରି ଡକାୟତ ହେବା ପରି ଏକ ଭୀଷଣ ଆଓ୍ୱାଜ ଉଠିଲା । କାଳୀମନ୍ଦିରର ଦରୁଆନ୍‌ମାନେ ଯିଏ ଯେଉଁଠିଥିଲେ ଅସ୍ତବ୍ୟସ୍ତ ହୋଇ ହାତରେ ଲାଠିଧରି ସେଠାକୁ ଧାଇଁ ଆସିଲେ । ଅନ୍ୟମାନେ ଭୟରେ ଅସ୍ଥିର ହେଲେ । ଯାହାହେଉ, ଗୌରୀ ଏବେ ଠାକୁରଙ୍କ ଅପେକ୍ଷା ଉଚ୍ଚତର ସ୍ୱରରେ ଆଉ ସେହି ସକଳ କଥା ଉଚ୍ଚାରଣ କରି ନ ପାରି ଶାନ୍ତ ହେଲେ ଏବଂ ଟିକିଏ ବିଷଣ୍ଣ ଭାବରେ ଧୀରେ ଧୀରେ କାଳୀମନ୍ଦିରରେ ପ୍ରବେଶ କଲେ । ଅନ୍ୟମାନେ ସମସ୍ତେ ଠାକୁର ଏବଂ ନବାଗତ ପଣ୍ଡିତଜୀ ହିଁ ସେପରି କରୁଥିବା ଜାଣି ପାରି ହସି ହସି ଯିଏ ଯାହା ସ୍ଥାନକୁ ଫେରିଗଲେ । ଠାକୁର କହୁଥିଲେ, ''ତା'ପରେ ମା' ଜଣାଇଦେଲେ, ଗୌରୀ ଯେଉଁ ଶକ୍ତି ବା ସିଦ୍ଧି ବଳରେ ଲୋକମାନଙ୍କର ବଳହରଣ କରି ନିଜେ ଅଜେୟ ରହୁଥିଲେ, ସେହି ଶକ୍ତିର ଏଠାରେ ଏପରି ପରାଜୟ ହେବାରୁ ତାଙ୍କର ଆଉ ସେ ସିଦ୍ଧି ରହିଲା ନାହିଁ ! ମା' ତାର କଲ୍ୟାଣ ନିମିତ୍ତ ତା'ର ଶକ୍ତିକୁ (ନିଜକୁ ଦେଖାଇ) ଏହା ଭିତରକୁ ଟାଣିନେଲେ ।'' ବାସ୍ତବିକ୍ ଦେଖା ଯାଇଥିଲା, ଗୌରୀ ଦିନକୁ ଦିନ ଠାକୁରଙ୍କ ଭାବରେ ମୋହିତ ହୋଇ ତାଙ୍କର ସମ୍ପୂର୍ଣ୍ଣ ବଶ୍ୟତା ସ୍ୱୀକାର କରିଥିଲେ ।

### ଗୌରୀଙ୍କର ନିଜ ପତ୍ନୀଙ୍କୁ ଦେବୀବୁଦ୍ଧିରେ ପୂଜା :

ପୂର୍ବରୁ କହିଛୁ, ଗୌରୀ ପଣ୍ଡିତ ତାନ୍ତ୍ରିକ ସାଧକ ଥିଲେ । ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛୁ, ଗୌରୀ ପ୍ରତିବର୍ଷ ଦୁର୍ଗାପୂଜା ସମୟରେ ଜଗଦମ୍ବାଙ୍କ ପୂଜାର ଯଥାଯଥ ଆୟୋଜନ କରୁଥିଲେ, ଏବଂ ବସନ ଅଳଙ୍କାର ଆଦିରେ ବିଭୂଷିତା କରି ଚିତ୍ରିତ ପୀଠରେ ବସାଇ ନିଜର ଗୃହିଣୀଙ୍କୁ ହିଁ ଶ୍ରୀଶ୍ରୀଜଗଦମ୍ବା ଜ୍ଞାନରେ ତିନିଦିନ ଭକ୍ତିଭାବରେ ପୂଜା କରୁଥିଲେ । ତନ୍ତ୍ରର ଶିକ୍ଷା ହେଉଛି, ଯେତେ ସ୍ତ୍ରୀ-ମୂର୍ତ୍ତି, ସମସ୍ତେ ସାକ୍ଷାତ୍ ଜଗଦମ୍ବାଙ୍କର ମୂର୍ତ୍ତି — ସମସ୍ତଙ୍କ ମଧ୍ୟରେ ହିଁ ଜଗନ୍ମାତାଙ୍କର ଜଗତପାଳିନୀ ଓ ଆନନ୍ଦଦାୟିନୀ ଶକ୍ତିର ବିଶେଷ ପ୍ରକାଶ ପାଇଥାଏ । ସେଥିପାଇଁ ସ୍ତ୍ରୀ-ମୂର୍ତ୍ତିମାତ୍ରେ ମାନବ ପବିତ୍ରଭାବରେ ପୂଜା କରିବା ଉଚିତ୍ । ସ୍ତ୍ରୀ-ମୂର୍ତ୍ତି ଅନ୍ତରାଳରେ ଶ୍ରୀଶ୍ରୀଜଗନ୍ମାତା ସ୍ୱୟଂ ରହିଛନ୍ତି, ଏକଥା ସ୍ମରଣ ନ ରଖି ଭୋଗ୍ୟବସ୍ତୁମାତ୍ର ଭାବି ସକାମଭାବରେ ସ୍ତ୍ରୀ-ଶରୀରକୁ ଦେଖିଲେ ସେଥିରେ ଶ୍ରୀଶ୍ରୀଜଗନ୍ମାତାଙ୍କର ହିଁ ଅବମାନନା କରାହୁଏ ଏବଂ ସେଥିରେ ମାନବର ଅଶେଷ ଅକଲ୍ୟାଣ ହୁଏ । ଚଣ୍ଡୀରେ ଦେବତାମାନେ ଦେବୀଙ୍କୁ ସ୍ତବ କରୁଥିବା ବେଳେ ଏହା କହିଛନ୍ତି —

ବିଦ୍ୟାଃ ସମସ୍ତାସ୍ତବ ଦେବି ଭେଦାଃ,
ସ୍ତ୍ରିୟଃ ସମସ୍ତାଃ ସକଳା ଜଗସ୍ତୁ ।
ତ୍ୱୟୈକୟା ପୂରିତମମ୍ବୟୈତତ୍
କା ତେ ସ୍ତୁତିଃ ସ୍ତବ୍ୟପରାପରୋକ୍ତିଃ ॥

[—ହେ ଦେବୀ ! ତୁମେ ହିଁ ଜ୍ଞାନ ରୂପିଣୀ; ଜଗତରେ ଉଚ୍ଚ ନୀଚ ଯେତେ ପ୍ରକାର ବିଦ୍ୟା ଅଛି—ଯେଉଁଥିରୁ ଲୋକମାନଙ୍କର ଅଶେଷ ପ୍ରକାର ଜ୍ଞାନ ଉଦୟ ହେଉଅଛି—ସେ ସମସ୍ତ ତୁମେ ହିଁ, ସେହି ସେହି ରୂପରେ ତୁମେ ହିଁ ପ୍ରକାଶିତା । ତୁମେ ହିଁ ସ୍ୱୟଂ ଜଗତର ଯାବତୀୟ ସ୍ତ୍ରୀ-ମୂର୍ତ୍ତିରୂପରେ ବିଦ୍ୟମାନା । ତୁମେ ହିଁ ଏକାକିନୀ ସମଗ୍ର ଜଗତ ପୂର୍ଣ୍ଣ କରି ତାହାର ସର୍ବତ୍ର ବିଦ୍ୟମାନ ଅଛ । ତୁମେ ଅତୁଳନୀୟା, ବାକ୍ୟାତୀତା—ସ୍ତବ କରି ତୁମର ଅନନ୍ତ ଗୁଣର ଉଲ୍ଲେଖ କରିବାକୁ କିଏ ସମର୍ଥ ହୋଇଛି ନା ହୋଇପାରିବ !]

ଭାରତରେ ସର୍ବତ୍ର ପ୍ରତିଦିନ ଅନେକେ ଏହି ସ୍ତବ ପାଠ କରିଥାଆନ୍ତି । କିନ୍ତୁ ହାୟ ! କେତେଜଣ କେତେକ୍ଷଣ ଦେବୀବୁଦ୍ଧିରେ ସ୍ତ୍ରୀ-ଶରୀର ଅବଲୋକନ କରି ସେହି ପ୍ରକାର ଯଥାଯଥ ସମ୍ମାନ ଦେଇ ବିଶୁଦ୍ଧ ଆନନ୍ଦ ହୃଦୟରେ ଅନୁଭବ କରି କୃତାର୍ଥ ହେବାକୁ ଉଦ୍ୟମ କରିଥାଆନ୍ତି ? ଶ୍ରୀଶ୍ରୀଜଗନ୍ମାତାଙ୍କର ବିଶେଷ-ପ୍ରକାଶର ଆଧାରସ୍ୱରୂପିଣୀ ସ୍ତ୍ରୀ-ମୂର୍ତ୍ତିକୁ ହୀନ ବୁଦ୍ଧିରେ କଲୁଷିତ ନୟନରେ ଦେଖି କିଏ ବା ଦିନ ଭିତରେ ଶତ ସହସ୍ରବାର ତାଙ୍କର ଅବମାନନା କରି ନ ଥାନ୍ତି ? ହାୟ ଭାରତ, ସେହିପରି ପଶୁବୁଦ୍ଧିରେ ସ୍ତ୍ରୀ-ଶରୀରର ଅବମାନନା କରି ହିଁ ଏବଂ ଶିବଜ୍ଞାନରେ ଜୀବସେବା କରିବାକୁ ଭୁଲି ତୁମର ଏପରି ଦୁର୍ଦ୍ଦଶା । କେବେ ଜଗଦମ୍ବା ପୁଣି କୃପା କରି ତୁମର ଏହି ପଶୁବୁଦ୍ଧିକୁ ଦୂର କରିବେ, ତାହା ସେ ହିଁ ଜାଣନ୍ତି !

## ଗୌରୀ ପଣ୍ଡିତଙ୍କର ଅଦ୍ଭୁତ ହୋମପ୍ରଣାଳୀ :

ଗୌରୀ ପଣ୍ଡିତଙ୍କର ଆଉ ଏକ ଅଦ୍ଭୁତ ଶକ୍ତି କଥା ଆମେ ଠାକୁରଙ୍କର ଶ୍ରୀମୁଖରୁ ଶୁଣିଥିଲୁ । ବିଶିଷ୍ଟ ତାନ୍ତ୍ରିକ ସାଧକମାନେ ଜଗନ୍ମାତାଙ୍କର ନିତ୍ୟ ପୂଜାପରେ ହୋମ କରି ଥାଆନ୍ତି । ଗୌରୀ ମଧ୍ୟ ସବୁଦିନ ନ ହେଲେ ମଧ୍ୟ ଅନେକ ସମୟରେ ହୋମ କରୁଥିଲେ । କିନ୍ତୁ ତାଙ୍କର ହୋମର ପ୍ରଣାଳୀ ଅତି ଅଦ୍ଭୁତ ଥିଲା । ଅନ୍ୟ ସାଧାରଣ ବ୍ୟକ୍ତି ଯେପରି ଭୂମି ଉପରେ ମାଟି ବା ବାଲିଦ୍ୱାରା ବେଦୀ ତିଆରି କରି ତା ଉପରେ କାଠ ସଜାଇ ଅଗ୍ନି ପ୍ରଜ୍ୱଳିତ କରି ଆହୂତି ପ୍ରଦାନ କରନ୍ତି, ଗୌରୀ ସେପରି କରୁ ନ ଥିଲେ । ସେ ନିଜ ବାମହସ୍ତ ଶୂନ୍ୟରେ ପ୍ରସାରିତ କରି ହସ୍ତ ଉପରେ ଏକାଥରକେ ଏକମହଣ କାଠ ସଜାଉଥିଲେ ଏବଂ ଅଗ୍ନି ପ୍ରଜ୍ୱଳିତ କରି ସେହି ଅଗ୍ନିରେ ଦକ୍ଷିଣହସ୍ତ ଦ୍ୱାରା ଆହୂତି ପ୍ରଦାନ କରୁଥିଲେ ! ହୋମ କରିବାକୁ

କିଛି କମ୍ ସମୟ ଲାଗେ ନାହିଁ, ସେତେ ସମୟ ହସ୍ତ ଶୂନ୍ୟରେ ପ୍ରସାରିତ ରଖି ସେହି ଏକ ମହଣ କାଠର ଗୁରୁଭାର ଧାରଣ କରି ରହିବା ଏବଂ ତଦୁପରି ହସ୍ତରେ ଅଗ୍ନିର ଉତ୍ତାପ ସହ୍ୟ କରି ମନ ସ୍ଥିର ରଖିବା ଓ ଯଥାଯଥଭାବରେ ଭକ୍ତିପୂର୍ଣ୍ଣ ହୃଦୟରେ ଆହୁତି ପ୍ରଦାନ କରିବା—ଆମମାନଙ୍କ ନିକଟରେ ସମ୍ପୂର୍ଣ୍ଣ ଅସମ୍ଭବ ବୋଲି ବୋଧ ହୁଏ । ସେଥିପାଇଁ ଆମ ଭିତରୁ ଅନେକେ ଠାକୁରଙ୍କ ମୁହଁରୁ ଶୁଣି ମଧ୍ୟ ସେକଥା ସହସା ବିଶ୍ୱାସ କରିପାରି ନ ଥିଲେ । ଠାକୁର ସେମାନଙ୍କର ମନୋଭାବ ବୁଝି କହୁଥିଲେ, ''ମୁଁ ନିଜ ଚକ୍ଷୁରେ ତାଙ୍କୁ ସେପରି କରିବାର ଦେଖିଛି ରେ ! ଏହା ମଧ୍ୟ ତାଙ୍କର ଏକ ସିଦ୍ଧି ଥିଲା ।''

### ବୈଷ୍ଣବଚରଣ ଓ ଗୌରୀଙ୍କୁ ନେଇ ଦକ୍ଷିଣେଶ୍ୱରରେ ସଭା । ଭାବାବେଶରେ ଠାକୁର ବୈଷ୍ଣବଚରଣଙ୍କର ସ୍କନ୍ଧରେ ଆରୋହଣ କରିବା ଏବଂ ତାଙ୍କର ସ୍ତବ :

ଗୌରୀ ପଣ୍ଡିତଙ୍କର ଦକ୍ଷିଣେଶ୍ୱର ଆଗମନର କିଛି ଦିନ ପରେ ମଥୁରବାବୁ ବୈଷ୍ଣବଚରଣପ୍ରମୁଖ କେତେଜଣ ସାଧକ ପଣ୍ଡିତଙ୍କୁ ଆମନ୍ତ୍ରିତ କରି ଏକ ସଭାର ଆୟୋଜନ କଲେ । ଉଦ୍ଦେଶ୍ୟ, ପୂର୍ବପରି ଠାକୁରଙ୍କର ଆଧ୍ୟାତ୍ମିକ ଅବସ୍ଥା ବିଷୟ ଶାସ୍ତ୍ରୀୟ ପ୍ରମାଣ ପ୍ରୟୋଗରେ ନବାଗତ ପଣ୍ଡିତ ମହାଶୟଙ୍କ ସହିତ ଆଲୋଚନା ଓ ସିଦ୍ଧାନ୍ତରେ ଉପନୀତ ହେବା । ପ୍ରାତଃକାଳରେ ସଭା ଆହୂତ ହୋଇଥିଲା । ସ୍ଥାନ— ଶ୍ରୀଶ୍ରୀକାଳୀମାତାଙ୍କର ମନ୍ଦିର ସମ୍ମୁଖ ନାଟମନ୍ଦିର । ବୈଷ୍ଣବଚରଣଙ୍କର କଲିକତାରୁ ଆସିବା ବିଳମ୍ବ ହେଉଛି ଦେଖି ଠାକୁର ଗୌରୀଙ୍କୁ ସାଙ୍ଗରେ ଧରି ପ୍ରଥମେ ହିଁ ସଭାସ୍ଥଳକୁ ଗଲେ ଏବଂ ସଭାସ୍ଥଳରେ ପହଞ୍ଚିବା ପୂର୍ବରୁ ଶ୍ରୀଶ୍ରୀଜଗନ୍ମାତା କାଳୀଙ୍କ ମନ୍ଦିରରେ ପ୍ରବେଶ କରି ଭକ୍ତିଭାବରେ ତାଙ୍କର ଶ୍ରୀମୂର୍ତ୍ତିଦର୍ଶନ ଓ ଶ୍ରୀଚରଣବନ୍ଦନାଦି କରି ଭାବରେ ଟଳମଳ ହୋଇ ଯେମିତି ମନ୍ଦିରର ବାହାରକୁ ଆସିଲେ, ଦେଖିଲେ ସାମନାରେ ବୈଷ୍ଣବଚରଣ ତାଙ୍କ ପଦପ୍ରାନ୍ତରେ ପ୍ରଣତ ହେଉଛନ୍ତି । ଏହା ଦେଖି ଠାକୁର ଭାବରେ ସମାଧିସ୍ଥ ହୋଇ ବୈଷ୍ଣବଚରଣଙ୍କର ସ୍କନ୍ଧଦେଶରେ ବସିପଡ଼ିଲେ ଏବଂ ବୈଷ୍ଣବଚରଣ ସେଥିରେ ନିଜକୁ କୃତାର୍ଥ ଜ୍ଞାନ କରି ଆନନ୍ଦରେ ଉଲ୍ଲସିତ ହୋଇ ସଙ୍ଗେ ସଙ୍ଗେ ସଂସ୍କୃତ ଭାଷାରେ ସ୍ତବ ରଚନା କରି ଠାକୁରଙ୍କୁ ସ୍ତବ କରିବାକୁ ଲାଗିଲେ । ଠାକୁରଙ୍କର ସେହି ସମାଧିସ୍ଥ ପ୍ରସନ୍ନୋଜ୍ଜ୍ୱଳ ମୂର୍ତ୍ତି ଦେଖି ଏବଂ ବୈଷ୍ଣବଚରଣଙ୍କର ତଦ୍ରୂପ ଆନନ୍ଦୋଚ୍ଛ୍ୱାସିତ ହୃଦୟରେ ସୁଲଳିତ ସ୍ତବପାଠ ଶୁଣି ମଥୁରପ୍ରମୁଖ ଉପସ୍ଥିତ ସମସ୍ତେ ସ୍ଥିରନେତ୍ରରେ ଭକ୍ତିପୂର୍ଣ୍ଣ ହୃଦୟରେ ଚତୁର୍ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ସ୍ତମ୍ଭିତଭାବରେ ଅବସ୍ଥାନ କରିବାକୁ ଲାଗିଲେ । କିଛି ସମୟ ପରେ ଠାକୁରଙ୍କର ସମାଧିଭଙ୍ଗ ହେଲା, ତାପରେ ଧୀରେ ଧୀରେ ସମସ୍ତେ ତାଙ୍କ ସହିତ ସଭାସ୍ଥଳକୁ ଯାଇ ଉପବିଷ୍ଟ ହେଲେ ।

ଏଥର ସଭା କାର୍ଯ୍ୟ ଆରମ୍ଭ ହେଲା । କିନ୍ତୁ ଗୌରୀ ପ୍ରଥମେ ହିଁ (ଠାକୁରଙ୍କୁ ଦେଖାଇ) କହିଉଠିଲେ— "ଇଏ ଯେତେବେଳେ ପଣ୍ଡିତଜୀଙ୍କୁ ଏପରି କୃପା କଲେ, ସେତେବେଳେ ଆଜି ମୁଁ ତାଙ୍କ ସହିତ (ବୈଷ୍ଣବଚରଣଙ୍କ ସହିତ) ତର୍କରେ ପ୍ରବୃତ୍ତ ହେବି ନାହିଁ; ହେଲେ ମଧ୍ୟ ମୋତେ ନିଶ୍ଚୟ ପରାଜିତ ହେବାକୁ ପଡ଼ିବ, କାରଣ ସେ (ବୈଷ୍ଣବଚରଣ) ଆଜି ଦୈବବଳରେ ବଳୀୟାନ ! ବିଶେଷତଃ ମୁଁ (ବୈଷ୍ଣବଚରଣ) ତ ଦେଖୁଛି ସେ ମୋର ମତର ଲୋକ—ଠାକୁରଙ୍କ ସମ୍ବନ୍ଧରେ ତାଙ୍କର ଯାହା ଧାରଣା, ମୋର ମଧ୍ୟ ତାହା; ତେଣୁ ଏସ୍ଥଳରେ ତର୍କ ନିଷ୍ପ୍ରୟୋଜନ ।" ଅତଃପର ଶାସ୍ତ୍ରୀୟ ଅନ୍ୟାନ୍ୟ କଥାବାର୍ତ୍ତାରେ କିଛିକ୍ଷଣ କଟାଇ ସଭାଭଙ୍ଗ ହେଲା ।

ଗୌରୀ ଯେ ବୈଷ୍ଣବଚରଣଙ୍କର ପାଣ୍ଡିତ୍ୟରେ ଭୟ ପାଇ ତାଙ୍କ ସହିତ ଆଜି ତର୍କଯୁଦ୍ଧରେ ନିରସ୍ତ ହେଲେ, ତାହା ନୁହେଁ । ଠାକୁରଙ୍କର ଚାଲି-ଚଳନ, ଆଚାର-ବ୍ୟବହାର ଏବଂ ଅନ୍ୟାନ୍ୟ ଲକ୍ଷଣ ସବୁ ଦେଖି ଏହି ଅଳ୍ପ ଦିନରେ ସେ ତପସ୍ୟା-ପ୍ରସୂତ ତୀକ୍ଷ୍ଣଦୃଷ୍ଟି ସହାୟରେ ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ ଯେ, ଇଏ ସାମାନ୍ୟ ନୁହଁନ୍ତି, ଇଏ ଜଣେ ମହାପୁରୁଷ ! କାରଣ, ଏହାର କିଛି ଦିନପରେ ଠାକୁର ଦିନେ ଗୌରୀଙ୍କର ମନ ପରୀକ୍ଷା କରିବା ନିମିତ୍ତ ତାଙ୍କୁ ପଚାରିଥିଲେ— "ବୈଷ୍ଣବଚରଣ (ନିଜର ଦେହକୁ ଦେଖାଇ) ଏହାକୁ ଅବତାର ବୋଲି କହନ୍ତି; ଏହା କ'ଣ ହୋଇପାରେ ? ତମର କ'ଣ ମନେହୁଏ, କହିଲ ?"

**ଠାକୁରଙ୍କ ସମ୍ବନ୍ଧରେ ଗୌରୀପଣ୍ଡିତଙ୍କ ଧାରଣା :**

ଗୌରୀ ଏହି ପ୍ରଶ୍ନରେ, ଗମ୍ଭୀର ହୋଇ ଉତ୍ତର ଦେଲେ— "ବୈଷ୍ଣବଚରଣ ଆପଣଙ୍କୁ ଅବତାର କହୁଛନ୍ତି ? ତେବେ ତ' ଛୋଟ କଥା କହୁଛନ୍ତି । ମୋର ଧାରଣା, ଯାହାଙ୍କ ଅଂଶରୁ ଯୁଗେ ଯୁଗେ ଅବତାରମାନେ ଲୋକକଲ୍ୟାଣସାଧନ ପାଇଁ ଜଗତରେ ଅବତୀର୍ଣ୍ଣ ହୋଇଥାଆନ୍ତି, ଯାହାଙ୍କ ଶକ୍ତିରେ ସେମାନେ ସେହି କାର୍ଯ୍ୟ ସାଧନ କରନ୍ତି, ଆପଣ ସେ ହିଁ !" ଠାକୁର ଏହା ଶୁଣି ହସି ହସି କହିଲେ— "ଆରେ ବାବା ! ତୁମେ ଯେ ତାଙ୍କୁ ମଧ୍ୟ (ବୈଷ୍ଣବଚରଣଙ୍କୁ) ଟପିଗଲ ! କାହିଁକି କୁହ ତ ? ମୋ ଠାରେ ଏମିତି କ'ଣ ଦେଖିଛ, କୁହ ଦେଖି ?" ଗୌରୀ କହିଲେ, "ଶାସ୍ତ୍ରପ୍ରମାଣ ଏବଂ ନିଜ ପ୍ରାଣର ଅନୁଭବରୁ କହୁଛି । ଏହି ବିଷୟରେ ଯଦି କେହି ବିରୁଦ୍ଧ ପକ୍ଷ ଅବଲମ୍ବନ କରି ମୋ ସହିତ ତର୍କରେ ପ୍ରବୃତ୍ତ ହୁଅନ୍ତି, ତେବେ ମୁଁ ମୋର ଧାରଣା ପ୍ରମାଣ କରିବାକୁ ପ୍ରସ୍ତୁତ ଅଛି ।"

ଠାକୁର ବାଳକ ପରି କହିଲେ, "ତମେ ସବୁ ଏତେ କଥା କୁହ, କିନ୍ତୁ କିଏ ଜାଣେ ବାବା, ମୁଁ ତ କିଛି ଜାଣେ ନାହିଁ !" ଗୌରୀ କହିଲେ, "ଠିକ୍ କଥା । ଶାସ୍ତ୍ର ମଧ୍ୟ ସେହି କଥା କହେ— ଆପଣ ମଧ୍ୟ ଆପଣଙ୍କୁ ଜାଣନ୍ତି ନାହିଁ । ଅତଏବ

ଅନ୍ୟମାନେ ଆପଣଙ୍କୁ କିପରି ଜାଣିବେ କୁହନ୍ତୁ ତ ? ଯଦି କାହାକୁ କୃପା କରି ଜଣାନ୍ତି ତେବେ ହିଁ ସେ ଜାଣିପାରିବ ।''

## ଠାକୁରଙ୍କ ସଂସର୍ଗରେ ଗୌରୀଙ୍କର ବୈରାଗ୍ୟ ଓ ସଂସାରତ୍ୟାଗ କରି ତପସ୍ୟା କରିବାକୁ ଯିବା :

ପଣ୍ଡିତଜୀଙ୍କର ବିଶ୍ୱାସ କଥା ଶୁଣି ଠାକୁର ହସିବାକୁ ଲାଗିଲେ । ଦିନକୁ ଦିନ ଠାକୁରଙ୍କ ପ୍ରତି ଗୌରୀ ଅଧିକତର ଆକୃଷ୍ଟ ହେବାକୁ ଲାଗିଲେ । ତାଙ୍କର ଶାସ୍ତ୍ରଜ୍ଞାନ ଓ ସାଧନାର ଫଳ ଏତେଦିନରେ ଠାକୁରଙ୍କ ଦିବ୍ୟସଙ୍ଗରେ ପୂର୍ଣ୍ଣ ପରିଣତି ଲାଭ କରି ସଂସାରରେ ତୀବ୍ର ବୈରାଗ୍ୟରୂପରେ ପ୍ରକାଶ ପାଇବାକୁ ଲାଗିଲା । ଦିନକୁ ଦିନ ତାଙ୍କର ମନ ପାଣ୍ଡିତ୍ୟ, ଲୋକମାନ୍ୟ, ସିଦ୍ଧି ପ୍ରଭୃତି ସକଳ ବସ୍ତୁ ପ୍ରତି ବୀତରାଗ ହୋଇ ଈଶ୍ୱରଙ୍କର ଶ୍ରୀପାଦପଦ୍ମରେ କେନ୍ଦ୍ରିତ ହେବାକୁ ଲାଗିଲା । ଏବେ ଆଉ ଗୌରୀଙ୍କର ପୂର୍ବପରି ପାଣ୍ଡିତ୍ୟର ଅହଂକାର ନାହିଁ, ସେ ଦାମ୍ଭିକତା କେଉଁଠି ଭାସିଯାଇଛି, ସେ ତର୍କପ୍ରିୟତା ସମ୍ପୂର୍ଣ୍ଣ ନୀରବ ହୋଇଛି । ସେ ଏବେ ବୁଝିଛନ୍ତି, ଈଶ୍ୱରପାଦପଦ୍ମ-ଲାଭର ଏକାନ୍ତ ଚେଷ୍ଟା ନ କରି ଏତେ ଦିନ ବୃଥା କାଳ କଟାଇଛନ୍ତି—ଆଉ ସେପରି କାଳକ୍ଷେପଣ କରିବା ଉଚିତ ନୁହେଁ । ତାଙ୍କ ମନରେ ଏବେ ସ୍ଥିର ସଂକଳ୍ପ ହେଲା ଯେ, ସର୍ବସ୍ୱ ତ୍ୟାଗ କରି ଈଶ୍ୱରଙ୍କ ପ୍ରତି ଭକ୍ତିପୂର୍ଣ୍ଣ ଚିତ୍ତରେ ସମ୍ପୂର୍ଣ୍ଣ ନିର୍ଭର କରି ବ୍ୟାକୁଳ ଅନ୍ତରରେ ତାହାଙ୍କୁ ଡାକି ଦିନଗୁଡ଼ିକ କଟାଇଦେବେ; ଏହି ପ୍ରକାରରେ ଯଦି ତାଙ୍କର କୃପା ଓ ଦର୍ଶନଲାଭ କରିପାରନ୍ତି !

ଏହିପରି ଠାକୁରଙ୍କର ସଙ୍ଗସୁଖ ଓ ଈଶ୍ୱରଚିନ୍ତାରେ ଦିନ ପରେ ଦିନ, ମାସ ପରେ ମାସ କଟିବାକୁ ଲାଗିଲା । ଅନେକ ଦିନ ଘରଠାରୁ ଦୂରରେ ଥିବାରୁ ପଣ୍ଡିତ ମହାଶୟଙ୍କର ସ୍ତ୍ରୀ-ପୁତ୍ର-ପରିବାରବର୍ଗ ବାରମ୍ବାର ପତ୍ର ଲେଖିବାକୁ ଲାଗିଲେ । କାରଣ, ସେମାନେ ଲୋକମୁଖରେ ଆଭାସ ପାଉଥିଲେ, ଦକ୍ଷିଣେଶ୍ୱରର କୌଣସି ଏକ ଉନ୍ମତ୍ତ ସାଧୁଙ୍କ ସହିତ ମିଳିତ ହୋଇ ପଣ୍ଡିତଜୀଙ୍କର ମନର ଅବସ୍ଥା କିପରି ଅନ୍ୟ ପ୍ରକାର ହୋଇଯାଇଛି ।

କାଳେ ସେମାନେ ଦକ୍ଷିଣେଶ୍ୱର ଆସି ତାଙ୍କୁ ଟାଣି ଘୋଷାରି ସଂସାରରେ ପୁନରାୟ ଲିପ୍ତ କରାନ୍ତି, ସେମାନଙ୍କ ଚିଠିର ବିଷୟରୁ ପଣ୍ଡିତଜୀଙ୍କ ମନରେ ସେହି ଭାବନା ମଧ୍ୟ କ୍ରମଶଃ ପ୍ରବଳ ହେବାକୁ ଲାଗିଲା । ଅନେକ ପ୍ରକାର ଭାବି ଚିନ୍ତି ଗୌରୀ ଉପାୟ ଉଦ୍ଭାବନ କଲେ ଏବଂ ଶୁଭ ମୁହୂର୍ତ୍ତର ଉଦୟ ଜାଣି ଠାକୁରଙ୍କର ଶ୍ରୀପାଦପଦ୍ମରେ ପ୍ରଣତି ଜଣାଇ ସଜଳନୟନରେ ବିଦାୟ ପ୍ରାର୍ଥନା କଲେ । ଠାକୁର କହିଲେ, ''ସେ କ'ଣ ଗୌରୀ, ସହସା ବିଦାୟ କାହିଁକି ? କେଉଁଠାକୁ ଯିବ ?''

ଗୌରୀ କରଯୋଡ଼ି କହିଲେ, ''ଆଶୀର୍ବାଦ କରନ୍ତୁ ଯେପରି ଅଭୀଷ୍ଟ ସିଦ୍ଧ ହୁଏ । ଈଶ୍ୱରବସ୍ତୁ ଲାଭ ନ କରି ଆଉ ସଂସାରକୁ ପ୍ରତ୍ୟାବର୍ତ୍ତନ କରିବି ନାହିଁ ।'' ତଦବଧି ସଂସାରରେ ଆଉ କେବେ କେହି ବହୁ ଅନ୍ୱେଷଣ କରି ମଧ୍ୟ ଗୌରୀ ପଣ୍ଡିତଙ୍କର ଦେଖାପାଇ ନ ଥିଲେ ।

**ବୈଷ୍ଣବଚରଣ ଓ ଗୌରୀଙ୍କର କଥା ଉଲ୍ଲେଖ କରି ଠାକୁରଙ୍କର ଉପଦେଶ — ନରଲୀଳାରେ ବିଶ୍ୱାସ :**

ଏହିପରି ଠାକୁର ବୈଷ୍ଣବଚରଣ ଓ ଗୌରୀଙ୍କର ଜୀବନର ନାନା କଥା ଆମମାନଙ୍କ ନିକଟରେ ଅନେକ ସମୟରେ ଉଲ୍ଲେଖ କରୁଥିଲେ । ପୁଣି କେତେବେଳେ ଅଥବା କୌଣସି ବିଷୟର କଥାପ୍ରସଙ୍ଗରେ ସେମାନେ ସେହି ବିଷୟରେ କ'ଣ ମତାମତ ପ୍ରକାଶ କରିଥିଲେ, ସେବିଷୟର ମଧ୍ୟ ଉଲ୍ଲେଖ କରୁଥିଲେ । ଆମମାନଙ୍କର ମନେଅଛି, ଦିନେ ଜନୈକ ଭକ୍ତ ସାଧକଙ୍କୁ ଉପଦେଶ ଦେଉ ଦେଉ ଠାକୁର ତାଙ୍କୁ କହୁଥିଲେ, ''ମନୁଷ୍ୟଠାରେ ଇଷ୍ଟବୁଦ୍ଧି ଠିକ୍ ଠିକ୍ ହେଲେ ତେବେ ଭଗବାନଲାଭ ହୁଏ । ବୈଷ୍ଣବଚରଣ କହୁଥିଲେ — ନରଲୀଳାରେ ବିଶ୍ୱାସ ହେଲେ ତେବେ ପୂର୍ଣ୍ଣଜ୍ଞାନ ହୁଏ ।''

**କାଳୀ ଓ କୃଷ୍ଣ ଅଭେଦ, ଏସମ୍ବନ୍ଧରେ ଗୌରୀ :**

କେବେ କେବେ ବା କୌଣସି ଭକ୍ତର 'କାଳୀ' ଓ 'କୃଷ୍ଣ'ଙ୍କ ମଧ୍ୟରେ ବିଶେଷ ଭେଦବୁଦ୍ଧି ଦେଖି ଠାକୁର ତାଙ୍କୁ କହୁଥିଲେ, ''ତୋର ଏ କିପରି ହୀନ ବୁଦ୍ଧି ? ଜାଣିବୁ ଯେ ତୋର ଇଷ୍ଟ ହିଁ କାଳୀ, କୃଷ୍ଣ, ଗୌର ସବୁ ହୋଇଛନ୍ତି । ତା' ବୋଲି କ'ଣ ନିଜର ଇଷ୍ଟଙ୍କୁ ଛାଡ଼ି ତତେ ଗୌର ଭଜିବାକୁ କହୁଛି, ତାହା ନୁହେଁ । ତେବେ ଦ୍ୱେଷବୁଦ୍ଧି ତ୍ୟାଗ କରିବୁ । ତୋର ଇଷ୍ଟ ହିଁ କୃଷ୍ଣ ହୋଇଛନ୍ତି, ଗୌର ହୋଇଛନ୍ତି — ଏ ଜ୍ଞାନ ଭିତରେ ଠିକ୍ ରଖିବୁ । ଦେଖୁନ, ଗୃହସ୍ଥ ବୋହୂ ଶ୍ୱଶୁରଘର ଯାଇ ଶ୍ୱଶୁର, ଶାଶୁ, ନଣନ୍ଦ, ଦିଅର, ଦେଢ଼ଶୁର ସମସ୍ତଙ୍କୁ ଯଥାଯୋଗ୍ୟସମ୍ମାନ ଦେଇ ଭକ୍ତି ଓ ସେବା କରେ — କିନ୍ତୁ ମନର ସକଳ କଥା ଖୋଲି କହିବା ଓ ଶୋଇବା କେବଳ ନିଜ ସ୍ୱାମୀ ସଙ୍ଗରେ କରେ । ସେ ଜାଣେ ଯେ, ସ୍ୱାମୀଙ୍କ ପାଇଁ ହିଁ ଶ୍ୱଶୁର ଶାଶୁ ପ୍ରଭୃତି ତାର । ସେହିପରି ନିଜର ଇଷ୍ଟଙ୍କୁ ଏହି ସ୍ୱାମୀ ପରି ଜାଣିବୁ ଏବଂ ତାଙ୍କ ସହିତ ସମ୍ବନ୍ଧ ହେବାରୁ ହିଁ ତାଙ୍କର ଅନ୍ୟ ସମସ୍ତ ରୂପ ସହିତ ସମ୍ବନ୍ଧ, ସେମାନଙ୍କୁ ଶ୍ରଦ୍ଧା ଭକ୍ତି କରିବା — ଏହା ଜାଣିବୁ । ଏପରି ଜାଣି ଦ୍ୱେଷବୁଦ୍ଧିକୁ ତଡ଼ି ଦେବୁ । ଗୌରୀ କହୁଥିଲା — 'କାଳୀ ଏବଂ ଗୌରାଙ୍ଗ ଏକ ବୋଧ ହେଲେ ବୁଝିବ ପ୍ରକୃତ ଜ୍ଞାନ ହେଲା' ।''

## ଭଲପାଇବାର ପାତ୍ରକୁ ଭଗବାନଙ୍କର ମୂର୍ତ୍ତି ବୋଲି ଭାବିବା ସମ୍ବନ୍ଧରେ ବୈଷ୍ଣବଚରଣ :

ପୁଣି କେତେବେଳେ ଠାକୁର କୌଣସି ଭକ୍ତର ମନ ସଂସାରରେ କାହାପ୍ରତି ଅତ୍ୟନ୍ତ ଆସକ୍ତ ଥିବାରୁ ସ୍ଥିର ହୋଇପାରୁ ନାହିଁ ଦେଖି ତାକୁ ତାର ଭଲପାଇବାର ପାତ୍ରକୁ ଭଗବାନଙ୍କ ମୂର୍ତ୍ତିଜ୍ଞାନରେ ସେବା କରିବାକୁ ଓ ଭଲ ପାଇବାକୁ କହୁଥିଲେ । ଲୀଳାପ୍ରସଙ୍ଗରେ ପୂର୍ବରୁ ଗୋଟିଏ ଜାଗାରେ ଆମେ ପାଠକଙ୍କୁ କହିଛୁ, କିପରି ଠାକୁର ଜନୈକା ସ୍ତ୍ରୀ-ଭକ୍ତଙ୍କର ମନ ତାଙ୍କର ଅଳ୍ପବୟସ୍କ ଭ୍ରାତୁଷ୍ପୁତ୍ର ଉପରେ ଅତ୍ୟନ୍ତ ଆସକ୍ତ ଦେଖି ତାଙ୍କୁ ସେହି ବାଳକକୁ ଗୋପାଳ ବା ବାଳକୃଷ୍ଣ-ଜ୍ଞାନରେ ସେବା କରିବାକୁ ଓ ଭଲପାଇବାକୁ କହୁଥିଲେ ଏବଂ ଏପରି କରିବା ଫଳରେ ସେହି ସ୍ତ୍ରୀ-ଭକ୍ତଙ୍କର ସ୍ୱଳ୍ପକାଳରେ ଭାବସମାଧି-ଉଦୟ ହେବା କଥା ଉଲ୍ଲେଖ କରିଅଛୁ ।[୧] ଭଲପାଇବାର ପାତ୍ରକୁ ଈଶ୍ୱରଜ୍ଞାନରେ ଶ୍ରଦ୍ଧା ଓ ଭକ୍ତି କରିବା କଥା କହୁ କହୁ ବେଳେ ବେଳେ ଠାକୁର ବୈଷ୍ଣବଚରଣଙ୍କର ସେହି ବିଷୟକ ମତର ଉଲ୍ଲେଖ କରି କହୁଥିଲେ, "ବୈଷ୍ଣବଚରଣ କହୁଥିଲା, ଯିଏ ଯାହାକୁ ଭଲପାଏ ତାକୁ ଇଷ୍ଟ ବୋଲି ଭାବିଲେ ଭଗବାନଙ୍କଠାରେ ଶୀଘ୍ର ମନ ଯାଏ ।" ଏହା କହି ପୁଣି ବୁଝାଇ ଦେଉଥିଲେ, "ସେ ସେହିକଥା ତାଙ୍କର ସମ୍ପ୍ରଦାୟର ମହିଳାମାନଙ୍କୁ କରିବାକୁ କହୁଥିଲେ, ତେଣୁ ତାହା ଦୋଷଣୀୟ ହେଉ ନ ଥିଲା—ସେମାନଙ୍କର ସବୁ ପରକୀୟା ନାୟିକାର ଭାବ ତ ! ପରକୀୟା ନାୟିକାର ଉପପତି ଉପରେ ମନର ଯେପରି ଟାଣ, ସେଇ ଟାଣଟିକୁ ଈଶ୍ୱରଙ୍କଠାରେ ଆରୋପ କରିବାକୁ ହିଁ ସେମାନେ ଚାହୁଁଥିଲେ ।" ଏହା କିନ୍ତୁ ସମସ୍ତଙ୍କୁ ଶିକ୍ଷା ଦେବାର କଥା ନୁହେଁ, ଏହା ମଧ୍ୟ ଠାକୁର କହୁଥିଲେ । କହୁଥିଲେ, ସେଥିରେ ବ୍ୟଭିଚାର ବଢ଼ିବ । ତେବେ ନିଜର ପତି ପୁତ୍ର ବା ଅନ୍ୟ କୌଣସି ଆତ୍ମୀୟକୁ ଈଶ୍ୱରଙ୍କ ମୂର୍ତ୍ତି ଜ୍ଞାନରେ ସେବା କରିବାକୁ, ଭଲ ପାଇବାକୁ ଠାକୁରଙ୍କର ଅମତ ନ ଥିଲା ଏବଂ ତାଙ୍କର ପଦାଶ୍ରିତ ଅନେକ ଭକ୍ତଙ୍କୁ ଯେ ସେ ସେପରି କରିବାକୁ ଶିକ୍ଷା ଦେଉଥିଲେ, ତାହା ଆମକୁ ଜଣାଅଛି ।

## ଉପରୋକ୍ତ ଉପଦେଶ ଶାସ୍ତ୍ରସମ୍ମତ—ଉପନିଷଦର ଯାଜ୍ଞବଲ୍କ୍ୟ-ମୈତ୍ରେୟୀ ସମ୍ବାଦ :

ଭାବି ଦେଖିଲେ ବୁଝାଯାଏ ଯେ, ବାସ୍ତବରେ ଏହା ଅଶାସ୍ତ୍ରୀୟ ନବୀନ ମତ ନୁହେଁ । ଉପନିଷଦ୍‌କାର ଋଷି ଯାଜ୍ଞବଲ୍କ୍ୟ-ମୈତ୍ରେୟୀ[୨] ସମ୍ବାଦରେ ଶିକ୍ଷା

୧. ପୂର୍ବାର୍ଦ୍ଧ, ପ୍ରଥମ ଅଧ୍ୟାୟ
୨. ବୃହଦାରଣ୍ୟକ ଉପନିଷଦ—୫ମ ବ୍ରାହ୍ମଣ

ଦେଉଛନ୍ତି — ପତିଙ୍କ ଭିତରେ ଆତ୍ମସ୍ୱରୂପ ଶ୍ରୀଭଗବାନ ରହିଛନ୍ତି ବୋଲି ହିଁ ସ୍ତ୍ରୀର ପତିଙ୍କୁ ପ୍ରିୟ ବୋଧ ହୁଏ । ସ୍ତ୍ରୀଙ୍କ ଭିତରେ ସେ ଥିବାରୁ ପତିର ମନ ସ୍ତ୍ରୀ ପ୍ରତି ଆକୃଷ୍ଟ ହୋଇଥାଏ । ଏହିପରି ବ୍ରାହ୍ମଣଙ୍କ ଭିତରେ, କ୍ଷତ୍ରିୟଙ୍କ ଭିତରେ, ଧନ ଭିତରେ, ପୃଥିବୀର ଯେଉଁ ସମସ୍ତ ବସ୍ତୁ ଅନ୍ତରରେ ପ୍ରିୟବୁଦ୍ଧିର ଉଦୟ କରି ମାନବମନ ଆକର୍ଷଣ କରେ, ସେସମସ୍ତ ଭିତରେ ପ୍ରିୟସ୍ୱରୂପ, ଆନନ୍ଦସ୍ୱରୂପ, ଐଶ୍ୱରିକ ଅଂଶର ବିଦ୍ୟମାନତା ଦେଖି ଭଲ ପାଇବାର ଉପଦେଶ ଭାରତର ଉପନିଷଦକାର ଋଷିଗଣ ବହୁ ପ୍ରାଚୀନ ଯୁଗରୁ ଆମମାନଙ୍କୁ ଶିକ୍ଷା ଦେଇଛନ୍ତି । ଦେବର୍ଷି ନାରଦାଦି ଭକ୍ତିସୂତ୍ରର ଆଚାର୍ଯ୍ୟଗଣ ମଧ୍ୟ ଜୀବଙ୍କୁ କାମ-କ୍ରୋଧାଦି ରିପୁସକଳର ବେଗ ଈଶ୍ୱରାଭିମୁଖୀ କରିବାକୁ କହି ଏବଂ ସଖ୍ୟ-ବାତ୍ସଲ୍ୟ-ମଧୁରରସାଦି ଆଶ୍ରୟ କରି ଈଶ୍ୱରଙ୍କୁ ଡାକିବାର ଉପଦେଶ ଦେଇ ଉପନିଷଦ୍‌କାର ଋଷିମାନଙ୍କର ହିଁ ଯେ ପଦାନୁସରଣ କରିଛନ୍ତି, ଏହା ସ୍ପଷ୍ଟ ବୁଝାଯାଏ । ଅତଏବ ଠାକୁରଙ୍କର ସେହି ବିଷୟକ ମତ ଯେ ଶାସ୍ତ୍ରାନୁଗତ, ତାହା ବେଶ୍ ବୁଝାଯାଉଛି ।

**ଅବତାରପୁରୁଷମାନେ ସର୍ବଦା ଶାସ୍ତ୍ରମର୍ଯ୍ୟାଦା ରକ୍ଷା କରିଥାଆନ୍ତି । ସମସ୍ତ ଧର୍ମମତକୁ ସମ୍ମାନ କରିବା ସମ୍ବନ୍ଧରେ ଠାକୁରଙ୍କ ଶିକ୍ଷା :**

ଈଶ୍ୱରାବତାର ମହାପୁରୁଷମାନେ ପୂର୍ବ ପୂର୍ବ ଶାସ୍ତ୍ରସମୂହର ମର୍ଯ୍ୟାଦା ସମ୍ୟକ୍ ରକ୍ଷା କରି ସେମାନଙ୍କର ପ୍ରବର୍ତ୍ତିତ ବିଧାନର ଅବିରୋଧୀ କୌଣସି ନୂତନ ପଥର ସମ୍ବାଦ ହିଁ ଯେ ଧର୍ମଜଗତରେ ଆଣି ଦେଇଥାଆନ୍ତି, ଏହା ବୁଝାଇବା ପ୍ରୟୋଜନ ନାହିଁ । ଯେକୌଣସି ଅବତାରପୁରୁଷଙ୍କର ଜୀବନ ଆଲୋଚନା କଲେ ଏହା ବୁଝି ହୁଏ । ବର୍ତ୍ତମାନର ଯୁଗାବତାର ଶ୍ରୀରାମକୃଷ୍ଣଙ୍କ ଜୀବନରେ ମଧ୍ୟ ଯେ ସେହି ବିଷୟର ଅକ୍ଷୁଣ୍ଣ ପରିଚୟ ଆମେ ସର୍ବଦା ସକଳବିଷୟରେ ପାଇଅଛୁ, ଏକଥା ହିଁ ଆମେ ପାଠକଙ୍କୁ 'ଲୀଳାପ୍ରସଙ୍ଗ'ରେ ବୁଝାଇବାକୁ ପ୍ରୟାସୀ ହୋଇଛୁ । ଯଦି ନ ପାରୁ, ତେବେ ପାଠକମାନେ ଯେପରି ବୁଝନ୍ତି ତାହା ଆମର ଏକଦେଶୀ ବୁଦ୍ଧି ଦୋଷ ଯୋଗୁଁ ହେଉଛି — ଯେଉଁ ଠାକୁର 'ଯେତେ ମତ ସେତେ ପଥ'ରୂପକ ଅଦୃଷ୍ଟପୂର୍ବ ସତ୍ୟ ଆଧ୍ୟାତ୍ମିକ ଜଗତରେ ପ୍ରଥମ ପ୍ରକାଶ କରି ଜନସାଧାରଣଙ୍କୁ ମୁଗ୍ଧ କରିଛନ୍ତି, ତାଙ୍କର ଦୋଷ ବା ତ୍ରୁଟି ଯୋଗୁଁ ନୁହେଁ । ଯେଉଁ ପାଶ୍ଚାତ୍ୟ ନୀତିର ପ୍ରୟୋଗ ସୁଚତୁର ସ୍ୱାର୍ଥପରାୟଣ ପାଶ୍ଚାତ୍ୟ ଲୋକ କେବଳ ଅନ୍ୟ ବ୍ୟକ୍ତି ଓ ଜାତିର କାର୍ଯ୍ୟାକାର୍ଯ୍ୟ-ବିଚାର ସମୟରେ ହିଁ ବିଶେଷ ଭାବରେ କରିଥାନ୍ତି, ନିଜର କାର୍ଯ୍ୟକଳାପ ବିଚାର କରିବାକୁ ଯାଇ ପ୍ରାୟ ବଦଳାଇ ଦିଅନ୍ତି, ସେହି ପାଶ୍ଚାତ୍ୟ ନୀତି ଅନୁସରଣ କରି ଆମେ ଯାହାକୁ 'ଜଘନ୍ୟ କର୍ତ୍ତାଭଜାଦି ମତ' କହି ନାସିକା

କୁଞ୍ଚିତ କରିଥାଉ, ସେହି କର୍ତ୍ତାଭଜାଦି ମତଠାରୁ ଶୁଦ୍ଧାଦ୍ୱୈତ ବେଦାନ୍ତମତ ପର୍ଯ୍ୟନ୍ତ ସମସ୍ତ ମତ ଏହି ଦେବମାନବ ଠାକୁରଙ୍କ ନିକଟରେ ସସମ୍ମାନରେ ଈଶ୍ୱରଲାଭର ପଥ ବୋଲି ସ୍ଥାନପ୍ରାପ୍ତ ହେଉଥିଲା ଏବଂ ଅଧିକାରୀ-ବିଶେଷରେ କରଣୀୟ ବୋଲି ତାହାର ଅନୁଷ୍ଠାନ ନିର୍ଦ୍ଦେଶିତ ହେଉଥିଲା । ଆମେମାନେ ଅନେକେ ଦ୍ୱେଷବୁଦ୍ଧି ପ୍ରଣୋଦିତ ହୋଇ ଠାକୁରଙ୍କୁ ଅନେକ ସମୟରେ ପଚାରିଛୁ— 'ମହାଶୟ, ଏତେବଡ଼ ଉଚ୍ଚସ୍ତରର ସାଧିକା ବ୍ରାହ୍ମଣୀ ପଞ୍ଚ-ମକାର ନେଇ ସାଧନ କରୁଥିଲେ କାହିଁକି ? ଅଥବା ଏତେ ବଡ଼ ଉଚ୍ଚସ୍ତରର ଭକ୍ତ ସୁପଣ୍ଡିତ ବୈଷ୍ଣବଚରଣ ପରକୀୟା-ଗ୍ରହଣରେ ବିରତ ହୋଇ ନାହାନ୍ତି—ଏହା ତ' ବଡ଼ ଖରାପ ?'

ଏହାର ଉତ୍ତରରେ ଠାକୁର ଆମକୁ ବାରମ୍ବାର କହିଛନ୍ତି, ''ସେଥିରେ ସେମାନଙ୍କର ଦୋଷ ନାହିଁରେ ! ସେମାନେ ଷୋଳଅଣା ମନ ଦେଇ ତାହା ଈଶ୍ୱରଲାଭର ପଥ ବୋଲି ବିଶ୍ୱାସ କରୁଥିଲେ । ଈଶ୍ୱରଲାଭ ହେବ ବୋଲି ଯିଏ ଯେଉଁଟା ସରଳଭାବରେ ପ୍ରାଣର ସହିତ ବିଶ୍ୱାସ କରି ଅନୁଷ୍ଠାନ କରେ, ତାହାକୁ ଖରାପ କହନ୍ତି ନାହିଁ, ନିନ୍ଦା କରନ୍ତି ନାହିଁ । କାହାର ଭାବ ନଷ୍ଟ କରିବ ନାହିଁ । କାରଣ ଯେକୌଣସି ଗୋଟିଏ ଭାବ ଠିକ୍ ଧରିଲେ ସେଥିରୁ ହିଁ ଭାବମୟ ଭଗବାନଙ୍କୁ ମିଳିଥାଏ । ଯିଏ ଯାହାର ଭାବ ଧରି ତାଙ୍କୁ (ଈଶ୍ୱରଙ୍କୁ) ଡାକି ଯାଆ । ଆଉ, କାହାର ଭାବର ନିନ୍ଦା କର ନାହିଁ, ବା ଅନ୍ୟର ଭାବକୁ ନିଜର ବୋଲି ଧରିବାକୁ ଯାଅ ନାହିଁ ।'' ଏହା କହି ସଦାନନ୍ଦମୟ ଠାକୁର ଅନେକ ସମୟରେ ଗୀତ ଗାଉଥିଲେ—

ଆପନାତେ ଆପନି ଥେକୋ, ଯେଓ ନା ମନ କାରୁ ଘରେ ।
ଯା ଚାବି ତାଇ ବସି ପାବି, ଖୋଁଜ ନିଜ ଅନ୍ତଃପୁରେ ।।
ପରମ ଧନ ସେ ପରଶମଣି, ଯା ଚାବି ତାଇ ଦିତେ ପାରେ;
(ଓ ମନ) କତ ମଣି ପଡ଼େ ଅଛି, ସେ ଚିନ୍ତାମଣିର ନାଚଦୁୟାରେ ।।
ତୀର୍ଥଗମନ ଦୁଃଖଭ୍ରମଣ, ମନ ଉଚାଟନ ହୟୋ ନା ରେ,
(ତୁମି) ଆନନ୍ଦେ ତ୍ରିବେଣୀ-ସ୍ନାନେ ଶୀତଲ ହଓ ନା ମୂଳାଧାରେ ।।
କି ଦେଖ କମଲାକାନ୍ତ, ମିଛେ ବାଜି ଏ ସଂସାରେ,
(ତୁମି) ବାଜିକରେ ଚିନଲେ ନାକୋ, ଯେ ଏଇ ଘଟେର ଭିତର ବିରାଜ କରେ ।।

[—ଗୀତର ଭାବାର୍ଥ ହେଉଛି : ହେ ମନ, ତୁ ନିଜ ଭିତରେ ହିଁ ବସି ରହ, କାହା ଘରକୁ ଯାଆ ନାହିଁ । ତୋର ଯାହା ଋଛି ଦରକାର ସେଠାରେ ବସି ତୋତେ ମିଳିଯିବ; ତୁ ନିଜ ଅନ୍ତଃପୁରରେ ସେହି ଜିନିଷକୁ ଖୋଜ । ସେ ପରମଧନ ପରଶମଣି, ତାକୁ ତୁ ଯାହା ମାଗିବୁ ସେ ଦେବାକୁ ସମର୍ଥ ଅଟେ । (ରେ ମନ) ସେହି ଚିନ୍ତାମଣିଙ୍କ

ଦାଣ୍ଡଦୁଆରେ କେତେ ମଣି ପଡ଼ିଛି । ତୀର୍ଥଗମନ ଦୁଃଖମୟ ଭ୍ରମଣମାତ୍ର ଅଟେ; ରେ ମନ ସେଥିପାଇଁ ତୁ ଉତ୍କଣ୍ଠିତ ହୁଅ ନାହିଁ । (ତୁ) ଆନନ୍ଦପୂର୍ବକ ତ୍ରିବେଣୀ-ସ୍ନାନ ଦ୍ୱାରା ମୂଳାଧାରରେ ଶୀତଳ କାହିଁକି ହେଉ ନାହୁଁ ? କବି କମଳାକାନ୍ତ ନିଜକୁ ଏହା କହୁଛନ୍ତି ଯେ ତୁମେ ସଂସାରରୂପକ ଏହି ମିଥ୍ୟା ବାଜିଗରୀକୁ ଦେଖୁଛ, (ତୁମେ) ବାଜିଗରକୁ ଚିହ୍ନିପାରି  ନାହଁ, (ଯିଏ ଏହି) ଘଟ ଭିତରେ ବିରାଜମାନ ଅଛନ୍ତି ।]

# ଦ୍ୱିତୀୟ ଅଧ୍ୟାୟ

## ଗୁରୁଭାବ ଓ ନାନା ସାଧୁସମ୍ପ୍ରଦାୟ

ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ ।
ଇତି ମତ୍ୱା ଭଜନ୍ତେ ମାଂ ବୁଧା ଭାବସମନ୍ୱିତାଃ ।। —ଗୀତା, ୧୦/୮
ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।
ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା ।। —ଗୀତା, ୧୦/୧୧

### ଠାକୁରଙ୍କର ସାଧୁମାନଙ୍କ ସହିତ ମିଳନ କିପରି ହୋଇଥିଲା :

ଠାକୁର ଥରେ ଆମମାନଙ୍କୁ କହିଥିଲେ, ‘‘କେଶବ ସେନ୍ ଆସିବା ପରଠାରୁ ତୁମମାନଙ୍କ ପରି ‘ୟଙ୍ଗ୍ ବେଙ୍ଗଲ’ଙ୍କର (Young Bengal) ଦଳ ସବୁ ଏଠାକୁ (ମୋ ନିକଟକୁ) ଆସିବା ଆରମ୍ଭ କରିଛନ୍ତି । ଆଗରୁ ଏଠାକୁ କେତେ ଯେ ସାଧୁ-ସନ୍ଥ, ତ୍ୟାଗୀ-ସନ୍ନ୍ୟାସୀ, ବୈରାଗୀ ବାବାଜୀ ସବୁ ଯା ଆସ କରୁଥିଲେ, ତାହା ତୁମେ ସବୁ ଜାଣିବ କିପରି ? ରେଳ ହେବା ପରଠାରୁ ସେମାନେ ସବୁ ଆଉ ଏପଟକୁ ଆସନ୍ତି ନାହିଁ । ନ ହେଲେ ରେଳ ହେବା ପୂର୍ବରୁ ସାଧୁମାନେ ସମସ୍ତେ ଗଙ୍ଗା କୂଳେ କୂଳେ ଚାଲି ପଥରେ ସମୁଦ୍ରରେ ସ୍ନାନ କରିବାକୁ ଓ ଜଗନ୍ନାଥ ଦର୍ଶନ କରିବାକୁ ଆସୁଥିଲେ । ରାସମଣିଙ୍କର ବଗିଚାରେ ଡେରା ପକାଇ ଅନ୍ତତଃ ଦୁଇ-ଚାରି ଦିନ ରହିବା, ବିଶ୍ରାମ ନେବା, ସେମାନେ ଅବଶ୍ୟ କରୁଥିଲେ । କେହି କେହି ପୁଣି କିଛିଦିନ ରହିଯାଉଥିଲେ । କାହିଁକି ଜାଣିଛ ? ସାଧୁମାନେ ‘ଦିଶା-ଜଙ୍ଗଲ’ ଓ ‘ଅନ୍ନ-ପାନି’ର ସୁବିଧା ନ ଦେଖିଲେ କେଉଁଠାରେ ଡେରା ପକାନ୍ତି ନାହିଁ । ‘ଦିଶା-ଜଙ୍ଗଲ’ ଅର୍ଥାତ୍ ଶୌଚାଦି ନିମିତ୍ତ ସୁବିଧା ଜନକ ନିରୋଳା ଜାଗା । ଆଉ, ‘ଅନ୍ନ-ପାଣି’ ହେଲା ଭିକ୍ଷା । ଭିକ୍ଷାନ୍ନରେ ହିଁ ତ ସାଧୁମାନଙ୍କର ଶରୀର ଧାରଣ — ସେଥିପାଇଁ ଯେଉଁଠାରେ ସହଜରେ ଭିକ୍ଷା ମିଳିବ, ତାହାରି ନିକଟରେ ସାଧୁମାନେ ‘ଆସନ’ ଅର୍ଥାତ୍ ରହିବାର ସ୍ଥାନ ଠିକ୍ କରନ୍ତି ।

### ସାଧୁମାନଙ୍କର ଜଳ ଓ ‘ଦିଶା-ଜଙ୍ଗଲ’ର ସୁବିଧା ଦେଖି ବିଶ୍ରାମ କରିବା :

‘‘ପୁଣି ଚାଲୁ ଚାଲୁ କ୍ଳାନ୍ତ ହୋଇପଡ଼ିଲେ ଭିକ୍ଷାର କଷ୍ଟ ସହ୍ୟ କରି ମଧ୍ୟ ସାଧୁମାନେ କୌଣସି ସ୍ଥାନରେ ଦିନେ ଦୁଇଦିନ ଡେରା ପକାଇ ଥାଆନ୍ତି, କିନ୍ତୁ ଯେଉଁଠାରେ ଜଳକଷ୍ଟ ଏବଂ ‘ଦିଶା-ଜଙ୍ଗଲ’ର କଷ୍ଟ ଅର୍ଥାତ୍ ଶୌଚାଦିର ‘ଫାରାକତ୍’ (ନିର୍ଜନ)ସ୍ଥାନ ନାହିଁ, ସେଠାରେ ସେମାନେ କେବେ ରହନ୍ତି ନାହିଁ । ଭଲ ଭଲ ସାଧୁମାନେ ସେସବୁ (ଶୌଚାଦି) କାମ ଯେଉଁଠି ସମସ୍ତେ କରନ୍ତି, ଯେଉଁଠି ଲୋକଙ୍କର ନଜରରେ ପଡ଼ିବାକୁ ହେବ ସେଠାରେ କରନ୍ତି ନାହିଁ ।

ଅନେକ ଦୂରରେ ନିରୋଳା ସ୍ଥାନରେ ଗୋପନରେ ଶୌଚାଦି କାର୍ଯ୍ୟ କରିଆସନ୍ତି । ସାଧୁମାନଙ୍କ ପାଖରୁ ଗୋଟିଏ ଗପ ଶୁଣିଥିଲି—

**ଏ ସମ୍ବନ୍ଧରେ ଗପ :**

''ଜଣେ ଲୋକ ଭଲ ତ୍ୟାଗୀ ସାଧୁ ଦେଖିବ ବୋଲି ସନ୍ଧାନ କରୁଥିଲା । ତାକୁ ଜଣେ କହିଲେ ଯେ, ଯେଉଁ ସାଧୁଙ୍କୁ ଲୋକାଳୟ ଛାଡ଼ି ଅନେକ ଦୂରରେ ଶୌଚାଦି ସାରିବା ଦେଖିବ, ତାଙ୍କୁ ଜାଣିବ ଠିକ୍ ତ୍ୟାଗୀ । ଲୋକଟି ଏହିକଥା ମନେରଖି ଲୋକାଳୟ ବାହାରେ ସନ୍ଧାନ କରୁ କରୁ ଦିନେ ଜଣେ ସାଧୁଙ୍କୁ ଅନ୍ୟମାନଙ୍କଠାରୁ ଅନେକ ଦୂରରେ ଯାଇ ଶୌଚାଦି କାର୍ଯ୍ୟ ସାରିବାର ଦେଖିବାକୁ ପାଇଲେ ଏବଂ ତାଙ୍କର ପଛେ ପଛେ ଯାଇ ସେ କିପରି ଲୋକ ତାହା ଜାଣିବାକୁ ଚେଷ୍ଟା କରିବାକୁ ଲାଗିଲେ । ଏବେ ସେଇ ଦେଶର ରାଜକନ୍ୟା ଶୁଣିଥିଲେ ଯେ ଠିକ୍ ଠିକ୍ ଯୋଗୀପୁରୁଷଙ୍କୁ ବିଭାହେଲେ ସୁପୁତ୍ର ଲାଭ ହୋଇଥାଏ; କାରଣ ଶାସ୍ତ୍ରରେ ଅଛି—ଯୋଗୀ ପୁରୁଷଙ୍କ ଔରସରୁ ହିଁ ସାଧୁ ପୁରୁଷ ଜନ୍ମ ଗ୍ରହଣ କରନ୍ତି । ରାଜାଙ୍କର କନ୍ୟା ସେଥିପାଇଁ ସାଧୁମାନେ ଯେଉଁଠାରେ ଡେରା ପକାଇ ଥିଲେ, ସେଠାରେ ତାଙ୍କର ନିଜ ମନ ପସନ୍ଦର ପତି ସନ୍ଧାନରେ ଆସି ସେହି ସାଧୁଟିକୁ ପସନ୍ଦ କରି ଘରକୁ ଫେରି ତାଙ୍କ ବାପାଙ୍କୁ କହିଲେ ଯେ, ସେ ସେହି ସାଧୁଙ୍କୁ ହିଁ ବିବାହ କରିବେ । ରାଜା ଝିଅଟିକୁ ଅତ୍ୟନ୍ତ ଭଲ ପାଉଥିଲେ । କନ୍ୟାର ଜିଦ୍‌ରେ ରାଜା ସାଧୁଙ୍କ ନିକଟକୁ ଆସି 'ଅର୍ଦ୍ଧେକ ରାଜତ୍ୱ ଦେବି' ଇତ୍ୟାଦି କହି ରାଜକନ୍ୟାଙ୍କୁ ବିବାହ କରିବା ପାଇଁ ଅନେକ ବୁଝାଇଲେ । କିନ୍ତୁ ସାଧୁ ରାଜାଙ୍କର ସେସବୁ କଥାରେ କୌଣସି ଉପାୟରେ ପ୍ରଲୋଭିତ ହେଲେ ନାହିଁ । କାହାକୁ କିଛି ନ କହି ରାତାରାତି ସେ ସ୍ଥାନ ତ୍ୟାଗ କରି ଚାଲିଗଲେ । ଆଗେ ଯାହାଙ୍କ କଥା କହିଛି, ସେହି ଲୋକଟି ସାଧୁଙ୍କର ଏପରି ଅଦ୍‌ଭୁତ ତ୍ୟାଗ ଦେଖି ବୁଝିଲେ ଯେ ବାସ୍ତବରେ ସେ ଜଣେ ବ୍ରହ୍ମଜ୍ଞ ପୁରୁଷଙ୍କ ଦର୍ଶନ ପାଇଛନ୍ତି ଓ ତାଙ୍କର ଶରଣାପନ୍ନ ହୋଇ ତାଙ୍କଠାରୁ ଉପଦେଶ ପାଇ ତାଙ୍କ କୃପାରେ ଈଶ୍ୱର-ଭକ୍ତି ଲାଭ କରି କୃତାର୍ଥ ହେଲେ ।

**ଦକ୍ଷିଣେଶ୍ୱରର କାଳୀମନ୍ଦିରରେ 'ଦିଶା-ଜଙ୍ଗଲ' ଓ ଭିକ୍ଷାର ବିଶେଷ ସୁବିଧା ଥିବାରୁ ସାଧୁମାନଙ୍କର ସେଠାକୁ ଆଗମନ :**

''ରାସମଣିଙ୍କର ବଗିଚାରେ ଭିକ୍ଷାର ସୁବିଧା ଓ ମା' ଗଙ୍ଗାଙ୍କ କୃପାରେ ଜଳର ଅଭାବ ନ ଥିଲା । ପୁଣି ନିକଟରେ ମନ ମୁତାବକ 'ଦିଶା-ଜଙ୍ଗଲ' ସୁବିଧା ଥିଲା, ତେଣୁ ସାଧୁମାନେ ସେତେବେଳେ ଏଠାରେ ହିଁ ଡେରା ପକାଉଥିଲେ । ପୁଣି, ତୁଣ୍ଡ ବାଇଦ ସହସ୍ର କୋଶ—ଜଣେ ସାଧୁ ଆଉ ଜଣଙ୍କୁ କହିଲେ, ସେ ଆଉଜଣେ ସାଧୁ ଏପଟକୁ ଆସୁଛନ୍ତି ଦେଖି ତାଙ୍କୁ କହିଲେ—ଏହିପରି ରାସମଣିଙ୍କ ବଗିଚା

ଯେ ସମୁଦ୍ର ଓ ଜଗନ୍ନାଥ ଦର୍ଶନ ସକାଶେ ଯିବା ରାସ୍ତାରେ ଡେରା ପକାଇବା ପାଇଁ ଗୋଟିଏ ଭଲ ଜାଗା ଏକଥା ସକଳ ସାଧୁମାନଙ୍କ ଭିତରେ ସେତେବେଳେ ପ୍ରଚାର ହୋଇଯାଇଥିଲା ।''

**ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ସାଧୁ–ସମ୍ପ୍ରଦାୟର ଆଗମନ :**

ଠାକୁର ଆହୁରି କହୁଥିଲେ, ''ବେଳେ ବେଳେ ବିଭିନ୍ନ ସମ୍ପ୍ରଦାୟର ସାଧୁମାନଙ୍କର ଭିଡ଼ ଲାଗିଯାଏ । ଗୋଟିଏ ସମୟରେ ସନ୍ନ୍ୟାସୀ ଓ ପରମହଂସମାନେ ହିଁ ଆସିବାକୁ ଲାଗିଲେ ! ପେଟ–ବୈରାଗୀ ଦଳ ନୁହଁନ୍ତି—ସମସ୍ତେ ଭଲ ଭଲ ଲୋକ । (ନିଜର ଘର ଦେଖାଇ) ଘରେ ଦିନରାତି ସେମାନଙ୍କର ଭିଡ଼ ଲାଗି ରହୁଥିଲା । ପୁଣି ଦିନରାତି ଖାଲି ବ୍ରହ୍ମ ଓ ମାୟାର ସ୍ୱରୂପ, ଅସ୍ତି ଭାତି ପ୍ରିୟ— ଏହି ସବୁ ବେଦାନ୍ତର କଥା ହିଁ ଚର୍ଚ୍ଚା ହେଉଥିଲା ।''

**ପରମହଂସମାନଙ୍କର ବେଦାନ୍ତ ବିଚାର—'ଅସ୍ତି, ଭାତି, ପ୍ରିୟ' :**

ଅସ୍ତି, ଭାତି, ପ୍ରିୟ—ଠାକୁର ସେହି କେତୋଟି କଥା କହି ପୁଣି ବୁଝାଇ ଦେଉଥିଲେ । କହୁଥିଲେ, ''ତାହା କ'ଣ ଜାଣିଛ ?—ବ୍ରହ୍ମର ସ୍ୱରୂପ; ବେଦାନ୍ତରେ ଏହିପରି ବୁଝାଯାଇଛି, ଯିଏ 'ଅସ୍ତି' ଅର୍ଥାତ୍ ଠିକ୍ ଠିକ୍ ବିଦ୍ୟମାନ ଅଛନ୍ତି, ସେ ହିଁ 'ଭାତି' ଅର୍ଥାତ୍—ପ୍ରକାଶ ପାଉଛନ୍ତି । ଏହି 'ପ୍ରକାଶ' ହେଉଛି ଜ୍ଞାନର ସ୍ୱଭାବ । ଯେଉଁ ଜିନିଷ ସମ୍ବନ୍ଧରେ ଆମର ଜ୍ଞାନ ହୋଇଛି ତାହା ହିଁ ଆମ ନିକଟରେ ପ୍ରକାଶିତ ରହିଛି । ଯେଉଁଟିର ଜ୍ଞାନ ନାହିଁ ସେଜିନିଷ ଆମ ନିକଟରେ ଅପ୍ରକାଶ ରହିଛି । ଠିକ୍ ନା ? ତେଣୁ ବେଦାନ୍ତ କହେ, ଯେଉଁ ଜିନିଷଟି ଯେଉଁକ୍ଷଣି ଆମର ଅସ୍ତିତ୍ୱ–ବୋଧ ହେଲା, ସେହିକ୍ଷଣି ସେହି ବୋଧ ସହିତ ସେଇ ଜିନିଷଟି ଆମ ନିକଟରେ ଦୀପ୍ତିମାନ ବା ପ୍ରକାଶିତ ବୋଲି ବୋଧ ହେଲା ।—ଅର୍ଥାତ୍ ତାର ଜ୍ଞାନ–ସ୍ୱରୂପର କଥା ଆମର ବୋଧ ହେଲା । ଆଉ ତତ୍କ୍ଷଣାତ୍ ତାହା ଆମର ପ୍ରିୟ ବୋଲି ବୋଧ ହେଲା—ଅର୍ଥାତ୍ ତା ଭିତରର ଆନନ୍ଦ–ସ୍ୱରୂପ ଆମ ମନରେ ପ୍ରିୟ ବୁଦ୍ଧିର ଉଦୟ କରି ତାକୁ ଭଲ ପାଇବା ପାଇଁ ଆମକୁ ଆକର୍ଷଣ କଲା । ଏହିପରି ଯେଉଁଠାରେ ଆମର ଅସ୍ତିତ୍ୱ–ଜ୍ଞାନ ହେଉଛି, ସେଠାରେ ହିଁ ପୁଣି ସଙ୍ଗେ ସଙ୍ଗେ ଜ୍ଞାନ–ସ୍ୱରୂପ ଓ ଆନନ୍ଦ–ସ୍ୱରୂପର ଜ୍ଞାନ ହେଉଛି । ସେଥିପାଇଁ, ଯେଉଁଟା 'ଅସ୍ତି', ସେଇଟା ହିଁ 'ଭାତି' ଓ 'ପ୍ରିୟ'—ଯେଉଁଟା 'ଭାତି', ସେଇଟା ହିଁ 'ଅସ୍ତି' ଓ 'ପ୍ରିୟ' ଏବଂ ଯେଉଁଟା 'ପ୍ରିୟ' ସେଇଟା ହିଁ 'ଅସ୍ତି' ଓ 'ଭାତି' ବୋଲି ବୋଧ ହେଉଛି । କାରଣ, ଯେଉଁ ବ୍ରହ୍ମବସ୍ତୁରୁ ଏହି ଜଗତ ଓ ଜଗତର ପ୍ରତ୍ୟେକ ବସ୍ତୁ ଓ ବ୍ୟକ୍ତିର ଉଦୟ ହୋଇଛି, ତାଙ୍କର ସ୍ୱରୂପ ହିଁ ହେଉଛି 'ଅସ୍ତି–ଭାତି–ପ୍ରିୟ' ବା ସତ୍–ଚିତ୍–ଆନନ୍ଦ । ସେଥିପାଇଁ ଉତ୍ତର ଗୀତାରେ କୁହାଯାଇଛି—ଜ୍ଞାନ ହେଲେ ବୁଝାଯାଏ, ଯେଉଁଠାରେ ବା ଯେଉଁ ବସ୍ତୁ ବା ବ୍ୟକ୍ତିରେ ତୁମର ମନ ଟାଣୁଛି, ସେଠାରେ ବା

ସେଇ ସେଇ ବସ୍ତୁ ଓ ବ୍ୟକ୍ତି ଭିତରେ ପରମାତ୍ମା ରହିଛନ୍ତି । 'ଯତ୍ର ଯତ୍ର ମନୋ ଯାତି ତତ୍ର ତତ୍ର ପରଂ ପଦମ୍ ।' ରୂପ-ରସରେ ମଧ୍ୟ ତାଙ୍କର ଅଂଶ ରହିଛି ବୋଲି ଲୋକଙ୍କର ମନ ସେଆଡ଼କୁ ଧାଇଁଥାଏ, ଏକଥା ବେଦରେ ମଧ୍ୟ ଅଛି ।

''ଏହି ସମସ୍ତ କଥା ନେଇ ସେମାନଙ୍କ ମଧ୍ୟରେ ଖୁବ୍ ତର୍କବିଚାର ଲାଗିଯାଉଥିଲା । (ମୋର) ସେତେବେଳେ ଖୁବ୍ ପେଟ ବେମାରି, ଆମାଶୟ । ହାତରୁ ପାଣି ଶୁଖୁ ନାହିଁ ! ଘର ମଧ୍ୟରେ ଗୋଟିଏ କୋଣରେ ହୃଦୟ ସରା ପକାଇ ରଖିଥିଲା । ସେହି ଅବସ୍ଥାରେ ସେମାନଙ୍କର ସେହି ସବୁ ଜ୍ଞାନବିଚାର ଶୁଣୁଥିଲି ! ପୁଣି, ଯେଉଁ ବିଷୟରେ ସେମାନେ କୌଣସି ମୀମାଂସାରେ ପହଞ୍ଚିପାରୁ ନ ଥିଲେ, (ନିଜ ଶରୀର ଦେଖାଇ) ଏହା ଭିତରୁ ମା' ତାର ଗୋଟିଏ ସହଜ ମୀମାଂସା ଦେଖାଇଦେଉଥିଲେ । ମୁଁ ତାହା ସେମାନଙ୍କୁ କହୁଥିଲି ଏବଂ ସେମାନଙ୍କର ସବୁ ଝଗଡ଼ା-ବିବାଦର ପରିସମାପ୍ତି ଘଟୁଥିଲା !

### ଜନୈକ ସାଧୁଙ୍କର ଆନନ୍ଦସ୍ୱରୂପ ଉପଲବ୍ଧି କରିବାର ଉଚ୍ଚାବସ୍ଥାର କଥା :

''ଥରେ ଜଣେ ସାଧୁ ଆସିଲେ, ତାଙ୍କର ମୁଖମଣ୍ଡଳରେ ଏକ ସୁନ୍ଦର ଜ୍ୟୋତି ଭରି ରହିଥିଲା । ସେ କେବଳ ବସିଥାଆନ୍ତି ଓ ମୃଦୁ ମୃଦୁ ହସୁଥାଆନ୍ତି ! ସକାଳ ଓ ସନ୍ଧ୍ୟାରେ ଥରେ ଘର ବାହାରକୁ ଆସି ସେ ଗଛପତ୍ର, ଆକାଶ, ଗଙ୍ଗା ସବୁ ଅନାଇ ଦେଖନ୍ତି ଏବଂ ଆନନ୍ଦରେ ବିଭୋର ହୋଇ ଦୁଇହାତ ଉପରକୁ ଟେକି ନାଚନ୍ତି; କେତେବେଳେ ବା ହସି ହସି ଗଡ଼ିଯାଆନ୍ତି, ଆଉ କହନ୍ତି 'ବାଃ ବାଃ କ୍ୟା ମାୟା—କୈସା ପ୍ରପଞ୍ଚ ବନାୟା ।' ଅର୍ଥାତ୍, ଈଶ୍ୱର କି ସୁନ୍ଦର ମାୟା ବିସ୍ତାର କରିଛନ୍ତି । ତାହା ହିଁ ତାଙ୍କର ଉପାସନା ଥିଲା । ତାଙ୍କର ଆନନ୍ଦଲାଭ ହୋଇଥିଲା ।

### ଠାକୁରଙ୍କର ଜ୍ଞାନୋନ୍ମାଦ ସାଧୁ ଦର୍ଶନ :

''ଆଉ ଥରେ ଜଣେ ସାଧୁ ଆସିଲେ—ସେ ଜ୍ଞାନୋନ୍ମାଦ ଥିଲେ ! ଦେଖିବାକୁ ଯେପରି ପିଶାଚ ପରି—ଉଲଗ୍ନ, ଦେହରେ ମଥାରେ ଧୂଳି, ବଡ଼ ବଡ଼ ନଖ ଓ କେଶ, ଦେହରେ ଶବଦେହର ଥିବା କନ୍ଥା ପରି ଏକ କନ୍ଥା ଥିଲା ! କାଳୀଘର ସାମନାରେ ଠିଆ ହୋଇ ଦର୍ଶନ କରୁ କରୁ ଏମିତି ସ୍ତବ ପଢ଼ିଲେ ଯେ, ମନ୍ଦିର କମ୍ପିବାକୁ ଲାଗିଲା; ଆଉ ମା ଯେପରି ପ୍ରସନ୍ନା ହୋଇ ହସିବାକୁ ଲାଗିଲେ । ତାପରେ କାଙ୍ଗାଳୀମାନେ ଯେଉଁଠାରେ ବସି ପ୍ରସାଦ ପାଆନ୍ତି ସେଠାରେ ସେମାନଙ୍କ ସହିତ ପ୍ରସାଦ ପାଇବା ପାଇଁ ବସିବାକୁ ଗଲେ । କିନ୍ତୁ ତାଙ୍କର ସେପରି ଚେହେରା ଦେଖି ସେମାନେ ମଧ୍ୟ ତାଙ୍କୁ ପାଖରେ ବସିବାକୁ ଦେଲେ ନାହିଁ, ତଡ଼ି ଦେଲେ । ତାପରେ ଦେଖିଲି, ପ୍ରସାଦ ପାଇ ସମସ୍ତେ ଯେଉଁଠାରେ ଅଇଁଠାପତ୍ର ପକାଇଛନ୍ତି, ସେଠାରେ ବସି କୁକୁରମାନଙ୍କ ସହିତ ଅଇଁଠା ଭାତ ଖାଉଛନ୍ତି !

ଗୋଟିଏ କୁକୁରର କାନ୍ଧରେ ହାତ ପକାଇଛନ୍ତି, ଆଉ ସେହି ଗୋଟିଏ ପତ୍ରରେ କୁକୁରଟା ଖାଉଛି ଏବଂ ସେ ମଧ୍ୟ ଖାଉଛନ୍ତି ! ଅଚିହ୍ନା ଲୋକଟା କୁକୁର କାନ୍ଧରେ ହାତ ପକାଇଥିଲେ ମଧ୍ୟ କୁକୁର କିଛି କରୁ ନାହିଁ ବା ପଳାଇବାକୁ ଚେଷ୍ଟା କରୁ ନାହିଁ ! ତାଙ୍କୁ ଦେଖି ମୋର ମନରେ ଭୟ ହେଲା ଯେ, ଶେଷରେ ମୋର ମଧ୍ୟ ସେପରି ଅବସ୍ଥା ହୋଇ ଘୁରି ବୁଲିବାକୁ ହେବ ନା କ'ଣ !

**ବ୍ରହ୍ମଜ୍ଞାନରେ ଗଙ୍ଗା ଜଳ ଓ ନର୍ଦ୍ଦମାର ଜଳ ଏକ ବୋଧ ହୁଏ । ଅନ୍ୟମାନେ ପରମହଂସମାନଙ୍କୁ ବାଳକ, ପିଶାଚ ବା ଉନ୍ମାଦ ସଦୃଶ ଦେଖନ୍ତି :**

''ଦେଖି ଆସି ହୃଦୁକୁ କହିଲି, 'ହୃଦୁ, ଏହା ସାଧାରଣ ଉନ୍ମାଦ ନୁହେଁ— ଜ୍ଞାନୋନ୍ମାଦ ।' ସେକଥା ଶୁଣି ହୃଦୁ ତାଙ୍କୁ ଦେଖିବାକୁ ଧାଇଁଲା । ହୃଦୁ ଯାଇ ଦେଖେ, ସେତେବେଳେ ସେ ବଗିଚା ବାହାରକୁ ଚାଲିଯାଉଛନ୍ତି । ହୃଦୁ ଅନେକ ଦୂର ପର୍ଯ୍ୟନ୍ତ ତାଙ୍କ ପଛେ ପଛେ ଚାଲିଲା ଏବଂ କହିବାକୁ ଲାଗିଲା, 'ମହାରାଜ ! ଭଗବାନଙ୍କୁ କିପରି ପାଇବି, କିଛି ଉପଦେଶ ଦିଅନ୍ତୁ ।' ପ୍ରଥମେ କିଛି କହିଲେ ନାହିଁ । ତା'ପରେ ଯେତେବେଳେ ହୃଦୁ କୌଣସି ମତେ ଛାଡ଼ିଲା ନାହିଁ, ସଙ୍ଗେ ସଙ୍ଗେ ଯିବାକୁ ଲାଗିଲା, ସେତେବେଳେ ରାସ୍ତା କଡ଼ର ନର୍ଦ୍ଦମା ଜଳ ଦେଖାଇ କହିଲେ— 'ଏହି ନର୍ଦ୍ଦମାର ଜଳ ଏବଂ ସେହି ଗଙ୍ଗାର ଜଳ ଯେତେବେଳେ ଏକ ବୋଧ ହେବ, ସମାନ ପବିତ୍ର ଜ୍ଞାନ ହେବ, ସେତେବେଳେ ପାଇବୁ ।' ଏତିକିମାତ୍ର କହିଲେ, ଆଉ କିଛି କହିଲେ ନାହିଁ । ହୃଦୁ ଆଉ କିଛି ଶୁଣିବାକୁ ଅନେକ ଚେଷ୍ଟା କଲା, କହିଲା, 'ମହାରାଜ ! ମୋତେ ଚେଲା କରି ସାଙ୍ଗରେ ନିଅନ୍ତୁ । ସେଥିରେ କୌଣସି କଥା କହିଲେ ନାହିଁ । ତା'ପରେ ଅନେକ ଦୂର ଯାଇ ଥରେ ଫେରି ଦେଖିଲେ ହୃଦୁ ତାଙ୍କ ସଙ୍ଗେ ସଙ୍ଗେ ଯାଉଛି । ତାହା ଦେଖି ଆଖି ଲାଲ କରି ଇଟା ଉଠାଇ ହୃଦୁକୁ ମାରିବାକୁ ଗୋଡ଼ାଇଲେ । ହୃଦୁ ଯେମିତି ପଳାଇ ଆସିଲା ଇଟା ଫୋପାଡ଼ି ସେରାସ୍ତା ଛାଡ଼ି ଅନ୍ୟ ବାଟରେ ସେ ଚାଲିଗଲେ, ହୃଦୁ ତାଙ୍କୁ ଆଉ ଦେଖିପାରିଲା ନାହିଁ । ଏପରି ସବୁ ସାଧୁ, ଲୋକମାନେ ବିରକ୍ତ କରିବେ ବୋଲି ଏପରି ବେଶ ଧାରଣ କରିରହନ୍ତି । ଏହି ସାଧୁଟିର ଠିକ୍ ଠିକ୍ ପରମହଂସର ଅବସ୍ଥା ହୋଇଥିଲା । ଶାସ୍ତ୍ରରେ ଅଛି, ଯଥାର୍ଥ ପରମହଂସମାନେ ବାଳକବତ୍, ପିଶାଚବତ୍, ଉନ୍ମାଦବତ୍ ହୋଇ ସଂସାରରେ ଥାଆନ୍ତି । ସେଥିପାଇଁ ପରମହଂସମାନେ ଛୋଟ ଛୋଟ ପିଲାଙ୍କୁ ନିଜ ପାଖରେ ରଖି ସେମାନଙ୍କ ପରି ହେବାକୁ ଶିଖିଥାଆନ୍ତି । ଛୋଟ ପିଲାମାନଙ୍କର ଯେପରି ସଂସାରର କୌଣସି ଜିନିଷରେ ଆଣ୍ଟ ନାହିଁ, ସମସ୍ତ ବିଷୟରେ ସେପରି ହେବାପାଇଁ ଚେଷ୍ଟା କରନ୍ତି । ଦେଖିନାହଁ, ବାଳକକୁ ମା' ଏକ ନୂଆ ଲୁଗା ପିନ୍ଧାଇ ଦେଇଛନ୍ତି, ସେଥିରେ ତାର କେତେ ଆନନ୍ଦ ! ଯଦି କହିବ, 'ଲୁଗାଟା ମୋତେ ଦେବୁ ?' ସେ ସଙ୍ଗେସଙ୍ଗେ କହିବ, 'ନା, ଦେବି

ନାହିଁ, ମା' ମୋତେ ଦେଇଛି ।' ଏହା କହି ହୁଏତ ଲୁଗାଟାକୁ ଜାବୁଡ଼ି ଧରିବ, ଆଉ ତୁମ ଆଡ଼େ ଦେଖୁଥିବ—କାଳେ ତୁମେ ତାହା ଛଡ଼ାଇ ନେବ ! ଲୁଗାଟିରେ ହିଁ ସେତେବେଳେ ଯେପରି ତା'ର ପ୍ରାଣ ପଡ଼ିରହିଛି ! ତାପରେ ହୁଏ ତ' ତୁମ ହାତରେ ଗୋଟିଏ ପଚିଶ ପଇସାର-ଶସ୍ତା ଖେଳଣା ଦେଖି କହିବ, 'ମୋତେ ତାହା ଦିଅ, ମୁଁ ତୁମକୁ ଲୁଗାଟି ଦେଉଛି ।' ପୁଣି କିଛି ସମୟ ପରେ ହୁଏତ ସେ ଖେଳଣାଟିକୁ ଫୋପାଡ଼ି ଦେଇ ଫୁଲଗୋଟେ ଆଣିବାକୁ ଧାଇଁବ । ତା'ର ଲୁଗା ଖଣ୍ଡକରେ ଯେପରି ଆଣ୍ଟ, ଖେଳଣାରେ ମଧ୍ୟ ସେପରି ଆଣ୍ଟ । ପ୍ରକୃତ ଜ୍ଞାନୀମାନଙ୍କର ମଧ୍ୟ ସେପ୍ରକାର ହୁଏ ।

**ରାମାୟତପନ୍ଥୀ ବାବାଜୀମାନଙ୍କ ଦକ୍ଷିଣେଶ୍ୱର ଆଗମନ :**

''ଏହିପରି କେତେଦିନ ଗଲା । ତାପରେ ସେମାନଙ୍କର (ପରମହଂସ ଶ୍ରେଣୀର ସନ୍ନ୍ୟାସୀମାନଙ୍କର) ଯିବା ଆସିବା କମିଗଲା । ସେମାନଙ୍କ ପରେ ରାମାୟତପନ୍ଥୀ ବାବାଜୀମାନେ ଆସିବାକୁ ଲାଗିଲେ—ଭଲ ଭଲ ତ୍ୟାଗୀ ଭକ୍ତ ବୈରାଗୀ ବାବାଜୀ ଦଳ ଦଳ ହୋଇ ଆସିବାକୁ ଲାଗିଲେ । ଆହା, ସେମାନଙ୍କର କି ଭକ୍ତି, ବିଶ୍ୱାସ ! ଭଗବତ୍ ସେବାରେ କେତେ ନିଷ୍ଠା ! ସେମାନଙ୍କ ଜଣକ ନିକଟରୁ ହିଁ ତ 'ରାମଲାଲା'[୧] ମୋ ପାଖରେ ରହିଗଲେ । ସେ ସବୁ ଅନେକ କଥା ।

**ରାମଲାଲା ଠାକୁରଙ୍କ କଥା :**

''ସେ ବାବାଜୀ ସେହି ଠାକୁରଙ୍କର ସର୍ବଦା ସେବା କରୁଥିଲେ । ଯେଉଁଠାକୁ ଯାଆନ୍ତି, ସାଙ୍ଗରେ ନେଇଯାଉଥିଲେ । ଯାହା ଭିକ୍ଷା ମିଳେ ରାନ୍ଧି ବାଢ଼ି ତାଙ୍କୁ (ରାମଲାଲାଙ୍କୁ) ଭୋଗ ଦିଅନ୍ତି । କେବଳ ସେତିକି ନୁହେଁ—ସେ ଦେଖିପାରୁଥିଲେ ରାମଲାଲା ସତରେ ଖାଉଛନ୍ତି ବା କୌଣସି ଗୋଟିଏ ଜିନିଷ ଖାଇବାକୁ ଚାହୁଁଛନ୍ତି, ବୁଲିଯିବାକୁ ଚାହୁଁଛନ୍ତି, ଅଳି କରୁଛନ୍ତି ଇତ୍ୟାଦି ! ତେଣୁ ଏହି ଠାକୁରଟିକୁ ନେଇ ସେ ଆନନ୍ଦରେ ବିଭୋର ଓ 'ମତ୍ତ' ହୋଇ ରହୁଥିଲେ ! ମୁଁ ମଧ୍ୟ ଦେଖିବାକୁ ପାଉଥିଲି, ରାମଲାଲା ଏପରି ସବୁ କରୁଛି ! ମୁଁ ପ୍ରତିଦିନ ସେଇ ବାବାଜୀ ପାଖରେ ଚବିଶ ଘଣ୍ଟା ବସି ରହେ—ଆଉ ରାମଲାଲାକୁ ଦେଖୁଥାଏ !

''ଦିନ ପରେ ଦିନ ଯେତେ ଗଡ଼ିଚାଲିଲା, ରାମଲାଲାର ମଧ୍ୟ ମୋ ଉପରେ ପ୍ରୀତି ବଢ଼ିବାକୁ ଲାଗିଲା । (ମୁଁ) ଯେତେ ସମୟ ବାବାଜୀଙ୍କ ପାଖରେ ଥାଏ, ସେତେ ସମୟ ସେଠାରେ ସେ ବେଶ୍ ଥାଏ—ଖେଳ ଖେଳି କରେ; କିନ୍ତୁ ମୁଁ

---

୧. 'ରାମଲାଲା' ଅର୍ଥାତ୍ ବାଳକବେଶୀ ଶ୍ରୀରାମଚନ୍ଦ୍ର । ଭାରତବର୍ଷର ଉତ୍ତର-ପଶ୍ଚିମାଞ୍ଚଳର ଲୋକମାନେ ବାଳକବାଳିକାମାନଙ୍କୁ ଆଦର କରି ଲାଲ ବା ଲାଲା ଓ ଲାଲୀ ବୋଲି ଡାକିଥାଆନ୍ତି । ସେଥିପାଇଁ ଶ୍ରୀରାମଚନ୍ଦ୍ରଙ୍କ ବାଲ୍ୟାବସ୍ଥାର ପରିଚାୟକ ସେହି ଅଷ୍ଟଧାତୁନିର୍ମିତ ମୂର୍ତ୍ତିଟିକୁ ଉକ୍ତ ବାବାଜୀ 'ରାମଲାଲା' ବୋଲି ସମ୍ବୋଧନ କରୁଥିଲେ ।

ଯେତେବେଳେ ସେଠାରୁ ନିଜର ଘରକୁ ଚାଲିଆସେ, ସେତେବେଳେ ସେ ମଧ୍ୟ (ମୋର) ସାଙ୍ଗରେ ଚାଲିଆସେ ! ମୁଁ ମନା କଲେ ମଧ୍ୟ ସାଧୁଙ୍କ ପାଖରେ ରହେ ନାହିଁ ! ପ୍ରଥମେ ଭାବୁଥିଲି ମଥାର ଖିଆଲ ଯୋଗୁଁ ଏପରି ଦେଖୁଛି । ନ ହେଲେ ସାଧୁଙ୍କର ସବୁଦିନର ପୂଜିତ ଠାକୁର; ଠାକୁରଟିଙ୍କୁ ସେ କେତେ ଭଲପାନ୍ତି— ଭକ୍ତି କରି ସନ୍ତର୍ପଣରେ ସେବା କରନ୍ତି, ଠାକୁର ସେହି ସାଧୁଙ୍କଠାରୁ ମୋତେ ବେଶୀ ଭଲ ପାଇବେ—ଏମିତି କ'ଣ ହୋଇପାରେ ? କିନ୍ତୁ ସେପରି ଭାବିଲେ କ'ଣ ହେବ ? —ଦେଖୁଛି, ସତରେ ହିଁ ଦେଖୁଥିଲି—ଏଇ ଯେପରି ତୁମକୁ ସବୁ ଦେଖୁଛି, ଏହିପରି ଦେଖୁଥିଲି—ରାମଲାଲା ମୋ ସହିତ କେତେବେଳେ ଆଗରେ କେତେବେଳେ ପଛରେ ନାଚିନାଚି ଆସୁଛି । କେବେ ପୁଣି କୋଳରେ ବସିବାକୁ ଅଳି କରୁଛି । ପୁଣି ଦେଖୁଛି କେତେବେଳେ କୋଳରେ ଧରିଛି—କୌଣସିମତେ କୋଳରେ ରହୁ ନାହିଁ, କୋଳରୁ ଓହ୍ଲାଇ ଖରାରେ ଦୌଡ଼ା ଦୌଡ଼ି କରିବାକୁ ଯିବ, କଣ୍ଟା ବଣରେ ଯାଇ ଫୁଲ ତୋଳିବ ବା ଗଙ୍ଗାର ଜଳରେ ଓହ୍ଲାଇ ଲମ୍ଫ ଝମ୍ପ ଆରମ୍ଭ କରିବ ! ଯେତେ ମନା କରେ, 'ଆରେ, ଏପରି ଗରମରେ ଦଉଡ଼ନା, ପାଦରେ ଫୋଟକା ହେବ ! ଆରେ, ଏତେ ପାଣି ଘାଣ୍ଟ ନା, ଥଣ୍ଡା ଲାଗି ଜ୍ୱର ହେବ'— ସେ କ'ଣ କିଛି ଶୁଣିବ ? ଯେପରି କିଏ କାହାକୁ କହୁଛି ! ହୁଏତ ସେଇ ପଦ୍ମପଳାଶ ସଦୃଶ ସୁନ୍ଦର ଚକ୍ଷୁ ଦୁଇଟିରେ ମୋ ଆଡ଼କୁ ଅନାଇ ଫିକ୍ ଫିକ୍ କରି ହସିବ । ଆହୁରୀ ଦୁଷ୍ଟାମୀ କରିବ ବା ଓଠ ଦୁଇଟି ଫୁଲାଇ ମୁଖଭଙ୍ଗୀ କରି ଖତେଇହେବାକୁ ଲାଗିବ ! ସେତେବେଳେ ସତ ସତ ହିଁ ରାଗିଯାଇ କହୁଥିଲି, 'ତେବେରେ ଦୁଷ୍ଟ, ରହ—ଆଜି ତୋତେ ମାରି ହାଡ଼ ଗୁଣ୍ଡ କରିଦେବି !'— ଏହା କହି ଜୋର୍ କରି ଖରାରୁ ବା ଜଳ ମଧ୍ୟରୁ ତାକୁ ଟାଣି ଆଣେ; ଏବଂ ଏଇଟା ସେଇଟା ଦେଇ ଭୁଲାଇ ଘର ଭିତରେ ଖେଳିବାକୁ କହେ । ଯେତେବେଳେ କୌଣସି ପ୍ରକାର ତା'ର ଦୁଷ୍ଟାମି କମୁ ନାହିଁ ଦେଖେ ସେତେବେଳେ ଗୋଟିଏ ଦୁଇଟା ଚାପୁଡ଼ା ବସାଇ ଦେଉଥିଲି । ମାଡ଼ ଖାଇ ସୁନ୍ଦର ଓଠ ଦୁଇଟି ଫୁଲାଇ ସଜଳନୟନରେ ମୋ ଆଡ଼େ ଦେଖୁଥିଲା ! ସେତେବେଳେ ପୁଣି ମନରେ କଷ୍ଟ ହୁଏ; କୋଳକୁ ନେଇ କେତେ ଗେହ୍ଲା କରେ ଏବଂ ଭୁଲେଇ ଦିଏ ! ଏପରି ଠିକ୍ ଠିକ୍ ଦେଖୁଥିଲି ଓ କରୁଥିଲି !

''ଦିନେ ଗାଧୋଇବାକୁ ଯାଉଛି, ଜିଦ୍ ଧରିଲା ସେ ଯିବ ! କ'ଣ କରିବି ! ନେଇଗଲି । ତା ପରେ ପାଣିରୁ କୌଣସି ପ୍ରକାରେ ଉଠୁ ନାହିଁ, ଯେତେ କହିଲେ ଶୁଣୁ ନାହିଁ । ଶେଷରେ ରାଗରେ ତାକୁ ଜଳରେ ବୁଡ଼ାଇ ଧରି କହିଲି—କେତେ ପାଣି ଘାଣ୍ଟିବାକୁ ଚାହୁଁଛୁ ଘାଣ୍ଟ; ଆଉ ସତକୁ ସତ ଦେଖିଲି ସେ ପାଣି ଭିତରେ ଅଣନିଃଶ୍ୱାସୀ ହୋଇ ଶିହରି ଉଠିଲା । ସେତେବେଳେ ପୁଣି ତା କଷ୍ଟ ଦେଖି, କ'ଣ କଲି ବୋଲି ଭାବି ପାଣିରୁ ଉଠାଇ ତାକୁ କୋଳରେ ଧରି ନେଇଆସିଲି !

''ଆଉ ଦିନେ ତା'ପାଇଁ ମନରେ ଏତେ କଷ୍ଟ ହୋଇଥିଲା ଯେ, କେତେ କାନ୍ଦିଲି ସେକଥା କହିହେବ ନାହିଁ । ସେଦିନ ରାମଲାଲା ଅବୁଝା ହେଉଛି ଦେଖି ତାକୁ ଭୁଲାଇବା ପାଇଁ ଧାନ ଲାଗିଥିବା ଖଇ ଦିଟା ଖାଇବାକୁ ଦେଇଥିଲି । ତା'ପରେ ଦେଖିଲି, ଏହି ଖଇ ଖାଉ ଖାଉ ଧାନ ଚୋପା ଲାଗି ତାର ନରମ ଜିଭ ଛିଣ୍ଡିଯାଇଛି ! ସେତେବେଳେ ମନ ବହୁତ କଷ୍ଟ ହେଲା; ତାକୁ କୋଳ କରି ବଡ଼ପାଟିରେ କାନ୍ଦିବାକୁ ଲାଗିଲି ଆଉ ତା' ମୁହଁକୁ ଧରି କହିବାକୁ ଲାଗିଲି — 'ଯେଉଁ ମୁହଁରେ ମା କୌଶଲ୍ୟା, କାଟିବ କହି କ୍ଷୀର, ସର, ଲହୁଣୀ ମଧ୍ୟ ଅତି ସନ୍ତର୍ପଣରେ ଖୁଆଇ ଦେଉଥିଲେ, ମୁଁ ଏପରି ହତଭାଗ୍ୟ ଯେ, ସେହି ମୁହଁରେ ଏପରି କଦର୍ଯ୍ୟ ଖାଦ୍ୟ ଦେବାକୁ ଟିକିଏ ବି ସଙ୍କୋଚ ହେଲା ନାହିଁ' !'' — କଥାଗୁଡ଼ିକ କହୁ କହୁ ଠାକୁରଙ୍କର ପୁଣି ପୂର୍ବଶୋକ ଉଛୁଳି ଉଠିଲା ଏବଂ ସେ ଆମମାନଙ୍କ ସମ୍ମୁଖରେ ଅଧୀର ହୋଇ ଏପରି ବ୍ୟାକୁଳ କ୍ରନ୍ଦନ କରିବାକୁ ଲାଗିଲେ ଯେ, ରାମଲାଲାଙ୍କ ସହିତ ତାଙ୍କର ପ୍ରେମ-ସମ୍ବନ୍ଧ କଥା ବିନ୍ଦୁବିସର୍ଗ ବୁଝି ନ ପାରିଲେ ମଧ୍ୟ ଆମ ଆଖିରେ ଲୁହ ଆସିଲା ।

### ଠାକୁରଙ୍କଠାରୁ ରାମଲାଲାଙ୍କ କଥା ଶୁଣି ଆମମାନଙ୍କର କ'ଣ ମନେ ହୁଏ :

ମାୟାବଦ୍ଧ ଜୀବ ଆମେ, ରାମଲାଲାଙ୍କ ସେହିସବୁ କଥାଶୁଣି ଅବାକ୍ । ଭୟରେ (ରାମଲାଲା) ଠାକୁରଙ୍କ ଆଡ଼େ ଟିକେ ଅନାଇ ଦେଖିଲୁ, ଯଦି କିଛି ଦେଖିବାକୁ ପାଉ । କିଛି ହିଁ ନାହିଁ ! ଆଉ ଦେଖିବାକୁ ପାଇବୁ ବା କାହିଁକି ? ରାମଲାଲା ଉପରେ ସେପରି ଭଲ ପାଇବାର ଟାଣ ତ ଆଉ ଆମମାନଙ୍କର ନାହିଁ । ଠାକୁରଙ୍କ ପରି ଶ୍ରୀରାମଚନ୍ଦ୍ରଙ୍କର ଭାବ ଭିତରେ ଘନୀଭୂତ ହୋଇ ଆମର ସେ ଭାବଚକ୍ଷୁ ତ ଖୋଲି ନାହିଁ ଯେ ବାହାରେ ମଧ୍ୟ ରାମଲାଲାଙ୍କୁ ଜୀବନ୍ତ ଦେଖିବୁ । ଆମେ ଗୋଟିଏ ଛୋଟ କଣ୍ଢେଇ ହିଁ ଦେଖୁ ଓ ଭାବୁ, ଠାକୁର ଯାହାସବୁ କହିଗଲେ, ତାହା କ'ଣ ହେବା ସମ୍ଭବ ? ସଂସାରର ସମସ୍ତ ବିଷୟରେ ହିଁ ତ' ଆମମାନଙ୍କର ସେପରି ହେଉଛି, ଆଉ ଅବିଶ୍ୱାସର ବୋଝ ଧରି ବସିଅଛୁ ! ଦେଖୁନା — ବ୍ରହ୍ମଜ୍ଞ ଋଷି କହିଲେ, 'ସର୍ବଂ ଖଲ୍ୱିଦଂ ବ୍ରହ୍ମ ନେହ ନାନାସ୍ତି କିଞ୍ଚନ', ଜଗତରେ ଏକ ସଚ୍ଚିଦାନନ୍ଦମୟ ବ୍ରହ୍ମବସ୍ତୁ ଛଡ଼ା ଆଉ କିଛି ନାହିଁ; ତୁମେ ଯେଉଁ ନାନା ଜିନିଷ ନାନା ବ୍ୟକ୍ତି ସବୁ ଦେଖୁଛ, ତାହାର କିଛି ମଧ୍ୟ ବାସ୍ତବିକ୍ ନାହିଁ । ଆମେ ଭାବିଲୁ, 'ହୋଇପାରେ' । ସଂସାର ଆଡ଼କୁ ନଜର ପକାଇ ଦେଖିଲୁ, ଏକମେବାଦ୍ୱିତୀୟଂ ବ୍ରହ୍ମବସ୍ତୁର ନାମଗନ୍ଧ ମଧ୍ୟ ଖୋଜି ପାଇଲୁ ନାହିଁ; ଦେଖିବାକୁ ପାଇଲୁ, କେବଳ କାଠ, ମାଟି, ଘରଦ୍ୱାର, ମଣିଷ, ଗୋରୁ, ନାନାରଙ୍ଗର ଜିନିଷ । ନ ହେଲେ ଖୁବ୍ ବେଶୀରେ ଦେଖିଲୁ, ନୀଳ ସୁନୀଳ ତାରକାଖଚିତ ଅନନ୍ତ ଆକାଶ, ଶୁଭ୍ରକିରୀଟି

ହରିତ୍-ଶ୍ୟାମଳାଙ୍ଗ ଭୂଧର ଯାହା ଆକାଶକୁ ସ୍ପର୍ଶ କରିବାକୁ ସ୍ପର୍ଧା କରୁଅଛି; ଆଉ କଳକଳନାଦିନୀ ସ୍ରୋତସ୍ୱତୀ 'ଏତେ ସ୍ପର୍ଦ୍ଧା ଭଲ ନୁହେଁ' ବୋଲି ତାହାକୁ ଭର୍ତ୍ସନା କରୁ କରୁ ନିମ୍ନଗାମୀ ହୋଇ ତାକୁ ଦୀନତା ଶିକ୍ଷା ଦେଉଅଛି ! ଅଥବା ଦେଖିଲୁ, ବାୟୁ ଦ୍ୱାରା ପ୍ରେରିତ ହୋଇ ଅନନ୍ତ ଜଳଧି ବିଶାଳ ବିକ୍ରମରେ ସର୍ବଗ୍ରାସ କରିବାକୁ ଯେପରି ଛୁଟି ଆସୁଛି, କିନ୍ତୁ ସହସ୍ର ଚେଷ୍ଟାରେ ମଧ ବେଳାଭୂମି ଅତିକ୍ରମ କରିପାରୁ ନାହିଁ । ପୁଣି ଭାବିଲୁ, ଋଷିମାନେ କ'ଣ ନିଶାଦ୍ରବ୍ୟ ସେବନ କରି ଏପରି କଥାଗୁଡ଼ିଏ କହିଛନ୍ତି ? ଋଷିମାନେ ଯଦି କହନ୍ତି, 'ନାରେ ବାବା, କାୟମନୋବାକ୍ୟରେ ସଂଯମ ଓ ପବିତ୍ର ଭାବ ଅଭ୍ୟାସ କରି ଏକ ଚିତ୍ତ ହୁଅ, ଚିତ୍ତକୁ ସ୍ଥିର କର, ତାହେଲେ ହିଁ ଆମେ ଯାହା କହିଅଛୁ ତାହା ବୁଝିବାକୁ, ଦେଖିବାକୁ ପାଇବ । ଦେଖିବ, ଏଜଗତ ତୁମର ହୃଦୟସ୍ଥ ଭାବର ଘନୀଭୂତ ପ୍ରକାଶ; ଦେଖିବ ତୁମ ଭିତରେ 'ନାନା' ରହିଛି ବୋଲି ହିଁ ବାହାରେ ମଧ 'ନାନା' ଦେଖୁଛ ।' ସେତେବେଳେ କଦାଚିତ୍ ଆମେମାନେ କହିଲୁ, ଠାକୁର, ଉଦରପୂର୍ତ୍ତି ତଥା ଇନ୍ଦ୍ରିୟତାଡ଼ନାରେ ଆମେ ଅସ୍ଥିର, ଆମର ଏତେ ସମୟ କେଉଁଠି ?' ଅଥବା କହିଲୁ, 'ଠାକୁର, ତୁମର ବ୍ରହ୍ମବସ୍ତୁ ଦେଖିବାକୁ ହେଲେ ଯାହା ଯାହା କରିବାକୁ ହେବ ବୋଲି ଉପଦେଶ ଦେଲ, ତାହା କରିବା ତ ଦୁଇ ଚାରିଦିନ ବା ମାସ ବା ବର୍ଷକର କାମ ନୁହଁ—ମନୁଷ୍ୟ ଗୋଟିଏ ଜୀବନରେ ତାହା କରିପାରିବ କି ନାହିଁ ସନ୍ଦେହ । ତୁମମାନଙ୍କର କଥା ଶୁଣି ସେହି ବିଷୟରେ ଲାଗି ତା'ପରେ ଯଦି ବ୍ରହ୍ମ-ବସ୍ତୁ ଦେଖିବାକୁ ନ ପାଉ, ଅନନ୍ତ ଆନନ୍ଦଲାଭଟି ସବୁ ଠକାମୀ ବୋଲି ବୁଝିପାରୁ, ତାହାହେଲେ ତ' ଦୁଇକୂଳ ହରାଇ ବସିବୁ—ନା ପୃଥିବୀର, କ୍ଷଣସ୍ଥାୟୀ ହେଉ ବା ଯାହା ହେଉ, ସୁଖଗୁଡ଼ିକ ଭୋଗ କଲୁ, ନା ତୁମର ଅନନ୍ତ ସୁଖକୁ ପାଇଲୁ—ସେତେବେଳେ କ'ଣ ହେବ ? ନା, ଠାକୁର ! ତୁମେ ଅନନ୍ତ ସୁଖର ଆସ୍ୱାଦ ପାଇଛ, ଭଲ, ତୁମେ ହିଁ ତାହା ଶିଷ୍ୟପ୍ରଶିଷ୍ୟ କ୍ରମରେ ସୁଖରେ ଭୋଗଦଖଲ କର; ଆମେ ରୂପରସାଦିରୁ ହାତେ ହାତେ ଯେଉଁ ସୁଖଟିକକ ପାଉଛୁ, ଆମକୁ ତାହା ହିଁ ଭୋଗ କରିବାକୁ ଦିଅ; ନାନା ଯୁକ୍ତିତର୍କ ଫନ୍ଦି-ଫିକର କରି ଆମର ସେହି ଭୋଗଟିକୁ ମାଟି କର ନାହିଁ !'

### ବର୍ତ୍ତମାନ କାଳର ଜଡ଼ବିଜ୍ଞାନ ଭୋଗ-ସୁଖ ବୃଦ୍ଧିର ସହାୟତା କରେ ବୋଲି ଆମର ସେଥିରେ ଅନୁରାଗ :

ଆହୁରି ଦେଖ, ବୈଜ୍ଞାନିକମାନେ ଆମକୁ କହିଲେ, 'ଆମେ ତୁମକୁ ଯନ୍ତ୍ର ସହାୟରେ ଦେଖାଇ ଦେଉଛୁ—ଏକ ସର୍ବବ୍ୟାପୀ ପ୍ରାଣପଦାର୍ଥ ଇଟା-କାଠ, ସୁନା-ରୂପା, ଗଛ-ପତ୍ର, ମଣିଷ-ଗୋରୁ ସମସ୍ତଙ୍କ ଭିତରେ ସମଭାବରେ ରହି ଭିନ୍ନ ଭିନ୍ନ ଭାବରେ ପ୍ରକାଶିତ ହେଉଅଛି ।' ଆମେ ଦେଖିଲୁ, ବାସ୍ତବିକ୍ ସମସ୍ତଙ୍କ ଭିତରେ ପ୍ରାଣସ୍ପନ୍ଦନ ମିଳୁଛି ! କହିଲୁ —'ବାଃ ! ବାଃ ! ତୁମର ବୁଦ୍ଧିର ଦୌଡ଼

ଖୁବ୍ । କିନ୍ତୁ କେବଳ ସେହି ଜ୍ଞାନ ନେଇ କ'ଣ ହେବ ? ଏକଥା ତ ଆମର ଶାସ୍ତ୍ରକାର ଋଷିମାନେ ବହୁ କାଳ ପୂର୍ବରୁ କହିଯାଇଛନ୍ତି ।[୧] ତୁମେ ଏବେ ଏହା ଦେଖାଇପାରିଲ । ତାହାର ସହାୟରେ ଆମର ରୂପରସାଦିଭୋଗର କିଛି ବୃଦ୍ଧି ହେବ ବୋଲି କହିପାରିବ କି ? ତା'ହେଲେ ବୁଝିବୁ ।' ବିଜ୍ଞାନବିଦ୍ କହିଲେ, 'ହେବ ନାହିଁ ? ନିଶ୍ଚିତ ହେବ । ଏହି ଦେଖ ନା, ତଡ଼ିତ୍‌ଶକ୍ତିର ପରିଚୟ ପାଇ ତୁମର ଦେଶ-ଦେଶାନ୍ତରର ସମ୍ବାଦ ପାଇବାକୁ କେତେ ସୁବିଧା ହୋଇଛି; ବାଷ୍ପୀୟ ଶକ୍ତି ବିଷୟ ଜାଣି ରେଳ-ଜାହାଜ, କଳ-କାରଖାନା କରି ବାଣିଜ୍ୟବ୍ୟବସାୟ ଦ୍ୱାରା ତୁମ ଭୋଗର ମୂଳ ଅର୍ଥ ଉପାର୍ଜନର କେତେ ସୁବିଧା ହୋଇଅଛି; ବିସ୍ଫୋରକ ପଦାର୍ଥର ଗୂଢ଼ ନିୟମ ବୁଝି ବନ୍ଧୁକ ତୋପ କରି ତୁମର ଭୋଗସୁଖଲାଭର ଅନ୍ତରାୟ ଶତ୍ରୁକୂଳନାଶର କେତେ ସୁବିଧା ହୋଇଅଛି । ଏହି ରୂପରେ ଆଜି ପୁଣି ଏହି ଯେଉଁ ସର୍ବବ୍ୟାପୀ ପ୍ରାଣଶକ୍ତିର ପରିଚୟ ପାଇଲ ତାହା ଦ୍ୱାରା ମଧ୍ୟ ଭବିଷ୍ୟତରେ ସେହିପରି କିଛି ନା କିଛି ସୁବିଧା ହେବ ହିଁ ହେବ ।' ଏକଥାରେ ଆମେ କହିଲୁ, 'ତାହା ଠିକ୍ ଅଟେ; କିନ୍ତୁ ଯେତେ ଶୀଘ୍ର ପାର ସେହି ନୂତନ ଆବିଷ୍କୃତ ଶକ୍ତିପ୍ରୟୋଗରେ ଯେପରି ଆମର ଭୋଗର ବୃଦ୍ଧି ହୁଏ, ସେହି ବିଷୟଟି ଲକ୍ଷ୍ୟ ରଖି ଯାହା ହୁଏ କିଛି ଗୋଟେ ବାହାର କରିପକାଅ; ତାହାହେଲେ ହିଁ ବୁଝାଯିବ, ତୁମେ ବାସ୍ତବିକ ବୁଦ୍ଧିମାନ; ସେହି ବେଦ-ପୁରାଣ-ବକ୍ତା ଋଷିମାନଙ୍କ ପରି ତୁମେ ନିଶା ଭାଙ୍ଗ ସେବନ କରି କଥା କହୁ ନାହଁ ।' ବିଜ୍ଞାନବିତ୍ ମଧ୍ୟ ଶୁଣି ଆମର ବିଚାରଧାରା ବୁଝି କହିଲେ—'ତଥାସ୍ତୁ' !

### ବୌଦ୍ଧଯୁଗର ଶେଷରେ କାପାଳିକମାନଙ୍କର ସକାମଧର୍ମ ପ୍ରଚାରର ଫଳ । ଯୋଗ ଓ ଭୋଗ ଏକତ୍ର ରହିବା ଅସମ୍ଭବ

ଧର୍ମଜଗତରେ ଜ୍ଞାନକାଣ୍ଡର ପ୍ରଚାରକ ଋଷିମାନେ ସେହିପ୍ରକାରରେ 'ତଥାସ୍ତୁ' କହିପାରିଲେ ନାହିଁ ବୋଲି ତ ଯେତେ ଗଣ୍ଡଗୋଳ ହେଲା । ଆଉ ସେମାନଙ୍କୁ ସଂସାରର କୋଳାହଳରୁ ଦୂରରେ ଜଙ୍ଗଲରେ ବାସ କରି ଦୁଇ-ଚାରୋଟି ସଂସାର ବିରାଗୀ ଲୋକଙ୍କୁ ନେଇ ହିଁ ସନ୍ତୁଷ୍ଟ ରହିବାକୁ ହେଲା ! ତେବେ ଭାରତର ଧର୍ମଜଗତରେ ମଧ୍ୟ ସେହିପରି 'ତଥାସ୍ତୁ' କହିବାର ଚେଷ୍ଟା ଯେ କୌଣସି କାଳରେ କଦାପି ହୋଇ ନାହିଁ ତାହା କହିହେବ ନାହିଁ । ବୌଦ୍ଧଯୁଗର ଶେଷ କଥାଟି ସ୍ମରଣ କର—ଯେତେବେଳେ ତାନ୍ତ୍ରିକ କାପାଳିକମାନେ ମାରଣ, ଉଚାଟନ, ବଶୀକରଣ ଇତ୍ୟାଦିର ବିପୁଳ ପ୍ରସାର କରୁଥିଲେ, ଯେତେବେଳେ ଶାନ୍ତି-ସ୍ୱସ୍ତ୍ୟୟନ ଆଦିରେ ମାନବର ଶାରୀରିକ ଓ ମାନସିକ ବ୍ୟାଧିର ଉପଶମ ଓ ଆରୋଗ୍ୟର ଏବଂ ଭୂତ-

---

୧. ''ଅନ୍ତଃସଂଜ୍ଞା ଭବନ୍ତ୍ୟେତେ ସୁଖଦୁଃଖସମନ୍ୱିତାଃ'' — ବୃକ୍ଷପ୍ରସ୍ତରାଦି ଜଡ଼ପଦାର୍ଥସମୂହର ମଧ୍ୟ ଚୈତନ୍ୟ ଅଛି; ସେମାନଙ୍କ ଭିତରେ ମଧ୍ୟ ସୁଖଦୁଃଖର ଅନୁଭୂତି ବିଦ୍ୟମାନ ।

ପ୍ରେତ ତଡ଼ିବାର ଖୁବ୍ ଧୁମ୍‌ଧାମ୍ ଚାଲିଥିଲା, ଯେତେବେଳେ ତପସ୍ୟାଲବ୍ଧ ସିଦ୍ଧିର ପ୍ରଭାବରେ ଅଲୌକିକ କିଛି ଗୋଟେ ଦେଖାଇ ନ ପାରିଲେ ଏବଂ ଶିଷ୍ୟବର୍ଗଙ୍କର ସାଂସାରିକ ଭୋଗସୁଖାଦି ନିର୍ବିଘ୍ନରେ ଯେପରି ସମ୍ପନ୍ନ ହୁଏ, ଦୈବକୁ ସେହି ଭାବରେ ନିୟନ୍ତ୍ରିତ କରିବାର କ୍ଷମତା ତୁମେ ଯେ ଧାରଣ କର ଲୋକଙ୍କ ନିକଟରେ ଏପ୍ରକାର ଛଳନା କରି ନ ପାରିଲେ ତୁମେ ଧାର୍ମିକ ବୋଲି ହିଁ ପରିଚିତ ହୋଇ ପାରୁ ନ ଥିଲ— ସେହି ଯୁଗର କଥା ସ୍ମରଣ କର । ସେତେବେଳେ ଧର୍ମଜଗତ ଭୋଗର କାମନା ପୂର୍ଣ୍ଣ କରିବାର ସହାୟକ ବୋଲି ଧର୍ମନିହିତ ଗୂଢ଼ସତ୍ୟସମୂହକୁ ସଂସାରୀ ମାନବ ନିକଟରେ ପ୍ରଚାର କରିବାକୁ ବଦ୍ଧପରିକର ହୋଇଥିଲା । କିନ୍ତୁ ଆଲୋକ ଓ ଅନ୍ଧକାର ଏକତ୍ର ଗୋଟିଏ ସ୍ଥାନରେ ଏକ ସମୟରେ ରହିବ କିପରି ? ଫଳରେ ସ୍ୱଳ୍ପକାଳ ମଧ୍ୟରେ ହିଁ କାପାଳିକ ତାନ୍ତ୍ରିକମାନଙ୍କର ଯୋଗ ଭୁଲି ଭୋଗଭୂମିରେ ଅବରୋହଣ ଏବଂ ଧର୍ମ ନାମରେ ରୂପରସାଦି ସୁବିସ୍ତୃତ ଭୋଗଶୃଙ୍ଖଳର ଗୁପ୍ତ ପ୍ରଚାର ଆରମ୍ଭ ହେଲା ! ସେତେବେଳେ ଦେଶର ଯଥାର୍ଥ ଧାର୍ମିକମାନେ ପୁଣିଥରେ ବୁଝିଲେ ଯେ, ଯୋଗ-ଭୋଗ ଦୁଇ ପଦାର୍ଥ ପରସ୍ପରବିରୋଧୀ— ଏକତ୍ର ଗୋଟିଏ ଆଧାରରେ କୌଣସି ରୂପରେ ରହିପାରେ ନାହିଁ ଏବଂ ଏହାବୁଝି ପୁନରାୟ ଋଷିକୁଳ-ପ୍ରବର୍ତ୍ତିତ ଜ୍ଞାନମାର୍ଗର ପକ୍ଷପାତୀ ହୋଇ ଜୀବନରେ ତାହାର ଅନୁଷ୍ଠାନ କରିବାକୁ ଲାଗିଲେ ।

### ଠାକୁରଙ୍କର ନିଜର ଅଦ୍ଭୁତ ତ୍ୟାଗ ଏବଂ ତ୍ୟାଗଧର୍ମର ପ୍ରଚାର ଦେଖି ସଂସାରୀ ଲୋକଙ୍କର ଭୟ :

ଆମମାନଙ୍କର ମଧ୍ୟ ସଂସାରୀ ମାନବଙ୍କ ମତରେ ମତ ଦେଇ ସେହିପରି 'ତଥାସ୍ତୁ' କହିବାର ସୁଯୋଗ କେଉଁଠି ? ଆମେ ଯେ ଏକ ଜଗତଛଡ଼ା ଠାକୁରଙ୍କ କଥା କହିବାକୁ ବସିଛୁ—ଯାହାଙ୍କର ମନରେ ତ୍ୟାଗର ଭାବ ଏତେ ବଦ୍ଧମୂଳ ହୋଇଯାଇଥିଲା ଯେ, ସୁଷୁପ୍ତି ଅବସ୍ଥାରେ ମଧ୍ୟ ହସ୍ତରେ ଧାତୁ ସ୍ପର୍ଶ କଲେ ହସ୍ତ ସଙ୍କୁଚିତ ଓ ବଙ୍କା ହୋଇଯାଉଥିଲା ଏବଂ ଶ୍ୱାସ-ପ୍ରଶ୍ୱାସ ରୁଦ୍ଧ ହୋଇ ପ୍ରାଣ ଭିତରେ ପ୍ରଚଣ୍ଡ ଯନ୍ତ୍ରଣା ଉପସ୍ଥିତ ହେଉଥିଲା ! —ସ୍ତ୍ରୀ-ଶରୀର ଦେଖିଲେ ହିଁ ଯାହାଙ୍କର ମନରେ ଜଗଜ୍ଜନନୀଙ୍କର ସାକ୍ଷାତ୍ ପ୍ରତିମୂର୍ତ୍ତି ବୋଲି ଜ୍ଞାନ ଉଦୟ ହେଉଥିଲା, ନାନା ଲୋକେ ନାନା ଚେଷ୍ଟା କରି ମଧ୍ୟ ସେହି ଭାବ ଦୂର କରି ପାରି ନ ଥିଲେ ! —ସହସ୍ର ସହସ୍ର ଟଙ୍କାର ସମ୍ପତ୍ତି ଦେବାକୁ ଚାହିଁଥିଲେ ବୋଲି ଯାହାଙ୍କ ମନରେ ଏପରି ସାଂଘାତିକ ଯନ୍ତ୍ରଣା ହୋଇଥିଲା ଯେ, ପରମ ଅନୁଗତ ମଥୁରଙ୍କୁ ଯଷ୍ଟିହସ୍ତରେ ଆରକ୍ତ-ନୟନରେ ପ୍ରହାର କରିବାକୁ ଦୌଡ଼ିଥିଲେ ଏବଂ ପରେ ମଧ୍ୟ ଆମ ପାଖରେ ସେସବୁ କଥା କହୁ କହୁ ଉତ୍ତେଜିତ ହୋଇ କହୁଥିଲେ, 'ମଥୁର ଓ ଲକ୍ଷ୍ମୀନାରାୟଣ ମାରଓ୍ୱାଡ଼ି ସମ୍ପତ୍ତି ଲେଖାପଢ଼ା କରି ଦେବେ ଶୁଣି ମୁଣ୍ଡ ଉପରେ

ଯେପରି ଏକ କରତ ଚଲାଇଦେବା ପରି ଯନ୍ତ୍ରଣା ହୋଇଥିଲା !'—ଯାହାଙ୍କର ମନରେ ସଂସାରର ରୂପରସାଦି କଦାପି ଆସକ୍ତିର କଳଙ୍କ-କାଳିମା ଆନୟନ କରି ସମାଧିଭୂମିର ଅତୀନ୍ଦ୍ରିୟ ଆନନ୍ଦାନୁଭବର ବିନ୍ଦୁମାତ୍ର ବିଚ୍ଛେଦ ଜନ୍ମାଇପାରି ନାହିଁ—ଏହି ସୃଷ୍ଟିଛଡ଼ା ଠାକୁରଙ୍କର କଥା କହିବାକୁ ଯାଇ ଆମକୁ ଯେ ଅନେକ ତିରସ୍କାର-ଲାଞ୍ଛନା ସହ୍ୟ କରିବାକୁ ହେବ, ହେ ଭୋଗଲୋଲୁପ ସଂସାରୀ ମାନବଗଣ, ତାହା ଆମେ ବହୁ ପୂର୍ବରୁ ହିଁ ଜାଣିଛୁ । କେବଳ ତାହା ହିଁ ନୁହେଁ, କାଳେ ତୁମର ଦଳବଳ, ଆତ୍ମୀୟ-ସ୍ୱଜନ, ପୁତ୍ର-ପୌତ୍ରାଦିଙ୍କ ଭିତରେ ସରଳମତି କେହି ଏହି ଅଲୌକିକ ଚରିତ୍ର ପ୍ରତି ଆମ କଥାରେ ସତକୁ ସତ ଆକୃଷ୍ଟ ହୋଇ ଭୋଗସୁଖ ଜଳାଞ୍ଜଳି ଦେଇ ସଂସାରର ବାହାରକୁ ଯିବାକୁ ଚେଷ୍ଟା କରେ, ସେଥିପାଇଁ ତୁମେ ଏହି ଦେବଚରିତ୍ରରେ ମଧ୍ୟ ଯେ କଳଙ୍କ ଅର୍ପଣ କରିବାକୁ କୁଣ୍ଠିତ ହେବ ନାହିଁ—ତାହା ମଧ୍ୟ ଆମେ ଜାଣୁ । କିନ୍ତୁ ଜାଣିଲେ କ'ଣ ହେବ ? ଯେତେବେଳେ ଏହି କାର୍ଯ୍ୟରେ ହସ୍ତକ୍ଷେପ କରିଛୁ, ସେତେବେଳେ ଆମର ବିରତ ହେବା ବା ଅନ୍ତତଃ ଆଂଶିକ ଗୋପନ କରି ସତ୍ୟ କହିବାର ସାମର୍ଥ୍ୟ ନାହିଁ । ଯେତେଦୂର ଜାଣିଛୁ, ସମସ୍ତ କଥା କହିଯିବାକୁ ହେବ । ନତୁବା ଶାନ୍ତି ନାହିଁ । କିଏ ଯେପରି ଜୋର୍ କରି କୁହାଉଅଛି ! ଅତଏବ ଆମେ ଏହି ଅଦୃଷ୍ଟପୂର୍ବ ଦେବମାନବଙ୍କର କଥା ଯେତିକି ଜାଣିଛୁ କହିଯାଉ, ଆଉ ତୁମେ ଏସବୁ କଥା ଯେତେଟା ଇଚ୍ଛା 'ଲାଞ୍ଜମୁଣ୍ଡ ବାଦ ଦେଇ' ନିଜକୁ ଯେତିକି ସୁହାଇବ ସେତିକି ନିଅ, ବା ଇଚ୍ଛା ହେଲେ 'ଏହା ଗଞ୍ଜେଇଖୋରଙ୍କ କଥା' ବୋଲି ପୁସ୍ତକଟିକୁ ଦୂରରେ ନିକ୍ଷେପ କରି ଦେଇ ନିତ୍ୟ ନୂତନ ଫୁଲରେ 'ବିଷୟ-ମଧୁ' ପାନ କରିବାକୁ ଧାଇଁ ଯାଅ । ପରେ, ସଂସାରର ବିଷମ ଘୂର୍ଣ୍ଣିଝଡ଼ରେ ପଡ଼ି ଯଦି କେବେ 'ବିଷୟ-ମଧୁ ତୁଚ୍ଛ ହେଲା—' ଏପରି ଅବସ୍ଥା ତୁମ ଭାଗ୍ୟଦୋଷରେ ଆସିପଡ଼େ, ସେତେବେଳେ ଏହି ଅଲୌକିକ ପୁରୁଷଙ୍କର ଲୀଳାପ୍ରସଙ୍ଗ ପଢ଼ିବ—ନିଜେ ଶାନ୍ତି ପାଇବ ଏବଂ ଆମର ଠାକୁରଙ୍କର 'ମୂଲ୍ୟ' ବୁଝିବ ।

**ରାମଲାଲାଙ୍କର ଠାକୁରଙ୍କ ନିକଟରେ ରହିବା କିପରି ହେଲା :**

'ରାମଲାଲା'ଙ୍କ ସେହି ପ୍ରକାର ଅଦ୍ଭୁତ ଆଚରଣର କଥା କହୁ କହୁ ଠାକୁର କହୁଥିଲେ—"ଦିନେ ଦିନେ ରାନ୍ଧିବାଢ଼ି ଭୋଗ ଦେବାକୁ ବସି ବାବାଜୀ ରାମଲାଲାଙ୍କୁ ଦେଖିବାକୁ ପାଉ ନ ଥିଲେ । ବାବାଜୀ ସେତେବେଳେ ବ୍ୟଥିତ ହୋଇ ଏଠାକୁ (ଠାକୁରଙ୍କ ଘରକୁ) ଦୌଡ଼ି ଆସୁଥିଲେ; ଆସି ଦେଖନ୍ତି ତ' ରାମଲାଲା ଘରେ ଖେଳୁଛି ! ସେତେବେଳେ ଅଭିମାନରେ ତାଙ୍କ କେତେ କ'ଣ କହୁଥିଲେ ! କହୁଥିଲେ ଯେ, 'ମୁଁ ଏତେ ଯତ୍ନ କରି ରାନ୍ଧିବାଢ଼ି ତତେ ଖାଇବାକୁ ଦେବି ବୋଲି ଖୋଜୁଛି, ଆଉ ତୁ କ'ଣ ନା ଏଠାକୁ ଆସି ନିଶ୍ଚିନ୍ତ ହୋଇ ଭୁଲି

ରହିଛୁ ! ତୋର ସ୍ୱଭାବ ହିଁ ସେହିପରି, ଯାହା ଇଚ୍ଛା ତାହା କରିବୁ; ଦୟା ମାୟା କିଛି ନାହିଁ ! ବାପ-ମାଆଙ୍କୁ ଛାଡ଼ି ବଣକୁ ଗଲୁ, ବାପାଟା କାନ୍ଦି କାନ୍ଦି ମରିଗଲା, ତେବେ ମଧ୍ୟ ଫେରିଲୁ ନାହିଁ—ତାଙ୍କୁ ଦେଖା ଦେଲୁ ନାହିଁ !'—ଏପରି ସବୁ କେତେ କ'ଣ କହି ରାମଲାଲାଙ୍କୁ ଟାଣି ନେଇ ଖୁଆଉଥିଲେ ! ଏହିପରି ଦିନ କଟିବାକୁ ଲାଗିଲା । ବାବାଜୀ ଏଠାରେ ଅନେକ ଦିନ ଥିଲେ—କାରଣ ରାମଲାଲା ଏଢାଗା (ମୋତେ) ଛାଡ଼ି ଯିବାକୁ ଚାହେଁ ନାହିଁ —ଆଉ ସେ ମଧ୍ୟ ଚିରକାଳର ଆଦରର ରାମଲାଲାଙ୍କୁ ଛାଡ଼ି ଯାଇପାରୁ ନ ଥିଲେ !

''ତା'ପରେ ଦିନେ ବାବାଜୀ ହଠାତ୍ ଆସି ସଜଳନୟନରେ କହିଲେ, 'ରାମଲାଲା ମୋତେ କୃପା କରି ପ୍ରାଣର ପିପାସା ମେଣ୍ଟାଇ ଯେପରି ଭାବରେ ଦେଖିବାକୁ ଚାହୁଁଥିଲି ସେପରି ଭାବରେ ଦର୍ଶନ ଦେଇଛି ଓ କହିଛି, ଏଠାରୁ ସେ ଯିବ ନାହିଁ; ତୁମକୁ ଛାଡ଼ି କୌଣସି ମତେ ଯିବାକୁ ଚାହୁଁ ନାହିଁ ! ମୋର ଏବେ ଆଉ ମନରେ ଦୁଃଖକଷ୍ଟ ନାହିଁ ! ତୁମ ପାଖରେ ସେ ସୁଖରେ ରହେ ଓ ଆନନ୍ଦରେ ଖେଳକୁଦ କରେ, ତାହା ଦେଖି ମୁଁ ଆନନ୍ଦରେ ଭରପୂର ହୋଇଯାଏ । ଏବେ ମୋର ଏପରି ଅବସ୍ଥା ହୋଇଛି ଯେ ତା'ର ଯେଉଁଥିରେ ସୁଖ, ମୋର ମଧ୍ୟ ସେଥିରେ ହିଁ ସୁଖ ! ସେଥିପାଇଁ ମୁଁ ଏବେ ଏହାକୁ ତୁମ ନିକଟରେ ରଖି ଅନ୍ୟତ୍ର ଯାଇପାରିବି । ତୁମ ପାଖରେ ସୁଖରେ ଅଛି ଭାବି ଧ୍ୟାନ କରି ମୋର ଆନନ୍ଦ ହେବ ।' —ଏହା କହି ରାମଲାଲାକୁ ମୋତେ ଦେଇ ବିଦାୟ ନେଲେ । ସେହିଦିନରୁ ରାମଲାଲା ଏଠାରେ ଅଛି ।''

## ଠାକୁରଙ୍କ ଦେବସାନ୍ନିଧ୍ୟରେ ବାବାଜୀଙ୍କର ସ୍ୱାର୍ଥଶୂନ୍ୟ ପ୍ରେମାନୁଭବ :

ଆମେ ବୁଝିଲୁ ଠାକୁରଙ୍କର ଦେବସଙ୍ଗରେ ହିଁ ବାବାଜୀଙ୍କର ମନ ସ୍ୱାର୍ଥଗନ୍ଧହୀନ ଭଲପାଇବାର ଆସ୍ୱାଦନ ପାଇଥିଲା ଏବଂ ବୁଝିପାରିଥିଲା ଯେ ସେହି ପ୍ରେମରେ ପ୍ରେମାସ୍ପଦ ସହିତ ଆଉ ବିଚ୍ଛେଦର ଆଶଙ୍କା ନାହିଁ । ସେ ଆହୁରି ମଧ୍ୟ ବୁଝିଥିଲେ ଯେ, ତାଙ୍କର ଶୁଦ୍ଧ-ପ୍ରେମଘନ ଉପାସ୍ୟ ତାଙ୍କ ନିକଟରେ ହିଁ ସର୍ବଦା ରହିଛନ୍ତି, ଯେତେବେଳେ ଇଚ୍ଛା ସେତେବେଳେ ହିଁ ତାଙ୍କର ଦର୍ଶନ ପାଇବେ ! ସାଧୁ ଏହି ଆଶ୍ୱାସ ପାଇ ଯେ ପ୍ରାଣର ରାମଲାଲାକୁ ଛାଡ଼ି ଯାଇପାରିଥିଲେ, ଏହା ନିସଂଶୟ ।

## ଜନୈକ ସାଧୁଙ୍କର ରାମନାମରେ ବିଶ୍ୱାସ :

ଠାକୁର କହୁଥିଲେ, ''ଆଉ ଜଣେ ସାଧୁ ଆସିଥିଲେ, ତାଙ୍କର ଈଶ୍ୱରଙ୍କ ନାମରେ ଏକାନ୍ତ ବିଶ୍ୱାସ ! ସେ ମଧ୍ୟ ରାମାୟତପନ୍ଥୀ ସାଧୁ ଥିଲେ । କେବଳ ଗୋଟିଏ ଲୋଟା ଓ ଗୋଟିଏ ଗ୍ରନ୍ଥ ଛଡ଼ା ତାଙ୍କ ସଙ୍ଗରେ ଅନ୍ୟ କିଛି ନ ଥିଲା । ଗ୍ରନ୍ଥଖଣ୍ଡିକ ତାଙ୍କର ଅତି ଆଦରର ଜିନିଷ ଥିଲା—ଫୁଲ ଚଢ଼ାଇ ପ୍ରତିଦିନ ତାହା

ପୂଜା କରୁଥିଲେ ଓ ଥରେ ଥରେ ଖୋଲି ଦେଖୁଥିଲେ । ତାଙ୍କ ସହିତ ଆଳାପ ହେବା ପରେ ଦିନେ ବହୁତ କହି ବୋଲି ବହିଟିକୁ ଦେଖିବାକୁ ମାଗିନେଲି । ବହିଟି ଖୋଲି ଦେଖିଲି ସେଥିରେ କେବଳ ଲାଲ କାଳିରେ ବଡ଼ ବଡ଼ ଅକ୍ଷରରେ ଲେଖାଅଛି, 'ଓଁ ରାମଃ !' ସେ କହିଲେ, 'ମେଞ୍ଚାଏ ଗ୍ରନ୍ଥ ପଢ଼ି କ'ଣ ହେବ ? ଏକ ଭଗବାନଙ୍କଠାରୁ ହିଁ ତ' ସମସ୍ତ ବେଦ-ପୁରାଣ ସବୁ ବାହାରିଛି; ଆଉ ତାଙ୍କ ନାମ ଏବଂ ସେ ତ' ଅଭେଦ; ଅତଏବ ଚାରି ବେଦ, ଅଠର ପୁରାଣରେ, ଏବଂ ସବୁ ଶାସ୍ତ୍ରରେ ଯାହା ଅଛି, ତାଙ୍କର ଗୋଟିଏ ନାମରେ ସେ ସବୁ ରହିଛି ! ତେଣୁ ତାଙ୍କ ନାମ ନେଇ ବଞ୍ଚିଛି !'' ତାଙ୍କର ନାମରେ ଏପରି ବିଶ୍ୱାସ ଥିଲା !

**ରାମାୟତପନ୍ଥୀ ସାଧୁମାନଙ୍କର ଭଜନ-ସଙ୍ଗୀତ ଓ ଦୋଁହାବଳୀ :**

ଏହିପରି କେତେ ସାଧୁଙ୍କ କଥା ହିଁ ନା ଠାକୁର ଆମମାନଙ୍କ ନିକଟରେ କହୁଥିଲେ । ପୁଣି କେତେବେଳେ ଏହି ସମସ୍ତ ରାମାୟତପନ୍ଥୀ ବାବାଜୀମାନଙ୍କ ନିକଟରୁ ଭଗବାନଙ୍କ ଯେଉଁ ସମସ୍ତ ଭଜନ ଶିଖିଥିଲେ, ସେସବୁ ଆମ ପାଖରେ ଗାଇ ଶୁଣାଉଥିଲେ । ଯଥା—

(ମେରା) ରାମ କୋ ନହିଁ ଚିହ୍ନା ହୈ ଦିଲ,
ଚିହ୍ନା ହୈ ତୁ କ୍ୟା ରେ; ଔର ଜାନା ହୈ ତୁ କ୍ୟା ରେ ।
ସନ୍ତ ୱହି ଜୋ ରାମ-ରସ ଚଖେ
(ଔର) ବିଷୟ-ରସ ଚାଖା ହୈ ସୋ କ୍ୟା ରେ ।।
ପୁତ୍ର ୱହି ଜୋ କୁଲ କୋ ତାରେ
ଔର ଜୋ ସବ ପୁତ୍ର ହୈ ସେ କ୍ୟା ରେ ।।

ଅଥବା—

ସୀତାପତି ରାମଚନ୍ଦ୍ର ରଘୁପତି ରଘୁରାଇ ।
ଭଜ ଲେ ଅଯୋଧ୍ୟାନାଥ, ଦୁସରା ନ କୋଇ ।।
ହସନ ବୋଲନ ଚତୁର ଚାଲ, ଅୟନ ୱୟନ ଦୃଗ-ବିଶାଲ ।
ଭ୍ରୁକୁଟି-କୁଟିଲ ତିଲକଭାଲ, ନାସିକା ସୁହାଇ ।।
କେଶର କୋ ତିଲକ ଭାଲ, ମାନୋ ରବି ପ୍ରାତକାଲ ।
ମାନୋ ଗିରି-ଶିଖର ଫୋଡ଼ି, ସୁରସରି ବହିରାଈ ।।
ମୋତିନ କୋ କଣ୍ଠମାଲ, ତାରାଗଣ ଉର ବିଶାଲ ।
ଶ୍ରବଣ କୁଣ୍ଡଲ ଝଲମଲାତ, ରତିପତି ଛବି ଝାଇ ।।
ସଖା ସହିତ ସରଜୁ ତୀର ବିହରେ ରଘୁବଂଶ ବୀର ।
ତୁଲସୀଦାସ ହରସ ନିରଖି, ଚରଣରଜ ପାଇ ।।

ଅଥବା ସେ ଗାଉଥିଲେ—

'ରାମ ଭଜା ସୋ ଜୀୟା ରେ ଜଗ ମେ,
ରାମ ଭଜା ସେ ଜିୟା ରେ ।।'

ଅଥବା—

'ମେରା ରାମ ବିନା କୋଈ ନହିଁ ରେ ତାରଣୱାଲା ।'

—ଏହି ମଧୁର ଗୀତ ଦୁଇଟିର ଅନ୍ୟ ପଦଗୁଡ଼ିକ ଆମେ ଭୁଲିଯାଇଛୁ ।

କେବେ ପୁଣି ଠାକୁର ସେ ସମସ୍ତ ସାଧୁମାନଙ୍କ ନିକଟରୁ ଯେଉଁ ସବୁ ଦୋହା ଶିଖିଥିଲେ, ତାହା ଆମକୁ ଶୁଣାଉଥିଲେ । କହୁଥିଲେ, ''ସାଧୁମାନେ ଚୋରି, ନାରୀ ଏବଂ ମିଥ୍ୟା ଏହି ତିନୋଟିର ହାତରୁ ସର୍ବଦା ନିଜକୁ ବଞ୍ଚାଇବାର ଉପଦେଶ ଦିଅନ୍ତି ।'' ଏହା କହି ପୁଣି କହୁଥିଲେ, ''ଏହି ତୁଳସୀ ଦାସଙ୍କର ଦୋହାରେ କ'ଣ କୁହାହୋଇଛି ଶୁଣ—

'ସତ୍ୟବଚନ ଅଧୀନତା ପରଧନ-ଉଦାସ ।<br>
ଇସ ମେ ହରି ନା ମିଲେ ତୋ ଜାମିନ୍ ତୁଲସୀଦାସ ।।<br>
ସତ୍ୟବଚନ ଅଧୀନତା ପରସ୍ତ୍ରୀ ମାତୃ ସମାନ ।<br>
ଇସ ମେ ହରି ନା ମିଲେ, ତୁଲସୀ ଝୁଠ ଜବାନ ।।

''ଅଧୀନତା କ'ଣ ଜାଣିଛ— ଦୀନଭାବ । ଠିକ୍ ଠିକ୍ ଦୀନଭାବ ଆସିଲେ ଅହଂକାର ନାଶ ହୁଏ ଓ ଈଶ୍ୱରଙ୍କୁ ମିଳିଥାଏ । କବୀରଦାସଙ୍କ ଗାନରେ ମଧ୍ୟ ଏହି କଥା ଅଛି—

ସେବା ବନ୍ଦୀ ଓ୍ୱର ଅଧୀନତା, ସହଜ ମିଲେ ରଘୁରାଈ ।<br>
ହରି ସେ ଲାଗି ରହୋ ରେ ଭାଇ ।।'' ଇତ୍ୟାଦି ।

## ଠାକୁରଙ୍କର ସମସ୍ତ ସମ୍ପ୍ରଦାୟର ସାଧକମାନଙ୍କୁ ସାଧନାର ପ୍ରୟୋଜନୀୟ ଦ୍ରବ୍ୟ ଦେବାର ଇଚ୍ଛା ଓ ରାଜକୁମାରଙ୍କ (ଅଚଳାନନ୍ଦଙ୍କ) କଥା :

ଠାକୁର ଦିନେ କହିଲେ, ''ଥରେ ଏପରି ମନେହେଲା ଯେ, ସବୁ ପ୍ରକାର ସାଧକମାନଙ୍କର ଯାହା କିଛି ଜିନିଷ ସାଧନା ପାଇଁ ଦରକାର, ସେସବୁ ସେମାନଙ୍କୁ ଯୋଗାଇବି ! ସେମାନେ ଏସମସ୍ତ ପାଇ ନିଶ୍ଚିନ୍ତ ଭାବରେ ବସି ଈଶ୍ୱରଙ୍କର ସାଧନା କରିବେ, ଏହା ଦେଖିବି ଓ ଆନନ୍ଦ କରିବି । ମଥୁରକୁ ଏହା କହିଲି । ସେ କହିଲେ, 'ଚିନ୍ତା କ'ଣ ବାବା, ମୁଁ ସମସ୍ତ ବନ୍ଦୋବସ୍ତ କରିଦେବି; ତୁମର ଯାହାକୁ ଯାହା ଇଚ୍ଛା ଦେବ ।' ଠାକୁରବାଡ଼ିର ଭଣ୍ଡାରରୁ ଚାଉଳ, ଡାଲି, ଅଟା ପ୍ରଭୃତି ଯାହାର ଯେପରି ଇଚ୍ଛା ତାକୁ ସେହି ପ୍ରକାର ସିଧା ଦେବାର ବନ୍ଦୋବସ୍ତ ଥିଲା— ତା' ଉପରେ ମଥୁରବାବୁ ସାଧୁମାନଙ୍କୁ ଦେବାପାଇଁ ଲୋଟା, କମଣ୍ଡଳୁ, କମ୍ବଳ, ଆସନ ଏପରିକି ସେମାନେ ଯେଉଁ ସବୁ ନିଶାଦ୍ରବ୍ୟ ଚାହାଁନ୍ତି ଯଥା—ଭାଙ୍ଗ, ଗଞ୍ଜେଇ ଓ ତାନ୍ତ୍ରିକ ସାଧୁମାନଙ୍କ ପାଇଁ 'କାରଣ' ପ୍ରଭୃତି ସମସ୍ତ ଜିନିଷ ଦେବାର ବନ୍ଦୋବସ୍ତ କରିଦେଲେ । ସେତେବେଳେ ତାନ୍ତ୍ରିକ ସାଧକମାନେ ବହୁତ ଆସୁଥିଲେ ଓ ଶ୍ରୀଚକ୍ରର ଅନୁଷ୍ଠାନ କରୁଥିଲେ ! ସେମାନଙ୍କର ସାଧନାରେ ଦରକାର ବୋଲି

ମୁଁ ପିଆଜ ଅଦା ଛଡ଼ାଇ ମୁଢ଼ି ଓ ବିରି ଭଜା ମଗାଇ ସବୁ ଯୋଗାଡ଼ କରି ଦେଉଥିଲି; ଏବଂ ସେମାନେ ଏସମସ୍ତ ନେଇ ପୂଜା କରୁଛନ୍ତି, ଜଗଦମ୍ବାଙ୍କୁ ଡାକୁଛନ୍ତି, ଦେଖୁଥିଲି । ମୋତେ ସେମାନେ ଅନେକ ସମୟରେ ଚକ୍ରରେ ନେଇ ବସୁଥିଲେ, ଅନେକ ସମୟ ଚକ୍ରେଶ୍ୱର କରି ବସାଉଥିଲେ; 'କାରଣ' ଗ୍ରହଣ କରିବାକୁ ଅନୁରୋଧ କରୁଥିଲେ । କିନ୍ତୁ ଯେତେବେଳେ ବୁଝୁଥିଲେ ଯେ, ଏସବୁ ମୁଁ ଗ୍ରହଣ କରିପାରେ ନାହିଁ, ନାଁ ଧରିଲେ ହିଁ ନିଶା ହୋଇଯାଏ, ସେତେବେଳେ ଆଉ ଅନୁରୋଧ କରୁ ନ ଥିଲେ । ସେମାନଙ୍କ ସାଙ୍ଗରେ ବସିଲେ 'କାରଣ' ଗ୍ରହଣ କରିବାକୁ ହୁଏ ବୋଲି 'କାରଣ' ନେଇ କପାଳରେ ଟୀକା ଲଗାଇ ଦେଉଥିଲି ବା ଆଘ୍ରାଣ କରୁଥିଲି କିମ୍ବା ବେଶୀ ହେଲେ ଆଙ୍ଗୁଳିରେ ନେଇ ମୁହଁରେ ଟିକିଏ ଛିଟା ଦେଉଥିଲି ଆଉ ବାକିତକ ସେମାନଙ୍କ ପାତ୍ରରେ ଢାଳି ଦେଉଥିଲି । ଦେଖୁଥିଲି, ସେମାନଙ୍କ ଭିତରେ କେହି କେହି ତାହା ଗ୍ରହଣ କରି ଈଶ୍ୱରଙ୍କ ଚିନ୍ତାରେ ମନ ଦେଉଥିଲେ, ବେଶ୍ ତନ୍ମୟ ହୋଇ ତାଙ୍କୁ ଡାକୁଥିଲେ । ଅନେକଙ୍କୁ ପୁଣି ଦେଖିଲି ଲୋଭରେ ପଡ଼ି ପିଅନ୍ତି, ଜଗଦମ୍ବାଙ୍କୁ ଡାକିବା ଦୂରେ ଥାଉ ବେଶୀ ଖାଇ ଶେଷରେ ମାତାଲ ହୋଇଯାନ୍ତି । ସେହିପରି ଦିନେ ସ୍ୱେଚ୍ଛାଚାର ବେଶୀ ବଢ଼ିଯିବା ଦେଖି ଶେଷରେ ସେସବୁ (କାରଣ) ଆଦି ଦେବା ବନ୍ଦ କରିଦେଲି ! ରାଜକୁମାରଙ୍କୁ[୧] କିନ୍ତୁ ବରାବର ଦେଖିଛି, ସେ କାରଣ ଗ୍ରହଣ କରି ହିଁ ତନ୍ମୟ ହୋଇ ଜପରେ ବସୁଥିଲେ; କଦାପି ଅନ୍ୟଦିଗରେ ମନ ଦେଉ ନ ଥିଲେ । ଶେଷରେ କିନ୍ତୁ ଟିକିଏ ନାମ-ଯଶ ପ୍ରତିଷ୍ଠା ଆଡ଼କୁ ତାଙ୍କର ଝୁଙ୍କ ହୋଇଥିଲା । ହୋଇପାରେ — ଛୁଆପିଲା ପରିବାର ସବୁଥିଲା — ଘରେ ଅଭାବ ଯୋଗୁଁ ଟଙ୍କାପଇସା-ଲାଭ ଆଡ଼େ ଟିକିଏ ଅଧେ ମନ ଦେବାକୁ ପଡ଼େ; ସେ ଯାହା ହେଉ, ସେ କିନ୍ତୁ ବାବା, ସାଧନାରେ ସହାୟ ବୋଲି ହିଁ କାରଣ ଗ୍ରହଣ କରୁଥିଲା; ଲୋଭରେ ପଡ଼ି ଏସବୁ ଖାଇ କେବେ ବି ଉତ୍ଶୃଙ୍ଖଳ ହୋଇ ନ ଥିବାର ଦେଖିଛି ।''

**ଠାକୁରଙ୍କର 'ସିଦ୍ଧି' ବା 'କାରଣ' କହିବା ମାତ୍ରେ ଈଶ୍ୱରୀୟ ଭାବରେ ତନ୍ମୟ ହୋଇ ନିଶା ଏବଂ ଅଶ୍ଳୀଳ ଶବ୍ଦ ଉଚ୍ଚାରଣରେ ମଧ୍ୟ ସମାଧି :**

ଠାକୁର କେବେହେଲେ 'କାରଣ' ଗ୍ରହଣ କରିପାରୁ ନ ଥିଲେ — ଏ ପ୍ରସଙ୍ଗରେ କେତେ କଥା ମନରେ ଉଦୟ ହେଉଛି ! କେତେଦିନ ଆମ ସହିତ କଥା ପ୍ରସଙ୍ଗରେ 'ସିଦ୍ଧି', 'କାରଣ' ପ୍ରଭୃତି ଶବ୍ଦର ଉଚ୍ଚାରଣ କରୁ କରୁ ନିଶାରେ ଭରପୁର ହୋଇଛନ୍ତି, ଏପରିକି ସମାଧିସ୍ଥ ହୋଇଯିବାର ମଧ୍ୟ ଦେଖିଛୁ ! ସ୍ତ୍ରୀ-ଶରୀରର

---

୧. ସେ କିଛି ବର୍ଷ ହେଲା ଦେହତ୍ୟାଗ କରିଛନ୍ତି । କାଳୀଘାଟରେ ଅନେକ ସମୟ ରହୁଥିଲେ ଏବଂ ଅଚଳାନନ୍ଦନାଥ ନାମରେ ପ୍ରସିଦ୍ଧ ଥିଲେ । ସେ ଅନେକ ଶିଷ୍ୟ-ପ୍ରଶିଷ୍ୟ ରଖିଯାଇଥିଲେ । ତାଙ୍କର ଦେହତ୍ୟାଗ ପରେ ଶିଷ୍ୟଗଣ କାଳୀଘାଟର ନିକଟବର୍ତ୍ତୀ ଗ୍ରାମରେ ମହାସମାରୋହରେ ତାଙ୍କ ମରଶରୀରକୁ ମୃତ୍ସମାଧି ଦେଇଥିଲେ ।

ବିଶେଷ ଗୋପନୀୟ ଅଙ୍ଗ, ଯାହାର ନାମମାତ୍ରେ ହିଁ ସଭ୍ୟତାଭିମାନୀ ଲୁଆଚୋର ଆମମାନଙ୍କ ମନରେ କୁତ୍ସିତ ଭୋଗର ଭାବ ଉଦୟ ହୁଏ କିମ୍ବା ସେପରି ଭାବ ଉଦିତ ହେବା ନିଶ୍ଚିତ ଜାଣି ଆମମାନଙ୍କ ମଧ୍ୟରୁ କିଛି ଭଦ୍ର ବ୍ୟକ୍ତି ଏକଥା 'ଅଶ୍ଳୀଳ' ବୋଲି କର୍ଣ୍ଣରେ ଆଙ୍ଗୁଳିପ୍ରଦାନପୂର୍ବକ ଦୂରକୁ ପଳାୟନ କରି ଆତ୍ମରକ୍ଷା କରନ୍ତି, ସେହି ଅଙ୍ଗର ନାମ କରୁ କରୁ ଏହି ଅଦ୍ଭୁତ ଠାକୁରଙ୍କୁ ସମାଧିସ୍ଥ ହୋଇ ପଡ଼ିବା ଅନେକ ଥର ଦେଖିଛୁ ! ପୁଣି ଦେଖିଛୁ—ସମାଧି-ଭୂମିରୁ କିଛି ନିମ୍ନକୁ ଓହରି ଆସି ସାମାନ୍ୟ ବାହ୍ୟଦଶା ପ୍ରାପ୍ତ ହୋଇ ସେହି ପ୍ରସଙ୍ଗରେ କହୁଛନ୍ତି, ''ମା,' ତୁ ହିଁ ତ' ପଞ୍ଚାଶତ-ବର୍ଣ୍ଣ-ରୂପିଣୀ; ତୋର ଯେଉଁ ସବୁ ବର୍ଣ୍ଣ ନେଇ ବେଦ-ବେଦାନ୍ତ ସେସବୁ ହିଁ ତ' ଅଶ୍ଳୀଳ ଶବ୍ଦରେ ଅଛି ! ତୋର ବେଦ-ବେଦାନ୍ତର କ ଖ ଅଲଗା, ଆଉ ଗାଳିଗୁଲଜର କ ଖ ଅଲଗା ତ' ନୁହେଁ ! ବେଦ-ବେଦାନ୍ତ ମଧ ତୁ, ଆଉ ଗାଳିଗୁଲଜ ମଧ ତୁ ।'' ଏହା କହୁ କହୁ ପୁଣି ସମାଧିସ୍ଥ ହୋଇପଡୁଥିଲେ ! କହିବା ବୁଝେଇବା କଥା ଦୂରରେ ଥାଉ, କିଏ ବା ବୁଝିବ ଯେ, ଏହି ଅଲୌକିକ ଦେବମାନବଙ୍କ ଚକ୍ଷୁରେ ଜଗତର ଭଲ-ମନ୍ଦ ସମସ୍ତ ପଦାର୍ଥ ହିଁ ଅନିର୍ବଚନୀୟ, ଆମର ମନ ବୁଦ୍ଧିର ଅଗୋଚର, ଏକ ଅପୂର୍ବ ଆଲୋକରେ ପ୍ରକାଶିତ ଥିଲା ! କିଏ ସେହି ଚକ୍ଷୁ ପାଇବ ଯେ, ତାଙ୍କ ସଦୃଶ ଦୃଷ୍ଟିରେ ଜଗତ-ସଂସାରକୁ ଦେଖିପାରିବ ! ହେ ପାଠକ, ଅବହିତ ହୁଅ; ସ୍ତମ୍ଭିତ ମନରେ କଥାଗୁଡ଼ିକ ହୃଦୟରେ ଯତ୍ନର ସହିତ ଧାରଣ କର, ଆଉ ଭାବ— ଏହି ଅଦ୍ଭୁତ ଠାକୁରଙ୍କର ମାନସିକ ପବିତ୍ରତା କେତେ ସୁଗଭୀର, କି ଦୁରବଗାହ !

ଶ୍ରୀଶ୍ରୀଜଗଦମ୍ବାଙ୍କର କୃପାପାତ୍ର ଶ୍ରୀରାମପ୍ରସାଦ ଗାଇଛନ୍ତି— ''ସୁରାପାନ କରିନା ଆମି, ସୁଧା ଖାଇ ଜୟକାଲୀ ବଲେ । ଆମାର ମନ-ମାତାଲେ ମାତାଲ କରେ, ଯତ ମଦ-ମାତାଲେ ମାତାଲ ବଲେ'' ଇତ୍ୟାଦି । [ଅର୍ଥାତ୍, ମୁଁ ମଦିରାପାନ କରେ ନାହିଁ, ଜୟକାଳୀ କହି ମୁଁ ସୁଧା ପାନ କରେ । ମୋର ମନ-ମଦୁଆ ମୋତେ ମତ୍ତ କରିଦିଏ, ତେଣୁ ଯେତେ ମଦୁଆ ସମସ୍ତେ ମୋତେ ମତ୍ତ କହନ୍ତି ।] ବାସ୍ତବିକ୍ ନିଶା-ଭାଙ୍ଗ ନ ଖାଇ କେବଳ ଭଗବତ୍ ଆନନ୍ଦରେ ଯେ ଆମେ ଯେଉଁ ଅବସ୍ଥାକୁ ଘୋର ମାତାଲ ବୋଲି କହୁ ବା ତଦ୍ରୂପ ଅବସ୍ଥାପନ୍ନ ହୋଇପାରେ, ଏକଥା ଠାକୁରଙ୍କୁ ଦେଖିବା ପୂର୍ବରୁ ଆମମାନଙ୍କର ଧାରଣା ନ ଥିଲା । ଆମମାନଙ୍କର ବେଶ୍ ମନେ ଅଛି, ଆମମାନଙ୍କର ଜୀବନରେ ଗୋଟିଏ ସମୟ ଏପରି ଯାଇଛି ଯେତେବେଳେ 'ହରି' ଉଚ୍ଚାରଣରେ ମହାପ୍ରଭୁ ଶ୍ରୀଚୈତନ୍ୟଦେବଙ୍କର ବାହ୍ୟଜ୍ଞାନ ଲୁପ୍ତ ହେଉଥିଲା—ଏକଥା କୌଣସି ଗ୍ରନ୍ଥରେ ପାଠ କରି ଗ୍ରନ୍ଥକାରଙ୍କୁ କୁସଂସ୍କାରାପନ୍ନ ନିର୍ବୋଧ ବୋଲି ଧାରଣା ହୋଇଥିଲା । ସେତେବେଳେ ଏହି ପ୍ରକାରର ସମସ୍ତ ବିଷୟରେ ସନ୍ଦେହ, ଓ ଅବିଶ୍ୱାସର ତରଙ୍ଗ ଯେପରି ସହରର ସମସ୍ତ ଯୁବକଙ୍କ ମନରେ ହିଁ ଚାଲୁଥିଲା ! ତା'ପରେ ହିଁ ଏହି

ଅଲୌକିକ ଠାକୁରଙ୍କ ସହିତ ଦେଖା, ଦେଖା ହେବା ମାନେ, ଦିବା-ରାତ୍ର ସବୁ ସମୟରେ ଦେଖିବା, ନିଜ ଚକ୍ଷୁରେ ଦେଖିବା ଯେ କୀର୍ତ୍ତନାନନ୍ଦରେ ତାଙ୍କର ଉଦ୍ଦାମ ନୃତ୍ୟ ଓ ଘନ ଘନ ବାହ୍ୟଜ୍ଞାନ ଲୋପ—ଟଙ୍କା ପଇସା ହାତରେ ସ୍ପର୍ଶ କରାଇଲେ ହିଁ ନିଃଶ୍ୱାସ ବନ୍ଦ ହୋଇଯାଏ—'ସିଦ୍ଧି', 'କାରଣ' ପ୍ରଭୃତି ନିଶା ପଦାର୍ଥର ନାମ ନେବାମାତ୍ରେ ଭଗବତ୍ ଆନନ୍ଦର ଉଦ୍ଦୀପନା ହୋଇ ଭରପୂର ନିଶା ଖାଇବା ପରି ଅବସ୍ଥା—ଈଶ୍ୱରଙ୍କର ବା ତାଙ୍କ ଅବତାରଗଣଙ୍କ ନାମ ଦୂରେ ଥାଉ, ଯେଉଁ ନାମ ଉଚ୍ଚାରଣରେ ଇତର ସାଧାରଣଙ୍କ ମନରେ କୁତ୍ସିତ ଇନ୍ଦ୍ରିୟଜ ଆନନ୍ଦର ଉଦ୍ଦୀପନା ହୁଏ, ସେଥିରେ ବ୍ରହ୍ମଯୋନି ତ୍ରିଜଗତପ୍ରସବିନୀ ଆନନ୍ଦମୟୀ ଜଗଦମ୍ବାଙ୍କର ଉଦ୍ଦୀପନା ହୋଇ ଇନ୍ଦ୍ରିୟସମ୍ପର୍କଶୂନ୍ୟ ବିମଳ ଆନନ୍ଦରେ ସମ୍ପୂର୍ଣ୍ଣ ଆତ୍ମହରା ହୋଇପଡ଼ିବା ! ଏବେ ମଧ୍ୟ କ'ଣ କହିବାକୁ ହେବ ଯେ, ଏହି ଅଲୌକିକ ଦେବମାନବଙ୍କର ଏପରି କେଉଁ ଗୁଣ ଦେଖି ଆମମାନଙ୍କର ଚକ୍ଷୁ ଚିରକାଳ ପାଇଁ ଝଲସିତ ହୋଇଗଲା, ଯେଉଁଥିରେ ତାଙ୍କୁ ଈଶ୍ୱରାବତାର-ଜ୍ଞାନରେ ହୃଦୟରେ ଆସନ ପ୍ରଦାନ କଲୁ ?

**ଉକ୍ତ ବିଷୟରେ ପ୍ରଥମ ଦୃଷ୍ଟାନ୍ତ—ରାମଚନ୍ଦ୍ର ଦତ୍ତଙ୍କ ଘରେ :**

ଠାକୁରଙ୍କର ପରମଭକ୍ତ, ପରଲୋକଗତ ଡାକ୍ତର ଶ୍ରୀରାମଚନ୍ଦ୍ର ଦତ୍ତଙ୍କ ସିମଳାର (କଲିକତା) ଭବନରେ ଠାକୁର ଭକ୍ତମାନଙ୍କ ସହିତ ଉପସ୍ଥିତ ହୋଇ ଅନେକ ସମୟରେ ଅନେକ ଆନନ୍ଦ କରୁଥିଲେ । ସେହିପରି ଦିନେ କିଛି ସମୟ ଈଶ୍ୱରୀୟ ପ୍ରସଙ୍ଗରେ ଆନନ୍ଦ କରି ଦକ୍ଷିଣେଶ୍ୱର ଫେରିବେ ବୋଲି ବାହାରିଲେ । ରାମବାବୁଙ୍କର ଘରଟି ଗଳି[୧] ଭିତରେ, ଘର ନିକଟକୁ ଗାଡ଼ି ଯାଇପାରେ ନାହିଁ । ଘରର କିଛି ଦୂରରେ ପୂର୍ବ ବା ପଶ୍ଚିମ ପାଖ ବଡ଼ ରାସ୍ତାରେ ଗାଡ଼ି ରଖି ପଦବ୍ରଜରେ ଗୃହକୁ ଆସିବାକୁ ହୁଏ । ଠାକୁରଙ୍କ ଯିବା ପାଇଁ ଗୋଟିଏ ଗାଡ଼ି ପଶ୍ଚିମ ପାଖର ବଡ଼ ରାସ୍ତାରେ ଅପେକ୍ଷା କରୁଥିଲା । ଠାକୁର ସେ ଆଡ଼େ ଚାଲିବାକୁ ଲାଗିଲେ, ଭକ୍ତମାନେ ତାଙ୍କର ଅନୁଗମନ କରିବାକୁ ଲାଗିଲେ । କିନ୍ତୁ ଭଗବଦାନନ୍ଦରେ ସେଦିନ ଠାକୁର ଏପରି ଟଳମଳ ହେଉଥିଲେ ଯେ, ଏପଟେ ପାଦ ପକାଇବାକୁ ଯାଇ ସେପଟେ ପଡୁଛି । ଫଳରେ ବିନା ସାହାଯ୍ୟରେ ସେଇ କେତେ ପାଦ ଯାଇପାରିଲେ ନାହିଁ । ଦୁଇଜଣ ଭକ୍ତ ଦୁଇପଟେ ତାଙ୍କ ହାତ ଧରି ଧୀରେ ଧୀରେ ନେଇ ଯିବାକୁ ଲାଗିଲେ । ଗଳିମୁଣ୍ଡରେ କେତେଗୁଡ଼ିଏ ଲୋକ ଠିଆ ହୋଇଥିଲେ—ସେମାନେ ଠାକୁରଙ୍କ ଅବସ୍ଥା ବୁଝିବେ କିପରି ? ନିଜ ନିଜ ମଧ୍ୟରେ କୁହା କୁହି ହେବାକୁ ଲାଗିଲେ, 'ଓଃ ! ଲୋକଟା କି ମାତାଲ ହୋଇଛି ହେ !' କଥାଗୁଡ଼ିକ ସେମାନେ ଧୀର ସ୍ୱରରେ କହିଥିଲେ ମଧ୍ୟ ଆମେ ଶୁଣିପାରିଥିଲୁ । ଶୁଣି ନ ହସି ରହିପାରିଲୁ ନାହିଁ; ଆଉ ମନେ ମନେ କହିଲୁ, 'ତାହା ଠିକ୍' ।

---

୧. ଗଳିର ନାମ ମଧୁ ରାୟ ଗଳି ।

### ଉକ୍ତ ବିଷୟରେ ଦ୍ୱିତୀୟ ଦୃଷ୍ଟାନ୍ତ— ଦକ୍ଷିଣେଶ୍ୱରରେ ଶ୍ରୀଶ୍ରୀମା'ଙ୍କ ସମ୍ମୁଖରେ :

ଦକ୍ଷିଣେଶ୍ୱରରେ ଦିନେ ଦିନବେଳା ଆମର ପରମାରାଧ୍ୟା ଶ୍ରୀଶ୍ରୀମାତାଠାକୁରାଣୀଙ୍କୁ ପାନ ଭାଙ୍ଗିବାକୁ ଓ ତାଙ୍କର ବିଛଣାପତ୍ର ଝଡ଼ା ଝଡ଼ି କରି ଘରଟିକୁ ଝାଡୁ ଲଗାଇ ପରିଷ୍କାର କରିବାକୁ କହି ଠାକୁର କାଳୀମନ୍ଦିରକୁ ଶ୍ରୀଶ୍ରୀଜଗନ୍ମାତାଙ୍କୁ ଦର୍ଶନ କରିବାକୁ ଗଲେ । ସେ କ୍ଷିପ୍ରହସ୍ତରେ ଏସବୁ କାମ ପ୍ରାୟ ଶେଷ କରିଛନ୍ତି, ଏତିକିବେଳେ ଯେପରି ପୂରା ମାତାଲ ଠାକୁର ମନ୍ଦିରରୁ ଫେରିଲେ ! ଅବସ୍ଥାରେ ଚକ୍ଷୁ ରକ୍ତବର୍ଣ୍ଣ, ଏଠି ପାଦ ପକାଇବାକୁ ଯାଇ ସେଠି ପଡୁଛି, କଥା ଅସ୍ପଷ୍ଟ ଅବ୍ୟକ୍ତ ହୋଇଯାଇଛି ! ଘର ଭିତରେ ପ୍ରବେଶ କରି ସେପରି ଟଳି ଟଳି ଶ୍ରୀଶ୍ରୀମା'ଙ୍କ ନିକଟରେ ଆସି ପହଞ୍ଚିଲେ । ଶ୍ରୀଶ୍ରୀମା' ସେତେବେଳେ ମନଦେଇ ଗୃହକାର୍ଯ୍ୟ କରୁଥିଲେ, ଠାକୁର ତାଙ୍କ ନିକଟକୁ ସେହି ଭାବରେ ଆସିବାଟା ଜାଣିପାରି ନ ଥିଲେ । ଏପରି ସମୟରେ ଠାକୁର ମାତାଲଙ୍କ ପରି ମା'ଙ୍କର ଶ୍ରୀଅଙ୍ଗ ଠେଲି ତାଙ୍କୁ ସମ୍ବୋଧନ କରି କହିଲେ, ''ଆଗୋ, ମୁଁ କ'ଣ ମଦ ଖାଇଛି ?'' ଶ୍ରୀମା' ଟିକିଏ ପଛେଇ ଯାଇ ସହସା ଠାକୁରଙ୍କର ସେପରି ଭାବାବସ୍ଥା ଦେଖି ଅତ୍ୟନ୍ତ ସ୍ତମ୍ଭିତ ହେଲେ ! କହିଲେ— 'ନା, ନା, ମଦ କାହିଁକି ଖାଇବ ?' ଠାକୁର ପଚାରିଲେ, ତେବେ କାହିଁକି ଟଳ ଟଳ ହେଉଛି ? କଥା କହିପାରୁନି କାହିଁକି ? ମୁଁ କ'ଣ ମାତାଲ ? ଶ୍ରୀଶ୍ରୀ ମା କହିଲେ, ନା, ନା, ତୁମେ ମଦ କାହିଁକି ଖାଇବ ? ତୁମେ ମା କାଳୀଙ୍କର ଭାବାମୃତ ଖାଇଛ । 'ଠିକ୍ କହିଛ' କହି ଠାକୁର ଆନନ୍ଦ ପ୍ରକାଶ କଲେ ।

### ଉକ୍ତ ବିଷୟରେ ତୃତୀୟ ଦୃଷ୍ଟାନ୍ତ—କାଶୀପୁରରେ ମାତାଲ ଦେଖି :

କଲିକତାର ଭକ୍ତମାନଙ୍କର ଠାକୁରଙ୍କ ନିକଟକୁ ଆଗମନ ଓ କୃପାଲାଭ ପରଠାରୁ ଠାକୁର ପ୍ରାୟ ପ୍ରତି ସପ୍ତାହରେ ଥରେ ବା ଦୁଇଥର କଲିକତାର କୌଣସି ନା କୌଣସି ଭକ୍ତଙ୍କ ଗୃହକୁ ଗମନାଗମନ କରୁଥିଲେ । ନିୟମିତ ସମୟରେ କେହି ଯଦି ତାଙ୍କ ପାଖକୁ ଆସି ନ ପାରିଲେ ଏବଂ ଅନ୍ୟ କାହାଠାରୁ ତାହାର କୁଶଳ ସମ୍ବାଦ ଜାଣି ନ ପାରିଲେ କୃପାମୟ ଠାକୁର ସ୍ୱୟଂ ତାଙ୍କୁ ଦେଖିବାକୁ ଯାଉଥିଲେ । ପୁଣି ନିୟମିତ ସମୟରେ ଆସିଲେ ମଧ୍ୟ ବେଳେ ବେଳେ କାହାକୁ କାହାକୁ ଦେଖିବା ପାଇଁ କିଛି ଦିନ ଭିତରେ ହିଁ ତାଙ୍କ ମନ ଚଞ୍ଚଳ ହୋଇଉଠୁଥିଲା । ସେତେବେଳେ ସେ ତାଙ୍କୁ ଦେଖିବାକୁ ଦୌଡୁଥିଲେ । କିନ୍ତୁ ସର୍ବଦା ଦେଖାଯାଉଥିଲା, ତାଙ୍କର ଏହିପରି ଶୁଭାଗମନ ସେହି ସେହି ଭକ୍ତଙ୍କର କଲ୍ୟାଣ ପାଇଁ ହିଁ ହେଉଥିଲା । ସେଥିରେ ତାଙ୍କର ନିଜର ବିନ୍ଦୁମାତ୍ର ସ୍ୱାର୍ଥ ରହୁ ନ ଥିଲା । ବରାହନଗରର ବେଣୀ ସାହାଙ୍କ ନିକଟରେ କେତେଗୁଡ଼ିଏ ଭଲ ଭଡ଼ାଟିଆ ଗାଡ଼ି ଥିଲା । ଠାକୁର ପ୍ରାୟ କଲିକତାକୁ

ଆସୁଥିବାରୁ, ବେଣୀଙ୍କ ସହିତ ବନ୍ଦୋବସ୍ତ ଥିଲା ଯେ ଠାକୁର କହି ପଠାଇଲେ ହିଁ ସେ ଦକ୍ଷିଣେଶ୍ୱରକୁ ଗାଡ଼ି ପଠାଇବେ ଏବଂ କଲିକତାରୁ ଫେରିବାକୁ ଯେତେ ରାତି ହେଲେ ମଧ୍ୟ ଗୋଳମାଳ କରିବେ ନାହିଁ; ଅଧିକ ସମୟ ପାଇଁ ନିୟମିତ ହାରରେ ଅଧିକ ଭଡ଼ା ପାଇବେ । ପ୍ରଥମେ ମଥୁରବାବୁ, ପରେ ପାନିହାଟିର ମଣି ସେନ, ପରେ ଶମ୍ଭୁ ମଲ୍ଲିକ ଏବଂ ତାପରେ କଲିକତା ସିନ୍ଦୁରିଆପଟିର ଶ୍ରୀଯୁକ୍ତ ଜୟଗୋପାଳ ସେନ୍ ପ୍ରଭୃତି ଠାକୁରଙ୍କର ସେହି ସବୁ ଗାଡ଼ିଭଡ଼ା ଖର୍ଚ୍ଚ ଯୋଗାଉଥିଲେ । ତେବେ ଯାହାଙ୍କ ଘରକୁ ଯାଉଥିଲେ, ସମ୍ଭବ ହେଲେ ସେଦିନର ଗାଡ଼ିଭଡ଼ା ସିଏ ହିଁ ଦେଉଥିଲେ ।

ଦିନେ ଠାକୁର ସେହିପରି କଲିକତା ଯଦୁ ମଲ୍ଲିକଙ୍କ ଘରକୁ ଯିବେ । ମଲ୍ଲିକ ମହାଶୟଙ୍କ ମାତାଠାକୁରାଣୀ ଠାକୁରଙ୍କୁ ବିଶେଷ ଭକ୍ତି କରୁଥିଲେ । ଅନେକ ଦିନ ହେବ ତାଙ୍କର କୌଣସି ସମ୍ବାଦ ମିଳି ନାହିଁ ତେଣୁ ତାଙ୍କୁ ଦେଖି ଆସିବେ । ଠାକୁରଙ୍କର ଆହାରାଦି ସରିଛି ଓ ଗାଡ଼ି ଆସିଯାଇଛି । ଏହି ସମୟରେ ଆମର ଜଣେ ବନ୍ଧୁ ଅ— କଲିକତାରୁ ନୌକାରେ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଆସି ପହଞ୍ଚିଲେ । ଠାକୁର ତାଙ୍କୁ ଦେଖି କୁଶଳ ପ୍ରଶ୍ନାଦି ପଚାରି କହିଲେ, "ବେଶ୍ ହୋଇଛି, ତୁମେ ଆସିଛ । ଆଜି ମୁଁ ଯଦୁ ମଲ୍ଲିକଙ୍କ ଘରକୁ ଯାଉଛି; ତେଣୁ ତୁମ ଘରକୁ ଯାଇ ଗି—କୁ ଦେଖି ଆସିବି; ସେ କାର୍ଯ୍ୟ ବ୍ୟସ୍ତତାରେ ଅନେକ ଦିନ ଏଠାକୁ ଆସିପାରି ନାହିଁ । ଚାଲ, ସାଙ୍ଗ ହୋଇ ଯିବା ।" ଅ— ସମ୍ମତି ପ୍ରଦାନ କଲେ । ଅ—ଙ୍କର ସେତେବେଳେ ଠାକୁରଙ୍କ ସହିତ ନୂଆ ପରିଚୟ, ମାତ୍ର କେତେଥର ସେ ଠାକୁରଙ୍କୁ ଭିନ୍ନ ଭିନ୍ନ ସ୍ଥାନରେ ଦେଖିଛନ୍ତି । ଏହି ଅଦ୍ଭୁତ ଠାକୁରଙ୍କର, ଆମେ ଯାହାକୁ ତୁଚ୍ଛ, ଘୃଣ୍ୟ, ଅସ୍ପୃଶ୍ୟ ବା ଦର୍ଶନ ଅଯୋଗ୍ୟ ବସ୍ତୁ ଓ ବ୍ୟକ୍ତି କହୁ, ସେସମସ୍ତ ଦେଖି ମଧ୍ୟ ଯେ ଈଶ୍ୱରଙ୍କ ଉଦ୍ଦୀପନାରେ ଭାବସମାଧି ଯେଉଁଠି ସେଇଠି ସମୟ ଅସମୟରେ ଉପସ୍ଥିତ ହୋଇଥାଏ, ଅ— ସେତେବେଳେ ମଧ୍ୟ ତାହା ବିଶେଷ ଜାଣିପାରି ନ ଥିଲେ ।

ଏଥର ଠାକୁର ଗାଡ଼ିରେ ବସିଲେ । ଯୁବକ ଭକ୍ତ ଲାଟୁ, ଯିଏ ଏବେ ସ୍ୱାମୀ ଅଦ୍ଭୁତାନନ୍ଦ ନାମରେ ସମସ୍ତଙ୍କ ପାଖରେ ପରିଚିତ, ସେ ଠାକୁରଙ୍କ ବଟୁଆ, ଗାମୁଛା ଆଦି ଆବଶ୍ୟକ ଦ୍ରବ୍ୟ ନେଇ ଠାକୁରଙ୍କ ପଛେ ପଛେ ଯାଇ ଗାଡ଼ିରେ ବସିଲେ; ଆମର ବନ୍ଧୁ ଅ— ମଧ୍ୟ ଗାଡ଼ିରେ ବସିଲେ; ଗାଡ଼ିରେ ଗୋଟିଏ ଦିଗରେ ଠାକୁର ବସିଲେ ଓ ଅନ୍ୟଦିଗରେ ଲାଟୁ ମହାରାଜ ଓ ଅ— ବସିଲେ । ଗାଡ଼ି ଛାଡ଼ିଲା ଏବଂ କିଛି ସମୟ ପରେ ବରାହନଗର ବଜାର ଛାଡ଼ି ମତିଝିଲର ପାଖଦେଇ ଯିବାକୁ ଲାଗିଲା । ରାସ୍ତାରେ ବିଶେଷ କିଛି ଘଟଣା ଘଟିଲା ନାହିଁ । ଠାକୁର ରାସ୍ତାରେ ଏଇଟା ସେଇଟା ଦେଖି କେବେକେବେ ବାଳକ ପରି ଲାଟୁ ବା ଅ—ଙ୍କୁ ପଚାରିବାକୁ ଲାଗିଲେ; କିମ୍ବା ଏକଥା ସେକଥା ଉଠାଇ ସାଧାରଣ

ସହଜ ଅବସ୍ଥାରେ ଯେପରି ହାସ୍ୟ-ପରିହାସାଦି କରିଥାଆନ୍ତି, ସେପରି କରୁ କରୁ ଚାଲିଲେ ।

ମତିଝିଲର ଦକ୍ଷିଣରେ ଗୋଟିଏ ଛୋଟ ବଜାର ଥିଲା; ତା'ର ଦକ୍ଷିଣକୁ ଗୋଟିଏ ମଦ ଦୋକାନ, ଗୋଟିଏ ଡାକ୍ତରଖାନା ଓ କେତୋଟି ଖୋଲା ଘରେ ଚାଉଳ ଗୋଦାମ, ଘୋଡ଼ାଶାଳ ଇତ୍ୟାଦି ଥିଲା । ସେଗୁଡ଼ିକର ଦକ୍ଷିଣରେ ଏଠାକାର ପ୍ରାଚୀନ ସୁପ୍ରସିଦ୍ଧ ଦେବୀସ୍ଥାନ ସର୍ବମଙ୍ଗଳା ଓ ଚିତ୍ରେଶ୍ୱରୀ ଦେବୀଙ୍କ ମନ୍ଦିରକୁ ଯିବା ପାଇଁ ପ୍ରଶସ୍ତ ପଥ ଭାଗୀରଥୀର କୂଳ ପର୍ଯ୍ୟନ୍ତ ଲମ୍ବିଛି । ଏହି ରାସ୍ତାକୁ ଦକ୍ଷିଣରେ ରଖି କଲିକତାକୁ ଯିବାକୁ ହୋଇଥାଏ ।

ମଦ ଦୋକାନରେ ଅନେକ ମଦୁଆ ସେତେବେଳେ ବସି ସୁରାପାନ ଓ ଗୋଳମାଳ, ହାସ୍ୟ-ପରିହାସ କରୁଥିଲେ । ସେମାନଙ୍କ ମଧ୍ୟରେ କେହି କେହି ପୁଣି ଆନନ୍ଦରେ ଗୀତ ଗାଉଥିଲେ; ପୁଣି କେହି କେହି ଅଙ୍ଗଭଙ୍ଗୀ କରି ନୃତ୍ୟ କରୁଥିଲେ । ଦୋକାନର ସ୍ୱତ୍ୱାଧିକାରୀ ନିଜ କର୍ମଚାରୀଙ୍କୁ ସେମାନଙ୍କୁ ସୁରା ବିକ୍ରୟ କରିବାରେ ଲଗାଇ ନିଜେ ଦୋକାନର ଦୁଆରେ ଅନ୍ୟମନସ୍କ ହୋଇ ଛିଡ଼ା ହୋଇଥିଲା । ତା'ର କପାଳରେ ବଡ଼ ଏକ ସିନ୍ଦୁରର ଟୋପା ଥିଲା । ଏପରି ସମୟରେ ଠାକୁରଙ୍କ ଗାଡ଼ି ଦୋକାନ ସାମନା ଦେଇ ଯିବାକୁ ଲାଗିଲା । ଦୋକାନି ବୋଧେ ଠାକୁରଙ୍କ ବିଷୟ ଜାଣିଥିଲା; କାରଣ, ଠାକୁରଙ୍କୁ ଦେଖିବା ମାତ୍ରେ ହାତ ଯୋଡ଼ି ପ୍ରଣାମ କଲା ।

ଗୋଳମାଳରେ ଠାକୁରଙ୍କ ମନ ଦୋକାନ ଆଡ଼େ ଆକୃଷ୍ଟ ହେଲା ଏବଂ ମଦୁଆମାନଙ୍କର ସେପରି ଆନନ୍ଦ-ପ୍ରକାଶ ତାଙ୍କ ଆଖିରେ ପଡ଼ିଲା । କାରଣାନନ୍ଦ ଦେଖି ହିଁ ଠାକୁରଙ୍କର ମନରେ ଜଗତ୍‌କାରଣର ଆନନ୍ଦସ୍ୱରୂପର ଉଦ୍ଦୀପନା ହେଲା !—ଖାଲି ଉଦ୍ଦୀପନା ନୁହେଁ, ସେହି ଅବସ୍ଥାର ଅନୁଭୂତି ଆସି ଠାକୁର ଏକାବେଳକେ ନିଶାରେ ବିଭୋର ହୋଇଗଲେ, କଥା ସ୍ପଷ୍ଟ ହେଉ ନ ଥିଲା । କେବଳ ସେତିକି ନୁହେଁ, ହଠାତ୍ ନିଜ ଶରୀରର କିଛି ଅଂଶ ଓ ଡାହାଣ ଗୋଡ଼ ଗାଡ଼ିର ପାହାଚରେ ରଖି ଠିଆ ହୋଇ ମାତାଲଙ୍କ ପରି ସେମାନଙ୍କର ଆନନ୍ଦରେ ଆନନ୍ଦ ପ୍ରକାଶ କରି କରି ହାତ ହଲାଇ ଅଙ୍ଗଭଙ୍ଗୀ କରି ଉଚ୍ଚସ୍ୱରରେ କହିବାକୁ ଲାଗିଲେ—"ବେଶ୍ ହେଉଛି, ଖୁବ୍ ହେଉଛି, ବାଃ, ବାଃ, ବାଃ, ।"

ଅ—କହନ୍ତି, "ଠାକୁରଙ୍କର ଯେ ହଠାତ୍ ଏପରି ଭାବ ହେବ, ତାର କୌଣସି ଆଭାସ ଏହା ପୂର୍ବରୁ ଆମେ ପାଇ ନାହୁଁ; ବେଶ୍ ସହଜ ମଣିଷ ପରି କଥାବାର୍ତ୍ତା କରୁଥିଲେ । ମାତାଲମାନଙ୍କୁ ଦେଖି ହିଁ ହଠାତ୍ ଏପରି ଅବସ୍ଥା ହେଲା ! ମୁଁ ତ ଭୟରେ ଥରିଲିଣି; ତୁରନ୍ତ ତାଙ୍କୁ ଧରି ଗାଡ଼ି ଭିତରକୁ ଟାଣି ଆଣି ବସାଇବାକୁ ହାତ ବଢ଼ାଇଛି, ଏହି ସମୟରେ ଲାଟୁ ବାଧା ଦେଇ କହିଲେ, 'କିଛି କରିବା ଦରକାର ନାହିଁ, ସେ ଆପେ ନିଜକୁ ସମ୍ଭାଳି ନେବେ, ପଡ଼ିଯିବେ ନାହିଁ ।'

ତେଣୁ ଚୁପ୍ ରହିଲି, କିନ୍ତୁ ଛାତିଟା ଧଡ଼ପଡ଼ ହେବାକୁ ଲାଗିଲା; ପୁଣି ଭାବିଲି, ଏହି ପାଗଳା ଠାକୁରଙ୍କ ସହିତ ଗୋଟିଏ ଗାଡ଼ିରେ ଆସି କେଡ଼େ ଅନ୍ୟାୟ କାମ କରିଛି ! ଆଉ କେବେ ଆସିବି ନାହିଁ । ଅବଶ୍ୟ ଏତେ କଥା କହିବାକୁ ଯେଉଁ ସମୟ ଲାଗିଲା, ତାଠାରୁ ଅନେକ କମ୍ ସମୟ ଭିତରେ ହିଁ ସେସବୁ ଘଟଣା ଘଟିଗଲା ଏବଂ ଗାଡ଼ି ମଧ୍ୟ ସେହି ଦୋକାନ ପାର ହୋଇ ଚାଲିଗଲା । ସେତେବେଳେ ଠାକୁର ମଧ୍ୟ ପୂର୍ବପରି ଗାଡ଼ି ଭିତରେ ସ୍ଥିର ହୋଇ ବସିଲେ ଏବଂ ସର୍ବମଙ୍ଗଳାଦେବୀଙ୍କର ମନ୍ଦିର ଦେଖି କହିଲେ, 'ସର୍ବମଙ୍ଗଳା ବଡ଼ ଜାଗ୍ରତା ଦେବୀ, ପ୍ରଣାମ କର ।' ଏହା କହି ନିଜେ ପ୍ରଣାମ କଲେ, ଆମେ ମଧ୍ୟ ତାଙ୍କୁ ଦେଖି ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲୁ । ପ୍ରଣାମ କରି ଠାକୁରଙ୍କ ଆଡ଼େ ଅନାଇଲା ବେଳକୁ ଦେଖିଲି— ଯେମିତି ଥିଲେ ସେମିତି ଅଛନ୍ତି, ବେଶ୍ ପ୍ରକୃତିସ୍ଥ । ମୃଦୁ ହାସ୍ୟ କରୁଛନ୍ତି । ମୋର କିନ୍ତୁ 'ଏଇନେ ପଡ଼ିଯାଇ ଗୋଟେ ଦୁର୍ଘଟଣା ହୋଇଥାଆନ୍ତା' ଭାବି ସେହି ଛାତି ଧଡ଼ ଧଡ଼ ବହୁ ସମୟ ପର୍ଯ୍ୟନ୍ତ ଛାଡ଼ିଲା ନାହିଁ !

''ଏହାପରେ ଗାଡ଼ି ଆସି ଆମ ଘର ସମ୍ମୁଖରେ ପହଞ୍ଚିଲେ, ମୋତେ କହିଲେ, 'ଗି—ଘରେ ଅଛି କି ନାହିଁ ଯାଇ ଦେଖିଆସ ।' ମୁଁ ଯାଇ ଦେଖି ଆସି କହିଲି, 'ନା' । ସେତେବେଳେ କହିଲେ, 'ତା ହେଲେ ଗି—ର ସହିତ ଦେଖା ହେଲା ନାହିଁ, ଭାବିଥିଲି, ଆଜିର ଅଧିକ ଭଡ଼ାଟା ଦେବାକୁ ତାକୁ କହିବି । ଯାହା ହେଉ ତୁମ ସହିତ ଜଣା ଶୁଣା ହୋଇଛି ବାବୁ, ତୁମେ କଣ ଗୋଟିଏ ଟଙ୍କା ଦେବ ? କାହିଁକି ଜାଣିଛ, ଯଦୁ ମଲ୍ଲିକ କୃପଣ ଲୋକ; ସେ ଯାହା ବରାଦ ଦୁଇ-ଟଙ୍କା ଚାରିଅଣାରୁ ବେଶି ଗାଡ଼ିଭଡ଼ା କେବେ ଦେବ ନାହିଁ । ମୋର କିନ୍ତୁ ବାବୁ ୟାକୁ-ତାକୁ ଦେଖି ଫେରିବାରେ କେତେ ରାତି ହେବ କିଏ ଜାଣେ ? ବେଶି ଡେରି ହେଲେ ଗାଡ଼ିବାଲା 'ଚାଲ, ଚାଲ' କରି ବିରକ୍ତ କରିବ । ତେଣୁ ବେଣୀ ସହିତ ବନ୍ଦୋବସ୍ତ ହୋଇଛି ଫେରିବାକୁ ଯେତେ ରାତି ହେଲେ ମଧ୍ୟ ତିନିଟଙ୍କା ଚାରିଅଣା ଦେଲେ ଗାଡ଼ିଚାଳକ ଆଉ ଗଣ୍ଡଗୋଳ କରିବ ନାହିଁ । ଯଦୁ ଦୁଇଟଙ୍କା ଚାରିଅଣା ଦେବ, ଆଉ ତୁମେ ଏକଟଙ୍କା ଦେଲେ ଆଜି ପାଇଁ ଆଉ କିଛି ଅସୁବିଧା ହେବ ନାହିଁ; ଏଥିପାଇଁ କହିଲି ।' ମୁଁ ଏକଥା ଶୁଣି ଏକ ଟଙ୍କା କାଢ଼ି ଲାଟୁଙ୍କ ହାତରେ ଦେଲି ଓ ଠାକୁରଙ୍କୁ ପ୍ରଣାମ କଲି । ଠାକୁର ମଧ୍ୟ ଯଦୁ ମଲ୍ଲିକଙ୍କୁ ଦେଖିବାକୁ ଗଲେ ।''

ଠାକୁରଙ୍କର ଏହିପରି ବାହ୍ୟ ଦୃଷ୍ଟିରେ ମାତାଲଙ୍କ ପରି ଅବସ୍ଥା ପ୍ରତିଦିନ ଯେତେବେଳେ ସେତେବେଳେ ଆସି ଉପସ୍ଥିତ ହେଉଥିଲା । ତାହାର କେତୋଟି କଥା ବା ଆମେ ଲିପିବଦ୍ଧ କରି ପାଠକଙ୍କୁ କହିପାରିବୁ ।

## ଦକ୍ଷିଣେଶ୍ୱରକୁ ଆଗତ ସମସ୍ତ ସମ୍ପ୍ରଦାୟର ସାଧୁମାନଙ୍କର ଠାକୁରଙ୍କ ନିକଟରୁ ଧର୍ମ ବିଷୟରେ ସହାୟତା ଲାଭ :

ରାସମଣିଙ୍କର କାଳୀମନ୍ଦିରରେ ପୂର୍ବୋକ୍ତ ପ୍ରକାରେ ଯେତେ ସାଧୁ-ସାଧକ ଆସୁଥିଲେ, ସେମାନଙ୍କର କଥା ଠାକୁର ଅନେକ ସମୟରେ ଅନେକଙ୍କ ନିକଟରେ କହୁଥିଲେ; କେବଳ ଯେ ଆମମାନଙ୍କ ନିକଟରେ କହୁଥିଲେ ତାହା ନୁହେଁ । ସେହି ସମସ୍ତ ବିଷୟର ସାକ୍ଷ୍ୟ ଦେବାକୁ ଅନେକ ଲୋକ ଏବେ ବି ଜୀବିତ ଅଛନ୍ତି । ଆମେ ସେତେବେଳେ ସେଣ୍ଟ ଜେଭିୟର କଲେଜରେ ପାଠ ପଢୁଥିଲୁ । ସପ୍ତାହରେ ଦୁଇଦିନ ଗୁରୁବାର ଓ ରବିବାର କଲେଜ ବନ୍ଦ ରହୁଥିଲା । ଶନି ଓ ରବିବାରରେ ଠାକୁରଙ୍କ ନିକଟରେ ଅନେକ ଭକ୍ତଙ୍କର ଭିଡ଼ ହେଉଥିଲା ବୋଲି ଆମେ ଗୁରୁବାର ମଧ୍ୟ ତାଙ୍କ ନିକଟକୁ ଯାଉଥିଲୁ ଏବଂ ସେଥିରେ ତାଙ୍କର ଜୀବନର ନାନା କଥା ତାଙ୍କର ଶ୍ରୀମୁଖରୁ ଶୁଣିବାରେ ବେଶ୍ ସୁବିଧା ହେଉଥିଲା । ସେ ସମସ୍ତ କଥା ଶୁଣି ଆମେ ବେଶ୍ ବୁଝିପାରିଛୁ ଯେ, ଭୈରବୀ ବ୍ରାହ୍ମଣୀ, ତୋତାପୁରୀ, ମୁସଲମାନ ଗୋବିନ୍ଦ—ଯିଏ କୈବର୍ତ୍ତ୍ୟ ଜାତିର ଥିଲେ[୧], ପୂର୍ଣ୍ଣ ନିର୍ବିକଳ୍ପ ଭୂମିରେ ଛଅମାସ ରହିଥିବା ସମୟରେ ଜୋର କରି ଆହାର କରାଇ ଠାକୁରଙ୍କ ଶରୀରରକ୍ଷା କରିବା ପାଇଁ ଯେଉଁ ସାଧୁଟି ଦୈବପ୍ରେରିତ ହୋଇ କାଳୀମନ୍ଦିରକୁ ଆଗମନ କରିଥିଲେ ସେ ଏବଂ ସେହିପରି ଆହୁରି ଜଣେ ଦୁଇ-ଜଣଙ୍କ ବ୍ୟତୀତ ନାନା ସମ୍ପ୍ରଦାୟର ଅନ୍ୟ ଯେତେ ସାଧୁ-ସାଧକମାନେ ଆମେ ଯିବା ପୂର୍ବରୁ ଠାକୁରଙ୍କ ନିକଟକୁ ଦକ୍ଷିଣେଶ୍ୱର ଆସିଥିଲେ, ସେମାନେ ପ୍ରତ୍ୟେକେ ହିଁ ଠାକୁରଙ୍କର ଅଦ୍ଭୁତ ଅଲୌକିକ ଜୀବନାଲୋକର ସହାୟରେ ନିଜ ନିଜ ଧର୍ମଜୀବନରେ ନୂତନପ୍ରାଣ-ସଞ୍ଚାରଲାଭ ନିମିତ୍ତ ହିଁ ଆସିଥିଲେ, ଏବଂ ତାହା ଲାଭ କରି ସ୍ୱୟଂ କୃତାର୍ଥ ହୋଇ ସେହି ସମ୍ପ୍ରଦାୟଭୁକ୍ତ ଯଥାର୍ଥ ଧର୍ମପିପାସୁ ସାଧକ ସକଳଙ୍କୁ ସେହି ପଥ ଦେଇ କିପରି ଈଶ୍ୱରଲାଭ କରିବାକୁ ହେବ ତାହା ହିଁ ଦେଖାଇବାର ସୁଯୋଗ ଲାଭ କରିଥିଲେ । ସେମାନେ ଶିଖିବାକୁ ହିଁ ଆସିଥିଲେ ଏବଂ ଶିକ୍ଷା ପୂର୍ଣ୍ଣ କରି ଯିଏ ଯାହା ସ୍ଥାନକୁ ଚାଲି ଯାଇଥିଲେ । ଭୈରବୀ ବ୍ରାହ୍ମଣୀ ଓ ତୋତାପୁରୀ ପ୍ରଭୃତି ମଧ୍ୟ ବହୁଭାଗ୍ୟବଳରେ ଠାକୁରଙ୍କ ଧର୍ମଜୀବନର ସହାୟକ-ସ୍ୱରୂପ ଆଗମନ କରିଥିଲେ ମଧ୍ୟ ଏତେକାଳ ଧରି ସାଧନା କରି ମଧ୍ୟ ନିଜ ନିଜ ଧର୍ମଜୀବନରେ ଯେଉଁ ସମସ୍ତ ନିଗୂଢ଼ ଆଧ୍ୟାତ୍ମିକ ସତ୍ୟର ଉପଲବ୍ଧି କରିପାରୁ ନ ଥିଲେ, ଠାକୁରଙ୍କର ଅଲୌକିକ ଜୀବନ ଓ ଶକ୍ତିବଳରେ ସେସକଳ ସତ୍ୟ ପ୍ରତ୍ୟକ୍ଷ କରି ଧନ୍ୟ ହୋଇଥିଲେ ।

---

୧. ସାଧକଭାବ (୧୦ମ ସଂସ୍କରଣ) ଦ୍ରଷ୍ଟବ୍ୟ — ପ୍ର.

**ଠାକୁର ଯେଉଁ ଧର୍ମମତରେ ଯେତେବେଳେ ସିଦ୍ଧିଲାଭ କରୁଥିଲେ ସେତେବେଳେ ସେହି ସମ୍ପ୍ରଦାୟର ସାଧୁମାନେ ହିଁ ତାଙ୍କ ନିକଟକୁ ଆସୁଥିଲେ :**

ଆହୁରି ମଧ୍ୟ ଏହି ସମସ୍ତ ସାଧୁ ଓ ସାଧକମାନଙ୍କର ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟକୁ ଆଗମନର କ୍ରମ ବା ପାରମ୍ପର୍ଯ୍ୟ ଆଲୋଚନା କଲେ ଆଉ ଏକ ବିଶେଷ ସତ୍ୟର ଉପଲବ୍ଧି କରିବାକୁ ବିଳମ୍ବ ହୁଏ ନାହିଁ । ସେମାନଙ୍କର ସେହି ପ୍ରକାର ଆଗମନକ୍ରମର କଥା ଆଲୋଚନା କରିବାକୁ ସୁବିଧା ହେବ ବୋଲି ହିଁ ଆମେ ବର୍ତ୍ତମାନ ପ୍ରବନ୍ଧରେ ଠାକୁରଙ୍କର ଶ୍ରୀମୁଖରୁ ଯେପରି ଶୁଣିଥିଲୁ, ସେହି ଭାବରେ ଯେତେଦୂର ସମ୍ଭବ ତାଙ୍କର ନିଜର ଭାଷାରେ ସେ ଯେପରି ସେସବୁ କଥା ଆମକୁ କହିଥିଲେ, ସେପରି ସେସମସ୍ତ କଥା ପାଠକଙ୍କୁ କହିବା ପାଇଁ ଚେଷ୍ଟା କରିଛୁ । ଠାକୁରଙ୍କ ଶ୍ରୀମୁଖରୁ ଯାହା ଶୁଣିଛୁ, ସେଥିରୁ ବୁଝାଯାଏ ଯେ, ସେ ଗୋଟିଏ ଗୋଟିଏ ଭାବର ଉପାସନା ଓ ସାଧନାରେ ପ୍ରଯୁକ୍ତ ହୋଇ ଈଶ୍ୱରଙ୍କର ସେହି ସେହି ଭାବର ପ୍ରତ୍ୟକ୍ଷ ଉପଲ୍‌ବଧି ଯେମିତି କରୁଥିଲେ, ଠିକ୍ ସେତେବେଳେ ସେହି ସେହି ସମ୍ପ୍ରଦାୟର ଯଥାର୍ଥ ସାଧକମାନେ ସେହି ସମୟରେ ଦଳ ଦଳ ହୋଇ ତାଙ୍କ ନିକଟକୁ କିଛିକାଳ ପର୍ଯ୍ୟନ୍ତ ଆଗମନ କରୁଥିଲେ ଏବଂ ସେମାନଙ୍କ ସହିତ ଠାକୁରଙ୍କ ସେହି ସବୁ ଭାବର ଆଲୋଚନାରେ ସେତେବେଳେ ଦିନରାତି କଟିଯାଉଥିଲା । ରାମମନ୍ତ୍ରର ଉପାସନରେ ଯେତେବେଳେ ସେ ସିଦ୍ଧିଲାଭ କଲେ, ସେତେବେଳେ ଦଳ ଦଳ ହୋଇ ରାମାୟତପନ୍ଥୀ ସାଧୁମାନେ ତାଙ୍କ ନିକଟକୁ ଆସିବାକୁ ଲାଗିଲେ । ଗୌଡ଼ୀୟ ବୈଷ୍ଣବତନ୍ତ୍ରୋକ୍ତ ଶାନ୍ତ, ଦାସ୍ୟାଦି ଗୋଟିଏ ଗୋଟିଏ ଭାବରେ ଯେତେବେଳେ ସିଦ୍ଧିଲାଭ କଲେ, ସଙ୍ଗେ ସଙ୍ଗେ ସେହି ସେହି ଭାବର ସାଧକମାନଙ୍କର ଆଗମନ ହେବାକୁ ଲାଗିଲା । ଭୈରବୀ ବ୍ରାହ୍ମଣୀଙ୍କ ସହାୟରେ ଚଉଷଠି ପ୍ରକାର ତନ୍ତ୍ରୋକ୍ତ ସମସ୍ତ ସାଧନ ଯେତେବେଳେ ଶେଷ କଲେ ବା ଶକ୍ତିସାଧନାରେ ସିଦ୍ଧିଲାଭ କଲେ, ସେହି ସମୟର ବଙ୍ଗ ପ୍ରଦେଶର ଯାବତୀୟ ବିଶିଷ୍ଟ ତାନ୍ତ୍ରିକ ସାଧକମାନେ ତାଙ୍କ ନିକଟକୁ ଆଗମନ କରିବାକୁ ଲାଗିଲେ । ତୋତାପୁରୀଙ୍କ ସହାୟରେ ଅଦ୍ୱୈତମତର ବ୍ରହ୍ମ ଉପାସନା ଓ ଉପଲବ୍ଧିରେ ଯେତେବେଳେ ସିଦ୍ଧିଲାଭ କଲେ, ସେତେବେଳେ ପରମହଂସ ସମ୍ପ୍ରଦାୟର ବିଶିଷ୍ଟ ସାଧକମାନେ ତାଙ୍କ ନିକଟକୁ ଦଳଦଳ ହୋଇ ଆଗମନ କରିବାକୁ ଲାଗିଲେ ।

### ସମସ୍ତ ଅବତାରପୁରୁଷମାନଙ୍କର ସମାନ ଶକ୍ତି–ପ୍ରକାଶ ଦେଖାଯାଏ ନାହିଁ । କାରଣ ସେମାନଙ୍କ ମଧ୍ୟରୁ କେହି କୌଣସି ବିଶେଷ ଜାତିକୁ ଓ କେହି ବା ସମଗ୍ର ମାନବଜାତିକୁ ଧର୍ମଦାନ କରିବାକୁ ଆସିଥାଆନ୍ତି :

ଭିନ୍ନ ଭିନ୍ନ ସମ୍ପ୍ରଦାୟର ସାଧକକୂଳର ସେହି ଭାବରେ ସେହି ସେହି ସମୟରେ ଠାକୁରଙ୍କର ଦେବସଙ୍ଗ–ଲାଭ କରିବାର ଯେଉଁ ଏକ ବିଶେଷ ଗୂଢ଼ ଅର୍ଥ ଅଛି ତାହା ବାଳକର ମଧ୍ୟ ବୁଝିବାକୁ ଡେରି ହେବ ନାହିଁ । ଯୁଗାବତାରଙ୍କ ଶୁଭାଗମନରେ ଜଗତରେ ସବୁକାଳରେ ହିଁ ସେହି ପ୍ରକାର ହୋଇଆସିଛି ଏବଂ ପରେ ମଧ୍ୟ ହେବ । ସେମାନେ ଆଧ୍ୟାତ୍ମିକ ଜଗତର ଗୂଢ଼ ନିୟମାନୁସାରେ ଧର୍ମର ଗ୍ଲାନି ଦୂର କରିବା ପାଇଁ ବା ନିର୍ବାପିତପ୍ରାୟ ଧର୍ମାଲୋକକୁ ପୁନରୁଜ୍ଜୀବିତ କରିବା ପାଇଁ ଯୁଗେ ଯୁଗେ ଜନ୍ମଗ୍ରହଣ କରିଥାଆନ୍ତି । ତେବେ ସେମାନଙ୍କର ଜୀବନାଲୋଚନାରେ ସେମାନଙ୍କ ଭିତରେ ଅଳ୍ପାଧିକ ପରିମାଣରେ ଶକ୍ତିପ୍ରକାଶର ତାରତମ୍ୟ ଦେଖି ଏହା ସ୍ପଷ୍ଟ ବୁଝାଯାଏ ଯେ, ସେମାନଙ୍କ ମଧ୍ୟରୁ କେହି ବା କୌଣସି ପ୍ରଦେଶ–ବିଶେଷର ବା ଦୁଇ–ଚାରୋଟି ସମ୍ପ୍ରଦାୟ–ବିଶେଷର ଅଭାବ ମୋଚନ ନିମନ୍ତେ ଆଗମନ କରିଛନ୍ତି; ପୁଣି କେହି ବା ସମଗ୍ର ପୃଥିବୀର ଧର୍ମାଭାବ–ମୋଚନ ପାଇଁ ଶୁଭାଗମନ କରିଥାଆନ୍ତି । କିନ୍ତୁ ସବୁବେଳେ ଏହା ଦେଖାଯାଇଥାଏ ଯେ, ସେମାନେ ସେମାନଙ୍କର ପୂର୍ବବର୍ତ୍ତୀ ଋଷି, ଆଚାର୍ଯ୍ୟ ଓ ଅବତାରମାନଙ୍କ ଦ୍ୱାରା ଆବିଷ୍କୃତ ଓ ପ୍ରଚାରିତ ଆଧ୍ୟାତ୍ମିକ ମତଗୁଡ଼ିକର ମର୍ଯ୍ୟାଦା ସମ୍ୟକ୍ ରକ୍ଷା କରି, ସେସବୁକୁ ବଜାୟ ରଖି, ନିଜ ନିଜ ଆବିଷ୍କୃତ ଉପଲବ୍ଧି ଓ ମତର ପ୍ରଚାର କରିଥାଆନ୍ତି କାରଣ ସେମାନେ ସେମାନଙ୍କର ଦିବ୍ୟଯୋଗଶକ୍ତିବଳରେ ପୂର୍ବ ପୂର୍ବ କାଳର ଆଧ୍ୟାତ୍ମିକମତଗୁଡ଼ିକ ଭିତରେ ଏକ ପାରମ୍ପର୍ଯ୍ୟ ଓ ସମ୍ବନ୍ଧ ଦେଖିପାରି ଥାଆନ୍ତି । ଆମମାନଙ୍କର ବିଷୟ–ମଳିନ ଦୃଷ୍ଟି ସମ୍ମୁଖରେ ଭାବରାଜ୍ୟର ସେହି ଇତିହାସ, ସେସମ୍ବନ୍ଧ ସର୍ବଦା ଅପ୍ରକାଶିତ ରହିଥାଏ । ସେମାନେ ପୂର୍ବ ପୂର୍ବ ଧର୍ମମତ ସକଳକୁ 'ସୂତ୍ରେ ମଣିଗଣାଇବ' ଗୋଟିଏ ସୂତ୍ରରେ ଗୁନ୍ଥା ହୋଇଥିବା ମଣି ସଦୃଶ ଦେଖିବାକୁ ପାଇଥାଆନ୍ତି ଏବଂ ନିଜ ଧର୍ମୋପଲବ୍ଧି ସହାୟରେ ସେହି ମାଳାର ଅଙ୍ଗକୁ ହିଁ ସମ୍ପୂର୍ଣ୍ଣ କରିଯାଇଥାଆନ୍ତି ।

### ହିନ୍ଦୁ, ଇହୁଦୀ, ଖ୍ରୀଷ୍ଟିୟାନ ଓ ମୁସଲମାନ ଧର୍ମପ୍ରବର୍ତ୍ତକ ଅବତାରପୁରୁଷମାନଙ୍କର ଆଧ୍ୟାତ୍ମିକ ଶକ୍ତିପ୍ରକାଶ ସହିତ ଠାକୁରଙ୍କର ସେହି ବିଷୟରେ ତୁଳନା :

ବୈଦେଶିକ ଧର୍ମମତସମୂହର ଆଲୋଚନାରେ ଏବିଷୟଟି ଆମେ ବେଶ୍ ଭଲ ଭାବରେ ବୁଝିପାରିବା । ଦେଖନ୍ତୁ, ଇହୁଦି ଆଚାର୍ଯ୍ୟମାନେ ଯେଉଁ ସମସ୍ତ

ଧର୍ମବିଷୟକ ସତ୍ୟ ପ୍ରଚାର କରି ଯାଇଥିଲେ, ଈଶା ଆସି ସେସମସ୍ତ ବଜାୟ ରଖି ନିଜର ଉପଲବ୍ଧ ସତ୍ୟଗୁଡ଼ିକ ପ୍ରଚାର କଲେ । ପୁଣି କେତେ ଶତାବ୍ଦୀ ପରେ ମହମ୍ମଦ ଆସି ଇଶା-ପ୍ରଚାରିତ ମତସମସ୍ତ ବଜାୟ ରଖି ନିଜ ମତ ପ୍ରଚାର କଲେ । ଏଥିରୁ ଏପରି ବୁଝାଯାଏ ନାହିଁ ଯେ, ଇହୁଦି ଆଚାର୍ଯ୍ୟଗଣ ବା ଈଶା-ପ୍ରଚାରିତ ମତ ଅସମ୍ପୂର୍ଣ୍ଣ; କିମ୍ବା ସେହି ସେହି ମତାବଲମ୍ବନରେ ଚାଲି ସେମାନେ ପ୍ରତ୍ୟେକେ ଈଶ୍ୱରଙ୍କର ଯେଉଁ ଭାବର ଉପଲବ୍ଧି କରିଥିଲେ, ତାହା କରାଯାଇପାରିବ ନାହିଁ । ତାହା ନିଶ୍ଚୟ କରି ହୁଏ; ପୁଣି ମହମ୍ମଦଙ୍କ ପ୍ରଚାରିତ ମତ ଅବଲମ୍ବନରେ ଚାଲି ସେ ଯେଉଁ ଭାବରେ ଈଶ୍ୱର ଉପଲବ୍ଧି କରିଥିଲେ, ତା'ମଧ୍ୟ କରାଯାଇପାରିବ । ଆଧ୍ୟାତ୍ମିକ ଜଗତରେ ସର୍ବତ୍ର ଏହା ହିଁ ନିୟମ । ଭାରତୀୟ ଧର୍ମମତସକଳ ଭିତରେ ମଧ୍ୟ ସେହିପରି ଭାବ ବୁଝିବାକୁ ହେବ । ଭାରତର ବୈଦିକ ଋଷି, ପୁରାଣକାର ଏବଂ ତନ୍ତ୍ରକାର ଆଚାର୍ଯ୍ୟ ମହାପୁରୁଷମାନେ ଯେଉଁ ସବୁ ମତ ପ୍ରଚାର କରି ଯାଇଛନ୍ତି, ତାହା ମଧ୍ୟରେ ଯେଉଁଟି ଯେଉଁଟି ଠିକ୍ ଭାବରେ ଅବଲମ୍ବନ କରି ତୁମେ ଚାଲିବ, ସେହି ସେହି ପଥ ଦେଇ ହିଁ ଈଶ୍ୱରଙ୍କର ତତ୍ ତତ୍ ଭାବର ଉପଲବ୍ଧି କରିପାରିବ । ଠାକୁର ଏକାଦିକ୍ରମେ ସକଳ ସମ୍ପ୍ରଦାୟୋକ୍ତ ମତରେ ସାଧନା କରି ଏହା ହିଁ ଉପଲବ୍ଧି କରିଥିଲେ ଏବଂ ତାହା ହିଁ ଆମକୁ ଶିକ୍ଷା ଦେଇଛନ୍ତି ।

### ଠାକୁରଙ୍କ ନିକଟକୁ ସବୁ ସମ୍ପ୍ରଦାୟର ସାଧୁ-ସାଧକମାନଙ୍କର ଆଗମନର କାରଣ :

ଫୁଲ ଫୁଟିଲେ ହିଁ ଭ୍ରମର ଆସି ଜୁଟେ—ଆଧ୍ୟାତ୍ମିକ ଜଗତରେ ମଧ୍ୟ ଏହା ହିଁ ନିୟମ, ତାହା ଠାକୁରେ ଆମକୁ ବାରମ୍ବାର କହିଛନ୍ତି । ସେହି ନିୟମରେ ହିଁ, ଅବତାର ମହାପୁରୁଷମାନଙ୍କ ଜୀବନରେ ଯେତେବେଳେ ସିଦ୍ଧିଲାଭ ବା ଆଧ୍ୟାତ୍ମିକ ଜଗତର ସତ୍ୟୋପଲବ୍ଧି ହୁଏ, ତତ୍କ୍ଷଣାତ ତାହା ଜାଣିବା ଓ ଶିଖିବା ପାଇଁ ଧର୍ମପିପାସୁମାନଙ୍କର ସେମାନଙ୍କ ନିକଟକୁ ଆକୃଷ୍ଟ ହେବା ସର୍ବତ୍ର ଦେଖିବାକୁ ମିଳେ । ଠାକୁରଙ୍କ ନିକଟକୁ ଗୋଟିଏ ସମ୍ପ୍ରଦାୟର ସାଧକଗଣ ନ ଆସି ସମସ୍ତ ସମ୍ପ୍ରଦାୟର ସାଧକଗଣ ବହୁସଂଖ୍ୟାରେ ଆସିଥିଲେ ତାହାର କାରଣ—ସେ ତତ୍ତତ୍ ସମସ୍ତ ପଥ ଦେଇ ହିଁ ଅଗ୍ରସର ହୋଇ ସେହି ସେହି ଈଶ୍ୱରୀୟଭାବର ସମ୍ୟକ୍ ଉପଲବ୍ଧି କରିଥିଲେ ଏବଂ ସେହି ସେହି ପଥର ସମ୍ବାଦ ବିଶେଷଭାବରେ କହିପାରୁଥିଲେ । ତେବେ ସେହି ସକଳ ସାଧକମାନେ ସମସ୍ତେ ଯେ ନିଜ ନିଜ ମତରେ ସିଦ୍ଧିଲାଭ କରିଥିଲେ ଏବଂ ଠାକୁରଙ୍କୁ ଯୁଗାବତାର ବୋଲି ଧରି ପାରିଥିଲେ, ତାହା ନୁହେଁ; ସେମାନଙ୍କ ଭିତରେ ଯେଉଁମାନେ ବିଶିଷ୍ଟ ସେମାନେ ହିଁ ତାହା କରିବାକୁ ସମର୍ଥ ହୋଇଥିଲେ । କିନ୍ତୁ ପ୍ରତ୍ୟେକେ ହିଁ ଠାକୁରଙ୍କର ଦିବ୍ୟସଙ୍ଗ ଗୁଣରେ ନିଜ ନିଜ ପଥରେ ଅଧିକତର ଅଗ୍ରସର ହୋଇଥିଲେ ଏବଂ ସେହି ସେହି

ପଥ ଦେଇ ଚାଲିଲେ ଯେ ଗୋଟିଏ ସମୟରେ ଈଶ୍ୱର ଲାଭ ନିଶ୍ଚୟ କରିବେ, ଏହା ଧ୍ରୁବ ସତ୍ୟରୂପେ ବୁଝିପାରିଥିଲେ । ଏହା ଆଉ କହିବାକୁ ହେବ ନାହିଁ ଯେ, ନିଜ ନିଜ ପଥ ଉପରେ ସେହି ପ୍ରକାର ବିଶ୍ୱାସର ହାନି ହେବାରୁ ହିଁ ଯେ ଧର୍ମଗ୍ଲାନି ଉପସ୍ଥିତ ହୁଏ ଏବଂ ସାଧକ ନିଜ ଜୀବନରେ ଧର୍ମୋପଲବ୍ଧି କରିପାରେ ନାହିଁ ।

### ଦକ୍ଷିଣେଶ୍ୱରକୁ ଆଗତ ସାଧୁମାନଙ୍କର ସଙ୍ଗ-ଲାଭରେ ଠାକୁରଙ୍କ ଭିତରେ ଧର୍ମପ୍ରବୃତ୍ତି ଜାଗ୍ରତ ହୋଇ ଉଠିଥିଲା— ଏକଥା ସତ୍ୟ ନୁହେଁ :

ଆଜିକାଲି ଗୋଟିଏ କଥା ଉଠିଛି ଯେ, ଠାକୁର ଏଠାକୁ ଆଗତ ସାଧୁମାନଙ୍କ ନିକଟରୁ ହିଁ ଈଶ୍ୱର-ସାଧନାର ଉପାୟସବୁ ଜାଣି ସ୍ୱୟଂ ଉଗ୍ର ତପସ୍ୟାରେ ପ୍ରବୃତ୍ତ ହୋଇଥିଲେ ଏବଂ ତପସ୍ୟାର କଠୋରତାରେ ଏକ ସମୟରେ ସମ୍ପୂର୍ଣ୍ଣ ପାଗଳ ହୋଇଯାଇଥିଲେ । ତାଙ୍କର ମୁଣ୍ଡ ଖରାପ ହୋଇଯାଇଥିଲା ଏବଂ କୌଣସି ଭାବର ଆତିଶଯ୍ୟରେ ବାହ୍ୟଜ୍ଞାନ ଲୁପ୍ତ ହେବା ପରି ଏକ ଶାରୀରିକ ରୋଗ ମଧ୍ୟ ଚିରକାଳ ପାଇଁ ତାଙ୍କ ଶରୀରରେ ବଦ୍ଧମୂଳ ହୋଇଯାଇଥିଲା । ହେ ଭଗବାନ, ଏପରି ପଣ୍ଡିତ-ମୂର୍ଖର ଦଳ ମଧ୍ୟ ଆମ ଭିତରେ ଅଛନ୍ତି ! ଚିତ୍ତର ପୂର୍ଣ୍ଣ ଏକାଗ୍ରତା ସହାୟରେ ସମାଧି-ଭୂମିରେ ଆରୋହଣ କଲେ ହିଁ ଯେ ସାଧାରଣ ବାହ୍ୟଚୈତନ୍ୟର ଲୋପ ହୁଏ, ଏକଥା ଭାରତର ଋଷିଗଣ ବେଦ, ପୁରାଣ, ତନ୍ତ୍ରାଦି-ସହାୟରେ ଆମକୁ ଯୁଗ ଯୁଗ ଧରି ବୁଝାଇ ଆସିଲେ ଏବଂ ନିଜ ନିଜ ଜୀବନରେ ତାହା ଦେଖାଇଗଲେ । ସମାଧି-ଶାସ୍ତ୍ରର ପୂର୍ଣ୍ଣ ବାଖ୍ୟା—ଯାହାକି ପୃଥିବୀର କୌଣସି ଦେଶରେ କୌଣସି ଜାତି ମଧ୍ୟରେ ବିଦ୍ୟମାନ ନାହିଁ—ତାହା ସେମାନେ ଆମ ପାଇଁ ରଖିଯାଇଛନ୍ତି । ସଂସାରରେ ଏପର୍ଯ୍ୟନ୍ତ ଅବତାର ବୋଲି ସବୁ ଦେଶରେ ମାନବ ହୃଦୟର ଶ୍ରଦ୍ଧା ଯେତେ ମହାପୁରୁଷ ପାଉଛନ୍ତି ସେମାନେ ମଧ୍ୟ ନିଜ ନିଜ ଜୀବନରେ ପ୍ରତ୍ୟକ୍ଷ କରି ସେପ୍ରକାର ବାହ୍ୟଜ୍ଞାନଲୋପ ଯେ ଆଧ୍ୟାତ୍ମିକ ଉନ୍ନତି ସହିତ ଅବଶ୍ୟମ୍ଭାବୀ, ସେକଥା ଆମକୁ ବାରମ୍ବାର ବୁଝାଇ ଗଲେ, ତଥାପି ଯଦି ଆମେ ସେହି କଥା କହୁ ଏବଂ ସେପରି ଶୁଣୁ, ତେବେ ଆଉ ଆମର ଦଶା କ'ଣ ହେବ ? ହେ ପାଠକ, ତୁମେ ଯଦି ଉଚିତ ମନେ କରୁଛ ତେବେ ଏସମସ୍ତ ଅନ୍ତଃସାରଶୂନ୍ୟ କଥା ଶ୍ରଦ୍ଧାର ସହିତ ଶ୍ରବଣ କର; ତୁମର ଏବଂ ଯେଉଁମାନେ ଏପରି କହୁଛନ୍ତି ତାଙ୍କର ମଙ୍ଗଳ ହେଉ ! ଆମକୁ କିନ୍ତୁ ଏହି ଅଦ୍ଭୁତ ଦିବ୍ୟ ପାଗଳର ପଦପ୍ରାନ୍ତରେ ପଡ଼ି ରହିବାର ସ୍ୱାଧୀନତାଟିକୁ କୃପା କରି ପ୍ରଦାନ କର, ଏହା ହିଁ ତୁମମାନଙ୍କ ନିକଟରେ ଆମର ଆନ୍ତରିକ ଅନୁରୋଧ ଓ ଭିକ୍ଷା । କିନ୍ତୁ ଯାହା ହେଉ କୌଣସି ସ୍ଥିର ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ଭଲ କରି ଆଉ ଥରେ ବୁଝି ଦେଖ; ପ୍ରାଚୀନ ଉପନିଷଦକାର ଯେପରି କହିଯାଇଛନ୍ତି, ସେପରି ଅବସ୍ଥା ତୁମର ନ ହେଉ !—

ଅବିଦ୍ୟାୟାମନ୍ତରେ ବର୍ତ୍ତମାନାଃ ସ୍ୱୟଂ ଧୀରାଃ ପଣ୍ଡିତଂମନ୍ୟମାନାଃ ।
ଦନ୍ଦ୍ରମ୍ୟମାଣାଃ ପରିୟନ୍ତି ମୂଢ଼ା ଅନ୍ଧେନୈବ ନୀୟମାନା ଯଥାନ୍ଧାଃ ॥

[—ଅର୍ଥାତ୍ ଅବିଦ୍ୟା ଭିତରେ ରହିଥିବା ଲୋକ, ନିଜକୁ ନିଜେ ଖୁବ୍ ବୁଦ୍ଧିମାନ ମାନନ୍ତି ଏବଂ ନିଜକୁ ପଣ୍ଡିତ ମାନୁଥିବା ମୂଢ଼ ପୁରୁଷ, ଅନ୍ଧ ଦ୍ୱାରା ବାଟ ଦେଖାଇ ନିଆ ଯାଉଥିବା ଅନ୍ଧ ପରି ଅନେକ କୁଟିଳ ଗତିର ଇଚ୍ଛା କରି ବାଟବଣା ହୁଅନ୍ତି ।]

ଠାକୁରଙ୍କର ଭାବସମାଧିସମୂହକୁ ରୋଗବିଶେଷ ବୋଲି କହିବା କିଛି ନୂଆ କଥା ନୁହେଁ ! ତାଙ୍କର ଜୀବନ କାଳରେ, ପାଶ୍ଚାତ୍ୟଭାବରେ ଶିକ୍ଷିତ ଅନେକ ସେପରି କଥା କହୁଥିଲେ । ପରେ ଯେତେ ଦିନ ବିତିବାକୁ ଲାଗିଲା ଏବଂ ଏହି ଦିବ୍ୟ ପାଗଳଙ୍କର ଭବିଷ୍ୟତ୍‌ବାଣୀରୂପେ ଉଚ୍ଚାରିତ ପାଗଳାମିଗୁଡ଼ିକ ଯେତେ ପୂର୍ଣ୍ଣ ହେବାକୁ ଲାଗିଲା ଏବଂ ତାଙ୍କର ଅଦୃଷ୍ଟପୂର୍ବ ଭାବଗୁଡ଼ିକ ପୃଥିବୀର ସର୍ବତ୍ର ଜନସାଧାରଣ ଯେତେ ଆଗ୍ରହ ସହକାରେ ଗ୍ରହଣ କରିବାକୁ ଲାଗିଲେ, ସେତେ ହିଁ ଏସବୁ କଥାର ଆଉ ଜୋର ରହିଲା ନାହିଁ । ଚନ୍ଦ୍ର ଉପରକୁ ଧୂଳିନିକ୍ଷେପର ଯେଉଁ ଫଳ ହୁଏ ତାହା ହିଁ ହେଲା ଏବଂ ଲୋକେ ସେଇ ସକଳ ଭ୍ରାନ୍ତ ଉକ୍ତିର ସମ୍ୟକ୍ ପରିଚୟ ପାଇ ଠାକୁରଙ୍କ କଥା ହିଁ ସତ୍ୟ ଜାଣି ସ୍ଥିର ହୋଇରହିଲେ । ଏବେ ମଧ୍ୟ ତାହା ହିଁ ହେବ । କାରଣ ସତ୍ୟକୁ କେବେ ବି ଅଗ୍ନିପରି ବସ୍ତ୍ରରେ ଆବୃତ କରି ରଖାଯାଇପାରିବ ନାହିଁ । ଅତଏବ ସେହିବିଷୟରେ ଆମକୁ ଆଉ ବୁଝାଇବାର ଆବଶ୍ୟକତା ନାହିଁ । ଠାକୁର ନିଜେ ହିଁ ସେହି ସମ୍ବନ୍ଧରେ ଯେଉଁ ଗୋଟିଏ-ଦୁଇଟି କଥା କହିଥିଲେ, ତାହା ହିଁ କହି ଆମେ କ୍ଷାନ୍ତ ରହିବୁ ।

**ଠାକୁରଙ୍କର ସମାଧିରେ ବାହ୍ୟଜ୍ଞାନଲୋପ ହେବା ବ୍ୟାଧି ନୁହେଁ ।**
**ପ୍ରମାଣ—ଠାକୁର ଓ ଶିବନାଥ-ସମ୍ବାଦ :**

ସାଧାରଣ ବ୍ରାହ୍ମସମାଜର ଆଚାର୍ଯ୍ୟମାନଙ୍କ ମଧ୍ୟରେ ଅନ୍ୟତମ, ଶ୍ରଦ୍ଧାସ୍ପଦ ଶିବନାଥ ଶାସ୍ତ୍ରୀ ମହାଶୟ ଠାକୁରଙ୍କର ଭାବସମାଧି ସ୍ନାୟୁବିକାର-ପ୍ରସୂତ ରୋଗ-ବିଶେଷ (hysteria or epileptic fits) ବୋଲି ଆମମାନଙ୍କ ମଧ୍ୟରୁ କାହା କାହା ନିକଟରେ କହୁଥିଲେ ଏବଂ ତାସହିତ ଏପରି ମତ ମଧ୍ୟ ପ୍ରକାଶ କରୁଥିଲେ ଯେ, ସେହି ସମୟରେ ଠାକୁର, ଇତରସାଧାରଣ ସେହି ରୋଗଗ୍ରସ୍ତ ହୋଇ ଯେପରି ଅଜ୍ଞାନ ଅଚୈତନ୍ୟ ହୋଇପଡ଼ନ୍ତି, ସେପରି ହୋଇଯାଆନ୍ତି ! କ୍ରମେ ସେକଥା ଠାକୁରଙ୍କ କାନରେ ପଡ଼ିଲା । ଶାସ୍ତ୍ରୀ ମହାଶୟ ବହୁ ପୂର୍ବରୁ ଠାକୁରଙ୍କ ପାଖକୁ ମଝିରେ ମଝିରେ ଯିବା ଆସିବା କରୁଥିଲେ । ଦିନେ ସେ ଯେତେବେଳେ ଦକ୍ଷିଣେଶ୍ୱରରେ ଅବସ୍ଥାନ କରୁଥିଲେ, ସେତେବେଳେ ଠାକୁର ସେକଥା ଉତ୍‌ଥାପନ କରି ଶାସ୍ତ୍ରୀ ମହାଶୟଙ୍କୁ କହିଲେ, ‘‘ହେ ଶିବନାଥ, ତୁମେ କ’ଣ ଏସବୁକୁ ରୋଗ ବୋଲି କହୁଛ ? ଆଉ କୁହ ଯେ ଏହି ସମୟରେ ମୁଁ ଚେତାଶୂନ୍ୟ ହୋଇଯାଏ ?

ତୁମେମାନେ ଇଟା, କାଠ, ମାଟି, ଟଙ୍କାକଉଡ଼ି ଏସବୁ ଜଡ଼ ଜିନିଷଗୁଡ଼ିକରେ ଦିନରାତି ମନ ରଖି ଠିକ୍ ରହିଲ, ଆଉ ଯାହାଙ୍କ ଚୈତନ୍ୟରେ ଜଗତ-ସଂସାର ଚୈତନ୍ୟମୟ ହୋଇ ରହିଛି, ତାଙ୍କୁ ଦିନରାତି ଭାବି ମୁଁ ଅଜ୍ଞାନ ଅଚେତନ ହେଲି ! ଏହା ତୁମର କେଉଁ ପ୍ରକାର ବୁଦ୍ଧି ?'' ଶିବନାଥବାବୁ ନିରୁତ୍ତର ରହିଲେ ।

**ସାଧନାକାଳରେ ଠାକୁରଙ୍କର ଉନ୍ମତ୍ତବତ୍ ଆଚରଣର କାରଣ :**

ଠାକୁରେ 'ଦିବ୍ୟୋନ୍ମାଦ', 'ଜ୍ଞାନୋନ୍ମାଦ' ପ୍ରଭୃତି କଥା ଆମ ନିକଟରେ ପ୍ରତିଦିନ କହୁଥିଲେ ଓ ମୁକ୍ତକଣ୍ଠରେ ସମସ୍ତଙ୍କ ନିକଟରେ କହୁଥିଲେ ଯେ, ତାଙ୍କ ଜୀବନରେ ବାରବର୍ଷ ଧରି ଈଶ୍ୱରାନୁରାଗର ଏକ ପ୍ରବଳ ଝଡ଼ ବହିଯାଇଛି । କହୁଥିଲେ, ''ଝଡ଼ରେ ଯେପରି ଧୂଳି ଉଡ଼ି ସବୁ ଏକାକାର ଦେଖାଯାଏ— ଏହା ଆମ୍ବଗଛ, ତାହା ପଣସଗଛ ବୋଲି ବୁଝିବା ଦୂରରେ ଥାଉ, ଆଦୌ କିଛି ଦେଖାଯାଏ ନାହିଁ, ସେହି ପ୍ରକାରର ହୋଇଥିଲା ରେ; ଭଲ-ମନ୍ଦ, ନିନ୍ଦା-ସ୍ତୁତି, ଶୌଚ-ଅଶୌଚ ଏସବୁ କିଛି ହେଲେ ବୁଝିବାକୁ ଦେଇ ନାହିଁ ! କେବଳ ଗୋଟିଏ ଚିନ୍ତା, ଗୋଟିଏ ଭାବ—କିପରି ତାଙ୍କୁ ପାଇବି, ଏହା ହିଁ ମନରେ ସଦା ସର୍ବଦା ରହୁଥିଲା ! ଲୋକେ କହୁଥିଲେ—ପାଗଳ ହୋଇଛି !'' ଛାଡ଼ ଏବେ ସେକଥା, ଆମେ ପୂର୍ବବୃତ୍ତାନ୍ତର ଅନୁସରଣ କରିବା ।

**ଦକ୍ଷିଣେଶ୍ୱରକୁ ଆସୁଥିବା ସାଧକମାନଙ୍କ ମଧ୍ୟରୁ କେହି କେହି ଠାକୁରଙ୍କ ନିକଟରୁ ଦୀକ୍ଷା ଗ୍ରହଣ ମଧ୍ୟ କରିଥିଲେ, ଯଥା—ନାରାୟଣ ଶାସ୍ତ୍ରୀ :**

ଦକ୍ଷିଣେଶ୍ୱରକୁ ସେତେବେଳେ ଯେଉଁସବୁ ସାଧକ ପଣ୍ଡିତ ଠାକୁରଙ୍କ ନିକଟକୁ ଆସିଥିଲେ, ସେମାନଙ୍କ ମଧ୍ୟରୁ କେହି କେହି ଭକ୍ତିର ଆତିଶଯ୍ୟରେ ଠାକୁରଙ୍କ ନିକଟରୁ ଦୀକ୍ଷା ଏବଂ ସନ୍ନ୍ୟାସ ପର୍ଯ୍ୟନ୍ତ ଗ୍ରହଣ କରି ଚାଲିଯାଇଥିଲେ । ପଣ୍ଡିତ ନାରାୟଣ ଶାସ୍ତ୍ରୀ ଏମାନଙ୍କ ମଧ୍ୟରେ ଅନ୍ୟତମ । ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ, ନାରାୟଣ ଶାସ୍ତ୍ରୀ ପ୍ରାଚୀନ ଯୁଗର ନିଷ୍ଠାବାନ ବ୍ରହ୍ମଚାରୀମାନଙ୍କ ସଦୃଶ ଗୁରୁଗୃହରେ ଅବସ୍ଥାନ କରି ଏକାଦିକ୍ରମେ ପଚିଶବର୍ଷ ସ୍ୱାଧ୍ୟାୟ ବା ନାନା ଶାସ୍ତ୍ର ପାଠ କରିଥିଲେ । ଶୁଣିଛୁ, ଷଡ଼ଦର୍ଶନର ସବୁଗୁଡ଼ିକ ଉପରେ ସମାନ ଅଭିଜ୍ଞତା ଓ ଆଧିପତ୍ୟ ଲାଭ କରିବାର ପ୍ରବଳ ବାସନା ବରାବର ତାଙ୍କ ପ୍ରାଣରେ ଥିଲା । ଉତ୍ତର-ପଶ୍ଚିମାଞ୍ଚଳର କାଶୀ ପ୍ରଭୃତି ନାନା ସ୍ଥାନରେ ନାନା ଗୁରୁଗୃହରେ ବାସ କରି ପାଞ୍ଚଟି ଦର୍ଶନ ସେ ସମ୍ପୂର୍ଣ୍ଣ ଆୟତ୍ତ କରିଥିଲେ । କିନ୍ତୁ ବଙ୍ଗଦେଶର ନବଦ୍ୱୀପର ସୁପ୍ରସିଦ୍ଧ ନୈୟାୟିକମାନଙ୍କର ଅଧୀନରେ ନ୍ୟାୟଦର୍ଶନର ପାଠ ଶେଷ ନ କଲେ, ନ୍ୟାୟଦର୍ଶନରେ ପୂର୍ଣ୍ଣଆଧିପତ୍ୟ ଲାଭ କରି ପ୍ରସିଦ୍ଧ ନୈୟାୟିକମାନଙ୍କ ମଧ୍ୟରେ ପରିଗଣିତ ହେବା ଅସମ୍ଭବ, ସେଥିପାଇଁ ଦକ୍ଷିଣେଶ୍ୱର ଠାକୁରଙ୍କ ନିକଟକୁ

ଆସିବାର ପ୍ରାୟ ଆଠ ବର୍ଷ ପୂର୍ବରୁ ବଙ୍ଗପ୍ରଦେଶକୁ ଆସିଥିଲେ ଏବଂ ସାତବର୍ଷ କାଳ ନବଦ୍ୱୀପରେ ରହି ନ୍ୟାୟ ପାଠ ଶେଷ କଲେ । ଏଥର ନିଜ ଦେଶକୁ ଫେରିବେ ଏବଂ ଏଆଡ଼କୁ ଆସିବେ କି ନାହିଁ ସନ୍ଦେହ, ଏଥିପାଇଁ ହିଁ ବୋଧ ହୁଏ, କଲିକତା ଓ ତତ୍‌ସନ୍ନିକଟ ଦକ୍ଷିଣେଶ୍ୱର ଦର୍ଶନରେ ଆସି ଠାକୁରଙ୍କ ଦର୍ଶନ ଲାଭ କଲେ ।

## ଶାସ୍ତ୍ରୀଜୀଙ୍କର ପୂର୍ବକଥା :

ବଙ୍ଗଦେଶରେ ନ୍ୟାୟ ପଢ଼ିବାକୁ ଆସିବା ପୂର୍ବରୁ ଶାସ୍ତ୍ରୀଜୀ ଦେଶରେ ପଣ୍ଡିତ ବୋଲି ଖ୍ୟାତି ଲାଭ କରିଥିଲେ । ଠାକୁରଙ୍କ ପାଖରୁ ଶୁଣିଛୁ, କୌଣସି ସମୟରେ ଜୟପୁରର ମହାରାଜ ଶାସ୍ତ୍ରୀଜୀଙ୍କ ନାମ ଶୁଣି ତାଙ୍କୁ ସଭାପଣ୍ଡିତ କରି ରଖିବେ ବୋଲି ଉଚ୍ଚହାରରେ ବେତନ ନିରୂପିତ କରି ତାଙ୍କୁ ସାଦର ଆହ୍ୱାନ କରିଥିଲେ । କିନ୍ତୁ ଶାସ୍ତ୍ରୀଜୀଙ୍କର ସେତେବେଳେ ମଧ ଜ୍ଞାନାର୍ଜ୍ଜନର ସ୍ପୃହା କମି ନ ଥିଲା ଏବଂ ଷଡ଼ଦର୍ଶନ ଆୟତ୍ତ କରିବାର ପ୍ରବଳ ଆଗ୍ରହ ମଧ ମେଣ୍ଟି ନ ଥିଲା । ତେଣୁ ସେ ମହାରାଜଙ୍କର ସାଦର ଆହ୍ୱାନ ପ୍ରତ୍ୟାଖ୍ୟାନ କରିବାକୁ ବାଧ ହୋଇଥିଲେ । ଶାସ୍ତ୍ରୀଜୀଙ୍କର ପୂର୍ବାବାସ ରାଜପୁତାନା ଅଞ୍ଚଳ ନିକଟରେ ବୋଲି ଆମର ଅନୁମାନ ।

## ପୂର୍ବୋକ୍ତ ଅଧୟନ ସମାପ୍ତ ଓ ଠାକୁରଙ୍କ ଦର୍ଶନଲାଭ :

ନାରାୟଣ ଶାସ୍ତ୍ରୀ ସାଧାରଣ ପଣ୍ଡିତମାନଙ୍କ ପରି ନ ଥିଲେ । ଶାସ୍ତ୍ରଜ୍ଞାନ ସହିତ ଶାସ୍ତ୍ରୀଜୀଙ୍କର ମନରେ ଅଳ୍ପ ଅଳ୍ପ ବୈରାଗ୍ୟର ଉଦୟ ହେଉଥିଲା । ଖାଲି ପାଠପଢ଼ିଲେ ଯେ ବେଦାନ୍ତାଦି ଶାସ୍ତ୍ରରେ କାହାରି ଦଖଲ ଜନ୍ମେ ନାହିଁ, ତାହା ଯେ ସାଧନାର ବସ୍ତୁ ସେକଥା ସେ ଭଲ ଭାବେ ବୁଝିପାରିଥିଲେ ଏବଂ ସେଥିପାଇଁ ପାଠ ଶେଷ କରିବା ପୂର୍ବରୁ ହିଁ ତାଙ୍କ ମନରେ କେବେକେବେ ଉଠୁଥିଲା—ଏହି ପ୍ରକାରରେ ତ ଠିକ୍ ଠିକ୍ ଜ୍ଞାନଲାଭ ହେଉ ନାହିଁ, କିଛି ଦିନ ସାଧନାଦି କରି ଶାସ୍ତ୍ର ଯାହା କହିଛି, ସେସମସ୍ତ ପ୍ରତ୍ୟକ୍ଷ କରିବାର ଚେଷ୍ଟା କରିବି । ପୁଣି ଗୋଟେ ବିଷୟ ଆୟତ୍ତ କରିବାକୁ ବସିଛନ୍ତି, ତାହା ଅଧାବାଟରେ ଛାଡ଼ି ସାଧନାଦି କରିବାକୁ ଗଲେ ଯଦି ଏଦିଗ ସେଦିଗ ଦୁଇଦିଗ ବୁଡ଼େ, ସେଥିପାଇଁ ସାଧନାରେ ଲାଗିବାର ବାସନା ଛାଡ଼ି ପୁଣି ପାଠରେ ହିଁ ମନୋନିବେଶ କରୁଥିଲେ । ଏଥର ତାଙ୍କର ଏତେ କାଳର ବାସନା ପୂର୍ଣ୍ଣ ହେଲା, ଷଡ଼ଦର୍ଶନରେ ଅଭିଜ୍ଞତା ଲାଭ କରିବା ପରେ ଏବେ ଦେଶକୁ ପ୍ରତ୍ୟାବର୍ତ୍ତନ କରିବାର ଇଚ୍ଛା ହେଲା । ଦେଶକୁ ଫେରି ଯାହା ହେଉ ଗୋଟେ କିଛି କରିବେ, ଏହି କଥା ମନରେ ସ୍ଥିର କରିଥିଲେ । ଏହି ସମୟରେ ତାଙ୍କର ଠାକୁରଙ୍କ ସହିତ ଦେଖା ଏବଂ ଦେଖିବା ମାତ୍ରେ ହିଁ କାହିଁକି କେଜାଣି ତାଙ୍କୁ ଭଲ ଲାଗିଲା ।

ଆଗରୁ କୁହାଯାଇଛି, ଦକ୍ଷିଣେଶ୍ୱର କାଳୀବାଡ଼ୀଠାରେ ସେତେବେଳେ ଅତିଥି, ଫକୀର, ସାଧୁ, ସନ୍ନ୍ୟାସୀ, ବ୍ରାହ୍ମଣ ପଣ୍ଡିତମାନଙ୍କର ରହିବାର ଏବଂ ଖାଇବାର ସୁବନ୍ଦୋବସ୍ତ ଥିଲା । ପ୍ରଥମତଃ ଶାସ୍ତ୍ରୀଜୀ ବିଦେଶୀ ବ୍ରହ୍ମଚାରୀ ବ୍ରାହ୍ମଣ, ପୁଣି ଜଣେ ସୁପଣ୍ଡିତ, ତେଣୁ ତାଙ୍କୁ ସସମ୍ମାନେ ଏଠାରେ ଯେତେଦିନ ଇଚ୍ଛା ରହିବାକୁ ଦିଆଯିବ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆହାରାଦି ସମସ୍ତ ବିଷୟରେ ଅନୁକୂଳ ଏପରି ରମଣୀୟ ସ୍ଥାନରେ ଏପରି ଦେବମାନବଙ୍କ ସଙ୍ଗ ପ୍ରାପ୍ତ କରିବା କମ୍ ସୌଭାଗ୍ୟର କଥା ନୁହେଁ ! ତେଣୁ ଶାସ୍ତ୍ରୀଜୀ ଏଠାରେ କିଛି କାଳ କଟାଇବାକୁ ସ୍ଥିର କଲେ । ନ କରି ଥାଆନ୍ତେ ବା କାହିଁକି ? ଠାକୁରଙ୍କ ସହିତ ଯେତେ ପରିଚୟ ହେବାକୁ ଲାଗିଲା, ସେତେ ତାଙ୍କ ପ୍ରତି କିପରି ଏକ ଭକ୍ତି ଭଲପାଇବାର ଉଦୟ ହୋଇ ତାଙ୍କୁ ଆହୁରି ଘନିଷ୍ଠ ଭାବରେ ଦେଖିବାକୁ ଜାଣିବାକୁ ଇଚ୍ଛା ଦିନକୁ ଦିନ ଶାସ୍ତ୍ରୀଙ୍କର ପ୍ରବଳ ହେବାକୁ ଲାଗିଲା । ଠାକୁର ମଧ୍ୟ ସରଳହୃଦୟ ଉନ୍ନତଚେତା ଶାସ୍ତ୍ରୀଙ୍କୁ ପାଇ ବିଶେଷ ଆନନ୍ଦ ପ୍ରକାଶ କରି ତାଙ୍କ ସହିତ ଅନେକ ସମୟ ଈଶ୍ୱରୀୟ କଥାରେ କଟାଇବାକୁ ଲାଗିଲେ ।

### ଠାକୁରଙ୍କର ଦିବ୍ୟସଙ୍ଗଲାଭରେ ଶାସ୍ତ୍ରୀଙ୍କର ସଂକଳ୍ପ :

ଶାସ୍ତ୍ରୀଜୀ ବେଦାନ୍ତୋକ୍ତ ସପ୍ତଭୂମିର କଥା ପଢ଼ିଥିଲେ । ଶାସ୍ତ୍ରଜ୍ଞାନ ଯୋଗୁଁ ଜାଣିଥିଲେ, ଗୋଟିକ ପରେ ଗୋଟିଏ କରି ନିମ୍ନରୁ ଉଚ୍ଚ ଉଚ୍ଚତର ଭୂମିରେ ଯେପରି ଯେପରି ମନ ଉଠୁଥାଏ, ସଙ୍ଗେ ସଙ୍ଗେ ବିଚିତ୍ର ବିଚିତ୍ର ଉପଲବ୍ଧି ଓ ଦର୍ଶନ ହେଉ ହେଉ ଶେଷରେ ନିର୍ବିକଳ୍ପସମାଧି ଆସି ଉପସ୍ଥିତ ହୁଏ ଏବଂ ସେହି ଅବସ୍ଥାରେ ଅଖଣ୍ଡ ସଚ୍ଚିଦାନନ୍ଦସ୍ୱରୂପ ବ୍ରହ୍ମବସ୍ତୁର ସାକ୍ଷାତ ଉପଲବ୍ଧିରେ ତନ୍ମୟ ହୋଇ ମାନବର ଯୁଗଯୁଗାନ୍ତରର ସଂସାରଭ୍ରମ ସମ୍ପୂର୍ଣ୍ଣ ତିରୋହିତ ହୋଇଯାଏ । ଶାସ୍ତ୍ରୀ ଦେଖିଲେ, ସେ ଯେଉଁ ସମସ୍ତ କଥା ଶାସ୍ତ୍ରରେ ପଢ଼ି କଣ୍ଠସ୍ଥ କରିଛନ୍ତି ମାତ୍ର, ଠାକୁର ସେସମସ୍ତ ଜୀବନରେ ସାକ୍ଷାତ ପ୍ରତ୍ୟକ୍ଷ କରିଛନ୍ତି । ସେ ଦେଖିଲେ— 'ସମାଧି', 'ଅପରୋକ୍ଷାନୁଭୂତି' ପ୍ରଭୃତି ଯେଉଁ ସମସ୍ତ କଥା ସେ କେବଳ ଉଚ୍ଚାରଣ ହିଁ କରିଥାଆନ୍ତି, ଠାକୁରଙ୍କର ସେହି ସମାଧି ଦିନରାତି ଯେତେବେଳେ ସେତେବେଳେ ଈଶ୍ୱରୀୟ ପ୍ରସଙ୍ଗ ପଡ଼ିଲେ ହିଁ ହେଉଅଛି ! ଶାସ୍ତ୍ରୀ ଭାବିଲେ, 'ଏ କି ଅଦ୍ଭୁତ କଥା ! ଶାସ୍ତ୍ରର ନିଗୂଢ଼ ଅର୍ଥ ଜଣାଇବାର ଓ ବୁଝାଇବାର ଏପରି ଲୋକ ଆଉ କେଉଁଠି ପାଇବି ? ତେଣୁ ଏସୁଯୋଗ ଛାଡ଼ିବି ନାହିଁ । ଯେପରି ହେଉ ତାଙ୍କ ନିକଟରୁ ବ୍ରହ୍ମସାକ୍ଷାତ୍‌କାର ଲାଭର ଉପାୟ ଜାଣିବାକୁ ହେବ । ମରଣର ତ ନିଶ୍ଚୟତା ନାହିଁ—କିଏ ଜାଣେ କେବେ ଏହି ଶରୀର ଯିବ । ଠିକ୍ ଠିକ୍ ଜ୍ଞାନ ଲାଭ ନ କରି କ'ଣ ମରିବି ? ତାହା ହେବ ନାହିଁ । ଥରେ ତାହା ଲାଭ କରିବାକୁ ଅନ୍ତତଃ ଚେଷ୍ଟା କରିବାକୁ ହେବ । ତେଣୁ ନିଜ ଦେଶକୁ ଫେରିବା ଏବେ ସ୍ଥଗିତ ରହିଲା ।'

**ଶାସ୍ତ୍ରୀଜୀଙ୍କର ବୈରାଗ୍ୟର ଉଦୟ :**

ଦିନ ପରେ ଦିନ ଯେତେ ବିତିବାକୁ ଲାଗିଲା, ଶାସ୍ତ୍ରୀଙ୍କର ବୈରାଗ୍ୟ-ବ୍ୟାକୁଳତା ମଧ୍ୟ ଠାକୁରଙ୍କର ଦିବ୍ୟ ସଙ୍ଗ ଯୋଗୁଁ ସେତେ ବର୍ଦ୍ଧିତ ହେବାକୁ ଲାଗିଲା । ପାଣ୍ଡିତ୍ୟ ଦ୍ୱାରା ସମସ୍ତଙ୍କୁ ଚମତ୍କୃତ କରିବି, ମହାମହୋପାଧ୍ୟାୟ ହୋଇ ସଂସାରରେ ସର୍ବାପେକ୍ଷା ଅଧିକ ନାମ ଯଶ ପ୍ରତିଷ୍ଠା ଲାଭ କରିବି—ଏସମସ୍ତ ବାସନା ତୁଚ୍ଛ ହେୟ ଜ୍ଞାନ ହୋଇ ମନରୁ ସମ୍ପୂର୍ଣ୍ଣ ଭାବରେ ଅନ୍ତର୍ହିତ ହୋଇଗଲା । ଶାସ୍ତ୍ରୀ ଯଥାର୍ଥ ଦୀନଭାବରେ ଶିଷ୍ୟ ସଦୃଶ ଠାକୁରଙ୍କ ନିକଟରେ ରହି ଏବଂ ତାଙ୍କର ଅମୃତତୁଲ୍ୟ ବାକ୍ୟାବଳୀ ଏକାଗ୍ର ଚିତ୍ତରେ ଶ୍ରବଣ କରି ଭାବୁଥିଲେ—ଆଉ ଅନ୍ୟ କୌଣସି ବିଷୟରେ ମନ ଦେବା ହେବ ନାହିଁ । କେବେ କେତେବେଳେ ଶରୀର ଯିବ ତାର ସ୍ଥିରତା ନାହିଁ; ତେଣୁ ବେଳ ଥାଉ ଥାଉ ଈଶ୍ୱରଲାଭର ଚେଷ୍ଟା କରିବାକୁ ହେବ । ଠାକୁରଙ୍କୁ ଦେଖି ଭାବୁଥିଲେ—"ଆହା, ଏହି ବ୍ୟକ୍ତି ମନୁଷ୍ୟଜନ୍ମ ଲାଭ କରି ଯାହା ଜାଣିବାର, ବୁଝିବାର, ତାହା ବୁଝି କିପରି ନିଶ୍ଚିନ୍ତ ହୋଇ ରହିଛନ୍ତି ! —ମୃତ୍ୟୁ ମଧ୍ୟ ଏହାଙ୍କ ନିକଟରେ ପରାଜିତ; 'ମହାରାତ୍ରି' ତାର କରାଳ ଛାୟା ସମ୍ମୁଖରେ ଧରି ଇତରସାଧାରଣଙ୍କ ପରି ଏହାଙ୍କୁ ଆଉ ଅକୂଳ ସମୁଦ୍ର ଦେଖାଇ ପାରେ ନାହିଁ ! ଆଚ୍ଛା, ଉପନିଷଦକାର କହିଛନ୍ତି ଏପରି ମହାପୁରୁଷ ସିଦ୍ଧ-ସଂକଳ୍ପ ହୁଅନ୍ତି; ଏହାଙ୍କର ଠିକ୍ ଠିକ୍ କୃପା ଲାଭ କରିପାରିଲେ ମନୁଷ୍ୟର ସଂସାର-ବାସନା ଦୂରୀଭୂତ ହୋଇ ବ୍ରହ୍ମଜ୍ଞାନର ଉଦୟ ହୁଏ । ତେଣୁ ଏହାଙ୍କୁ ହିଁ ଧରିବି ନାହିଁ କାହିଁକି; ଏହାଙ୍କର ଶରଣ ନ ନେବି କାହିଁକି ?" ଶାସ୍ତ୍ରୀ ମନେ ମନେ ଏପରି ନାନା ପ୍ରକାର କଳ୍ପନା କରି ଠାକୁରଙ୍କ ନିକଟରେ ଦକ୍ଷିଣେଶ୍ୱରରେ ରହିବାକୁ ଲାଗିଲେ । କିନ୍ତୁ କାଳେ ଠାକୁର ତାଙ୍କୁ ଅଯୋଗ୍ୟ ଭାବି ଆଶ୍ରୟ ନ ଦେବେ ସେଥିପାଇଁ ସହସା ତାଙ୍କୁ କିଛି କହିପାରିଲେ ନାହିଁ । ଏହପରି ଦିନ କଟିବାକୁ ଲାଗିଲା ।

**ଶାସ୍ତ୍ରୀଜୀଙ୍କର ମାଇକେଲ ମଧୁସୂଦନଙ୍କ ସହିତ ଆଳାପରେ ବିରକ୍ତି :**

ଶାସ୍ତ୍ରୀଙ୍କ ମନରେ ଦିନକୁ ଦିନ ଯେ ସଂସାର-ବୈରାଗ୍ୟ ତୀବ୍ରଭାବ ଧାରଣ କରୁଥିଲା, ତାହାର ପରିଚୟ ଆମେ ନିମ୍ନଲିଖିତ ଘଟଣାରୁ ବେଶ ପାଇଥାଉ । ଏହି ସମୟରେ ରାସମଣିଙ୍କ ତରଫରୁ କୌଣସି ଏକ ମକଦ୍ଦମା ଚଳାଇବାର ଦାୟିତ୍ୱ ବଙ୍ଗଳାର କବିକୁଳଗୌରବ ଶ୍ରୀଯୁକ୍ତ ମାଇକେଲ ମଧୁସୂଦନ ଦତ୍ତ ପ୍ରାପ୍ତ ହୋଇଥିଲେ । ସେହି ମକଦ୍ଦମାର ସମସ୍ତ ବିଷୟ ଯଥାଯଥ ଜାଣିବା ପାଇଁ ତାହାଙ୍କୁ ରାଣୀଙ୍କର କୌଣସି ବଂଶଧରଙ୍କ ସହିତ ଦିନେ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଆସିବାକୁ ପଡ଼ିଥିଲା । ମକଦ୍ଦମାସଂକ୍ରାନ୍ତ ସମସ୍ତ ବିଷୟ ଜାଣିବା ପରେ କଥା କଥାରେ ସେ ଠାକୁର ଏଠାରେ ଅଛନ୍ତି ଜାଣିପାରିଲେ ଏବଂ ତାଙ୍କୁ ଦେଖିବାର ବାସନା ପ୍ରକାଶ କଲେ । ଠାକୁରଙ୍କ ପାଖକୁ ଖବର ଦେବାରୁ ଠାକୁର ମଧୁସୂଦନଙ୍କ

ସହିତ ବାର୍ତ୍ତାଳାପ କରିବାକୁ ଶାସ୍ତ୍ରୀଙ୍କୁ ହିଁ ପଠାଇଲେ ଏବଂ ପରେ ନିଜେ ମଧ୍ୟ ସେଠାରେ ପହଞ୍ଚିଲେ । ଶାସ୍ତ୍ରୀଜୀ ମଧୁସୂଦନଙ୍କ ସହିତ ଆଳାପ କରୁ କରୁ ତାଙ୍କୁ ସ୍ୱଧର୍ମ ତ୍ୟାଗ କରି ଈଶାଙ୍କ ଧର୍ମ ଅବଲମ୍ବନର କାରଣ ପଚାରିଲେ । ମାଇକେଲ ତଦୁତ୍ତରରେ କହିଥିଲେ ଯେ, ସେ ପେଟ ପାଇଁ ସେପରି କରିଛନ୍ତି । ମଧୁସୂଦନ ଅପରିଚିତ ବ୍ୟକ୍ତିଙ୍କୁ ନିଜର ଆତ୍ମ କଥା ଖୋଲି କହିବାକୁ ଅନିଚ୍ଛୁକ ହୋଇ ସେପରି ଭାବରେ ଶାସ୍ତ୍ରୀଙ୍କ ପ୍ରଶ୍ନର ଉତ୍ତର ଦେଇଥିଲେ କି ନାହିଁ, ତାହା ଆମେ କହିପାରିବୁ ନାହିଁ; କିନ୍ତୁ ଠାକୁର ଓ ଉପସ୍ଥିତ ସମସ୍ତଙ୍କର ହିଁ ମନେ ହୋଇଥିଲା ସେ ଆତ୍ମଗୋପନ କରି ବିଦ୍ରୂପ ଛଳରେ ଯେ ସେପ୍ରକାର କହିଲେ ତାହା ନୁହେଁ; ଯଥାର୍ଥ ପ୍ରାଣର ଭାବ ହିଁ କହିଲେ । ଯାହା ହେଉ, ଏପରି ଉତ୍ତର ଶୁଣି ଶାସ୍ତ୍ରୀଜୀ ତାଙ୍କ ଉପରେ ଅତ୍ୟନ୍ତ ବିରକ୍ତ ହୋଇ କହିଲେ—''କ'ଣ ! ଏହି ଦୁଇଦିନର ସଂସାରରେ ପେଟ ପାଇଁ ନିଜର ଧର୍ମ ପରିତ୍ୟାଗ କରିବା—ଏହା କେଡ଼େ ହୀନବୁଦ୍ଧି ! ମରିବାକୁ ତ ଦିନେ ହେବ ହିଁ ନ ହେଲେ ମରି ଯାଇଥାଆନ୍ତେ ।'' ଏହାଙ୍କୁ ହିଁ ପୁଣି ଲୋକେ ବଡ଼ ଲୋକ କହୁଛନ୍ତି ଏବଂ ଏହାଙ୍କର ଗ୍ରନ୍ଥ ଆଦର ସହକାରେ ପଢୁଛନ୍ତି, ଏକଥା ଭାବି ଶାସ୍ତ୍ରୀଜୀଙ୍କ ମନରେ ଅତ୍ୟନ୍ତ ଘୃଣା ଉଦୟ ହେବାରୁ ସେ ତାଙ୍କ ସହିତ ଆଉ ଅଧିକ ବାକ୍ୟାଳାପରୁ ବିରତ ହେଲେ ।

### ଠାକୁର ଓ ମାଇକେଲ-ସମ୍ବାଦ :

ଅତଃପର ମଧୁସୂଦନ ଠାକୁରଙ୍କ ଶ୍ରୀମୁଖରୁ କିଛି ଧର୍ମୋପଦେଶ ଶୁଣିବାକୁ ବାସନା ପ୍ରକାଶ କଲେ । ଠାକୁର ଆମକୁ କହୁଥିଲେ—''(ମୋର) ମୁହଁ ଯେପରି କିଏ ଚାପି ଧରିଲା, କିଛି କହିବାକୁ ଦେଲା ନାହିଁ !'' ହୃଦୟ ପ୍ରଭୃତି କେହି କେହି କହନ୍ତି, କିଛିକ୍ଷଣ ପରେ ଠାକୁରଙ୍କର ସେହି ଭାବ ଚାଲିଗଲା, ଏବଂ ସେ ରାମପ୍ରସାଦ, କମଳାକାନ୍ତ ପ୍ରଭୃତି ବିଶିଷ୍ଟ ସାଧକମାନଙ୍କର କେତୋଟି ପଦାବଳୀ ମଧୁର କଣ୍ଠରେ ଗାଇ ମଧୁସୂଦନଙ୍କର ମନ ମୋହିତ କରିଥିଲେ ଏବଂ ସେହି ଉପଦେଶରେ ତାଙ୍କୁ, ଭଗବତ୍ ଭକ୍ତି ହିଁ ସଂସାରରେ ଏକମାତ୍ର ସାର ପଦାର୍ଥ, ତାହା ଶିକ୍ଷା ଦେଇଥିଲେ ।

### ଶାସ୍ତ୍ରୀଜୀଙ୍କର ନିଜ ମତ କାନ୍ଥରେ ଲେଖିରଖିବା :

ମାଇକେଲ୍ ବିଦାୟ ନେବାପରେ ମଧ୍ୟ ଶାସ୍ତ୍ରୀଜୀ ମାଇକେଲଙ୍କର ସେ ପ୍ରକାର ସ୍ୱଧର୍ମତ୍ୟାଗ କଥା ଆଲୋଚନା କରି ବିରକ୍ତି ପ୍ରକାଶ କଲେ, ଏବଂ ପେଟ ପାଇଁ ସ୍ୱଧର୍ମତ୍ୟାଗ କରିବା ଯେ ଅତ୍ୟନ୍ତ ହୀନବୁଦ୍ଧିର କାର୍ଯ୍ୟ, ଏକଥା ଠାକୁରଙ୍କ ଘରେ ପଶିବା କବାଟରେ ପୂର୍ବଦିଗର ବାରଣ୍ଡା କାନ୍ଥରେ ଖଣ୍ଡିଏ କୋଇଲା ଦେଇ ବଡ଼ ବଡ଼ ଅକ୍ଷରରେ ଲେଖି ରଖିଲେ । କାନ୍ଥରେ ସୁସ୍ପଷ୍ଟ ବଡ଼ ବଡ଼ ବଙ୍ଗଳା ଅକ୍ଷରରେ ଲେଖା ଶାସ୍ତ୍ରୀଜୀଙ୍କର ଏହି ବିଷୟକ ମନୋଭାବ ଆମ ଅନେକଙ୍କ ନଜରରେ ପଡ଼ି

ଆମମାନଙ୍କୁ କୌତୁହଳାକ୍ରାନ୍ତ କରୁଥିଲା । ପରେ ଦିନେ ଏସମ୍ବନ୍ଧରେ ପଚାରି ସମସ୍ତ କଥା ଜାଣିଲୁ । ଶାସ୍ତ୍ରୀଜୀ ଅନେକ ଦିନ ବଙ୍ଗଳାରେ ରହି ବଙ୍ଗଳା ଭାଷା ବେଶ ଶିକ୍ଷା କରିଥିଲେ ।

**ଶାସ୍ତ୍ରୀଙ୍କର ସନ୍ନ୍ୟାସଗ୍ରହଣ ଓ ତପସ୍ୟା :**

ଏଥର ଶାସ୍ତ୍ରୀଙ୍କ ଜୀବନର ଶେଷ କଥା କହିବା । ସୁଯୋଗ ଦେଖି ଶାସ୍ତ୍ରୀ ମହାଶୟ ଦିନେ ଠାକୁରଙ୍କୁ ନିର୍ଜନରେ ପାଇ ନିଜର ମନୋଭାବ ପ୍ରକାଶ କଲେ ଏବଂ 'ନଛୋଡ଼ବନ୍ଦା' ହୋଇ ଅଡ଼ି ବସିଲେ ଯେ, ତାଙ୍କୁ ସନ୍ନ୍ୟାସଦୀକ୍ଷା ଦେବାକୁ ହେବ । ଠାକୁର ମଧ୍ୟ ତାଙ୍କର ଅତିଶୟ ଆଗ୍ରହ ଦେଖି ସମ୍ମତ ହୋଇ ଶୁଭଦିନରେ ତାଙ୍କୁ ସେହି ଦୀକ୍ଷାପ୍ରଦାନ କଲେ । ସନ୍ନ୍ୟାସଗ୍ରହଣ କରି ଶାସ୍ତ୍ରୀ ଆଉ କାଳୀମନ୍ଦିରରେ ରହିଲେ ନାହିଁ । ବଶିଷ୍ଠ ଆଶ୍ରମରେ ବସି ସିଦ୍ଧକାମ ନ ହେବା ପର୍ଯ୍ୟନ୍ତ ବ୍ରହ୍ମୋପୋଲବ୍ଧିର ଚେଷ୍ଟାରେ ପ୍ରାଣପାତ କରିବେ ବୋଲି ଠାକୁରଙ୍କ ନିକଟରେ ମନୋଗତ ଅଭିପ୍ରାୟ ଜଣାଇଲେ ଏବଂ ସଜଳନୟନରେ ତାଙ୍କର ଆଶୀର୍ବାଦଭିକ୍ଷା ଓ ଶ୍ରୀଚରଣବନ୍ଦନାନ୍ତେ ଚିରଦିନ ପାଇଁ ଦକ୍ଷିଣେଶ୍ୱର ପରିତ୍ୟାଗ କରି ଚାଲିଗଲେ; ଏହାପରେ ନାରାୟଣ ଶାସ୍ତ୍ରୀଙ୍କର କୌଣସି ସମ୍ବାଦ ଆଉ ମିଳି ନାହିଁ । କେହି କେହି କହନ୍ତି, ବଶିଷ୍ଠାଶ୍ରମରେ ଅବସ୍ଥାନ କରି କଠୋର ତପଶ୍ଚରଣ କରୁ କରୁ ତାଙ୍କ ଶରୀର ରୋଗାକ୍ରାନ୍ତ ହେଲା ଏବଂ ସେହି ରୋଗରେ ହିଁ ତାଙ୍କର ମୃତ୍ୟୁ ହୋଇଥିଲା ।

**ସାଧୁ ଓ ସାଧକମାନଙ୍କୁ ଦେଖିବାକୁ ଯିବା ଠାକୁରଙ୍କର ସ୍ୱଭାବ ଥିଲା :**

ଯଥାର୍ଥ ସାଧୁ, ସାଧକ ବା ଭଗବଦ୍‌ଭକ୍ତ ଯେକୌଣସି ସମ୍ପ୍ରଦାୟର ହୁଅନ୍ତୁ ନା କାହିଁକି, କୌଣସି ସ୍ଥାନରେ ବାସ କରୁଥିବା ଶୁଣିଲେ ହିଁ ଠାକୁରଙ୍କର ତାଙ୍କୁ ଦର୍ଶନ କରିବାକୁ ଇଚ୍ଛା ହେଉଥିଲା ଏବଂ ଏପରି ଇଚ୍ଛା ହେଲେ ଅଯାଚିତ ହୋଇ ମଧ୍ୟ ସେମାନଙ୍କ ସହିତ ଭଗବତ୍ ପ୍ରସଙ୍ଗରେ କିଛି ସମୟ କଟାଇ ଆସୁଥିଲେ । ଏଥିରେ ଲୋକମାନେ ଭଲ ବା ମନ୍ଦ କହିବେ, ଅପରିଚିତ ସାଧକ ତାଙ୍କର ଯିବାରେ ସନ୍ତୁଷ୍ଟ ବା ଅସନ୍ତୁଷ୍ଟ ହେବେ, ନିଜେ ଯଥାର୍ଥ ଭାବରେ ସମ୍ମାନିତ ହେବେ କି ନାହିଁ—ଏସବୁ ଚିନ୍ତା ସେତେବେଳେ ତାଙ୍କ ମନରେ ଉଦୟ ହେଉ ନ ଥିଲା । କୌଣସି ମତେ ସେଠାରେ ପହଞ୍ଚି ଉକ୍ତ ସାଧକ କେଉଁ ଭାବର ଲୋକ ଓ ନିଜ ଗନ୍ତବ୍ୟ ପଥରେ କେତେ ଅଗ୍ରସର ହୋଇଅଛନ୍ତି ଇତ୍ୟାଦି ସବୁକଥା ଜାଣି, ବୁଝି, ଏକ ସ୍ଥିର ମୀମାଂସାରେ ଉପନୀତ ହୋଇ ତେବେ କ୍ଷାନ୍ତ ହେଉଥିଲେ । ଶାସ୍ତ୍ରଜ୍ଞ ସାଧକ ପଣ୍ଡିତଙ୍କ କଥା ଶୁଣିଲେ ମଧ୍ୟ ଠାକୁର ଅନେକ ସମୟରେ ସେ ପ୍ରକାର ବ୍ୟବହାର କରୁଥିଲେ । ପଣ୍ଡିତ ପଦ୍ମଲୋଚନ, ସ୍ୱାମୀ ଦୟାନନ୍ଦ ସରସ୍ୱତୀ ପ୍ରଭୃତି ଅନେକଙ୍କୁ ଠାକୁର ସେପରି ଦର୍ଶନ କରିବାକୁ ଯାଇଥିଲେ ଏବଂ ସେମାନଙ୍କ

କଥା ଆମକୁ ଅନେକ ସମୟରେ ଗଳ୍ପଚ୍ଛଳରେ କହୁଥିଲେ । ତା ମଧ୍ୟରୁ ପଣ୍ଡିତ ପଦ୍ମଲୋଚନଙ୍କ କଥା ହିଁ ଆମେ ଏବେ ପାଠକଙ୍କୁ କହିବୁ ।

**ବଙ୍ଗରେ ନ୍ୟାୟ ପ୍ରବେଶର କାରଣ :**

ଠାକୁରଙ୍କ ଆବିର୍ଭାବ ପୂର୍ବରୁ ବଙ୍ଗଳାରେ ବେଦାନ୍ତଶାସ୍ତ୍ରର ଚର୍ଚ୍ଚା ବିରଳ ଥିଲା । ଆଚାର୍ଯ୍ୟ ଶଙ୍କର ବହୁ ଶତାବ୍ଦୀ ପୂର୍ବରୁ ବଙ୍ଗର ତାନ୍ତ୍ରିକମାନଙ୍କୁ ତର୍କ ଯୁଦ୍ଧରେ ପରାସ୍ତ କରିଥିଲେ ମଧ୍ୟ ସାଧାରଣରେ ନିଜର ମତ ବିଶେଷ ପ୍ରତିଷ୍ଠା କରିପାରି ନ ଥିଲେ । ଫଳରେ ଏଠାକାର ତନ୍ତ୍ର ଅଦ୍ୱୈତଭାବରୂପକ ବେଦାନ୍ତର ମୂଳ ତତ୍ତ୍ୱଟି ସତ୍ୟ ବୋଲି ସ୍ୱୀକାର କରି ନିଜର ଉପାସନାପ୍ରଣାଳୀ ମଧ୍ୟରେ ତାହାର କିଛି କିଛି ପ୍ରବିଷ୍ଟ କରାଇ ଜନସାଧାରଣରେ ପୂର୍ବବତ୍ ପୂଜାଦିର ପ୍ରଚାର କରାଇଥିଲା ଏବଂ ବଙ୍ଗଳାର ପଣ୍ଡିତମାନେ ନ୍ୟାୟଦର୍ଶନର ଆଲୋଚନାରେ ହିଁ ନିଜର ଉର୍ବର ମସ୍ତିଷ୍କର ସମସ୍ତ ଶକ୍ତି ବ୍ୟୟ କରି ସମୟାନୁକ୍ରମେ ନବ୍ୟନ୍ୟାୟର ସୃଷ୍ଟି କରି ଉକ୍ତ ଦର୍ଶନରେ ରାଜ୍ୟରେ ଅଭୂତ ଯୁଗବିପର୍ଯ୍ୟୟ ଆନୟନ କଲେ । ଆଚାର୍ଯ୍ୟ ଶଙ୍କରଙ୍କ ନିକଟରେ ତର୍କରେ ପରାଜିତ ଓ ଅପଦସ୍ଥ ହେବାରୁ ହିଁ କ'ଣ ବଙ୍ଗାଳୀ ଜାତି ଭିତରେ ତର୍କଶାସ୍ତ୍ରର ଆଲୋଚନା ଏତେ ଅଧିକ ବଢ଼ି ଯାଇଥିଲା—କିଏ କହିପାରିବ ? ତେବେ ଜାତି ବିଶେଷଙ୍କ ନିକଟରେ କୌଣସି ବିଷୟରେ ପରାଜିତ ହୋଇ ଅଭିମାନରେ ଓ ଅପମାନରେ ପରାଜିତ ଜାତି ଭିତରେ ସେହି ବିଷୟରେ ସମସ୍ତଙ୍କୁ ଅତିକ୍ରମ କରିବାକୁ ଇଚ୍ଛା ଓ ଚେଷ୍ଟାର ଉଦୟ ଜଗତ ଅନେକ ଥର ଦେଖିଛି ।

**ବୈଦାନ୍ତିକ ପଣ୍ଡିତ ପଦ୍ମଲୋଚନ :**

ତନ୍ତ୍ର ଓ ନ୍ୟାୟର ରଙ୍ଗଭୂମି ବଙ୍ଗରେ ଠାକୁରଙ୍କ ଆବିର୍ଭାବ ପୂର୍ବରୁ ବେଦାନ୍ତଚର୍ଚ୍ଚା ଏପରି ବିରଳ ଥିଲେ ମଧ୍ୟ, କେହି କେହି ଯେ ଏହାର ଉଦାର ମୀମାଂସାଗୁଡ଼ିକର ଅନୁଶୀଳନରେ ଆକୃଷ୍ଟ ହେଉ ନ ଥିଲେ, ତାହା ନୁହେଁ । ପଣ୍ଡିତ ପଦ୍ମଲୋଚନ ଏମାନଙ୍କ ମଧ୍ୟରେ ଅନ୍ୟତମ । ନ୍ୟାୟଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭ କରିବା ପରେ ପଣ୍ଡିତଙ୍କର ବେଦାନ୍ତଦର୍ଶନ-ପାଠ କରିବାକୁ ଇଚ୍ଛା ହେଲା ଏବଂ ଏଥିପାଇଁ କାଶୀଧାମକୁ ଯାଇ ଗୁରୁଗୃହରେ ଅବସ୍ଥାନ କରି ସେ ଦୀର୍ଘକାଳ ଉକ୍ତ ଦର୍ଶନର ଚର୍ଚ୍ଚାରେ କାଳାତିପାତ କଲେ । ଫଳରେ, କେତେ ବର୍ଷ ପରେ ହିଁ ସେ ବୈଦାନ୍ତିକ ବୋଲି ପ୍ରସିଦ୍ଧିଲାଭ କଲେ ଏବଂ ଦେଶକୁ ଆଗମନ ପରେ ବର୍ଦ୍ଧମାନ ରାଜାଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ତାଙ୍କର ସଭାପଣ୍ଡିତର ପଦ ଗ୍ରହଣ କରିଥିଲେ । ପଣ୍ଡିତଜୀଙ୍କ ଅଦ୍ଭୁତ ପ୍ରତିଭାର ପରିଚୟ ପାଇ ବର୍ଦ୍ଧମାନର ରାଜା ତାଙ୍କୁ କ୍ରମେ ପ୍ରଧାନ ସଭାପଣ୍ଡିତ ପଦରେ ପ୍ରତିଷ୍ଠିତ କଲେ ଏବଂ ତାଙ୍କର ସୁଯଶ ବଙ୍ଗଳାରେ ସର୍ବତ୍ର ପରିବ୍ୟାପ୍ତ ହେଲା ।

## ପଣ୍ଡିତ ମହାଶୟଙ୍କର ଅଦ୍ଭୁତ ପ୍ରତିଭାର ଦୃଷ୍ଟାନ୍ତ :

ପଣ୍ଡିତଜୀଙ୍କର ଅଦ୍ଭୁତ ପ୍ରତିଭା ସମ୍ବନ୍ଧରେ ଗୋଟିଏ କଥା ଏଠାରେ କହିଲେ ମନ୍ଦ ହେବ ନାହିଁ । ଆଧ୍ୟାତ୍ମିକ କୌଣସି ବିଷୟରେ ଏକଦେଶୀ ଭାବ ବୁଦ୍ଧିହୀନତାରୁ ହିଁ ଉପସ୍ଥିତ ହୁଏ—ଏହି ପ୍ରସଙ୍ଗରେ ଠାକୁର ପଣ୍ଡିତଜୀଙ୍କର ସେହି କଥା କେବେକେବେ ଆମ ନିକଟରେ ଉଲ୍ଲେଖ କରୁଥିଲେ । କାରଣ, ଆମେ ଆଗରୁ ହିଁ କହିଛୁ, ଅସାଧାରଣ ସତ୍ୟନିଷ୍ଠ ଠାକୁର କାହା ନିକଟରୁ କେବେ କୌଣସି ମନ ମୁତାବକ ଉଦାରଭାବ-ପ୍ରକାଶକ କଥା ଶୁଣିଲେ ତାହା ସ୍ମରଣ ରଖୁଥିଲେ ଏବଂ କଥା ପ୍ରସଙ୍ଗରେ ତାହା ଉଲ୍ଲେଖ କରିବା ସମୟରେ ଯାହାଙ୍କ ନିକଟରୁ ସେ ତାହା ପ୍ରଥମେ ଶୁଣିଥିଲେ, ତାଙ୍କ ନାମଟି ମଧ୍ୟ କହୁଥିଲେ ।

## 'ଶିବ ବଡ଼ ନା ବିଷ୍ଣୁ ବଡ଼' :

ଠାକୁର କହୁଥିଲେ, ବର୍ଦ୍ଧମାନ-ରାଜସଭାରେ ପଣ୍ଡିତମାନଙ୍କ ମଧ୍ୟରେ 'ଶିବ ବଡ଼ ନା ବିଷ୍ଣୁ ବଡ଼'—ଏ କଥା ନେଇ ଥରେ ମହା ଆନ୍ଦୋଳନ ଆରମ୍ଭ ହେଲା । ପଣ୍ଡିତ ପଦ୍ମଲୋଚନ ସେତେବେଳେ ସେଠାରେ ଉପସ୍ଥିତ ନ ଥିଲେ । ଉପସ୍ଥିତ ପଣ୍ଡିତଗଣ ନିଜ ନିଜ ଶାସ୍ତ୍ରଜ୍ଞାନ ଓ ବୋଧହୁଏ ଅଭିରୁଚି ସହାୟରେ କେହି ଜଣେ ଦେବତାଙ୍କୁ, ପୁଣି କେହି ବା ଅନ୍ୟ ଦେବତାଙ୍କୁ ବଡ଼ ବୋଲି କହିବାରୁ ବିଷମ କୋଳାହଳ ସୃଷ୍ଟି ହେଲା । ଏହି ପ୍ରକାରରେ ଶୈବ ଓ ବୈଷ୍ଣବ ଉଭୟ ପକ୍ଷରେ ଦ୍ୱନ୍ଦ୍ୱ ହିଁ ଚାଲିବାକୁ ଲାଗିଲା, କିନ୍ତୁ କଥାଟିର ଏକ ସୁମୀମାଂସା ହୋଇପାରିଲା ନାହିଁ । ତେଣୁ ପ୍ରଧାନ ସଭାପଣ୍ଡିତଙ୍କୁ ତାହା ମୀମାଂସା କରିବା ପାଇଁ ଡକା ହେଲା । ପଣ୍ଡିତ ପଦ୍ମଲୋଚନ ସଭାରେ ଉପସ୍ଥିତ ହୋଇ ପ୍ରଶ୍ନ ଶୁଣି କହିଲେ— ''ମୋର ଚଉଦ ପୁରୁଷରେ କେହି ଶିବଙ୍କୁ କେବେ ଦେଖି ନାହିଁ, ବିଷ୍ଣୁଙ୍କୁ ମଧ୍ୟ କେବେ ଦେଖି ନାହିଁ; ତେଣୁ କିଏ ବଡ଼ କିଏ ଛୋଟ, କିପରି କହିବି ? ତେବେ ଶାସ୍ତ୍ର କଥା ଯଦି ଶୁଣିବାକୁ ଚାହଁ ତେବେ କହିବାକୁ ହେବ ଯେ, ଶୈବଶାସ୍ତ୍ରରେ ଶିବଙ୍କୁ ବଡ଼ କରିଛନ୍ତି ଏବଂ ବୈଷ୍ଣବଶାସ୍ତ୍ରରେ ବିଷ୍ଣୁଙ୍କୁ ବଡ଼ କରାଯାଇଛି; ଅତଏବ ଯାହାର ଯିଏ ଇଷ୍ଟ, ତାପାଖରେ ସେହି ଦେବତା ହିଁ ଅନ୍ୟ ସମସ୍ତ ଦେବତାଙ୍କ ଅପେକ୍ଷା ବଡ଼ ।'' ଏହା କହି ପଣ୍ଡିତଜୀ ଶିବ ଓ ବିଷ୍ଣୁ ଉଭୟଙ୍କର ହିଁ ଅନ୍ୟଦେବତାଙ୍କଠାରୁ ପ୍ରାଧାନ୍ୟସୂଚକ ଶ୍ଳୋକଗୁଡ଼ିକୁ ପ୍ରମାଣ ସ୍ୱରୂପ ଉଦ୍ଧୃତ କରି ଉଭୟଙ୍କୁ ସମାନ ବଡ଼ ବୋଲି ସିଦ୍ଧାନ୍ତ କଲେ । ପଣ୍ଡିତଜୀଙ୍କର ଏପରି ସିଦ୍ଧାନ୍ତରେ ସେତେବେଳେ ବିବାଦ ତୁଟିଗଲା ଏବଂ ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କହିବାକୁ ଲାଗିଲେ । ପଣ୍ଡିତଜୀଙ୍କର ସେହିପ୍ରକାର ଆଡ଼ମ୍ବରଶୂନ୍ୟ ସରଳ ଶାସ୍ତ୍ରଜ୍ଞାନ ଓ ସ୍ପଷ୍ଟବାଦିତ୍ୱରେ ହିଁ ତାଙ୍କର ପ୍ରତିଭାର ପରିଚୟ ଆମେ ବିଲକ୍ଷଣ ପାଇଥାଉ ଏବଂ ତାଙ୍କର ଏତେ ସୁନାମ ଓ ପ୍ରସିଦ୍ଧି ଯେ କାହିଁକି ହୋଇଥିଲା, ତାହାର କାରଣ ବୁଝିପାରୁ ।

### ପଣ୍ଡିତଙ୍କର ଈଶ୍ୱରାନୁରାଗ :

ଶବ୍ଦଜାଲରୂପକ ମହାରଣ୍ୟରେ ବହୁଦୂର ପରିଭ୍ରମଣ କରିଥିଲେ ବୋଲି ହିଁ ଯେ ପଣ୍ଡିତ ମହାଶୟଙ୍କର ଏତେ ସୁଖ୍ୟାତି ହୋଇଥିଲା ତାହା ନୁହେଁ । ଲୋକମାନେ ଦୈନନ୍ଦିନ ଜୀବନରେ ମଧ୍ୟ ତାଙ୍କଠାରେ ସଦାଚାର, ଇଷ୍ଟନିଷ୍ଠା, ତପସ୍ୟା, ଉଦାରତା, ନିର୍ଲିପ୍ତତା ପ୍ରଭୃତି ସଦ୍‌ଗୁଣରାଶିର ପୁନଃପୁନଃ ପରିଚୟ ପାଇ ତାଙ୍କୁ ଜଣେ ବିଶିଷ୍ଟ ସାଧକ ବା ଈଶ୍ୱର-ପ୍ରେମିକ ବୋଲି ମାନିନେଇଥିଲେ । ଯଥାର୍ଥ ପାଣ୍ଡିତ୍ୟ ଓ ଗଭୀର ଈଶ୍ୱରଭକ୍ତିର ଏକତ୍ର ସମାବେଶ ସଂସାରରେ ଦୁର୍ଲଭ; ଅତଏବ ତଦୁଭୟ କେଉଁଠି ଏକତ୍ର ପାଇଲେ ଲୋକମାନେ ସେହି ବ୍ୟକ୍ତି ପ୍ରତି ବିଶେଷ ଆକୃଷ୍ଟ ହୁଅନ୍ତି । ତେଣୁ ଲୋକଙ୍କ ମୁହଁରୁ ତାଙ୍କ ବିଷୟରେ ଶୁଣି ଠାକୁରଙ୍କର ସେହି ସୁପୁରୁଷଙ୍କୁ ଯେ ଦେଖିବାକୁ ଇଚ୍ଛା ହେବ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଠାକୁରଙ୍କ ମନରେ ଯେବେ ଏପରି ଇଚ୍ଛାର ଉଦୟ ହେଲା, ସେତେବେଳେ ପଣ୍ଡିତଜୀ ପ୍ରୌଢ଼ାବସ୍ଥା ପ୍ରାୟ ଅତିକ୍ରମ କରିଥିଲେ ଏବଂ ବର୍ଦ୍ଧମାନ-ରାଜଦରବାରରେ ଅନେକଦିନରୁ ସସମ୍ମାନରେ ନିଯୁକ୍ତ ରହିଥିଲେ ।

### ଠାକୁରଙ୍କର ମନର ସ୍ୱଭାବ ଓ ପଣ୍ଡିତଙ୍କର କଲିକତା ଆଗମନ :

ଠାକୁରଙ୍କ ମନରେ ଯେତେବେଳେ ଯେଉଁ କାର୍ଯ୍ୟ କରିବାକୁ ଇଚ୍ଛା ହେଉଥିଲା, ତତ୍‌କ୍ଷଣାତ୍ ତାହା ସମ୍ପନ୍ନ କରିବା ପାଇଁ ସେ ବାଳକ ପରି ବ୍ୟସ୍ତ ହୋଇଉଠୁଥିଲେ । 'ଜୀବନ କ୍ଷଣସ୍ଥାୟୀ, ଯାହା କରିବାର ଶୀଘ୍ର କରିନିଅ'— ବାଲ୍ୟକାଳରୁ ମନକୁ ସେହି କଥା ବୁଝାଇ ତୀବ୍ର ଅନୁରାଗରେ ସକଳ କାର୍ଯ୍ୟ କରିବା ଫଳରେ ହିଁ ବୋଧହୁଏ ଠାକୁରଙ୍କର ମନର ସେପ୍ରକାର ସ୍ୱଭାବ ହୋଇଯାଇଥିଲା । ପୁଣି ଏକନିଷ୍ଠା ଓ ଏକାଗ୍ରତା-ଅଭ୍ୟାସ ଫଳରେ ଯେ ମନ ସେପ୍ରକାର ସ୍ୱଭାବସମ୍ପନ୍ନ ହୋଇଥାଏ, ଏକଥା ଅଳ୍ପ ଚିନ୍ତାରେ ହିଁ ବୁଝି ହୁଏ । ସେ ଯାହାହେଉ, ଠାକୁରଙ୍କ ବ୍ୟସ୍ତତା ଦେଖି ମଥୁରାନାଥ ତାଙ୍କୁ ବର୍ଦ୍ଧମାନ ପଠାଇବାକୁ ସଂକଳ୍ପ କରୁଛନ୍ତି, ଏପରି ସମୟରେ ସମ୍ବାଦ ମିଳିଲା, ପଣ୍ଡିତ ପଦ୍ମଲୋଚନଙ୍କ ଦେହ ବହୁଦିନ ଧରି ଅସୁସ୍ଥ ହେବାରୁ ତାଙ୍କୁ ଆଡ଼ିୟାଦହ ନିକଟ ଗଙ୍ଗାତୀରବର୍ତ୍ତୀ ଏକ ବଗିଚାରେ ବାୟୁ-ପରିବର୍ତ୍ତନ ପାଇଁ ଆଣି ରଖାହୋଇଛି ଏବଂ ଗଙ୍ଗାର ନିର୍ମଳ ବାୟୁ-ସେବନରେ ତାଙ୍କ ଶରୀର ମଧ୍ୟ ପୂର୍ବାପେକ୍ଷା କିଛିଟା ଭଲ ଅଛି । ସମ୍ବାଦ ଠିକ୍ ନା ନାହିଁ, ଜାଣିବା ପାଇଁ ହୃଦୟଙ୍କୁ ପଠାଗଲା । ହୃଦୟ ଫେରି ଆସି କହିଲେ ଯେ, ତାହା ଠିକ୍ କଥା; ପଣ୍ଡିତଜୀ ମଧ୍ୟ ଠାକୁରଙ୍କ କଥା ଶୁଣି ତାଙ୍କୁ ଦେଖିବାପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଛନ୍ତି ଏବଂ ହୃଦୟଙ୍କୁ ତାଙ୍କର ଆତ୍ମୀୟ ଜାଣି ବିଶେଷ ସମାଦର କରିଛନ୍ତି । ତା' ପରେ ଦିନ ସ୍ଥିର ହେଲା । ଠାକୁର ପଣ୍ଡିତ ମହାଶୟଙ୍କୁ ଦେଖିବାକୁ ଗଲେ । ହୃଦୟ ତାଙ୍କ ସହିତ ଗଲେ ।

## ପଣ୍ଡିତଙ୍କର ଠାକୁରଙ୍କୁ ପ୍ରଥମ ଦର୍ଶନ :

ହୃଦୟ କହୁଥିଲେ, ପ୍ରଥମ ମିଳନରୁ ହିଁ ଠାକୁର ଓ ପଣ୍ଡିତଜୀ ପରସ୍ପରର ଦର୍ଶନରେ ବିଶେଷ ପ୍ରୀତିଲାଭ କରିଥିଲେ । ଠାକୁର ତାଙ୍କୁ ଅମାୟିକ, ଉଦାର-ସ୍ୱଭାବ, ସୁପଣ୍ଡିତ ଓ ସାଧକ ବୋଲି ଜାଣିପାରିଥିଲେ; ଏବଂ ପଣ୍ଡିତଜୀ ମଧ୍ୟ ଠାକୁରଙ୍କୁ ଅଦ୍ଭୁତ ଆଧ୍ୟାତ୍ମିକ ଅବସ୍ଥାରେ ଉପନୀତ ମହାପୁରୁଷ ବୋଲି ଧାରଣା କରିଥିଲେ । ଠାକୁରଙ୍କର ସୁମଧୁର କଣ୍ଠରେ ମା'ଙ୍କର ସଙ୍ଗୀତ ଶୁଣି ପଣ୍ଡିତଜୀ ଅଶ୍ରୁ-ସମ୍ବରଣ କରିପାରି ନ ଥିଲେ ଏବଂ ସମାଧିରେ ମୁହୁର୍ମୁହୁଃ ବାହ୍ୟଚୈତନ୍ୟର ଲୋପ ହେବା ଦେଖି ଏବଂ ସେହି ଅବସ୍ଥାରେ ଠାକୁରଙ୍କର କିପରି ଉପଲବ୍ଧିସମୂହ ହୁଏ, ସେସମସ୍ତ କଥାଶୁଣି ପଣ୍ଡିତଜୀ ନିର୍ବାକ୍ ହୋଇଯାଇଥିଲେ । ଶାସ୍ତ୍ରଜ୍ଞ ପଣ୍ଡିତ, ଶାସ୍ତ୍ରରେ ଲିପିବଦ୍ଧ ଆଧ୍ୟାତ୍ମିକ ଅବସ୍ଥାସକଳ ସହିତ ଠାକୁରଙ୍କ ଅବସ୍ଥା ମିଳାଇ ନେବାକୁ ଯେ ଚେଷ୍ଟା କରିଥିଲେ, ତାହା ଆମେ ବେଶ୍ ବୁଝିପାରୁଛୁ । କିନ୍ତୁ ସେପରି କରିବାକୁ ଯାଇ ସେ ଯେ ସେଦିନ ଦ୍ୱନ୍ଦ୍ୱରେ ପଡ଼ିଥିଲେ ଏବଂ କୌଣସି ଏକ ବିଶେଷ ସିଦ୍ଧାନ୍ତରେ ଉପନୀତ ହୋଇପାରି ନ ଥିଲେ ଏହା ମଧ୍ୟ ସୁନିଶ୍ଚିତ । କାରଣ ଠାକୁରଙ୍କର ଚରମ ଉପଲବ୍ଧିସମୂହ ଶାସ୍ତ୍ରରେ ଲିପିବଦ୍ଧ ଦେଖି ନ ପାରି ସେ ଶାସ୍ତ୍ରର କଥା ସତ୍ୟ ଅଥବା ଠାକୁରଙ୍କ ଉପଲବ୍ଧି ସତ୍ୟ, ତାହା ସ୍ଥିର କରିପାରି ନ ଥିଲେ । ଅତଏବ ଶାସ୍ତ୍ରଜ୍ଞାନ ଓ ନିଜର ତୀକ୍ଷ୍ଣବୁଦ୍ଧି ସହାୟରେ ଆଧ୍ୟାତ୍ମିକ ସର୍ବବିଷୟରେ ସର୍ବଦା ସ୍ଥିର-ସିଦ୍ଧାନ୍ତରେ ଉପନୀତ ପଣ୍ଡିତଜୀଙ୍କର ବିଚାରଶୀଳ ମନ ଠାକୁରଙ୍କ ସହିତ ପରିଚୟରେ ଆଲୋକ ଭିତରେ ଏକ ଅନ୍ଧକାରର ଛାୟାପରି ଅପୂର୍ବ ଆନନ୍ଦ ମଧ୍ୟରେ ଗୋଟିଏ ଅଶାନ୍ତିର ଭାବ ଉପଲବ୍ଧି କରିଥିଲା ।

## ପଣ୍ଡିତଙ୍କର ଭକ୍ତି-ଶ୍ରଦ୍ଧା ବୃଦ୍ଧିର କାରଣ :

ପ୍ରଥମ ପରିଚୟର ଏହି ପ୍ରୀତି ଓ ଆକର୍ଷଣରେ ଠାକୁର ଏବଂ ପଣ୍ଡିତଜୀ ଆହୁରି କେତେ ଥର ଏକତ୍ର ମିଳିତ ହୋଇଥିଲେ ଏବଂ ତାହା ଫଳରେ ପଣ୍ଡିତଜୀଙ୍କର ଠାକୁରଙ୍କର ଆଧ୍ୟାତ୍ମିକ ଅବସ୍ଥା ବିଷୟକ ଧାରଣା ଅପୂର୍ବ ଗଭୀର ଭାବ ପ୍ରାପ୍ତ ହୋଇଥିଲା । ପଣ୍ଡିତ ମହାଶୟଙ୍କର ସେପରି ଦୃଢ଼ ଧାରଣା ହେବାର ଆଉ ଏକ ବିଶେଷ କାରଣ ମଧ୍ୟ ଆମେ ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛୁ ।

ପଣ୍ଡିତ ପଦ୍ମଲୋଚନ ବେଦାନ୍ତୋକ୍ତ ଜ୍ଞାନବିଚାର ସହିତ ତନ୍ତ୍ରୋକ୍ତ ସାଧନ ପ୍ରଣାଳୀର ଅନୁଷ୍ଠାନ ବହୁକାଳ କରିଆସିଥିଲେ; ଏବଂ ସେହି ପ୍ରକାର ଅନୁଷ୍ଠାନର ଫଳ ମଧ୍ୟ କିଛି କିଛି ଜୀବନରେ ପ୍ରତ୍ୟକ୍ଷ କରିଥିଲେ । ଠାକୁର କହୁଥିଲେ, ଜଗଦମ୍ବା ତାଙ୍କୁ ପଣ୍ଡିତ ମହାଶୟଙ୍କ ସାଧନଲବ୍ଧ ଶକ୍ତି ସମ୍ବନ୍ଧରେ ଗୋଟିଏ ଗୋପନୀୟ କଥା ସେହି ସମୟରେ ଜଣାଇ ଦେଇଥିଲେ । ଠାକୁର ଜାଣିପାରିଥିଲେ, ସାଧନାରେ ପ୍ରସନ୍ନା ହୋଇ ପଣ୍ଡିତଜୀଙ୍କର ଇଷ୍ଟଦେବୀ ତାଙ୍କୁ ବରପ୍ରଦାନ କରିଛନ୍ତି ବୋଲି ହିଁ

ସେ ଏତେକାଳ ଧରି ଅଗଣ୍ୟ ପଣ୍ଡିତସଭାରେ ଅପର ସମସ୍ତଙ୍କ ଅଜେୟ ହୋଇ ନିଜର ପ୍ରାଧାନ୍ୟ ଅକ୍ଷୁଣ୍ଣ ରଖିପାରିଥିଲେ ! ପଣ୍ଡିତଜୀଙ୍କ ପାଖରେ ସର୍ବଦା ଗୋଟିଏ ଜଳପୂର୍ଣ୍ଣ ଗଡୁ ଓ ଗୋଟିଏ ଗାମୁଛା ଥାଏ; ଏବଂ କୌଣସି ପ୍ରଶ୍ନର ମୀମାଂସାରେ ଆଗେଇବା ପୂର୍ବରୁ ଏହାକୁ ହସ୍ତରେ ନେଇ ଇତସ୍ତତଃ କେଇପଦ ପରିଭ୍ରମଣ କରି ଆସି ମୁଖପ୍ରକ୍ଷାଳନ ଓ କୁଲୁକୁଞ୍ଚା କରି ସେହି କାର୍ଯ୍ୟରେ ପ୍ରବୃତ୍ତ ହେବା ଆବହମାନ କାଳରୁ ତାଙ୍କର ରୀତି ଥିଲା । ତାଙ୍କର ସେହି ରୀତି ବା ଅଭ୍ୟାସର କାରଣ ଅନୁସନ୍ଧାନ କରିବାକୁ କାହାରି କେବେ କୌତୁହଳ ହୋଇ ନାହିଁ ଏବଂ ଏହାର ଯେ କୌଣସି ନିଗୂଢ଼ କାରଣ ଅଛି, ତାହା କେହି କେବେ କଳ୍ପନା ମଧ୍ୟ କରି ନ ଥିଲେ । ତାଙ୍କର ଇଷ୍ଟଦେବୀଙ୍କର ଆଦେଶ ଅନୁସାରେ ହିଁ ଯେ ସେ ସେପରି କରନ୍ତି ଏବଂ ତାହା କଲେ ହିଁ ଯେ ସେଥିରେ ତାଙ୍କର ଶାସ୍ତ୍ରଜ୍ଞାନ, ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତି ଦୈବବଳରେ ସମ୍ୟକ୍ ଜାଗରିତ ହୋଇଉଠି ତାଙ୍କୁ ଅନ୍ୟମାନଙ୍କ ସମ୍ମୁଖରେ ଅଜେୟ କରି ତୋଳୁଥିଲା, ପଣ୍ଡିତଜୀ ଏକଥା କାହା ନିକଟରେ—ଏପରିକି ନିଜ ସହଧର୍ମିଣୀଙ୍କ ନିକଟରେ ମଧ୍ୟ କେବେହେଲେ ପ୍ରକାଶ କରି ନ ଥିଲେ । ପଣ୍ଡିତ ମହାଶୟଙ୍କର ଇଷ୍ଟଦେବୀ ତାଙ୍କୁ ସେପରି କରିବାକୁ ନିଭୃତରେ ପ୍ରାଣେ ପ୍ରାଣେ କହିଦେଇଥିଲେ ଏବଂ ସେ ମଧ୍ୟ ତଦବିଧି ଏତେକାଳ ଧରି ତାହା ଅକ୍ଷୁଣ୍ଣଭାବରେ ପାଳନ କରି ଅନ୍ୟମାନଙ୍କର ଅଜ୍ଞାତସାରରେ ତାହାର ଫଳ ପ୍ରତ୍ୟକ୍ଷ କରୁଥିଲେ ।

### ଠାକୁରଙ୍କର ପଣ୍ଡିତ ମହାଶୟଙ୍କର ସିଦ୍ଧି ଜାଣିପାରିବା :

ଠାକୁର କହୁଥିଲେ—ଜଗଦମ୍ବାଙ୍କ କୃପାରୁ ସେହି ବିଷୟ ଜାଣିପାରି ସେ ସୁଯୋଗ ଦେଖି ଦିନେ ପଣ୍ଡିତଙ୍କର ଗଡୁ ଓ ଗାମୁଛା ତାଙ୍କର ଅଜ୍ଞାତସାରରେ ଲୁଚାଇ ରଖିଲେ ଏବଂ ପଣ୍ଡିତଜୀ ମଧ୍ୟ ତାହା ଅଭାବରୁ ଉପସ୍ଥିତ ପ୍ରଶ୍ନର ମୀମାଂସାରେ ପ୍ରବୃତ୍ତ ହୋଇ ନ ପାରି ତାହାର ଅନ୍ୱେଷଣରେ ବ୍ୟସ୍ତ ରହିଲେ । ପରେ ଯେତେବେଳେ ଜାଣିପାରିଲେ ଠାକୁର ସେପରି କରିଛନ୍ତି ସେତେବେଳେ ପଣ୍ଡିତଜୀଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ! ପରେ ଯେତେବେଳେ ବୁଝିଲେ ଠାକୁର ସମସ୍ତ କଥା ଜାଣିଶୁଣି ସେପରି କରିଛନ୍ତି, ସେତେବେଳେ ପଣ୍ଡିତଜୀ ଆଉ ରହି ନ ପାରି ତାଙ୍କୁ ସାକ୍ଷାତ୍ ନିଜର ଇଷ୍ଟଜ୍ଞାନରେ ସଜଳ ନୟନରେ ସ୍ତବସ୍ତୁତି କରିଥିଲେ । ସେହି ଦିନଠାରୁ ପଣ୍ଡିତ ମହାଶୟ ଠାକୁରଙ୍କୁ ସାକ୍ଷାତ୍ ଈଶ୍ୱରାବତାର ବୋଲି ଜ୍ଞାନ ଓ ତଦ୍ରୂପ ଭକ୍ତି କରୁଥିଲେ । ଠାକୁର କହୁଥିଲେ, ''ପଦ୍ମଲୋଚନ ଏତେ ବଡ଼ ପଣ୍ଡିତ ହୋଇ ମଧ୍ୟ ଏଠାରେ (ମୋତେ) ଏତେ ବିଶ୍ୱାସ ଓ ଭକ୍ତି କରୁଥିଲେ ! କହିଥିଲେ—'ମୁଁ ଆରୋଗ୍ୟ ଲାଭ କରି ସମସ୍ତ ପଣ୍ଡିତଙ୍କୁ ଡାକି ସଭା କରି ସମସ୍ତଙ୍କୁ କହିବି, ତୁମେ ଈଶ୍ୱରାବତାର; ମୋ କଥା କିଏ କାଟିପାରିବ ଦେଖିବି ।' ମଥୁରବାବୁ (ଅରେ ଅନ୍ୟ କାରଣରୁ) ଅନେକ ପଣ୍ଡିତମାନଙ୍କୁ ଡାକି

ଦକ୍ଷିଣେଶ୍ୱରରେ ଏକ ସଭାର ଆୟୋଜନ କରିଥିଲେ । ପଦ୍ମଲୋଚନ ନିର୍ଲୋଭ ଅଶୂଦ୍ରପ୍ରତିଗ୍ରାହୀ ନିଷ୍ଠାଚାରୀ ବ୍ରାହ୍ମଣ; ସଭାକୁ ଆସିବେ ନାହିଁ ଭାବି ଆସିବା ନିମିତ୍ତ ଅନୁରୋଧ କରିବାକୁ କହିଥିଲେ ! ମଥୁରଙ୍କ କଥାରେ ତାଙ୍କୁ ପଚାରିଲି—'ହଁ ଗୋ, ତୁମେ ଦକ୍ଷିଣେଶ୍ୱର ଯିବ ନାହିଁ ?' ଏକଥାରେ ସେ କହିଥିଲେ, 'ତୁମ ସହିତ ହାଡ଼ି ଘରକୁ ଯାଇ ଭୋଜନ କରିଆସିପାରେ ! କୈବର୍ତ୍ତ ଘରେ ସଭାକୁ ଯିବି, ଏହା ଆଉ କ'ଣ ବଡ଼ କଥା !''

**ପଣ୍ଡିତ ମହାଶୟଙ୍କର କାଶୀଧାମରେ ଦେହରକ୍ଷା :**

ମଥୁରବାବୁଙ୍କର ଆହୂତ ସଭାକୁ କିନ୍ତୁ ପଣ୍ଡିତଜୀ ମହାଶୟଙ୍କୁ ଯିବାକୁ ପଡ଼ି ନାହିଁ । ସଭା ଆହୂତ ହେବା ପୂର୍ବରୁ ତାଙ୍କର ଶାରୀରିକ ଅସୁସ୍ଥତା ବିଶେଷ ବୃଦ୍ଧି ପାଇବାରୁ ସେ ଠାକୁରଙ୍କ ନିକଟରୁ ସଜଳନୟନରେ ବିଦାୟ ଗ୍ରହଣ କରି କାଶୀଧାମ ଗମନ କଲେ । ଶୁଣାଯାଏ, ସେଠାରେ ଅଳ୍ପକାଳ ପରେ ହିଁ ତାଙ୍କର ଶରୀର ତ୍ୟାଗ ହୋଇଥିଲା ।

ଏହାର ବହୁଦିନ ପରେ ଠାକୁରଙ୍କର କଲିକତାର ଭକ୍ତମାନେ ଯେତେବେଳେ ତାଙ୍କର ଶ୍ରୀଚରଣପ୍ରାନ୍ତରେ ଆଶ୍ରୟ ନେଇଛନ୍ତି ଏବଂ ଭକ୍ତିର ଉତ୍ତେଜନାରେ ସେମାନଙ୍କ ମଧ୍ୟରୁ କେହି କେହି ଠାକୁରଙ୍କୁ ଈଶ୍ୱରାବତାର ବୋଲି ପ୍ରକାଶ୍ୟରେ ନିର୍ଦ୍ଦେଶ କରୁଛନ୍ତି, ସେତେବେଳେ ସେହି ଭକ୍ତମାନଙ୍କର ସେପରି ବ୍ୟବହାର ଜାଣିପାରି ଠାକୁର ସେମାନଙ୍କୁ ସେପରି କରିବାକୁ ନିଷେଧ କଲେ; କିନ୍ତୁ ଭକ୍ତିର ଆତିଶଯ୍ୟରେ ସେମାନେ ଏଥିରୁ ବିରତ ହେଲେ ନାହିଁ । କେତେଦିନ ପରେ ଏସମ୍ବାଦ ଶୁଣି ବିରକ୍ତ ହୋଇ ଦିନେ ଠାକୁର ଆମକୁ କହିଥିଲେ, ''କେହି ଡାକ୍ତରୀ କରେ, କେହି ଥିଏଟରର ମ୍ୟାନେଜରି କରେ, ଆଉ ଏଠାରେ ଆସି ଅବତାର କହୁଛନ୍ତି । ସେମାନେ ମନେ କରନ୍ତି 'ଅବତାର' କହି ମୋତେ ଖୁବ୍ ଉଠାଇଲେ— ବଡ଼ କଲେ ! କିନ୍ତୁ ଅବତାର କାହାକୁ କହନ୍ତି, ସେମାନେ ତାହା ବୁଝିଛନ୍ତି କି ? ଏମାନଙ୍କର ଏଠାକୁ ଆସିବାର ଓ ଅବତାର କହିବାର ଢେର ପୂର୍ବରୁ ପଦ୍ମଲୋଚନ ପରି କେତେ ଲୋକ—ଯେଉଁମାନେ ସାରାଜୀବନ ସେବିଷୟର ଚର୍ଚ୍ଚାରେ କାଳ କଟାଇଛନ୍ତି—କେହି ଛଅଟା ଦର୍ଶନରେ ପଣ୍ଡିତ, କେହି ତିନିଟା ଦର୍ଶନରେ ପଣ୍ଡିତ—ଏଠାକୁ ଆସି ଅବତାର କହିଯାଇଛନ୍ତି । ଅବତାର କୁହାହେବା ପ୍ରତି ତୁଚ୍ଛଜ୍ଞାନ ହୋଇଯାଇଛି । ଏମାନେ ଅବତାର କହି ଏଠାକାର (ମୋର) ଆଉ କ'ଣ ବଢ଼ାଇବେ କୁହ ?''

ପଦ୍ମଲୋଚନଙ୍କ ବ୍ୟତୀତ ଆହୁରି ଅନେକ ଖ୍ୟାତନାମା ପଣ୍ଡିତମାନଙ୍କ ସହିତ ଠାକୁରଙ୍କର ସମୟ ସମୟରେ ସାକ୍ଷାତ ହୋଇଥିଲା । ସେମାନଙ୍କ ଭିତରେ ଠାକୁର ଯେଉଁ ସମସ୍ତ ବିଶେଷ ଗୁଣର ପରିଚୟ ପାଇଥିଲେ, କଥା ପ୍ରସଙ୍ଗରେ

ତାହା ମଧ୍ୟ ସେ ଆମମାନଙ୍କୁ ବେଳେ ବେଳେ କହୁଥିଲେ । ସେହିପରି କେତୋଟି କଥା ସଂକ୍ଷେପରେ ଏଠାରେ ଉଲ୍ଲେଖ କରିବୁ ।

**ଦୟାନନ୍ଦଙ୍କ ସମ୍ବନ୍ଧରେ ଠାକୁର :**

ଆର୍ଯ୍ୟମତ-ପ୍ରବର୍ତ୍ତକ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଥରେ ବଙ୍ଗଦେଶକୁ ଭ୍ରମଣରେ ଆସି କଲିକତାର ଉତ୍ତରରେ ବରାହନଗରର ସିଁତି ନାମକ ଗ୍ରାମରେ ଜନୈକ ଭଦ୍ରଲୋକଙ୍କ ଉଦ୍ୟାନରେ କିଛିକାଳ ବାସ କରିଥିଲେ । ସୁପଣ୍ଡିତ ବୋଲି ବିଶେଷ ପ୍ରସିଦ୍ଧି ଲାଭ କରିଥିଲେ ମଧ୍ୟ ସେପର୍ଯ୍ୟନ୍ତ ସେ ନିଜର ମତ ପ୍ରଚାର କରି ଦଳ ଗଠନ କରି ନ ଥିଲେ । ତାଙ୍କ କଥା ଶୁଣି ଠାକୁର ଦିନେ ସେହି ସ୍ଥାନରେ ତାଙ୍କୁ ଦେଖିବାକୁ ଯାଇଥିଲେ । ଦୟାନନ୍ଦଙ୍କ କଥାପ୍ରସଙ୍ଗରେ ଠାକୁର ଆମକୁ ଦିନେ କହିଥିଲେ, ''ସିଁତିର ଉଦ୍ୟାନରେ ତାଙ୍କୁ ଦେଖିବାକୁ ଗଲି; ଦେଖିଲି, ଟିକିଏ ଶକ୍ତି ହୋଇଛି; ଛାତିଟା ସର୍ବଦା ଲାଲ୍ ହୋଇରହିଛି; ବୈଖରୀ ଅବସ୍ଥା — ଦିନରାତି ଚବିଶଘଣ୍ଟା ହିଁ କଥା (ଶାସ୍ତ୍ରକଥା) କହୁଛି; ବ୍ୟାକରଣ ଲଗାଇ ଅନେକ କଥାର (ଶାସ୍ତ୍ରବାକ୍ୟର) ଅର୍ଥ ସବୁ ଓଲଟା-ପାଲଟା କରିବାକୁ ଲାଗିଲେ; ନିଜେ କିଛି ଗୋଟାଏ କରିବି, ଗୋଟେ ମତ ଚଳାଇବି — ଏପରି ଅହଂକାର ଭିତରେ ରହିଛି !''

**ଜୟନାରାୟଣ ପଣ୍ଡିତ :**

ଜୟନାରାୟଣ ପଣ୍ଡିତଙ୍କ କଥାରେ ଠାକୁର କହୁଥିଲେ, ''ଏତେ ବଡ଼ ପଣ୍ଡିତ, କିନ୍ତୁ ଅହଂକାର ନ ଥିଲା; ନିଜର ମୃତ୍ୟୁ କଥା ଜାଣି ପାରି କହିଥିଲେ, କାଶୀ ଯିବେ ଓ ସେଠାରେ ଦେହରକ୍ଷା କରିବେ — ତାହା ହିଁ ହୋଇଥିଲା ।''

**ରାମଭକ୍ତ କୃଷ୍ଣକିଶୋର :**

ଆଡ଼ିଆଦହ-ନିବାସୀ କୃଷ୍ଣକିଶୋର ଭଟ୍ଟାଚାର୍ଯ୍ୟଙ୍କର ଶ୍ରୀରାମଚନ୍ଦ୍ରଙ୍କଠାରେ ପରମ ଭକ୍ତିର କଥା ଠାକୁର ଅନେକ ସମୟରେ ଉଲ୍ଲେଖ କରୁଥିଲେ । କୃଷ୍ଣକିଶୋରଙ୍କର ଘରକୁ ଠାକୁରଙ୍କର ଯିବା ଆସିବା ଥିଲା ଏବଂ ତାଙ୍କର ପରମ ଭକ୍ତିମତୀ ସହଧର୍ମିଣୀ ମଧ୍ୟ ଠାକୁରଙ୍କୁ ବିଶେଷ ଭକ୍ତି କରୁଥିଲେ । ରାମନାମରେ ଭକ୍ତିର ତ' କଥା ହିଁ ନାହିଁ, ଠାକୁର କହୁଥିଲେ, କୃଷ୍ଣକିଶୋର 'ମରା' 'ମରା' ଶବ୍ଦଟିକୁ ମଧ୍ୟ ଋଷିପ୍ରଦତ୍ତ ମହାମନ୍ତ୍ର ଜ୍ଞାନରେ ବିଶେଷ ଭକ୍ତି କରୁଥିଲେ । କାରଣ, ପୁରାଣରେ ଲିଖିତ ଅଛି, ସେହି ଶବ୍ଦ ହିଁ ମନ୍ତ୍ରରୂପରେ ନାରଦ ଋଷି ଦସ୍ୟୁ ବାଲ୍ମୀକିଙ୍କୁ ଦେଇଥିଲେ ଏବଂ ଏହାର ବାରମ୍ବାର ଭକ୍ତିପୂର୍ବକ ଉଚ୍ଚାରଣ ଫଳରେ ହିଁ ବାଲ୍ମୀକିଙ୍କ

ମନରେ ଶ୍ରୀରାମଚନ୍ଦ୍ରଙ୍କର ଅପୂର୍ବ ଲୀଳାର ସ୍ଫୂର୍ତ୍ତି ହୋଇ ତାଙ୍କୁ ରାମାୟଣପ୍ରଣେତା କବି କରାଇଥିଲା । କୃଷ୍ଣକିଶୋର ସଂସାରରେ ଶୋକତାପ ମଧ୍ୟ ଅନେକ ପାଇଥିଲେ । ତାଙ୍କର ଦୁଇଟି ଯୋଗ୍ୟ ପୁତ୍ରଙ୍କର ମୃତ୍ୟୁ ହୋଇଥିଲା । ଠାକୁର କହୁଥିଲେ, ପୁତ୍ରଶୋକର ଏପରି ପ୍ରଭାବ, ଏତେ ବଡ଼ ବିଶ୍ୱାସୀ ଭକ୍ତ କୃଷ୍ଣକିଶୋର ମଧ୍ୟ ତାହା ପ୍ରଥମେ ପ୍ରଥମେ ସମ୍ଭାଳି ନ ପାରି ଆତ୍ମହରା ହୋଇଥିଲେ ।

ପୂର୍ବୋକ୍ତ ସାଧକଗଣଙ୍କ ବ୍ୟତୀତ ଠାକୁର ମହର୍ଷି ଦେବେନ୍ଦ୍ରନାଥ, ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତିଙ୍କୁ ମଧ୍ୟ ଦେଖିବାକୁ ଯାଇଥିଲେ; ଏବଂ ମହର୍ଷିଙ୍କର ଉଦାରଭକ୍ତି ଓ ଈଶ୍ୱରଚନ୍ଦ୍ରଙ୍କର କର୍ମଯୋଗପରାୟଣତା କଥା ଆମ ନିକଟରେ ବେଳେ ବେଳେ ଉଲ୍ଲେଖ କରୁଥିଲେ ।

# ତୃତୀୟ ଅଧ୍ୟାୟ

## ଗୁରୁଭାବରେ ତୀର୍ଥଭ୍ରମଣ ଓ ସାଧୁସଙ୍ଗ

ଯଦ୍ ଯଦ୍ ବିଭୂତିମତ୍ ସତ୍ତ୍ୱଂ ଶ୍ରୀମଦୂର୍ଜିତମେବ ବା ।
ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଂଽଶସମ୍ଭବମ୍ ।। - ଗୀତା ୧୦/୪୧

### ଅନ୍ୟ ଆଚାର୍ଯ୍ୟ-ପୁରୁଷମାନଙ୍କ ସହିତ ତୁଳନାରେ ଠାକୁରଙ୍କ ଜୀବନରେ ଅଦ୍ଭୁତ ନୂତନତ୍ୱ :

ଗୁରୁଭାବର ପ୍ରେରଣାରେ ଭାବମୁଖରେ ଅବସ୍ଥିତ ଠାକୁର କେତେ ସ୍ଥାନରେ କେତେ ଲୋକଙ୍କ ସହିତ କେତେ ପ୍ରକାରରେ ଯେ ଲୀଳା କରିଥିଲେ ତାହା ସମୁଦାୟ ଲିପିବଦ୍ଧ କରିବା କାହାରି ଆୟତ୍ତସାଧ୍ୟ ନୁହେଁ । ତାହାର କିଛି କିଛି ଘଟଣା ଏହାପୂର୍ବରୁ ଆମେ ପାଠକଙ୍କୁ ଜଣାଇଛୁ । ଠାକୁରଙ୍କର ତୀର୍ଥଭ୍ରମଣ ମଧ୍ୟ ସେହି ଭାବରେ ହିଁ ହୋଇଥିଲା । ଏବେ ଆମେ ପାଠକଙ୍କୁ ତାହା ହିଁ କହିବାକୁ ଚେଷ୍ଟା କରିବୁ ।

ଆମେ ଯେତେଦୂର ଦେଖିଛୁ ଠାକୁରଙ୍କର କୌଣସି କାର୍ଯ୍ୟ ଉଦ୍ଦେଶ୍ୟହୀନ ବା ନିରର୍ଥକ ନ ଥିଲା । ତାଙ୍କ ଜୀବନରେ ବିଶେଷ ଘଟଣାଗୁଡ଼ିକର ତ' କଥା ହିଁ ନାହିଁ, ଅତି ସାମାନ୍ୟ ସାମାନ୍ୟ ଦୈନିକ ବ୍ୟବହାରଗୁଡ଼ିକର ପର୍ଯ୍ୟାଲୋଚନା କଲେ ମଧ୍ୟ ତାହା ଗଭୀର ଭାବପୂର୍ଣ୍ଣ ବୋଲି ଦେଖିବାକୁ ମିଳେ । ପୁଣି ଏପରି ଅଘଟଣ-ଘଟଣାବଳୀ-ପରିପୂର୍ଣ୍ଣ ଜୀବନ ବର୍ତ୍ତମାନ ଯୁଗରେ ଆଧ୍ୟାତ୍ମିକ ଜଗତରେ ଆଉ ଗୋଟିଏ ମଧ୍ୟ ଦେଖାଯାଇ ନାହିଁ । ଆଜୀବନ ତପସ୍ୟା ଓ ଚେଷ୍ଟା ଦ୍ୱାରା ଈଶ୍ୱରଙ୍କର ଅନନ୍ତ ଭାବରୁ କୌଣସି ଗୋଟିକର ସମ୍ୟକ୍ ଉପଲବ୍ଧି ମଣିଷ କରିପାରେ ନାହିଁ । ଏପରି ସ୍ଥିତିରେ ନାନାଭାବରେ ତାଙ୍କର ଉପଲବ୍ଧି ଓ ଦର୍ଶନ କରିବା— ସାଧନାସହାୟରେ ସମସ୍ତ ପ୍ରକାର ଧର୍ମମତ ସତ୍ୟ ବୋଲି ପ୍ରତ୍ୟକ୍ଷ କରିବା ଏବଂ ସକଳ ମତର ସାଧକମାନଙ୍କୁ ନିଜ ନିଜ ଗନ୍ତବ୍ୟ ପଥରେ ଅଗ୍ରସର ହେବାକୁ ସହାୟତା କରିବା କ'ଣ ସାଧାରଣ କଥା ! ଆଧ୍ୟାତ୍ମିକ ଜଗତରେ ଏପରି ଦୃଷ୍ଟାନ୍ତ ଦେଖିବା ଦୂରରେ ଥାଉ, କେବେ କ'ଣ ଶୁଣାଯାଇଛି ? ପ୍ରାଚୀନ ଯୁଗର ଋଷି ଆଚାର୍ଯ୍ୟ ବା ଅବତାର ମହାପୁରୁଷମାନେ ଗୋଟିଏ ଗୋଟିଏ ବିଶେଷ ବିଶେଷ ଭାବରୂପକ ପଥ ଅବଲମ୍ବନ କରି ସ୍ୱୟଂ ଈଶ୍ୱର ଉପଲବ୍ଧି କରି ସେହି ସେହି ଭାବକୁ ହିଁ ଈଶ୍ୱରଦର୍ଶନର ଏକମାତ୍ର ପଥ ବୋଲି ଘୋଷଣା କରିଥିଲେ; ଅପରାପର ନାନାଭାବ ଅବଲମ୍ବନରେ ମଧ୍ୟ ଯେ ଈଶ୍ୱର ଉପଲବ୍ଧି କରାଯାଇପାରେ, ଏକଥା ଉପଲବ୍ଧି କରିବାକୁ ଅବସର ପାଇ ନ ଥିଲେ । କିମ୍ବା ନିଜେ ସେହି ସତ୍ୟର ଅଳ୍ପବହୁତ ପ୍ରତ୍ୟକ୍ଷ କରିବାକୁ ସମର୍ଥ ହୋଇଥିଲେ ମଧ୍ୟ ତାହା ପ୍ରଚାର ଦ୍ୱାରା ଜନସାଧାରଣଙ୍କର ଇଷ୍ଟନିଷ୍ଠାର ଦୃଢ଼ତା କମି ଯାଇ ସେମାନଙ୍କର ଧର୍ମ ଉପଲବ୍ଧିର

ଅନିଷ୍ଟ ସାଧିତ ହେବ—ଏହା ଭାବି ସର୍ବସମକ୍ଷରେ ସେହି ବିଷୟର ଘୋଷଣା କରି ନାହାନ୍ତି । କିନ୍ତୁ ଯାହା ଭାବି ସେମାନେ ଏପରି କରିଥାଆନ୍ତୁ ନା କାହିଁକି, ସେମାନେ ଯେ ସେମାନଙ୍କର ଗୁରୁଭାବ-ସହାୟରେ ଏକଦେଶୀ ଧର୍ମମତସମୂହ ହିଁ ପ୍ରଚାର କରିଥିଲେ ଏବଂ ପରେ ତାହା ହିଁ ଯେ ମାନବମନରେ ଈର୍ଷାଦ୍ୱେଷ ଆଦିର ବିପୁଳ ପ୍ରସାର ଆନୟନ କରି ଅନେକ ବିବାଦ ଏବଂ ଅନେକ ସମୟରେ ରକ୍ତପାତର ମଧ୍ୟ କାରଣ ହୋଇଥିଲା, ଇତିହାସ ସେବିଷୟରେ ନିଃସନ୍ଦେହରେ ସାକ୍ଷ୍ୟ ଦେଉଅଛି ।

### ଠାକୁର ନିଜ ଜୀବନରେ କ'ଣ ପ୍ରମାଣ କରିଛନ୍ତି ଏବଂ ତାଙ୍କର ଉଦାର ମତ ଭବିଷ୍ୟତରେ କେତେଦୂର ପ୍ରସାରିତ ହେବ :

କେବଳ ସେତିକି ନୁହେଁ, ସେପ୍ରକାର ଏକଦେଶୀ ଧର୍ମଭାବ-ପ୍ରଚାରରେ ପରସ୍ପରବିରୋଧୀ ନାନା ମତର ଉତ୍ପତ୍ତି ହୋଇ ଈଶ୍ୱରଲାଭର ପଥକୁ ଏତେ ଜଟିଳ କରିଥିଲା ଯେ, ସେହି ଜଟିଳତା ଭେଦ କରି ସତ୍ୟସ୍ୱରୂପ ଈଶ୍ୱରଙ୍କର ଦର୍ଶନଲାଭ କରିବା ସମ୍ପୂର୍ଣ୍ଣ ଅସମ୍ଭବ ବୋଲି ସାଧାରଣ ବୁଦ୍ଧିରେ ପ୍ରତୀତ ହେଉଥିଲା ! ପୁଣି ଇହକାଳ-ବିଶ୍ୱାସୀ ଭୋଗସୁଖସର୍ବସ୍ୱ ପାଶ୍ଚାତ୍ୟର ଜଡ଼ବାଦ ସମୟ ଦେଖି ଦୁର୍ଦ୍ଦମନୀୟ ବେଗରେ ଶିକ୍ଷା ଭିତର ଦେଇ ଠାକୁରଙ୍କର ଆବିର୍ଭାବର କିଛିକାଳ ପୂର୍ବରୁ ଭାରତରେ ପ୍ରବିଷ୍ଟ ହୋଇ ସରଳମତି ବାଳକ ଓ ଯୁବକମାନଙ୍କର ମନ କଳୁଷିତ କରି ନାସ୍ତିକତା, ଭୋଗାନୁରାଗ ପ୍ରଭୃତି ନାନା ବୈଦେଶିକଭାବ ଦ୍ୱାରା ଦେଶ ପ୍ଲାବିତ କରୁଥିଲା । ପବିତ୍ରତା, ତ୍ୟାଗ ଓ ଈଶ୍ୱରାନୁରାଗର ଜ୍ୱଳନ୍ତ ନିଦର୍ଶନସ୍ୱରୂପ ଏହି ଅଲୌକିକ ଠାକୁରଙ୍କର ଆବିର୍ଭାବରେ ଧର୍ମ ପୁନରାୟ ପ୍ରତିଷ୍ଠିତ ନ ହୋଇଥିଲେ ଦୁର୍ଦ୍ଦଶା କେତେଦୂର ବଢ଼ି ଥାଆନ୍ତା ତାହା କିଏ କହିପାରିବ ? ଠାକୁର ସ୍ୱୟଂ ଅନୁଷ୍ଠାନ କରି ଦେଖାଇଲେ ଯେ, ଭାରତ ଏବଂ ଭାରତ ବ୍ୟତୀତ ଅନ୍ୟ ଦେଶରେ ପ୍ରାଚୀନ ଯୁଗରେ ଯେତେ ଋଷି, ଆଚାର୍ଯ୍ୟ, ଅବତାର ମହାପୁରୁଷମାନେ ଜନ୍ମଗ୍ରହଣ କରି ଯେତେ ପ୍ରକାର ଭାବରେ ଈଶ୍ୱର ଉପଲବ୍ଧି କରିଅଛନ୍ତି ଏବଂ ଧର୍ମଜଗତରେ ଈଶ୍ୱରଲାଭର ଯେତେ ପ୍ରକାର ମତ ପ୍ରଚାର କରିଯାଇଛନ୍ତି ତାହାର କୌଣସିଟି ହିଁ ମିଥ୍ୟା ନୁହେଁ—ପ୍ରତ୍ୟେକଟି ହିଁ ସମ୍ପୂର୍ଣ୍ଣ ସତ୍ୟ; ବିଶ୍ୱାସୀ ସାଧକ ସେହି ସେହି ପଥ ଅବଲମ୍ବନରେ ଅଗ୍ରସର ହୋଇ ଏବେ ସେମାନଙ୍କ ପରି ଈଶ୍ୱରଦର୍ଶନ କରି ଧନ୍ୟ ହୋଇପାରିବେ । —ଠାକୁର ଏହା ଦେଖାଇଲେ ଯେ, ପରସ୍ପରବିରୁଦ୍ଧ ସାମାଜିକ ଆଚାର, ରୀତିନୀତି ପ୍ରଭୃତି ନେଇ ଭାରତୀୟ ହିନ୍ଦୁ ଓ ମୁସଲମାନଙ୍କ ଭିତରେ ପର୍ବତ-ସଦୃଶ ବ୍ୟବଧାନ ଥିଲେ ମଧ୍ୟ ଉଭୟଙ୍କର ଧର୍ମ ହିଁ ସତ୍ୟ; ଉଭୟ ହିଁ ଏକ ଈଶ୍ୱରଙ୍କୁ ଭିନ୍ନ ଭିନ୍ନ ଭାବରେ ଉପାସନା କରି, ବିଭିନ୍ନ ପଥ ଦେଇ ଅଗ୍ରସର ହୋଇ, କାଳକ୍ରମେ ସେଇ ପ୍ରେମସ୍ୱରୂପଙ୍କ ସହିତ ପ୍ରେମରେ ଏକ ହୋଇଯାନ୍ତି ।

ସେ ଦେଖାଇଲେ ଯେ, ସେହି ସତ୍ୟର ମୂଳଦୁଆ ଉପରେ ଦଣ୍ଡାୟମାନ ହୋଇ ସେମାନେ ଉଭୟ ଉଭୟଙ୍କୁ ଏକ ସମୟରେ ସପ୍ରେମ ଆଲିଙ୍ଗନରେ ଆବଦ୍ଧ କରିବେ ଏବଂ ବହୁକାଳର ବିବାଦ ଭୁଲିଯାଇ ଶାନ୍ତିଲାଭ କରିବେ ।—ଏବଂ ଦେଖାଇଲେ ଯେ, କାଳକ୍ରମେ ଭୋଗଲୋଲୁପ ପାଶ୍ଚାତ୍ୟ ମଧ୍ୟ 'ତ୍ୟାଗରେ ହିଁ ଶାନ୍ତି'—ଏହି କଥା ହୃଦୟଙ୍ଗମ କରି ଈଶା-ପ୍ରଚାରିତ ଧର୍ମମତ ସହିତ ଭାରତ ଏବଂ ଅନ୍ୟାନ୍ୟ ଦେଶର ଋଷି ଏବଂ ଅବତାରଗଣଙ୍କ ଦ୍ୱାରା ପ୍ରଚାରିତ ଧର୍ମମତସମୂହର ସତ୍ୟତା ଉପଲବ୍ଧି କରି ନିଜ କର୍ମଜୀବନ ସହିତ ଧର୍ମଜୀବନର ସମ୍ବନ୍ଧ ଆନୟନ କରି ଧନ୍ୟ ହେବେ ! ଏହି ଅଦ୍ଭୁତ ଠାକୁରଙ୍କର ଜୀବନ ଆଲୋଚନାରେ ଆମେ ଯେତେ ଅଗ୍ରସର ହେବୁ ସେତେ ହିଁ ଦେଖିପାରିବୁ, ଇଏ ଦେଶବିଶେଷ, ଜାତିବିଶେଷ, ସମ୍ପ୍ରଦାୟବିଶେଷ ବା ଧର୍ମବିଶେଷର ସମ୍ପତ୍ତି ନୁହନ୍ତି । ପୃଥିବୀର ସମସ୍ତ ଜାତିକୁ ହିଁ ଦିନେ ଶାନ୍ତିଲାଭ ପାଇଁ ଏହାଙ୍କର ଉଦାରମତର ଆଶ୍ରୟ ଗ୍ରହଣ କରିବାକୁ ହେବ । ଭାବମୁଖରେ ଅବସ୍ଥିତ ଠାକୁର ଭାବରୂପରେ ସେମାନଙ୍କ ମଧ୍ୟରେ ପ୍ରବିଷ୍ଟ ହୋଇ ସମୁଦାୟ ସଙ୍କୀର୍ଣ୍ଣତାର ଗଣ୍ଠି ଭାଙ୍ଗିଚୂରି ତାଙ୍କର ନୂତନ ଛାଞ୍ଚରେ ପକାଇ ସେମାନଙ୍କୁ ଏକ ଅପୂର୍ବ ଏକତା ବନ୍ଧନରେ ଆବଦ୍ଧ କରିବେ ।

**ଉକ୍ତ ବିଷୟରେ ପ୍ରମାଣ :**

ଭାରତର ପରସ୍ପର-ବିରୋଧୀ ଚିରବିବଦମାନ ଯାବତୀୟ ପ୍ରଧାନ ପ୍ରଧାନ ସମ୍ପ୍ରଦାୟର ସାଧକଗଣ ଠାକୁରଙ୍କ ନିକଟକୁ ଆଗମନ କରି ଯେ ତାଙ୍କଠାରେ ନିଜ ନିଜ ଭାବର ପୂର୍ଣ୍ଣ ଆଦର୍ଶ ଦେଖିବାକୁ ପାଇଥିଲେ ଏବଂ ତାହାଙ୍କୁ ନିଜ ନିଜ ଗନ୍ତବ୍ୟ ପଥର ହିଁ ପଥିକ ବୋଲି ସ୍ଥିର ଧାରଣା କରିଥିଲେ, ଏଥିରେ ପୂର୍ବୋକ୍ତ ଭାବ ହିଁ ସୂଚିତ ହେଉଅଛି । ଠାକୁରଙ୍କର ଗୁରୁଭାବର ଯେଉଁ କାର୍ଯ୍ୟ ଏହି ରୂପରେ ଭାରତରେ ପ୍ରଥମ ପ୍ରାରବ୍ଧ ହୋଇ ଭାରତୀୟ ଧର୍ମସମ୍ପ୍ରଦାୟସମୂହ ଭିତରେ ଏକତା ଆଣିଦେବାର ସୂତ୍ରପାତ କରିଯାଇଛି, ସେକାର୍ଯ୍ୟ ଯେ କେବଳ ଭାରତର ଧର୍ମବିବାଦ ଦୂର କରି ନିରସ୍ତ ହେବ ତାହା ନୁହେଁ—ଏସିଆର ଧର୍ମବିବାଦ, ଇଉରୋପର ଧର୍ମହୀନତା ଓ ଧର୍ମବିଦ୍ୱେଷ ସବୁକିଛି ହିଁ ଧୀର ସ୍ଥିର ପଦସଞ୍ଚାରରେ ଶନୈଃ ଶନୈଃ ତିରୋହିତ କରି ସମଗ୍ର ପୃଥିବୀବ୍ୟାପୀ ଏକ ଅଦୃଷ୍ଟପୂର୍ବ ଶାନ୍ତିର ରାଜ୍ୟ ସ୍ଥାପନ କରିବ । ଦେଖୁ ନାହଁ, ଠାକୁରଙ୍କର ଅନ୍ତର୍ଦ୍ଧାନ ପରଠାରୁ ସେହି କାର୍ଯ୍ୟ କେତେ ଦ୍ରୁତ ପଦସଞ୍ଚାରରେ ଅଗ୍ରସର ହେଉଛି ? ଦେଖୁ ନାହଁ, କିପରି ଗୁରୁଗତପ୍ରାଣ ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦଙ୍କର ଭିତର ଦେଇ ଆମେରିକା ଓ ଇଉରୋପରେ ଠାକୁରଙ୍କର ଭାବ ପ୍ରବେଶ ଲାଭ କରି ଏହି ସ୍ୱଳ୍ପକାଳ ମଧ୍ୟରେ ହିଁ ଚିନ୍ତାଜଗତରେ କିପରି ଯୁଗାନ୍ତର ଆଣିଦେଇଛି ? ଦିନପରେ ଦିନ, ମାସ ପରେ ମାସ, ବର୍ଷପରେ ବର୍ଷ ଯେତେ ବିତିଯାଉଥିବ ସେତେ ହିଁ ଏହି ଅମୋଘ ଭାବରାଶି

ସବୁ ଜାତି ଭିତରେ, ସବୁ ଧର୍ମ ଭିତରେ, ସବୁ ସମାଜ ଭିତରେ ଆପଣାର ପ୍ରଭାବ ବିସ୍ତାର କରି ଅଦ୍ଭୁତ ଯୁଗାନ୍ତର ଆଣି ଉପସ୍ଥିତ କରିବ । କାହାର ସାଧ୍ୟ ଏହାର ଗତିରୋଧ କରିବ ? ଅଦୃଷ୍ଟପୂର୍ବ ତପସ୍ୟା ଓ ପବିତ୍ରତାର ସାତ୍ତ୍ୱିକ ତେଜୋଦୀପ୍ତ ଏହି ଭାବରାଶିର ସୀମା କିଏ ଉଲ୍ଲଙ୍ଘନ କରିବ ? ଯେଉଁ ସକଳ ଯନ୍ତ୍ର ସହାୟରେ ତାହା ବର୍ତ୍ତମାନ ପ୍ରସାରିତ ହେଉଅଛି, ସେ ସବୁ ଭଗ୍ନ ହେବ, କେଉଁଠାରୁ ଏହା ପ୍ରଥମେ ଉତ୍‌ଥିତ ହେଲା ତାହା ମଧ୍ୟ ହୁଏ ତ ବହୁକାଳ ପରେ ଅନେକେ ଧରିପାରିବେ ନାହିଁ ବା ବୁଝିପାରିବେ ନାହିଁ, କିନ୍ତୁ ଏହି ଅନନ୍ତମହିମୋଜ୍ଜ୍ୱଳ ଭାବମୟ ଠାକୁରଙ୍କର ସ୍ନିଗ୍ଧୋଦ୍ଦୀପ୍ତ ଭାବରାଶି ହୃଦୟରେ ଯତ୍ନର ସହିତ ପୋଷଣ କରି ତାଙ୍କର ଛାଞ୍ଚରେ ଜୀବନ ଗଠିତ କରି ପୃଥିବୀର ସମସ୍ତଙ୍କୁ ହିଁ ଦିନେ ନିଶ୍ଚୟ ଧନ୍ୟ ହେବାକୁ ହେବ ।

### ଠାକୁରଙ୍କର ଭାବପ୍ରସାର କିପରି ବୁଝିବାକୁ ହେବ :

ଅତଏବ ଭାରତର ବିଭିନ୍ନ ଧର୍ମସମ୍ପ୍ରଦାୟଭୁକ୍ତ ସାଧକଶ୍ରେଣୀଙ୍କର ଠାକୁରଙ୍କ ନିକଟକୁ ଆଗମନ ଓ ଯଥାର୍ଥ ଧର୍ମଲାଭ କରି ଧନ୍ୟ ହେବାର ଯେଉଁ ସମସ୍ତ କଥା ଆମେ ତୁମକୁ କହୁଛୁ, ହେ ପାଠକଗଣ, କେବଳ ଉପରଠାଉରିଆ ଭାବରେ ଗଳ୍ପ ପରି ସେହି ସମସ୍ତ ପାଠ କରି ନିରସ୍ତ ରୁହ ନାହିଁ । ଭାବମୁଖରେ ଅବସ୍ଥିତ ଏହି ଅଲୌକିକ ଠାକୁରଙ୍କର ଦିବ୍ୟ ଭାବରାଶି ପ୍ରଥମେ ଯଥାସମ୍ଭବ ଧରିବାକୁ ଓ ବୁଝିବାକୁ ଚେଷ୍ଟା କର; ପରେ ସେସମସ୍ତ କଥାଗୁଡ଼ିକୁ ଗଭୀର ଭାବରେ ଚିନ୍ତା କରି ଦେଖ କିପରି ସେହି ଭାବରାଶିର ପ୍ରସାର ଆରମ୍ଭ ହେଲା, କିପରି ଭାବରେ ଅବା ତାହା ପରିପୁଷ୍ଟ ହୋଇ ପ୍ରଥମେ ପୁରାତନ, ପରେ ନବୀନ ଭାବରେ ଶିକ୍ଷିତ ଜନସମୂହଙ୍କ ଭିତରେ ନିଜ ପ୍ରଭାବ ବିସ୍ତାର କରିବାକୁ ଲାଗିଲା ଏବଂ କିପରି ବା ପରେ ତାହା ଭାରତରୁ ଅନ୍ୟାନ୍ୟ ଦେଶରେ ପହଞ୍ଚି ପୃଥିବୀର ଭାବଜଗତରେ ଯୁଗାନ୍ତର ଆଣି ପହଞ୍ଚାଉଛି ।

### ଠାକୁରଙ୍କ ଭାବର ପ୍ରଥମ ପ୍ରଚାର ଦକ୍ଷିଣେଶ୍ୱରକୁ ଆଗତ ଓ ତୀର୍ଥରେ ଦୃଷ୍ଟ ସକଳ ସମ୍ପ୍ରଦାୟର ସାଧୁମାନଙ୍କ ଭିତରେ ହୋଇଥିଲା :

ଭାରତୀୟ ବିଭିନ୍ନ ସମ୍ପ୍ରଦାୟଭୁକ୍ତ ସାଧକଗଣକୁ ନେଇ ହିଁ ଠାକୁରଙ୍କ ଭାବରାଶିର ପ୍ରଥମ ବିସ୍ତାର । ଆମେ ପୂର୍ବରୁ କହିସାରିଛୁ, ଠାକୁର ଯେତେବେଳେ ଯେଉଁ ଯେଉଁ ଭାବରେ ସିଦ୍ଧ ହୋଇଥିଲେ ସେତେବେଳେ ସେହି ସେହି ଭାବରେ ଭାବିତ ସାଧକଗଣ ତାଙ୍କ ନିକଟକୁ ସ୍ୱତଃପ୍ରେରିତ ହୋଇ ଆଗମନପୂର୍ବକ ସେହି ସେହି ଭାବର ପୂର୍ଣ୍ଣ ଆଦର୍ଶ ତାଙ୍କଠାରେ ଅବଲୋକନ କରି ଏବଂ ତାଙ୍କର ସହାୟତା ଲାଭ କରି ଅନ୍ୟତ୍ର ଚାଲିଯାଇଥିଲେ । ଏତଦ୍ ବ୍ୟତୀତ ମଥୁରବାବୁ ଏବଂ ତାଙ୍କ ପତ୍ନୀ ପରମ ଭକ୍ତିମତୀ ଜଗଦମ୍ବା ଦାସୀଙ୍କର ଅନୁରୋଧରେ ଠାକୁର ଶ୍ରୀବୃନ୍ଦାବନ ପର୍ଯ୍ୟନ୍ତ ତୀର୍ଥପର୍ଯ୍ୟଟନରେ ଗମନ କରିଥିଲେ । କାଶୀ ଓ ବୃନ୍ଦାବନ

ଆଦି ତୀର୍ଥରେ ସାଧୁଭକ୍ତଙ୍କର ଅଭାବ ନାହିଁ । ତେଣୁ ସେହି ସବୁ ସ୍ଥାନମାନଙ୍କରେ ମଧ୍ୟ ବିଶିଷ୍ଟ ବିଶିଷ୍ଟ ସାଧକମାନେ ଠାକୁରଙ୍କ ସହିତ ମିଳିତ ହୋଇ ତାଙ୍କର ଗୁରୁଭାବସହାୟତାରେ ଧନ୍ୟ ହୋଇଥିଲେ ଏକଥା କେବଳ ଯେ ଆମେମାନେ ଅନୁମାନ କରିପାରୁ ତାହା ନୁହେଁ, କିନ୍ତୁ ଏହାର କିଛି କିଛି ଆଭାସ ତାଙ୍କ ଶ୍ରୀମୁଖରୁ ମଧ୍ୟ ଶୁଣିବାକୁ ପାଇଛୁ । ସେଥିରୁ ମଧ୍ୟ କିଛି କଥା ଲିପିବଦ୍ଧ କରିବା ଆବଶ୍ୟକ ।

**ଜୀବନରେ ଉଚ୍ଚନୀଚ ନାନା ଅଦ୍ଭୁତ ଅବସ୍ଥାରେ ପଡ଼ି ନାନା ଶିକ୍ଷା ପାଇ ଠାକୁରଙ୍କ ଭିତରେ ଅପୂର୍ବ ଆଚାର୍ଯ୍ୟତ୍ୱର ବିକାଶ ହୋଇଥିଲା :**

ଠାକୁର କହୁଥିଲେ, ''ଗୋଟି ସବୁ ଘର ବୁଲି ବୁଲି ପାଚେ; ମେହନ୍ତରଠାରୁ ରାଜା ପର୍ଯ୍ୟନ୍ତ ସଂସାରରେ ଯେତେ ପ୍ରକାରର ଅବସ୍ଥା ଅଛି ସେସମୁଦାୟ ଦେଖି ଶୁଣି, ଭୋଗ କରି, ତୁଚ୍ଛ ବୋଲି ଠିକ୍ ଠିକ୍ ଧାରଣା ହେଲେ ତେବେ ପରମହଂସ ଅବସ୍ଥା ହୁଏ, ଯଥାର୍ଥ ଜ୍ଞାନୀ ହୁଏ !'' ଏହା ହେଲା ସାଧକର ନିଜର ଚରମ ଜ୍ଞାନରେ ଉପନୀତ ହେବାର କଥା । ପୁଣି ଲୋକଶିକ୍ଷା ବା ଜନସାଧାରଣଙ୍କର ଯଥାର୍ଥ ଶିକ୍ଷକ ହେବାକୁ ହେଲେ କିପରି ହେବା ଆବଶ୍ୟକ ତତ୍‌ସମ୍ବନ୍ଧରେ ଠାକୁର କହୁଥିଲେ, ''ଆତ୍ମହତ୍ୟା ଏକ ନହୁରୁଣି ଦ୍ୱାରା କରାଯାଇ ପାରେ; ମାତ୍ର ଅନ୍ୟକୁ ମାରିବାକୁ ହେଲେ (ଶତ୍ରୁଜୟ ପାଇଁ) ଢାଲ, ଖଣ୍ଡା ଆବଶ୍ୟକ ।'' ଠିକ୍ ଠିକ୍ ଆଚାର୍ଯ୍ୟ ହେବାକୁ ହେଲେ ତାଙ୍କୁ ସମସ୍ତ ପ୍ରକାର ସଂସ୍କାର ଭିତର ଦେଇ, ନାନାପ୍ରକାର ଶିକ୍ଷାଲାଭ କରି ଅପର ସାଧାରଣଙ୍କ ଅପେକ୍ଷା ଅଧିକ ଶକ୍ତିସମ୍ପନ୍ନ ହେବାକୁ ପଡ଼େ । ଅବତାର, ସିଦ୍ଧପୁରୁଷ ଏବଂ ଜୀବ ଭିତରେ ଶକ୍ତି ନେଇ ହିଁ ପ୍ରଭେଦ''—ଠାକୁର ଏକଥା ଆମକୁ ବାରମ୍ବାର କହିଛନ୍ତି । ଦେଖୁ ନାହଁ, ବ୍ୟାବହାରିକ ରାଜନୈତିକାଦି ଜଗତରେ ବିସ୍‌ମାର୍କ, ଗ୍ଲାଡ୍‌ଷ୍ଟୋନ ପ୍ରଭୃତି ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କୁ ଦେଶର ପ୍ରାଚୀନ ଓ ବର୍ତ୍ତମାନ ସମସ୍ତ ଇତିହାସ ଓ ଘଟଣାଗୁଡ଼ିକ ପ୍ରତି ଦୃଷ୍ଟି ରଖି ଇତରସାଧାରଣଙ୍କ ଅପେକ୍ଷା କେତେଦୂର ଶକ୍ତିସମ୍ପନ୍ନ ହେବାକୁ ପଡ଼ିଥିଲା; ସେପରି ଶକ୍ତିସମ୍ପନ୍ନ ହେବାରୁ ହିଁ ତ ସେମାନେ ପଚାଶ ବା ତତୋଧିକ ବର୍ଷ ପରେ ବର୍ତ୍ତମାନ କାଳରେ ପ୍ରଚଳିତ କେଉଁ ଭାବଟି କିପରି ଆକାର ଧାରଣ କରି ଦେଶର ଜନସାଧାରଣଙ୍କର ଅହିତ କରିବ ତାହା ବୁଝିପାରିବା ସମ୍ଭବ ହୋଇଥିଲା; ତେଣୁ ସେସମୟରୁ ତାହାର ବିପରୀତ ଭାବରେ ଏପରି ସବୁ କାର୍ଯ୍ୟର ସୂଚନା କରିଥିଲେ ଯେଉଁଥିରେ ଦୀର୍ଘକାଳ ପରେ ସେହି ଭାବ ପ୍ରବଳ ହୋଇ ଦେଶରେ ସେପ୍ରକାର ଅମଙ୍ଗଳ ଆଉ ଆଣିପାରିବ ନାହିଁ ! ଆଧ୍ୟାତ୍ମିକ ଜଗତରେ ମଧ୍ୟ ଠିକ୍ ତଦ୍ରୂପ ବୁଝିବାକୁ ହେବ । ଅବତାର ବା ଯଥାର୍ଥ ଆଚାର୍ଯ୍ୟପୁରୁଷମାନଙ୍କୁ ପ୍ରାଚୀନ ଯୁଗରେ ଋଷିମାନେ ପୂର୍ବ ପୂର୍ବ ଯୁଗରେ କେଉଁ ପ୍ରକାର ଆଧ୍ୟାତ୍ମିକ ଭାବର ପ୍ରବର୍ତ୍ତନ କରିଯାଇଥିଲେ, ଏତେଦିନ ପରେ ସେହି

ସମସ୍ତ ଭାବ କିପରି ଆକାର ଧାରଣ କରି ଜନସାଧାରଣଙ୍କର କେତେଟା ମଙ୍ଗଳ କରିଅଛି ଓ କରୁଛି ଏବଂ ବିକୃତ ହୋଇ କେତେଟା ଅନିଷ୍ଟ କରୁଛି ଓ କରିବ; ସେହି ସକଳ ଭାବର ସେହିରୂପରେ ବିକୃତ ହେବାର କାରଣ ବା କ'ଣ, ବର୍ତ୍ତମାନ ଦେଶରେ ଯେଉଁ ସବୁ ଆଧ୍ୟାତ୍ମିକ ଭାବ ପ୍ରବର୍ତ୍ତିତ ହୋଇଅଛି ସେସମସ୍ତ ମଧ୍ୟ କାଳକ୍ରମେ ବିକୃତ ହେଉ ହେଉ ଏକ-ଦୁଇ ଶତାବ୍ଦୀ ପରେ କିପରି ଆକାର ଧାରଣ କରି କେଉଁ ଭାବରେ ଜନସାଧାରଣଙ୍କର ଅଧିକତର ଅହିତକର ହେବ—ଏସମସ୍ତ କଥା ଠିକ୍ ଠିକ୍ ଭାବରେ ବୁଝି ନୂତନ ଭାବର କାର୍ଯ୍ୟ ପ୍ରବର୍ତ୍ତନ କରିଯିବାକୁ ହୁଏ । କାରଣ, ସେହି ସମସ୍ତ ବିଷୟ ଯଥାର୍ଥଭାବରେ ବୁଝି ନ ପାରିଲେ ସମସ୍ତଙ୍କର ବର୍ତ୍ତମାନ ଅବସ୍ଥା ଜାଣିବେ ବା ବୁଝିବେ କିପରି, ଏବଂ ରୋଗ ଠିକ୍ ଠିକ୍ ଚିହ୍ନି ନ ପାରିଲେ ତାହାର ଔଷଧ ପ୍ରୟୋଗ ବା କିପରି କରିବେ ? ସେଥିପାଇଁ ତୀବ୍ର ତପସ୍ୟାଦି କରି ପୂର୍ବୋକ୍ତ ଔଷଧ ପ୍ରୟୋଗରେ ନିଜକୁ ଶକ୍ତିସମ୍ପନ୍ନ କରିବା ବ୍ୟତୀତ ଆଚାର୍ଯ୍ୟମାନଙ୍କୁ ସଂସାରର ନାନା ଅବସ୍ଥାରେ ପଡ଼ି ଯେତେଟା ଶିକ୍ଷାଲାଭ କରିବାକୁ ହୁଏ—ସାଧାରଣ ସାଧକଙ୍କୁ ସେତେଟା କରିବାକୁ ହୁଏ ନାହିଁ । ଦେଖ ନା, ଠାକୁରଙ୍କୁ କେତେ ପ୍ରକାର ଅବସ୍ଥା ସହିତ ପରିଚିତ ହେବାକୁ ପଡ଼ିଥିଲା । ଦରିଦ୍ର କୁଟୀରରେ ଜନ୍ମଗ୍ରହଣ କରି ବାଲ୍ୟରେ କଠୋର ଦାରିଦ୍ର୍ୟ ସହିତ, କାଳୀମନ୍ଦିରର ପୂଜକ ପଦଗ୍ରହଣରେ ସ୍ୱୀକୃତ ହୋଇ ଯୌବନରେ ପରର ଦାସତ୍ୱ କରିବାରୂପକ ହୀନାବସ୍ଥା ସହିତ, ସାଧକ ଅବସ୍ଥାରେ ଭଗବାନଙ୍କ ନିମିତ୍ତ ଆତ୍ମହରା ହୋଇ ଆତ୍ମୀୟ-କୁଟୁମ୍ବମାନଙ୍କର ତୀବ୍ର ତିରସ୍କାର ଲାଞ୍ଛନା ଅଥବା ଗଭୀର ମନସ୍ତାପ ଏବଂ ସାଂସାରିକ ଅନ୍ୟ ସାଧାରଣଙ୍କର ପାଗଳ ବୋଲି ନିତାନ୍ତ ଉପେକ୍ଷା ବା କରୁଣାର ସହିତ, ମଥୁରବାବୁଙ୍କର ତାଙ୍କ ଉପରେ ଭକ୍ତି-ଶ୍ରଦ୍ଧା ଉଦୟରେ ରାଜତୁଲ୍ୟ ଭୋଗ ଓ ସମ୍ମାନର ସହିତ, ନାନା ସାଧକଗଣଙ୍କର ଈଶ୍ୱରାବତାର ବୋଲି ତାଙ୍କର ପାଦପଦ୍ମରେ ହୃଦୟର ଭକ୍ତି-ପ୍ରୀତି ଢାଳି ଦେବାରୁ ଦେବତୁଲ୍ୟ ପରମ ଐଶ୍ୱର୍ଯ୍ୟ ସହିତ—ଏହିପରି କେତେ କ'ଣ ଅବସ୍ଥା ସହିତ ପରିଚିତ ହୋଇ ସେହି ସବୁ ଅବସ୍ଥାରେ ସର୍ବତୋଭାବରେ ଅବିଚଳିତ ରହିବାର କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିଥିଲା ! ଅନନ୍ୟ ଅନୁରାଗ ଗୋଟିଏ ଦିଗରେ ଯେପରି ତାହାଙ୍କୁ ଈଶ୍ୱରଲାଭ ନିମିତ୍ତ ଅଦୃଷ୍ଟପୂର୍ବ ତୀବ୍ର ତପସ୍ୟାରେ ଲଗାଇ ତାଙ୍କର ଯୋଗପ୍ରସୂତ ଅତୀନ୍ଦ୍ରିୟ ସୂକ୍ଷ୍ମଦୃଷ୍ଟି ସମ୍ପୂର୍ଣ୍ଣ ଖୋଲି ଦେଇଥିଲା, ସଂସାରର ଏହି ସକଳ ନାନା ଅବସ୍ଥା ସହିତ ପରିଚୟ ମଧ୍ୟ ପୁଣି ସେହିପରି ଅନ୍ୟଦିଗରେ ତାହାଙ୍କୁ ବାହ୍ୟ ବର୍ତ୍ତମାନ ଜଗତର ସମସ୍ତ ପ୍ରକାର ଅବସ୍ଥାପନ୍ନ ଲୋକମାନଙ୍କର ଭିତରର ଭାବ ଠିକ୍ ଠିକ୍ ଧରି ଓ ବୁଝି ସେମାନଙ୍କ ସହିତ ବ୍ୟବହାରରେ କୁଶଳୀ ଏବଂ ସେମାନଙ୍କର ସକଳ ପ୍ରକାର ସୁଖ-ଦୁଃଖ ସହିତ ସହାନୁଭୂତିସମ୍ପନ୍ନ କରି ତୋଳିଥିଲା । କାରଣ, ଭିତର ଓ ବାହାରର ସେହି ସମସ୍ତ ଅବସ୍ଥା ଭିତର ଦେଇ

ହିଁ ଠାକୁରଙ୍କର ଗୁରୁଭାବ ବା ଆଚାର୍ଯ୍ୟଭାବ ଦିନକୁ ଦିନ ଅଧିକତର ବିକଶିତ ଓ ପରିସ୍ଫୁଟ ହେବାର ଦେଖାଯାଇଥିଲା ।

## ତୀର୍ଥ ଭ୍ରମଣରେ ଠାକୁର କ'ଣ ଶିଖିଥିଲେ । ଠାକୁରଙ୍କ ଭିତରେ ଦେବ ଓ ମାନବ ଉଭୟ ଭାବ ଥିଲା :

ତୀର୍ଥ-ଭ୍ରମଣ ମଧ୍ୟ ଯେ ଠାକୁରଙ୍କ ଜୀବନରେ ସେପ୍ରକାର ଫଳ ଆଣିଦେଇଥିଲା ସେଥିରେ ସନ୍ଦେହ ନାହିଁ । ଯୁଗାଚାର୍ଯ୍ୟ ଠାକୁରଙ୍କର ଦେଶର ଜନସାଧାରଣଙ୍କର ଆଧ୍ୟାତ୍ମିକ ଅବସ୍ଥା ବିଷୟ ଜାଣିବାର ଆବଶ୍ୟକତା ଥିଲା । ମଥୁରଙ୍କ ସହିତ ତୀର୍ଥ-ଭ୍ରମଣରେ ଯାଇ ତାହା ଯେ ବହୁଳାଂଶରେ ସଂସିଦ୍ଧ ହୋଇଥିଲା ଏଥିରେ ସନ୍ଦେହ ନାହିଁ । କାରଣ, ଅନ୍ତର୍ଜଗତରେ ଠାକୁରଙ୍କର ଯେଉଁ ପ୍ରଜ୍ଞାଚକ୍ଷୁ ମାୟାର ସମଗ୍ର ଆବରଣ ଭେଦ କରି ସମସ୍ତଙ୍କର ଅନ୍ତର୍ନିହିତ 'ଏକମେବାଦ୍ୱିତୀୟମ୍' ଅଖଣ୍ଡ ସଚ୍ଚିଦାନନ୍ଦଙ୍କର ଦର୍ଶନ ସ୍ପର୍ଶନ ସର୍ବଦା କରିବାକୁ ସମର୍ଥ ହେଉଥିଲା, ବହିର୍ଜଗତରେ ଲୌକିକ ବ୍ୟବହାର ସମ୍ପର୍କରେ ଆସି ତାହା ହିଁ ପୁଣି ଏବେ ଲୋକଙ୍କର ଭିତରର ଭାବ ଜାଣିବାକୁ ଏବଂ ଦୁଇ-ଚାରୋଟି ଘଟଣା ଦେଖି ହିଁ ସମାଜ ଓ ଦେଶର ଅବସ୍ଥା ବୁଝିବାକୁ ବିଶେଷ ସମର୍ଥ ହୋଇଥିଲା । ଅବଶ୍ୟ ବୁଝିବାକୁ ହେବ, ଠାକୁରଙ୍କର ସାଧାରଣ ଅବସ୍ଥା ଲକ୍ଷ୍ୟ କରି ହିଁ ଆମେ ଏକଥା କହୁଛୁ, ନତୁବା ଯୋଗବଳରେ ଉଚ୍ଚ ଭୂମିରେ ଉଠି ଯେତେବେଳେ ସେ ଦିବ୍ୟଦୃଷ୍ଟି-ସହାୟରେ ବ୍ୟକ୍ତିଗତ, ସମାଜଗତ ବା ପ୍ରଦେଶଗତ ଅବସ୍ଥାର ଦର୍ଶନ ଓ ଉପଲବ୍ଧି କରୁଥିଲେ ଏବଂ କେଉଁ ଉପାୟ ଅବଲମ୍ବନରେ ସେମାନଙ୍କର ବର୍ତ୍ତମାନ ଦୁର୍ଦ୍ଦଶାର ଅବସାନ ହେବ ତାହା ସମ୍ୟକ୍ ନିର୍ଦ୍ଧାରଣ କରୁଥିଲେ, ସେତେବେଳେ ସର୍ବସାଧାରଣଙ୍କ ପରି ବାହ୍ୟଦୃଷ୍ଟିରେ ଦେଖି ଶୁଣି ତୁଳନାତ୍ମକ ଆଲୋଚନା କରି କୌଣସ ବିଷୟ ଜାଣିବାର ଊର୍ଦ୍ଧ୍ୱକୁ ସେ ଚାଲିଯାଉଥିଲେ ଏବଂ ସେହିରୂପରେ ସେହି ବିଷୟର ତତ୍ତ୍ୱନିରୂପଣର ତାଙ୍କର ଆଉ ପ୍ରୟୋଜନ ହେଉ ନ ଥିଲା ! ଦେବ-ମାନବ ଠାକୁରଙ୍କୁ ଆମେ ସାଧାରଣ ବାହ୍ୟଦୃଷ୍ଟି ଏବଂ ଅସାଧାରଣ ଯୋଗଦୃଷ୍ଟି — ଉଭୟ ଦୃଷ୍ଟି ସହାୟରେ ହିଁ ସମସ୍ତ ବିଷୟର ତତ୍ତ୍ୱନିରୂପଣ କରିବାର ଦେଖିଅଛୁ ! ସେଥିପାଇଁ ଦେବଭାବ ଓ ମନୁଷ୍ୟଭାବ ଉଭୟ ପ୍ରକାର ଭାବର ସମ୍ୟକ୍ ବିକାଶର ପରିଚୟ ପାଠକଙ୍କୁ ଦେଇ ନ ପାରିଲେ ଏହି ଅଲୌକିକ ଚରିତ୍ରର ଏକଦେଶୀ ଛବିମାତ୍ର ହିଁ ପାଠକ ମନରେ ଅଙ୍କିତ ହେବ । ସେଥିପାଇଁ ସେହି ଉଭୟ ପ୍ରକାରରେ ହିଁ ଏହି ଦେବ-ମାନବଙ୍କର ଜୀବନ ଆଲୋଚନା କରିବାକୁ ଆମର ଚେଷ୍ଟା ।

## ଠାକୁରଙ୍କ ପରି ଦିବ୍ୟପୁରୁଷମାନଙ୍କର ତୀର୍ଥାଟନର କାରଣ ସମ୍ବନ୍ଧରେ ଶାସ୍ତ୍ର କ'ଣ କହେ :

ଶାସ୍ତ୍ରଦୃଷ୍ଟିରେ ଠାକୁରଙ୍କର ତୀର୍ଥ–ଭ୍ରମଣର ଅନ୍ୟ ଏକ କାରଣ ମଧ୍ୟ ମିଳେ । ଶାସ୍ତ୍ର କହନ୍ତି, ଈଶ୍ୱରଙ୍କ ଦର୍ଶନଲାଭରେ ସିଦ୍ଧକାମ ପୁରୁଷମାନେ ତୀର୍ଥ–ଭ୍ରମଣରେ ଯାଇ ସେସମସ୍ତ ସ୍ଥାନର ତୀର୍ଥତ୍ୱ ସମ୍ପାଦନ କରିଥାଆନ୍ତି । ସେମାନେ ସେହି ସମସ୍ତ ସ୍ଥାନରେ ଈଶ୍ୱରଙ୍କର ବିଶେଷ ଦର୍ଶନଲାଭ ପାଇଁ ବ୍ୟାକୁଳ ଅନ୍ତରରେ ଆଗମନ ଓ ଅବସ୍ଥାନ କରନ୍ତି ବୋଲି ହିଁ ସେଠାରେ ଈଶ୍ୱରଙ୍କର ବିଶେଷ ପ୍ରକାଶ ଉପସ୍ଥିତ ହୁଏ, ଅଥବା ସେହି ଭାବର ପୂର୍ବପ୍ରକାଶ ସମଧିକ ବର୍ଦ୍ଧିତ ହୋଇଉଠେ ଏବଂ ମାନବ ସାଧାରଣ ସେଠାରେ ଉପସ୍ଥିତ ହେଲେ ଅତି ସହଜରେ ହିଁ ଈଶ୍ୱରଙ୍କର ସେହି ଭାବର କିଛି ନା କିଛି ଉପଲବ୍ଧି କରେ । ସିଦ୍ଧ ପୁରୁଷମାନଙ୍କ ସମ୍ବନ୍ଧରେ ଯେତେବେଳେ ଶାସ୍ତ୍ର ଏକଥା କହିଛନ୍ତି ସେତେବେଳେ ତାଙ୍କଠାରୁ ସମଧିକ ଶକ୍ତିମାନ ଠାକୁରଙ୍କ ସଦୃଶ ଅବତାରପୁରୁଷମାନଙ୍କର ତ' କଥା ହିଁ ନାହିଁ ! ତୀର୍ଥ ସମ୍ବନ୍ଧରେ ପୂର୍ବୋକ୍ତ କଥାଟି ଠାକୁର ଅନେକ ସମୟରେ ଆମକୁ ତାଙ୍କ ସରଳ ଭାଷାରେ ବୁଝାଇ କହୁଥିଲେ । କହୁଥିଲେ—''ଆରେ, ଯେଉଁଠାରେ ଅନେକ ଲୋକ ଅନେକ ଦିନ ଧରି ଈଶ୍ୱରଙ୍କୁ ଦର୍ଶନ କରିବେ ବୋଲି, ତପ, ଜପ, ଧ୍ୟାନ, ଧାରଣା, ପ୍ରାର୍ଥନା ତଥା ଉପାସନା କରିଛନ୍ତି, ଜାଣିବ, ସେଠାରେ ତାଙ୍କର ପ୍ରକାଶ ନିଶ୍ଚୟ ଅଛି । ସେମାନଙ୍କ ଭକ୍ତିରେ ସେଠାରେ ଈଶ୍ୱରୀୟ ଭାବ ଘନୀଭୂତ ହୋଇ ରହିଛି; ତେଣୁ ସେଠାରେ ସହଜରେ ହିଁ ଈଶ୍ୱରୀୟ ଭାବର ଉଦ୍ଦୀପନ ଓ ତାଙ୍କର ଦର୍ଶନ ହୁଏ । ଯୁଗ–ଯୁଗାନ୍ତରରୁ କେତେ ସାଧୁ, ଭକ୍ତ, ସିଦ୍ଧପୁରୁଷମାନେ ଏସମସ୍ତ ତୀର୍ଥରେ ଈଶ୍ୱରଙ୍କୁ ଦେଖିବେ ବୋଲି ଆସନ୍ତି, ଅନ୍ୟ ସମସ୍ତ ବାସନା ତ୍ୟାଗ କରି ତାଙ୍କୁ ପ୍ରାଣ ଦେଇ ଡାକିଛନ୍ତି, ସେଥିପାଇଁ ଈଶ୍ୱର ସବୁଠାରେ ସମାନ ଭାବରେ ରହିଥିଲେ ମଧ୍ୟ ଏସବୁ ସ୍ଥାନରେ ତାଙ୍କର ବିଶେଷ ପ୍ରକାଶ ଥାଏ ! ଯେପରି ମାଟି ଖୋଳିଲେ ସବୁ ସ୍ଥାନରେ ଜଳ ମିଳିଥାଏ, କିନ୍ତୁ ଯେଉଁଠାରେ କୂଅ, ଗଡ଼ିଆ, ପୋଖରୀ ବା ହ୍ରଦ ଇତ୍ୟାଦି ଅଛି ସେଠାରେ ଆଉ ଜଳ ପାଇଁ ମାଟି ଖୋଳିବାକୁ ପଡ଼େ ନାହିଁ—ଯେତେବେଳେ ଇଚ୍ଛା ଜଳ ମିଳିଥାଏ, ଏହା ଠିକ୍ ସେହିପରି ।''

### ତୀର୍ଥ ଓ ଦେବସ୍ଥାନ ଦର୍ଶନ କରି 'ପାକୁଳି କରିବାକୁ' ଉପଦେଶ :

ପୁଣି ଈଶ୍ୱରଙ୍କର ବିଶେଷ ପ୍ରକାଶଯୁକ୍ତ ସେହି ସମସ୍ତ ସ୍ଥାନ ଦର୍ଶନ ଆଦି ପରେ ଠାକୁର ଆମକୁ, 'ପାକୁଳି କରିବାକୁ' ଶିକ୍ଷା ଦେଉଥିଲେ । କହୁଥିଲେ —''ଗୋରୁ ଯେପରି ପେଟ ଭରି ଖାଦ୍ୟ ଖାଇ ନିଶ୍ଚିନ୍ତ ହୋଇ ଗୋଟିଏ ଜାଗାରେ ବିଶ୍ରାମ ନେଇ ସେହି ସବୁ ଖାଦ୍ୟ ଓଗାଳି ଭଲଭାବରେ ଚୋବାଏ ବା ପାକୁଳି କରୁଥାଏ, ସେହିପରି ଦେବସ୍ଥାନ, ତୀର୍ଥସ୍ଥାନ ଦର୍ଶନ ପରେ ସେଠାରେ ଯେଉଁ

ସବୁ ପବିତ୍ର ଈଶ୍ୱରୀୟ ଭାବ ମନରେ ଜାଗିଉଠେ ସେସବୁ ବିଷୟ ଏକାନ୍ତରେ ବସି ଭାବିବାକୁ ହୁଏ ଏବଂ ସେଥିରେ ବୁଡ଼ି ଯିବାକୁ ହୁଏ; ଦେଖି ଆସି ହିଁ ସେସବୁ ମନରୁ ତଡ଼ି ବିଷୟରେ, ରୂପ-ରସରେ ମନ ଦେବା ଉଚିତ୍ ନୁହେଁ; ତାହା ହେଲେ ସେହି ଈଶ୍ୱରୀୟ ଭାବଗୁଡ଼ିକ ମନରେ ସ୍ଥାୟୀ ଫଳ ଆଣେ ନାହିଁ ।''

କାଳୀଘାଟକୁ ଶ୍ରୀଶ୍ରୀଜଗଦମ୍ବାଙ୍କର ଦର୍ଶନ ନିମନ୍ତେ ଆମମାନଙ୍କ ମଧ୍ୟରୁ କେହି କେହି ଠାକୁରଙ୍କ ସହିତ ଥରେ ଯାଇଥିଲେ । ପୀଠସ୍ଥାନର ବିଶେଷ ପ୍ରକାଶ ଏବଂ ଠାକୁରଙ୍କର ଶରୀର-ମନରେ ଶ୍ରୀଶ୍ରୀଜଗନ୍ମାତାଙ୍କର ଜୀବନ୍ତ ପ୍ରକାଶ ଉଭୟ ମିଳିତ ହୋଇ ଭକ୍ତମାନଙ୍କ ପ୍ରାଣରେ ଯେଉଁ ଏକ ଅପୂର୍ବ ଉଲ୍ଲାସ ଆଣି ଦେଇଥିଲା, ତାହା ଆଉ କହିବାକୁ ହେବ ନାହିଁ । ଦର୍ଶନାଦି କରି ଫେରିବା ବେଳେ ଭକ୍ତମାନଙ୍କ ମଧ୍ୟରୁ ଜଣଙ୍କୁ ବିଶେଷ ଅନୁରୁଦ୍ଧ ହୋଇ ତାଙ୍କର ଶ୍ୱଶୁରାଳୟ ଗମନ ଏବଂ ସେଠାରେ ରାତ୍ରି ଯାପନ କରିବାକୁ ହେଲା । ପରଦିନ ସେ ଯେତେବେଳେ ପୁନରାୟ ଠାକୁରଙ୍କ ନିକଟକୁ ଆସିଲେ ସେତେବେଳେ ଠାକୁରେ ତାଙ୍କୁ ପୂର୍ବରାତ୍ରିରେ କେଉଁଠାରେ ଥିଲେ ବୋଲି ପ୍ରଶ୍ନ କଲେ ଏବଂ ତାଙ୍କର ଶ୍ୱଶୁରାଳୟରେ ରହିବା କଥା ଶୁଣି କହିଲେ, ''ସେ କ'ଣ ରେ ? ମା'କୁ ଦର୍ଶନ କରି ଆସିଲୁ, କେଉଁଠି ତାଙ୍କର ଦର୍ଶନ, ତାଙ୍କର ଭାବ ନେଇ ପାକୁଳି କରିବୁ, ତାହା ନ କରି ରାତିଟା ବିଷୟୀଙ୍କ ପରି ଶ୍ୱଶୁରଘରେ କଟାଇ ଆସିଲୁ ? ଦେବସ୍ଥାନ ତୀର୍ଥସ୍ଥାନ ଦର୍ଶନ କରି ଆସି ସେହି ସମସ୍ତ ଭାବ ନେଇ ରହିବାକୁ ହୁଏ, ପାକୁଳି କରିବାକୁ ହୁଏ, ତା' ନ ହେଲେ ସେସବୁ ଈଶ୍ୱରୀୟ ଭାବ ପ୍ରାଣରେ ରହିବ କାହିଁକି ?''

**ଅନ୍ତର ମଧ୍ୟରେ ଭକ୍ତିଭାବ ଜାଗ୍ରତ କରି ତୀର୍ଥାଟନ କରିବାକୁ ହୁଏ :**

ଈଶ୍ୱରୀୟ ଭାବ ଭକ୍ତିର ସହିତ ହୃଦୟରେ ପୋଷଣ ନ କରି ତୀର୍ଥାଦିରେ ଗଲେ ଯେ ବିଶେଷ ଫଳ ମିଳେ ନାହିଁ, ସେସମ୍ବନ୍ଧରେ ମଧ୍ୟ ଠାକୁର ଅନେକଥର ଆମମାନଙ୍କୁ କହିଛନ୍ତି । ତାଙ୍କର ଜୀବନକାଳରେ ଆମମାନଙ୍କ ମଧ୍ୟରୁ ଅନେକେ, ଅନେକ ସମୟରେ ତୀର୍ଥଭ୍ରମଣର ବାସନା ତାଙ୍କଠାରେ ପ୍ରକାଶ କରୁଥିଲେ । ଏକଥାରେ ସେ ଅନେକ ସମୟରେ ଆମକୁ କହିଛନ୍ତି, ''ଆରେ ଯାହାର ଏଠାରେ ଅଛି, ତା'ର ସେଠାରେ ଅଛି; ଯାହାର ଏଠାରେ ନାହିଁ, ତାର ସେଠାରେ ମଧ୍ୟ ନାହିଁ ।''[୧] ପୁଣି କହୁଥିଲେ—''ଯାହାର ପ୍ରାଣରେ ଭକ୍ତିଭାବ ଅଛି, ତୀର୍ଥରେ ଉଦ୍ଦୀପନା ହୋଇ ତାର ସେହି ଭାବ ଆହୁରି ବଢ଼ିଯାଏ; ଆଉ ଯାହାର ପ୍ରାଣରେ

୧. ଅବତାରପୁରୁଷମାନେ ଅନେକ ସମୟରେ ସମାନ ଭାବରେ ହିଁ ଶିକ୍ଷା ଦେଇଥାଆନ୍ତି । ମହାମହିମ ଈଶା ଥରେ ତାଙ୍କ ଶିଷ୍ୟଗଣଙ୍କୁ କହିଥିଲେ—''To him who hath more, more shall be given and from him who hath little, that little shall be taken away.'' ଅର୍ଥାତ୍ ଯାହାର ଅଧିକ ଭକ୍ତି-ବିଶ୍ୱାସ ଅଛି ତାହାକୁ ଆହୁରି ସେହି ଭାବ ଦିଆହେବ । ଆଉ ଯାହାର ଭକ୍ତି-ବିଶ୍ୱାସ ଅଳ୍ପ ତାହାଠାରୁ ସେହି ଅଳ୍ପ ଟିକକ ଛଡ଼ାଇ ନିଆ ହେବ ।

ସେହି ଭାବ ନାହିଁ, ତା'ର ବିଶେଷ ଆଉ କ'ଣ ହେବ ? ଅନେକ ସମୟରେ ଶୁଣା ଯାଏ, ଅମୁକର ପୁଅ କାଶୀ ବା ଅନ୍ୟ କେଉଁଠାକୁ ପଳାଇଛି; ତା'ପରେ ପୁଣି ଶୁଣାଯାଏ, ସେ ସେଠାରେ ଅନେକ ଚେଷ୍ଟାକରି ଗୋଟିଏ ଚାକିରୀ ଯୋଗାଡ଼ କରି ଘରକୁ ଚିଠି ଲେଖିଛି ଓ ଟଙ୍କା ପଠାଇଛି ! ତୀର୍ଥସ୍ଥାନରେ ବାସକରିବାକୁ ଯାଇ କେତେ ଲୋକ ସେଠାରେ ବ୍ୟବସାୟ ଫାନ୍ଦି ବସନ୍ତି । ମଥୁରଙ୍କ ସହିତ ପଶ୍ଚିମକୁ ଯାଇ ଦେଖିଲି, ଏଠାରେ ଯାହା ସେଠାରେ ମଧ୍ୟ ତାହା; ଏଠାର ଆମ୍ବଗଛ, ତେନ୍ତୁଳିଗଛ, ବାଉଁଶବୁଦା ଯେପରି, ସେଠାର ସେସମସ୍ତ ମଧ୍ୟ ସେହିପରି । ତାହା ଦେଖି ହୃଦୁକୁ କହିଥିଲି, 'ଆରେ ହୃଦୁ, ଏଠାରେ କ'ଣ ଦେଖିବାକୁ ଆସିଲିରେ ! ସେଠାରେ ଯାହା ଏଠାରେ ମଧ୍ୟ ସେଇଆ ! କେବଳ, ପଡ଼ିଆ ଆଉ ନଦୀଘାଟରେ ବିଷ୍ଠାଗୁଡ଼ିକ ଦେଖି ମନେ ହୁଏ, ଏଠାର ଲୋକଙ୍କର ହଜମଶକ୍ତିଟା ସେଠାର ଲୋକମାନଙ୍କ ଅପେକ୍ଷା ଅଧିକ' ![୧]

**ସ୍ୱାମୀ ବିବେକାନନ୍ଦଙ୍କର ବୁଦ୍ଧଗୟା ଗମନପରେ ସେଠାକୁ ଯିବା ପାଇଁ ଇଚ୍ଛୁକ ଜନୈକ ଭକ୍ତଙ୍କୁ ଠାକୁର ଯାହା କହିଥିଲେ :**

ଆଗରୁ ଗୋଟିଏ ଜାଗାରେ କହିଛୁ, ଗଳରୋଗର ଚିକିତ୍ସା ପାଇଁ ଭକ୍ତମାନେ ଠାକୁରଙ୍କୁ ପ୍ରଥମେ କଲିକତାର ଶାମପୁକୁର ନାମକ ପଲ୍ଲୀସ୍ଥ ଗୋଟିଏ ଭଡ଼ାଟିଆ ଘରେ ଏବଂ ପରେ କଲିକତାର ଉତ୍ତରରେ ଅବସ୍ଥିତ କାଶୀପୁର ନାମକ ସ୍ଥାନରେ ଗୋଟିଏ ବଗିଚାଘରେ ଆଣି ରଖିଥିଲେ । କାଶୀପୁର ବଗିଚା ଘରକୁ ଆସିବାର କିଛିଦିନ ପରେ ସ୍ୱାମୀ ବିବେକାନନ୍ଦ ଦିନେ କାହାକୁ କିଛି ନ କହି ଅନ୍ୟ ଦୁଇଜଣ ଭ୍ରାତାଙ୍କ ସହିତ ବୁଦ୍ଧଗୟା ଗମନ କଲେ । ସେସମୟରେ ଆମ ଭିତରେ ଭଗବାନ ବୁଦ୍ଧଦେବଙ୍କର ଅଦ୍ଭୁତ ଜୀବନ ଏବଂ ସଂସାରବୈରାଗ୍ୟ, ତ୍ୟାଗ ଓ ତପସ୍ୟାର ଆଲୋଚନା ଦିନରାତି ଚାଲୁଥିଲା । ବଗିଚା ଘରର ତଳଘରେ ଦକ୍ଷିଣ ଦିଗରେ ଯେଉଁ ଛୋଟ ଘରଟିରେ ଆମେ ସର୍ବଦା ବସାଉଠା କରୁଥିଲୁ, ତା'ର କାନ୍ଥରେ — ଯେତେଦିନ ସତ୍ୟଲାଭ ନ ହୋଇଛି ସେତେଦିନ ଏକାସନରେ ବସି ଧ୍ୟାନ-ଧାରଣାଦି କରିବି, ଏଥିରେ ଶରୀର ନାଶ ହେଲେ ହେଉ — ବୁଦ୍ଧଦେବଙ୍କର ଏହିପରି ଦୃଢ଼ପ୍ରତିଜ୍ଞାବ୍ୟଞ୍ଜକ 'ଲଳିତବିସ୍ତରର' ଗୋଟିଏ ଛୋଟ ଶ୍ଳୋକ ଲେଖା ହୋଇଥିଲା । ଦିନରାତି ସେହି କଥାଗୁଡ଼ିକ ଚକ୍ଷୁ ସାମନାରେ ରହି ସର୍ବଦା ଆମକୁ ସ୍ମରଣ କରାଇ ଦେଉଥିଲା ଯେ, ଆମମାନଙ୍କୁ ମଧ୍ୟ ସତ୍ୟସ୍ୱରୂପ ଈଶ୍ୱରଙ୍କୁ ଲାଭ ନିମିତ୍ତ ପ୍ରାଣପାତ କରିବାକୁ ହେବ । ଆମକୁ ମଧ୍ୟ —

ଇହାସନେ ଶୁଷ୍ୟତୁ ମେ ଶରୀରଂ ତ୍ୱଗସ୍ଥିମାଂସଂ ପ୍ରଳୟଞ୍ଚ ଯାତୁ ।
ଅପ୍ରାପ୍ୟ ବୋଧିଂ ବହୁକଳ୍ପଦୁର୍ଲଭାଂ ନୈବାସନାତ୍ କାୟମତଶ୍ଚଳିଷ୍ୟତେ ।।[୨]

---

୧. ଠାକୁର ଏହି କଥାଗୁଡ଼ିକ ଅନ୍ୟଭାବରେ କହିଥିଲେ ।
୨. ଲଳିତବିସ୍ତର । (୯/୫୭)

—କରିବାକୁ ହେବ । ଦିନରାତି ସେହିପରି ବୈରାଗ୍ୟ ଆଲୋଚନା କରୁ କରୁ ସ୍ୱାମୀଜୀ ଦିନେ ସହସା ବୁଦ୍ଧଗୟା ଚାଲିଗଲେ । କିନ୍ତୁ କେଉଁଠାକୁ ଯିବେ, କେବେ ଫେରିବେ ସେକଥା କାହାକୁ ଜଣାଇଲେ ନାହିଁ; ତେଣୁ ଆମମାନଙ୍କ ମଧ୍ୟରୁ କେହି କେହି ମନେ କଲେ ସେ ବୋଧହୁଏ ଆଉ ସଂସାରକୁ ଫେରିବେ ନାହିଁ, ଆମେ ଆଉ ବୋଧେ ତାଙ୍କୁ ଦେଖିପାରିବୁ ନାହିଁ ! ପରେ ଖବର ମିଳିଲା, ସେ ଗୈରିକ ଧାରଣ କରି ବୁଦ୍ଧଗୟା ଯାଇଛନ୍ତି । ଆମ ସମସ୍ତଙ୍କର ମନ ସେହି ସମୟରେ ସ୍ୱାମୀଜୀଙ୍କ ପ୍ରତି ଏପରି ବିଶେଷ ଆକୃଷ୍ଟ ଥିଲା ଯେ ଦଣ୍ଡେ ତାଙ୍କୁ ଛାଡ଼ି ରହିବା ଅତୀବ ଯନ୍ତ୍ରଣାଦାୟକ ହେଉଥିଲା, ତେଣୁ ମନ ଚଞ୍ଚଳ ହୋଇ ଅନେକଙ୍କର ସ୍ୱାମୀଜୀଙ୍କ ନିକଟକୁ ଯିବା ପାଇଁ ଇଚ୍ଛା ହେଲା । କ୍ରମେ ଠାକୁରଙ୍କ କାନରେ ଏକଥା ପଡ଼ିଲା । ସ୍ୱାମୀ ବ୍ରହ୍ମାନନ୍ଦ ଦିନେ ଜଣଙ୍କର ସେହି ବିଷୟରେ ସଂକଳ୍ପ ଜାଣିପାରି ଠାକୁରଙ୍କୁ ତାଙ୍କ କଥା କହିଦେଲେ । ଠାକୁର ଏହା ଶୁଣି ତାଙ୍କୁ କହିଲେ— ''କାହିଁକି ଭାବୁଛୁ ? କେଉଁଠାକୁ ସେ ଯିବ (ସ୍ୱାମୀଜୀ) ? କେତେଦିନ ବାହାରେ ରହିପାରିବ ? ଦେଖନା ହେଇ ଆସିଲା ।'' ତାପରେ ହସି ହସି କହିଲେ— ''ଚତୁର୍ଦ୍ଦିଗ ବୁଲି ଆସ, ଦେଖିବୁ କେଉଁଠି କିଛି (ଯଥାର୍ଥ ଧର୍ମ) ନାହିଁ; ଯାହା କିଛି ଅଛି ସବୁ (ନିଜର ଶରୀରକୁ ଦେଖାଇ) ଏହିଠାରେ !'' 'ଏହିଠାରେ'—କଥାଟି ଠାକୁର ବୋଧହୁଏ ଦୁଇଟି ଭାବରେ—ବ୍ୟବହାର କରିଥିଲେ, ଯଥା—ତାଙ୍କର ନିଜ ଭିତରର ଧର୍ମ-ଭାବର, ଐଶ୍ୱରୀୟ-ଭାବର ବର୍ତ୍ତମାନ ଯେପରି ବିଶେଷ ପ୍ରକାଶ ରହିଅଛି ସେପରି ଆଉ କେଉଁଠି ନାହିଁ; ଅଥବା ପ୍ରତ୍ୟେକଙ୍କ ନିଜ ଭିତରେ ହିଁ ଈଶ୍ୱର ଅଛନ୍ତି; ନିଜ ଭିତରେ ତାଙ୍କ ପ୍ରତି ଭକ୍ତି ଭଲପାଇବା ପ୍ରଭୃତି ଭାବ ଉଦ୍ଦୀପିତ କରି ନ ପାରିଲେ ବାହାରେ ବିଭିନ୍ନ ସ୍ଥାନ ଘୁରି ବୁଲିଲେ କିଛି ଲାଭ ହୁଏ ନାହିଁ । ଠାକୁରଙ୍କର ଅନେକ କଥାରେ ଏହିପରି ଦୁଇ ବା ତତୋଽଧିକ ଭାବର ଅର୍ଥ ମିଳିଥାଏ । କେବଳ ଠାକୁରଙ୍କର କାହିଁକି ? ଜଗତରେ ଯେତେ ଅବତାରପୁରୁଷ ଯୁଗେ ଯୁଗେ ଜନ୍ମଗ୍ରହଣ କରିଛନ୍ତି, ସେମାନଙ୍କର ସମସ୍ତଙ୍କ କଥାରେ ହିଁ ସେହିପ୍ରକାର ବହୁଭାବ ମିଳିଥାଏ ଏବଂ ସାଧାରଣ ମନୁଷ୍ୟଙ୍କର ଯାହାର ଯେପରି ଅଭିରୁଚି, ଯାହାର ଯେପରି ସଂସ୍କାର ସେସବୁ କଥାର ସେହିପରି ଅର୍ଥ ହିଁ ଗ୍ରହଣ କରିଥାଆନ୍ତି । ଯାହାକୁ ସମ୍ବୋଧନ କରି ଠାକୁର ପୂର୍ବୋକ୍ତ କଥାଗୁଡ଼ିକ କହିଲେ, ସେ କିନ୍ତୁ ଏକ୍ଷେତ୍ରରେ ସେଗୁଡ଼ିକର ପ୍ରଥମ ଅର୍ଥ ହିଁ ବୁଝିଲେ ଏବଂ ଠାକୁରଙ୍କ ଭିତରେ ଈଶ୍ୱରୀୟ ଭାବର ଯେପରି ପ୍ରକାଶ, ସେପରି ଅନ୍ୟ କେଉଁଠାରେ ନାହିଁ ଏକଥା ଦୃଢ଼ ଧାରଣା କରି ନିଶ୍ଚିନ୍ତ ମନରେ ତାଙ୍କ ନିକଟରେ ଅବସ୍ଥାନ କରିବାକୁ ଲାଗିଲେ । ସ୍ୱାମୀ ବିବେକାନନ୍ଦ ମଧ୍ୟ ବାସ୍ତବିକ କିଛିଦିନ ପରେ ପୁଣି କାଶୀପୁରକୁ ଫେରିଆସିଲେ ।

**ଯାହାର ଏଠାରେ ଅଛି ତାହାର ସେଠାରେ ଅଛି :**

ପରମ ଭକ୍ତିମତୀ ଜନୈକା ସ୍ତ୍ରୀ-ଭକ୍ତ ମଧ୍ୟ ଥରେ ଠାକୁରଙ୍କ ଶରୀର ରକ୍ଷାର କିଛିକାଳ ପୂର୍ବରୁ ତାଙ୍କ ନିକଟରେ ଶ୍ରୀବୃନ୍ଦାବନ ଯାଇ କିଛିଦିନ ତପସ୍ୟାଦି କରିବାର ବାସନା ପ୍ରକାଶ କରିଥିଲେ । ଠାକୁର ସେସମୟରେ ତାଙ୍କୁ ହାତ ହଲାଇ କହିଥିଲେ, ''କାହିଁକି ଯିବୁ ? କ'ଣ କରିବାକୁ ଯିବୁ ? ଯାହାର ଏଠାରେ ଅଛି, ତାହାର ସେଠାରେ ଅଛି — ଆଉ ଯାହାର ଏଠାରେ ନାହିଁ ତାହାର ସେଠାରେ ମଧ୍ୟ ନାହିଁ ।'' ସ୍ତ୍ରୀ-ଭକ୍ତଟି ମନର ଅନୁରାଗରେ ସେତେବେଳେ ଠାକୁରଙ୍କ ସେ କଥା ଗ୍ରହଣ କରି ନ ପାରି ବିଦାୟ ନେଲେ । କିନ୍ତୁ ସେଥର ତୀର୍ଥ ଗମନ କରି ସେ କୌଣସି ବିଶେଷ ଫଳ ଯେ ଲାଭ କରିପାରି ନ ଥିଲେ ଏକଥା ଆମେ ତାଙ୍କଠାରୁ ଶ୍ରବଣ କରିଥିଲୁ । ଅଧିକନ୍ତୁ ଠାକୁରଙ୍କ ସହିତ ମଧ୍ୟ ତାଙ୍କର ଆଉ ସାକ୍ଷାତ ହେଲା ନାହିଁ, କାରଣ ଏହାର ଅଳ୍ପକାଳ ପରେ ହିଁ ଠାକୁର ଶରୀର-ରକ୍ଷା କଲେ ।

**ଠାକୁରଙ୍କର ସରଳ ମନ ତୀର୍ଥକୁ<br>ଯାଇ କ'ଣ ଦେଖିବେ ବୋଲି ଭାବିଥିଲେ :**

ଭାବମୟ ଠାକୁରଙ୍କର ତୀଥଯାତ୍ରା ବିଶେଷ ଭାବ ନେଇ ହୋଇଥିଲା, ଏକଥା ଆମେ ତାଙ୍କ ନିକଟରୁ ଅନେକଥର ଶୁଣିଛୁ । ସେ କହୁଥିଲେ, ''ଭାବିଥିଲି, କାଶୀରେ ସମସ୍ତେ ଚବିଶ ଘଣ୍ଟା ଶିବଙ୍କର ଧ୍ୟାନରେ ସମାଧିସ୍ଥ ଅଛନ୍ତି ଦେଖିବାକୁ ପାଇବି; ବୃନ୍ଦାବନରେ ସମସ୍ତେ ଗୋବିନ୍ଦଙ୍କୁ ନେଇ ଭାବରେ ପ୍ରେମରେ ବିହ୍ୱଳ ହୋଇ ରହିଛନ୍ତି ବୋଲି ଦେଖିବି । ଯାଇ ଦେଖିଲି ସବୁ ବିପରୀତ !'' ଠାକୁରଙ୍କର ଅଦୃଷ୍ଟପୂର୍ବ ସରଳ ମନ ସମସ୍ତ କଥା ପାଞ୍ଚବର୍ଷର ବାଳକ ସଦୃଶ ସରଳଭାବରେ ଗ୍ରହଣ ଓ ବିଶ୍ୱାସ କରୁଥିଲା । ଆମେ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ସନ୍ଦେହ ଚକ୍ଷୁରେ ଦେଖିବାକୁ ହିଁ ବାଲ୍ୟକାଳରୁ ସଂସାରରେ ଶିକ୍ଷାଲାଭ କରିଅଛୁ; ଆମମାନଙ୍କର କ୍ରୂର ମନରେ ସେପରି ବିଶ୍ୱାସ କିପରି ଉଦୟ ହେବ ? କୌଣସି କଥା ସରଳ ଭାବରେ କାହାକୁ ବିଶ୍ୱାସ କରିବା ଦେଖିଲେ, ଆମେମାନେ ତାହାକୁ ବୋକା ନିର୍ବୋଧ ବୋଲି ହିଁ ଧାରଣା କରିଥାଉ । ଠାକୁରଙ୍କ ନିକଟରୁ ହିଁ ପ୍ରଥମେ ଶୁଣିଲୁ, ''ଆରେ, ଅନେକ ତପସ୍ୟା, ଅନେକ ସାଧନା ଫଳରେ ଲୋକେ ସରଳ ଉଦାର ହୁଅନ୍ତି, ସରଳ ନ ହେଲେ ଈଶ୍ୱର ମିଳନ୍ତି ନାହିଁ; ସରଳ ବିଶ୍ୱାସୀଙ୍କ ପାଖରେ ହିଁ ସେ ନିଜର ସ୍ୱରୂପ ପ୍ରକାଶ କରନ୍ତି ।'' ପୁଣି ସରଳ ବିଶ୍ୱାସୀ ହେବାକୁ ହେବ ଶୁଣି ଯଦି କେହି ବୋକା ମର୍କଟ ହେବାକୁ ପଡ଼ିବ ବୋଲି ଭାବନ୍ତି, ଏଥିପାଇଁ ଠାକୁର କହୁଥିଲେ, ''ଭକ୍ତ ହେବୁ ତା ବୋଲି ବୋକା ହେବୁ କାହିଁକି ?'' ଆହୁରି କହୁଥିଲେ, ''ସର୍ବଦା ମନେ ମନେ ବିଚାର କରିବୁ — କେଉଁଟା ସତ୍ ପୁଣି କେଉଁଟା

ଅସତ୍, କେଉଁଟା ନିତ୍ୟ କେଉଁଟା ଅନିତ୍ୟ, ତେଣୁ ଅନିତ୍ୟ ଜିନିଷକୁ ତ୍ୟାଗ କରି ନିତ୍ୟ ପଦାର୍ଥରେ ମନ ରଖିବୁ ।''

## 'ଭକ୍ତ ହେବୁ ବୋଲି ବୋକା ହେବୁ କାହିଁକି ?' ଠାକୁରଙ୍କର ଯୋଗାନନ୍ଦ ସ୍ୱାମୀଙ୍କୁ ଏହି ବିଷୟରେ ଉପଦେଶ :

ସେହି ଦୁଇ ପ୍ରକାର କଥାରେ ସାମଞ୍ଜସ୍ୟ କରି ନ ପାରି ଆମ ଭିତରେ ଅନେକେ ଅନେକ ସମୟରେ ତାଙ୍କ ନିକଟରେ ତିରସ୍କୃତ ମଧ୍ୟ ହୋଇଛନ୍ତି । ସ୍ୱାମୀ ଯୋଗାନନ୍ଦ ସେତେବେଳେ ଗୃହତ୍ୟାଗ କରି ନ ଥିଲେ । ଘରେ ଗୋଟିଏ କଡ଼େଇର ଦରକାର ଥିବାରୁ ବଡ଼ବଜାରକୁ ଗୋଟିଏ କଡ଼େଇ କିଣିବାକୁ ଗଲେ । କିଣିବା ବେଳେ ଦୋକାନୀକୁ ଧର୍ମଭୟ ଦେଖାଇ କହିଲେ, ''ଦେଖ ବାବା, ଠିକ୍ ଦାମ୍‌ନେଇ ଭଲ ଜିନିଷ ଦିଅ, ଫଟା ଫୁଟା ଯେପରି ନ ଥାଏ ।'' ଦୋକାନୀ ମଧ୍ୟ 'ଆଜ୍ଞା, ମହାଶୟ ତାହା ଦେବି ନିଶ୍ଚୟ', ଇତ୍ୟାଦି ନାନା କଥା କହି ବାଛିବୁଛି ତାଙ୍କୁ ଗୋଟିଏ କଡ଼େଇ ଦେଲା । ସେ ଦୋକାନୀ କଥା ବିଶ୍ୱାସ କରି କଡ଼େଇଟିକୁ ନିଜେ ପରୀକ୍ଷା ନ କରି ହିଁ ନେଇ ଆସିଲେ; କିନ୍ତୁ ଦକ୍ଷିଣେଶ୍ୱର ଆସି ଦେଖିଲେ, କଡ଼େଇଟା ଫଟା । ଠାକୁର ସେ କଥା ଶୁଣି କହିଲେ, ''ସେ କ'ଣ ରେ ? ଜିନିଷଟା ଆଣିଲୁ, ନିଜେ ଦେଖି ଆଣିଲୁ ନାହିଁ ? ଦୋକାନୀ ବ୍ୟବସାୟ କରିବାକୁ ବସିଛି—ସେ ତ ଆଉ ଧର୍ମ କରିବାକୁ ବସି ନାହିଁ ? ତା କଥାରେ ବିଶ୍ୱାସ କରି ଠକି ଆସିଲୁ ? ଭକ୍ତ ହେବୁ, ତା' ବୋଲି ବୋକା ହେବୁ ? ଲୋକେ ତୋତେ ଠକି ଦେବେ ? ଠିକ୍ ଜିନିଷ ଦେଲା କି ନାହିଁ ଦେଖି ତେବେ ଦାମ୍ ଦେବୁ; ଓଜନରେ କମ୍ ଦେଲା କି ନାହିଁ ତା ମଧ୍ୟ ଦେଖିବୁ; ଆହୁରି ମଧ୍ୟ ଯେସବୁ ଜିନିଷରେ ଲାଭ ମିଳେ, ତାହା କିଣିଲେ ଲାଭ ମଧ୍ୟ ଛାଡ଼ି ଆସିବୁ ନାହିଁ ।'' ଏପରି ଆହୁରି ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ, କିନ୍ତୁ ଏହା ସେସ୍ଥାନ ନୁହେଁ । ଏଠାରେ ଆମେ ଠାକୁରଙ୍କର ଅଦୃଷ୍ଟପୂର୍ବ ସରଳତାର ସହିତ ଅଦ୍ଭୁତ ବିଚାରଶୀଳତାର କଥାର ଉଲ୍ଲେଖମାତ୍ର କରି ପୂର୍ବାନୁସରଣ କରିବା ।

## କାଶୀବାସୀଙ୍କର ବିଷୟାନୁରାଗ ଦର୍ଶନରେ ଠାକୁରଙ୍କ କଥା—'ମା, ତୁ ମୋତେ ଏଠାକୁ କାହିଁକି ଆଣିଲୁ ?'

ଠାକୁରଙ୍କ ନିକଟରୁ ଶୁଣିଛୁ ଏହି ତୀର୍ଥ ଭ୍ରମଣ ଉପଲକ୍ଷେ ମଥୁର ଏକଲକ୍ଷ ଟଙ୍କାରୁ ଅଧିକ ଅର୍ଥ ବ୍ୟୟ କରିଥିଲେ । ମଥୁର କାଶୀ ଆସି ବ୍ରାହ୍ମଣ ପଣ୍ଡିତମାନଙ୍କୁ ପ୍ରଥମେ ମାଧୁକରୀ ଦେଲେ; ଏହାପରେ ଦିନେ ସେମାନଙ୍କୁ ସପରିବାର ନିମନ୍ତ୍ରଣ କରି ପରିତୋଷପୂର୍ବକ ଭୋଜନ, ପ୍ରତ୍ୟେକଙ୍କୁ ଖଣ୍ଡିଏ ଲେଖାଏଁ ବସ୍ତ୍ର ଓ ଟଙ୍କାଏ ଲେଖା ଦକ୍ଷିଣା ଦେଲେ; ପୁଣି ଶ୍ରୀବୃନ୍ଦାବନ ଦର୍ଶନ କରି ଏଠାକୁ ପୁନରାଗମନ କରି ଠାକୁରଙ୍କ ଆଜ୍ଞାରେ ଦିନେ 'କଳ୍ପତରୁ' ହୋଇ ବାସନ, ବସ୍ତ୍ର, କମ୍ବଳ, ପାଦୁକା

ପ୍ରଭୃତି ନିତ୍ୟ ଆବଶ୍ୟକୀୟ ବ୍ୟବହାର୍ଯ୍ୟ ଜିନିଷସକଳ ମଧ୍ୟରେ ଯିଏ ଯାହା ଚାହିଁଲା ତାକୁ ତାହା ପ୍ରଦାନ କରିଥିଲେ । ମାଧୁକରୀ ଦେବା ଦିନ ହିଁ ବ୍ରାହ୍ମଣ-ପଣ୍ଡିତମାନଙ୍କ ମଧ୍ୟରେ ବିବାଦ ଗଣ୍ଡଗୋଳ, ଏପରି କି ପରସ୍ପର ମଧ୍ୟରେ ମରାମରି ପର୍ଯ୍ୟନ୍ତ ହେବା ଦେଖି ଠାକୁରଙ୍କ ମନରେ ବିଷମ ବିରାଗ ଉପସ୍ଥିତ ହେଲା ଏବଂ ବାରାଣସୀରେ ମଧ୍ୟ ସାଧାରଣ ଲୋକ ଅନ୍ୟ ସବୁସ୍ଥାନ ପରି କାମକାଞ୍ଚନରେ ରତ ରହିଥିବାର ଦେଖି ତାଙ୍କ ମନରେ ଏକ ପ୍ରକାର ହତାଶାର ଭାବ ଆସିଥିଲା । ସେ ସଜଳନୟନରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ କହିଥିଲେ, ''ମା', ତୁ ମୋତେ ଏଠାକୁ କାହିଁକି ଆଣିଲୁ ? ଏହାଠାରୁ ଦକ୍ଷିଣେଶ୍ୱରରେ ମୁଁ ଯେ ଭଲରେ ଥିଲି ।''

### ଠାକୁରଙ୍କର 'ସ୍ୱର୍ଣ୍ଣମୟୀ କାଶୀ' ଦର୍ଶନ :

ଏହିପରି ସାଧାରଣ ଲୋକଙ୍କ ମଧ୍ୟରେ ପ୍ରବଳ ବିଷୟାନୁରାଗ ଦେଖି ବ୍ୟଥିତ ହେଲେ ମଧ୍ୟ ଏଠାରେ ଅଦ୍ଭୁତ ଦର୍ଶନ ଆଦି ହୋଇ ଠାକୁରଙ୍କର ଶିବ-ମହିମା ଏବଂ କାଶୀର ମାହାତ୍ମ୍ୟ ସମ୍ବନ୍ଧରେ ଦୃଢ଼ ଧାରଣା ହୋଇଥିଲା । ନୌକାଯୋଗେ ବାରାଣସୀରେ ପ୍ରବେଶ ସମୟରୁ ହିଁ ଠାକୁର ଭାବ-ନୟନରେ ଦେଖୁଥିଲେ ଶିବପୁରୀ ବାସ୍ତବିରେ ସୁବର୍ଣ୍ଣରେ ନିର୍ମିତ—ବାସ୍ତବିକ ଏଠାରେ ମୃତ୍ତିକା ପ୍ରସ୍ତରର ଏକାନ୍ତ ଅଭାବ—ବାସ୍ତବରେ ଯୁଗ ଯୁଗାନ୍ତର ଧରି ସାଧୁ-ଭକ୍ତମାନଙ୍କର କାଞ୍ଚନତୁଲ୍ୟ ସମୁଜ୍ଜ୍ୱଳ, ଅମୂଲ୍ୟ ହୃଦୟର ଭାବରାଶି ସ୍ତରେ ସ୍ତରେ ପୁଞ୍ଜୀକୃତ ଓ ଘନୀଭୂତ ହୋଇ ଏହାର ବର୍ତ୍ତମାନ ଆକାରରେ ପ୍ରକାଶ ହୋଇଛି । ସେହି ଜ୍ୟୋତିର୍ମୟ ଭାବଘନ ମୂର୍ତ୍ତି ହିଁ ଏହାର ନିତ୍ୟ ସତ୍ୟ ରୂପ—ଆଉ ବାହାରେ ଯାହା ଦେଖାଯାଏ ତାହା କେବଳ ଛାୟାମାତ୍ର ।

### କାଶୀକୁ 'ସୁବର୍ଣ୍ଣ-ନିର୍ମିତ' କାହିଁକି କୁହାଯାଏ :

ସ୍ଥୂଳ ଦୃଷ୍ଟିରେ ମଧ୍ୟ 'ସୁବର୍ଣ୍ଣ-ନିର୍ମିତ ବାରାଣସୀ' କଥାଟିର ଏକ ସାଧାରଣ ଅର୍ଥ ହୃଦୟଙ୍ଗମ କରିବାକୁ ବିଶେଷ ଚେଷ୍ଟାର ଆବଶ୍ୟକ ହୁଏ ନାହିଁ । କାଶୀର ଅସଂଖ୍ୟ ମନ୍ଦିର ଓ ଅଟ୍ଟାଳିକା, କାଶୀର କ୍ରୋଶାଧିକବ୍ୟାପୀ ପ୍ରସ୍ତର ନିର୍ମିତ ଗଙ୍ଗାତଟ ଓ ବିସ୍ତୀର୍ଣ୍ଣ-ସୋପାନାବଳୀ-ସମନ୍ୱିତ ଅଗଣିତ ସ୍ନାନର ଘାଟ, କାଶୀର ପ୍ରସ୍ତର-ମଣ୍ଡିତ ତୋରଣ-ଭୂଷିତ ଅସଂଖ୍ୟ ପଥ, ପୟଃ-ପ୍ରଣାଳୀ, ଛୋଟବଡ଼ ପୁଷ୍କରିଣୀ, କୂଅ, ମଠ ଓ ଉଦ୍ୟାନବାଟିକା ଏବଂ ସର୍ବୋପରି କାଶୀର ବ୍ରାହ୍ମଣ, ବିଦ୍ୟାର୍ଥୀ, ସାଧୁ ଓ ଦରିଦ୍ରଗଣଙ୍କ ପୋଷଣ ନିମିତ୍ତ ଅସଂଖ୍ୟ ଅନ୍ନଛତ୍ରସକଳ ଦେଖି କିଏ ବା ନ କହିବ ଯେ ବହୁ ପ୍ରାଚୀନକାଳରୁ ଭାରତର ସର୍ବପ୍ରଦେଶ ମିଳିତ ହୋଇ ଅଜସ୍ର ସୁବର୍ଣ୍ଣ-ବର୍ଷଣରେ ହିଁ ଏହି ବିଚିତ୍ର ଶିବପୁରୀ ନିର୍ମାଣ କରିଛନ୍ତି ? ଭାରତର କୋଟି କୋଟି ହୃଦୟର ଭକ୍ତିଭାବ ଏତେକାଳ ଧରି ଏହିପରି ଏହି ନଗରୀରେ ଯେ ସମଭାବରେ ମିଳିତ ରହି ଏହାର ଏହିପ୍ରକାର ବହିଃପ୍ରକାଶ ଆନୟନ କରୁଅଛି,

ଏହା ଭାବି କାହାର ମନ ସ୍ତମ୍ଭିତ ନ ହେବ ? କିଏ ଏହି ବିପୁଳ ଭାବପ୍ରବାହର ଅଦମ୍ୟ ବେଗ ଦେଖି ମୋହିତ ଏବଂ ତାହାର ଉତ୍ପତ୍ତିନିର୍ଣ୍ଣୟ କରିବାକୁ ଯାଇ ଆତ୍ମହରା ନ ହେବ ? କିଏ ଅବା ବିସ୍ମିତ ହୋଇ ଭକ୍ତିପୂର୍ଣ୍ଣ ହୃଦୟରେ ଅବନତ ମସ୍ତକରେ ନ କହିବ ଯେ, ଏହି ସୃଷ୍ଟି ବାସ୍ତବିକ ଅତୁଳନୀୟ, ବାସ୍ତବରେ ଏହା ମନୁଷ୍ୟକୃତ ନୁହେଁ, ପ୍ରକୃତରେ ଅସହାୟ ଜୀବ ପ୍ରତି ଦୀନଶରଣ ଆର୍ତ୍ତତ୍ରାଣ ଶ୍ରୀବିଶ୍ୱନାଥଙ୍କର ଅପାର କରୁଣା ହିଁ ଏହାର ଜନ୍ମ ଦେଇଅଛି ଏବଂ ତାଙ୍କର ସାକ୍ଷାତ୍ ଶକ୍ତି ହିଁ ଶ୍ରୀଅନ୍ନପୂର୍ଣ୍ଣାରୂପରେ ଏଠାରେ ଚିର ଅଧିଷ୍ଠିତା ରହି ଅନ୍ନବିତରଣରେ ଜୀବର ଅନ୍ନମୟ ଓ ପ୍ରାଣମୟ ଏବଂ ଆଧ୍ୟାତ୍ମିକ ଭାବବିତରଣରେ ତାହାର ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ ଶରୀରର ପୂର୍ଣ୍ଣ ପୁଷ୍ଟିବିଧାନ କରୁଛନ୍ତି ଏବଂ ଦ୍ରୁତପଦରେ ତାହାକୁ ମୁକ୍ତି ବା ଶ୍ରୀବିଶ୍ୱନାଥଙ୍କ ସହିତ ଏକାତ୍ମବୋଧରେ ଆନୟନ କରୁଛନ୍ତି ! ଭାବମୁଖରେ ଅବସ୍ଥିତ ଠାକୁର ଏଠାରେ ପହଞ୍ଚିବା ମାତ୍ରେ ଯେ ସେହି ଦିବ୍ୟ ହେମମୟ ଭାବପ୍ରବାହ ଶିବପୁରୀର ସର୍ବତ୍ର ଓତଃପ୍ରୋତଭାବରେ ପରିବ୍ୟାପ୍ତ ଦେଖିବାକୁ ପାଇବେ ଏବଂ ତାହାର ହିଁ ଘନୀଭୂତ ପ୍ରକାଶ-ରୂପରେ ଏହି ନଗରୀକୁ ସୁବର୍ଣ୍ଣମୟ ବୋଲି ଉପଲବ୍ଧି କରିବେ, ଏଥିରେ ଆଉ ବୈଚିତ୍ର୍ୟ କ'ଣ ଅଛି ?

### ସ୍ୱର୍ଣ୍ଣମୟ କାଶୀ ଦେଖି ଠାକୁରଙ୍କର ସେହି ସ୍ଥାନକୁ ଅପବିତ୍ର କରିବାକୁ ଭୟ :

ପ୍ରକାଶଶୀଳ ପଦାର୍ଥମାତ୍ରେ ହିଁ ହିନ୍ଦୁଙ୍କ ଚକ୍ଷୁରେ ସତ୍ତ୍ୱଗୁଣ-ପ୍ରସୂତ ଓ ପବିତ୍ର । ଆଲୋକରୁ ପଦାର୍ଥସକଳର ପ୍ରକାଶ, ସେଥିପାଇଁ ଆଲୋକ ବା ଉଜ୍ଜ୍ୱଳତା ଆମ ନିକଟରେ ପବିତ୍ର; ଦେବତାଙ୍କ ନିକଟରେ ଜ୍ୟୋତି ପ୍ରଦୀପ ରଖିବା, ଦେବଦେବୀଙ୍କ ସମ୍ମୁଖରେ ଦୀପ ନିର୍ବାପିତ ନ କରିବା, ଏସବୁ ଶାସ୍ତ୍ର-ନିୟମରୁ ହିଁ ଆମେ ଏକଥା ବୁଝିପାରୁ । ଏଥିପାଇଁ ବୋଧହୁଏ ଉଜ୍ଜ୍ୱଳ ପ୍ରକାଶଯୁକ୍ତ ସୁବର୍ଣ୍ଣ ଆଦି ପଦାର୍ଥସମୂହକୁ ପବିତ୍ର ବୋଲି ଦେଖିବାର, ଶରୀରର ଅଧୋଭାଗରେ ସୁବର୍ଣ୍ଣ ଅଳଙ୍କାର-ଧାରଣ ନ କରିବାର ବିଧିସମୂହର ଉତ୍ପତ୍ତି ହୋଇଥିଲା । ବାରାଣସୀ ସର୍ବଦା ସୁବର୍ଣ୍ଣମୟ ଦେଖିବାକୁ ପାଇ ଶୌଚାଦି କରି ସୁବର୍ଣ୍ଣକୁ ଅପବିତ୍ର କରିବାକୁ ହେବ ବୋଲି ବାଳକସ୍ୱଭାବ ଠାକୁର ପ୍ରଥମେ ଏହା ଭାବି ଆକୁଳ ହୋଇଥିଲେ । ତାଙ୍କର ଶ୍ରୀମୁଖରୁ ଶୁଣିଛୁ, ଏଥିପାଇଁ ସେ ମଥୁରଙ୍କୁ କହି ପାଲିଙ୍କିର ବନ୍ଦୋବସ୍ତ କରି କିଛିଦିନ ଅସୀନଦୀର କୂଳକୁ ଯାଇ ସେଠାରେ (ବାରାଣସୀର ବାହାରେ) ଶୌଚକର୍ମ ସାରି ଆସୁଥିଲେ । ପରେ ସେହି ଭାବର ବିରାମ ହେବାରୁ ଆଉ ସେପରି କରିବାକୁ ପଡୁ ନ ଥିଲା ।

## କାଶୀରେ ମୃତ୍ୟୁ ହେଲେ ଜୀବର ମୁକ୍ତି ହେବା କଥାରେ ଠାକୁରଙ୍କର ମଣିକର୍ଣ୍ଣିକାରେ ଦର୍ଶନ :

କାଶୀରେ ଆଉ ଗୋଟିଏ ବିଶେଷ ଦର୍ଶନ କଥା ଆମେ ଠାକୁରଙ୍କର ଶ୍ରୀମୁଖରୁ ଶୁଣିଥିଲୁ । ବାରାଣସୀର ମଣିକର୍ଣ୍ଣିକାଦି ପଞ୍ଚତୀର୍ଥ ଦର୍ଶନ ପାଇଁ ଅନେକେ ଗଙ୍ଗାବକ୍ଷରେ ନୌକାଦ୍ୱାରା ଯାଇଥାନ୍ତି । ମଥୁର ମଧ ଠାକୁରଙ୍କୁ ସାଙ୍ଗରେ ଘେନି ସେପରି ଯାଇଥିଲେ । ମଣିକର୍ଣ୍ଣିକା ଘାଟ ପାଖରେ କାଶୀର ପ୍ରଧାନ ଶ୍ମଶାନଭୂମି । ମଥୁରଙ୍କ ନୌକା ଯେତେବେଳେ ମଣିକର୍ଣ୍ଣିକା ଘାଟ ସମ୍ମୁଖରେ ପହଞ୍ଚିଲା ସେତେବେଳେ ଦେଖାଗଲା ଶ୍ମଶାନ ଚିତାଧୂମ୍ରରେ ବ୍ୟାପ୍ତ—ଶବଦେହଗୁଡ଼ିକ ସେଠାରେ ଦାହ କରାହେଉଛି । ଭାବମୟ ଠାକୁର ସହସା ସେଆଡ଼କୁ ଦେଖି ଆନନ୍ଦରେ ଉତ୍‌ଫୁଲ୍ଲ ଓ ରୋମାଞ୍ଚିତକଳେବର ହୋଇ ନୌକା ବାହାରକୁ ଧାଇଁ ଆସିଲେ ଏବଂ ନୌକାର ଗୋଟିଏ ପାର୍ଶ୍ୱରେ ଠିଆ ହୋଇ ସମାଧିସ୍ଥ ହୋଇଗଲେ । ମଥୁରଙ୍କ ପଣ୍ଡା ଓ ନୌକାର ନାଉରୀଆମାନେ ଲୋକଟି ଜଳରେ ପଡ଼ି ସ୍ରୋତରେ ଭାସିଯିବେ ଭାବି ଠାକୁରଙ୍କୁ ଧରିବାକୁ ଦୌଡ଼ି ଆସିଲେ । କିନ୍ତୁ କେହିହେଲେ ଧରିବାକୁ ପଡ଼ିଲା ନାହିଁ; ଦେଖାଗଲା ଠାକୁର ଧୀର ସ୍ଥିର ନିଃଶ୍ଚେଷ୍ଟଭାବରେ ଦଣ୍ଡାୟମାନ ଅଛନ୍ତି ଏବଂ ଏକ ଅଦ୍ଭୁତ ଜ୍ୟୋତି ଓ ହାସ୍ୟରେ ତାଙ୍କର ମୁଖମଣ୍ଡଳ ସମୁଦ୍ଭାସିତ ହୋଇ ଯେପରି ସେହି ସ୍ଥାନଟିକୁ ଶୁଦ୍ଧ ଜ୍ୟୋତିର୍ମୟ କରିଛନ୍ତି । ମଥୁର ଓ ଠାକୁରଙ୍କ ଭଣଜା ହୃଦୟ ସାବଧାନରେ ତାଙ୍କ ନିକଟରେ ଆସି ଠିଆ ହୋଇରହିଲେ । ନାଉରିଆମାନେ ମଧ ବିସ୍ମୟପୂର୍ଣ୍ଣ ନୟନରେ ଠାକୁରଙ୍କର ଅଦ୍ଭୁତ ଭାବ ଦୂରରେ ଠିଆହୋଇ ନିରୀକ୍ଷଣ କରିବାକୁ ଲାଗିଲେ । କିଛିକ୍ଷଣ ପରେ ଠାକୁରଙ୍କର ସେହି ଦିବ୍ୟ ଭାବର ବିରାମ ହେବାରୁ ସମସ୍ତେ ମଣିକର୍ଣ୍ଣିକା ଘାଟରେ ଓହ୍ଲାଇ ସ୍ନାନଦାନାଦି ସାରି ପୁନରାୟ ନୌକାରେ ଅନ୍ୟତ୍ର ଗମନ କଲେ ।

ସେତେବେଳେ ଠାକୁର ତାଙ୍କର ସେଇ ଅଦ୍ଭୁତ ଦର୍ଶନ କଥା ମଥୁର ପ୍ରଭୃତିଙ୍କୁ କହିବାକୁ ଲାଗିଲେ । କହିଲେ, "ଦେଖିଲି ପିଙ୍ଗଳବର୍ଣ୍ଣ ଜଟାଧାରୀ ଦୀର୍ଘାକାର ଏକ ଶ୍ୱେତକାୟ ପୁରୁଷ ଗମ୍ଭୀର ପଦବିକ୍ଷେପରେ ଶ୍ମଶାନର ପ୍ରତ୍ୟେକ ଚିତା ପାର୍ଶ୍ୱକୁ ଆଗମନ କରୁଛନ୍ତି ଏବଂ ପ୍ରତ୍ୟେକ ଦେହୀଙ୍କୁ ସଯତ୍ନରେ ଉତ୍ତୋଳନ କରି ତାହାର କର୍ଣ୍ଣରେ ତାରକ-ବ୍ରହ୍ମମନ୍ତ୍ର ପ୍ରଦାନ କରୁଛନ୍ତି ! —ସର୍ବଶକ୍ତିମୟୀ ଶ୍ରୀଶ୍ରୀଜଗଦମ୍ବା ମଧ ସ୍ୱୟଂ ମହାକାଳୀରୂପରେ ଜୀବର ଅପର ପାର୍ଶ୍ୱରେ ସେଇ ଚିତା ଉପରେ ବସି, ତାହାର ସ୍ଥୂଳ, ସୂକ୍ଷ୍ମ, କାରଣ ପ୍ରଭୃତି ସମସ୍ତ ପ୍ରକାରର ସଂସ୍କାର-ବନ୍ଧନ ଖୋଲିଦେଉଛନ୍ତି ଏବଂ ନିର୍ବାଣର ଦ୍ୱାର ଉନ୍ମୁକ୍ତ କରି ସ୍ୱହସ୍ତରେ ତାଙ୍କୁ ଅଖଣ୍ଡର ଘରକୁ ପ୍ରେରଣ କରୁଛନ୍ତି । ଏହି ରୂପରେ ବହୁକଳ୍ପର ଯୋଗ-ତପସ୍ୟାରେ ଯେଉଁ ଅଦ୍ୱୈତାନୁଭବର ଭୂମାନନ୍ଦ ଜୀବର ଆସି ଉପସ୍ଥିତ ହୁଏ ତାହା ତାଙ୍କୁ ଶ୍ରୀବିଶ୍ୱନାଥ ସଦ୍ୟ ସଦ୍ୟ ପ୍ରଦାନ କରି କୃତାର୍ଥ କରୁଛନ୍ତି ।"

ମଥୁରଙ୍କ ସହିତ ଯେଉଁ ସମସ୍ତ ଶାସ୍ତ୍ରଜ୍ଞ ପଣ୍ଡିତ ଥିଲେ ସେମାନେ ଠାକୁରଙ୍କର ପୂର୍ବୋକ୍ତ ଦର୍ଶନ କଥା ଶୁଣି କହିଥିଲେ—''କାଶୀଖଣ୍ଡରେ ସାଧାରଣ ଭାବରେ ଲେଖାଅଛି, ଏଠାରେ ମୃତ୍ୟୁ ହେଲେ ବିଶ୍ୱନାଥ ଜୀବକୁ ନିର୍ବାଣପଦବୀ ଦେଇଥାଆନ୍ତି; କିନ୍ତୁ କିପରି ଭାବରେ ତାହା ଦିଅନ୍ତି ତାହା ସବିସ୍ତାର ଲେଖା ନାହିଁ। ଆପଣଙ୍କ ଦର୍ଶନରେ ହିଁ ସ୍ପଷ୍ଟ ବୁଝାଯାଉଛି ତାହା କିପରି ସମ୍ପାଦିତ ହୁଏ । ଆପଣଙ୍କ ଦର୍ଶନାଦି ଶାସ୍ତ୍ରରେ ଲିପିବଦ୍ଧ କଥାର ମଧ୍ୟ ଊର୍ଦ୍ଧ୍ୱକୁ ଚାଲିଯାଇଛି ।''

## ଠାକୁରଙ୍କର ତ୍ରୈଲଙ୍ଗ ସ୍ୱାମୀଜୀଙ୍କୁ ଦର୍ଶନ :

କାଶୀରେ ଅବସ୍ଥାନକାଳରେ ଠାକୁର ସେଠାର ଖ୍ୟାତନାମା ସାଧୁମାନଙ୍କୁ ମଧ୍ୟ ଦର୍ଶନ କରିବାକୁ ଯାଉଥିଲେ । ସେମାନଙ୍କ ମଧ୍ୟରେ ତ୍ରୈଲଙ୍ଗ ସ୍ୱାମୀଜୀଙ୍କୁ ଦେଖି ତାଙ୍କର ବିଶେଷ ପ୍ରୀତି ହୋଇଥିଲା । ସ୍ୱାମୀଜୀଙ୍କର ଅନେକ କଥା ଠାକୁର ଅନେକ ସମୟରେ ଆମମାନଙ୍କୁ କହୁଥିଲେ । କହୁଥିଲେ, ''ଦେଖିଲି ସାକ୍ଷାତ୍ ବିଶ୍ୱନାଥ ତାଙ୍କର ଶରୀରକୁ ଆଶ୍ରୟ କରି ପ୍ରକାଶିତ ହୋଇ ରହିଛନ୍ତି ! ସେ ଥିବାରୁ କାଶୀ ଉଜ୍ଜ୍ୱଳ ହୋଇ ରହିଅଛି ! ଉଚ୍ଚ ଜ୍ଞାନର ଅବସ୍ଥା ! ଶରୀରର କୌଣସି ହୋସ ନାହିଁ; ଖରାରେ ବାଲି ଏପରି ତାତିଛି ଯେ ପାଦ ପକାଇବା କଷ୍ଟକର— ସେହି ବାଲି ଉପରେ ହିଁ ସେ ସୁଖରେ ଶୋଇଛନ୍ତି ! କ୍ଷୀରି ତିଆରି କରି ନେଇ ତାଙ୍କୁ ଖୁଆଇଥିଲି । ସେତେବେଳେ କଥା କହୁ ନ ଥିଲେ—ମୌନବ୍ରତ ଧାରଣ କରିଥିଲେ । ଇଶାରାରେ ପଚାରିଥିଲି, 'ଈଶ୍ୱର ଏକ ନା ଅନେକ ?' ସେଥିରେ ସେ ଇଶାରା କରି ବୁଝାଇ ଦେଲେ—'ସମାଧିସ୍ଥ ହୋଇ ଦେଖ ତ ଏକ; ନ ହେଲେ ଯେତେକ୍ଷଣ ମୁଁ, ତୁମେ, ଜୀବ, ଜଗତ ଇତ୍ୟାଦି ନାନା ଜ୍ଞାନ ରହିଛି ସେତେକ୍ଷଣ ଅନେକ ।' ତାଙ୍କୁ ଦେଖି ହୃଦୟକୁ କହିଥିଲି, 'ଏହାକୁ ହିଁ ଠିକ୍ ଠିକ୍ ପରମହଂସ ଅବସ୍ଥା କୁହାଯାଏ' ।''

## ଶ୍ରୀବୃନ୍ଦାବନରେ 'ବାଙ୍କବିହାରୀ' ମୂର୍ତ୍ତି ଓ ବ୍ରଜ-ଦର୍ଶନରେ ଠାକୁରଙ୍କର ଭାବ :

କାଶୀରେ କିଛିଦିନ ରହି ଠାକୁର ମଥୁରବାବୁଙ୍କ ସହିତ ବୃନ୍ଦାବନ ଗଲେ । ଆମେ ଶୁଣିଛୁ ବାଙ୍କବିହାରୀ ମୂର୍ତ୍ତି ଦର୍ଶନ କରି ସେଠାରେ ତାଙ୍କର ଅଦ୍ଭୁତ ଭାବାବେଶ ହୋଇଥିଲା—ଆତ୍ମହରା ହୋଇ ତାଙ୍କୁ ଆଲିଙ୍ଗନ କରିବାକୁ ଧାଇଁଥିଲେ ! ପୁଣି ସନ୍ଧ୍ୟାରେ ଗୋପାଳ ବାଳକଗଣ ଗୋରୁ ପଲ ନେଇ ଯମୁନା ପାର ହୋଇ ଗୋଷ୍ଠରୁ ଫେରୁଛନ୍ତି ଦେଖୁ ଦେଖୁ ତାଙ୍କ ଭିତରେ ଶିଖିପୁଚ୍ଛଧାରୀ ନବନୀରଦଶ୍ୟାମ ଗୋପାଳକୃଷ୍ଣଙ୍କର ଦର୍ଶନଲାଭ କରି ସେ ପ୍ରେମରେ ବିଭୋର ହୋଇଥିଲେ । ଠାକୁର ଏଠାରେ ନିଧୁବନ, ଗୋବର୍ଦ୍ଧନ ପ୍ରଭୃତି ବ୍ରଜର କେତୋଟି ସ୍ଥାନ ମଧ୍ୟ ଦର୍ଶନ କରିଥିଲେ । ବ୍ରଜର ଏହି ସମସ୍ତ ସ୍ଥାନ ତାଙ୍କୁ ବୃନ୍ଦାବନ ଅପେକ୍ଷା

ଅଧିକ ଭଲ ଲାଗିଥିଲା ଏବଂ ବ୍ରଜେଶ୍ୱରୀ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କୁ ନାନାଭାବରେ ଦର୍ଶନ କରି ଏସମସ୍ତ ସ୍ଥାନରେ ହିଁ ତାଙ୍କର ବିଶେଷ ପ୍ରେମର ଉଦୟ ହୋଇଥିଲା । ଶୁଣିଛୁ ଗୋବର୍ଦ୍ଧନ ଆଦି ଦର୍ଶନ କରିବାକୁ ଯିବାବେଳେ ମଥୁର ତାଙ୍କୁ ପାଲିଙ୍କିରେ ପଠାଇ ଦେଇଥିଲେ ଏବଂ ଦେବସ୍ଥାନରେ ଓ ଦରିଦ୍ରମାନଙ୍କୁ ଦାନ କରୁ କରୁ ଯିବେ ବୋଲି ପାଲିଙ୍କିର ଗୋଟିଏ ପାଖରେ ଗୋଟିଏ ବସ୍ତ୍ର ବିଛାଇ ତା'ଉପରେ ଟଙ୍କା, ଅଧୁଲି, ସୁଉକି, ଦୁଇ-ଅଣି ଇତ୍ୟାଦି ସ୍ତୂପ କରି ଢାଳି ଦେଇଥିଲେ; କିନ୍ତୁ ସେହି ସମସ୍ତ ସ୍ଥାନକୁ ଯାଉ ଯାଉ ଠାକୁର ଭାବରେ ପ୍ରେମରେ ଏତେଦୂର ବିହ୍ୱଳ ହୋଇପଡ଼ିଲେ ଯେ ସେସମସ୍ତ ହାତରେ ଉଠାଇ ଦାନ କରିପାରିଲେ ନାହିଁ ! ଅଗତ୍ୟା ସେହି ବସ୍ତ୍ରର ଗୋଟିଏ କାନିକୁ ଧରି ଟାଣି ସେହି ମୁଦ୍ରାସକଳ ସ୍ଥାନେ ସ୍ଥାନେ ଦରିଦ୍ରମାନଙ୍କ ଭିତରେ ପକାଇ ପକାଇ ଗଲେ ।

**ବ୍ରଜରେ ଠାକୁରଙ୍କର ବିଶେଷ ପ୍ରୀତି :**

ବ୍ରଜର ଏହି ସମସ୍ତ ସ୍ଥାନରେ ଠାକୁର ସଂସାର-ବିରାଗୀ ଅନେକ ସାଧକଙ୍କୁ କୁପ[୧] ମଧ୍ୟରେ ପିଠି କରି ବସି ବାହାରର ସମସ୍ତ ବିଷୟଠାରୁ ଦୃଷ୍ଟି ଫେରାଇ ଜପ-ଧ୍ୟାନରେ ନିମଗ୍ନ ରହିଥିବାର ଦେଖିଥିଲେ । ବ୍ରଜର ପ୍ରାକୃତିକ ଶୋଭା, ଫଳ-ଫୁଲରେ ଶୋଭିତ କ୍ଷୁଦ୍ର ଗିରି-ଗୋବର୍ଦ୍ଧନ, ମୃଗ ଓ ମୟୂରଦଳଙ୍କର ବନମଧ୍ୟରେ ସ୍ୱଚ୍ଛନ୍ଦ ତଥା ନିଃଶଙ୍କ ବିଚରଣ, ସାଧୁ-ତପସ୍ୱୀଙ୍କର ନିରନ୍ତର ଈଶ୍ୱର ଚିନ୍ତାରେ ଦିନଯାପନ ଏବଂ ସରଳ ବ୍ରଜବାସୀମାନଙ୍କର କପଟତାଶୂନ୍ୟ ସଶ୍ରଦ୍ଧ ବ୍ୟବହାର ଠାକୁରଙ୍କର ଚିତ୍ତକୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା; ତଦୁପରି ନିଧୁବନରେ ସିଦ୍ଧପ୍ରେମିକା ବର୍ଷୀୟସୀ ତପସ୍ୱିନୀ ଗଙ୍ଗାମାତାଙ୍କର ଦର୍ଶନ ଓ ମଧୁର ସଙ୍ଗ ଲାଭ କରି ଠାକୁର ଏତେ ମୋହିତ ହୋଇଥିଲେ ଯେ, ତାଙ୍କର ମନେ ହୋଇଥିଲା ବ୍ରଜ ତ୍ୟାଗ କରି ସେ ଆଉ କେଉଁଠାକୁ ଯିବେ ନାହିଁ; ଏଠାରେ ହିଁ ଜୀବନର ଅବଶିଷ୍ଟ କାଳ କଟାଇଦେବେ ।

**ନିଧୁବନର ଗଙ୍ଗାମାତା । ଠାକୁରଙ୍କର ସେହି ସ୍ଥାନରେ ରହିବାର ଇଚ୍ଛା, ପରେ ବୃଦ୍ଧା ମା'ଙ୍କ ସେବା କିଏ କରିବ ଭାବି କଲିକତା ପ୍ରତ୍ୟାବର୍ତ୍ତନ କରିବା :**

ଗଙ୍ଗାମାତାଙ୍କର ସେତେବେଳେ ପ୍ରାୟ ଷାଠିଏ ବର୍ଷ ବୟସ ହୋଇଥିଲା । ବହୁକାଳ ଧରି ବ୍ରଜେଶ୍ୱରୀ ଶ୍ରୀମତୀ ରାଧା ଓ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ପ୍ରେମପୂର୍ଣ୍ଣ ବ୍ୟବହାର ଦେଖି ଏଠାର ଲୋକେ ତାଙ୍କୁ ଶ୍ରୀରାଧାଙ୍କର ପ୍ରଧାନ ସଙ୍ଗିନୀ ଲଳିତା ସଖୀ କୌଣସି କାରଣବଶତଃ ସ୍ୱୟଂ ଦେହଧାରଣ କରି ଜୀବଙ୍କୁ

---

୧. ବାଉଁଶ ଓ ନଡ଼ାରେ ତିଆରି ଜଣେମାତ୍ର ରହିପାରିବା ଭଳି ବାସୋପଯୋଗୀ ଘରକୁ ଏଠାରେ କୁପ କୁହାଯାଏ । ଗୋଟିଏ କଦଳୀ-ଭଣ୍ଡାର ଅଗ୍ରଭାଗ କାଟି ଜମି ଉପରେ ବସାଇ ରଖିଲେ ଦେଖିବାକୁ ଯେପରି କୁପ ମଧ୍ୟ ଦେଖିବାକୁ ସେହିପରି ।

ପ୍ରେମଶିକ୍ଷା ଦେବା ନିମିତ୍ତ ଅବତୀର୍ଣ୍ଣା ହୋଇଛନ୍ତି ବୋଲି ମନେ କରୁଥିଲେ । ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ ସେ ଦର୍ଶନମାତ୍ରେ ହିଁ ବୁଝିପାରିଥିଲେ ଯେ, ଠାକୁରଙ୍କ ଶରୀରରେ ଶ୍ରୀମତୀ ରାଧିକାଙ୍କ ସଦୃଶ ମହାଭାବର ପ୍ରକାଶ ହୋଇଛି ଏବଂ ସେଥିପାଇଁ ଶ୍ରୀମତୀ ରାଧିକା ହିଁ ସ୍ୱୟଂ ଅବତୀର୍ଣ୍ଣା ହୋଇଛନ୍ତି ଭାବି ସେ ଠାକୁରଙ୍କୁ 'ଦୁଲାଳୀ' ବୋଲି ସମ୍ବୋଧନ କରିଥିଲେ । 'ଦୁଲାଳୀ'ଙ୍କର ଏହିପରି ଅଯତ୍ନଲଭ୍ୟ ଦର୍ଶନ ପାଇ ଗଙ୍ଗାମାତା ନିଜକୁ ଧନ୍ୟ ମନେ କରିଥିଲେ ଏବଂ ଭାବିଥିଲେ ତାଙ୍କର ଏତେ କାଳର ହୃଦୟର ସେବା ଓ ଭଲପାଇବା ଆଜି ସଫଳ ହେଲା ! ଠାକୁର ମଧ୍ୟ ତାଙ୍କୁ ପାଇ ଚିରପରିଚିତ ପରି ସବୁ କଥା ଭୁଲି ତାଙ୍କ ଆଶ୍ରମରେ କିଛି କାଳ ଅବସ୍ଥାନ କରିଥିଲେ । ଆମେ ଶୁଣିଛୁ ସେମାନେ ଉଭୟ ପରସ୍ପର ପ୍ରେମରେ ଏପରି ମୋହିତ ହୋଇଥିଲେ ଯେ, ମଥୁର ପ୍ରଭୃତିଙ୍କ ମନରେ ଭୟ ହୋଇଥିଲା ଠାକୁର ବୋଧହୁଏ ଆଉ ତାଙ୍କ ସହିତ ଦକ୍ଷିଣେଶ୍ୱରକୁ ଫେରିବେ ନାହିଁ ! ପରମ ଅନୁଗତ ମଥୁରଙ୍କ ମନ ଏହି ଭାବନାରେ ଯେ କିପରି ଆକୁଳ ହୋଇଥିଲା ତାହା ଆମେମାନେ ବେଶ ଅନୁମାନ କରିପାରୁ । ଯାହାହେଉ, ଠାକୁରଙ୍କର ମାତୃଭକ୍ତି ହିଁ ପରିଶେଷରେ ଜୟଲାଭ କଲା ଏବଂ ତାଙ୍କର ବ୍ରଜରେ ରହିବାର ସଂକଳ୍ପ ପରିବର୍ତ୍ତନ କରିଦେଲା । ଠାକୁର ଏସମ୍ବନ୍ଧରେ ଆମକୁ କହିଥିଲେ, ''ବ୍ରଜକୁ ଯାଇ ସବୁ ଭୁଲ ହୋଇଯାଇଥିଲା । ମନେ ହୋଇଥିଲା ଆଉ ଫେରିବି ନାହିଁ । କିନ୍ତୁ କିଛିଦିନ ପରେ ମା'ଙ୍କ କଥା ମନେ ପଡ଼ିଲା, ମନେ ହେଲା ମା'ର କେତେ କଷ୍ଟ ହେବ, କିଏ ତାଙ୍କୁ ବୃଦ୍ଧାବସ୍ଥାରେ ଦେଖିବ, ସେବା କରିବ । ସେହି କଥା ମନରେ ଆସିବାରୁ ସେଠାରେ ଆଉ ରହିପାରିଲି ନାହିଁ ।''

## ଠାକୁରଙ୍କ ଜୀବନର ପରସ୍ପରବିରୁଦ୍ଧ ଭାବ ଓ ଗୁଣସକଳର ଅପୂର୍ବ ସମ୍ମିଳନ । ସନ୍ନ୍ୟାସୀ ହୋଇ ମଧ୍ୟ ଠାକୁରଙ୍କର ମାତୃସେବା :

ବାସ୍ତବିକ୍ ଯେତେ ଭାବି ଦେଖାଯାଏ, ଏହି ଅଲୌକିକ ପୁରୁଷଙ୍କର ସକଳ କଥା ଓ ଚେଷ୍ଟା ସେତେ ହିଁ ଅଦ୍ଭୁତ ବୋଲି ପ୍ରତୀତ ହୁଏ, ସେତେ ହିଁ ଆପାତଦୃଷ୍ଟିରେ ପରସ୍ପର ବିରୁଦ୍ଧ ଗୁଣସକଳର ତାଙ୍କଠାରେ ଅପୂର୍ବଭାବରେ ସମ୍ମିଳନ ଦେଖି ମୁଗ୍ଧ ହେବାକୁ ପଡ଼ିଥାଏ । ଦେଖ ନା, ଶ୍ରୀଶ୍ରୀଜଗଦମ୍ବାଙ୍କର ପାଦପଦ୍ମରେ ଶରୀର-ମନ ସର୍ବସ୍ୱ ଅର୍ପଣ କରିଥିଲେ ମଧ୍ୟ ଠାକୁର ତାଙ୍କୁ ସତ୍ୟ ଦେଇପାରିଲେ ନାହିଁ, ଜଗତର ସକଳ ବ୍ୟକ୍ତିଙ୍କ ସହିତ ଲୌକିକ ସମ୍ବନ୍ଧ ତ୍ୟାଗ କରି ମଧ୍ୟ ନିଜ ଜନନୀଙ୍କ ପ୍ରତି ଭଲପାଇବା ଓ କର୍ତ୍ତବ୍ୟ ଭୁଲିପାରିଲେ ନାହିଁ, ପତ୍ନୀଙ୍କ ସହିତ ଶାରୀରିକ ସମ୍ବନ୍ଧର ନାମଗନ୍ଧ କୌଣସି କାଳରେ ନ ରଖିଲେ ମଧ୍ୟ ଗୁରୁଭାବରେ ତାଙ୍କ ସହିତ ସର୍ବକାଳରେ ସପ୍ରେମ ସମ୍ବନ୍ଧ ରଖିବାକୁ ବିସ୍ମୃତ ହେଲେ ନାହିଁ; ଠାକୁରଙ୍କର ଏପରି ଅଲୌକିକ ଚେଷ୍ଟାର କେତେ ଦୃଷ୍ଟାନ୍ତ ଦିଆଯାଇପାରେ ! ପୂର୍ବ ପୂର୍ବ

ଯୁଗର କୌଣସି ଆଚାର୍ଯ୍ୟ ବା ଅବତାରପୁରୁଷଙ୍କ ଜୀବନରେ ଏପରି ଅଦ୍ଭୁତ ବିପରୀତ ଭାବର ଏକତ୍ର ସମାବେଶ ଓ ସାମଞ୍ଜସ୍ୟ ଦେଖିବାକୁ ମିଳେ କି ? କିଏ ନ କହିବ ଯେ ଏପରି ଆଉ କେବେ କେଉଁଠାରେ ଦେଖାଯାଇ ନାହିଁ ? ଈଶ୍ୱରାବତାର ବୋଲି ତାଙ୍କୁ ଧାରଣା କରନ୍ତୁ ବା ନ କରନ୍ତୁ, କିଏ ସ୍ୱୀକାର ନ କରିବ ଏପରି ଦୃଷ୍ଟାନ୍ତ ଆଧ୍ୟାତ୍ମିକ ଜଗତରେ ଆଉ ଗୋଟିଏ ମଧ୍ୟ ଖୋଜି ମିଳେ ନାହିଁ ? ଠାକୁରଙ୍କର ବର୍ଷୀୟସୀ ମାତାଠାକୁରାଣୀ ଜୀବନର ଶେଷ କେତେ ବର୍ଷ ଦକ୍ଷିଣେଶ୍ୱରରେ ଠାକୁରଙ୍କ ପାଖରେ ହିଁ ରହୁଥିଲେ ଏବଂ ତାଙ୍କର ସକଳ ପ୍ରକାର ସେବା-ଶୁଶ୍ରୂଷା ଠାକୁର ନିଜହସ୍ତରେ ନିତ୍ୟ ସମ୍ପାଦନ କରି ନିଜକୁ କୃତାର୍ଥ ଜ୍ଞାନ କରୁଥିଲେ—ଏ କଥା ଆମେ ଠାକୁରଙ୍କ ଶ୍ରୀମୁଖରୁ ଅନେକଥର ଶୁଣିଛୁ । ପୁଣି ସେହି ଆରାଧ୍ୟା ମାତାଙ୍କର ଦେହତ୍ୟାଗରେ ଠାକୁରଙ୍କୁ ଶୋକସନ୍ତପ୍ତ ହୋଇ ଏତେ କାତର ଓ ଅଜସ୍ର ଅଶ୍ରୁବର୍ଷଣ କରିବା ଦେଖାଯାଇଥିଲା ଯେ, ସଂସାରରେ କାହାକୁ ସେପରି କରିବା ବିରଳ ଦେଖାଯାଏ ! ମାତୃବିୟୋଗରେ ସେପରି କାତର ହେଲେ ମଧ୍ୟ ସେ ଯେ ସନ୍ନ୍ୟାସୀ, ଏକଥା ଠାକୁର କ୍ଷଣକ ପାଇଁ ମଧ୍ୟ ବିସ୍ମୃତ ହୋଇ ନାହାନ୍ତି । ସନ୍ନ୍ୟାସୀ ହୋଇଥିବାରୁ ମାତାଙ୍କର ପାରଲୌକିକ କ୍ରିୟାକର୍ମ ତଥା ଶ୍ରାଦ୍ଧାଦି କରିବାର ନିଜର ଅଧିକାର ନାହିଁ ବୋଲି ଭ୍ରାତୁଷ୍ପୁତ୍ର ରାମଲାଲଙ୍କ ଦ୍ୱାରା ତାହା ସମ୍ପାଦିତ କରାଇଥିଲେ ଏବଂ ସ୍ୱୟଂ ନିର୍ଜନରେ ବସି ମାତାଙ୍କ ନିମିତ୍ତ ରୋଦନ କରି ମାତୃଋଣର ଯଥାସମ୍ଭବ ପରିଶୋଧ କରିଥିଲେ । ସେସମ୍ବନ୍ଧରେ ଠାକୁର ଆମକୁ ବହୁବାର କହିଥିଲେ, "ଆରେ, ସଂସାରରେ ବାପା ମାଆ ପରମ ଗୁରୁ; ଯେତେଦିନ ବଞ୍ଚିଥିବେ, ସେତେଦିନ ଯଥାଶକ୍ତି ସେମାନଙ୍କର ସେବା କରିବାକୁ ହୁଏ, ଆଉ ମରିଗଲେ ଯଥାସାଧ୍ୟ ଶ୍ରାଦ୍ଧ କରିବାକୁ ହୁଏ । ଯିଏ ଦରିଦ୍ର, କିଛି ନାହିଁ, ଶ୍ରାଦ୍ଧ କରିବାର କ୍ଷମତା ନାହିଁ, ତାକୁ ମଧ୍ୟ ବନକୁ ଯାଇ ତାଙ୍କୁ ସ୍ମରଣ କରି କାନ୍ଦିବାକୁ ହୁଏ; ତେବେ ତାଙ୍କର ଋଣ ପରିଶୋଧ ହୁଏ ! କେବଳ ଈଶ୍ୱରଙ୍କ ନିମିତ୍ତ ବାପା ମାଆଙ୍କର ଆଜ୍ଞା ଲଙ୍ଘନ କରାଯାଇପାରେ, ସେଥିରେ ଦୋଷ ହୁଏ ନାହିଁ । ଯେପରି ପ୍ରହ୍ଲାଦ ବାପାଙ୍କର ବାରଣ ସତ୍ତ୍ୱେ କୃଷ୍ଣନାମ ଛାଡ଼ି ନ ଥିଲେ; ଏପରିକି, ଧ୍ରୁବ ମା'ଙ୍କର ବାରଣ ସତ୍ତ୍ୱେ ତପସ୍ୟା କରିବାକୁ ବନକୁ ଗମନ କରିଥିଲେ; ସେଥିରେ ସେମାନଙ୍କର ଦୋଷ ହୋଇ ନାହିଁ ।" ଏହିପରି ଠାକୁରଙ୍କର ମାତୃଭକ୍ତି ଭିତର ଦେଇ ମଧ୍ୟ ଗୁରୁଭାବର ଅଦ୍ଭୁତ ବିକାଶ ଓ ଲୋକଶିକ୍ଷା ଦେଖି ଆମେ ଧନ୍ୟ ହୋଇଅଛୁ ।

**ସମାଧିସ୍ଥ ହୋଇ ଶରୀରତ୍ୟାଗ ହେବ ଭାବି ଠାକୁରଙ୍କ ଗୟାଧାମ ଯିବାକୁ ଅସ୍ୱୀକାର । ଏପରି ଭାବର କାରଣ କ'ଣ ? :**

ଗଙ୍ଗାମାତାଙ୍କ ନିକଟରୁ କଷ୍ଟରେ ବିଦାୟଗ୍ରହଣ କରି ଠାକୁର ମଥୁରଙ୍କ ସହିତ ପୁନରାୟ କାଶୀ ପ୍ରତ୍ୟାଗମନ କଲେ । ଆମେ ଶୁଣିଛୁ କେତେଦିନ ସେଠାରେ ରହିବା ପରେ ଦୀପାବଳୀ ଅମାବାସ୍ୟା ଦିନ ଶ୍ରୀଶ୍ରୀଅନ୍ନପୂର୍ଣ୍ଣା ଦେବୀଙ୍କର ସୁବର୍ଣ୍ଣ ପ୍ରତିମା ଦର୍ଶନ କରି ଠାକୁର ଭାବରେ ପ୍ରେମରେ ମୋହିତ ହୋଇଥିଲେ । କାଶୀରୁ ଗୟାଧାମ ଯିବାକୁ ମଥୁରଙ୍କର ଇଚ୍ଛା ଥିଲା । କିନ୍ତୁ ଠାକୁର ସେଠାକୁ ଯିବାକୁ ଅମଙ୍ଗ ହେବାରୁ ମଥୁରବାବୁ ସେହି ସଂକଳ୍ପ ପରିତ୍ୟାଗ କଲେ । ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ ଠାକୁରଙ୍କର ପିତା ଗୟାଧାମ ଆଗମନ କରି ହିଁ ଠାକୁର ଯେ ତାଙ୍କ ଗୃହରେ ଜନ୍ମଗ୍ରହଣ କରିବେ ଏକଥା ସ୍ୱପ୍ନରେ ଜାଣିପାରିଥିଲେ ଏବଂ ସେଥିପାଇଁ ହିଁ ଜନ୍ମ ହେବା ପରେ ତାଙ୍କର ନାମ ଗଦାଧର ରଖିଥିଲେ । ଗୟାଧାମରେ ଗଦାଧରଙ୍କ ପାଦପଦ୍ମ ଦର୍ଶନରେ ପ୍ରେମରେ ବିହ୍ୱଳ ହୋଇ ତାଙ୍କଠାରୁ ପୃଥକଭାବରେ ନିଜ ଶରୀରଧାରଣ କଥା କାଳେ ସମ୍ପୂର୍ଣ୍ଣ ଭୁଲିଯିବେ ଏବଂ ତାଙ୍କ ସହିତ ଚିରକାଳ ନିମିତ୍ତ ପୁନରାୟ ସମ୍ମିଳିତ ହେବେ — ସେହି ଭୟରେ ଠାକୁର ଯେ ସେତେବେଳେ ମଥୁରବାବୁଙ୍କ ସହିତ ଗୟା ଯିବାକୁ ଅସମ୍ମତ ହୋଇଥିଲେ, ଏବିଷୟ ମଧ୍ୟ ସେ ଆମକୁ ବେଳେ ବେଳେ କହିଥିଲେ । ଠାକୁରଙ୍କର ଧ୍ରୁବ ଧାରଣା ଥିଲା, ଯିଏ ପୂର୍ବ ପୂର୍ବ ଯୁଗରେ ଶ୍ରୀରାମଚନ୍ଦ୍ର, ଶ୍ରୀକୃଷ୍ଣ ଏବଂ ଶ୍ରୀଚୈତନ୍ୟ ପ୍ରଭୃତି ରୂପରେ ଅବତୀର୍ଣ୍ଣ ହୋଇଥିଲେ, ସେ ହିଁ ଏବେ ତାଙ୍କର ଶରୀର ଆଶ୍ରୟ କରି ଧରାଧାମକୁ ଆଗମନ କରିଛନ୍ତି । ସେଥିପାଇଁ, ପୂର୍ବୋକ୍ତ ପିତୃ ସ୍ୱପ୍ନରେ ପରିଜ୍ଞାତ ନିଜର ବର୍ତ୍ତମାନ ଶରୀର-ମନର ଉତ୍ପତ୍ତିସ୍ଥଳ ଗୟାଧାମ, ଏବଂ ଯେଉଁ ଯେଉଁ ସ୍ଥାନରେ ଅନ୍ୟ ଅବତାରପୁରୁଷମାନେ ଲୀଳାସମ୍ବରଣ କରିଥିଲେ ସେହି ସେହି ସ୍ଥାନ ଦର୍ଶନ କରିବାକୁ ଯିବା କଥାରେ ତାଙ୍କ ମନରେ କିପରି ଏକ ଅବ୍ୟକ୍ତ ଭାବ ସଞ୍ଚାର ହେବାର ଆମେ ଦେଖିଅଛୁ । ଠାକୁର କହୁଥିଲେ, ସେହି ସବୁ ସ୍ଥାନକୁ ଗଲେ ତାଙ୍କ ଶରୀର ରହିବ ନାହିଁ, ସେଠାରେ ସେ ଏପରି ଗଭୀର ସମାଧିସ୍ଥ ହେବେ ଯେ ସେଥିରୁ ତାଙ୍କର ମନ ଆଉ ନିମ୍ନରେ ମନୁଷ୍ୟଲୋକକୁ ଫେରିଆସିବ ନାହିଁ ! କାରଣ ଶ୍ରୀଗୌରାଙ୍ଗଦେବଙ୍କର ଲୀଳାସମ୍ବରଣ-ସ୍ଥଳ ନୀଳାଚଳ ବା ପୁରୀଧାମ ଯିବା କଥାରେ ମଧ୍ୟ ଠାକୁର ସେହି ପ୍ରକାର ଭାବ ଅନ୍ୟ ସମୟରେ ପ୍ରକାଶ କରିଥିଲେ । କେବଳ ତାଙ୍କ ନିଜ ସମ୍ବନ୍ଧରେ କାହିଁକି, ଭକ୍ତମାନଙ୍କର କାହାକୁ ଯଦି ସେ ଭାବ ଚକ୍ଷୁରେ କୌଣସି ଦେବବିଶେଷଙ୍କର ଅଂଶ ବା ବିକାଶ ବୋଲି ବୁଝିପାରୁଥିଲେ ତେବେ ସେହି ଦେବତାଙ୍କର ବିଶେଷ ଲୀଳାସ୍ଥଳକୁ ଯିବା ବିଷୟରେ ତାଙ୍କ ସମ୍ବନ୍ଧରେ ମଧ୍ୟ ସେହି ପ୍ରକାର ଭାବ ପ୍ରକାଶ କରି ତାଙ୍କୁ ସେଠାକୁ ଯିବାକୁ ନିଷେଧ କରୁଥିଲେ । ଠାକୁରଙ୍କର ସେହି ଭାବ ପାଠକଙ୍କୁ ବୁଝାଇବା

ଦୁରୂହ । ତାହାକୁ 'ଭୟ' ବୋଲି ନିର୍ଦ୍ଦେଶ କରିବା ଯୁକ୍ତିସଙ୍ଗତ ନୁହେଁ । କାରଣ ସାମାନ୍ୟ ସମାଧିସମ୍ପନ୍ନ ପୁରୁଷମାନେ ହିଁ ଯେତେବେଳେ ଦେହୀ କିପରି ମୃତ୍ୟୁ ସମୟରେ ଶରୀରକୁ ଛାଡ଼ି ଯାଆନ୍ତି ଜୀବିତ ଅବସ୍ଥାରେ ହିଁ ତାହା ଅନୁଭବ କରି ମୃତ୍ୟୁକୁ କୌମାର ଯୌବନାଦି ଦେହର ପରିବର୍ତ୍ତନ ପରି ଗୋଟିଏ ପରିବର୍ତ୍ତନ ବିଶେଷ ବୋଲି ଦେଖିପାରି ନିର୍ଭୟ ହୋଇଥାଆନ୍ତି, ସେତେବେଳେ ଇଚ୍ଛାମାତ୍ରେ ହିଁ ଗଭୀରସମାଧିସମ୍ପନ୍ନ ଅବତାରପୁରୁଷମାନେ ଯେ ଏକାବେଳକେ ଅଭୀଃ ମୃତ୍ୟୁଞ୍ଜୟ ହେବେ ଏଥିରେ ଆଉ ବିଚିତ୍ରତା କ'ଣ ? ଏହାକୁ ସାଧାରଣ ଲୋକଙ୍କ ପରି ଶରୀର ରକ୍ଷା କରିବାର ବା ବଞ୍ଚିବାର ଆଗ୍ରହ ବୋଲି କହିହେବ ନାହିଁ । କାରଣ, ସାଧାରଣ ଲୋକଙ୍କର ଏହିପରି ଆଗ୍ରହ ପ୍ରକାଶ କରିବା ସ୍ୱାର୍ଥସୁଖ ବା ଭୋଗ ନିମିତ୍ତ । କିନ୍ତୁ ଯେଉଁମାନଙ୍କର ମନରୁ ସ୍ୱାର୍ଥପରତା ଚିରକାଳ ପାଇଁ ନିଶ୍ଚିହ୍ନ ହୋଇଯାଇଛି ସେମାନଙ୍କ ସମ୍ବନ୍ଧରେ ସେକଥା ଚଳେ ନାହିଁ । ତେବେ ଠାକୁରଙ୍କ ମନର ପୂର୍ବୋକ୍ତ ଭାବ ଆମେ କିପରି ବୁଝାଇବୁ ? ଆମ ମନରେ ଯେଉଁ ସମସ୍ତ ଭାବ ଜାଗ୍ରତ ହୁଏ ସେସବୁ ବୁଝାଇବାକୁ, ପ୍ରକାଶ କରିବାକୁ ଉପଯୋଗୀ ଶବ୍ଦସମୂହ ଆମମାନଙ୍କ ଅଭିଧାନରେ ମିଳେ । ଠାକୁରଙ୍କ ସଦୃଶ ମହାପୁରୁଷମାନଙ୍କର ମନର ଅତ୍ୟୁଚ୍ଚ ଦିବ୍ୟ ଭାବସକଳ ପ୍ରକାଶ କରିବା ପାଇଁ ସେହି ସମସ୍ତ ଶବ୍ଦର ସାମର୍ଥ୍ୟ କେଉଁଠି ? ଅତଏବ ହେ ପାଠକ, ଏଠି ତର୍କବୁଦ୍ଧି ଛାଡ଼ି ଦେଇ ଠାକୁର ସେହି ସମସ୍ତ ବିଷୟ ଯେଉଁ ଭାବରେ କହିଯାଇଛନ୍ତି ତାହା ବିଶ୍ୱାସର ସହିତ ଶୁଣିଯିବା ଏବଂ କଳ୍ପନା ସହାୟରେ ସେହି ଉଚ୍ଚ ଭାବର ଯଥାସମ୍ଭବ ଛବି ମନରେ ଅଙ୍କିତ କରିବା ପାଇଁ ଚେଷ୍ଟା କରିବା ବ୍ୟତୀତ ଆମର ଗତ୍ୟନ୍ତର ନାହିଁ ।

**କାର୍ଯ୍ୟ–ପଦାର୍ଥର କାରଣ–ପଦାର୍ଥରେ ଲୟ ହେବା ହିଁ ନିୟମ :**

ଠାକୁର କହୁଥିଲେ ଏବଂ ଶାସ୍ତ୍ରରେ ମଧ୍ୟ ଏହାର ନାନା ଦୃଷ୍ଟାନ୍ତ ମିଳିଥାଏ ଯେ, ଯେଉଁ ପ୍ରକାଶ ଯେଉଁ ସ୍ଥାନରୁ ବା ଯେଉଁ ବସ୍ତୁ ବା ବ୍ୟକ୍ତିଠାରୁ ଉତ୍ପନ୍ନ ହୁଏ, ସେହି ପ୍ରକାଶ ପୁନରାୟ ସେହି ସ୍ଥଳରେ ବା ସେହି ବସ୍ତୁ ବା ବ୍ୟକ୍ତି ବିଶେଷ ସମୀପାଗତ ହେଲେ ସେଥିରେ ହିଁ ଲୟ ହୋଇଯାଏ । ବ୍ରହ୍ମଠାରୁ ଜୀବର ଉତ୍ପତ୍ତି ବା ପ୍ରକାଶ; ସେହି ଜୀବ ପୁଣି ଜ୍ଞାନଲାଭ ଦ୍ୱାରା ତାଙ୍କର ସମୀପାଗତ ହେଲେ ହିଁ ତାଙ୍କଠାରେ ଲୀନ ହୋଇଯାଏ ! ଅନନ୍ତ ମନଠାରୁ ତୁମର ଆମର ଓ ସମସ୍ତଙ୍କର କ୍ଷୁଦ୍ର ବ୍ୟକ୍ତିଗତ ମନର ଉତ୍ପତ୍ତି ବା ପ୍ରକାଶ; ଆମ ମଧ୍ୟରୁ କାହାର ସେହି କ୍ଷୁଦ୍ର ମନ ନିର୍ଲିପ୍ତତା, କରୁଣା, ପବିତ୍ରତା ପ୍ରଭୃତି ସଦ୍‌ଗୁଣସମୂହର ବୃଦ୍ଧି କରୁ କରୁ ସେହି ଅନନ୍ତ ମନର ସମୀପାଗତ ବା ସଦୃଶ ହେଲେ ହିଁ ସେଥିରେ ଲୀନ ହୋଇଯାଏ । ସ୍ଥୂଳ ଜଗତର ମଧ୍ୟ ଏହା ହିଁ ନିୟମ । ସୂର୍ଯ୍ୟଙ୍କଠାରୁ ପୃଥିବୀର ବିକାଶ; ସେଇ ପୃଥିବୀ ପୁଣି କୌଣସି ପ୍ରକାରରେ ସୂର୍ଯ୍ୟର ସମୀପାଗତ ହେଲେ ହିଁ ସେଥିରେ

ଲୀନ ହୋଇଯିବ । ଅତଏବ ବୁଝିବାକୁ ହେବ ଠାକୁରଙ୍କର ଏପରି ଧାରଣାର ମୂଳରେ ଆମମାନଙ୍କ ଅଜ୍ଞାତ କିଛି ଗୋଟିଏ ଭାବବିଶେଷ ଅଛି ଏବଂ ବାସ୍ତବରେ ଯଦି ଗଦାଧର ବୋଲି କୌଣସି ବସ୍ତୁ ବା ବ୍ୟକ୍ତିବିଶେଷ ଥାନ୍ତି ଏବଂ ଠାକୁରଙ୍କର ଶରୀର-ମନର ଉତ୍ପତ୍ତି ଓ ବିକାଶ ସେହିଠାରୁ କୌଣସି କାରଣରୁ ହୋଇଥାଏ, ତେବେ ସେହି ଉଭୟ ପଦାର୍ଥ ପୁନରାୟ ସମୀପାଗତ ହେଲେ ଯେ ପରସ୍ପର ପ୍ରତି ପ୍ରେମରେ ଆକୃଷ୍ଟ ହୋଇ ଏକତ୍ର ମିଳିତ ହେବେ, ଏକଥାରେ ଯୁକ୍ତିବିରୁଦ୍ଧ ବା କ'ଣ ଅଛି ?

## ଅବତାରପୁରୁଷମାନଙ୍କର ଜୀବନରହସ୍ୟର ମୀମାଂସା କରିବାକୁ କର୍ମବାଦ ସକ୍ଷମ ନୁହେଁ । ଏହାର କାରଣ :

ଅବତାରପୁରୁଷମାନେ ଯେ ସାଧାରଣ ଜୀବଙ୍କ ସଦୃଶ ନୁହଁନ୍ତି, ଏକଥା ଯୁକ୍ତିଛଳରେ ବୁଝାଇ ହୁଏ ନାହିଁ । ତାଙ୍କ ଭିତରେ ଅଚିନ୍ତ୍ୟ କଳ୍ପନାତୀତ ଶକ୍ତିପ୍ରକାଶ ଦେଖି ହିଁ ଜୀବ ନତ ମସ୍ତକରେ ସେମାନଙ୍କୁ ହୃଦୟର ପୂଜାଦାନ ଓ ତାଙ୍କର ଶରଣ ଗ୍ରହଣ କରିଥାନ୍ତି । ମହର୍ଷି କପିଳ ଆଦି ଭାରତର ତୀକ୍ଷ୍ଣଦୃଷ୍ଟିସମ୍ପନ୍ନ ଦାର୍ଶନିକଗଣ ସେପରି ଅଦୃଷ୍ଟପୂର୍ବ ଶକ୍ତିମାନ ପୁରୁଷମାନଙ୍କର ଜୀବନରହସ୍ୟ ଭେଦ କରିବାକୁ ଅଶେଷ ଚେଷ୍ଟା କରିଛନ୍ତି । କେଉଁ କାରଣରୁ ସେମାନଙ୍କର ଭିତର ଦେଇ ସାଧାରଣଙ୍କ ଅପେକ୍ଷା ସମଧିକ ଶକ୍ତିପ୍ରକାଶ ହୁଏ, ଏବିଷୟରେ ନିର୍ଣ୍ଣୟ କରିବାକୁ ଯାଇ ସେମାନେ ପ୍ରଥମେ ଦେଖିଲେ ସାଧାରଣ କର୍ମବାଦ ଏହାର ମୀମାଂସା କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ । କାରଣ, ଇତରସାଧାରଣ ପୁରୁଷଙ୍କର ଅନୁଷ୍ଠିତ ଶୁଭାଶୁଭ କର୍ମ ସ୍ୱାର୍ଥସୁଖର ଅନ୍ୱେଷଣରେ ହିଁ ହୋଇଥାଏ । କିନ୍ତୁ ଏମାନଙ୍କର କୃତ କାର୍ଯ୍ୟର ଆଲୋଚନାରେ, ସେହି ଉଦ୍ଦେଶ୍ୟର ଏକାନ୍ତ ଅଭାବ ଦେଖାଯାଏ । ପରର ଦୁଃଖମୋଚନର ବାସନା ହିଁ ଏମାନଙ୍କ ଭିତରେ ଅଦମ୍ୟ ଉତ୍ସାହ ଆନୟନ କରି ଏମାନଙ୍କୁ କାର୍ଯ୍ୟରେ ପ୍ରେରଣ କରିଥାଏ ଏବଂ ସେହି ବାସନା ସମ୍ମୁଖରେ ଏମାନେ ନିଜର ସମସ୍ତ ଭୋଗସୁଖ ଏକାବେଳକେ ବଳିପ୍ରଦାନ କରିଥାଆନ୍ତି । ପୁଣି ପାର୍ଥିବ ମାନଯଶଲାଭ ଯେ ସେହି ବାସନାର ମୂଳରେ ବିଦ୍ୟମାନ ତାହା ମଧ୍ୟ ଦେଖାଯାଏ ନାହିଁ । କାରଣ ଲୋକୈଷଣା, ପାର୍ଥିବ ମାନଯଶ ଏମାନେ କାକବିଷ୍ଠା ପରି ସର୍ବଥା ପରିତ୍ୟାଗ କରିଥାନ୍ତି । ଦେଖ ନା, ନର ଓ ନାରାୟଣ ଋଷିଦ୍ୱୟ ଜଗତର କଲ୍ୟାଣର ଉପାୟ ନିର୍ଦ୍ଧାରଣ ପାଇଁ ବହୁକାଳ ବଦ୍ରିକାଶ୍ରମରେ ତପସ୍ୟାରେ କଟାଇଲେ । ଶ୍ରୀରାମଚନ୍ଦ୍ର ପ୍ରଜାଗଣଙ୍କର କଲ୍ୟାଣ ନିମିତ୍ତ ପ୍ରାଣର ପ୍ରତିମା ସୀତାଙ୍କୁ ପର୍ଯ୍ୟନ୍ତ ତ୍ୟାଗ କଲେ । ଶ୍ରୀକୃଷ୍ଣ ସତ୍ୟ ଓ ଧର୍ମର ପ୍ରତିଷ୍ଠା ନିମିତ୍ତ ପ୍ରତ୍ୟେକ କାର୍ଯ୍ୟାନୁଷ୍ଠାନ କଲେ । ବୁଦ୍ଧଦେବ ଜନ୍ମ-ଜରା-ମରଣାଦି ଦୁଃଖହସ୍ତରୁ ଜୀବକୁ ଉଦ୍ଧାର କରିବେ ବୋଲି ରାଜ୍ୟସମ୍ପଦ ତ୍ୟାଗ କଲେ । ଈଶା ଦୁଃଖ ଶୋକାକୁଳ ପୃଥିବୀରେ

ପ୍ରେମ-ସ୍ୱରୂପ ପରମପିତାଙ୍କର ପ୍ରେମର ରାଜ୍ୟସ୍ଥାପନା ପାଇଁ ପ୍ରାଣପାତ କଲେ । ମହମ୍ମଦ ଅଧର୍ମ ବିରୁଦ୍ଧରେ ହିଁ ତରବାରୀ ଧାରଣ କଲେ । ଶଙ୍କର, ଅଦ୍ୱୈତ ଅନୁଭବରେ ହିଁ ଯଥାର୍ଥ ଶାନ୍ତି, ଜୀବଙ୍କୁ ଏହି କଥା ବୁଝାଇବାକୁ ହିଁ ନିଜର ଶକ୍ତି ନିୟୋଗ କଲେ ଏବଂ ଶ୍ରୀଚୈତନ୍ୟ, ଏକମାତ୍ର ଶ୍ରୀହରିଙ୍କ ନାମରେ ହିଁ ଜୀବର କଲ୍ୟାଣକାରୀ ସମସ୍ତ ଶକ୍ତି ନିହିତ ରହିଅଛି ଜାଣି ସଂସାରର ଭୋଗସୁଖ ଜଳାଞ୍ଜଳି ଦେଇ ଉଦ୍ଦାମ ତାଣ୍ଡବରେ ହରିନାମର ପ୍ରଚାରରେ ହିଁ ଜୀବନ ଉତ୍ସର୍ଗ କଲେ । କେଉଁ ସ୍ୱାର୍ଥ ଏମାନଙ୍କୁ ସେହି ସମସ୍ତ କାର୍ଯ୍ୟରେ ପ୍ରେରଣ କରିଥିଲା ? କେଉଁ ଆତ୍ମସୁଖ-ଲାଭ ପାଇଁ ଏମାନେ ଜୀବନରେ ଏତେ କଷ୍ଟ ସ୍ୱୀକାର କରିଗଲେ ?

## ମୁକ୍ତାତ୍ମାର ଶାସ୍ତ୍ରନିର୍ଦ୍ଦିଷ୍ଟ ଲକ୍ଷଣସକଳ ଅବତାରପୁରୁଷଙ୍କଠାରେ ବାଲ୍ୟକାଳରୁ ପ୍ରକାଶିତ ଦେଖି ଦାର୍ଶନିକମାନଙ୍କର ମୀମାଂସା । ସାଂଖ୍ୟମତରେ ସେମାନେ 'ପ୍ରକୃତିଲୀନ' ଶ୍ରେଣୀଭୁକ୍ତ :

ଦାର୍ଶନିକମାନେ ଆହୁରି ଦେଖିଲେ, ଅସାଧାରଣ ମାନସିକ ଅନୁଭବରେ ମୁକ୍ତ ପୁରୁଷମାନଙ୍କର ଶରୀରରେ ଯେଉଁ ସମସ୍ତ ଲକ୍ଷଣ ଆସି ଉପସ୍ଥିତ ହୁଏ ବୋଲି ସେମାନେ ଶାସ୍ତ୍ର-ଦୃଷ୍ଟିରୁ ସ୍ୱୀକାର କରିଥାଆନ୍ତି, ସେସମସ୍ତ ମଧ୍ୟ ଏମାନଙ୍କ ଜୀବନରେ ବିଶେଷ ରୂପରେ ବିକଶିତ ହୋଇଥାଏ । ଫଳରେ ସେହି ସମସ୍ତ ପୁରୁଷମାନଙ୍କୁ ବାଧ୍ୟ ହୋଇ ଏକ ନୂତନ ଶ୍ରେଣୀର ଅନ୍ତର୍ଗତ କରିବାକୁ ହେଲା । ସାଂଖ୍ୟକାର କପିଳ କହିଲେ, ଏମାନଙ୍କ ଭିତରେ ଏକ ପ୍ରକାର ମହଦୁଦାର ଲୋକୈଷଣା ବା ଲୋକକଲ୍ୟାଣ-ବାସନା ରହିଥାଏ । ସେଥିପାଇଁ ଏମାନେ ପୂର୍ବ ପୂର୍ବଜନ୍ମର ତପସ୍ୟାପ୍ରଭାବରେ ମୁକ୍ତ ହୋଇ ମଧ୍ୟ ନିର୍ବାଣ ପଦବୀରେ ଅବସ୍ଥାନ କରନ୍ତି ନାହିଁ—ପ୍ରକୃତିରେ ଲୀନ ହୋଇଥାଆନ୍ତି, ବା ପ୍ରକୃତିଗତ ସମସ୍ତ ଶକ୍ତି ହିଁ ସେମାନଙ୍କର ଶକ୍ତି, ଏପ୍ରକାର ବୋଧରେ ଏକ କଳ୍ପପର୍ଯ୍ୟନ୍ତ ଅବସ୍ଥାନ କରିଥାଆନ୍ତି; ଏବଂ ଏଥିପାଇଁ ହିଁ ଏମାନଙ୍କ ମଧ୍ୟରେ ଯିଏ ଯେଉଁ କଳ୍ପରେ ସେପରି ଶକ୍ତିସମ୍ପନ୍ନ ବୋଲି ନିଜକୁ ଅନୁଭବ କରନ୍ତି ସେ ହିଁ ସେହି କଳ୍ପରେ ସାଧାରଣ ମାନବ ନିକଟରେ ଈଶ୍ୱର ବୋଲି ପ୍ରତୀତ ହୋଇଥାଆନ୍ତି । କାରଣ ପ୍ରକୃତି ଭିତରେ ଯେତେକିଛି ଶକ୍ତି ଅଛି ସେସମସ୍ତ ହିଁ ମୋର ବୋଲି ଯାହାଙ୍କର ବୋଧ ହେବ ସେ ସେହି ସମସ୍ତ ଶକ୍ତି ହିଁ ଇଚ୍ଛାନୁସାରେ ପ୍ରୟୋଗ ଓ ସଂହାର କରିପାରିବେ । ଆମମାନଙ୍କର ପ୍ରତ୍ୟେକଙ୍କର କ୍ଷୁଦ୍ର ଶରୀର-ମନରେ ପ୍ରକୃତିର ଯେଉଁ ସମସ୍ତ ଶକ୍ତି ରହିଅଛି ସେସବୁକୁ ମୋର ବୋଲି ବୋଧ କରୁଛେ ବୋଲି ହିଁ ଆମେ ଯେପରି ସେଗୁଡ଼ିକ ବ୍ୟବହାର କରିପାରୁଛେ, ସେମାନେ ମଧ୍ୟ ତଦ୍ରୂପ ପ୍ରକୃତିର ସମସ୍ତ ଶକ୍ତିସମୂହ ତାଙ୍କର ନିଜର ବୋଲି ବୋଧ କରିବାରୁ ସେସମସ୍ତ ହିଁ ଇଚ୍ଛା ଅନୁସାରେ ବ୍ୟବହାର କରିପାରିବେ । ସାଂଖ୍ୟକାର କପିଳ ଏପରି ଭାବରେ ସର୍ବକାଳବ୍ୟାପୀ ଏକ ନିତ୍ୟ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର ନ କଲେ ମଧ୍ୟ ଏକକଳ୍ପବ୍ୟାପୀ ସର୍ବଶକ୍ତିମାନ

ପୁରୁଷମାନଙ୍କର ଅସ୍ତିତ୍ୱ ସ୍ୱୀକାର କରି ସେମାନଙ୍କୁ 'ପ୍ରକୃତିଲୀନ' ବୋଲି ଆଖ୍ୟା ପ୍ରଦାନ କରିଛନ୍ତି ।

### ବେଦାନ୍ତ କହେ, ସେମାନେ 'ଆଧିକାରିକ' ଏବଂ ଏହି ଶ୍ରେଣୀର ପୁରୁଷମାନଙ୍କର ଈଶ୍ୱରାବତାର ଓ ନିତ୍ୟମୁକ୍ତ ଈଶ୍ୱରକୋଟିରୂପକ ଦୁଇ ବିଭାଗ ଅଛି :

ବେଦାନ୍ତକାର ପୁଣି ଏକମାତ୍ର ଈଶ୍ୱର ପୁରୁଷଙ୍କର ନିତ୍ୟ ଅସ୍ତିତ୍ୱ ସ୍ୱୀକାର କରି ଏବଂ ସେ ହିଁ ଜୀବ ଓ ଜଗତରୂପେ ପ୍ରକାଶିତ ରହିଛନ୍ତି ବୋଲି ସେହି ସମସ୍ତ ବିଶେଷ ଶକ୍ତିମାନ ପୁରୁଷମାନଙ୍କୁ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବ ଈଶ୍ୱରଙ୍କର ବିଶେଷ ଅଂଶସମ୍ଭୂତ ବୋଲି ସ୍ୱୀକାର କରିଅଛନ୍ତି । କେବଳ ସେତିକି ନୁହେଁ, ଏହି ପ୍ରକାରର ପୁରୁଷମାନେ ଲୋକକଲ୍ୟାଣକର ଗୋଟିଏ ଗୋଟିଏ ବିଶେଷ କାର୍ଯ୍ୟ ପାଇଁ ଆବଶ୍ୟକ ଅନୁସାରେ ଜନ୍ମଗ୍ରହଣ କରନ୍ତି ଏବଂ ତଦୁପଯୋଗୀ ଶକ୍ତିସମ୍ପନ୍ନ ହୋଇ ଆସିଥାଆନ୍ତି ବୋଲି ଏମାନଙ୍କୁ 'ଆଧିକାରିକ' ନାମ ପ୍ରଦାନ କରିଛନ୍ତି । 'ଆଧିକାରିକ' ଅର୍ଥାତ୍ କୌଣସି ଏକ କାର୍ଯ୍ୟବିଶେଷର ଅଧିକାର ବା ସେହି କାର୍ଯ୍ୟଟିକୁ ସମ୍ପନ୍ନ କରିବାର ଭାର ଓ କ୍ଷମତାପ୍ରାପ୍ତ । ଏପରି ପୁରୁଷମାନଙ୍କ ମଧ୍ୟରେ ପୁଣି ଉଚ୍ଚନୀଚ ଶକ୍ତିର ପ୍ରକାଶ ଦେଖି ଏବଂ ସେମାନଙ୍କର କାହାର କାର୍ଯ୍ୟ ସମଗ୍ର ପୃଥିବୀର ଲୋକଙ୍କ ସର୍ବକାଳ କଲ୍ୟାଣ ନିମିତ୍ତ ଅନୁଷ୍ଠିତ ଓ କାହାର କାର୍ଯ୍ୟ ଗୋଟିଏ ପ୍ରଦେଶର ବା ଗୋଟିଏ ଦେଶର ଲୋକସମୂହଙ୍କର କଲ୍ୟାଣ ନିମିତ୍ତ ଅନୁଷ୍ଠିତ ଦେଖି ବେଦାନ୍ତକାର ପୁଣି ଏହି ସମସ୍ତ ପୁରୁଷଙ୍କ ମଧ୍ୟରେ କେତେଜଣଙ୍କୁ ଈଶ୍ୱରାବତାର ଏବଂ କେତେକଙ୍କୁ ସାମାନ୍ୟ-ଅଧିକାରପ୍ରାପ୍ତ ନିତ୍ୟମୁକ୍ତ ଈଶ୍ୱରକୋଟି ପୁରୁଷଶ୍ରେଣୀର ବୋଲି ସ୍ୱୀକାର କରିଯାଇଛନ୍ତି । ବେଦାନ୍ତକାରଙ୍କର ସେହି ମତକୁ ଭିତ୍ତିରୂପେ ଅବଲମ୍ବନ କରି ପୁରାଣକାରମାନେ ପରେ କଳ୍ପନା ସହାୟରେ ଅବତାରପୁରୁଷମାନଙ୍କ ମଧ୍ୟରୁ ପ୍ରତ୍ୟେକେ କିଏ ଈଶ୍ୱରଙ୍କର କେତେଭାଗ ଅଂଶସମ୍ଭୂତ ଏହା ନିର୍ଦ୍ଧାରଣ କରିବାକୁ ଅଗ୍ରସର ହୋଇ ସେହି ଚେଷ୍ଟାର ଟିକିଏ ଆତିଶଯ୍ୟ କରିଛନ୍ତି ଏବଂ ଭାଗବତକାର—

ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍ ॥ ୧/୩/୨୮

ଇତ୍ୟାଦି ବଚନ ପ୍ରୟୋଗ କରିଛନ୍ତି ।

ଆମେ ଏହାପୂର୍ବରୁ ପାଠକଙ୍କୁ ଗୋଟିଏ ସ୍ଥାନରେ ବୁଝାଇବାକୁ ଚେଷ୍ଟା କରିଛୁ ଯେ ଗୁରୁଭାବ ସ୍ୱୟଂ ଈଶ୍ୱରଙ୍କର ହିଁ ଭାବ । ଅଜ୍ଞାନମୋହରେ ପତିତ ଜୀବଙ୍କୁ ତାହାର (ଅଜ୍ଞାନର) ଊର୍ଦ୍ଧ୍ୱକୁ ସ୍ୱୟଂ ଯିବାକୁ ଅକ୍ଷମ ଦେଖି ହିଁ ସେ ଅପାର କରୁଣାରେ ସେମାନଙ୍କୁ ସେଥିରୁ ଉଦ୍ଧାର କରିବାକୁ ଆଗ୍ରହବାନ ହୁଅନ୍ତି । ଈଶ୍ୱରଙ୍କର ସେହି କରୁଣାପୂର୍ଣ୍ଣ ଆଗ୍ରହ ଏବଂ ସେହି ଭାବ ଦ୍ୱାରା ପ୍ରେରିତ ହୋଇ କରାଯାଉଥିବା ପ୍ରୟାସକୁ ଶ୍ରୀଗୁରୁ ଓ ଗୁରୁଭାବ କୁହାଯାଏ । ସାଧାରଣ ମାନବର

ବୁଝିବାର ସୁବିଧା ନିମିତ୍ତ ସେହି ଗୁରୁଭାବ ସମୟ ସମୟରେ ବିଶେଷ ବିଶେଷ ନର ଆକାରରେ ଆମ ନିକଟରେ ଆବହମାନକାଳରୁ ପ୍ରକାଶିତ ହୋଇ ଆସୁଅଛି । ସେହି ସମସ୍ତ ପୁରୁଷଙ୍କୁ ହିଁ ଜଗତ ଅବତାର ବୋଲି ପୂଜା କରୁଅଛି । ଅତଏବ ବୁଝାଯାଉଅଛି, ଅବତାରପୁରୁଷମାନେ ହିଁ ମାନବସାଧାରଣଙ୍କର ଯଥାର୍ଥ ଗୁରୁ ।

### ଆଧିକାରିକ ପୁରୁଷମାନଙ୍କର ଶରୀର-ମନ ସାଧାରଣ ମନୁଷ୍ୟଙ୍କ ଅପେକ୍ଷା ଭିନ୍ନ ଉପାଦାନରେ ଗଠିତ । ସେଥିପାଇଁ ସେମାନଙ୍କର ସଂକଳ୍ପ ଓ କାର୍ଯ୍ୟ ସାଧାରଣ ଲୋକଙ୍କ ଅପେକ୍ଷା ଭିନ୍ନ ଓ ବିଚିତ୍ର :

ଆଧିକାରିକ ପୁରୁଷମାନଙ୍କର ଶରୀର-ମନ ସେଥିପାଇଁ ଏପରି ଉପାଦାନରେ ଗଠିତ ଦେଖାଯାଏ ଯେ, ସେମାନଙ୍କଠାରେ ଐଶ୍ୱରିକ ଭାବ-ପ୍ରେମ ଏବଂ ଉନ୍ନତସ୍ତରର ଶକ୍ତିପ୍ରକାଶ ଧାରଣ ଓ ହଜମ କରିବାର ସାମର୍ଥ୍ୟ ଥାଏ । ଜୀବ ଏତେ ଟିକିଏ ଆଧ୍ୟାତ୍ମିକ ଶକ୍ତି ଓ ଲୋକମାନ୍ୟ ପାଇଲେ ଅଂହକୃତ ଓ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠେ; ଆଧିକାରିକ ପୁରୁଷମାନେ ସେହି ସମସ୍ତ ଶକ୍ତି ତଦପେକ୍ଷା ସହସ୍ର ସହସ୍ର ଗୁଣ ଅଧିକ ପରିମାଣରେ ପାଇଲେ ମଧ୍ୟ କିଛିମାତ୍ର କ୍ଷୁବ୍ଧ ବା ବୁଦ୍ଧିଭ୍ରଷ୍ଟ ଓ ଅହଂକୃତ ହୋଇ ନ ଥାନ୍ତି । ଜୀବ ସମସ୍ତ ପ୍ରକାର ବନ୍ଧନରୁ ବିମୁକ୍ତ ହୋଇ ସମାଧିରେ ଆତ୍ମାନୁଭବର ପରମ ଆନନ୍ଦ ଥରେ କୌଣସିରୂପେ ପାଇଲେ ଆଉ ସଂସାରକୁ କୌଣସି କାରଣରୁ ଫେରିବାକୁ ଚାହେଁ ନାହିଁ, ଆଧିକାରିକ ପୁରୁଷମାନଙ୍କର ଜୀବନରେ ସେହି ଆନନ୍ଦ ଯେମିତି ଅନୁଭବ ହୁଏ; ସଙ୍ଗେ ସଙ୍ଗେ ମନେହୁଏ ଅନ୍ୟମାନଙ୍କୁ କେଉଁ ଉପାୟରେ ଏହି ଆନନ୍ଦର ଭାଗୀ କରିପାରେ । ଜୀବର ଈଶ୍ୱର-ଦର୍ଶନ ପରେ ଆଉ କୌଣସି କର୍ମ ନ ଥାଏ । ଆଧିକାରିକ ପୁରୁଷମାନଙ୍କର ସେହି ଦର୍ଶନଲାଭ ପରେ ଯେଉଁ ବିଶେଷ କାର୍ଯ୍ୟ କରିବା ନିମିତ୍ତ ସେମାନେ ଆସିଛନ୍ତି ତାହା ବୁଝିପାରିଥାଆନ୍ତି, ଏବଂ ସେହି କାର୍ଯ୍ୟ କରିବାକୁ ଆରମ୍ଭ କରନ୍ତି । ସେଥିପାଇଁ ଆଧିକାରିକ ପୁରୁଷମାନଙ୍କ ସମ୍ବନ୍ଧରେ ଏହା ହିଁ ନିୟମ ଯେ, ସେମାନେ ଯେତେଦିନ ଯେଉଁ ବିଶେଷ କାର୍ଯ୍ୟ କରିବାକୁ ଆସିଛନ୍ତି ତାହା ସମାପ୍ତ ନ କରନ୍ତି, ସେତେଦିନ ପର୍ଯ୍ୟନ୍ତ ସେମାନଙ୍କ ମନରେ ସାଧାରଣ ମୁକ୍ତପୁରୁଷମାନଙ୍କ ପରି 'ଶରୀର ଏହିକ୍ଷଣି ଗଲେ ଯାଉ, କ୍ଷତି ନାହିଁ', ଏପରି ଭାବର ଉଦୟ କେବେ ହୁଏ ନାହିଁ—ମନୁଷ୍ୟଲୋକରେ ବଞ୍ଚି ରହିବାର ଆଗ୍ରହ ହିଁ ଦେଖିବାକୁ ମିଳେ । କିନ୍ତୁ ସେମାନଙ୍କର ସେହି ଆଗ୍ରହରେ ଓ ଜୀବର ବଞ୍ଚିରହିବାର ଆଗ୍ରହରେ, ଆକାଶ-ପାତାଳ ପ୍ରଭେଦ ଥିବା ଦେଖିବାକୁ ମିଳିଥାଏ । ପୁଣି କାର୍ଯ୍ୟ ଶେଷ ହେଲା ମାତ୍ରେ ଆଧିକାରିକ ପୁରୁଷ ଏହା ତତ୍‌କ୍ଷଣାତ୍ ବୁଝିପାରନ୍ତି ଏବଂ ଆଉ ତିଳାର୍ଦ୍ଧ ମଧ୍ୟ ସଂସାରରେ ନ ରହି ପରମ ଆନନ୍ଦରେ ସମାଧିସ୍ଥ ହୋଇ ଦେହତ୍ୟାଗ କରନ୍ତି । ଜୀବର ଇଚ୍ଛାମାତ୍ରେ ହିଁ ସମାଧିରେ ଶରୀର ତ୍ୟାଗ ତ ଦୂରର କଥା—ଜୀବନର କାର୍ଯ୍ୟ ଯେ ଶେଷ ହୋଇଅଛି ଏପରି ଉପଲବ୍ଧି ହିଁ ହୁଏ ନାହିଁ;

ଏଜୀବନରେ ଅନେକ ବାସନା ପୂର୍ଣ୍ଣ ହେଲା ନାହିଁ ଏପରି ଉପଲବ୍ଧି ହିଁ ହୋଇଥାଏ । ଅନ୍ୟ ସମସ୍ତ ବିଷୟରେ ମଧ୍ୟ ତଦ୍ରୂପ ପ୍ରଭେଦ ରହିଥାଏ । ସେଥିପାଇଁ ଆମର ମାପକାଠିରେ ଅବତାର ବା ଆଧିକାରିକ ପୁରୁଷମାନଙ୍କର ଜୀବନ ଓ କାର୍ଯ୍ୟର ଉଦ୍ଦେଶ୍ୟ ମାପିବାକୁ ଯାଇ ଆମମାନଙ୍କୁ ବିଷମ ଭ୍ରମରେ ପତିତ ହେବାକୁ ପଡ଼େ ।

'ଗୟା ଗମନ କଲେ ଶରୀର ରହିବ ନାହିଁ', 'ଜଗନ୍ନାଥଧାମ ଗଲେ ଚିର ସମାଧିସ୍ଥ ହେବେ'—ଠାକୁରଙ୍କର ଏହି ସମସ୍ତ କଥାଗୁଡ଼ିକର ଭାବ କିଞ୍ଚିତ୍ ମାତ୍ର ହୃଦୟଙ୍ଗମ କରିବାକୁ ହେଲେ ଶାସ୍ତ୍ରର ପୂର୍ବୋକ୍ତ କଥାଗୁଡ଼ିକ ପାଠକଙ୍କର କିଛି କିଛି ଜାଣିବା ଆବଶ୍ୟକ । ସେଥିପାଇଁ ଯେତେ ସହଜରେ ସମ୍ଭବ ସଂକ୍ଷେପରେ ଆମେ ତାହାର ଆଲୋଚନା ଏଠାରେ କଲୁ । ଠାକୁରଙ୍କ କୌଣସି ଭାବ ଯେ ଶାସ୍ତ୍ରବିରୁଦ୍ଧ ନୁହେଁ, ପୂର୍ବୋକ୍ତ ଆଲୋଚନାରେ ଏହା ମଧ୍ୟ ପାଠକମାନେ ବୁଝିପାରିବେ ।

ପୂର୍ବରୁ କୁହାଯାଇଛି ଯେ ଠାକୁର ମଥୁରଙ୍କ ସହିତ ଗୟାଧାମ ଯିବାକୁ ଅସମ୍ମତ ହୋଇଥିଲେ । ସେଥିପାଇଁ ସେହି ଯାତ୍ରାରେ କାହାରି ମଧ୍ୟ ଗୟାଦର୍ଶନ ହେଲା ନାହିଁ । ବୈଦ୍ୟନାଥ ହୋଇ ସମସ୍ତେ କଲିକତା ପ୍ରତ୍ୟାବର୍ତ୍ତନ କଲେ । ବୈଦ୍ୟନାଥ ନିକଟବର୍ତ୍ତୀ କୌଣସି ଗ୍ରାମର ଲୋକମାନଙ୍କର ଦାରିଦ୍ର୍ୟ ଦେଖି ଠାକୁରଙ୍କ ହୃଦୟ କରୁଣାପୂର୍ଣ୍ଣ ହେଲା ଏବଂ ମଥୁରଙ୍କୁ କହି ସେମାନଙ୍କୁ ପରିତୋଷପୂର୍ବକ ଗୋଟିଏ ଦିନର ଭୋଜନ ଏବଂ ପ୍ରତ୍ୟେକଙ୍କୁ ଖଣ୍ଡିଏ ଲେଖାଏଁ ବସ୍ତ୍ର ପ୍ରଦାନ କରିଥିଲେ । ଏକଥାର ବିସ୍ତାରିତ ଉଲ୍ଲେଖ ଆମେ ଲୀଳାପ୍ରସଙ୍ଗରେ ଏଥିପୂର୍ବରୁ ବର୍ଣ୍ଣନା କରିଅଛୁ ।[୧]

## ଠାକୁରଙ୍କର ନବଦ୍ୱୀପ ଦର୍ଶନ :

କାଶୀ ବୃନ୍ଦାବନ ଆଦି ତୀର୍ଥ ବ୍ୟତୀତ ଠାକୁର ଥରେ ମହାପ୍ରଭୁ ଶ୍ରୀଚୈତନ୍ୟଦେବଙ୍କର ଜନ୍ମସ୍ଥାନ ନବଦ୍ୱୀପ ଦର୍ଶନ କରିବାକୁ ଯାଇଥିଲେ; ସେଥର ମଧ୍ୟ ମଥୁରବାବୁ ତାଙ୍କୁ ସାଙ୍ଗରେ ନେଇଯାଇଥିଲେ । ଶ୍ରୀଗୌରାଙ୍ଗଦେବଙ୍କ ସମ୍ବନ୍ଧରେ ଠାକୁର ଆମକୁ ଥରେ ଯାହା କହିଥିଲେ ସେଥିରୁ ବେଶ୍ ବୁଝାଯାଏ ଯେ, ଅବତାରପୁରୁଷମାନଙ୍କର ମନ ସମ୍ମୁଖରେ ମଧ୍ୟ ସବୁ ସମୟରେ ସବୁ ସତ୍ୟ ପ୍ରକାଶିତ ରହେ ନାହିଁ । ତେବେ ଆଧ୍ୟାତ୍ମିକ ଜଗତର ଯେଉଁ ବିଷୟର ତତ୍ତ୍ୱ ସେମାନେ ଜାଣିବାକୁ ବୁଝିବାକୁ ଇଚ୍ଛା କରନ୍ତି, ଅତି ସହଜରେ ତାହା ସେମାନଙ୍କ ମନ-ବୁଦ୍ଧିର ଗୋଚର ହୋଇଥାଏ ।

---

୧. ଗୁରୁଭାବ-ପୂର୍ବାର୍ଦ୍ଧ, ସପ୍ତମ ଅଧ୍ୟାୟର ଶେଷଭାଗ ଦ୍ରଷ୍ଟବ୍ୟ ।

## ଠାକୁରଙ୍କର ଚୈତନ୍ୟ ମହାପ୍ରଭୁଙ୍କ ସମ୍ବନ୍ଧରେ ପୂର୍ବମତ ଏବଂ ନବଦ୍ୱୀପରେ ଦର୍ଶନଲାଭ ପରେ ସେହି ମତର ପରିବର୍ତ୍ତନ :

ଶ୍ରୀଚୈତନ୍ୟଦେବଙ୍କର ଅବତାରତ୍ୱ ସମ୍ବନ୍ଧରେ ଆମମାନଙ୍କ ମଧ୍ୟରୁ ଅନେକେ ସେତେବେଳେ ସନ୍ଦିହାନ ଥିଲେ, ଏପରିକି 'ବୈଷ୍ଣବ'ର ଅର୍ଥ 'ଛୋଟଲୋକ' ବୋଲି ବୁଝୁଥିଲେ ଏବଂ ସନ୍ଦେହ ନିରସନ ନିମିତ୍ତ ଠାକୁରଙ୍କୁ ଅନେକ ସମୟରେ ସେହି ବିଷୟ ପଚାରିଥିଲେ । ଠାକୁର ତା' ଉତ୍ତରରେ ଆମକୁ ଦିନେ କହିଥିଲେ, ''ମୋର ମଧ ସେତେବେଳେ ସେହି ପ୍ରକାର ମନେ ହେଉଥିଲା ରେ, ଭାବୁଥିଲି ପୁରାଣ ଭାଗବତ କେଉଁଠି କିଛି ନାମଗନ୍ଧ ନାହିଁ—ଚୈତନ୍ୟ ପୁଣି କେମିତି ଅବତାର ! ନଣ୍ଡା ନାଣ୍ଡିମାନେ ଟାଣିଘୋଷାରି ଗୋଟିଏ ବନାଇଛନ୍ତି ଆଉ କ'ଣ ! —କୌଣସି ମତେ ଏକଥା ବିଶ୍ୱାସ ହେଉ ନ ଥିଲା । ମଥୁରଙ୍କ ସହିତ ନବଦ୍ୱୀପ ଗଲି । ଭାବିଲି, ଯଦି ଅବତାର ହୁଅନ୍ତି ତା'ହେଲେ ସେଠାରେ କିଛି ନା କିଛି ପ୍ରକାଶ ଥିବ, ଦେଖିଲେ ବୁଝିପାରିବି । ଟିକିଏ ପ୍ରକାଶ (ଦେବ ଭାବର) ଦେଖିବା ପାଇଁ ଏଠି ସେଠି ବଡ଼ ଗୋସାଇଁଙ୍କର ଘର, ଛୋଟ ଗୋସାଇଁଙ୍କର ଘର ବୁଲି ବୁଲି ଠାକୁର ଦେଖି ବୁଲିଲି—ମାତ୍ର କେଉଁଠାରେ କିଛି ଦେଖିପାରିଲି ନାହିଁ ! —ସବୁ ଜାଗାରେ ଗୋଟିଏ ଗୋଟିଏ କାଠର ମୂର୍ତ୍ତି ହାତଟେକି ଠିଆ ହୋଇଛନ୍ତି ଦେଖିଲି ! ତାହା ଦେଖି ମୋର ମନ ଖରାପ ହୋଇଗଲା; ଭାବିଲି, କାହିଁକି ଯେ ଏଠାକୁ ଆସିଲି । ତା'ପରେ ଫେରି ଆସିବି ବୋଲି ନୌକାରେ ଉଠୁଛି ଏହି ସମୟରେ ଅଦ୍ଭୁତ ଦର୍ଶନ ଦେଖିଲି ! ଦୁଇଟି ସୁନ୍ଦର ବାଳକ—ଏପରି ରୂପ କେବେ ଦେଖି ନାହିଁ, ତପ୍ତ କାଞ୍ଚନ ସଦୃଶ ବର୍ଣ୍ଣ, କିଶୋର ବୟସ, ମସ୍ତକରେ ଜ୍ୟୋତିଃର ମଣ୍ଡଳ, ହାତ ଉପରକୁ ଟେକି ମୋ ଆଡ଼କୁ ଅନାଇ ହସି ହସି ଆକାଶ ପଥରେ ଦୌଡ଼ି ଆସୁଛନ୍ତି ! ସଙ୍ଗେ ସଙ୍ଗେ 'ହେଇ ଆସିଲାରେ, ଆସିଲାରେ' ବୋଲି ଚିତ୍କାର କରିଉଠିଲି । ସେହି କଥାଗୁଡ଼ିକ କହୁ କହୁ ସେମାନେ ନିକଟକୁ ଆସି (ନିଜର ଶରୀର ଦେଖାଇ) ଏହା ଭିତରେ ପଶି ଗଲେ, ଏବଂ ମୁଁ ବାହ୍ୟଜ୍ଞାନ ହରାଇ ପଡ଼ିଗଲି ! ପାଣିରେ ପଡ଼ିଯାଇଥାଆନ୍ତି, ହୃଦୟ ପାଖରେ ଥିବାରୁ ଧରିପକାଇଲା । ଏହିପରି ବହୁତ କିଛି ଦେଖାଇ, ବୁଝାଇ ଦେଲେ, ବାସ୍ତବିକ୍ ଅବତାର, ଐଶ୍ୱରିକ ଶକ୍ତିର ବିକାଶ !'' ଠାକୁର 'ବହୁତ କିଛି ଦେଖାଇ' କଥାଗୁଡ଼ିକ ଏଠାରେ କହିଥିଲେ, କାରଣ କିଛିଦିନ ପୂର୍ବରୁ ଥରେ ଶ୍ରୀଗୌରାଙ୍ଗଦେବଙ୍କର ନଗର-ସଂକୀର୍ତ୍ତନ-ଦର୍ଶନର କଥା ଆମ ନିକଟରେ କହିଥିଲେ । ସେହି ଦର୍ଶନର କଥା ଆମେ ଲୀଳାପ୍ରସଙ୍ଗରେ ଅନ୍ୟତ୍ର ବର୍ଣ୍ଣନା କରିଛୁ ବୋଲି ଏଠାରେ ଉଲ୍ଲେଖ କଲୁ ନାହିଁ ।[୧]

---

୧. ସପ୍ତମ ଅଧ୍ୟାୟର ପୂର୍ବଭାଗ ଦେଖ ।

## ଠାକୁରଙ୍କର କାଲ୍‌ନାକୁ ଯାତ୍ରା :

ପୂର୍ବୋକ୍ତ ତୀର୍ଥଗୁଡ଼ିକ ବ୍ୟତୀତ ଠାକୁର ଆଉଥରେ ମଥୁରବାବୁଙ୍କ ସହିତ କାଲ୍‌ନା ଗମନ କରିଥିଲେ । ମହାପ୍ରଭୁ ଶ୍ରୀଚୈତନ୍ୟଙ୍କର ପାଦସ୍ପର୍ଶରେ ବଙ୍ଗଳାର ଗଙ୍ଗାତଟବର୍ତ୍ତୀ ଅନେକଗୁଡ଼ିଏ ଗ୍ରାମ ଯେ ତୀର୍ଥବିଶେଷ ହୋଇଉଠିଛି, ତାହା ଆଉ କହିବାକୁ ହେବ ନାହିଁ । କାଲ୍‌ନା ସେଥିମଧ୍ୟରୁ ଅନ୍ୟତମ । ପୁଣି ବର୍ଦ୍ଧମାନ ରାଜବଂଶର ଅଷ୍ଟାଧିକଶତ ଶିବ-ମନ୍ଦିର ପ୍ରଭୃତି ନାନା କୀର୍ତ୍ତି ଏଠାରେ ଥିବାରୁ କାଲ୍‌ନାକୁ ଏକ ଦର୍ଶନୀୟ ତଥା ଜାକଜମକର ସ୍ଥାନ କରି ଗଢ଼ିଛି ଏ କଥା ଦର୍ଶନକାରୀମାତ୍ରେ ଅନୁଭବ କରିଛନ୍ତି । କିନ୍ତୁ ଠାକୁରଙ୍କର ଏଥର କାଲ୍‌ନା ଦର୍ଶନ କରିବାର ଉଦ୍ଦେଶ୍ୟ ଭିନ୍ନ ଥିଲା । ସେଠାର ଖ୍ୟାତନାମା ସାଧୁ ଭଗବାନଦାସ ବାବାଜୀଙ୍କୁ ଦର୍ଶନ କରିବା ହିଁ ତାଙ୍କର ମନୋଗତ ଅଭିପ୍ରାୟ ଥିଲା ।

## ଭଗବାନଦାସ ବାବାଜୀଙ୍କର ତ୍ୟାଗ, ଭକ୍ତି ଓ ପ୍ରତିପତ୍ତି :

ଭଗବାନଦାସ ବାବାଜୀଙ୍କର ସେତେବେଳେ ଅଶୀ ବର୍ଷରୁ ଅଧିକ ବୟସ ହେବ । ସେ କେଉଁ କୁଳ ପବିତ୍ର କରିଥିଲେ ତାହା ଆମକୁ ଜଣା ନାହିଁ । ମାତ୍ର ତାଙ୍କର ଜ୍ୱଳନ୍ତ ତ୍ୟାଗ, ବୈରାଗ୍ୟ ଏବଂ ଭଗବତ୍‌ଭକ୍ତିର କଥା ବଙ୍ଗଳାର ଆବାଳବୃଦ୍ଧ ଅନେକେ ହିଁ ଶୁଣିଥିଲେ । ଶୁଣିଛୁ ଗୋଟିଏ ସ୍ଥାନରେ ସ୍ଥିର ଭାବରେ ବସି ଦିବାରାତ୍ରି ଜପ-ତପ-ଧ୍ୟାନ-ଧାରଣା ଆଦି କରିବା ଫଳରେ ଶେଷ ସମୟରେ ତାଙ୍କର ପାଦଦ୍ୱୟ ଚଳତଶକ୍ତିରହିତ ହୋଇଯାଇଥିଲା । କିନ୍ତୁ ଅଶୀ ବର୍ଷରୁ ଅଧିକ ବୟସ୍କ ହୋଇ ଶରୀର ଅପଟୁ ଓ ପ୍ରାୟ ଉତ୍‌ଥାନ-ଶକ୍ତି ରହିତ ହେଲେ ମଧ୍ୟ ବୃଦ୍ଧ ବାବାଜୀଙ୍କର ହରିନାମରେ ଉଦ୍ଦାମ ଉତ୍ସାହ, ଭଗବତ୍ ପ୍ରେମରେ ଅଜସ୍ର ଅଶ୍ରୁବର୍ଷଣ ଓ ଆନନ୍ଦ କିଛିମାତ୍ର ନ କମି ବରଂ ଦିନକୁ ଦିନ ବର୍ଦ୍ଧିତ ହୋଇଥିଲା । ଏଠାକାର ବୈଷ୍ଣବସମାଜ ତାଙ୍କୁ ପାଇ ସେତେବେଳେ ବିଶେଷ ସଜୀବ ହୋଇ ଉଠିଥିଲା ଏବଂ ତ୍ୟାଗୀ ବୈଷ୍ଣବ-ସାଧୁମାନଙ୍କର ଅନେକେ ତାଙ୍କର ଉଜ୍ଜ୍ୱଳ ଆଦର୍ଶ ଓ ଉପଦେଶରେ ନିଜ ନିଜର ଜୀବନ ଗଠନ କରି ଧନ୍ୟ ହୋଇଥିଲେ । ଆମେ ଶୁଣିଛୁ ବାବାଜୀଙ୍କ ଦର୍ଶନ ନିମିତ୍ତ ଯିଏ ବି ସେତେବେଳେ ଯାଉଥିଲେ, ସେ ହିଁ ତାଙ୍କର ବହୁକାଳ ଅନୁଷ୍ଠିତ ତ୍ୟାଗ, ତପସ୍ୟା, ପବିତ୍ରତା ଓ ଭକ୍ତିର ସଞ୍ଚିତ ପ୍ରଭାବ ପ୍ରାଣେ ପ୍ରାଣେ ଅନୁଭବ କରି ଏକ ଅପୂର୍ବ ଆନନ୍ଦ ଉପଲବ୍ଧି କରି ଫେରୁଥିଲେ । ମହାପ୍ରଭୁ ଶ୍ରୀଚୈତନ୍ୟଙ୍କର ପ୍ରେମଧର୍ମସମ୍ବନ୍ଧୀୟ କୌଣସି ବିଷୟରେ ବାବାଜୀ ଯେଉଁ ମତାମତ ପ୍ରକାଶ କରୁଥିଲେ, ତାହା ସେତେବେଳେ ଲୋକମାନେ ଅଭ୍ରାନ୍ତ ସତ୍ୟ ବୋଲି ଧାରଣା କରି ତଦନୁଷ୍ଠାନରେ ପ୍ରବୃତ୍ତ ହେଉଥିଲେ । ତେଣୁ ସିଦ୍ଧ ବାବାଜୀ ସେତେବେଳେ କେବଳ ନିଜର ସାଧନାରେ ବ୍ୟସ୍ତ ନ ରହି ବୈଷ୍ଣବସମାଜର କିପରି କଲ୍ୟାଣ ହେବ, କିପରି ତ୍ୟାଗୀ ବୈଷ୍ଣବମାନେ ପ୍ରକୃତ ତ୍ୟାଗର ଅନୁଷ୍ଠାନରେ

ଧନ୍ୟ ହେବେ, କିପରି ଇତରସାଧାରଣ ସଂସାରୀ ଜୀବ ଶ୍ରୀଚୈତନ୍ୟଙ୍କର ପ୍ରଦର୍ଶିତ ପ୍ରେମଧର୍ମର ଆଶ୍ରୟରେ ଆସି ଶାନ୍ତିଲାଭ କରିବେ—ଏସବୁ ଆଲୋଚନା ଓ ଅନୁଷ୍ଠାନରେ ବହୁ ସମୟ କଟାଉଥିଲେ । ବୈଷ୍ଣବସମାଜର କେଉଁଠାରେ କ'ଣ ହେଉଛି, କେଉଁଠାରେ କେଉଁ ସାଧୁ ଭଲ ବା ମନ୍ଦ ଆଚରଣ କରୁଛନ୍ତି, ସେସବୁ କଥା ଲୋକମାନେ ବାବାଜୀଙ୍କ ନିକଟରେ ନିବେଦନ କରୁଥିଲେ ଏବଂ ସେ ମଧ ସେସବୁ ବୁଝିଶୁଝି ସେହି ସେହି ବିଷୟରେ ଯାହା କରିବା ଉଚିତ୍ ତାହା ଉପଦେଶ ଦେଉଥିଲେ । ତ୍ୟାଗ, ତପସ୍ୟା ଓ ପ୍ରେମର ଜଗତରେ ଚିରକାଳ ଏପରି ଏକ ଅଦୃଶ୍ୟ ସୁଦୃଢ଼ ବନ୍ଧନ ବିଦ୍ୟମାନ ଅଛି ! ଲୋକମାନେ ବାବାଜୀଙ୍କର ଉପଦେଶ ଶିରୋଧାର୍ଯ୍ୟ କରି ତତ୍‌କ୍ଷଣାତ୍ ତାହା ସମ୍ପାଦନ କରିବାକୁ ସ୍ୱତଃପ୍ରେରିତ ହେଉଥିଲେ । ଏହିରୂପରେ ଗୁପ୍ତଚର ଇତ୍ୟାଦି ନ ଥାଇ ମଧ ସିଦ୍ଧ ବାବାଜୀଙ୍କର ସୁତୀକ୍ଷ୍ଣ ଦୃଷ୍ଟି ବୈଷ୍ଣବସମାଜର ସର୍ବତ୍ର ଅନୁଷ୍ଠିତ କାର୍ଯ୍ୟରେ ହିଁ ପତିତ ହେଉଥିଲା ଏବଂ ସେହି ସମାଜର ଅନ୍ତର୍ଗତ ପ୍ରତ୍ୟେକ ବ୍ୟକ୍ତି ହିଁ ତାଙ୍କର ପ୍ରଭାବ ଅନୁଭବ କରୁଥିଲେ । ଆଉ, ସେହି ଦୃଷ୍ଟି ଓ ପ୍ରଭାବ ସମ୍ମୁଖରେ ସରଳ ବିଶ୍ୱାସୀର ଉତ୍ସାହ ଯେପରି ଦିନକୁ ଦିନ ବର୍ଦ୍ଧିତ ହୋଇଉଠୁଥିଲା, କପଟାଚାରୀ ପୁଣି ସେହିପରି ଭୀତ କୁଣ୍ଠିତ ହୋଇ ନିଜର ସ୍ୱଭାବ-ପରିବର୍ତ୍ତନ ପାଇଁ ଚେଷ୍ଟା କରୁଥିଲେ ।

**ଠାକୁରଙ୍କର ତପସ୍ୟାକାଳରେ ଭାରତରେ ଧର୍ମ-ଆନ୍ଦୋଳନ :**

ଅନୁରାଗର ତୀବ୍ର ପ୍ରେରଣାରେ ଠାକୁର ଯେତେବେଳେ ଈଶ୍ୱରଲାଭ ନିମିତ୍ତ ଦ୍ୱାଦଶ ବର୍ଷବ୍ୟାପୀ କଠୋର ତପସ୍ୟାରେ ନିମଗ୍ନ ଥିଲେ ଏବଂ ତାଙ୍କଠାରେ ଗୁରୁଭାବର ଅଦୃଷ୍ଟପୂର୍ବ ବିକାଶ ହେଉଥିଲା, ସେତେବେଳେ ଉତ୍ତର ଭାରତବର୍ଷର ଅନେକ ସ୍ଥାନରେ ହିଁ ଧର୍ମର ଏକ ବିଶେଷ ଆନ୍ଦୋଳନ ଯେ ଚାଲିଥିଲା ଏକଥାର ଉଲ୍ଲେଖ ଆମେ ଲୀଳାପ୍ରସଙ୍ଗରେ ଅନ୍ୟ ସ୍ଥାନରେ କରିଅଛୁ ।[୧] କଲିକତା ଓ ଏହାର ସମୀପବର୍ତ୍ତୀ ନାନାସ୍ଥାନର ହରିସଭାଗୁଡ଼ିକ ଏବଂ ବ୍ରାହ୍ମସମାଜର ଆନ୍ଦୋଳନ, ଉତ୍ତର-ପଶ୍ଚିମ ଓ ପଞ୍ଜାବ ଅଞ୍ଚଳରେ ଶ୍ରୀଯୁକ୍ତ ଦୟାନନ୍ଦ ସରସ୍ୱତୀଙ୍କର ବେଦଧର୍ମର ଆନ୍ଦୋଳନ—ଯାହା ଏବେ ଆର୍ଯ୍ୟସମାଜରେ ପରିଣତ ହୋଇଅଛି, ବଙ୍ଗଳାରେ ବିଶୁଦ୍ଧ ବୈଦାନ୍ତିକ ଭାବର, କର୍ତ୍ତାଭଜା ସମ୍ପ୍ରଦାୟର ଓ ରାଧାସ୍ୱାମୀ ମତର, ଗୁଜୁରାଟରେ ନାରାୟଣସ୍ୱାମୀ ମତର—ଏହିପରି ନାନାସ୍ଥାନରେ ନାନା ଧର୍ମମତର ଉତ୍ପତ୍ତି ଓ ଆନ୍ଦୋଳନ ଏହି ସମୟର କିଛି ପୂର୍ବରୁ ବା ପର ସମୟରେ ଉପସ୍ଥିତ ହୋଇଥିଲା । ସେହି ଆନ୍ଦୋଳନର ସବିସ୍ତାର ଆଲୋଚନା ଏଠାରେ ଆମର ଉଦ୍ଦେଶ୍ୟ ନୁହେଁ; କିନ୍ତୁ କଲିକତାର କଲୁଟୋଲା ନାମକ ଏକ ପଲ୍ଲୀରେ ପ୍ରତିଷ୍ଠିତ ସେପରି ଏକ ହରିସଭାରେ ଠାକୁରଙ୍କୁ ନେଇ ଯେଉଁ ଘଟଣା ଘଟିଥିଲା ତାହା ହିଁ ଏଠାରେ ଆମେ ପାଠକଙ୍କୁ କହିବୁ ।

---

୧. ପଞ୍ଚମ ଅଧ୍ୟାୟ ଦେଖ ।

**ଠାକୁରଙ୍କର କଲୁଟୋଲାର ହରିସଭାକୁ ଯିବା :**

ଠାକୁରେ ନିମନ୍ତ୍ରିତ ହୋଇ ଦିନେ ଉକ୍ତ ହରିସଭାରେ ପହଞ୍ଚିଲେ; ସାଙ୍ଗରେ ଭଣଜା ହୃଦୟ ଥିଲେ । କେହି କେହି କହନ୍ତି, ପଣ୍ଡିତ ବୈଷ୍ଣବଚରଣ — ଯାହାଙ୍କ କଥା ଆମେ ଏହା ପୂର୍ବରୁ ପାଠକଙ୍କୁ କହିଛୁ — ସେଦିନ ସେଠାରେ ଶ୍ରୀମଦ୍‌ଭାଗବତ ପାଠରେ ରତ ଥିଲେ ଏବଂ ତାଙ୍କ ମୁହଁରୁ ଭାଗବତ ଶୁଣିବା ପାଇଁ ଠାକୁର ସେଠାକୁ ଯାଇଥିଲେ; କିନ୍ତୁ ଏହିକଥା ଆମେ ଠାକୁରଙ୍କ ମୁହଁରୁ ଶୁଣିଛୁ ବୋଲି ମନେହୁଏ ନାହିଁ । ସେ ଯାହାହେଉ, ଠାକୁର ଯେତେବେଳେ ସେଠାରେ ଉପସ୍ଥିତ ହେଲେ ସେତେବେଳେ ଭାଗବତ ପାଠ ଚାଲୁଥିଲା ଏବଂ ଉପସ୍ଥିତ ସମସ୍ତେ ତନ୍ମୟ ହୋଇ ତାହା ଶୁଣୁଥିଲେ । ଠାକୁର ମଧ୍ୟ ତାହା ଦେଖି ଶ୍ରୋତାମଣ୍ଡଳୀଙ୍କ ଭିତରେ ଗୋଟିଏ ସ୍ଥାନରେ ବସି ଭାଗବତ ପାଠ ଶୁଣିବାକୁ ଲାଗିଲେ ।

**ସେହି ସଭାରେ ଭାଗବତପାଠ :**

କଲୁଟୋଲାର ହରିସଭାର ସଭ୍ୟବୃନ୍ଦ ନିଜକୁ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କର ଏକାନ୍ତ ପଦାଶ୍ରିତ ମନେ କରୁଥିଲେ ଏବଂ ସେହି କଥା ସର୍ବଦା ସ୍ମରଣ ରଖିବା ପାଇଁ ସେମାନେ ଗୋଟିଏ ଆସନ ବିସ୍ତୃତ ରଖି ସେଥିରେ ମହାପ୍ରଭୁଙ୍କର ଆବିର୍ଭାବ କଳ୍ପନା କରି ପୂଜା, ପାଠ ପ୍ରଭୃତି ସଭାର ସମୁଦାୟ ଅନୁଷ୍ଠାନ ସେହି ଆସନ ସମ୍ମୁଖରେ କରୁଥିଲେ । ସେହି ଆସନଟି 'ଶ୍ରୀଚୈତନ୍ୟଙ୍କର ଆସନ' ବୋଲି ନିର୍ଦ୍ଦିଷ୍ଟ ହେଉଥିଲା । ସମସ୍ତେ ଭକ୍ତିଭାବରେ ଆସନ ସମ୍ମୁଖରେ ପ୍ରଣାମ କରୁଥିଲେ ଏବଂ ଏହା ଉପରେ କାହାକୁ ବସିବାକୁ ଦେଉ ନ ଥିଲେ । ଅନ୍ୟ ଦିନମାନଙ୍କ ପରି ଆଜି ମଧ୍ୟ ପୁଷ୍ପମାଲ୍ୟାଦିଭୂଷିତ ସେହି ଆସନର ସମ୍ମୁଖରେ ହିଁ ଭାଗବତପାଠ ହେଉଥିଲା । ପାଠକ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ହିଁ ହରିକଥା ଶୁଣାଉଛନ୍ତି ଭାବି ଭକ୍ତିର ସହିତ ପାଠ କରୁଥିଲେ ଏବଂ ଶ୍ରୋତୃବୃନ୍ଦ ମଧ୍ୟ ତାଙ୍କର ଦିବ୍ୟ ଆବିର୍ଭାବ ସମ୍ମୁଖରେ ବସି ହରିକଥାମୃତ ପାନ କରି ଧନ୍ୟ ହେଉଛନ୍ତି ଭାବି ଉଲ୍ଲସିତ ହେଉଥିଲେ । ଠାକୁରଙ୍କର ଆଗମନରେ ଶ୍ରୋତା ଓ ପାଠକଙ୍କର ସେହି ଉଲ୍ଲାସ ଓ ଭକ୍ତିଭାବ ଯେ ଶତଗୁଣରେ ସଜୀବ ହୋଇଉଠିଲା, ଏହା ଆଉ କହିବାକୁ ହେବ ନାହିଁ ।

**ଠାକୁରଙ୍କର ଶ୍ରୀଚୈତନ୍ୟଙ୍କ ଆସନ ଗ୍ରହଣ :**

ଭାଗବତର ଅମୃତୋପମ କଥା ଶ୍ରବଣ କରୁ କରୁ ଠାକୁର ଆତ୍ମହରା ହୋଇପଡ଼ିଲେ ଏବଂ 'ଶ୍ରୀଚୈତନ୍ୟଙ୍କ ଆସନ' ଅଭିମୁଖେ ସହସା ଧାଇଁଯାଇ ତାହା ଉପରେ ଦଣ୍ଡାୟମାନ ହୋଇ ଏପରି ଗଭୀର ସମାଧିମଗ୍ନ ହେଲେ ଯେ ତାଙ୍କଠାରେ ଆଉ କିଛିମାତ୍ର ପ୍ରାଣସଞ୍ଚାର ଲକ୍ଷିତ ହେଲା ନାହିଁ ! କିନ୍ତୁ ତାଙ୍କର ଜ୍ୟୋତିର୍ମୟ

ମୁଖମଣ୍ଡଳର ସେହି ଅଦୃଷ୍ଟପୂର୍ବ ପ୍ରେମପୂର୍ଣ୍ଣ ହାସ୍ୟ ଏବଂ ଶ୍ରୀଚୈତନ୍ୟଦେବଙ୍କ ମୂର୍ତ୍ତିମାନଙ୍କରେ ଯେପରି ଦେଖିବାକୁ ମିଳେ ସେହି ପ୍ରକାର ଊର୍ଦ୍ଧ୍ୱ ଉତ୍ତୋଳିତ ହସ୍ତରେ ଆଙ୍ଗୁଳି ନିର୍ଦ୍ଦେଶ ଦେଖି ବିଶିଷ୍ଟ ଭକ୍ତମାନେ ପ୍ରାଣେ ପ୍ରାଣେ ବୁଝିଲେ ଠାକୁର ଭାବମୁଖରେ ଶ୍ରୀଶ୍ରୀମହାପ୍ରଭୁଙ୍କ ସହିତ ଏକାନ୍ତ ଭାବରେ ତନ୍ମୟ ହୋଇଯାଇଛନ୍ତି ! ତାଙ୍କର ଶରୀର-ମନ ଏବଂ ଭଗବାନ ଶ୍ରୀଶ୍ରୀଚୈତନ୍ୟଙ୍କର ଶରୀରମନ ମଧ୍ୟରେ ସ୍ଥୂଳ ଦୃଷ୍ଟିରେ ଦେଶକାଳ ଏବଂ ଅନ୍ୟ ନାନା ବିଷୟର ଅନେକ ବ୍ୟବଧାନ ଯେ ରହିଅଛି, ଭାବମୁଖରେ ଊର୍ଦ୍ଧ୍ୱକୁ ଉଠି ସେବିଷୟର କିଛିମାତ୍ର ପ୍ରତ୍ୟକ୍ଷ ସେ ଆଉ ସେତେବେଳେ କରୁ ନାହାନ୍ତି । ପାଠକ ପାଠ ଭୁଲି ଠାକୁରଙ୍କୁ ଅନାଇ ସ୍ତମ୍ଭିତ ହୋଇ ରହିଲେ; ଶ୍ରୋତାମାନେ ମଧ୍ୟ ଠାକୁରଙ୍କର ସେପ୍ରକାର ଭାବାବେଶ ବୁଝି ନ ପାରିଲେ ମଧ୍ୟ ଏକ ଅବ୍ୟକ୍ତ ଦିବ୍ୟ ଭୟ-ବିସ୍ମୟରେ ଅଭିଭୂତ ହୋଇ ମୁଗ୍ଧ ଶାନ୍ତ ହୋଇ ବସିରହିଲେ, ଭଲ-ମନ୍ଦ କୌଣସି କଥା ସେସମୟରେ କେହି କହିବାକୁ ସମର୍ଥ ହେଲେ ନାହିଁ । ଠାକୁରଙ୍କର ପ୍ରବଳ ଭାବପ୍ରବାହରେ ସମସ୍ତେ ସେହି ସମୟରେ ଅବଶହୋଇ ଅନିର୍ଦ୍ଦେଶ୍ୟ କୌଣସି ଏକ ପ୍ରଦେଶରେ ଯେପରି ଭାସି ଚାଲୁଛନ୍ତି—ଏପରି ଏକ ଅନିର୍ବଚନୀୟ ଆନନ୍ଦ ଉପଲବ୍ଧି କରି ପ୍ରଥମେ କିଂକର୍ତ୍ତବ୍ୟବିମୂଢ଼ ହୋଇରହିଲେ, ପରେ ସେହି ଅବ୍ୟକ୍ତଭାବ-ପ୍ରେରିତ ହୋଇ ସମସ୍ତେ ମିଶି ଉଚ୍ଚସ୍ୱରରେ ହରିଧ୍ୱନିକରି ନାମସଂକୀର୍ତ୍ତନ ଆରମ୍ଭ କରିଦେଲେ । ସମାଧିତତ୍ତ୍ୱର ଆଲୋଚନାରେ[୧] ପୂର୍ବେ ଗୋଟିଏ ସ୍ଥାନରେ ଆମେ କହିଅଛୁ ଯେ, ଈଶ୍ୱରଙ୍କର ଯେଉଁ ନାମବିଶେଷ ଭିତରେ ଅନନ୍ତ ଦିବ୍ୟ ଭାବରାଶିର ଉପଲବ୍ଧି କରି ମନ ସମାଧିଲୀନ ହୁଏ, ସେହି ନାମ ଅବଲମ୍ବନରେ ପୁଣି ସେ ନିମ୍ନକୁ ଓହ୍ଲାଇ ବହିର୍ଜଗତ ଉପଲବ୍ଧି କରିଥାନ୍ତି—ଠାକୁରଙ୍କର ଦିବ୍ୟ ସଙ୍ଗରେ ଆମେ ପ୍ରତ୍ୟହ ବାରମ୍ବାର ଏହା ବିଶେଷ ଭାବରେ ଦେଖିଛୁ । ଏବେ ମଧ୍ୟ ତାହା ହିଁ ହେଲା; ସଂକୀର୍ତ୍ତନରେ ହରିନାମ ଶ୍ରବଣ କରୁ କରୁ ଠାକୁରଙ୍କର ନିଜ ଶରୀରର କିଛିଟା ହୋସ ଆସିଲା ଏବଂ ଭାବରେ ପ୍ରେମରେ ବିଭୋର ଅବସ୍ଥାରେ କୀର୍ତ୍ତନସମ୍ପ୍ରଦାୟ ସହିତ ମିଳିତ ହୋଇ ସେ କେତେବେଳେ ଉଦ୍ଦାମ ନୃତ୍ୟ କରିବାକୁ ଲାଗିଲେ ତ ପୁଣି କେତେବେଳେ ଭାବର ଆତିଶଯ୍ୟରେ ସମାଧିମଗ୍ନ ହୋଇ ସ୍ଥିର ନିଶ୍ଚେଷ୍ଟଭାବରେ ଅବସ୍ଥାନ କରିବାକୁ ଲାଗିଲେ । ଠାକୁରଙ୍କର ସେହିପରି ଚେଷ୍ଟାରେ ଉପସ୍ଥିତ ବ୍ୟକ୍ତିଗଣଙ୍କ ମଧ୍ୟରେ ଉତ୍ସାହ ଶତଗୁଣରେ ବଢ଼ିଯିବାରୁ ସମସ୍ତେ ହିଁ କୀର୍ତ୍ତନରେ ଉନ୍ମତ୍ତ ହୋଇଉଠିଲେ । ସେତେବେଳେ 'ଶ୍ରୀଚୈତନ୍ୟଙ୍କର ଆସନ' ଠାକୁରଙ୍କର ଏପରି ଅଧିକାର କରିବା ନ୍ୟାୟସଙ୍ଗତ ବା ଅନ୍ୟାୟ ହୋଇଛି, ଏକଥା ଆଉ କିଏ ବିଚାର କରୁଛି ? ଏହିପରି ଉଦ୍ଦାମ ତାଣ୍ଡବରେ ବହୁକ୍ଷଣ ଶ୍ରୀହରିଙ୍କର ଓ ଶ୍ରୀମହାପ୍ରଭୁଙ୍କର ଗୁଣାବଳୀକୀର୍ତ୍ତନ ପରେ ସମସ୍ତେ ଜୟଧ୍ୱନି ଉଚ୍ଚାରଣ କରି

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ସପ୍ତମ ଅଧ୍ୟାୟ ଦେଖ ।

ସେଦିନର ସେହି ଦିବ୍ୟ ଅଭିନୟ ସମାପ୍ତ କଲେ ଏବଂ ଠାକୁର ମଧ୍ୟ ଅଳ୍ପକ୍ଷଣ ପରେ ସେଠାରୁ ଦକ୍ଷିଣେଶ୍ୱରକୁ ପ୍ରତ୍ୟାଗମନ କଲେ ।

**ସେପରି କରିବାରୁ ବୈଷ୍ଣବ ସମାଜରେ ଆନ୍ଦୋଳନ :**

ଠାକୁରଙ୍କର ଦିବ୍ୟପ୍ରଭାବରେ ହରିନାମତାଣ୍ଡବର ଉଚ୍ଚଭାବପ୍ରବାହରେ ଉଠି କିଛିସମୟ ପାଇଁ ମାନବର ଦୋଷଦୃଷ୍ଟି ସ୍ତମ୍ଭୀଭୂତ ହୋଇ ରହିଥିଲେ ମଧ୍ୟ ସେ ସେଠାରୁ ଚାଲିଆସିବା ପରେ ପୁଣି ସମସ୍ତେ ପୂର୍ବ ପରି 'ପୁନର୍ମୂଷିକ'ଭାବ ପ୍ରାପ୍ତ ହେଲେ । ବାସ୍ତବରେ, ଜ୍ଞାନକୁ ଉପେକ୍ଷା କରି କେବଳ ଭକ୍ତି ସହାୟରେ ଈଶ୍ୱରଙ୍କ ପଥରେ ଅଗ୍ରସର ହେବାକୁ ଯେଉଁ ସକଳ ଧର୍ମ ଶିକ୍ଷା ଦିଏ, ସେମାନଙ୍କର ଏହା ହିଁ ଦୋଷ । ସେହି ସମସ୍ତ ଧର୍ମପଥର ପଥିକମାନେ ଶ୍ରୀହରିଙ୍କ ନାମସଂକୀର୍ତ୍ତନ ଦ୍ୱାରା କିଛିସମୟ ପାଇଁ ଆଧ୍ୟାତ୍ମିକଭାବର ଉଚ୍ଚ ଆନନ୍ଦ ଅବସ୍ଥାରେ ଅତି ସହଜରେ ଉଠିଲେ ମଧ୍ୟ ପରକ୍ଷଣରେ ପୁନରାୟ ନିମ୍ନକୁ ଓହ୍ଲାଇଯାନ୍ତି । ଏଥିରେ ସେମାନଙ୍କର ବିଶେଷ ଦୋଷ ନାହିଁ; କାରଣ ଉତ୍ତେଜନା ପରେ ଅବସାଦ ଆସିବା ପ୍ରକୃତି ଅନ୍ତର୍ଗତ ଶରୀର ଓ ମନର ଧର୍ମ । ଜୁଆର ପରେ ଭଟ୍ଟା, ଉତ୍ତେଜନା ପରେ ହିଁ ଅବସାଦ ଆସିବା ପ୍ରକୃତିର ନିୟମ । ହରିସଭାର ସଭ୍ୟମାନେ ମଧ୍ୟ ଉଚ୍ଚ ଭାବପ୍ରବାହର ଅବସାଦରେ ନିଜ ନିଜ ପୂର୍ବପ୍ରକୃତି ଓ ସଂସ୍କାରର ବଶବର୍ତ୍ତୀ ହୋଇ ଠାକୁରଙ୍କ କ୍ରିୟାକଳାପର ସମାଲୋଚନାରେ ପ୍ରବୃତ୍ତ ହେଲେ ! ଦଳେ ଠାକୁରଙ୍କର ଭାବମୁଖରେ 'ଶ୍ରୀଚୈତନ୍ୟଙ୍କ ଆସନ'ସେହିପରି ଗ୍ରହଣ କରିବାର ପକ୍ଷ ସମର୍ଥନ କଲାବେଳେ ଅନ୍ୟଦଳ ସେହି କାର୍ଯ୍ୟର ତୀବ୍ର ପ୍ରତିବାଦ କଲେ । ଉଭୟ ଦଳ ମଧ୍ୟରେ ଘୋର ଦ୍ୱନ୍ଦ୍ୱ ଓ ବାକ୍‌ବିତଣ୍ଡା ଚାଲିଲା, କିନ୍ତୁ କିଛି ମୀମାଂସା ହୋଇପାରିଲା ନାହିଁ ।

କ୍ରମେ ଏହି କଥା ଲୋକମୁଖରେ ବୈଷ୍ଣବସମାଜର ସର୍ବତ୍ର ପ୍ରଚାରିତ ହେଲା । ଭଗବାନଦାସ ବାବାଜୀ ମଧ୍ୟ ତାହା ଶୁଣିବାକୁ ପାଇଲେ । କେବଳ ଯେ ଶୁଣିଲେ ତାହା ନୁହେଁ, —ଭଗବତ୍‌ଭାବର ଛଳନା କରି ନାମଯଶ ପ୍ରାର୍ଥୀ ଧୂର୍ତ୍ତ ଓ ଭଣ୍ଡ ଲୋକମାନେ ସେହି ଆସନ ସ୍ୱାର୍ଥସିଦ୍ଧି ପାଇଁ ଭବିଷ୍ୟତରେ ସେପ୍ରକାର ଅଧିକାର କରିପାରନ୍ତି ଭାବି ହରିସଭାର କେତେକ ସଦସ୍ୟ ପୁଣି ସେହି ଆସନ ଭବିଷ୍ୟତରେ କିପରି ରକ୍ଷା କରାଯାଇପାରିବ ସେବିଷୟର ମୀମାଂସା କରିନେବା ପାଇଁ ତାଙ୍କ ନିକଟରେ ପହଞ୍ଚିଲେ ।

**ମହାପ୍ରଭୁ ଚୈତନ୍ୟଙ୍କର ଆସନ ଗ୍ରହଣ**
**କଥାଶୁଣି ଭଗବାନଦାସଙ୍କର ବିରକ୍ତି :**

ଶ୍ରୀଚୈତନ୍ୟପଦାଶ୍ରିତ ସିଦ୍ଧ ବାବାଜୀ ନିଜ ଇଷ୍ଟଦେବତାଙ୍କର ଆସନ ଅଜ୍ଞାତନାମା ଶ୍ରୀରାମକୃଷ୍ଣଦେବଙ୍କ ଦ୍ୱାରା ଅଧିକୃତ ହୋଇଅଛି ଶୁଣି ଅତ୍ୟନ୍ତ

ବିରକ୍ତ ହୋଇଥିଲେ । ଏପରିକି, କ୍ରୋଧାନ୍ଧ ହୋଇ ତାଙ୍କ ଉଦ୍ଦେଶ୍ୟରେ ଅନେକ କଟୁକଥା କହି ଏବଂ ତାଙ୍କୁ ଭଣ୍ଡ ପର୍ଯ୍ୟନ୍ତ କହିବାକୁ ମଧ୍ୟ କୁଣ୍ଠିତ ହୋଇ ନ ଥିଲେ । ହରିସଭାର ସଭ୍ୟଗଣଙ୍କ ଦର୍ଶନରେ ବାବାଜୀଙ୍କର ସେହି ବିରକ୍ତି ଓ କ୍ରୋଧ ଦ୍ୱିଗୁଣିତ ହୋଇଗଲା ଏବଂ ଏହିପରି ବିସଦୃଶ କାର୍ଯ୍ୟ ସମ୍ମୁଖରେ ଅନୁଷ୍ଠିତ ହେବାକୁ ଦେଇଥିବାରୁ ସେମାନଙ୍କୁ ମଧ୍ୟ ଯେ ବାବାଜୀ ଅପରାଧୀ ସାବ୍ୟସ୍ତ କରି ବିଶେଷ ଭର୍ତ୍ସନା କରିଥିଲେ, ଏକଥା ଆମେ ଭଲଭାବରେ ବୁଝିପାରୁଛୁ । ପରେ ତାଙ୍କର କ୍ରୋଧଶାନ୍ତି ହେବାରୁ ଭବିଷ୍ୟତରେ ଯେପରି କେହି ସେପରି ଆଚରଣ ନ କରିବେ, ସେବିଷୟରେ ସମସ୍ତ ବନ୍ଦୋବସ୍ତ ବାବାଜୀ କରିଦେଲେ । କିନ୍ତୁ ଯାହାକୁ ନେଇ ହରିସଭାରେ ଏତେ ଗଣ୍ଡଗୋଳ ସେ ଏସମସ୍ତ କଥା ବିଶେଷ କିଛି ଜାଣିପାରିଲେ ନାହିଁ ।

**ଠାକୁରଙ୍କର ଭଗବାନଦାସଙ୍କ ଆଶ୍ରମକୁ ଯିବା :**

ସେହି ଘଟଣାର କିଛିଦିନ ପରେ ଶ୍ରୀରାମକୃଷ୍ଣଦେବ ସ୍ୱତଃପ୍ରେରିତ ହୋଇ ତାଙ୍କର ଭଣଜା ହୃଦୟ ଓ ମଥୁରବାବୁଙ୍କ ସହିତ କାଲ୍‌ନା ଗମନ କଲେ । ପ୍ରତ୍ୟୁଷରୁ ନୌକା ଘାଟକୁ ଆସି ପହଞ୍ଚିବା ପରେ ମଥୁରବାବୁ ରହିବାର ସ୍ଥାନ ପ୍ରଭୃତିର ବନ୍ଦୋବସ୍ତରେ ବ୍ୟସ୍ତ ରହିଲେ । ଇତିମଧ୍ୟରେ ଶ୍ରୀରାମକୃଷ୍ଣଦେବ ହୃଦୟଙ୍କୁ ସାଙ୍ଗରେ ଧରି ସହର ଦେଖିବାକୁ ବାହାରିଗଲେ ଏବଂ ଲୋକଙ୍କୁ ପଚାରି ଭଗବାନଦାସ ବାବାଜୀଙ୍କ ଠିକଣା ବୁଝି ଆଶ୍ରମ ନିକଟରେ ଉପସ୍ଥିତ ହେଲେ ।

**ହୃଦୟ ବାବାଜୀଙ୍କୁ ଠାକୁରଙ୍କ ସମ୍ବନ୍ଧରେ କହିବା :**

ବାଳକସ୍ୱଭାବ ଠାକୁର ଅପରିଚିତ କୌଣସି ବ୍ୟକ୍ତିଙ୍କ ସମ୍ମୁଖୀନ ହେଲେ ସବୁ ସମୟରେ ଏକ ଅବ୍ୟକ୍ତ ଭୟ ଓ ଲଜ୍ଜାଭାବରେ ପ୍ରଥମେ ଅଭିଭୂତ ହୋଇ ପଡୁଥିଲେ । ଠାକୁରଙ୍କର ଏହି ଭାବ ଆମେମାନେ ଅନେକ ସମୟରେ ଲକ୍ଷ୍ୟ କରିଅଛୁ । ବାବାଜୀଙ୍କ ସହିତ ସାକ୍ଷାତ କରିବାକୁ ଗଲାବେଳେ ମଧ୍ୟ ଠିକ୍ ତଦ୍ରୂପ ହେଲା । ହୃଦୟକୁ ଆଗରେ ଯିବାପାଇଁ କହି ନିଜେ ପ୍ରାୟ ଆପାଦମସ୍ତକ ବସ୍ତ୍ରାବୃତ ହୋଇ ତାହାଙ୍କ ପଛେ ପଛେ ଆଶ୍ରମରେ ପ୍ରବେଶ କଲେ । ହୃଦୟ ବାବାଜୀଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରଣାମ କରି କହିଲେ, ''ମୋର ମାମୁଁ ଈଶ୍ୱରଙ୍କ ନାମରେ କିପରି ବିହ୍ୱଳ ହୋଇଯାଆନ୍ତି; ଅନେକ ଦିନରୁ ସେପରି ଅବସ୍ଥା ହୋଇଛି । ସେ ଆପଣଙ୍କୁ ଦର୍ଶନ କରିବାକୁ ଆସିଛନ୍ତି ।''

**ବାବାଜୀଙ୍କର ଜନୈକ ସାଧୁଙ୍କର କାର୍ଯ୍ୟରେ ବିରକ୍ତି–ପ୍ରକାଶ :**

ହୃଦୟ କହନ୍ତି, ବାବାଜୀଙ୍କର ସାଧନସମ୍ଭୂତ ଶକ୍ତିର ପରିଚୟ ତାଙ୍କ ନିକଟରେ ପହଞ୍ଚିବା ମାତ୍ରେ ସେ ପାଇଥିଲେ । କାରଣ, ପ୍ରଣାମ କରି ଉପରୋକ୍ତ

କଥା କହିବା ପୂର୍ବରୁ ହିଁ ସେ ବାବାଜୀ କହିବାର ଶୁଣିଥିଲେ, ''ଆଶ୍ରମରେ କୌଣସି ମହାପୁରୁଷଙ୍କର ଆଗମନ ହୋଇଥିବା ବୋଧ ହେଉଛି ।'' ଏକଥା କହି ବାବାଜୀ ଇତସ୍ତତଃ ନିରୀକ୍ଷଣ କରିବାକୁ ଲାଗିଲେ; କିନ୍ତୁ ହୃଦୟଙ୍କ ବ୍ୟତୀତ ଅନ୍ୟ କାହାକୁ ସେସମୟରେ ଆସିବାର ନ ଦେଖି ସମ୍ମୁଖରେ ଅବସ୍ଥିତ ବ୍ୟକ୍ତିମାନଙ୍କ ସହିତ ଉପସ୍ଥିତ ପ୍ରସଙ୍ଗରେ ମନୋନିବେଶ କରିଥିଲେ । ଜନୈକ ବୈଷ୍ଣବ ସାଧୁ କେଉଁ ଏକ ଅନ୍ୟାୟ କାର୍ଯ୍ୟ କରିଛନ୍ତି, ସେବିଷୟରେ କ'ଣ କରିବା କର୍ତ୍ତବ୍ୟ — ସେଇ ପ୍ରସଙ୍ଗ ସେତେବେଳେ ଚାଲୁଥିଲା; ଏବଂ ବାବାଜୀ ସାଧୁଙ୍କର ସେପ୍ରକାର ବିସଦୃଶ କାର୍ଯ୍ୟରେ ଅତ୍ୟନ୍ତ ବିରକ୍ତ ହୋଇ–ତାର ବେକରୁ କଣ୍ଠି (ମାଳା) କାଢ଼ି ନେଇ ସମ୍ପ୍ରଦାୟରୁ ତଡ଼ିଦେବେ, ଇତ୍ୟାଦି କହି ତାକୁ ତିରସ୍କାର କରୁଥିଲେ । ଏପରି ସମୟରେ ଶ୍ରୀରାମକୃଷ୍ଣଦେବ ସେଠାରେ ଉପସ୍ଥିତ ହୋଇ ତାଙ୍କୁ ପ୍ରଣାମ କରି ଉପସ୍ଥିତ ଭକ୍ତଙ୍କ ଗୋଟିଏ ପାଖରେ ଦୀନଭାବରେ ଉପବିଷ୍ଟ ହେଲେ । ସର୍ବାଙ୍ଗ ବସ୍ତ୍ରାବୃତ ଥିବାରୁ ତାଙ୍କର ମୁଖମଣ୍ଡଳ କାହାରି ଭଲ ଭାବରେ ନୟନଗୋଚର ହେଉ ନ ଥିଲା । ସେ ଏପରି ଆସି ବସିବାମାତ୍ରେ ହୃଦୟ ତାଙ୍କର ପରିଚାୟକ ପୂର୍ବୋକ୍ତ କଥାଗୁଡ଼ିକ ବାବାଜୀଙ୍କୁ ନିବେଦନ କଲେ । ହୃଦୟଙ୍କ କଥାରେ ବାବାଜୀ ନିଜ କଥାରୁ ବିରତ ହୋଇ ଠାକୁରଙ୍କୁ ଏବଂ ତାହାଙ୍କୁ ପ୍ରତିନମସ୍କାର କରି କେଉଁଠାରୁ ସେମାନଙ୍କ ଆଗମନ ହୋଇଛି, ଇତ୍ୟାଦି ପ୍ରଶ୍ନ ପଚାରିବାକୁ ଲାଗିଲେ ।

### ବାବାଜୀଙ୍କର ଲୋକଶିକ୍ଷା ଦେବାର ଅହଂକାର :

ବାବାଜୀ ହୃଦୟଙ୍କ ସହିତ କଥା ହେବାବେଳେ ମାଳା ଗଡ଼ାଉଥିବା ଦେଖି ହୃଦୟ କହିଲେ, ''ଆପଣ ବର୍ତ୍ତମାନ ପର୍ଯ୍ୟନ୍ତ ମାଳା ରଖିଛନ୍ତି କାହିଁକି ? ଆପଣ ସିଦ୍ଧ ହୋଇଛନ୍ତି, ଆପଣଙ୍କର ଏହା ଆଉ ରଖିବାର ତ ପ୍ରୟୋଜନ ନାହିଁ ?'' ଠାକୁରଙ୍କର ଅଭିପ୍ରାୟ ଅନୁସାରେ ହୃଦୟ ବାବାଜୀଙ୍କୁ ଏକଥା କହିଥିଲେ ବା ସ୍ୱତଃପ୍ରଣୋଦିତ ହୋଇ କହିଥିଲେ, ତାହା ଆମକୁ ଜଣା ନାହିଁ । ବୋଧହୁଏ ଶେଷୋକ୍ତ କାରଣରୁ ସେ ଏକଥା କହିଥିଲେ । କାରଣ, ଠାକୁରଙ୍କର ସେବାରେ ସର୍ବଦା ନିଯୁକ୍ତ ଥିବାରୁ ଏବଂ ତାଙ୍କ ସହିତ ସମାଜର ଉଚ୍ଚନୀଚ ନାନାପ୍ରକାର ଲୋକଙ୍କ ସହିତ ସବୁବେଳେ ମିଶି ହୃଦୟଙ୍କର ମଧ୍ୟ ସେତେବେଳେ ଉପସ୍ଥିତ ବୁଦ୍ଧିମତ୍ତା ଏବଂ ଯେତେବେଳେ ଯେପରି ସେତେବେଳେ ସେପରି କଥା କହିବାର ଓ ପ୍ରସଙ୍ଗ ଉତ୍ଥାପିତ କରିବାର କ୍ଷମତା ବେଶ୍ ପରିସ୍ଫୁଟ ହୋଇଉଠିଥିଲା । ବାବାଜୀ ହୃଦୟଙ୍କର ଏପରି ପ୍ରଶ୍ନରେ ପ୍ରଥମେ ଦୀନତା ପ୍ରକାଶ କରି ପରେ କହିଲେ, ''ନିଜର ପ୍ରୟୋଜନ ନ ଥିଲେ ମଧ୍ୟ ଲୋକଶିକ୍ଷା ପାଇଁ ସେସବୁ ରଖିବା ନିତାନ୍ତ ପ୍ରୟୋଜନ; ନଚେତ୍ ମୋର ଦେଖାଦେଖି ଲୋକେ ସେପରି କରି ଭ୍ରଷ୍ଟ ହୋଇଯିବେ ।''

## ବାବାଜୀଙ୍କର ସେପରି ବିରକ୍ତି ଓ ଅହଂକାର ଦେଖି ଠାକୁରଙ୍କର ଭାବାବେଶରେ ପ୍ରତିବାଦ :

ଚିରକାଳ ଶ୍ରୀଶ୍ରୀଜଗନ୍ମାତାଙ୍କ ଉପରେ ସମସ୍ତ ବିଷୟରେ ବାଳକ ପରି ସମ୍ପୂର୍ଣ୍ଣ ନିର୍ଭର କରିଆସିଥିବାରୁ ଠାକୁରଙ୍କର ନିର୍ଭରଶୀଳତା ଏତେ ସହଜ, ସ୍ୱାଭାବିକ ଓ ମଜ୍ଜାଗତ ହୋଇଯାଇଥିଲା ଯେ, ନିଜେ ଅହଂକାରର ପ୍ରେରଣାରେ କୌଣସି କାର୍ଯ୍ୟ କରିବା ଦୂରରେ ଥାଉ, ଅନ୍ୟ କେହି ସେପରି କରୁଛି ବା କରିବ କହୁଛି ଦେଖିଲେ ବା ଶୁଣିଲେ ତାଙ୍କ ମନରେ ଏକ ବିଷମ ଯନ୍ତ୍ରଣା ଉପସ୍ଥିତ ହେଉଥିଲା । ସେଥିପାଇଁ ସେ ଈଶ୍ୱରଙ୍କର ଦାସ ଭାବରେ ଅତି ବିରଳ ସମୟରେ 'ମୁଁ' କଥାଟି ପ୍ରୟୋଗ କରିବା ବ୍ୟତୀତ ଅନ୍ୟ କୌଣସି ସମୟରେ ଆମମାନଙ୍କ ପରି ସେହି ଶବ୍ଦ ଉଚ୍ଚାରଣ କରିପାରୁ ନ ଥିଲେ । ଅଳ୍ପ ସମୟ ପାଇଁ ମଧ୍ୟ ଯେ ଠାକୁରଙ୍କୁ ଦେଖିଛି ସେ ମଧ୍ୟ ତାଙ୍କର ସେପରି ସ୍ୱଭାବ ଲକ୍ଷ୍ୟକରି ବିସ୍ମିତ ଓ ମୁଗ୍ଧ ହୋଇଛନ୍ତି, ବା ଅନ୍ୟ କେହି କୌଣସି କାର୍ଯ୍ୟ 'ମୁଁ କରିବି' କହିଲେ ତାଙ୍କର ଭୀଷଣ ବିରକ୍ତି ପ୍ରକାଶ ଦେଖି ଅବାକ୍ ହୋଇ ଭାବିଛନ୍ତି — ସେହି ଲୋକଟା ଏପରି କି କୁକର୍ମ କରିଛି ଯେଉଁଥିରେ ସେ ଏତେ ବିରକ୍ତ ହେଉଛନ୍ତି ! ଭଗବାନଦାସଙ୍କ ନିକଟରେ ଆସିବା ମାତ୍ରେ ଠାକୁର ପ୍ରଥମେ ଶୁଣିଲେ, ସେ କଣ୍ଠୀ ଛିଣ୍ଡାଇ ନେଇ ଜଣଙ୍କୁ ତଡ଼ିଦେବେ କହୁଛନ୍ତି । ପୁଣି ଅଳ୍ପ ସମୟ ପରେ ଶୁଣିଲେ ସେ ଲୋକଶିକ୍ଷା ଦେବା ପାଇଁ ହିଁ ବର୍ତ୍ତମାନ ମଧ୍ୟ ମାଳା-ତିଳକ-ଆଦି-ବ୍ୟବହାର ତ୍ୟାଗ କରି ନାହାନ୍ତି । ବାବାଜୀଙ୍କର ସେପରି ବାରମ୍ବାର 'ମୁଁ ତିଡ଼ିଦେବି, ମୁଁ ଲୋକଶିକ୍ଷା ଦେବି, ମୁଁ ମାଳା-ତିଳକ ତ୍ୟାଗ କରି ନାହିଁ' ଇତ୍ୟାଦି କହିବାରୁ ସରଳସ୍ୱଭାବ ଠାକୁର ଆଉ ମନର ବିରକ୍ତି ଆମମାନଙ୍କ ପରି ଚାପି ସଭ୍ୟ ଭବ୍ୟ ହୋଇ ଉପବିଷ୍ଟ ରହିପାରିଲେ ନାହିଁ । ଏକାଥରକେ ଠିଆ ହୋଇ ବାବାଜୀଙ୍କୁ ଲକ୍ଷ୍ୟ କରି କହିଲେ, ''କ'ଣ ? ତୁମେ ଏବେ ମଧ୍ୟ ଏତେ ଅହଂକାର ଧରି ବସିଛ ? ତୁମେ ଲୋକଶିକ୍ଷା ଦେବ ? ତୁମେ ତଡ଼ିଦେବ ? ତୁମେ ତ୍ୟାଗ ଓ ଗ୍ରହଣ କରିବ ? ତୁମେ ଲୋକଶିକ୍ଷା ଦେବାକୁ କିଏ ? ଯାହାଙ୍କ ଜଗତ ସେ ନ ଶିଖାଇଲେ ତୁମେ ଶିଖାଇବ ?'' — ଠାକୁରଙ୍କର ସେତେବେଳେ ଅଙ୍ଗ ଆବରଣ ଖସିପଡ଼ିଛି । କଟିଦେଶରୁ ବସ୍ତ୍ର ମଧ୍ୟ ଶିଥିଳ ହୋଇ ଖସିପଡ଼ିଛି ଏବଂ ମୁଖ ମଣ୍ଡଳ ଏକ ଅପୂର୍ବ ଦିବ୍ୟ ତେଜରେ ଉଦ୍‌ଭାସିତ ହୋଇଉଠିଛି ! ସେ ସେତେବେଳେ ସମ୍ପୂର୍ଣ୍ଣ ଆତ୍ମହରା ହୋଇ ପଡ଼ିଛନ୍ତି, କାହାକୁ କ'ଣ କହୁଛନ୍ତି ତାହାର କିଛିମାତ୍ର ବୋଧ ନାହିଁ ! ଏବଂ ସେହି କେତୋଟି କଥାମାତ୍ର କହି ଭାବର ଆତିଶଯ୍ୟରେ ସେ ନିଶ୍ଚେଷ୍ଟ ନିସ୍ପନ୍ଦ ହୋଇ ସମାଧିସ୍ଥ ହୋଇପଡ଼ିଲେ ।

## ବାବାଜୀଙ୍କର ଠାକୁରଙ୍କ କଥା ମାନିନେବା :

ସିଦ୍ଧ ବାବାଜୀଙ୍କୁ ଏପର୍ଯ୍ୟନ୍ତ ସମସ୍ତେ ମାନି ଆସିଛନ୍ତି ଓ ଭକ୍ତି କରିଆସିଛନ୍ତି । ତାଙ୍କ ବାକ୍ୟର ପ୍ରତିବାଦ କରିବା ବା ତାଙ୍କର ଦୋଷ ଦେଖାଇବା ଏପର୍ଯ୍ୟନ୍ତ କାହାର ସାହସ ବା ସାମର୍ଥ୍ୟ ହୋଇ ନାହିଁ । ଠାକୁରଙ୍କର ସେପରି ଚେଷ୍ଟା ଦେଖି ସେ ପ୍ରଥମେ ବିସ୍ମିତ ହେଲେ; କିନ୍ତୁ ସାଧାରଣ ମାନବ ଯେପରି ସେହି ଅବସ୍ଥାରେ ପଡ଼ିଲେ କ୍ରୋଧ ପରବଶ ହୋଇ ପ୍ରତିହିଂସା ନେବାକୁ ପ୍ରବୃତ୍ତ ହୁଅନ୍ତି, ବାବାଜୀଙ୍କ ମନରେ ସେପରି ଭାବର ଉଦୟ ହେଲା ନାହିଁ ! ତପସ୍ୟା-ପ୍ରସୂତ ସରଳତା ତାଙ୍କ ସହାୟ ହୋଇ ଶ୍ରୀରାମକୃଷ୍ଣଦେବଙ୍କର କଥାଗୁଡ଼ିକୁ ଯଥାର୍ଥ ହୃଦୟଙ୍ଗମ କରାଇଦେଲା ! ସେ ବୁଝିଲେ, ବାସ୍ତବିକ୍ ହିଁ ଏହି ଜଗତରେ ଈଶ୍ୱରଙ୍କ ଭିନ୍ନ ଅନ୍ୟ ଦ୍ୱିତୀୟ କର୍ତ୍ତା ନାହାନ୍ତି । ଅହଂକୃତ ମାନବ ଯେତେ ଭାବୁନା କାହିଁକି ଯେ ସେ ସମସ୍ତ କାର୍ଯ୍ୟ କରୁଛି, କିନ୍ତୁ ବାସ୍ତବରେ ସେ ଅବସ୍ଥାର ଦାସମାତ୍ର; ଯେତେ ଟିକିଏ ଅଧିକାର ତାକୁ ଦିଆଯାଇଛି ସେତିକି ମାତ୍ର ହିଁ ସେ ବୁଝିପାରେ ଓ କରିପାରେ । ସଂସାରୀ ମାନବ ଯାହା କରୁଛନ୍ତି କରନ୍ତୁ, କିନ୍ତୁ ଭକ୍ତ ଓ ସାଧକଙ୍କର କ୍ଷଣକ ପାଇଁ ମଧ୍ୟ ସେକଥା ବିସ୍ମୃତ ହେବା ଉଚିତ୍ ନୁହେଁ । ସେଥିରେ ସେମାନଙ୍କର ପଥଭ୍ରଷ୍ଟ ହୋଇ ପତନର ସମ୍ଭାବନା ଅଛି । ଠାକୁରଙ୍କର ଏହିପ୍ରକାର ଶକ୍ତିପୂର୍ଣ୍ଣ କଥାଗୁଡ଼ିକରେ ବାବାଜୀଙ୍କର ଅନ୍ତର୍ଦୃଷ୍ଟି ଅଧିକତର ପ୍ରସ୍ଫୁଟିତ ହୋଇ ତାଙ୍କୁ ନିଜର ଦୋଷ ଦେଖାଇ ବିନୀତ ଓ ନମ୍ର କଲା । ପୁଣି ଶ୍ରୀରାମକୃଷ୍ଣଦେବଙ୍କ ଶରୀରରେ ଅପୂର୍ବ ଭାବବିକାଶ ଦେଖି ତାଙ୍କର ଧାରଣା ହେଲା, ସେ ସାମାନ୍ୟ ପୁରୁଷ ନୁହଁନ୍ତି ।

## ଠାକୁର ଓ ଭଗବାନଦାସଙ୍କର ପ୍ରେମାଳାପ ଏବଂ ମଥୁରବାବୁଙ୍କର ଆଶ୍ରମସ୍ଥିତ ସାଧୁମାନଙ୍କର ସେବା :

ପରେ ଭଗବତ୍-ପ୍ରସଙ୍ଗରେ ସେଠାରେ ଯେ ଏକ ଅପୂର୍ବ ଦିବ୍ୟାନନ୍ଦର ପ୍ରବାହ ବହିଲା ତାହା ଆମମାନଙ୍କର ସହଜରେ ହିଁ ଅନୁମିତ ହୁଏ । ସେହି ପ୍ରସଙ୍ଗରେ ଶ୍ରୀରାମକୃଷ୍ଣଦେବଙ୍କର ମୁହୁର୍ମୁହୁଃ ଭାବାବେଶ ଓ ଉଦ୍ଦାମ ଆନନ୍ଦରେ ବାବାଜୀ ମୋହିତ ହୋଇ ଦେଖିଲେ ଯେ, ଯେଉ ମହାଭାବର ଶାସ୍ତ୍ରୀୟ ଆଲୋଚନା ଓ ଧାରଣାରେ ସେ ଏତେକାଳ କଟାଇଛନ୍ତି, ତାହା ହିଁ ଶ୍ରୀରାମକୃଷ୍ଣଙ୍କ ଶରୀରରେ ନିତ୍ୟ ପ୍ରକାଶିତ ହେଉଅଛି ! ସୁତରାଂ ଶ୍ରୀରାମକୃଷ୍ଣଦେବଙ୍କ ଉପରେ ତାଙ୍କର ଭକ୍ତି-ଶ୍ରଦ୍ଧା ଗଭୀର ହୋଇଉଠିଲା । ପରେ ଯେତେବେଳେ ବାବାଜୀ ଶୁଣିଲେ ସେ ହିଁ ଦକ୍ଷିଣେଶ୍ୱରର ପରମହଂସ, ଯିଏ କି କଲୁଟୋଲାର ହରିସଭାରେ ଭାବାବେଶରେ ଆତ୍ମହରା ହୋଇ ଶ୍ରୀଚୈତନ୍ୟଙ୍କର ଆସନ ଅଧିକାର

କରି ବସିଥିଲେ, ସେତେବେଳେ ଏହାଙ୍କୁ ହିଁ ମୁଁ ଅଯଥା କଟୁକଥା କହିଛି— ଏହାଭାବି ତାଙ୍କ ମନରେ କ୍ଷୋଭ ଓ ପରିତାପର ସୀମା ରହିଲା ନାହିଁ । ସେ ଶ୍ରୀରାମକୃଷ୍ଣଦେବଙ୍କୁ ବିନୀତଭାବରେ ପ୍ରଣାମ କରି ସେଥି ନିମନ୍ତେ କ୍ଷମା ପ୍ରାର୍ଥନା କଲେ । ଏହିପରି ସେଦିନ ଠାକୁର ଓ ବାବାଜୀଙ୍କ ପ୍ରେମାଭିନୟ ଶେଷ ହେଲା ଏବଂ ଶ୍ରୀରାମକୃଷ୍ଣଦେବ ମଧ୍ଯ ହୃଦୟଙ୍କୁ ନେଇ କିଛିକ୍ଷଣ ପରେ ମଥୁରଙ୍କ ନିକଟକୁ ଆଗମନ କରି ସେହି ଘଟଣାର ଆଦ୍ୟୋପାନ୍ତ ତାଙ୍କୁ ଶୁଣାଇ ବାବାଜୀଙ୍କର ଉଚ୍ଚ ଆଧ୍ୟାତ୍ମିକ ଅବସ୍ଥାର ଅନେକ ପ୍ରଶଂସା କଲେ । ମଥୁରବାବୁ ମଧ୍ଯ ତାହା ଶୁଣି ବାବାଜୀଙ୍କୁ ଦର୍ଶନ କରିବାକୁ ଗଲେ ଏବଂ ଆଶ୍ରମସ୍ଥ ଦେବବିଗ୍ରହଙ୍କର ସେବା ଓ ଗୋଟିଏ ଦିନ ମହୋତ୍ସବ ପାଇଁ ବିଶେଷ ବନ୍ଦୋବସ୍ତ କରିଦେଲେ ।

# ଚତୁର୍ଥ ଅଧ୍ୟାୟ

## ଗୁରୁଭାବ–ସମ୍ବନ୍ଧରେ ଶେଷ କଥା

ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ ।
ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା ॥
ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ ।
ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ॥
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥—ଗୀତା, ୪/୬-୮

### ବେଦରେ ବ୍ରହ୍ମଜ୍ଞ ପୁରୁଷଙ୍କୁ ସର୍ବଜ୍ଞ କହିବାର ତାତ୍ପର୍ଯ୍ୟ ବୁଝି ନ ପାରି ଆମମାନଙ୍କର ବାଦାନୁବାଦ :

ବେଦପ୍ରମୁଖ ଶାସ୍ତ୍ର କହନ୍ତି, ବ୍ରହ୍ମଜ୍ଞ ପୁରୁଷ ସର୍ବଜ୍ଞ ହୁଅନ୍ତି । ସାଧାରଣ ମନୁଷ୍ୟଙ୍କ ପରି ତାଙ୍କ ମନରେ କୌଣସି ମିଥ୍ୟା ସଂକଳ୍ପ କଦାପି ଉଦୟ ହୁଏ ନାହିଁ । ସେମାନେ ଯେତେବେଳେ ଯେଉଁ ବିଷୟରେ ଜାଣିବାକୁ ବା ବୁଝିବାକୁ ଇଚ୍ଛା କରନ୍ତି, ସେମାନଙ୍କର ଅନ୍ତର୍ଦୃଷ୍ଟି ସମ୍ମୁଖରେ ସେବିଷୟ ତତ୍‌କ୍ଷଣାତ୍ ପ୍ରକାଶିତ ହୁଏ, ଅଥବା ସେବିଷୟର ତତ୍ତ୍ୱ ସେମାନେ ବୁଝିପାରନ୍ତି । କଥାଗୁଡ଼ିକ ଶୁଣି ଭାବ ବୁଝି ନ ପାରି ଆମେ ପୂର୍ବରୁ ଶାସ୍ତ୍ରର ବିରୁଦ୍ଧ ପକ୍ଷ ଅବଲମ୍ବନ କରି କେତେ ଯେ ମିଥ୍ୟା ତର୍କର ଅବତାରଣା କରିଅଛୁ ! କହିଛୁ, ସେହି କଥା ଯଦି ସତ୍ୟ ହୁଏ ତେବେ ଭାରତର ପୂର୍ବ ପୂର୍ବ ଯୁଗର ବ୍ରହ୍ମଜ୍ଞମାନେ ଜଡ଼ବିଜ୍ଞାନ ସମ୍ବନ୍ଧରେ ଏତେ ଅଜ୍ଞ ଥିଲେ କାହିଁକି ? ହାଇଡ୍ରୋଜେନ୍ ଓ ଅକ୍ସିଜେନ୍ ଏକତ୍ର ମିଶି ଜଳ ହୁଏ, ଏକଥା ଭାରତର କେଉଁ ବ୍ରହ୍ମଜ୍ଞ କହିଯାଇଛନ୍ତି ? ତଡ଼ିତ୍ ଶକ୍ତି ସାହାଯ୍ୟରେ ଚାରି–ପାଞ୍ଚ ଘଣ୍ଟା ଭିତରେ ଯେ ଛଅ ମାସର ପଥ ଆମେରିକା ଦେଶର ସମ୍ବାଦ ଆମେମାନେ ଏଠି ବସି ପାଇପାରୁ ଏକଥା ସେମାନେ କହିଯାଇ ନାହାଁନ୍ତି କାହିଁକି ? ଅଥବା ଯନ୍ତ୍ର ସାହାଯ୍ୟରେ ମଣିଷ ପକ୍ଷୀପରି ଆକାଶଚାରୀ ହୋଇପାରେ ଏକଥା ଜାଣିପାରି ନାହାଁନ୍ତି କାହିଁକି ?

### ଠାକୁର ଏହା କିପରି ସତ୍ୟ ବୋଲି ବୁଝାଇଛନ୍ତି—"ଭାତ ହାଣ୍ଡିରେ ଗୋଟିଏ ଭାତ ଚିପି ଜଣାଯାଏ ଭାତ ସିଝିଛି କି ନାହିଁ ।"

ଠାକୁରଙ୍କ ନିକଟକୁ ଆସି ଶୁଣିଲୁ, ଶାସ୍ତ୍ରର ସେହିକଥା ସେହି ପ୍ରକାରରେ ବୁଝିବାକୁ ଗଲେ ତାର କୌଣସି ଅର୍ଥ ହିଁ ମିଳିବ ନାହିଁ; ଅଥଚ ଶାସ୍ତ୍ର ଯେଉଁ ଭାବରେ ସେହି କଥା କହିଛନ୍ତି, ସେହିଭାବରେ ଦେଖିଲେ ତାହା ସତ୍ୟ ବୋଲି ନିଶ୍ଚୟ ପ୍ରତୀତ ହେବ । ଏଥିପାଇଁ ଠାକୁର ଶାସ୍ତ୍ରର ସେହି କଥା ଗୋଟିଏ–ଦୁଇଟି ଗ୍ରାମ୍ୟ

ଦୃଷ୍ଟାନ୍ତ ସାହାଯ୍ୟରେ ବୁଝାଇ କହୁଥିଲେ, ''ହାଣ୍ଡିରେ ଫୁଟୁଥିବା ଚାଉଳ ସିଝିଛି କି ନାହିଁ ଜାଣିବାକୁ ହେଲେ ତୁ ହାଣ୍ଡିରୁ ଗୋଟିଏ ଫୁଟୁଥିବା ଭାତ ହାତରେ ଆଣି ଚିପି ଦେଖିଲୁ ଯେ ସିଝିଛି—ଆଉ ବୁଝିପାରିଲୁ ଯେ, ସବୁ ଚାଉଳଗୁଡ଼ିକ ସିଝିଛି । କାହିଁକି ? ତୁ ତ ସବୁ ଭାତକୁ ଗୋଟିଏ ଗୋଟିଏ କରି ଚିପି ଦେଖିଲୁ ନାହିଁ— ତେଣୁ ବୁଝିଲୁ କେମିତି ? ଏହା ଯେପରି ବୁଝାଯାଏ, ସେପରି ଜଗତସଂସାର ନିତ୍ୟ କି ଅନିତ୍ୟ, ସତ କି ଅସତ—ଏହା ମଧ୍ୟ ସଂସାରର ଦୁଇ ଚାରୋଟି ଜିନିଷ ପରୀକ୍ଷା କରି ଦେଖି ବୁଝାଯାଏ । ମନୁଷ୍ୟ ଜନ୍ମହେଲା, କିଛି ଦିନ ବଞ୍ଚିରହିଲା, ତାପରେ ମଲା, ଗୋରୁ ମଧ୍ୟ ସେହିପରି; ଗଛ ମଧ୍ୟ ସେହିପରି; ଏପରି ଦେଖି ଦେଖି ବୁଝିଲୁ ଯେ, ଯେଉଁ ଜିନିଷର ନାମ ଅଛି, ରୂପ ଅଛି, ସେସମସ୍ତଙ୍କ ପାଇଁ ଏହି ସମାନ ନିୟମ । ପୃଥିବୀ, ସୂର୍ଯ୍ୟଲୋକ, ଚନ୍ଦ୍ରଲୋକ, ସମସ୍ତଙ୍କର ନାମ ରୂପ ଅଛି, ତେଣୁ ସେମାନଙ୍କ ପାଇଁ ମଧ୍ୟ ଏହି ନିୟମ ଲାଗୁ ହେବ । ଏପରି ଜାଣିପାରିଲୁ ଯେ, ସମସ୍ତ ଜଗତ-ସଂସାରର ସ୍ୱଭାବ ହିଁ ଏହିପରି । ଏଣୁ ଜଗତ ଭିତରର ସବୁ ଜିନିଷର ସ୍ୱଭାବ ଜାଣିଲୁ ନା ନାହିଁ ? ଏହି ଭାବରେ ଯେତେବେଳେ ଜଗତକୁ ଠିକ୍ ଠିକ୍ ଅନିତ୍ୟ, ଅସତ୍ ବୋଲି ବୁଝିବୁ, ସେତେବେଳେ ତାକୁ ଆଉ ଭଲ ପାଇପାରିବୁ ନାହିଁ—ମନରୁ ତ୍ୟାଗ କରି ନିର୍ବାସନା ହେବୁ । ପୁଣି ଯେତେବେଳେ ତ୍ୟାଗ କରିବୁ, ସେତେବେଳେ ହିଁ ଜଗତ କାରଣ ଈଶ୍ୱରଙ୍କ ଦେଖାପାଇବୁ । ସେହିପରି ଯାହାର ଈଶ୍ୱରଦର୍ଶନ ହେଲା, ସେ ସର୍ବଜ୍ଞ ହେଲା ନା ଆଉ କିଛି ହେଲା କୁହ ତ !''

**କୌଣସି ବିଷୟର ଉତ୍ପତ୍ତିର କାରଣରୁ ଲୟ ପର୍ଯ୍ୟନ୍ତ ଜାଣିବା ହିଁ ସେ ବିଷୟର ସର୍ବଜ୍ଞତା । ଈଶ୍ୱର-ଲାଭ ହେଲେ ଜଗତ୍ ସମ୍ବନ୍ଧରେ ମଧ୍ୟ ତଦ୍ରୂପ ହୁଏ :**

ଠାକୁରଙ୍କର ଏତେ କଥା ପରେ ଆମେ ବୁଝିଲୁ—ଠିକ୍ କଥାତ, ଗୋଟିଏ ଭାବରେ ସେ ସର୍ବଜ୍ଞ ହିଁ ହେଲା ! କୌଣସି ଏକ ପଦାର୍ଥର ଆଦି, ମଧ୍ୟ ଓ ଅନ୍ତ ଦେଖିପାରିବା ଏବଂ ଏହି ପଦାର୍ଥର ଉତ୍ପତ୍ତି ଯେଉଁଥିରୁ ହୋଇଛି ତାହା ଜାଣିପାରିବାକୁ ତ ଆମେ ସେହି ପଦାର୍ଥର ଜ୍ଞାନ ବୋଲି କହିଥାଉ । ତେବେ ପୂର୍ବୋକ୍ତଭାବରେ ଜଗତ୍‌ସଂସାରକୁ ଜାଣିବା ବା ବୁଝିବାକୁ ମଧ୍ୟ ଜ୍ଞାନ ବୋଲି କହିବାକୁ ହେବ । ପୁଣି ଏହି ଜ୍ଞାନ ଜଗତ ଅନ୍ତର୍ଗତ ସମସ୍ତ ପଦାର୍ଥ ସମ୍ବନ୍ଧରେ ହିଁ ସମଭାବେ ସତ୍ୟ ହେବ । ସୁତରାଂ ତାହାକୁ ଜଗତ ଅନ୍ତର୍ଗତ ସବୁ ପଦାର୍ଥର ଜ୍ଞାନ କହିବାକୁ ହେବ ଏବଂ ଯାହାଙ୍କର ସେହିପରି ଜ୍ଞାନ ହୁଏ, ତାହାଙ୍କୁ ସର୍ବଜ୍ଞ ହିଁ କୁହାଯାଏ । ଶାସ୍ତ୍ର ତ' ତେବେ ଠିକ୍ କହିଛନ୍ତି ।

**ବ୍ରହ୍ମଜ୍ଞ ପୁରୁଷ ସିଦ୍ଧ ସଂକଳ୍ପ ହୁଅନ୍ତି, ଏକଥା ମଧ୍ୟ ସତ୍ୟ । ଏହାର ଅର୍ଥ । ଠାକୁରଙ୍କର ଜୀବନ ଦେଖି ଏସମ୍ବନ୍ଧରେ କ'ଣ ବୁଝାଯାଏ । 'ହାଡ଼-ମାଂସର ପିଞ୍ଜରାକୁ ମନ ଆଣିପାରିଲି ନାହିଁ ।'**

ବ୍ରହ୍ମଜ୍ଞ ପୁରୁଷ ସତ୍ୟସଂକଳ୍ପ ହୁଅନ୍ତି, ସିଦ୍ଧସଂକଳ୍ପ ହୁଅନ୍ତି, ଏହି ଶାସ୍ତ୍ରୀୟ ବଚନର ମଧ୍ୟ ସେତେବେଳେ ଗୋଟିଏ ସାଧାରଣ ଅର୍ଥ ଖୋଜି ପାଇଲୁ । ବୁଝିପାରିଲୁ ଯେ, ଗୋଟିଏ ଗୋଟିଏ ବିଷୟରେ ମନର ସମସ୍ତ ଚିନ୍ତାଶକ୍ତି ଏକତ୍ରିତ କରି ଅନୁସନ୍ଧାନ କଲେ ହିଁ ଆମର ସେହି ସେହି ବିଷୟରେ ଜ୍ଞାନ ଆସିଥାଏ, ଏହା ନିତ୍ୟ-ପ୍ରତ୍ୟକ୍ଷ । ତେବେ ବ୍ରହ୍ମଜ୍ଞ ପୁରୁଷ ଯିଏ ନିଜର ମନକୁ ସମ୍ପୂର୍ଣ୍ଣ ଭାବରେ ବଶୀଭୂତ ତଥା ଆୟତ୍ତ କରିଛନ୍ତି, ସେ ଯେତେବେଳେ କୌଣସି ବିଷୟ ଜାଣିବାପାଇଁ ମନର ସମସ୍ତ ଶକ୍ତି ଏକତ୍ରିତ କରି ଅନୁସନ୍ଧାନରେ ପ୍ରବୃତ୍ତ ହେବେ, ସେତେବେଳେ ସେ ଅତି ସହଜରେ ସେହି ବିଷୟର ଜ୍ଞାନଲାଭ କରିପାରିବେ, ଏକଥା ତ' ବିଚିତ୍ର ନୁହେଁ । ତେବେ ଏହା ମଧ୍ୟରେ ଗୋଟିଏ କଥା ଅଛି— ଯିଏ ସମଗ୍ର ଜଗତ-ସଂସାରକୁ ଅନିତ୍ୟ ବୋଲି ଧ୍ରୁବ ଧାରଣା କରିଛନ୍ତି ଏବଂ ସର୍ବଶକ୍ତିର ଆକରସ୍ୱରୂପ ଜଗତ୍‌କାରଣ ଈଶ୍ୱରଙ୍କୁ ପ୍ରେମର ସାକ୍ଷାତ ସମ୍ବନ୍ଧରେ ମଧ୍ୟ ଧରିପାରିଛନ୍ତି, ତାଙ୍କର ରେଳଗାଡ଼ି ଚଳାଇବାକୁ, ମଣିଷମରା କଳକାରଖାନା ନିର୍ମାଣ କରିବାକୁ ପ୍ରବୃତ୍ତି ହେବ କି ନାହିଁ । ଯଦି ଏପରି ସଂକଳ୍ପ ତାଙ୍କ ମନରେ ଉଦୟ ହେବା ଅସମ୍ଭବ ହୁଏ, ତା'ହେଲେ ତ ଆଉ ଏପରି କଳକାରଖାନା ନିର୍ମାଣ ହେବ ନାହିଁ । ଠାକୁରଙ୍କର ଦିବ୍ୟସଙ୍ଗ ଲାଭରେ ଦେଖିଲୁ, ବାସ୍ତବିକ୍ ସେହିପରି ହୁଏ, ବାସ୍ତବରେ ସେମାନଙ୍କ ଭିତରେ ଏପରି ପ୍ରବୃତ୍ତିର ଉଦୟ ହେବା ଅସମ୍ଭବ ହୋଇଉଠେ । ଠାକୁର କାଶୀପୁରଠାରେ ପ୍ରଚଣ୍ଡ ବ୍ୟାଧିରେ ଭୋଗୁଥିବା ବେଳେ, ସ୍ୱାମୀ ବିବେକାନନ୍ଦଙ୍କ ସମେତ ଆମେ, ଆମର କଲ୍ୟାଣ ନିମିତ୍ତ ମନଃଶକ୍ତି ପ୍ରୟୋଗ କରି ରୋଗରୁ ମୁକ୍ତ ହେବା ପାଇଁ ସଜଳନୟନରେ ତାଙ୍କୁ ଅନୁରୋଧ କରିଥିଲେ ମଧ୍ୟ ସେ ସେପରି ଚେଷ୍ଟା ବା ସଂକଳ୍ପ କରିପାରିଲେ ନାହିଁ ! କହିଲେ, ଏପରି କରିବାକୁ ଯାଇ ମନରେ ସଂକଳ୍ପର ଦୃଢ଼ତା କୌଣସି ପ୍ରକାରରେ ଆଣିପାରିଲେ ନାହିଁ ! କହିଲେ, ସଚ୍ଚିଦାନନ୍ଦଙ୍କଠାରୁ ଫେରାଇ ''ହାଡ଼—ମାଂସର ପିଞ୍ଜରା ଉପରେ ମନକୁ କୌଣସି ମତେ ଆଣିପାରିଲି ନାହିଁ ! ସର୍ବଦା ଶରୀରକୁ ତୁଚ୍ଛ ହେୟଜ୍ଞାନ କରି ଯେଉଁ ମନଟାକୁ ଜଗଦମ୍ବାଙ୍କର ପାଦପଦ୍ମରେ ଚିରକାଳ ପାଇଁ ଦେଇଛି, ତାହାକୁ ଏବେ ସେଠାରୁ ଫେରାଇ ଶରୀର ଉପରେ ଆଣିପାରିବି କି ?''

## ସେହି ବିଷୟରେ ବୁଝିବାକୁ ଠାକୁରଙ୍କ ଜୀବନରୁ ଅନ୍ୟ ଏକ ଘଟଣାର ଉଲ୍ଲେଖ । 'ମନ ଉଚ୍ଚ ବିଷୟରେ ରହିଛି, ନିମ୍ନ ଅବସ୍ଥାକୁ ଆଣି ପାରିଲି ନାହିଁ ।'

ଆଉ ଏକ ଘଟଣା ଏଠାରେ ଉଲ୍ଲେଖ କଲେ ପାଠକ ଏବିଷୟ ସହଜରେ ବୁଝିପାରିବେ । ବାଗ୍‌ବଜାରର ଶ୍ରୀଯୁକ୍ତ ବଳରାମ ବସୁ ମହାଶୟଙ୍କ ଘରକୁ ଠାକୁର ଦିନେ ଆସିଥାଆନ୍ତି । ସେତେବେଳେ ଦିନ ଦଶଟା ହେବ । ଠାକୁରଙ୍କ ସେଦିନ ଏଠାକୁ ଆସିବା ପୂର୍ବରୁ ସ୍ଥିର ଥିଲା । ତେଣୁ ଶ୍ରୀଯୁକ୍ତ ନରେନ୍ଦ୍ରନାଥପ୍ରମୁଖ ଅନେକ ଯୁବକ ଭକ୍ତ ତାଙ୍କର ଦର୍ଶନଲାଭ ପାଇଁ ସେଠାରେ ଉପସ୍ଥିତ ହେଲେ, ଏବଂ କେତେବେଳେ ଠାକୁରଙ୍କ ସହିତ ଓ କେତେବେଳେ ପରସ୍ପର ମଧ୍ୟରେ ନାନା ପ୍ରସଙ୍ଗ ଚାଲିବାକୁ ଲାଗିଲା । ସୂକ୍ଷ୍ମ ଇନ୍ଦ୍ରିୟାତୀତ ବିଷୟ ଦେଖିବା କଥାରେ କ୍ରମେ ଅଣୁବୀକ୍ଷଣ–ଯନ୍ତ୍ରର କଥା ଆସିପଡ଼ିଲା । ସ୍ଥୂଳ ଚକ୍ଷୁରେ ଯାହା ଦେଖିହୁଏ ନାହିଁ, ସେହିପରି ସୂକ୍ଷ୍ମ ସୂକ୍ଷ୍ମ ପଦାର୍ଥ ମଧ୍ୟ ଏହା ସାହାଯ୍ୟରେ ଦେଖାଯାଏ, ଗୋଟିଏ ଅତି କ୍ଷୁଦ୍ର ଲୋମକୁ ଏହି ଯନ୍ତ୍ର ସାହାଯ୍ୟରେ ଦେଖିଲେ ତାହା ଏକ ଲାଠି ପରି ଦେଖାଯାଏ ଏବଂ ଶରୀରର ପ୍ରତ୍ୟେକ ଲୋମ ଅମୃତଭଣ୍ଡା ଡାଳପରି ଫମ୍ପା ଥିବା ଏହି ଯନ୍ତ୍ର ସାହାଯ୍ୟରେ ଦେଖାଯାଏ, ଇତ୍ୟାଦି ନାନା କଥା ଶୁଣି ଠାକୁର ସେହି ଯନ୍ତ୍ର ସହାୟରେ ଗୋଟିଏ–ଦୁଇଟି ପଦାର୍ଥ ଦେଖିବାକୁ ବାଳକ ପରି ଆଗ୍ରହ ପ୍ରକାଶ କଲେ । ତେଣୁ ଭକ୍ତମାନେ ସ୍ଥିର କଲେ, ସେଦିନ ଅପରାହ୍ଣରେ ହିଁ ଏହି ଯନ୍ତ୍ରଟିକୁ କାହା ପାଖରୁ ଆଣି ଠାକୁରଙ୍କୁ ଦେଖାଇବେ ।

ସେତେବେଳେ ଅନୁସନ୍ଧାନରୁ ଜଣାଗଲା, ସ୍ୱାମୀ ପ୍ରେମାନନ୍ଦଙ୍କର ଭ୍ରାତା, ଆମର ଶ୍ରଦ୍ଧାସ୍ପଦ ବନ୍ଧୁ ଡାକ୍ତର ବିପିନ୍‌ବିହାରୀ ଘୋଷ ଅଳ୍ପ ଦିନ ହେଲା ଡାକ୍ତରୀ ପରୀକ୍ଷାରେ ସସମ୍ମାନରେ ଉତ୍ତୀର୍ଣ୍ଣ ହୋଇ ସେହିପରି ଗୋଟିଏ ଯନ୍ତ୍ର ମେଡିକାଲ କଲେଜରୁ ପୁରସ୍କାରସ୍ୱରୂପ ପ୍ରାପ୍ତ ହୋଇଛନ୍ତି । ସେହି ଯନ୍ତ୍ରଟି ଆନୟନ କରି ଠାକୁରଙ୍କୁ ଦେଖାଇବା ପାଇଁ ତାଙ୍କ ନିକଟକୁ ଲୋକ ପଠାଗଲା । ସେ ମଧ୍ୟ ସମ୍ବାଦ ପାଇ କେତେ ଘଣ୍ଟାପରେ ଦିନ ପ୍ରାୟ ଚାରିଟା ସମୟରେ ଅଣୁବୀକ୍ଷଣ ଯନ୍ତ୍ରଟି ନେଇ ଆସିଲେ ଏବଂ ଯନ୍ତ୍ରଟିକୁ ଠିକ୍ ଠାକ୍ କରି (adjust) ଠାକୁରଙ୍କୁ ତା'ଭିତର ଦେଇ ଦେଖିବାକୁ ଆହ୍ୱାନ କଲେ ।

ଠାକୁର ଉଠି ଦେଖିବାକୁ ଗଲେ, କିନ୍ତୁ ନ ଦେଖି ପୁଣି ଫେରି ଆସିଲେ ! ସମସ୍ତେ ଏହାର କାରଣ ପଚାରିବାରୁ କହିଲେ, ''ମନ ଏବେ ଏତେ ଉଚ୍ଚରେ ଉଠି ରହିଛି ଯେ, କୌଣସି ପ୍ରକାରରେ ତାକୁ ନିମ୍ନଗାମୀ କରି ତଳଆଡ଼କୁ ଦେଖିପାରୁ ନାହିଁ ।''–ଠାକୁରଙ୍କ ମନ ଯଦି ନିମ୍ନକୁ ଓହ୍ଲାଇ ଆସେ ସେଥିପାଇଁ ଆମେ ଅନେକ ସମୟ ଅପେକ୍ଷା କଲୁ । ମାତ୍ର ଠାକୁରଙ୍କ ମନ ସେଦିନ କୌଣସି ମତେ ସେହି ଉଚ୍ଚ ଭାବଭୂମିରୁ ଓହ୍ଲାଇଲା ନାହିଁ —ତେଣୁ ତାଙ୍କର ସେଦିନ ଅଣୁବୀକ୍ଷଣ ଯନ୍ତ୍ର

ଦ୍ୱାରା କୌଣସି ପଦାର୍ଥ ଦେଖାହେଲା ନାହିଁ । ବିପିନ୍‌ବାବୁ ଆମମାନଙ୍କ ମଧ୍ୟରୁ କେତେଜଣଙ୍କୁ ସେହିସବୁ ଦେଖାଇ ଅଗତ୍ୟା ଯନ୍ତ୍ରଟିକୁ ଫେରାଇ ନେଲେ ।

**ସମସ୍ତ ବସ୍ତୁ ଓ ବିଷୟକୁ ଠାକୁର ଦୁଇଟି ଅବସ୍ଥାରୁ ଦୁଇ ପ୍ରକାର ଦେଖିବା । ଅଦ୍ୱୈତ ଭାବଭୂମି ଓ ସାଧାରଣ ଭାବଭୂମି—ପ୍ରଥମଟିରୁ ଇନ୍ଦ୍ରିୟାତୀତ ଦର୍ଶନ ଦ୍ୱିତୀୟଟିରୁ, ଇନ୍ଦ୍ରିୟ ଦ୍ୱାରା ଦର୍ଶନ :**

ଦେହାଦି-ଭାବ ଛାଡ଼ି ଠାକୁରଙ୍କର ମନ ଯେତେବେଳେ ଯେତେ ଉଚ୍ଚତର ଭାବଭୂମିରେ ବିଚରଣ କରୁଥିଲା, ସେତେବେଳେ ତାଙ୍କର ସେହି ସେହି ଭୂମିରୁ ଲବ୍ଧ ସେତେ ଅସାଧାରଣ ଦିବ୍ୟଦର୍ଶନସମୂହ ଆସି ଉପସ୍ଥିତ ହେଉଥିଲା ଏବଂ ଦେହଠାରୁ ସମ୍ପୂର୍ଣ୍ଣ ବିଯୁକ୍ତ ହୋଇ ଯେତେବେଳେ ସେ ସର୍ବୋଚ୍ଚ ଅଦ୍ୱୈତଭାବଭୂମିରେ ବିଚରଣ କରୁଥିଲେ, ସେତେବେଳେ ତାଙ୍କର ହୃଦୟର ସ୍ପନ୍ଦନ ଆଦି ଦେହର ସମସ୍ତ ଇନ୍ଦ୍ରିୟର କାର୍ଯ୍ୟ କିଛି ସମୟ ପାଇଁ ରୁଦ୍ଧ ହୋଇ ଦେହ ମୃତବତ୍ ପଡ଼ିରହୁଥିଲା ଏବଂ ମନର ଚିନ୍ତା କଳ୍ପନା ଆଦି ସମସ୍ତ ବିଷୟ ସମ୍ପୂର୍ଣ୍ଣରୂପେ ସ୍ଥିର ହୋଇଯାଇ ସେ ଅଖଣ୍ଡ ସଚ୍ଚିଦାନନ୍ଦଙ୍କ ସହିତ ଏକାବେଳକେ ଅପୃଥକ ଭାବରେ ଅବସ୍ଥାନ କରୁଥିଲେ । ପୁନରାୟ ଏହି ସର୍ବୋଚ୍ଚ ଭାବଭୂମିରୁ ନିମ୍ନରୁ ନିମ୍ନତର ଭୂମିକୁ କ୍ରମେ କ୍ରମେ ଓହ୍ଲାଉ ଓହ୍ଲାଉ ଯେତେବେଳେ ଠାକୁରଙ୍କର ସାଧାରଣ ମାନବ ସଦୃଶ 'ଏ ଦେହଟା ମୋର'—ପୁନରାୟ ଏପରି ଭାବର ଉଦୟ ହେଉଥିଲା, ସେତେବେଳେ ସେ ପୁଣି ଆମମାନଙ୍କ ପରି ଚକ୍ଷୁଦ୍ୱାରା ଦର୍ଶନ, କର୍ଣ୍ଣଦ୍ୱାରା ଶ୍ରବଣ, ଚର୍ମ ଦ୍ୱାରା ସ୍ପର୍ଶ, ଏବଂ ମନ ଦ୍ୱାରା ଚିନ୍ତା-ସଂକଳ୍ପ ଆଦି କରୁଥିଲେ ।

**ସାଧାରଣ ମାନବ ଦ୍ୱିତୀୟ ପ୍ରକାରରେ ହିଁ ସମସ୍ତ ବିଷୟ ଦେଖେ :**

ପାଶ୍ଚାତ୍ୟର ଜଣେ ପ୍ରଧାନ ଦାର୍ଶନିକ[୧] ମନୁଷ୍ୟ ମନର ସମାଧି ଭୂମିରେ ଏପରି ଆରୋହଣ-ଅବରୋହଣର କିଞ୍ଚିତ୍ ଆଭାସ ପାଇ ସାଧାରଣ ମନୁଷ୍ୟର ଦେହାନ୍ତର୍ଗତ ଚୈତନ୍ୟ ମଧ୍ୟ ଯେ ସମସ୍ତ ସମୟରେ ଏକ ଅବସ୍ଥାରେ ରହେ ନାହିଁ, ଏପ୍ରକାର ମତ ପ୍ରକାଶ କରିଥିଲେ । ଏହି ମତ ଯେ ଯୁକ୍ତିଯୁକ୍ତ ଏବଂ ଭାରତର ପୂର୍ବ ପୂର୍ବ ସକଳ ଋଷିଗଣଙ୍କ ଦ୍ୱାରା ଅନୁମୋଦିତ, ଏହା ଆଉ କହିବାକୁ ହେବ ନାହିଁ । ତେବେ ସାଧାରଣ ମନୁଷ୍ୟ ସେହି ଉଚ୍ଚତମ ଅଦ୍ୱୈତ-ଭାବଭୂମିରେ ବହୁକାଳ ଆରୋହଣ ନ କରି ସେହିକଥା ସମ୍ପୂର୍ଣ୍ଣ ଭୁଲିଯାଇଛି ଏବଂ ଇନ୍ଦ୍ରିୟାଦି-ସହାୟରେ କେବଳ ଜ୍ଞାନଲାଭ କରାଯାଏ, ଏପରି କଥାରେ ଦୃଢ଼ ବିଶ୍ୱାସ ସ୍ଥାପନ କରି ସଂସାରରେ ଏକ ପ୍ରକାର ଲଙ୍ଗର ପକାଇ ନିଶ୍ଚିନ୍ତରେ ବସି ରହିଛି । ନିଜ ଜୀବନରେ ତାହାର ବିପରୀତ କରି ଦେଖାଇ ତାଙ୍କର ଏହି ଭ୍ରମ ଦୂର କରିବା ପାଇଁ

---

୧. Ralph Waldo Emerson—"Consciousness ever moves along a graded plane."

ହିଁ ଠାକୁରଙ୍କ ସଦୃଶ ଅବତାରପ୍ରଥିତ ଜଗତ୍‌ଗୁରୁ ଆଧିକାରିକ ପୁରୁଷମାନଙ୍କର ଯୁଗେ ଯୁଗେ ଆବିର୍ଭାବ ହୁଏ—ଏକଥା ବେଦପ୍ରମୁଖ ଶାସ୍ତ୍ର ଆମମାନଙ୍କୁ ଶିକ୍ଷା ଦେଇଛନ୍ତି ।

### ଠାକୁରଙ୍କର ଦୁଇ ପ୍ରକାର ଦୃଷ୍ଟିର ଦୃଷ୍ଟାନ୍ତ :

ସେ ଯାହାହେଉ, ଏବେ ବୁଝାଯାଉଛି ଯେ, ଠାକୁର ସଂସାରର ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ଆମମାନଙ୍କ ପରି କେବଳ ଗୋଟିଏ ଭାବରେ ଦେଖୁ ନ ଥିଲେ । ଉଚ୍ଚରୁ ଉଚ୍ଚତର ଭାବଭୂମିଗୁଡ଼ିକରେ ଆରୋହଣ କରି ଏସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ଯେପରି ଦେଖାଯାଏ, ତାହା ମଧ୍ୟ ସର୍ବଦା ଦେଖିବାକୁ ପାଉଥିଲେ । ସେଥିପାଇଁ ତାଙ୍କର ସଂସାରରେ କୌଣସି ବିଷୟରେ ଆମମାନଙ୍କ ପରି ଏକଦେଶୀ ମତ ଓ ଭାବାବଲମ୍ବୀ ହେବା ଅସମ୍ଭବ ହୋଇଉଠିଥିଲା; ଏବଂ ସେଥିପାଇଁ ହିଁ ସେ ଆମମାନଙ୍କର କଥା ଓ ଭାବ ବୁଝିପାରିଲେ ମଧ୍ୟ ଆମେ ତାଙ୍କର କଥା ଓ ଭାବ ବୁଝିପାରୁ ନ ଥିଲୁ । ଆମେ ମଣିଷକୁ ମଣିଷ, ଗୋରୁକୁ ଗୋରୁ, ପାହାଡ଼କୁ ପାହାଡ଼ ବୋଲି ହିଁ କେବଳ ଜାଣୁ । ସେ ଦେଖନ୍ତି ମଣିଷ, ଗୋରୁ ଓ ପାହାଡ଼ଟା—ମଣିଷ, ଗୋରୁ ଓ ପାହାଡ଼ ଅବଶ୍ୟ; ଅଧିକନ୍ତୁ ପୁଣି ଦେଖିଥାଆନ୍ତି ସେଇ ମଣିଷ, ଗୋରୁ ଓ ପାହାଡ଼ ଭିତରୁ ସେଇ ଜଗତକାରଣ ଅଖଣ୍ଡସଚ୍ଚିଦାନନ୍ଦ ଉଙ୍କି ମାରୁଛନ୍ତି ! ମନୁଷ୍ୟ, ଗୋରୁ ଓ ପାହାଡ଼ରୂପକ ଆବରଣରେ ଆବୃତ ହେବାରୁ କେଉଁଠାରେ ତାଙ୍କର ଅଙ୍ଗ (ପ୍ରକାଶ) ଅଧିକ ଦେଖାଯାଉଛି ଏବଂ କେଉଁଠାରେ ବା କମ୍ ଦେଖାଯାଉଛି ଏତିକି ମାତ୍ର ପ୍ରଭେଦ । ସେଥିପାଇଁ ଠାକୁରଙ୍କୁ କହିବା ଶୁଣିଛି—

### ଏସମ୍ବନ୍ଧରେ ଠାକୁରଙ୍କର ନିଜ କଥା ଓ ଦର୍ଶନ—''ଭିନ୍ନ ଭିନ୍ନ ଖୋଳପାଗୁଡ଼ିକ ଭିତରୁ ମା' ଉଙ୍କି ମାରୁଛନ୍ତି ! ଦୁଷ୍ଟା 'ରମଣୀ' ମଧ୍ୟ ମା' ହିଁ ହୋଇଛନ୍ତି ।''

''ଠାକୁର କହୁଥିଲେ ଦେଖିଲି ଯେ, ଯେପରି ଗଛପତ୍ର, ମଣିଷ, ଗୋରୁ, ଘାସ, ଜଳ ସମସ୍ତ ଭିନ୍ନ ଭିନ୍ନ ପ୍ରକାରର ଖୋଳ ! ତକିଆର ଖୋଳ ଯେପରି ହୁଏ, ଦେଖି ନାହଁ ?—କେଉଁଟା ଶାଲୁକନାର, କେଉଁଟା ଛିଟ କପଡ଼ାର, କେଉଁଟା ଅନ୍ୟ କପଡ଼ାର, କେଉଁଟା ଚାରିକୋଣିଆ, କେଉଁଟା ଗୋଲ,—ସେହିପରି । ଆଉ ତକିଆର ସେହିସବୁ ପ୍ରକାର ଖୋଳ ଭିତରେ ଗୋଟିଏ ଜିନିଷ ତୁଳା ଭରି ରହିଥାଏ—ସେହିପରି ସେହି ମଣିଷ, ଗୋରୁ, ଘାସ, ଜଳ, ପାହାଡ଼, ପର୍ବତ ସବୁ ଖୋଳଗୁଡ଼ିକ ଭିତରେ ସେଇ ଏକ ଅଖଣ୍ଡ ସଚ୍ଚିଦାନନ୍ଦ ରହିଛନ୍ତି । ଠିକ୍ ଠିକ୍ ଦେଖିପାରେ ରେ, ମା' ଯେପରି ନାନା ପ୍ରକାରର ଚାଦର ଗୁଡ଼େଇ ହୋଇ ନାନା ପ୍ରକାର ସଜେଇ ହୋଇ ଭିତରୁ ଉଙ୍କି ମାରୁଛନ୍ତି ! ଗୋଟିଏ ଅବସ୍ଥା ହୋଇଥିଲା, ଯେତେବେଳେ ସଦା ସର୍ବଦା ସେହି ପ୍ରକାର ଦେଖୁଥିଲି । ଏହିପରି ଅବସ୍ଥା ଦେଖି

ବୁଝି ନ ପାରି ସମସ୍ତେ ମୋତେ ବୁଝାଇ ଶାନ୍ତ କରିବାକୁ ଆସିଲେ । ରାମଲାଲର ମା କେତେ କ'ଣ ସବୁ କହି କାନ୍ଦିବାକୁ ଲାଗିଲା; ସେମାନଙ୍କୁ ଅନାଇ ଦେଖୁଛି ଯେ, (କାଳୀମନ୍ଦିର ଦେଖାଇ) ସେହି ମା ହିଁ ନାନା ପ୍ରକାରରେ ସଜେଇ ହୋଇ ଏପରି କରୁଛି ! ତାର ଢଙ୍ଗ ଦେଖି ହସି ହସି ଗଡ଼ିଗଲି ଆଉ କହିବାକୁ ଲାଗିଲି, 'ବେଶ୍ ସଜେଇ ହୋଇଛୁ !' ଦିନେ କାଳୀଘରେ ଆସନରେ ବସି ମା'କୁ ଚିନ୍ତା କରୁଛି; କୌଣସି ପ୍ରକାରରେ ମା'ଙ୍କ ମୂର୍ତ୍ତି ମନରେ ଆଣିପାରିଲି ନାହିଁ । ତା'ପରେ ଦେଖିଲି ଯେ, ରମଣୀ ବୋଲି ଏକ ବେଶ୍ୟା ଘାଟରେ ସ୍ନାନ କରିବାକୁ ଆସୁଥିଲା, ତା'ପରି ହୋଇ ପୂଜାଘଟର ପାଖ ଦେଇ ଉଙ୍କି ମାରୁଛି ! ଏହା ଦେଖି ହସିଲି ଓ କହିଲି, 'ଓମା, ଆଜି ତୋର ରମଣୀ ହେବାକୁ ଇଚ୍ଛା ହୋଇଛି—ତାହା ବେଶ୍, ଏହିରୂପରେ ହିଁ ଆଜି ପୂଜା ନେ !' ଏହି ପ୍ରକାରରେ ବୁଝାଇ ଦେଲେ—'ବେଶ୍ୟା ମଧ୍ୟ ମୁଁ —ମୋ ଛଡ଼ା ଆଉ କିଛି ନାହିଁ ! ଆଉ ଦିନେ ଗାଡ଼ି କରି ମାଛ ବଜାର ରାସ୍ତା ଦେଇ ଯାଉ ଯାଉ ଦେଖିଲି—ସଜ ବାଜ ହୋଇ, ଖୋସା ବାନ୍ଧି, ମଥାରେ ଟିପା ଲଗାଇ ବାରଣ୍ଡାରେ ଠିଆ ହୋଇ ହୁକ୍କାଧରି ତମାଖୁ ଖାଉଛି, ଏବଂ ମୋହିନୀ ହୋଇ ଲୋକଙ୍କ ମନ ଭୁଲାଉଛି ! ଏହା ଦେଖି ଆଶ୍ଚର୍ଯ୍ୟ ହୋଇ କହିଲି, 'ମା ! ତୁ ଏଠାରେ ଏପରି ଭାବରେ ରହିଛୁ ?'—ଏହା କହି ପ୍ରଣାମ କଲି !'' ଉଚ୍ଚ ଭାବଭୂମିରେ ଉଠି ସେହିପ୍ରକାର ଭାବରେ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ଦେଖିବାକୁ ଆମେ ଭୁଲି ଯାଇଛୁ । ଅତଏବ ଠାକୁରଙ୍କର ଏହି ସମସ୍ତ ଉପଲବ୍ଧିର କଥା ବୁଝିବୁ କିପରି ?

### ଠାକୁରଙ୍କର ଇନ୍ଦ୍ରିୟ, ମନ ଓ ବୁଦ୍ଧିର ସାଧାରଣ ଲୋକଙ୍କ ଅପେକ୍ଷା ତୀକ୍ଷ୍ଣତା । ତାହାର କାରଣ ଭୋଗ-ସୁଖରେ ଅନାସକ୍ତି । ଆସକ୍ତ ଓ ଅନାସକ୍ତ ମନର କାର୍ଯ୍ୟର ତୁଳନା :

ପୁଣି ଦେହାଦି-ଭାବ ନେଇ ଠାକୁର ଯେତେବେଳେ ଆମପରି ସାଧାରଣ ଭାବଭୂମିରେ ରହୁଥିଲେ, ସେତେବେଳେ ମଧ୍ୟ ସ୍ୱାର୍ଥ-ଭୋଗସୁଖ-ସ୍ପୃହାର ବିନ୍ଦୁମାତ୍ର ମଧ୍ୟ ମନରେ ନ ଥିବାରୁ ଠାକୁରଙ୍କ ବୁଦ୍ଧି ଓ ଦୃଷ୍ଟି ଆମମାନଙ୍କ ଅପେକ୍ଷା ଅନେକ ବିଷୟ ଅଧିକ ଧରିବାକୁ ଏବଂ ସେସବୁର ଅନ୍ତର୍ନିହିତ ଅର୍ଥ ବୁଝିବାକୁ ସକ୍ଷମ ହେଉଥିଲା ! ଯେଉଁ ଭୋଗସୁଖ ଲାଭ କରିବାର ପ୍ରବଳ କାମନା ଆମ ସମସ୍ତଙ୍କ ଭିତରେ ରହିଛି, ଯେପରି ଖାଇବାକୁ, ଶୋଇବାକୁ, ଦେଖିବାକୁ, ଶୁଣିବାକୁ, ବୁଲିବାକୁ, ଅନ୍ୟମାନଙ୍କ ସହିତ ଆଳାପ କରିବାକୁ—ସବୁ ସମୟରେ ତାହାର ଅନୁକୂଳ ବିଷୟସମୂହ ଆମମାନଙ୍କ ଚକ୍ଷୁରେ ଉଜ୍ଜ୍ୱଳ ବର୍ଣ୍ଣରେ ପ୍ରତିଭାସିତ ହୁଏ ଏବଂ ସେଥିପାଇଁ ଆମମାନଙ୍କର ମନ ତା'ର ପ୍ରତିକୂଳ ବସ୍ତୁ ଓ ବ୍ୟକ୍ତିଙ୍କୁ ଉପେକ୍ଷା କରି ପୂର୍ବୋକ୍ତ ବିଷୟସକଳ ଆଡ଼କୁ ହିଁ ଅଧିକତର ଆକୃଷ୍ଟ ହୋଇଥାଏ । ସେହି ପ୍ରକାରରେ ଉପେକ୍ଷିତ ପ୍ରତିକୂଳ ବ୍ୟକ୍ତି ଓ ବିଷୟସକଳର ସ୍ୱଭାବ ଜାଣିବାକୁ ଆଉ

ଆମମାନଙ୍କର ଅବସର ମିଳି ନ ଥାଏ । ତେଣୁ ଏପରି କେତେଗୁଡ଼ିଏ ବସ୍ତୁ ଓ ବ୍ୟକ୍ତିଙ୍କୁ ନିଜର କରିନେଇ ବା ନିଜସ୍ୱ କରିନେବାର ଚେଷ୍ଟାରେ ଆମେ ଜୀବନଟା କଟାଇ ଦେଇଥାଉ । ଏଥିପାଇଁ ଇତରସାଧାରଣ ମାନବ ଭିତରେ ଜ୍ଞାନଲାଭ କରିବାର କ୍ଷମତାର ଏତେ ତାରତମ୍ୟ ମଧ ଦେଖାଯାଏ । ଆମମାନଙ୍କର ସମସ୍ତଙ୍କର ଚକ୍ଷୁ-କର୍ଣ୍ଣ ଆଦି ସମସ୍ତ ଇନ୍ଦ୍ରିୟ ଥିଲେ ମଧ ଏସମସ୍ତର ସମଭାବରେ ସବୁ ବିଷୟରେ ଚାଳନା କରି ଜ୍ଞାନ ଉପାର୍ଜନ କରିବାକୁ ଆମେ ସମସ୍ତେ ସକ୍ଷମ ହୋଇପାରୁଛୁ କେଉଁଠି ? ଏଥିପାଇଁ ହିଁ ଆମ ଭିତରେ ଯାହାଙ୍କର ସ୍ୱାର୍ଥପରତା ଏବଂ ଭୋଗସ୍ପୃହା ଅଳ୍ପ, ସେମାନେ ଅନ୍ୟମାନଙ୍କ ଅପେକ୍ଷା ସହଜରେ ସବୁ ବିଷୟରେ ଜ୍ଞାନଲାଭ କରିବାକୁ ସକ୍ଷମ ହୁଅନ୍ତି ।

**ଠାକୁରଙ୍କ ମନର ତୀକ୍ଷ୍ଣତାର ଦୃଷ୍ଟାନ୍ତ :**

ସାଧାରଣ ଭାବଭୂମିରେ ଅବସ୍ଥାନ କାଳରେ ମଧ ଠାକୁରଙ୍କର ଦୃଷ୍ଟି ଯେ କିପରି ତୀକ୍ଷ୍ଣ ଥିଲା, ତାହାର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କଲେ ମନ୍ଦ ହେବ ନାହିଁ । ଆଧ୍ୟାତ୍ମିକ ଜଟିଳ ତତ୍ତ୍ୱସକଳ ବୁଝାଇବାକୁ ଠାକୁର ସାଧାରଣତଃ ଯେଉଁ ସମସ୍ତ ଦୃଷ୍ଟାନ୍ତ ଓ ରୂପକାଦି ବ୍ୟବହାର କରୁଥିଲେ, ସେଥିରେ ଏହି ତୀକ୍ଷ୍ଣ ଦୃଷ୍ଟିମତ୍ତାର କେତେଦୂର ପରିଚୟ ଯେ ମିଳିଥାଏ, ତାହା କହିହେବ ନାହିଁ । ଏହାର ପ୍ରତ୍ୟେକଟି ସାହାଯ୍ୟରେ ଠାକୁର ଯେପରି ଗୋଟିଏ ଗୋଟିଏ ଜ୍ୱଳନ୍ତ ଚିତ୍ର ଦେଖାଇ ଉକ୍ତ ଜଟିଳ ବିଷୟଗୁଡ଼ିକ ଯେ ସମ୍ଭବପର ଏକଥା ଶ୍ରୋତାଙ୍କ ହୃଦୟରେ ଏକାଥରକେ ପ୍ରବିଷ୍ଟ କରାଇ ଦେଉଥିଲେ !

**ସାଂଖ୍ୟ-ଦର୍ଶନ ସହଜରେ ବୁଝାଇବା—**
**''ବିଭା ଘରର ଗୃହକର୍ତ୍ତା-ଗୃହିଣୀ'' :**

ଧର, ଜଟିଳ ସାଂଖ୍ୟଦର୍ଶନ କଥା ଆଲୋଚନା ହେଉଅଛି । ଠାକୁର ଆମକୁ ପୁରୁଷ ଓ ପ୍ରକୃତିଠାରୁ ଜଗତର ଉତ୍ପତ୍ତି କଥା କହୁ କହୁ କହିଲେ, ''ସେଥିରେ ଅଛି—ପୁରୁଷ ଅକର୍ତ୍ତା, କିଛି କରନ୍ତି ନାହିଁ । ପ୍ରକୃତି ହିଁ ସମସ୍ତ କାର୍ଯ୍ୟ କରନ୍ତି; ପୁରୁଷ ପ୍ରକୃତିର ଏହି ସମସ୍ତ କାର୍ଯ୍ୟ ସାକ୍ଷୀସ୍ୱରୂପ ହୋଇ ଦେଖନ୍ତି, ପ୍ରକୃତି ମଧ ପୁରୁଷକୁ ଛାଡ଼ି ନିଜେ କୌଣସି କାର୍ଯ୍ୟ କରିପାରନ୍ତି ନାହିଁ ।'' ଶ୍ରୋତାମାନେ ସମସ୍ତେ ହିଁ ପଣ୍ଡିତ—ଅଫିସର କିରାଣିବାବୁ, ବା ଅନ୍ୟ ଚାକିରିଆ, ନ ହେଲେ ବଡ଼ଜୋର ଡାକ୍ତର, ଓକିଲ ବା ଡେପୁଟି, ଆଉ ସ୍କୁଲ-କଲେଜର ଟୋକା; ଫଳରେ ଠାକୁରଙ୍କ କଥା ଶୁଣି ସମସ୍ତେ ମୁହଁ ଚାହାଁଚାହିଁ କଲେ । ଏପରି ଭାବଦେଖି ଠାକୁର କହିଲେ, ''ଏହି ଯେ, ଦେଖି ନାହଁ, ବିଭାଘରରେ ? କର୍ତ୍ତା ହୁକୁମ ଦେଇ ନିଜେ ବସି ତମାଖୁ ଟାଣୁଛି । ଗୃହିଣୀ କପଡ଼ାରେ ହଳଦୀ ମାରି ଥରେ ଏପାଖେ ପୁଣି ଥରେ ସେପାଖରେ ଘରସାରା ବୁଲିବୁଲି ଏକାମଟା ହେଲା କି ନାହିଁ, ସେକାମଟା

ହେଲାକି ନାହିଁ ଦେଖୁଛନ୍ତି, ସବୁ ଶୁଣୁଛନ୍ତି, ଘରକୁ ଯେତେ ମହିଳାମାନେ ଆସୁଛନ୍ତି ସେମାନଙ୍କୁ ଆଦର ଅଭ୍ୟର୍ଥନା କରୁଛନ୍ତି, ଆଉ ମଝିରେ ମଝିରେ କର୍ତ୍ତା ନିକଟକୁ ଆସି ହାତ ମୁହଁ ହଲାଇ ଶୁଣାଇ ଯାଉଛନ୍ତି—'ଏହା ଏମିତି ହେଲା, ତାହା ସେମିତି ହେଲା, ଏହା କରିବାକୁ ହେବ, ତାହା କରା ହେବ ନାହିଁ' ଇତ୍ୟାଦି । କର୍ତ୍ତା ତମାଖୁ ଟାଣୁ ଟାଣୁ ସବୁ ଶୁଣୁଛନ୍ତି ଆଉ 'ହୁଁ' 'ହୁଁ' କରି ମୁଣ୍ଡ ଟୁଙ୍ଗାରି ସବୁ କଥା ସମର୍ଥନ କରୁଛନ୍ତି ! ଏହା ଠିକ୍ ସେହିପରି ଆଉ କ'ଣ ।'' ଠାକୁରଙ୍କ କଥା ଶୁଣି ସମସ୍ତେ ହସିବାକୁ ଲାଗିଲେ ଏବଂ ସାଂଖ୍ୟ-ଦର୍ଶନ କଥା ମଧ୍ୟ ବୁଝିଗଲେ !

### ବ୍ରହ୍ମ ଓ ମାୟା ଏକ ବୋଲି ବୁଝାଇବା— ''ସାପ ଚାଲୁଛି ଓ ସାପ ସ୍ଥିର'' :

ପରେ ପୁଣି ହୁଏତ କଥା ଉଠିଲା—''ବେଦାନ୍ତ କହେ, ବ୍ରହ୍ମ ଓ ବ୍ରହ୍ମଶକ୍ତି, ପୁରୁଷ ଓ ପ୍ରକୃତି ଅଭେଦ ଅର୍ଥାତ୍ ପୁରୁଷ ଓ ପ୍ରକୃତି ଦୁଇଟି ପୃଥକ ପଦାର୍ଥ ନୁହେଁ; ଗୋଟିଏ ପଦାର୍ଥ, କେତେବେଳେ ପୁରୁଷଭାବରେ ଏବଂ କେତେବେଳେ ପ୍ରକୃତି ଭାବରେ ଥାଏ ।'' ଆମେ ବୁଝି ନାହୁଁ ଦେଖି ଠାକୁର କହିଲେ, ''ତାହା କି ପ୍ରକାର ଜାଣିଛ ? ଯେପରି ସାପ କେତେବେଳେ ଚାଲୁଛି, ପୁଣି କେତେବେଳେ ସ୍ଥିର ହୋଇ ପଡ଼ି ରହିଛି । ଯେତେବେଳେ ସ୍ଥିର ହୋଇ ରହିଛି ସେତେବେଳେ ହେଲା ପୁରୁଷ ଭାବ—ପ୍ରକୃତି ସେତେବେଳେ ପୁରୁଷର ସଙ୍ଗେ ମିଶି ଏକ ହୋଇଅଛି । ପୁଣି ଯେତେବେଳେ ସାପ ଚାଲୁଛି, ସେତେବେଳେ ଯେପରି ପ୍ରକୃତି ପୁରୁଷଠାରୁ ଅଲଗା ହୋଇ କାର୍ଯ୍ୟ କରୁଛି !'' ଏହି ଦୃଷ୍ଟାନ୍ତରୁ ସମସ୍ତେ ବୁଝି ଭାବିବାକୁ ଲାଗିଲେ, ଏତେ ସହଜ କଥାଟା ଆମେ ବୁଝିପାରି ନ ଥିଲୁ ।

### ଈଶ୍ୱର ମାୟାବଦ୍ଧ ନୁହନ୍ତି— 'ସର୍ପମୁଖରେ ବିଷ ଥାଏ କିନ୍ତୁ ସର୍ପ ମରେ ନାହିଁ' :

ପୁଣି ହୁଏତ ପରେ କଥା ପଡ଼ିଲା, ମାୟା ଈଶ୍ୱରଙ୍କ ହିଁ ଶକ୍ତି, ଈଶ୍ୱରଙ୍କଠାରେ ହିଁ ରହିଛନ୍ତି, ତେବେ କ'ଣ ଈଶ୍ୱର ମଧ୍ୟ ଆମମାନଙ୍କ ପରି ମାୟାବଦ୍ଧ ? ଠାକୁର ଶୁଣି କହିଲେ, ''ନା ରେ, ଈଶ୍ୱରଙ୍କର ମାୟା ହେଲେ ମଧ୍ୟ ଏବଂ ମାୟା ଈଶ୍ୱରଙ୍କଠାରେ ସର୍ବଦା ରହିଲେ ମଧ୍ୟ ଈଶ୍ୱର କଦାପି ମାୟାବଦ୍ଧ ହୁଅନ୍ତି ନାହିଁ । ହେଇ ଦେଖୁନ—ସାପ ଯାହାକୁ କାମୁଡ଼େ ସେ ମରେ; ସାପ ମୁହଁରେ ସର୍ବଦା ବିଷ ରହିଛି, ସାପ ସେହି ମୁହଁରେ ସର୍ବଦା ଖାଉଛି, ଗିଳୁଛି, କିନ୍ତୁ ସାପ ନିଜେ ତ' ମରୁ ନାହିଁ—ସେହିପରି !'' ସମସ୍ତେ ବୁଝିଲେ ତାହା ସମ୍ଭବପର ।

## ପ୍ରକୃତିଗତ ଅସାଧାରଣ ପରିବର୍ତ୍ତନସମୂହ ଦେଖିବାକୁ ପାଇ ଠାକୁରଙ୍କର ଧାରଣା—ଈଶ୍ୱର ଆଇନ୍ ବା ନିୟମ ବଦଳାଇ ଥାଆନ୍ତି :

ଏହି ସମସ୍ତ ଦୃଷ୍ଟାନ୍ତରୁ ବେଶ୍ ବୁଝାଯାଏ, ସାଧାରଣ ଭାବଭୂମିରେ ଯେତେବେଳେ ଠାକୁର ରହୁଥିଲେ ସେତେବେଳେ ତାଙ୍କର ତୀକ୍ଷ୍ଣଦୃଷ୍ଟି ସମ୍ମୁଖରେ କୌଣସି ପଦାର୍ଥର କୌଣସି ପ୍ରକାର ଭାବ ଲୁକ୍କାୟିତ ରହିପାରୁ ନ ଥିଲା । ମାନବ ପ୍ରକୃତିର କଥା ହିଁ ନାହିଁ, ବାହ୍ୟ-ପ୍ରକୃତିର ଅନ୍ତର୍ଗତ ଯେତେ କିଛି ପରିବର୍ତ୍ତନ ମଧ୍ୟ ତାଙ୍କ ଦୃଷ୍ଟି ସମ୍ମୁଖରେ ନିଜର ରୂପ ଅପ୍ରକାଶିତ ରଖିପାରୁ ନ ଥିଲା । ଅବଶ୍ୟ ଯନ୍ତ୍ରାଦି ସାହାଯ୍ୟରେ ବାହ୍ୟ-ପ୍ରକୃତିର ଯେଉଁ ସମସ୍ତ ପରିବର୍ତ୍ତନ ଧରି ବୁଝି ହୁଏ, ଆମେ ସେସବୁର କଥା ଏଠାରେ କହୁ ନାହୁଁ । ଆଉ ଗୋଟିଏ ଆଶ୍ଚର୍ଯ୍ୟର ବିଷୟ, ସାଧାରଣ ଭାବଭୂମିରେ ଥିବାବେଳେ ବାହ୍ୟ-ପ୍ରକୃତିର ଅନ୍ତର୍ଗତ ପଦାର୍ଥମାନଙ୍କର ଯେଉଁ ସମସ୍ତ ଅସାଧାରଣ ପରିବର୍ତ୍ତନ ବା ବିକାଶ ଲୋକଲୋଚନରେ ସଚରାଚର ପତିତ ହୁଏ ନାହିଁ, ସେହିଗୁଡ଼ିକ ଯେପରି ପ୍ରଥମେ ଠାକୁରଙ୍କର ନୟନର ଗୋଚରୀଭୂତ ହେଉଥିଲା ! ଈଶ୍ୱରଙ୍କ ଇଚ୍ଛାରେ ହିଁ ସୃଷ୍ଟି ଅନ୍ତର୍ଗତ ସମସ୍ତ ପଦାର୍ଥର ସମସ୍ତପ୍ରକାର ବିକାଶ ଆସି ଉପସ୍ଥିତ ହୁଏ, ଅଥବା ସେ ହିଁ ସାକ୍ଷାତ୍ ସମ୍ବନ୍ଧରେ ଜଗତ ଅନ୍ତର୍ଗତ ବସ୍ତୁ ଓ ବ୍ୟକ୍ତିସକଳଙ୍କର ଭାଗ୍ୟଚକ୍ରର ନିୟାମକ—ଏହି ଭାବଟି ଠାକୁରଙ୍କର ପ୍ରାଣେ ପ୍ରାଣେ ପ୍ରବିଷ୍ଟ କରାଇଦେବା ନିମିତ୍ତ ଯେପରି ଜଗଦମ୍ବା ଠାକୁରଙ୍କ ସମ୍ମୁଖରେ ସାଧାରଣ ନିୟମର ବହିର୍ଭୂତ ଏହି ଅସାଧାରଣ ପ୍ରାକୃତିକ ବିକାଶଗୁଡ଼ିକ (Exceptions) ଯେତେବେଳେ ସେତେବେଳେ ଆଣି ଉପସ୍ଥାପନା କରୁଥିଲେ ! "ଯାହାର ଆଇନ୍ ବା ଯେ ଆଇନ (Law) କରିଛନ୍ତି, ସେ ଇଚ୍ଛା କଲେ ଉକ୍ତ ଆଇନ୍‌କୁ ଓଲଟାଇ ପୁଣି ଅନ୍ୟ ପ୍ରକାର ଆଇନ କରିପାରନ୍ତି"— ଠାକୁରଙ୍କର ଏହି କଥାଗୁଡ଼ିକର ଅର୍ଥ ଆମେ ତାଙ୍କର ବାଲ୍ୟକାଳରୁ ସେହି ପ୍ରକାର ଦର୍ଶନରୁ ହିଁ ସ୍ପଷ୍ଟ ପାଇଥାଉ । ଦୃଷ୍ଟାନ୍ତସ୍ୱରୂପ ଏବିଷୟରେ କେତୋଟି ଘଟଣା ଏଠାରେ ଉଲ୍ଲେଖ କଲେ ମନ୍ଦ ହେବ ନାହିଁ ।

## ବଜ୍ରନିବାରକ ଦଣ୍ଡ କଥାରେ ଠାକୁରଙ୍କର ନିଜ ଦର୍ଶନ କହିବା—ତିନିତାଲା ଘର ନିକଟରେ କୁଡ଼ିଆଘର, ତା ଉପରେ ବଜ୍ରପାତ :

ଆମେ ସେତେବେଳେ କଲେଜରେ ତଡ଼ିତ୍‌ଶକ୍ତି ସମ୍ବନ୍ଧରେ ଜଡ଼ବିଜ୍ଞାନର ବର୍ତ୍ତମାନ ଯୁଗର ଆବିଷ୍କୃତ ବିଷୟଗୁଡ଼ିକର କିଛି କିଛି ପଢ଼ି ମୁଗ୍ଧ ହେଉଥିଲୁ । ବାଲ୍ୟଚପଳତାବଶତଃ ଦିନେ ଠାକୁରଙ୍କ ନିକଟରେ ଏହି ପ୍ରସଙ୍ଗ ଉଠାଇ ପରସ୍ପର ନାନାପ୍ରକାର କଥା କହୁଥାଉ । (ତଡ଼ିତ୍) Electricity କଥାଟି ବାରମ୍ବାର ଉଚ୍ଚାରଣ ଲକ୍ଷ୍ୟ କରି ଠାକୁର ବାଳକ ପରି ଉତ୍ସୁକ ହୋଇ ଆମକୁ ପଚାରିଲେ,

''ଆରେ, ତମେ କ'ଣ ସେ ସବୁ କହୁଛ ? ଇଲେକ୍‌ଟିକ୍‌ଟିକ୍ ମାନେ କ'ଣ ?'' ଇଂରାଜୀ ଶବ୍ଦଟିର ଏପରି ପିଲାଙ୍କ ପରି ଉଚ୍ଚାରଣ ଠାକୁରଙ୍କ ମୁହଁରୁ ଶୁଣି ଆମେ ହସିବାକୁ ଲାଗିଲୁ । ପରେ ତଡିତ୍ ଶକ୍ତି ସମ୍ବନ୍ଧୀୟ ସାଧାରଣ ନିୟମସବୁ ତାଙ୍କୁ କହି ବଜ୍ରନିବାରକ ଦଣ୍ଡର (Lightning conductor) ଉପକାରିତା, ସବୁଠାରୁ ଉଚ୍ଚ ପଦାର୍ଥ ଉପରେ ହିଁ ବଜ୍ରପାତ ହୁଏ, ଏଥିପାଇଁ ସେହି ଦଣ୍ଡର ଉଚ୍ଚତା ଗୃହ ଉଚ୍ଚତା ଅପେକ୍ଷା କିଛି ଅଧିକ ହେବା ଉଚିତ୍—ଇତ୍ୟାଦି ନାନା କଥା ତାହାଙ୍କୁ ଶୁଣାଇବାକୁ ଲାଗିଲୁ । ଠାକୁର ଆମର ସମସ୍ତ କଥା ମନ ଦେଇ ଶୁଣି କହିଲେ, ''କିନ୍ତୁ ମୁଁ ଯେ ଦେଖିଛି, ତିନିତାଲା ଘର ପାର୍ଶ୍ୱରେ ଛୋଟ ଚାଳଘର—ଶଳା ଘଡ଼ଘଡ଼ି ତିନିମହଲାରେ ନ ପଡ଼ି ସେଥିରେ ପଶିଲା ! ତାହା କାହିଁକି ହେଲା କହ ! ଏସବୁ କ'ଣ ଠିକ୍‌ଠାକ୍ କୁହା ଯାଇପାରେ ! ତାଙ୍କ (ଈଶ୍ୱରଙ୍କର ବା ଜଗଦମ୍ବାଙ୍କର) ଇଚ୍ଛାରେ ହିଁ ଆଇନ୍, ପୁଣି ତାଙ୍କ ଇଚ୍ଛାରେ ଓଲଟ ପାଲଟ ହୋଇଯାଏ !'' ଆମେମାନେ ସେଥର ମଥୁରବାବୁଙ୍କ ପରି ଠାକୁରଙ୍କୁ ପ୍ରାକୃତିକ ନିୟମ (Natural Laws) ବୁଝାଇବାକୁ ଯାଇ ଠାକୁରଙ୍କର ସେହି ପ୍ରଶ୍ନର ଉତ୍ତର ଦାନରେ ଅସମର୍ଥ ହୋଇ କ'ଣ କହିବୁ କିଛି ବୁଝି ପାରିଲୁ ନାହିଁ । ବଜ୍ରପାତ ତିନିତାଲା ଘର ଆଡ଼କୁ ଆକୃଷ୍ଟ ହୋଇଥିଲା, କେଉଁ ଅଜଣା କାରଣରେ ସହସା ଗତି ପରିବର୍ତ୍ତିତ ହୋଇ ଚାଳଘର ଉପରେ ଯାଇପଡ଼ିଲା, ଅଥବା ଏପରି ନିୟମର ବ୍ୟତିକ୍ରମ ଗୋଟିଏ-ଅଧେ ହେବା ଦେଖାଯାଏ, ଅନ୍ୟଥା ସହସ୍ର ସ୍ଥାନରେ ଆମେ ଯେପରି କହିଛୁ ସେପରି ଭାବରେ ହିଁ ଉଚ୍ଚପଦାର୍ଥରେ ବଜ୍ରପାତ ହୋଇଥାଏ—ଇତ୍ୟାଦି ନାନାକଥା ଆମେ ଠାକୁରଙ୍କୁ କହିଲେ ମଧ୍ୟ ଠାକୁର ପ୍ରାକୃତିକ ଘଟଣାବଳୀ ଯେ ଅଲଙ୍ଘନୀୟ ନିୟମବଶରେ ଘଟିଥାଏ ଏକଥା କୌଣସି ପ୍ରକାରେ ଗ୍ରହଣ କଲେ ନାହିଁ । କହିଲେ, ''ହଜାରେ ଜାଗାରେ ତମେ ଯେପରି କହିଲ ତା ହେଉପଛେ, ଦୁଇଚାରି ଜାଗାରେ ସେପରି ନ ହେବାରୁ ହିଁ ଏହି ଆଇନ୍ ଯେ ବଦଳି ଯାଏ ଏହା ବୁଝାଯାଉଛି !''

### ରକ୍ତ ମନ୍ଦାର ଗଛରେ ଶ୍ୱେତ ମନ୍ଦାର ଦର୍ଶନ :

ଉଦ୍ଭିଦ-ପ୍ରକୃତିର ଆଲୋଚକମାନେ (Botanist) ସର୍ବଦା ଶ୍ୱେତ ବା ରକ୍ତବର୍ଣ୍ଣର ପୁଷ୍ପ ଫୁଟୁଥିବା ଉଦ୍ଭିଦସମୂହରେ କେବେ କେବେ ବ୍ୟତିକ୍ରମ ମଧ୍ୟ ଦେଖାଯାଇଥାଏ ବୋଲି ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ! କିନ୍ତୁ ଏପରି ହେବା ଏତେ ଅସାଧାରଣ ଯେ, ସାଧାରଣ ମଣିଷ ଏହା କେତେବେଳେ ଦେଖି ନାହାନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଠାକୁରଙ୍କ ଜୀବନର ଘଟଣାକୁ ଦେଖ—ପ୍ରାକୃତିକ ନିୟମ ସବୁବେଳେ ଠିକ୍ ରହେନା, ଈଶ୍ୱରଙ୍କ ଇଚ୍ଛାରେ ଅନ୍ୟ ପ୍ରକାର ହୋଇଥାଏ—ଏହି ବିଷୟରେ ମଥୁରବାବୁଙ୍କ ସହିତ ଠାକୁରଙ୍କର ଯେତେବେଳେ ବାଦାନୁବାଦ ହୋଇଥିଲା ଠିକ୍ ସେହି ସମୟରେ ହିଁ ଏହିପରି ଏକ ଦୃଷ୍ଟାନ୍ତ ତାଙ୍କର

ଦୃଷ୍ଟିଗୋଚର ହେବା ଏବଂ ମଥୁରବାବୁଙ୍କୁ ତାହା ଦେଖାଇବା ଏହି କଥାକୁ ପ୍ରମାଣିତ କରେ ।

**ପ୍ରକୃତିଗତ ଅସାଧାରଣ ଦୃଷ୍ଟାନ୍ତଗୁଡ଼ିକରୁ ହିଁ ଠାକୁରଙ୍କର ଧାରଣା ଜଗତସଂସାର ଜଗଦମ୍ବାଙ୍କର ଲୀଳାବିଳାସ :**

ଏହିପରି ଜୀବନ୍ତ ପ୍ରସ୍ତର ଦେଖିବା, ମନୁଷ୍ୟ-ଶରୀରର ମେରୁଦଣ୍ଡର ଶେଷଭାଗର ଅସ୍ଥି(Coccyx) ପଶୁପୁଚ୍ଛ ସଦୃଶ ଅଳ୍ପ ଅଳ୍ପ ବଢ଼ିଯାଇ ପରେ ପୁଣି ତାହା କମିଯିବାକୁ ଦେଖାଯାଏ, ସ୍ତ୍ରୀ ଭାବର ପ୍ରାବଲ୍ୟରେ ପୁରୁଷ ଶରୀରରେ ସ୍ତ୍ରୀଶରୀର ପରି ଯଥା ସମୟରେ ସାମାନ୍ୟ ଭାବରେ ମାସିକ ଧର୍ମ ହେବା ଏବଂ ପରେ ସେହିଭାବର ପ୍ରବଳତା କମିଗଲେ ତାହା ରହିତ ହୋଇଯିବା ଦେଖିବା, ପ୍ରେତଯୋନି ଏବଂ ଦେବଯୋନିଗତ ପୁରୁଷମାନଙ୍କର ସନ୍ଦର୍ଶନ କରିବା, ପ୍ରଭୃତି ଠାକୁରଙ୍କ ଜୀବନରେ ଅନେକ ଘଟଣା ଶୁଣିଛୁ । ଜଗତ୍‌ପ୍ରସୂତି ପ୍ରକୃତିକୁ (Nature) ଆମେ ପାଶ୍ଚାତ୍ୟର ଅନୁକରଣରେ ଏକାନ୍ତଭାବରେ ବୁଦ୍ଧିଶକ୍ତିରହିତ ଜଡ଼ବୋଲି ଧାରଣା କରିଅଛୁ ବୋଲି ଏସମସ୍ତ ଅସାଧାରଣ ଘଟଣାବଳୀକୁ ପ୍ରକୃତିର ଅନ୍ତର୍ଗତ କାର୍ଯ୍ୟକାରଣ ସମ୍ବନ୍ଧବିଚ୍ୟୁତ ସହସା ଉତ୍ପନ୍ନ ହେଉଥିବା ଘଟଣାବଳୀ (Natural aberrations) ନାମ ଦେଇ ନିଶ୍ଚିନ୍ତ ହୋଇ ବସିଥାଉ ଏବଂ ମନେକରୁ ପ୍ରକୃତି ଯେଉଁ ସକଳ ନିୟମରେ ପରିଚାଳିତ, ତାହାର ସବୁକିଛି ବୁଝିପାରିଛୁ । ଠାକୁରଙ୍କର ଅନ୍ୟପ୍ରକାରର ଧାରଣା ଥିଲା । ସେ ଦେଖୁଥିଲେ, ସମଗ୍ର ବାହ୍ୟ ଏବଂ ଅନ୍ତଃପ୍ରକୃତି ଜୀବନ୍ତ ପ୍ରତ୍ୟକ୍ଷ ଜଗଦମ୍ବାଙ୍କର ଲୀଳାବିଳାସ ବ୍ୟତୀତ ଅନ୍ୟ କିଛି ନୁହେଁ । ତେଣୁ ଏସମସ୍ତ ଅସାଧାରଣ ଘଟଣାବଳୀକୁ ତାଙ୍କର ହିଁ ବିଶେଷ ଇଚ୍ଛାସମ୍ଭୂତ ବୋଲି ମନେ କରୁଥିଲେ । ଆଉ କିଛି ନ ହେଲେ ମଧ୍ୟ ଠାକୁରଙ୍କର ମନରେ ଯେ ସେହିପରି ଧାରଣାରେ ଆମମାନଙ୍କ ଅପେକ୍ଷା ଶାନ୍ତି ଓ ଆନନ୍ଦ ଅନେକ ପରିମାଣରେ ଅଧିକ ରହୁଥିଲା, ଏକଥା ଆଉ ବୁଝାଇବାକୁ ପଡ଼ିବ ନାହିଁ । ଠାକୁରଙ୍କ ଜୀବନରେ ଏପରି ଦୃଷ୍ଟାନ୍ତ କିଛି କିଛି ପୂର୍ବରୁ ଉଲ୍ଲେଖ କରିଅଛୁ ଏବଂ ପରେ ମଧ୍ୟ କରିବୁ । ଏବେ ଯାହା କରାହେଲା, ସେଥିରୁ ପାଠକ ଆମର ବକ୍ତବ୍ୟ ବିଷୟ ବୁଝିପାରିବେ । ଅତଏବ ଆମେ ପୂର୍ବାନୁସରଣ କରିବୁ ।

**ଠାକୁରଙ୍କର ଉଚ୍ଚ ଭାବଭୂମିରୁ ସ୍ଥାନ ବିଶେଷରେ ପ୍ରକାଶିତ ଭାବର ଘନତ୍ୱର ପରିମାଣ ବୁଝିବା :**

ପ୍ରତ୍ୟେକ ବସ୍ତୁ ଏବଂ ବ୍ୟକ୍ତିକୁ ଠାକୁର ପୂର୍ବୋକ୍ତ ପ୍ରକାରରେ ଦୁଇ ଭାବରେ ଦେଖି ସେସମ୍ବନ୍ଧରେ ଏକ ସ୍ଥିର ଧାରଣା କରୁଥିଲେ । ଆମମାନଙ୍କ ପରି କେବଳ ସାଧାରଣ ଭାବଭୂମିରୁ(Ordinary Plane of Consciousness) ଦେଖି ଯାହା ହେଉ ଏକ ମତାମତ ସ୍ଥିର କରୁ ନ ଥିଲେ । ଅତଏବ ତୀର୍ଥଭ୍ରମଣ ଏବଂ

ସାଧୁଦର୍ଶନ ମଧ୍ୟ ଯେ ଠାକୁରଙ୍କର ସେହିପ୍ରକାର ଦୁଇ ଭାବରେ ହେଉଥିଲା ଏହା କହିବାର ଆଉ ଆବଶ୍ୟକତା ନାହିଁ । ଉଚ୍ଚଭାବଭୂମି (Higher plane of consciousness or super-Consciousness) ରୁ ଦେଖି ହିଁ ଠାକୁରେ, କେଉଁ ତୀର୍ଥରେ କେତେ ପରିମାଣର ଉଚ୍ଚଭାବର ଜମାଟ ଅଛି, ଅଥବା ମାନବ ମନକୁ ଉଚ୍ଚତର ସୋପାନରେ ଆରୋହଣ କରାଇବାର ଶକ୍ତି କେଉଁ ତୀର୍ଥରେ କେତେ ପରିମାଣରେ ଅଛି, ସେବିଷୟରେ ଅନୁଭବ କରୁଥିଲେ । ଠାକୁରଙ୍କର ରୂପରସାଦି–ବିଷୟସମ୍ପର୍କଶୂନ୍ୟ ସର୍ବଦା ଦେବତୁଲ୍ୟ ପବିତ୍ର ମନ ସେହି ସୂକ୍ଷ୍ମ ବିଷୟ ସ୍ଥିର କରିବାର ଏକ ଅପୂର୍ବ ପରିଚାୟକ ଓ ପରିମାପକ ଯନ୍ତ୍ର (detector) ସ୍ୱରୂପ ଥିଲା । ତୀର୍ଥରେ ବା ଦେବସ୍ଥାନକୁ ଗମନ କଲେ ହିଁ ଏହା ଉଚ୍ଚଭାବ ଭୂମିକୁ ଉଠି ସେଇ ସମସ୍ତ ସ୍ଥାନର ଦିବ୍ୟ ପ୍ରକାଶ ଠାକୁରଙ୍କ ସମ୍ମୁଖରେ ପ୍ରକାଶିତ କରୁଥିଲା । ଉଚ୍ଚ ଭାବଭୂମିରୁ ହିଁ ଠାକୁର କାଶୀନଗରୀ ସ୍ୱର୍ଣ୍ଣମୟ ଦେଖିଥିଲେ, କାଶୀରେ ମୃତ୍ୟୁ ହେଲେ କିପରି ଜୀବ ସର୍ବବନ୍ଧନ ବିମୁକ୍ତ ହୁଏ ତାହା ବୁଝିପାରିଥିଲେ, ଶ୍ରୀବୃନ୍ଦାବନଧାମରେ ଦିବ୍ୟଭାବର ବିଶେଷ ପ୍ରକାଶ ଅନୁଭବ କରିଥିଲେ ଏବଂ ନବଦ୍ୱୀପରେ ଯେ ଏପର୍ଯ୍ୟନ୍ତ ଶ୍ରୀଗୌରାଙ୍ଗଙ୍କର ସୂକ୍ଷ୍ମରୂପରେ ଆବିର୍ଭାବ ରହିଅଛି ତାହା ମଧ୍ୟ ପ୍ରତ୍ୟକ୍ଷ କରିଥିଲେ ।

### ଚୈତନ୍ୟଦେବଙ୍କର ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ଲୀଳାଭୂମିସକଳ ଆବିଷ୍କାର କରିବା ବିଷୟରେ ପ୍ରସିଦ୍ଧି :

କଥିତ ଅଛି, ବୃନ୍ଦାବନର ଦିବ୍ୟଭାବପ୍ରକାଶ ଶ୍ରୀଚୈତନ୍ୟଦେବ ପ୍ରଥମେ ଅନୁଭବ କରିଥିଲେ । ବ୍ରଜର ତୀର୍ଥସ୍ଥାନସମୂହ ତାଙ୍କର ଆବିର୍ଭାବ ପୂର୍ବରୁ ଲୁପ୍ତପ୍ରାୟ ହୋଇଯାଇଥିଲା । ଏହି ସମସ୍ତ ସ୍ଥାନରେ ଭ୍ରମଣ ସମୟରେ ଉଚ୍ଚଭାବ ଭୂମିରେ ଉଠି ତାଙ୍କର ମନ ଯେଉଁଠାରେ ଯେପରି ଭାବରେ ଶ୍ରୀକୃଷ୍ଣଙ୍କର ଦିବ୍ୟ ପ୍ରକାଶସମୂହ ଅନୁଭବ ବା ପ୍ରତ୍ୟକ୍ଷ କରିଥିଲା, ସେହିଠାରେ ଯେ ଭଗବାନ ଶ୍ରୀକୃଷ୍ଣ ବହୁକାଳ ପୂର୍ବେ ବାସ୍ତବିକ୍ ସେହିପରି ଲୀଳା କରିଥିଲେ—ଏକଥାରେ ରୂପ, ସନାତନ ଆଦି ତାଙ୍କର ଶିଷ୍ୟଗଣ ପ୍ରଥମେ ବିଶ୍ୱାସ ସ୍ଥାପନ କରିଥିଲେ ଏବଂ ପରେ ସେମାନଙ୍କ ମୁଖରୁ ଶୁଣି ସମଗ୍ର ଭାରତବାସୀ ସେଥିରେ ବିଶ୍ୱାସୀ ହୋଇଛନ୍ତି । ଶ୍ରୀଚୈତନ୍ୟଦେବଙ୍କର ପୂର୍ବୋକ୍ତ ଭାବରେ ବୃନ୍ଦାବନ ଆବିଷ୍କାର କଥା ଆମେ କିଛି ବୁଝିପାରୁ ନ ଥିଲୁ । ଏପରି ହେବା ଯେ ସମ୍ଭବପର, ତାହା ଆଦୌ ମନରେ ସ୍ଥାନ ଦେଉ ନ ଥିଲୁ । ଉଚ୍ଚଭାବଭୂମିରେ ଉଠି ବସ୍ତୁ ବା ବ୍ୟକ୍ତିସକଳଙ୍କୁ ଠାକୁରଙ୍କର ମନର ଏହିପରି ଯଥାଯଥ ବୁଝିବାର କ୍ଷମତା ଦେଖି ଏବେ ଆମେ ସେହି କଥାରେ ବିଶ୍ୱାସୀ ହୋଇଅଛୁ । ଠାକୁରଙ୍କ ଜୀବନର ଏହି ବିଷୟରେ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଏଠାରେ ପ୍ରଦାନ କଲେ ପାଠକ ଆମ କଥା ବୁଝିପାରିବେ ।

## ଠାକୁରଙ୍କ ଜୀବନରେ ଏପରି ଘଟଣା — ବନ-ବିଷ୍ଣୁପୁରରେ ଭାବରେ ମୃଣ୍ମୟୀ ଦେବୀଙ୍କର ପୂର୍ବ ମୂର୍ତ୍ତି ଦର୍ଶନ :

ଠାକୁରଙ୍କର ଭଣଜା ହୃଦୟଙ୍କର ଘର କାମାରପୁକୁରର ଅନତିଦୂରରେ ସିହଡ଼ ଗ୍ରାମ ଥିଲା । ଠାକୁର ସେଠାକୁ ବେଳେ ବେଳେ ଯାଇ କିଛି ଦିନ ରହି ଆସୁଥିଲେ, ଏକଥା ଆମେ ଏହାପୂର୍ବରୁ କହିଛୁ । ଥରେ ଏଠାରେ ରହିଥିବା ବେଳେ ହୃଦୟଙ୍କର ସାନଭାଇ ରାଜାରାମଙ୍କ ସହିତ ସେଇ ଗ୍ରାମର ଜଣେ ବ୍ୟକ୍ତିଙ୍କର କୌଣସି ବିଷୟ ନେଇ ଯୁକ୍ତିତର୍କ ହେଲା । ପାଟିତୁଣ୍ଡ କ୍ରମେ ବଢ଼ି ମାଡ଼ ପିଟ ପର୍ଯ୍ୟନ୍ତ ଗଲା ଏବଂ ରାଜାରାମ ପାଖରେ ଥିବା ଏକ ତମାଖୁ ଟାଣିବା ହୁକା ନେଇ ଉକ୍ତ ବ୍ୟକ୍ତିର ମୁଣ୍ଡରେ ଆଘାତ କଲା । ଆହତ ବ୍ୟକ୍ତି ଫୌଜଦାରୀ ମକଦ୍ଦମା ରୁଜୁ କଲା ଏବଂ ଠାକୁରଙ୍କ ସାମନାରେ ଏହି ଘଟଣା ଘଟିଥିବାରୁ ଏବଂ ତାଙ୍କୁ ସାଧୁ ଓ ସତ୍ୟବାଦୀ ବୋଲି ପୂର୍ବରୁ ଜାଣିବାରୁ ଉକ୍ତ ବ୍ୟକ୍ତି ଠାକୁରଙ୍କୁ ସାକ୍ଷୀ ପାଇଁ ନିର୍ବାଚିତ କଲା । ଫଳରେ ଠାକୁରଙ୍କୁ ସାକ୍ଷ୍ୟଦେବା ପାଇଁ ବନ-ବିଷ୍ଣୁପୁର ଆସିବାକୁ ପଡ଼ିଲା । ସେହିପରି କ୍ରୋଧାନ୍ଧ ହୋଇଥିବାରୁ ଠାକୁର ରାଜାରାମଙ୍କୁ ପୂର୍ବରୁ ବିଶେଷରୂପରେ ଭର୍ତ୍ସନା କରିଥିଲେ । ସେଠାକୁ ଯାଇ ପୁଣି କହିଲେ, ''ତାକୁ(ବାଦୀକୁ) ଟଙ୍କା ପଇସା ଦେଇ କୌଣସି ପ୍ରକାରରେ ମକଦ୍ଦମା ରଫା କରିଦେ; ନ ହେଲେ ତୋର ଭଲ ହେବ ନାହିଁ; ମୁଁ ତ ମିଥ୍ୟାକଥା କହିବି ନାହିଁ । ମୋତେ ପଚାରିଲେ ମୁଁ ଯାହା ଜାଣିଛି ଓ ଦେଖିଛି ସେସବୁ କହିଦେବି ।'' ଏଥିରେ ରାଜାରାମ ଡରିଯାଇ ମାମଲାକୁ ଆପୋଷ ମୀମାଂସା କରିବାକୁ ଲାଗିଲା । ଠାକୁରେ ସେହି ଅବସରରେ ବନ-ବିଷ୍ଣୁପୁର ସହରକୁ ବୁଲି ଦେଖିବାକୁ ଗଲେ ।

### ବିଷ୍ଣୁପୁର ସହରର ଅବସ୍ଥା :

ଗୋଟିଏ ସମୟରେ ଏହି ସ୍ଥାନ ବିଶେଷ ସମୃଦ୍ଧିଶାଳୀ ଥିଲା । ଲାଲ୍-ବନ୍ଧ, କୃଷ୍ଣ-ବନ୍ଧ ପ୍ରଭୃତି ବଡ଼ବଡ଼ ଜଳାଶୟ, ଅସଂଖ୍ୟ ଦେବମନ୍ଦିର, ଯାତାୟତର ସୁବିଧା ନିମିତ୍ତ ପରିଷ୍କାର ପ୍ରଶସ୍ତ ପକ୍କା ପଥସମୂହ, ବହୁସଂଖ୍ୟକ ବିପଣି ପୂର୍ଣ୍ଣ ବଜାର, ଅସଂଖ୍ୟ ଭଗ୍ନମନ୍ଦିରର ସ୍ତୂପ ଏବଂ ବହୁସଂଖ୍ୟକ ଲୋକଙ୍କର ବାସ ଏବଂ ବ୍ୟବସାୟ କରିବା ପାଇଁ ଗମନାଗମନରୁ ଏବିଷୟ ସ୍ପଷ୍ଟ ବୁଝାଯାଏ । ବିଷ୍ଣୁପୁରର ରାଜାମାନେ ଗୋଟିଏ ସମୟରେ ବେଶ୍ ପ୍ରତାପଶାଳୀ, ଧର୍ମପରାୟଣ ତଥା ବିଦ୍ୟାନୁରାଗୀ ଥିଲେ । ବିଷ୍ଣୁପୁର ଗୋଟିଏ ସମୟରେ ସଙ୍ଗୀତ ବିଦ୍ୟାର ଚର୍ଚ୍ଚାରେ ମଧ୍ୟ ପ୍ରସିଦ୍ଧ ଥିଲା । ରୂପ, ସନାତନ ଆଦି ଶ୍ରୀଚୈତନ୍ୟଦେବଙ୍କର ପ୍ରଧାନ ସାଙ୍ଗସାଥୀମାନଙ୍କର ତିରୋଭାବର କିଛି କାଳ ପରଠାରୁ ରାଜବଂଶୀୟମାନେ ବୈଷ୍ଣବମତାବଲମ୍ବୀ ହୋଇଥିଲେ ।

### ମଦନମୋହନ :

କଲିକତାର ବାଗବଜାର ପଲ୍ଲୀରେ ପ୍ରତିଷ୍ଠିତ ୰ ମଦନମୋହନଙ୍କ ବିଗ୍ରହ ପୂର୍ବରୁ ଏଠାର ରାଜାମାନଙ୍କର ଠାକୁର ଥିଲେ । ଗୋକୁଳଚନ୍ଦ୍ର ମିତ୍ର ଏଠାର ରାଜାଙ୍କୁ କୌଣସି ସମୟରେ ଅନେକ ଟଙ୍କା ଧାର ଦେଇଥିଲେ ଏବଂ ଠାକୁରଙ୍କ ମୂର୍ତ୍ତିଟିକୁ ଦେଖି ମୋହିତ ହୋଇ ଋଣ ପରିଶୋଧ ସମୟରେ ଟଙ୍କା ନ ନେଇ ଠାକୁରଙ୍କ ମୂର୍ତ୍ତିଟି ମାଗି ନେଇଥିଲେ, ଏହିପରି କଥା ପ୍ରଚଳିତ ଅଛି ।

### ମୃଣ୍ମୟୀ :

ମଦନମୋହନଙ୍କ ବ୍ୟତୀତ ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ମୃଣ୍ମୟୀ ନାମରେ ଏକ ବହୁ ପୁରାତନ ଦେବୀମୂର୍ତ୍ତି ମଧ୍ୟ ଥିଲା । ଲୋକେ କହନ୍ତି ମୃଣ୍ମୟୀ ଦେବୀ ଅତ୍ୟନ୍ତ ଜାଗ୍ରତା । ରାଜବଂଶୀୟମାନଙ୍କର ଦୂରବସ୍ଥା ସମୟରେ ଏହି ମୂର୍ତ୍ତି କୌଣସି ସମୟରେ ଏକ ପାଗଳୀ ଦ୍ୱାରା ଭଗ୍ନ ହୋଇଥିଲା । ରାଜବଂଶୀୟମାନେ ସେଥିପାଇଁ ପୂର୍ବ ମୂର୍ତ୍ତି ପରି ଅନ୍ୟ ଗୋଟିଏ ନୂତନ ମୂର୍ତ୍ତିର ପୁନଃସ୍ଥାପନ କରିଥିଲେ ।

ଠାକୁର ଏଠାର ଅନ୍ୟ ଦେବସ୍ଥାନ ସବୁ ଦେଖି ମୃଣ୍ମୟୀ ଦେବୀଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ରାସ୍ତାରେ ଯିବା ସମୟରେ ଗୋଟିଏ ସ୍ଥାନରେ ଭାବାବେଶରେ ମୃଣ୍ମୟୀ ଦେବୀଙ୍କର ମୁଖ ଦେଖିବାକୁ ପାଇଲେ । ମନ୍ଦିରକୁ ଯାଇ ନୂତନ ଭାବରେ ପ୍ରତିଷ୍ଠିତ ମୂର୍ତ୍ତି ଦେଖିବା ବେଳେ ଦେଖିଲେ, ସେହି ମୂର୍ତ୍ତି ତାଙ୍କର ଭାବାବେଶରେ ଦୃଷ୍ଟ ମୂର୍ତ୍ତି ସଦୃଶ ନୁହେଁ । ଏପରି ହେବାର କାରଣ କିଛି ଜାଣି ପାରିଲେ ନାହିଁ । ପରେ ଅନୁସନ୍ଧାନରୁ ଜଣାଗଲା, ବାସ୍ତବିକ୍ ନୂତନ ମୂର୍ତ୍ତିଟି ପୁରାତନ ମୂର୍ତ୍ତିପରି ହୋଇ ନାହିଁ । ନୂତନ ମୂର୍ତ୍ତିର ନିର୍ମାତା ତାର ବାହାଦୁରୀ ଦେଖାଇବା ପାଇଁ ଏହାର ମୁହଁଟି ଅନ୍ୟ ପ୍ରକାରର ଗଢ଼ିଛି ଏବଂ ପୁରାତନ ମୂର୍ତ୍ତିଟିର ଭଗ୍ନ ମୁଖଟି ସଯତ୍ନରେ ଜଣେ ବ୍ରାହ୍ମଣ ନିଜ ଗୃହରେ ରଖିଛନ୍ତି । ଏହାର କିଛିଦିନ ପରେ ସେହି ଭକ୍ତିନିଷ୍ଠାସଂପନ୍ନ ବ୍ରାହ୍ମଣ ସେହି ମୁଖଟି ସଂଯୋଜିତ କରି ଅନ୍ୟ ଏକ ମୂର୍ତ୍ତି ଗଢ଼ାଇ ଲାଲ-ବନ୍ଧ ଜଳାଶୟ ପାର୍ଶ୍ୱରେ ଏକ ସୁନ୍ଦର ସ୍ଥାନରେ ପ୍ରତିଷ୍ଠିତ କରି ଏହାଙ୍କର ନିତ୍ୟ ପୂଜାଦି କରୁଥିଲେ ।

### ଠାକୁରଙ୍କର ସେହିପ୍ରକାରରେ ବ୍ୟକ୍ତିଗତ ଭାବ ଓ ଉଦ୍ଦେଶ୍ୟ ବୁଝିବାର କ୍ଷମତା—ପ୍ରଥମ ଦୃଷ୍ଟାନ୍ତ :

ସମୀପାଗତ ବ୍ୟକ୍ତିଗଣଙ୍କର ଆଗମନର ଉଦ୍ଦେଶ୍ୟ ଓ ଭାବ ବୁଝିବାର କ୍ଷମତା ସମ୍ବନ୍ଧରେ ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରିବା ଭଲ ହେବ । ପୂଜନୀୟ ସ୍ୱାମୀ ବ୍ରହ୍ମାନନ୍ଦଙ୍କୁ ଠାକୁର ନିଜର ପୁତ୍ର ସଦୃଶ ଭଲ ପାଉଥିଲେ, ଏହାର ଉଲ୍ଲେଖ ଆମେ ପୂର୍ବରୁ କରିଅଛୁ । ଦିନେ ଦକ୍ଷିଣେଶ୍ୱରରେ ସେ ଠାକୁରଙ୍କ ସହିତ,

ଠାକୁରଙ୍କ ଘରର ପୂର୍ବ ଦିଗରେ ଲମ୍ବା ବାରଣ୍ଡାର ଉତ୍ତରାଂଶରେ ଠିଆହୋଇ ନାନାକଥା କହୁଛନ୍ତି, ଏପରି ସମୟରେ ଦେଖିଲେ, ବଗିଚାର ଫାଟକ ଆଡ଼ୁ ଗୋଟିଏ ଗାଡ଼ି ତାଙ୍କ ଆଡ଼କୁ ଆସୁଛି । ଗାଡ଼ିଟା ଫିଟନ ଗାଡ଼ି; ସେଥିରେ କେତେଜଣ ବ୍ୟକ୍ତି ବସିଛନ୍ତି ଦେଖି କଲିକତାର ଜନୈକ ପ୍ରସିଦ୍ଧ ଧନୀବ୍ୟକ୍ତିଙ୍କର ଗାଡ଼ି ବୋଲି ସେ ବୁଝିପାରିଲେ । ଠାକୁରଙ୍କ ଦର୍ଶନ ପାଇଁ ସେସମୟରେ କଲିକତାରୁ ଅନେକ ଲୋକ ଆସୁଥିଲେ । ସେମାନେ ମଧ୍ୟ ସେଥିପାଇଁ ଆସିଥିବେ ଭାବି ସ୍ୱାମୀ ବ୍ରହ୍ମାନନ୍ଦ ବିସ୍ମିତ ହେଲେ ନାହିଁ ।

ଠାକୁରଙ୍କ ଦୃଷ୍ଟି କିନ୍ତୁ ଗାଡ଼ି ଆଡ଼କୁ ପଡ଼ିବା ମାତ୍ରେ ଭୟରେ ସଙ୍କୁଚିତ ହୋଇ ବ୍ୟସ୍ତଭାବରେ ଅନ୍ତରାଳରେ ନିଜ ଘର ଭିତରକୁ ଯାଇ ବସିଲେ । ତାଙ୍କର ଏପ୍ରକାର ଭାବଦେଖି ଆଶ୍ଚର୍ଯ୍ୟ ହୋଇ ବ୍ରହ୍ମାନନ୍ଦ ସ୍ୱାମୀ ଠାକୁରଙ୍କ ପଛେ ପଛେ ଘର ଭିତରକୁ ଗଲେ । ଠାକୁର ତାଙ୍କୁ ଦେଖି କହିଲେ, ''ଯା, ଯା, ସେମାନେ ଏଠାକୁ ଆସିବାକୁ ଚାହିଁଲେ, କହିବୁ, ବର୍ତ୍ତମାନ ଦେଖାହୋଇପାରିବ ନାହିଁ ।'' ଠାକୁରଙ୍କ ସେହି କଥା ଶୁଣି ସେ ପୁନର୍ବାର ବାହାରକୁ ଆସିଲେ । ଇତିମଧ୍ୟରେ ଆଗନ୍ତୁକମାନେ ନିକଟକୁ ଆସି ତାଙ୍କୁ ପଚାରିଲେ, ''ଏଠାରେ ଜଣେ ସାଧୁ ଥାଆନ୍ତି ପରା ?'' ବ୍ରହ୍ମାନନ୍ଦ ସ୍ୱାମୀ ଶୁଣି ଠାକୁରଙ୍କ ନାମକରି କହିଲେ, ''ହଁ, ସେ ଏଠାରେ ରହନ୍ତି । ଆପଣମାନେ ତାଙ୍କ ନିକଟକୁ କି ପ୍ରୟୋଜନରେ ଆସିଛନ୍ତି ?'' ଉତ୍ତରରେ ଜଣେ କହିଲେ, ''ଆମର ଜଣେ ଆତ୍ମୀୟଙ୍କର ଭୟଙ୍କର ରୋଗ ହୋଇଅଛି; କୌଣସି ଉପାୟରେ ଉପଶମ ହେଉ ନାହିଁ । ତେଣୁ ସେ (ସାଧୁ) ଯଦି ଦୟା କରି କୌଣସି ଔଷଧ ଦିଅନ୍ତି, ସେଥିପାଇଁ ଆସିଛୁ ।'' ସ୍ୱାମୀ ବ୍ରହ୍ମାନନ୍ଦ କହିଲେ, ''ଆପଣମାନେ ଭୁଲ ଶୁଣିଛନ୍ତି । ସେ ତ କେବେ କାହାକୁ ଔଷଧ ଦିଅନ୍ତି ନାହିଁ । ବୋଧହୁଏ ଆପଣ ଦୁର୍ଗାନନ୍ଦ ବ୍ରହ୍ମଚାରୀଙ୍କ କଥା ଶୁଣିଛନ୍ତି । ସେ ଅବଶ୍ୟ ଔଷଧ ଦେଇ ଥାଆନ୍ତି । ସେ ଏହି ପଞ୍ଚବଟୀରେ କୁଟୀଆରେ ଅଛନ୍ତି । ଗଲେ ଦେଖାହେବ ।''

ଆଗନ୍ତୁକମାନେ ଏକଥା ଶୁଣି ଚାଲିଯିବା ପରେ ବ୍ରହ୍ମାନନ୍ଦ ସ୍ୱାମୀଙ୍କୁ ଠାକୁର କହିଲେ, ''ସେମାନଙ୍କ ଭିତରେ କିପରି ଏକ ତମୋଭାବ ଦେଖିଲି !—ଦେଖି ଆଉ ସେମାନଙ୍କ ଆଡ଼କୁ ଚାହିଁପାରିଲି ନାହିଁ; ଆଉ କଥା କ'ଣ କହିବି ! ଭୟରେ ପଳାଇ ଆସିଲି !''

ଏହିରୂପରେ ଉଚ୍ଚ ଭାବଭୂମିରେ ଉଠି ଠାକୁରଙ୍କୁ ପ୍ରତ୍ୟେକ ସ୍ଥାନ, ବସ୍ତୁ ବା ବ୍ୟକ୍ତିଙ୍କର ଅନ୍ତର୍ଗତ ଉଚ୍ଚନୀଚ ଭାବପ୍ରକାଶ ଉପଲବ୍ଧି କରିବାର ଆମେ ନିତ୍ୟ ପ୍ରତ୍ୟକ୍ଷ କରୁଥିଲୁ । ଠାକୁର ଯେପରି ଦେଖୁଥିଲେ, ସେହି ସମସ୍ତଙ୍କ ଭିତରେ ବାସ୍ତବିକ୍ ହିଁ ସେହିପରି ଭାବ ଯେ ବିଦ୍ୟମାନ, ତାହା ବାରମ୍ବାର ଅନୁସନ୍ଧାନ କରି ଜାଣି ଆମେ ତାଙ୍କ କଥାରେ ବିଶ୍ୱାସୀ ହୋଇଅଛୁ । ତନ୍ମଧ୍ୟରେ ଆହୁରି ଗୋଟିଏ

ଦୁଇଟି କଥା ଏଠାରେ ଉଲ୍ଲେଖ କରି ସାଧାରଣ ଭାବଭୂମିରୁ ସେ ତୀର୍ଥଗୁଡ଼ିକରେ କ'ଣ ଅନୁଭବ କରିଥିଲେ, ତାହା ପାଠକଙ୍କୁ କହିବୁ ।

### ସେହି ବିଷୟରେ ଦ୍ୱିତୀୟ ଦୃଷ୍ଟାନ୍ତ—ସ୍ୱାମୀ ବିବେକାନନ୍ଦ ଓ ତାଙ୍କର ଦକ୍ଷିଣେଶ୍ୱର ଆଗତ ସହପାଠୀଗଣ :

ଉଦାରଚେତା ସ୍ୱାମୀ ବିବେକାନନ୍ଦଙ୍କର ମନ ବାଲ୍ୟକାଳରୁ ପରଦୁଃଖରେ କାତର ହେଉଥିଲା । ସେଥିପାଇଁ ସେ ଯେଉଁଥିରେ ବା ଯାହାର ସାହାଯ୍ୟରେ ନିଜେ କୌଣସି ବିଷୟରେ ଉପକୃତ ବୋଧ କରୁଥିଲେ, ତାହା କରିବାକୁ ବା ତାଙ୍କ ନିକଟରୁ ଏପରି ସାହାଯ୍ୟ ପାଇବା ନିମିତ୍ତ ଯିବାକୁ ନିଜର ଆତ୍ମୀୟ ବନ୍ଧୁବାନ୍ଧବ ସମସ୍ତଙ୍କୁ ସର୍ବଦା ଉତ୍ସାହିତ କରୁଥିଲେ । ଲେଖାପଢ଼ା ଧର୍ମକର୍ମ ସମସ୍ତ ବିଷୟରେ ସ୍ୱାମୀଜୀଙ୍କ ମନର ରୀତି ସେହିପ୍ରକାର ଥିଲା । କଲେଜରେ ପଢ଼ିବା ସମୟରେ ସହପାଠୀମାନଙ୍କୁ ସାଙ୍ଗରେ ନେଇ ନାନାସ୍ଥାନରେ ନିୟମିତ ଭାବରେ ପ୍ରାର୍ଥନା ଓ ଧ୍ୟାନ ପ୍ରଭୃତି ଅନୁଷ୍ଠାନ କରିବା ପାଇଁ ସଭା-ସମିତି ଗଠନ କରିବା, ମହର୍ଷି ଦେବେନ୍ଦ୍ରନାଥ ଓ ଭକ୍ତାଚାର୍ଯ୍ୟ କେଶବଙ୍କ ସହିତ ସ୍ୱୟଂ ପରିଚିତ ହେବାପରେ ସହପାଠୀମାନଙ୍କ ଭିତରୁ ଅନେକଙ୍କୁ ସେମାନଙ୍କର ଦର୍ଶନ ପାଇଁ ନେଇ ଯିବା ପ୍ରଭୃତି ଯୌବନରେ ପଦାର୍ପଣ କରି ସ୍ୱାମୀଜୀଙ୍କର ଜୀବନରେ ଅନୁଷ୍ଠିତ କାର୍ଯ୍ୟଗୁଡ଼ିକ ଦେଖି ଆମେମାନେ ପୂର୍ବୋକ୍ତ ବିଷୟର ପରିଚୟ ପାଇଥାଉ ।

ଠାକୁରଙ୍କର ପୁଣ୍ୟଦର୍ଶନ ଲାଭ କରି ତାଙ୍କର ଅଦୃଷ୍ଟପୂର୍ବ ତ୍ୟାଗ, ବୈରାଗ୍ୟ ଓ ଈଶ୍ୱର ପ୍ରେମର ପରିଚୟ ପାଇବା ପରେ ନିଜର ସହପାଠୀ ବନ୍ଧୁମାନଙ୍କୁ ତାଙ୍କ ନିକଟକୁ ନେଇ ତାଙ୍କ ସହିତ ପରିଚିତ କରାଇ ଦେବା ସ୍ୱାମୀଜୀଙ୍କ ଜୀବନର ଏକ ବ୍ରତବିଶେଷ ହୋଇଉଠିଥିଲା । ଆମେ ଏକଥା କହୁଛୁ ବୋଲି କେହି ଯେପରି ନ ଭାବନ୍ତି ଯେ, ବୁଦ୍ଧିମାନ ସ୍ୱାମୀଜୀ ଗୋଟିଏ ଦିନର ଆଳାପରେ କାହାପ୍ରତି ଆକୃଷ୍ଟ ହେଲେ ହିଁ ତାହାକୁ ଠାକୁରଙ୍କ ନିକଟକୁ ନେଇଯାଉଥିଲେ । ଅନେକ ଦିନର ପରିଚୟ ଫଳରେ ଯେଉଁମାନଙ୍କୁ ସତ୍‌ସ୍ୱଭାବବିଶିଷ୍ଟ ଏବଂ ଧର୍ମାନୁରାଗୀ ବୋଲି ବୁଝୁଥିଲେ, ସେମାନଙ୍କୁ ହିଁ ସାଙ୍ଗରେ ନେଇ ଦକ୍ଷିଣେଶ୍ୱର ଯାଉଥିଲେ ।

### 'ଚେଷ୍ଟା କଲେ ଯାହାର ଯାହା ଇଚ୍ଛା ହୋଇପାରେ ନାହିଁ' :

ସ୍ୱାମୀଜୀ ଏହିପରି ଅନେକ ବନ୍ଧୁବାନ୍ଧବଙ୍କୁ ସେତେବେଳେ ଠାକୁରଙ୍କ ନିକଟକୁ ନେଇଯାଇଥିଲେ; କିନ୍ତୁ ଠାକୁରଙ୍କର ଦିବ୍ୟଦୃଷ୍ଟି ଯେ ସେମାନଙ୍କର ଅନ୍ତର ଦେଖି ଅନ୍ୟ ପ୍ରକାରର ସିଦ୍ଧାନ୍ତରେ ଉପନୀତ ହେଉଥିଲା, ଏକଥା ଆମେ ଠାକୁର ଓ ସ୍ୱାମୀଜୀ ଉଭୟଙ୍କ ମୁଖରୁ ଅନେକ ଥର ଶୁଣିଅଛୁ । ସ୍ୱାମୀଜୀ କହୁଥିଲେ, ''ଠାକୁର ମୋତେ ଗ୍ରହଣ କରି ଧର୍ମସମ୍ବନ୍ଧୀୟ ଶିକ୍ଷାଦିଦାନରେ ମୋ ଉପରେ ଯେପରି କୃପା କରୁଥିଲେ, ସେପରି କୃପା ସେମାନଙ୍କ ଉପରେ ନ କରିବାରୁ

ମୁଁ ତାଙ୍କୁ ସେହିପରି କରିବା ପାଇଁ ବାରମ୍ବାର ଅନୁରୋଧ କରି ଜିଦ ଧରୁଥିଲି । ବାଲସ୍ୱଭାବବଶତଃ ଅନେକ ସମୟରେ ତାଙ୍କ ସହିତ ଅଣ୍ଟା ଭିଡ଼ି ଯୁକ୍ତି ତର୍କ କରିବାକୁ ମଧ୍ୟ ଉଦ୍ୟତ ହେଉଥିଲି ! କହୁଥିଲି, 'କାହିଁକି ମହାଶୟ, ଈଶ୍ୱର ତ ପକ୍ଷପାତୀ ନୁହଁନ୍ତି ଯେ, ଜଣକୁ କୃପା କରିବେ ଏବଂ ଅନ୍ୟ ଜଣଙ୍କୁ କୃପା କରିବେ ନାହିଁ ? ତେଣୁ ଆପଣ କାହିଁକି ଏମାନଙ୍କୁ ମୋ ପରି ଗ୍ରହଣ କରୁନାହାନ୍ତି ? ଇଚ୍ଛା ଓ ଚେଷ୍ଟାରେ ସମସ୍ତେ ଯେପରି ବିଦ୍ୱାନ୍ ପଣ୍ଡିତ ହୋଇପାରନ୍ତି, ଧର୍ମଲାଭ ଈଶ୍ୱରଲାଭ ମଧ୍ୟ ସେପରି କରିପାରିବେ ଏହା ତ ନିଶ୍ଚିତ ।' ଏପ୍ରଶ୍ନରେ ଠାକୁର କହିଲେ, 'କ'ଣ କରିବି ରେ—ମା' ମୋତେ ଦେଖାଇ ଦେଉଛି, ଏମାନଙ୍କ ଭିତରେ ଷଣ୍ଢପରି ପଶୁଭାବ ରହିଛି, ଏମାନଙ୍କର ଏଜନ୍ମରେ ଧର୍ମଲାଭ ହେବ ନାହିଁ—ତେଣୁ ମୁଁ କ'ଣ କରିବି ? ତୋର ଏହା କିପରି କଥା ? ଇଚ୍ଛା ଓ ଚେଷ୍ଟା କଲେ ହିଁ କ'ଣ ଲୋକେ ଏହି ଜନ୍ମରେ ଯାହା ଇଚ୍ଛା ତାହା ହୋଇପାରେ ?' ଠାକୁରଙ୍କ ଏହି କଥା ସେତେବେଳେ ଶୁଣୁଛି କିଏ ? ମୁଁ କହୁଥିଲି, ସେ କ'ଣ ମହାଶୟ, ଇଚ୍ଛା ଓ ଚେଷ୍ଟା କଲେ ଯାହାର ଯାହା ଇଚ୍ଛା ହୋଇ ପାରେ ନା ? ନିଶ୍ଚୟ ପାରେ । ମୁଁ ଆପଣଙ୍କ କଥାରେ ବିଶ୍ୱାସ କରିପାରୁ ନାହିଁ ।' ଠାକୁରଙ୍କର ସେଥିରେ ମଧ୍ୟ ଏହି କଥା କହିଲେ—'ତୁ ବିଶ୍ୱାସ କର ବା ନ କର, ମା' ଯେ ମୋତେ ଦେଖାଇ ଦେଉଛି !' ମୁଁ ସେତେବେଳେ ତାଙ୍କ କଥା କୌଣସି ମତେ ସ୍ୱୀକାର କରୁ ନ ଥିଲି । ତା'ପରେ ଯେତେ ଦିନ ଯିବାକୁ ଲାଗିଲା, ଦେଖି ଶୁଣି ସେତେ ବୁଝିପାରିଲି, ଠାକୁର ଯାହା କହିଛନ୍ତି, ତାହା ହିଁ ସତ୍ୟ, ମୋର ଧାରଣା ହିଁ ମିଥ୍ୟା ।''

**ତୃତୀୟ ଦୃଷ୍ଟାନ୍ତ—ପଣ୍ଡିତ ଶଶଧରଙ୍କୁ ଦେଖିବାକୁ ଯାଇ ଠାକୁରଙ୍କର ଜଳପାନ କରିବା :**

ସ୍ୱାମୀଜୀ କହୁଥିଲେ—ଏହିପରି ପରୀକ୍ଷା କରିବା ପରେ ହିଁ ଠାକୁରଙ୍କ ସମସ୍ତ କଥାରେ କ୍ରମେ କ୍ରମେ ବିଶ୍ୱାସୀ ହୋଇପାରିଥିଲେ । ଠାକୁରଙ୍କର ପ୍ରତ୍ୟେକ କଥା ଓ ବ୍ୟବହାର ଏପରି ପରୀକ୍ଷା କରିବା ସମ୍ବନ୍ଧରେ ଆଉ ଗୋଟିଏ ଘଟଣାର କଥା ଆମେ ସ୍ୱାମୀଜୀଙ୍କ ପାଖରୁ ଯେପରି ଶୁଣିଛୁ ଏଠାରେ ତାହା ଉଲ୍ଲେଖ କଲେ ମନ୍ଦ ହେବ ନାହିଁ । ୧୮୮୫ ଖ୍ରୀଷ୍ଟାବ୍ଦର ରଥଯାତ୍ରା ଦିନ ଠାକୁର ସ୍ୱାମୀଜୀଙ୍କ ନିକଟରୁ ଶୁଣି ପଣ୍ଡିତ ଶଶଧର ତର୍କଚୂଡ଼ାମଣିଙ୍କୁ ଦେଖିବାକୁ ଯାଇଥିଲେ ।[୧] ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରୁ ସାକ୍ଷାତ୍ କ୍ଷମତାପ୍ରାପ୍ତ ବ୍ୟକ୍ତି ହିଁ ଯଥାର୍ଥ ଧର୍ମ ପ୍ରଚାରରେ ସକ୍ଷମ, କିନ୍ତୁ ଅନ୍ୟାନ୍ୟ ପ୍ରଚାରକ-ନାମଧାରୀଙ୍କ ବାଗାଡ଼ମ୍ବର ବୃଥା—ପଣ୍ଡିତଜୀଙ୍କୁ ସେହିପରି ନାନା ଉପଦେଶ ଦେବାପରେ ଠାକୁର ପିଇବା ପାଇଁ ଗୋଟିଏ ଗ୍ଲାସ୍ ଜଳ ମାଗିଲେ । ଠାକୁର ଯଥାର୍ଥ ତୃଷାର୍ତ୍ତ ହୋଇ ଏପରି ଜଳପାନ କରିବାକୁ ଚାହିଁଲେ ବା ତାଙ୍କର ଅନ୍ୟ କିଛି ଉଦ୍ଦେଶ୍ୟ ଥିଲା ତାହା ଆମେ ଠିକ୍ ଭାବରେ କହିପାରିବୁ

---

୧. ପଞ୍ଚମ ଅଧ୍ୟାୟ ଦେଖ ।

ନାହିଁ । କାରଣ, ଠାକୁର ଅନ୍ୟ ଏକ ସମୟରେ ଆମକୁ କହିଥିଲେ ଯେ, ସାଧୁ, ସନ୍ନ୍ୟାସୀ, ଅତିଥି, ଫକୀରମାନେ କୌଣସି ଗୃହସ୍ଥଙ୍କ ଘରକୁ ଯାଇ ଯାହା ହେଉ କିଛି ଖାଇ ନ ଆସିଲେ ଗୃହସ୍ଥଙ୍କର ଅକଲ୍ୟାଣ ହୁଏ; ଏବଂ ସେଥିପାଇଁ ଯାହା ଘରକୁ ଯାଆନ୍ତୁ ନା କାହିଁକି ସେମାନେ ନ କହିଲେ ବା ଭୁଲିଗଲେ ମଧ୍ୟ ସ୍ୱୟଂ ତାଙ୍କ ନିକଟରୁ ନିଜେ ମାଗି କିଛି ନା କିଛି ଖାଇ ଆସିଥାଆନ୍ତି ।

ଯାହାହେଉ, ଏଠାରେ ଜଳପାନ କରିବାକୁ ଚାହିଁବା ମାତ୍ରେ ତିଳକ କଣ୍ଠି ପ୍ରଭୃତି ଧର୍ମଚିହ୍ନଧାରୀ ଜଣେ ବ୍ୟକ୍ତି ସସମ୍ଭ୍ରମରେ ଠାକୁରଙ୍କୁ ଏକ ଗ୍ଲାସ ଜଳ ଆଣି ଦେଲେ । ଠାକୁରେ କିନ୍ତୁ ଏହି ଜଳ ପାନ କରିପାରିଲେ ନାହିଁ । ନିକଟସ୍ଥ ଅନ୍ୟ ଜଣେ ଏହା ଦେଖି ଗ୍ଲାସରୁ ଜଳଟି ଫିଙ୍ଗି ଦେଇ ଅନ୍ୟ ଏକ ଗ୍ଲାସ୍‌ରେ ଜଳ ଆଣି ଦେଲେ ଏବଂ ଠାକୁର ଏଥିରୁ ଟିକିଏ ଜଳପାନ କରି ପଣ୍ଡିତ ମହାଶୟଙ୍କ ନିକଟରୁ ସେଦିନ ବିଦାୟ ଗ୍ରହଣ କଲେ । ସମସ୍ତେ ବୁଝିଲେ ପ୍ରଥମେ ଦେଇଥିବା ଜଳରେ କିଛି ପଡ଼ିଯାଇ ଥିବାରୁ ଠାକୁର ତାହା ପାନ କରି ନ ଥିଲେ ।

ସ୍ୱାମୀଜୀ କହୁଥିଲେ—ସେ ସେତେବେଳେ ଠାକୁରଙ୍କର ଅତି ନିକଟରେ ବସିଥିଲେ, ସେଥିପାଇଁ ବିଶେଷ ଭାବରେ ଦେଖିଥିଲେ ଯେ, ଗ୍ଲାସ ମଧ୍ୟରେ କାଠିକୁଟା କିଛି ପଡ଼ି ନ ଥିଲା, ଅଥଚ ଠାକୁର ସେହି ଜଳ ପାନ କରିବାକୁ ଆପତ୍ତି କରିଥିଲେ । ଏହାର କାରଣ ଅନୁସନ୍ଧାନ କରିବାକୁ ଯାଇ ସ୍ୱାମୀଜୀ ମନେ ମନେ ସ୍ଥିର କଲେ, ତେବେ ବୋଧହୁଏ ଜଳର ଗ୍ଲାସଟି ସ୍ପର୍ଶଦୋଷଦୁଷ୍ଟ ହୋଇଅଛି ! କାରଣ ଏହା ପୂର୍ବରୁ ସେ ଠାକୁରଙ୍କୁ କହିବାର ଶୁଣିଥିଲେ ଯେ, ଯାହାଙ୍କ ଭିତରେ ବିଷୟ-ବୁଦ୍ଧି ଅତ୍ୟନ୍ତ ପ୍ରବଳ, ଯେଉଁମାନେ ଜୁଆଚୋରୀ ଠକାମି ଏବଂ ଅନ୍ୟର ଅନିଷ୍ଟ ସାଧନ କରି ଅସଦ୍ ଉପାୟରେ ଉପାର୍ଜନ କରନ୍ତି ଏବଂ ଯେଉଁମାନେ କାମ-କାଞ୍ଚନ-ଲାଭର ସହାୟ ହେବ ବୋଲି ବାହାରେ ଧର୍ମର ବେଶ ଧାରଣ କରି ଲୋକଙ୍କୁ ପ୍ରତାରିତ କରିଥାଆନ୍ତି, ସେମାନେ କୌଣସି ଖାଦ୍ୟପାନୀୟ ଆଣିଦେଲେ ତାଙ୍କ ହସ୍ତ ତାହା ଗ୍ରହଣ କରିବାକୁ ଗଲେ ମଧ୍ୟ କିଛି ଦୂର ଯାଇ ଆଉ ଅଗ୍ରସର ହୁଏ ନାହିଁ, ପଶ୍ଚାତକୁ ଚାଲିଆସେ ଏବଂ ସେ ଏହା ତତ୍‌କ୍ଷଣାତ୍ ବୁଝିପାରନ୍ତି !

ସ୍ୱାମୀଜୀ କହୁଥିଲେ—ଏହି କଥା ମନରେ ଆସିବାରୁ ସେ ଏହାର ସତ୍ୟାସତ୍ୟ ନିର୍ଦ୍ଧାରଣ କରିବା ପାଇଁ ଦୃଢ଼ସଂକଳ୍ପ କଲେ ଏବଂ ଠାକୁର ସ୍ୱୟଂ ତାହାଙ୍କୁ ସେଦିନ ତାଙ୍କ ସହିତ ଆସିବାକୁ ଅନୁରୋଧ କଲେ ମଧ୍ୟ 'ବିଶେଷ କୌଣସି ଆବଶ୍ୟକ ଅଛି, ସେଥିପାଇଁ ଯାଇପାରିବି ନାହିଁ' ବୋଲି ବୁଝାଇ ତାଙ୍କୁ ଗାଡ଼ିରେ ବସାଇଦେଲେ । ଠାକୁର ଗଲାପରେ ସ୍ୱାମୀଜୀ ପୂର୍ବୋକ୍ତ ଧର୍ମଚିହ୍ନଧାରୀ ବ୍ୟକ୍ତିଙ୍କର ସାନଭାଇ ପୂର୍ବରୁ ପରିଚିତ ଥିବାରୁ ତାଙ୍କୁ ଏକାନ୍ତରେ ଡାକି ତାଙ୍କ ବଡ଼ଭାଇଙ୍କର ଚରିତ୍ର ସମ୍ବନ୍ଧରେ ପ୍ରଶ୍ନ କରିବାକୁ ଲାଗିଲେ । ଏପରି ପ୍ରଶ୍ନରେ ସେ

ବ୍ୟକ୍ତି ବିଶେଷ ଇତସ୍ତତଃ ହୋଇ ଶେଷରେ କହିଲେ, ଜ୍ୟେଷ୍ଠଙ୍କର ଦୋଷକଥା କିପରି କହିବି' ଇତ୍ୟାଦି । ସ୍ୱାମୀଜୀ କହୁଥିଲେ, ‘‘ମୁଁ ତାଙ୍କର ସେତିକି କଥାରେ ବୁଝିଗଲି । ପରେ ଉକ୍ତ ଗୃହର ଅନ୍ୟ ଜଣେ ପରିଚିତ ବ୍ୟକ୍ତିଙ୍କୁ ପଚାରି ସମସ୍ତ ଜାଣି ଏହି ବିଷୟରେ ନିଃସଂଶୟ ହେଲି ଏବଂ ଆଶ୍ଚର୍ଯ୍ୟ ହୋଇ ଭାବିବାକୁ ଲାଗିଲି— ଠାକୁର କିପରି ଲୋକଙ୍କର ଅନ୍ତରର କଥା ଏପରି ଜାଣିପାରୁଛନ୍ତି !’’

**ଠାକୁରଙ୍କର ମାନସିକ ଗଠନ କେଉଁ ଭାବର ଥିଲା ଏବଂ କେଉଁ ବିଷୟଟି ଦ୍ୱାରା ସେ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ପରିମାପ କରି ସେମାନଙ୍କର ମୂଲ୍ୟ ବୁଝୁଥିଲେ :**

ସାଧାରଣ ଭାବଭୂମିରେ ଥିବା ସମୟରେ ଠାକୁର ଯେପରି ସମସ୍ତ ପଦାର୍ଥର ଅନ୍ତର୍ନିହିତ ଗୁଣାବଳୀ ଧରୁଥିଲେ ଓ ବୁଝୁଥିଲେ, ତାହାର ପରିଚୟ ପାଇବାକୁ ହେଲେ ପ୍ରଥମେ ଆମକୁ ତାଙ୍କର ମାନସିକ ଗଠନ କି ପ୍ରକାର ଥିଲା, ତାହା ବୁଝିବାକୁ ହେବ ଏବଂ ପରେ କେଉଁ ପଦାର୍ଥକୁ ପରିମାପକସ୍ୱରୂପରେ ସର୍ବଦା ସ୍ଥିର ରଖି ସେ ଅନ୍ୟବସ୍ତୁ ଓ ବିଷୟ ସକଳ ପରିମାପ କରି ତତ୍‌ସମ୍ବନ୍ଧରେ ଗୋଟିଏ ସ୍ଥିର ସିଦ୍ଧାନ୍ତରେ ଉପନୀତ ହେଉଥିଲେ ତାହା ମଧ୍ୟ ବୁଝିବାକୁ ହେବ । ଲୀଳାପ୍ରସଙ୍ଗର ସ୍ଥାନେ ସ୍ଥାନେ ଏବିଷୟରେ କିଛି କିଛି ଆଭାସ ଆମେ ପାଠକଙ୍କୁ ଏହାପୂର୍ବରୁ ଦେଇଛୁ । ଅତଏବ ବର୍ତ୍ତମାନ ଏହା ସଂକ୍ଷେପରେ ଉଲ୍ଲେଖ କଲେ ଚଳିବ । ଆମେ ଦେଖିଅଛୁ, ଠାକୁରଙ୍କ ମନ ପାର୍ଥିବ କୌଣସି ପଦାର୍ଥରେ ଆସକ୍ତ ନ ଥିବାରୁ ସେ ଯେତେବେଳେ ଯାହା ଗ୍ରହଣ ବା ତ୍ୟାଗ କରିବେ ବୋଲି ମନେ କରିଛନ୍ତି, ସେତେବେଳେ ହିଁ ତାହା ସେହି ବିଷୟରେ ସମ୍ୟକ୍ ଯୁକ୍ତ ବା ତାହାଠାରୁ ସମ୍ୟକ୍ ପୃଥକ୍ ହୋଇଯାଇଛି । ପୃଥକ୍ ହେବା ପରେ ଆଜୀବନ ସେ ଏବିଷୟ ପ୍ରତି ଥରେ ମଧ୍ୟ ଫେରି ଦେଖି ନାହାନ୍ତି । ପୁଣି ଠାକୁରଙ୍କର ଅଦୃଷ୍ଟପୂର୍ବ ନିଷ୍ଠା, ଅଦ୍ଭୁତ ବିଚାରଶୀଳତା ଏବଂ ଐକାନ୍ତିକ ଏକାଗ୍ରତା ତାଙ୍କର ମନର ହସ୍ତ ସର୍ବଦା ଧାରଣ କରି ତାହାକୁ ଯେଉଁଥିରେ ଇଚ୍ଛା, ଯେତେ ଦିନ ଇଚ୍ଛା ଏବଂ ଯେଉଁଠାରେ ଇଚ୍ଛା ସ୍ଥିର ଭାବରେ ରଖିଛି । କ୍ଷଣକ ପାଇଁ ମଧ୍ୟ ମନକୁ ଏବିଷୟର ବିପରୀତ ଚିନ୍ତା ବା କଳ୍ପନା କରିବାକୁ ଦେଇ ନାହିଁ । କୌଣସି ବିଷୟ ତ୍ୟାଗ ବା ଗ୍ରହଣ କରିବାକୁ ଯିବାମାତ୍ରେ ସେହି ମନର ଗୋଟିଏ ଭାଗ କହି ଉଠୁଥିଲା, ‘କାହିଁକି ଏପରି କରୁଛୁ କହ ।’ ଆଉ ଯଦି ଏହି ପ୍ରଶ୍ନର ଯଥାଯଥ ଯୁକ୍ତିସହ ମୀମାଂସା ପାଉଥିଲା, ତେବେ କହୁଥିଲା, ‘ବେଶ କଥା, ସେପରି କର ।’ ତାସହିତ ଏପରି ସିଦ୍ଧାନ୍ତରେ ଉପନୀତ ହେବାମାତ୍ରେ ସେହି ମନର ଅନ୍ୟ ଏକ ଅଂଶ କହିଉଠୁଥିଲା, ‘ଠିକ୍ ଅଛି ତେବେ ଏହାକୁ ପକ୍କାକରି ଧର; ଶୟନରେ, ସ୍ୱପନରେ, ଭୋଜନରେ, ବିରାମରେ କେବେହେଲେ ତୁମେ ଏହାର ବିପରୀତ କାର୍ଯ୍ୟ ଆଉ କରିପାରିବ ନାହିଁ ।’ ତାହାପରେ ତାଙ୍କର ସମଗ୍ର ମନ ଏକତାନରେ ଏବିଷୟ ଗ୍ରହଣ କରି

ତାହାର ଅନୁକୂଳ ଅନୁଷ୍ଠାନ କରିଥାଏ ଏବଂ ନିଷ୍ଠା ପ୍ରହରୀସ୍ୱରୂପ ଏପରି ସତର୍କ ଭାବରେ ତାହାର ଏହି ବିଷୟ ସମ୍ବନ୍ଧୀୟ କାର୍ଯ୍ୟକଳାପ ସର୍ବଦା ଦେଖୁଥିଲା ଯେ, ସହସା ଭୁଲି ଠାକୁର ତାହାର ବିପରୀତ କାର୍ଯ୍ୟ କରିବାକୁ ଗଲେ ସ୍ପଷ୍ଟ ବୋଧ କରୁଥିଲେ ଭିତରୁ କିଏ ଯେପରି ତାଙ୍କର ଇନ୍ଦ୍ରିୟନିଚୟକୁ ବାନ୍ଧିରଖିଅଛି—ତାଙ୍କୁ ଏହିପରି କାର୍ଯ୍ୟ କରିବାକୁ ଦେଉ ନାହିଁ । ଠାକୁରଙ୍କର ଆଜୀବନ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କ ସହିତ ବ୍ୟବହାରର ଆଲୋଚନା କଲେ ହିଁ ଆମର ପୂର୍ବୋକ୍ତ କଥାଗୁଡ଼ିକ ହୃଦୟଙ୍ଗମ ହେବ ।

### ଏହି ବିଷୟରେ ଦୃଷ୍ଟାନ୍ତ 'ଚାଉଳ-କଦଳୀ-ବନ୍ଧା ବିଦ୍ୟା ମୋର ଆବଶ୍ୟକତା ନାହିଁ':

ଦେଖୁ ନାହଁ, ବାଳକ ଗଦାଧର ଦିନ କେଇଟା ପାଠଶାଳାକୁ ଯାଇଛନ୍ତି କି ନାହିଁ କହିବସିଲେ, "ଏହି ଚାଉଳ-କଦଳୀ-ବନ୍ଧା ବିଦ୍ୟା ମୋର ଆବଶ୍ୟକତା ନାହିଁ, ଏବିଦ୍ୟା ମୁଁ ଶିଖିବି ନାହିଁ !" ଠାକୁରଙ୍କର ଅଗ୍ରଜ ରାମକୁମାର, ଭ୍ରାତା ଉଚ୍ଛୃଙ୍ଖଳ ହୋଇଯାଉଛି ଭାବି, କିଛି ଦିନ ପରେ ବୁଝାଇ ସୁଝାଇ କଲିକତାରେ ନିଜର ଟୋଲ୍‌ରେ, ନିଜର ତତ୍ତ୍ୱାବଧାନରେ ରଖି ଉକ୍ତ ବିଦ୍ୟା ଶିଖାଇବା ପାଇଁ ପ୍ରୟାସୀ ହେଲେ ମଧ ଠାକୁରଙ୍କର ଅର୍ଥକରୀ ବିଦ୍ୟା ସମ୍ବନ୍ଧରେ ବାଲ୍ୟକାଳର ସେହି ମତ ପରିବର୍ତ୍ତନ କରିପାରିଲେ ନାହିଁ । କେବଳ ସେତିକି ନୁହେଁ, ନିଷ୍ଠାଚାରୀ ପଣ୍ଡିତ ହୋଇ ଟୋଲ ଖୋଲି ଯଥାସାଧ୍ୟ ଶିକ୍ଷାଦାନ କରି ମଧ ପରିବାରବର୍ଗଙ୍କର ଅନ୍ନବସ୍ତ୍ରର ଅଭାବ ମେଣ୍ଟାଇ ପାରିଲେ ନାହିଁ ବୋଲି ଯେ ଅନନ୍ୟୋପାୟ ହୋଇ ଅଗ୍ରଜଙ୍କର ରାଣୀ ରାସମଣିଙ୍କର ଦେବାଳୟରେ ପୌରୋହିତ୍ୟ-ସ୍ୱୀକାର କରିଥିବା କଥା ମଧ ଠାକୁରଙ୍କ ନିକଟରେ ଲୁଚି ରହିଲା ନାହିଁ ଏବଂ ଧନୀମାନଙ୍କର ଖୋସାମତ କରି ଉପାର୍ଜ୍ଜନ ଅପେକ୍ଷା ଅଗ୍ରଜଙ୍କର ଏପରି କରିବା ଅନେକ ଭଲ ଭାବି ସେ ତାହାଙ୍କୁ ଅନୁମୋଦନ କଲେ ।

### ଦ୍ୱିତୀୟ ଦୃଷ୍ଟାନ୍ତ—ଧ୍ୟାନ କରିବାକୁ ବସିବା ମାତ୍ରେ ଶରୀରର ସନ୍ଧିସ୍ଥଳଗୁଡ଼ିକରେ କେହି ଯେପରି ଚାବିଦେଇ ବନ୍ଦ କରିଦେଉଛି—ଏପରି ଅନୁଭବ କରିବା ଓ ଶୂଳଧାରୀ ଜଣେ ବ୍ୟକ୍ତିଙ୍କୁ ଦେଖିବା :

ଦେଖୁ ନାହଁ, ସାଧନା ସମୟରେ ଠାକୁର ଧ୍ୟାନ କରିବାକୁ ବସିବା ମାତ୍ରେ ତାଙ୍କର ଅନୁଭବ ହେବାକୁ ଲାଗିଲା ଯେ, ତାଙ୍କ ଶରୀରର ପ୍ରତ୍ୟେକ ସନ୍ଧିସ୍ଥଳଗୁଡ଼ିକ ଖଟ୍ ଖଟ୍ ଶବ୍ଦ ହୋଇ ବନ୍ଦ ହୋଇଗଲା । ସେ ଯେଉଁ ଭାବରେ ଆସନ କରି ବସିଥାଆନ୍ତି, ସେଇ ଭାବରେ ଅନେକ ସମୟ ବସାଇ ରଖିବା ପାଇଁ କିଏ ଯେପରି ଭିତରୁ ଏସମସ୍ତ ସ୍ଥାନରେ ଚାବି ପକାଇଦେଲା । ଯେତେ ସମୟ ସେ

ନ ଖୋଲିଦିଏ, ସେତେ ସମୟ ହସ୍ତ ପଦ ଗ୍ରୀବା ଅଣ୍ଟା ପ୍ରଭୃତି ସ୍ଥାନର ସନ୍ଧିଗୁଡ଼ିକ ସେ ଆମମାନଙ୍କ ପରି ହଲାଇବାକୁ, ନିଜ ଇଚ୍ଛାରେ ବ୍ୟବହାର କରିବାକୁ ଚେଷ୍ଟା କଲେ ମଧ୍ୟ ସେପରି କରିପାରୁ ନ ଥିଲେ ! ଅଥବା ଦେଖୁଥିଲେ, ଶୂଳହସ୍ତରେ ଜଣେ ବ୍ୟକ୍ତି ନିକଟରେ ବସିରହିଛନ୍ତି ଏବଂ କହୁଛନ୍ତି, 'ଯଦି ଈଶ୍ୱର ଚିନ୍ତା ବ୍ୟତୀତ ଅନ୍ୟ ଚିନ୍ତା କରିବୁ ତେବେ ଏଶୂଳ ତୋର ଛାତିରେ ଭୁଷିଦେବି !'

ପୁଣି ଦେଖୁ ନାହଁ, ପୂଜା କରିବାକୁ ବସି ନିଜକୁ ଜଗଦମ୍ବାଙ୍କ ସହିତ ଅଭେଦଜ୍ଞାନ କରିବାକୁ କହିବାମାତ୍ରେ ମନ ତାହା ହିଁ କରିବାକୁ ଲାଗିଲା; ଜଗଦମ୍ବାଙ୍କର ପାଦପଦ୍ମରେ ବିଲ୍ୱପତ୍ର, ମନ୍ଦାର ଫୁଲ ଚଢ଼ାଇବାକୁ ଗଲେ ମଧ୍ୟ ଠାକୁରଙ୍କ ହାତକୁ ଯେପରି କିଏ ବୁଲାଇ ଦେଇ ନିଜର ମସ୍ତକ ଉପରକୁ ଟାଣିନେଇଗଲା !

**ତୃତୀୟ ଦୃଷ୍ଟାନ୍ତ — ଜଗଦମ୍ବାଙ୍କର ପାଦପଦ୍ମରେ ଫୁଲ ଦେବାକୁ ଯାଇ ନିଜର ମସ୍ତକରେ ରଖିବା ଓ ପିତୃତର୍ପଣ କରିବାକୁ ଯାଇ ତାହା କରି ନ ପାରିବା । ନିରକ୍ଷର ଠାକୁରଙ୍କର ଆଧ୍ୟାତ୍ମିକ ଅନୁଭବଗୁଡ଼ିକ ଦ୍ୱାରା ବେଦାଦି ଶାସ୍ତ୍ର ପ୍ରମାଣିତ ହୁଏ :**

ଅଥବା ଦେଖ — ସନ୍ନ୍ୟାସ-ଦୀକ୍ଷାଗ୍ରହଣ କରିବା ମାତ୍ରେ ମନ ସର୍ବଭୂତରେ ଏକ ଅଦ୍ୱୈତ ବ୍ରହ୍ମଦର୍ଶନ କରିବାକୁ ଲାଗିଲା । ଅଭ୍ୟାସବଶତଃ ଠାକୁର ସେହି ସମୟରେ ପିତୃତର୍ପଣ କରିବାକୁ ଗଲେ ହାତ ଅବଶ ହୋଇଗଲା । ଅଞ୍ଜଳିବଦ୍ଧ, କରି ହାତରେ ଜଳ ଉଠାଇପାରିଲେ ନାହିଁ ! ଅଗତ୍ୟା ବୁଝିଲେ, ସନ୍ନ୍ୟାସ ଗ୍ରହଣ କଲାପରେ ତାଙ୍କର କର୍ମ ସରିଯାଇଛି ! ଏପରି ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ, ଯେଉଁଥିରୁ ସ୍ପଷ୍ଟ ବୁଝାଯାଏ ଯେ, ଅନାସକ୍ତି, ବିଚାରଶୀଳତା, ଏକାଗ୍ରତା ଓ ନିଷ୍ଠା ଏହି ମନର କେତେ ସହଜ, କେତେ ସ୍ୱାଭାବିକ ଥିଲା । ଆହୁରି ବୁଝାଯାଏ ଯେ, ଠାକୁରଙ୍କର ଏପରି ଦର୍ଶନଗୁଡ଼ିକ ଶାସ୍ତ୍ରରେ ଲିପିବଦ୍ଧ କଥାର ଅନୁରୂପ ହୋଇଥିବାରୁ ଶାସ୍ତ୍ର ଯାହା କହେ ତାହା ସତ୍ୟ । ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦ କହୁଥିଲେ — ହିନ୍ଦୁମାନଙ୍କର ବେଦ ବେଦାନ୍ତରୁ ଅପରାପର ଜାତିର ଯାବତୀୟ ଧର୍ମଗ୍ରନ୍ଥରେ ନିବଦ୍ଧ ଆଧ୍ୟାତ୍ମିକ ଅବସ୍ଥାସକଳର କଥା ଯେ ସତ୍ୟ ଏବଂ ବାସ୍ତବିକ୍ ଯେ ମନୁଷ୍ୟ ଏହି ସମସ୍ତ ପଥ ଅବଲମ୍ବନ କରି ସେହିପରି ଅବସ୍ଥା ସବୁ ଲାଭ କରିପାରେ, ଏହା ହିଁ ପ୍ରମାଣିତ କରିବେ ବୋଲି ଏଥର ଠାକୁର ନିରକ୍ଷର ହୋଇ ଆସିଥିଲେ ।

**ଅଦ୍ୱୈତଭାବ ଲାଭ କରିବା ହିଁ ମାନବ ଜୀବନର ଉଦ୍ଦେଶ୍ୟ । ସେହି ଅବସ୍ଥାରେ 'ସବୁ ଶିଆଳଙ୍କର ଗୋଟିଏ ଡାକ' । ଶ୍ରୀଚୈତନ୍ୟଙ୍କର ଭକ୍ତି ବାହାର ଦାନ୍ତ ଏବଂ ଅଦ୍ୱୈତଜ୍ଞାନ ଭିତର ଦାନ୍ତ ଥିଲା । ଅଦ୍ୱୈତଜ୍ଞାନର ତାରତମ୍ୟ ନେଇ ହିଁ ଠାକୁର ବ୍ୟକ୍ତି ଓ ସମାଜର ଉଚ୍ଚନୀଚ ଅବସ୍ଥା ସ୍ଥିର କରୁଥିଲେ :**

ଠାକୁରଙ୍କର ମନର ସ୍ୱଭାବ ଆଲୋଚନା କରିବାକୁ ଯାଇ ଏହି କଥା ସ୍ପଷ୍ଟ ବୁଝାଯାଏ ଯେ, ନିର୍ବିକଳ୍ପ ଭୂମିକୁ ଉଠି ଅଦ୍ୱୈତଭାବରେ ଈଶ୍ୱର ଉପଲବ୍ଧି ହିଁ ମାନବ ଜୀବନର ଚରମ ଅବସ୍ଥା । ପୁଣି ସେହି ଭୂମିଲବ୍ଧ ଆଧ୍ୟାତ୍ମିକ ଦର୍ଶନ ସମ୍ବନ୍ଧରେ ଠାକୁର କହୁଥିଲେ, 'ସବୁ ଶିଆଳଙ୍କର ଗୋଟିଏ ଡାକ'; ଅର୍ଥାତ୍ ସମସ୍ତ ଶିଆଳ ଯେପରି ଗୋଟିଏ ଭାବରେ ବୋବାଇ ଥାଆନ୍ତି, ସେପରି ନିର୍ବିକଳ୍ପ ଭୂମିରେ ଯେଉଁମାନେ ଉଠିବାକୁ ସମର୍ଥ ହୋଇଛନ୍ତି, ସେମାନେ ପ୍ରତ୍ୟେକେ ଏହି ଭୂମିରୁ ଦର୍ଶନ କରି ଜଗତକାରଣ ଈଶ୍ୱରଙ୍କ ସମ୍ବନ୍ଧରେ ସମାନ କଥା ହିଁ କହିଯାଇଛନ୍ତି । ପ୍ରେମାବତାର ଶ୍ରୀଚୈତନ୍ୟଙ୍କ ସମ୍ବନ୍ଧରେ ମଧ୍ୟ ଠାକୁର କହୁଥିଲେ, ''ହାତୀର ବାହାରର ଦାନ୍ତ ଯେପରି ଶତ୍ରୁକୁ ମାରିବା ନିମିତ୍ତ ଏବଂ ଭିତରର ଦାନ୍ତ ନିଜେ ଖାଇବା ପାଇଁ, ସେହିପରି ମହାପ୍ରଭୁଙ୍କର ଦ୍ୱୈତଭାବ ବାହାରର ଓ ଅଦ୍ୱୈତଭାବ ଭିତରର ସ୍ୱଭାବ ଥିଲା ।'' ଅତଏବ ସର୍ବଦା ଅଦ୍ୱୈତଭାବ ଯେ ଠାକୁରଙ୍କର ସମସ୍ତ ବିଷୟର ପରିମାପକ-ସ୍ୱରୂପ ଥିଲା, ଏକଥା କହିବା ଆବଶ୍ୟକ ନାହିଁ । ବ୍ୟକ୍ତି ଏବଂ ବ୍ୟକ୍ତିର ସମଷ୍ଟି ସମାଜକୁ ଯେଉଁ ଭାବ ଓ ଅନୁଷ୍ଠାନ ସେହି (ନିର୍ବିକଳ୍ପ) ଭୂମି ଆଡ଼କୁ ଯେତେ ଅଗ୍ରସର କରାଇ ଦେଉଥିଲା, ସେତେ ହିଁ ଠାକୁର ସେହି ଭାବ ଓ ଅନୁଷ୍ଠାନକୁ ଅନ୍ୟ ସମସ୍ତ ଭାବ ଓ ଅନୁଷ୍ଠାନଠାରୁ ଉଚ୍ଚ ବୋଲି ସିଦ୍ଧାନ୍ତ କରୁଥିଲେ ।

**ସ୍ୱସଂବେଦ୍ୟ ଓ ପରସଂବେଦ୍ୟ ଦର୍ଶନ :**

ପୁଣି ଠାକୁରଙ୍କର ଆଧ୍ୟାତ୍ମିକ ଭାବପ୍ରସୂତ ଦର୍ଶନଗୁଡ଼ିକର ଆଲୋଚନା କଲେ ଦେଖିବାକୁ ମିଳେ, ଏଥିରେ କେତେଗୁଡ଼ିଏ ସ୍ୱସଂବେଦ୍ୟ ଓ କେତେଗୁଡ଼ିଏ ପରସଂବେଦ୍ୟ । ଅର୍ଥାତ୍ ଏଥିରୁ କେତେଗୁଡ଼ିଏ ଠାକୁରଙ୍କର ନିଜ ଶରୀରାବଦ୍ଧ ମନର ଚିନ୍ତାସମୂହ, ନିଷ୍ଠା ଓ ଅଭ୍ୟାସ ସହାୟରେ ଘନୀଭୂତ ହୋଇ ମୂର୍ତ୍ତି ଧାରଣ କରି ତାଙ୍କ ନିକଟରେ ସେହିରୂପରେ ପ୍ରକାଶିତ ହେଉଥିଲା ଏବଂ ଠାକୁର ନିଜେ ହିଁ ତାହା ଦେଖିବାକୁ ପାଉଥିଲେ; ଏବଂ କେତେଗୁଡ଼ିଏ ସେ ଉଚ୍ଚ-ଉଚ୍ଚତର ଭାବଭୂମିରେ ଉଠି ନିର୍ବିକଳ୍ପ ଭାବଭୂମିର ନିକଟସ୍ଥ ହେବା କାଳରେ ବା ଭାବମୁଖରେ ଅବସ୍ଥିତ ଥିବା ସମୟରେ ପ୍ରକାଶିତ ହେଉଥିଲା । ଭାବମୁଖରେ ଦର୍ଶନ ଅନ୍ୟମାନଙ୍କ ପାଇଁ ଅଜ୍ଞାତ ହେଲେ ମଧ୍ୟ ସେହି ସମୟରେ ସେ ପ୍ରତ୍ୟକ୍ଷ ଦେଖୁଥିଲେ ଏବଂ କହୁଥିଲେ ଯେ ଭବିଷ୍ୟତରେ ଏପରି ଘଟିବ; ଏବଂ ସମୟ ଆସିଲେ ବାସ୍ତବିକ ସେହି ଘଟଣା

ସେହିପରି ଘଟିବାର ଲୋକମାନେ ଦେଖୁଥିଲେ । ଠାକୁରଙ୍କର ପ୍ରଥମ ଶ୍ରେଣୀର ଦର୍ଶନଗୁଡ଼ିକ ସତ୍ୟ ବୋଲି ଉପଲବ୍ଧି କରିବାକୁ ହେଲେ ଅନ୍ୟମାନଙ୍କୁ ତାଙ୍କପରି ବିଶ୍ୱାସ, ଶ୍ରଦ୍ଧା ଓ ନିଷ୍ଠାସମ୍ପନ୍ନ ହେବାକୁ ବା ଠାକୁର ଯେଉଁ ଭୂମିରେ ଉଠି ଏପରି ଦର୍ଶନ କରିଛନ୍ତି, ସେହି ଭୂମିରେ ଆରୂଢ଼ ହେବାକୁ ପଡୁଥିଲା ଏବଂ ଦ୍ୱିତୀୟ ଶ୍ରେଣୀର ବିଷୟକୁ ସତ୍ୟ ବୋଲି ବୁଝିବାକୁ ହେଲେ ଲୋକଙ୍କର ବିଶ୍ୱାସ ବା ଅନ୍ୟ କୌଣସି ପ୍ରକାର ସାଧନା ଇତ୍ୟାଦିର ଆବଶ୍ୟକ ହେଉ ନ ଥିଲା—ଏସବୁ ଯେ ସତ୍ୟ, ତାହାର ଫଳ ଦେଖି ଲୋକଙ୍କୁ ବିଶ୍ୱାସ କରିବାକୁ ହେଉଥିଲା ।

### ବସ୍ତୁ ଓ ବ୍ୟକ୍ତିସମୂହର ଅବସ୍ଥା ସମ୍ବନ୍ଧରେ ସ୍ଥିର ସିଦ୍ଧାନ୍ତରେ ନ ଆସି ଠାକୁରଙ୍କ ମନ ନିଶ୍ଚିନ୍ତରେ ରହିପାରୁ ନ ଥିଲା :

ସେ ଯାହାହେଉ, ଠାକୁରଙ୍କର ମାନସିକ ପ୍ରକୃତି ସମ୍ବନ୍ଧରେ ଆମେ ପୂର୍ବରୁ ଯାହା କହିଛୁ ଏବଂ ଏବେ ଯାହା ସବୁ ଉପରେ କହି ଆସିଲୁ, ସେଥିରୁ ଆମେ ବୁଝିପାରୁଛୁ ସାଧାରଣ ଭାବଭୂମିରେ ଥିବା ସମୟରେ ମଧ୍ୟ ସେହି ପ୍ରକାର ମନ ନିଶ୍ଚିନ୍ତରେ ରହି ନ ଥାଏ । ଯେଉଁ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କ ସମ୍ପର୍କରେ ଏହା କ୍ଷଣକ ପାଇଁ ଆସୁଥିଲା ସେସମସ୍ତର ସ୍ୱଭାବ ରୀତିନୀତି ସମ୍ବନ୍ଧରେ ଆଲୋଚନା କରି ଗୋଟିଏ ବିଶେଷ ସିଦ୍ଧାନ୍ତରେ ଉପନୀତ ନ ହୋଇ ଏହା କଦାପି ସ୍ଥିର ରହିପାରୁ ନ ଥିଲା । ବର୍ତ୍ତମାନ କାଳରେ କେବଳ ଅର୍ଥ ଉପାର୍ଜନ ପାଇଁ ପଣ୍ଡିତମାନଙ୍କର ଶାସ୍ତ୍ର ଆଲୋଚନା ଏହିକଥା ବୁଝି ବାଲ୍ୟକାଳରେ ଯେପରି 'ଚାଉଳ-କଦଳୀ-ବନ୍ଧା' ବିଦ୍ୟା ଶିଖିଲେ ନାହିଁ, ଠାକୁରଙ୍କର ବୟବୃଦ୍ଧି ସଙ୍ଗେ ସଙ୍ଗେ ନାନା ସ୍ଥାନରେ ନାନା ଲୋକଙ୍କ ସମ୍ପର୍କରେ ଆସି ସେହି ମନ ସେମାନଙ୍କ ସମ୍ବନ୍ଧରେ ଯେଉଁ ସମସ୍ତ ସିଦ୍ଧାନ୍ତରେ ଉପନୀତ ହୋଇଥିଲା, ବର୍ତ୍ତମାନ ଆମେ ସେକଥା ଆଲୋଚନା କରିବୁ ।

### ସାଧାରଣ ଭାବଭୂମିରୁ ଠାକୁର ଯାହା ଦେଖିଥିଲେ—ଶାକ୍ତ ଓ ବୈଷ୍ଣବଙ୍କ ବିଦ୍ୱେଷ :

ଶ୍ରୀଚୈତନ୍ୟଙ୍କର ତିରୋଭାବ ପରଠାରୁ ବଙ୍ଗଦେଶରେ ଶାକ୍ତ ଓ ବୈଷ୍ଣବଗଣଙ୍କର ପରସ୍ପର ବିଦ୍ୱେଷ ଯେ ସମଭାବରେ ହିଁ ଚଳି ଆସୁଥିଲା, ଏକଥା ଆଉ କହିବାକୁ ହେବ ନାହିଁ । ଶ୍ରୀରାମପ୍ରସାଦ ଆଦି ବିରଳ କତିପୟ ଶକ୍ତି ସାଧକମାନେ ନିଜ ନିଜ ସାଧନା ସହାୟରେ କାଳୀ ଓ କୃଷ୍ଣଙ୍କୁ ଏକ ବୋଲି ପ୍ରତ୍ୟକ୍ଷ କରି ଏହି ବିଦ୍ୱେଷ ଭ୍ରାନ୍ତ ବୋଲି ପ୍ରଚାର କଲେ ମଧ୍ୟ ସର୍ବସାଧାରଣ ସେମାନଙ୍କର କଥା ବିଶେଷ ଗ୍ରହଣ ନ କରି ବିଦ୍ୱେଷ-ତରଙ୍ଗ ଆଡ଼କୁ ହିଁ ଢଳିଥିଲେ, ଏକଥା ଉଭୟ ପକ୍ଷର ପରସ୍ପରର ଦେବ-ନିନ୍ଦାସୂଚକ ହାସ୍ୟ କୌତୁକ ଆଦିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ବାଲ୍ୟକାଳରୁ ହିଁ ଠାକୁର ଏବିଷୟ ସହିତ ଯେ ପରିଚିତ

ଥିଲେ, ତାହା କହିବା ବାହୁଲ୍ୟ । ଆହୁରି ମଧ୍ୟ ଉଭୟ ପକ୍ଷର ଶାସ୍ତ୍ର-ନିବଦ୍ଧ ସାଧନାରେ ପ୍ରବୃତ୍ତ ହୋଇ ସିଦ୍ଧିଲାଭ କରି ଠାକୁର ଯେତେବେଳେ ଉଭୟ ପନ୍ଥା ହିଁ ସମାନ ସତ୍ୟ ବୋଲି ଉପଲବ୍ଧି କଲେ, ସେତେବେଳେ ଶାକ୍ତ-ବୈଷ୍ଣବଙ୍କର ଏହି ବିଦ୍ୱେଷର କାରଣ ଯେ ଧର୍ମହୀନତାପ୍ରସୂତ ଅଭିମାନ ବା ଅହଂକାର, ଏକଥା ବୁଝିବାକୁ ତାଙ୍କର ବାକି ରହିଲା ନାହିଁ ।

**ନିଜ ପରିବାରବର୍ଗ ଭିତରେ ଏହି ବିଦ୍ୱେଷ ଦୂର କରିବା ପାଇଁ ସମସ୍ତଙ୍କୁ ଶକ୍ତି ମନ୍ତ୍ରରେ ଦୀକ୍ଷା ଗ୍ରହଣ କରାଇବା :**

ଠାକୁରଙ୍କ ପିତା ଶ୍ରୀରାମଚନ୍ଦ୍ରଙ୍କର ଉପାସକ ଥିଲେ ଏବଂ ଶ୍ରୀଶ୍ରୀରଘୁବୀର ଶିଳାକୁ ଦୈବଯୋଗରେ ଲାଭ କରି ଗୃହରେ ପ୍ରତିଷ୍ଠା କରିଥିଲେ । ଠାକୁର ଏହିପରି ବୈଷ୍ଣବ ବଂଶରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ବାଲ୍ୟକାଳରୁ ତାଙ୍କର ଶିବ ଓ ବିଷ୍ଣୁ ଉଭୟଙ୍କଠାରେ ସମାନ ଅନୁରାଗର ପରିଚୟ ମିଳିଥାଏ । ବାଲ୍ୟକାଳରେ ଥରେ ଶିବ ବେଶ ଧାରଣ କରି ତାଙ୍କର କେତେଘଣ୍ଟା ପାଇଁ ସମାଧିସ୍ଥ ହୋଇ ରହିବା କଥା କହି ତାଙ୍କର ପଡ଼ୋଶୀମାନେ ଏବେ ମଧ୍ୟ ସେହି ସ୍ଥାନ ଦେଖାଇ ଦେଇଥାଆନ୍ତି । ସେହି ବିଷୟର ପରିଚାୟକସ୍ୱରୂପ ଅନ୍ୟ ଏକ କଥା ଏଠାରେ ଉଲ୍ଲେଖ କରାଯାଇପାରେ । ଠାକୁର ନିଜ ପରିବାରବର୍ଗର ପ୍ରତ୍ୟେକଙ୍କୁ ଗୋଟିଏ ସମୟରେ ବିଷ୍ଣୁମନ୍ତ୍ର ଓ ଶକ୍ତିମନ୍ତ୍ର ଉଭୟ ମନ୍ତ୍ରରେ ଦୀକ୍ଷା ଗ୍ରହଣ କରାଇଥିଲେ । ସେମାନଙ୍କର ମନରୁ ବିଦ୍ୱେଷଭାବ ସମ୍ୟକ୍ ଦୂରୀଭୂତ କରିବା ପାଇଁ ହିଁ ଠାକୁରଙ୍କର ଏପରି ଆଚରଣ, ଏକଥା ହିଁ ଆମମାନଙ୍କର ଅନୁମିତ ହୁଏ ।

**ସାଧୁମାନଙ୍କର ଔଷଧଦେବା ପ୍ରଥାର ଉତ୍ପତ୍ତି ଓ କାଳକ୍ରମେ ସେଥିପାଇଁ ସାଧୁମାନଙ୍କର ଆଧ୍ୟାତ୍ମିକ ଅବନତି :**

ବହୁ ପ୍ରାଚୀନ ଯୁଗରେ ମହାରାଜ ଅଶୋକ ଜନସାଧାରଣଙ୍କ କଲ୍ୟାଣ ନିମିତ୍ତ ଧର୍ମ ଏବଂ ବିଦ୍ୟା ପ୍ରସାରରେ କୃତସଂକଳ୍ପ ହୋଇଥିଲେ, ଏକଥା ବର୍ତ୍ତମାନ ସମସ୍ତେ ହିଁ ଜାଣନ୍ତି । ମନୁଷ୍ୟ ଏବଂ ଗ୍ରାମ୍ୟ ପଶୁମାନଙ୍କର ଶାରୀରିକ ରୋଗ ନିବାରଣ ନିମିତ୍ତ ସେ ଚିକିତ୍ସାଳୟ, ପିଞ୍ଜରାପୋଲ ଆଦି ଭାରତର ନାନାସ୍ଥାନରେ ପ୍ରତିଷ୍ଠା କରିଥିଲେ, ଭେଷଜସମୂହର ସଂଗ୍ରହ ଓ ଚାଷକରି ସାଧାରଣ ଲୋକଙ୍କର ସହଜପ୍ରାପ୍ୟ କରାଇଥିଲେ ଏବଂ ବୌଦ୍ଧ ସାଧୁମାନଙ୍କ ସାହାଯ୍ୟରେ ଔଷଧ ଏବଂ ଜଡ଼ିବୁଟି ଦେଶ-ଦେଶାନ୍ତରରେ ପ୍ରେରଣ ଓ ପ୍ରଚାରର ବ୍ୟବସ୍ଥା କରିଥିଲେ । ସାଧୁମାନଙ୍କର ଔଷଧ ସଂଗ୍ରହ କରି ରଖିବା ବୋଧହୁଏ ଏହି ସମୟରୁ ଆରମ୍ଭ ହୋଇଥିଲା । ପୁଣି ତନ୍ତ୍ର ଯୁଗରେ ସେହି ପ୍ରଥା ବିଶେଷ ଭାବରେ ବୃଦ୍ଧି ପାଇଥିଲା । ପରବର୍ତ୍ତୀ ଯୁଗର ସଂହିତାକାରମାନେ ସାଧୁମାନଙ୍କର ଏଥିରେ ଆଧ୍ୟାତ୍ମିକ ଅବନତି ଲକ୍ଷ୍ୟ କରି ଏଥିରେ ବିଶେଷ ପ୍ରତିବାଦ କଲେ ମଧ୍ୟ ରକ୍ଷଣଶୀଳ ଭାରତରେ ସେହି

ପ୍ରଥାର ଏପର୍ଯ୍ୟନ୍ତ ଉଚ୍ଛେଦ ହୋଇ ନାହିଁ । ଦକ୍ଷିଣେଶ୍ୱରରେ ଥିବା ସମୟରେ ଏବଂ ତୀର୍ଥଭ୍ରମଣ କରିବା ବେଳେ ଠାକୁର ଅନେକ ସାଧୁସନ୍ନ୍ୟାସୀଙ୍କୁ ସେହି ଭାବରେ ପ୍ରତିଷ୍ଠା ଲାଭ କରି ଭୋଗସୁଖରେ ଚିରକାଳ ପାଇଁ ଆକୃଷ୍ଟ ହୋଇଥିବାର ଦେଖି ସାଧୁମାନଙ୍କ ଭିତରେ ମଧ୍ୟ ଧର୍ମହୀନତା ଅନୁଭବ କରିଥିଲେ, ତାହା ଆମମାନଙ୍କର ସ୍ପଷ୍ଟ ବୋଧ ହୁଏ । କାରଣ, ଠାକୁର ଆମ ଅନେକଙ୍କୁ ଅନେକ ସମୟରେ କହୁଥିଲେ, ''ଯେଉଁ ସାଧୁ ଔଷଧ ଦିଏ, ଯେଉଁ ସାଧୁ ଝଡ଼ାଫୁଙ୍କା କରେ, ଯେଉଁ ସାଧୁ ଅର୍ଥ ଗ୍ରହଣ କରେ, ଯେଉଁ ସାଧୁ ବିଭୂତି-ତିଳକର ବିଶେଷ ଆଡ଼ମ୍ବର କରେ, କଠଉ ପିନ୍ଧି ଯେପରି ସାଇନ ବୋର୍ଡ (Sign board) ମାରି ନିଜକୁ ଜଣେ ବଡ଼ ସାଧୁ ବୋଲି ଅନ୍ୟମାନଙ୍କୁ ଜଣାଏ, ସେମାନଙ୍କୁ କେବେହେଲେ ବିଶ୍ୱାସ କରିବ ନାହିଁ ।''

**କେବଳ ଭେକଧାରୀ ସାଧୁଙ୍କ ସମ୍ବନ୍ଧରେ ଠାକୁରଙ୍କର ମତ :**

ଉପରୋକ୍ତ କଥାରେ କେହି ଯେପରି ନ ଭାବନ୍ତି ଯେ, ଠାକୁର ଭଣ୍ଡ ଓ ଭ୍ରଷ୍ଟ ସାଧୁମାନଙ୍କୁ ଦେଖି ପାଶ୍ଚାତ୍ୟର ଜନସାଧାରଣଙ୍କ ପରି ସାଧୁ ସମ୍ପ୍ରଦାୟସମୂହ ଉଠାଇ ଦେବା ହିଁ ଉଚିତ୍ ବୋଲି ମନେ କରୁଥିଲେ । କାରଣ, ଠାକୁରଙ୍କୁ ଆମେ ସେହିକଥା-ପ୍ରସଙ୍ଗରେ ସମୟ ସମୟରେ କହିବା ଶୁଣିଛୁ ଯେ, ଗୋଟିଏ ଭେକଧାରୀ ସାଧାରଣ ପେଟ-ବୈରାଗୀ ଓ ଜଣେ ଚରିତ୍ରବାନ ଗୃହୀ ମଧ୍ୟରେ ତୁଳନା କଲେ ପୂର୍ବୋକ୍ତଙ୍କୁ ହିଁ ବଡ଼ କହିବାକୁ ହେବ । କାରଣ, ସେ ବ୍ୟକ୍ତି ଯୋଗ-ଯାଗ କିଛି ନ କରି କେବଳ ଚରିତ୍ରବାନ ରହି ଯଦି ଜନ୍ମଟା ଭିକ୍ଷା କରି କଟାଇ ଦିଏ, ତାହା ହେଲେ ମଧ୍ୟ ସାଧାରଣ ଗୃହୀ ବ୍ୟକ୍ତି ଅପେକ୍ଷା ଏଜନ୍ମରେ ଅଧିକ ତ୍ୟାଗ ପଥରେ ଅଗ୍ରସର ହୋଇରହିଲା । ଈଶ୍ୱରଙ୍କ ପାଇଁ ସର୍ବସ୍ୱ ତ୍ୟାଗ କରିବା ହିଁ ଯେ ଠାକୁରଙ୍କ ନିକଟରେ ବ୍ୟକ୍ତିଗତ ଚରିତ୍ରର ଓ ଅନୁଷ୍ଠାନର ପରିମାପକ ଥିଲା, ଏସମ୍ବନ୍ଧରେ ଠାକୁରଙ୍କର ଉପରୋକ୍ତ କଥାଗୁଡ଼ିକ ଅନ୍ୟତମ ଦୃଷ୍ଟାନ୍ତ ।

**ଯଥାର୍ଥ ସାଧୁମାନଙ୍କର ଜୀବନ ଯୋଗୁଁ ହିଁ ଶାସ୍ତ୍ରସମୂହ ସଜୀବ ଥାଏ :**

ଯଥାର୍ଥ ନିଷ୍ଠାବାନ ପ୍ରେମିକ ବା ଜ୍ଞାନୀସାଧୁ ଯେଉଁ ସମ୍ପ୍ରଦାୟର ହୁଅନ୍ତୁ ନା କାହିଁକି, ଠାକୁରଙ୍କ ନିକଟରେ ଯେ ବିଶେଷ ସମ୍ମାନ ପାଉଥିଲେ, ତାହାର ଦୃଷ୍ଟାନ୍ତ ଆମେ ଲୀଳାପ୍ରସଙ୍ଗରେ ଏହା ପୂର୍ବରୁ ଅନେକ ଦେଇଛୁ । ଭାରତର ସନାତନ ଧର୍ମ ଏମାନଙ୍କର ଉପଲବ୍ଧି ସହାୟରେ ହିଁ ସଜୀବ ରହିଅଛି । ଏମାନଙ୍କ ମଧ୍ୟରୁ ଯେଉଁମାନେ ଈଶ୍ୱର ଦର୍ଶନରେ ସିଦ୍ଧକାମ ହୋଇ ସର୍ବପ୍ରକାର ମାୟା ବନ୍ଧନରୁ ମୁକ୍ତିଲାଭ କରନ୍ତି, ସେମାନଙ୍କ ଦ୍ୱାରା ହିଁ ବେଦ ଇତ୍ୟାଦି ଶାସ୍ତ୍ର ପ୍ରମାଣିତ ହୋଇଥାଏ । କାରଣ, ଆପ୍ତପୁରୁଷଠାରେ ହିଁ ଯେ ବେଦର ପ୍ରକାଶ, ଏକଥା ବୈଶେଷିକାଦି ଭାରତର ସମସ୍ତ ଦର୍ଶନକାରମାନେ ହିଁ ଏକବାକ୍ୟରେ କହିଯାଇଛନ୍ତି । ଅତଏବ ଗଭୀର-

ଅନ୍ତର୍ଦୃଷ୍ଟି-ସମ୍ପନ୍ନ ଠାକୁରଙ୍କର ସେମାନଙ୍କ ସମ୍ବନ୍ଧରେ ସେହିକଥା ବୁଝି ସେମାନଙ୍କୁ ଏପରି ସମ୍ମାନ ଦେବା କିଛି ବିଚିତ୍ର କଥା ନୁହେଁ ।

## ଯଥାର୍ଥ ସାଧୁମାନଙ୍କ ଭିତରେ ମଧ୍ୟ ଏକଦେଶୀ ଭାବ ଦୃଷ୍ଟିଗୋଚର ହେବା :

ନିଜ ନିଜ ପଥରେ ନିଷ୍ଠା-ଭକ୍ତିର ସହିତ ଅଗ୍ରସର ସାଧୁମାନଙ୍କୁ ଠାକୁରେ ବିଶେଷ ପ୍ରୀତିର ଦୃଷ୍ଟିରେ ଦେଖି ସେମାନଙ୍କ ସହିତ ସ୍ୱୟଂ ସର୍ବଦା ବିଶେଷ ଆନନ୍ଦ ଅନୁଭବ କଲେ ମଧ୍ୟ ଗୋଟିଏ ବିଷୟର ଅଭାବ ସେ ସର୍ବଦା ସେମାନଙ୍କ ଭିତରେ ଦେଖିବାକୁ ପାଇ ସମୟ ସମୟରେ ଅତ୍ୟନ୍ତ ଦୁଃଖିତ ହେଉଥିଲେ । ଠାକୁରେ ଦେଖୁଥିଲେ ଯେ, ସେ ସମାନ ଅନୁରାଗରେ ସବୁ ସମ୍ପ୍ରଦାୟ ସହିତ ସମଭାବରେ ଯୋଗଦାନ କଲେ ମଧ୍ୟ ସେମାନେ ସେହିପରି କରିପାରୁ ନ ଥିଲେ । ଭକ୍ତିମାର୍ଗର ସାଧକମାନଙ୍କର ତ କଥା ନାହିଁ, ଅଦ୍ୱୈତପନ୍ଥାରେ ଅଗ୍ରସର ସନ୍ନ୍ୟାସୀ ସାଧକମାନଙ୍କ ଭିତରେ ମଧ୍ୟ ସେ ସେହିପରି ଏକଦେଶୀ ଭାବ ଦେଖିବାକୁ ପାଉଥିଲେ । ଅଦ୍ୱୈତଭୂମିର ଉଦାର ସମଭାବ ଲାଭ କରିବା ବହୁ ପୂର୍ବରୁ ହିଁ ସେମାନେ ଅନ୍ୟ ସମସ୍ତ ପନ୍ଥାର ଲୋକମାନଙ୍କୁ ହୀନ ଅଧିକାରୀ ଭାବି ସମଭାବରେ ଘୃଣା ବା ଅତିବେଶୀରେ ଏକ ପ୍ରକାର ଅହଂକୃତ କରୁଣା ଦୃଷ୍ଟିରେ ଦେଖିବା ଶିଖୁଥିଲେ । ଉଦାରବୁଦ୍ଧି ଠାକୁରଙ୍କର ଗୋଟିଏ ଲକ୍ଷ୍ୟରେ ଅଗ୍ରସର ସେହି ସମସ୍ତ ବ୍ୟକ୍ତିମାନଙ୍କର ସେହି ପ୍ରକାର ପରସ୍ପର-ବିଦ୍ୱେଷ ଭାବ ଦେଖି ଯେ ବିଶେଷ କଷ୍ଟ ହେଉଥିଲା, ଏକଥା କହିବାର ପ୍ରୟୋଜନ ନାହିଁ ଏବଂ ସେହି ଏକଦେଶୀତା ଯେ ଧର୍ମହୀନତାରୁ ଉତ୍ପନ୍ନ, ଏକଥା ବୁଝିବାକୁ ତାଙ୍କର ଆଉ ବାକି ରହୁ ନ ଥିଲା ।

## ତୀର୍ଥରେ ଧର୍ମହୀନତାର ପରିଚୟ ପାଇବା । ଆମମାନଙ୍କର ଦେଖାଶୁଣା ଓ ଠାକୁରଙ୍କର ଦେଖାଶୁଣାରେ କେତେ ପ୍ରଭେଦ :

ଦକ୍ଷିଣେଶ୍ୱରର କାଳୀମନ୍ଦିରରେ ବସି ଠାକୁର ଯେଉଁ ଧର୍ମହୀନତା ଓ ଏକଦେଶୀଭାବର ପରିଚୟ ଗୃହୀ ଏବଂ ସନ୍ନ୍ୟାସୀ ସମସ୍ତଙ୍କ ଭିତରେ ପ୍ରତିଦିନ ପାଉଥିଲେ, ତୀର୍ଥରେ ଦେବସ୍ଥାନଗୁଡ଼ିକୁ ଯାଇ ଏହାର କିଛି କମ୍ ନ ଦେଖି ବରଂ ସମଧିକ ପ୍ରଭାବ ଦେଖିବାକୁ ପାଉଥିଲେ । ମଥୁରବାବୁଙ୍କର ଦାନଗ୍ରହଣ କରିବା ସମୟରେ ବ୍ରାହ୍ମଣଗଣଙ୍କର ବିବାଦ, କାଶୀସ୍ଥ କେତେଗୁଡ଼ିଏ ତାନ୍ତ୍ରିକ ସାଧକଙ୍କର ପୂଜା ଅନୁଷ୍ଠାନ ଦେଖିବାକୁ ତାଙ୍କୁ ଆହ୍ୱାନ କରି ଜଗଦମ୍ବାଙ୍କ ପୂଜା ନାମମାତ୍ର ସମ୍ପନ୍ନ କରି କେବଳ କାରଣ-ପାନରେ ଟଳମଳ ହେବା, ଦଣ୍ଡୀ ସନ୍ନ୍ୟାସୀମାନଙ୍କର ପ୍ରତିଷ୍ଠା ଓ ନାମଯଶଲାଭ ନିମିତ୍ତ ପ୍ରାଣପଣ ପ୍ରୟାସ, ବୃନ୍ଦାବନରେ ବୈଷ୍ଣବ ବାବାଜୀମାନଙ୍କର ସାଧନା ଛଳରେ ଯୋଷିତ୍‌ସଙ୍ଗରେ କାଳଯାପନ ପ୍ରଭୃତି ସମସ୍ତ ଘଟଣାଗୁଡ଼ିକ ଠାକୁରଙ୍କର ତୀକ୍ଷ୍ଣଦୃଷ୍ଟି ସମ୍ମୁଖରେ ନିଜର ଯଥାଯଥ ରୂପ ପ୍ରକାଶ

କରି ସମାଜ ଏବଂ ଦେଶର ପ୍ରକୃତ ଅବସ୍ଥା କଥା ବୁଝିବା ପାଇଁ ତାଙ୍କୁ ସହାୟତା କରିଥିଲା । ଅବଶ୍ୟ ନିଜ ଭିତରେ ଅତି ଗଭୀର ନିର୍ବିକଳ୍ପ ଅଦ୍ୱୈତତତ୍ତ୍ୱର ଉପଲବ୍ଧି ନ ଥିଲେ କେବଳ ସେହି ସମସ୍ତ ଘଟଣା ଦେଖିବା ସେହି ବିଷୟରେ ବିଶେଷ ସହାୟତା କରିପାରି ନ ଥାନ୍ତା । ସେହି ଭାବୋପଲବ୍ଧି ଏହା ପୂର୍ବରୁ କରିଥିବାରୁ ହିଁ ଠାକୁରଙ୍କ ମନରେ ବ୍ୟକ୍ତିଗତ ଓ ସମାଜଗତ ମନୁଷ୍ୟଜୀବନର ଚରମ ଲକ୍ଷ୍ୟ ସମ୍ବନ୍ଧରେ ଧାରଣା ସ୍ଥିର ଥିଲା ଏବଂ ତାହା ସହିତ ତୁଳନାରେ ସମସ୍ତ ବିଷୟ ଧରିପାରିବା ଓ ବୁଝିବା ସହଜ ହୋଇଥିଲା । ଅତଏବ ଯଥାର୍ଥ ଉନ୍ନତି, ସଭ୍ୟତା, ଧର୍ମ, ଜ୍ଞାନ, ଭକ୍ତି, ନିଷ୍ଠା, ଯୋଗ, କର୍ମ ପ୍ରଭୃତି ପ୍ରେରକଭାବସମୂହ କେଉଁ ଲକ୍ଷ୍ୟରେ ମାନବକୁ ଅଗ୍ରସର କରାଉଛି, ଅଥବା ଏମାନଙ୍କର ପରିସମାପ୍ତିରେ ମାନବ କେଉଁଠାକୁ ଯାଇ କିପରି ଅବସ୍ଥାରେ ଛିଡ଼ା ହେବ, ସେବିଷୟରେ ନିଃସଂଶୟଭାବରେ ଜାଣିଥିବା କାରଣରୁ ହିଁ ଠାକୁର ସାଧାରଣ ଭାବଭୂମିରେ ଥିବାବେଳେ ବ୍ୟକ୍ତିଗତ ଏବଂ ସମାଜଗତ ଜୀବନର ଦୈନନ୍ଦିନ ଘଟଣାବଳୀକୁ ସେହିରୂପରେ ଦେଖିବା ଓ ଆଲୋଚନା କରି ସମସ୍ତ ବିଷୟର ସତ୍ୟାସତ୍ୟ-ନିର୍ଦ୍ଧାରଣ କରିବାରେ ତାଙ୍କୁ ସହାୟତା କରିଥିଲା । ବୁଝୁ ନାହଁ—ଯଥାର୍ଥ ସାଧୁତାର ଜ୍ଞାନ ନ ଥିଲେ ସେ କେଉଁ ସାଧୁ କେତେଦୂର ଅଗ୍ରସର ହୋଇଛନ୍ତି ତାହା ଜାଣୁଥିଲେ କିପରି ? ତୀର୍ଥରେ ଓ ଦେବତାଙ୍କ ମୂର୍ତ୍ତିରେ ବାସ୍ତବରେ ଯେ ଧର୍ମଭାବ ବହୁଲୋକଙ୍କର ଚିନ୍ତାଶକ୍ତି-ସହାୟରେ ଘନୀଭୂତ ହୋଇ ପ୍ରକାଶିତ ରହିଅଛି, ଏକଥା ପୂର୍ବରୁ ନିଃସଂଶୟ ରୂପରେ ନ ଦେଖିଲେ ମହାସତ୍ୟନିଷ୍ଠ ଠାକୁର ଜନସାଧାରଣଙ୍କୁ ତୀର୍ଥାଟନ ଓ ସାକାର ଉପାସନାରେ ଅତି ଦୃଢ଼ତାର ସହିତ ପ୍ରୋତ୍ସାହିତ କରୁଥିଲେ କିପରି ? ଅଥବା ନାନା ଧର୍ମସମୂହର କେଉଁ ଦିଗକୁ ଗତି ଏବଂ କେଉଁଠାରେ ପରିସମାପ୍ତି ତାହା ଜଣା ନ ଥିଲେ ଏସମସ୍ତର ଏକଦେଶୀ ଭାବ ଯେ ଦୂଷଣୀୟ, ଏକଥା ଧରୁଥିଲେ କିପରି ? ଆମେମାନେ ମଧ୍ୟ ପ୍ରତିଦିନ ସାଧୁ, ତୀର୍ଥ, ଦେବାଦେବୀଙ୍କର ମୂର୍ତ୍ତି ପ୍ରଭୃତି ଦେଖୁ, ଧର୍ମ ଓ ଶାସ୍ତ୍ରମତସକଳର ଅନନ୍ତ କୋଳାହଳ ଶୁଣି ବଧିର ହେଉ, ବୁଦ୍ଧିକୌଶଳ ଏବଂ ବାକ୍ ବିତଣ୍ଡାରେ କେତେବେଳେ ଏହି ମତଟି, କେତେବେଳେ ସେହି ମତଟି ସତ୍ୟ ବୋଲି ମନେକରୁ, ଜୀବନର ଦୈନନ୍ଦିନ ଘଟଣାବଳୀ ପର୍ଯ୍ୟାଲୋଚନା କରି ମାନବର ଲକ୍ଷ୍ୟ କେତେବେଳେ ଏହା କେତେବେଳେ ତାହା ହେବା ଉଚିତ୍ ବୋଲି ମନେକରୁ; ଅଥଚ କୌଣସି ବିଷୟରେ ଗୋଟିଏ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ନ ପାରି ନିରନ୍ତର ସନ୍ଦେହରେ ଦୋଳାୟମାନ ରହୁ ଏବଂ କେବେ କେବେ ନାସ୍ତିକ ହୋଇ ଭୋଗସୁଖ ଲାଭ ହିଁ ଜୀବନର ସାରକଥା ଭାବି ନିଶ୍ଚିନ୍ତ ହୋଇ ବସିରହୁ ! ଆମର ଏପରି ଦେଖାଶୁଣା, ଆଜି ଗୋଟିଏ ପ୍ରକାର, କାଲି ଅନ୍ୟ ପ୍ରକାର ସିଦ୍ଧାନ୍ତ, କ'ଣ ଆମମାନଙ୍କୁ ସହାୟତା କରେ ? ଠାକୁରଙ୍କର ପୂର୍ବୋକ୍ତରୂପକ ଅଦ୍ଭୁତ ଗଠନ ଓ ସ୍ୱଭାବବିଶିଷ୍ଟ ମନ ଥିଲା ବୋଲି ସେ ଯାହା ଥରେ ମାତ୍ର ଦେଖି ଧରିବାକୁ ଓ

ବୁଝିବାକୁ ସକ୍ଷମ ହେଉଥିଲେ, ଆମର ପଶୁଭାବାପନ୍ନ ମନ ଶତଜନ୍ମରେ ମଧ୍ୟ ତାହା ଜଗଦ୍‌ଗୁରୁ ମହାପୁରୁଷମାନଙ୍କର ସହାୟତା ବ୍ୟତୀତ ବୁଝିପାରିବ କି ନାହିଁ, କହି ହେବ ନାହିଁ । ଜାତିଗତ ସୌସାଦୃଶ୍ୟ ଉଭୟରେ ସାମାନ୍ୟଭାବରେ ଲକ୍ଷିତ ହେଲେ ମଧ୍ୟ ଠାକୁରଙ୍କର ମନ ଓ ଆମର ମନ ମଧ୍ୟରେ ଯେ କେତେ ପ୍ରଭେଦ, ତାହା ପ୍ରତି କାର୍ଯ୍ୟକଳାପରେ ଭଲ ଭାବରେ ଅନୁମିତ ହୁଏ । ଭକ୍ତିଶାସ୍ତ୍ରରେ ଏଥିପାଇଁ ହିଁ ଅବତାରପୁରୁଷମାନଙ୍କର ମନ ସାଧାରଣ ଅପେକ୍ଷା ଭିନ୍ନ ଉପାଦାନରେ, ରଜଃତମ ରହିତ ଶୁଦ୍ଧସତ୍ତ୍ୱଗୁଣରେ ଗଠିତ ବୋଲି କୁହାଯାଇଅଛି ।

### ଠାକୁରଙ୍କର ନିଜ ଉଦାର ମତର ଅନୁଭବ :

ଏହିରୂପରେ ଦିବ୍ୟ ଓ ସାଧାରଣ ଉଭୟ ଭାବଭୂମିରୁ ଦର୍ଶନ କରି ହିଁ ଦେଶର ବର୍ତ୍ତମାନ ଧର୍ମହୀନତା, ପ୍ରଚଳିତ ଧର୍ମମତସକଳର ଏକଦେଶୀତା, ପ୍ରତ୍ୟେକ ଧର୍ମମତ ସମଭାବରେ ସତ୍ୟ ହେଲେ ମଧ୍ୟ ଓ ବିଭିନ୍ନ ପ୍ରକୃତିବିଶିଷ୍ଟ ମାନବକୁ ଭିନ୍ନ ଭିନ୍ନ ପଥ ଦେଇ ଶେଷରେ ଗୋଟିଏ ଲକ୍ଷ୍ୟରେ ପହଞ୍ଚାଇଦେଲେ ମଧ୍ୟ ପୂର୍ବ ପୂର୍ବ ଆଚାର୍ଯ୍ୟଗଣଙ୍କର ସେବିଷୟରେ ଅନଭିଜ୍ଞତା ବା ଦେଶକାଳ-ପାତ୍ର-ବିବେଚନାରେ ଅପ୍ରଚାର ଇତ୍ୟାଦି—ଅଭିନବ ମହାସତ୍ୟଗୁଡ଼ିକର ଧାରଣା ଠାକୁର ତୀର୍ଥାଦିଦର୍ଶନରୁ ହିଁ ବିଶେଷରୂପରେ ଅନୁଭବ କରିଥିଲେ । ଆହୁରି ମଧ୍ୟ ଅନୁଭବ କରିଥିଲେ ଯେ, ଏକଦେଶୀତାର ଗନ୍ଧମାତ୍ରରହିତ ବିଦ୍ୱେଷସମ୍ପର୍କଶୂନ୍ୟ ତାଙ୍କର ନିଜର ଭାବ ଜଗତ ପକ୍ଷରେ ଏକ ଅଦୃଷ୍ଟପୂର୍ବ ଅବଦାନ ! ଏହା ତାଙ୍କର ନିଜସ୍ୱ ସମ୍ପତ୍ତି ! ତାଙ୍କୁ ହିଁ ଏହା ଜଗତକୁ ଦାନ କରିବାକୁ ହେବ !

### ''ସର୍ବ ଧର୍ମ ହିଁ ସତ୍ୟ—ଯେତେ ମତ ସେତେ ପଥ''—ଏକଥା ଜଗତରେ ସେ ହିଁ ଯେ ପ୍ରଥମେ ଅନୁଭବ କରିଛନ୍ତି, ଠାକୁର ଏହା ବୁଝିପାରିବା :

''ସର୍ବ ଧର୍ମ ମତ ହିଁ ସତ୍ୟ—ଯେତେ ମତ ସେତେ ପଥ''—ଏହି ମହଦୁଦାର କଥା ଜଗତ ଠାକୁରଙ୍କ ଶ୍ରୀମୁଖରୁ ହିଁ ପ୍ରଥମ ଶୁଣି ଯେ ମୋହିତ ହୋଇଥିଲା, ଏବିଷୟ ଆମେମାନେ ଏବେ ଜାଣିଲୁ । ପୂର୍ବ ପୂର୍ବ ଯୁଗରେ ଋଷି ଓ ଧର୍ମାଚାର୍ଯ୍ୟଗଣଙ୍କ କାହା କାହାର ଭିତରେ ଏପରି ଉଦାରଭାବର ଅନ୍ତତଃ ଆଂଶିକ ବିକାଶ ତ ଦେଖାଯାଇଛି ବୋଲି କେହି କେହି ଆପତ୍ତି କରିପାରନ୍ତି, କିନ୍ତୁ ଟିକିଏ ଗଭୀରତାର ସହିତ ଦେଖିଲେ ବୁଝାଯାଏ, ସେହି ଆଚାର୍ଯ୍ୟଗଣ ନିଜ ନିଜ ବୁଦ୍ଧିସହାୟରେ ପ୍ରତ୍ୟେକ ମତର କେତେକାଂଶ କାଣ୍ଟଛାଣ୍ଟ କରି ସେହି ସକଳର ଯେତିକି ସାରାଂଶ ବୋଲି ସ୍ୱୟଂ ବୁଝୁଥିଲେ ସେହି ସମସ୍ତ ମଧ୍ୟରେ ହିଁ ଏକ ସମନ୍ୱୟର ଭାବ ଟଣାଟଣି କରି ଦେଖିବାର ଓ ଦେଖାଇବାର ପ୍ରୟାସ କରିଛନ୍ତି । ଠାକୁର ଯେପରି ପ୍ରତ୍ୟେକ ମତର କିଛିମାତ୍ର ତ୍ୟାଗ ନ କରି ସମାନ ଅନୁରାଗରେ

ନିଜ ଜୀବନରେ ସେଗୁଡ଼ିକର ପ୍ରତ୍ୟେକଟିର ସାଧନା କରି ସେହି ମତ-ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ପହଞ୍ଚି ସେହି ବିଷୟର ପ୍ରତ୍ୟକ୍ଷ କରିଥିଲେ, ସେପରି ଭାବରେ ପୂର୍ବର କୌଣସି ଆଚାର୍ଯ୍ୟ ସେହି ସତ୍ୟ ଉପଲବ୍ଧି କରି ନାହାନ୍ତି । ଯାହାହେଉ, ସେହି ବିଷୟର ବିସ୍ତୃତ ଆଲୋଚନା ଏଠାରେ କରିବା ଆମର ଉଦ୍ଦେଶ୍ୟ ନୁହେଁ । ଆମେ କେବଳ ଏହିକଥା ହିଁ ପାଠକଙ୍କୁ ଏଠାରେ କହିବାକୁ ଚାହୁଁ ଯେ, ସେହି ଉଦାରଭାବର ପରିଚୟ ଠାକୁରଙ୍କର ଜୀବନରେ ଆମେ ବାଲ୍ୟକାଳରୁ ହିଁ ପାଇଥାଉ । ତେବେ ତୀର୍ଥଦର୍ଶନ କରି ଆସିବା ପୂର୍ବ ପର୍ଯ୍ୟନ୍ତ ଠାକୁର ଏକଥାଟି ନିଶ୍ଚିତ ରୂପେ ଧରିପାରି ନ ଥିଲେ ଯେ, ଆଧ୍ୟାତ୍ମିକ ରାଜ୍ୟରେ ସେହିପରି ଉଦାରତା ଏକମାତ୍ର ସେ ହିଁ ଉପଲବ୍ଧି କରିଛନ୍ତି; ଏବଂ ପୂର୍ବ ପୂର୍ବ ଋଷି ଆଚାର୍ଯ୍ୟ ବା ଅବତାରପୁରୁଷମାନେ ଗୋଟିଏ ଗୋଟିଏ ବିଶେଷ ପଥ ଅବଲମ୍ବନ କରି କିପରି ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ହୁଏ, ସେବିଷୟରେ ଜନସାଧାରଣରେ ପ୍ରଚାର କରିଥିଲେ ମଧ୍ୟ ଭିନ୍ନ ଭିନ୍ନ ପଥ ଦେଇ ଯେ ଏକ ଲକ୍ଷ୍ୟରେ ପହଞ୍ଚି ହେବ, ସେକଥା କେହି ଏପର୍ଯ୍ୟନ୍ତ ପ୍ରଚାର କରିନାହାନ୍ତି । ଠାକୁର ବୁଝିଥିଲେ ସାଧନା କାଳରେ ସେ ସର୍ବାନ୍ତଃକରଣରେ ସମସ୍ତ ପ୍ରକାର କାମନା-ବାସନା ଶ୍ରୀଶ୍ରୀଜଗଦମ୍ବାଙ୍କ ପାଦପଦ୍ମରେ ସମର୍ପଣ କରି ସଂସାରକୁ, ମାୟାର ରାଜ୍ୟରେ ଆଉ କେବେ ଫେରିବେ ନାହିଁ ବୋଲି ଦୃଢ଼-ସଂକଳ୍ପ କରି ଅଦ୍ୱୈତଭାବ-ଭୂମିରେ ଅବସ୍ଥାନ କଲେ ମଧ୍ୟ ଜଗଦମ୍ବା ତାଙ୍କୁ ଯେ ତାହା କରିବାକୁ ଦେଇ ନାହାନ୍ତି, ନାନା ଅସମ୍ଭାବିତ ଉପାୟରେ ତାଙ୍କର ଶରୀରକୁ ଏବେ ମଧ୍ୟ ରଖିଛନ୍ତି—ତାହାର କାରଣ ଏହି କାର୍ଯ୍ୟ ସମ୍ପାଦନ କରିବା ପାଇଁ—ଯେତେଦୂର ସମ୍ଭବ ଏକଦେଶୀଭାବ ଜଗତରୁ ଦୂର କରିବା ପାଇଁ ଏବଂ ଜଗତ ମଧ୍ୟ ସେହି ଅଶେଷ କଲ୍ୟାଣକର ଭାବ ଗ୍ରହଣ କରିବା ନିମିତ୍ତ ତୃଷ୍ଣାର୍ତ୍ତ ହୋଇ ରହିଅଛି । ପୂର୍ବୋକ୍ତ ସିଦ୍ଧାନ୍ତରେ କିପରି ଆମେ ଉପନୀତ ହୋଇଅଛୁ, ତାହା ଆମେ ବର୍ତ୍ତମାନ ପାଠକଙ୍କୁ ଅବଗତ କରାଇବା ପାଇଁ ଚେଷ୍ଟା କରିବୁ ।

**ଜଗତକୁ ଧର୍ମଦାନ କରିବାକୁ ହେବ ବୋଲି ହିଁ ଜଗଦମ୍ବା ତାହାଙ୍କୁ ଅଦ୍ଭୁତ-ଶକ୍ତିସମ୍ପନ୍ନ କରିଛନ୍ତି, ଠାକୁରଙ୍କର ଏହା ଅନୁଭବ କରିବା :**

ଧର୍ମବସ୍ତୁର ଉପଲବ୍ଧି ଯେ ବାକ୍ୟର ବିଷୟ ନୁହେଁ—ଅନୁଷ୍ଠାନସାପେକ୍ଷ, ସେହିକଥା ଠାକୁରଙ୍କର ବାଲ୍ୟାବଧି ଧାରଣା ଥିଲା । ପୁଣି ସେହି ବସ୍ତୁ ଯେ ବହୁକାଳ ଅନୁଷ୍ଠାନରେ ସଞ୍ଚିତ କରି ଅନ୍ୟମାନଙ୍କୁ ସଂକ୍ରମିତ କରି ହୁଏ ବା ଅନ୍ୟମାନଙ୍କୁ ଯଥାର୍ଥରେ ପ୍ରଦାନ କରି ହୁଏ ଏହା ମଧ୍ୟ ଠାକୁର ସାଧନ କାଳରେ ବେଳେ ବେଳେ, ଏବଂ ସିଦ୍ଧିଲାଭ କରିବା ପରେ ଅନେକ ସମୟରେ ଅନୁଭବ କରୁଥିଲେ । ସେକଥା ଆମେ ଏହା ପୂର୍ବରୁ[୧] ଅନେକ ସ୍ଥାନରେ ଆଭାସ ଦେଇଅଛୁ ।

୧. ଗୁରୁଭାବ - ପୂର୍ବାର୍ଦ୍ଧର ୬ଷ୍ଠ ଓ ୭ମ ଅଧ୍ୟାୟ ଦେଖ ।

ଜଗଦମ୍ବା କୃପାବଶତଃ ତାଙ୍କଠାରେ ଯେ ସେହି ଶକ୍ତି ବିଶେଷଭାବରେ ସଞ୍ଚିତ କରି ରଖିଥିଲେ ଏବଂ ମଥୁରବାବୁପ୍ରମୁଖ ବିଶେଷ ବିଶେଷ ବ୍ୟକ୍ତିମାନଙ୍କ ପ୍ରତି କୃପା କରି ତାଙ୍କୁ ବେଳେ ବେଳେ ସମ୍ପୂର୍ଣ୍ଣ ଆତ୍ମହରା କରି ସେହି ଶକ୍ତି ବ୍ୟବହାର କରୁଥିଲେ, ସେବିଷୟରେ ପ୍ରମାଣ ମଧ୍ୟ ଠାକୁର ଏପର୍ଯ୍ୟନ୍ତ ଅନେକ ସମୟରେ ନିଜ ଜୀବନରେ ଅନୁଭବ କରିଥିଲେ । ସେଥିରେ ତାଙ୍କର ଏହା ପୂର୍ବରୁ ଏହି ଧାରଣା ହୋଇଥିଲା ଯେ, ଶ୍ରୀଶ୍ରୀଜଗନ୍ମାତା ତାଙ୍କର ଶରୀର ଓ ମନକୁ ଯନ୍ତ୍ରସ୍ୱରୂପ କରି କେତେଗୁଡ଼ିଏ ଭାଗ୍ୟବାନଙ୍କୁ ହିଁ କୃପା କରିବେ — କିପରି ଭାବରେ ଓ କେବେ ଏହି କୃପା କରିବେ, ତାହା ସେ ମଧ୍ୟ ବୁଝିପାରୁ ନ ଥିଲେ ଏବଂ ଶିଶୁ ପରି ମାତାଙ୍କ ଉପରେ ନିଃସଙ୍କୋଚ ଭାବରେ ନିର୍ଭରଶୀଳ ଠାକୁରଙ୍କ ମନ ତାହା ବୁଝିବାକୁ ଚେଷ୍ଟା ମଧ୍ୟ କରି ନ ଥିଲା । କିନ୍ତୁ ଭାରତକୁ ଧର୍ମଦାନ କରିବାକୁ ହେବ, ଜଗତରେ ଧର୍ମବନ୍ୟା ଖରସ୍ରୋତରେ ପ୍ରବାହିତ କରିବାକୁ ହେବ, ଏକଥା ତାଙ୍କ ମନରେ ସ୍ୱପ୍ନରେ ମଧ୍ୟ ଉଦିତ ହୋଇ ନ ଥିଲା । ଏବେଠାରୁ ଜଗଦମ୍ବା ତାଙ୍କର ଶରୀର ଓ ମନକୁ ଆଶ୍ରୟକରି ଏହି ନୂତନ ଲୀଳା ଯେ ଆରମ୍ଭ କରୁଛନ୍ତି, ଏକଥା ଠାକୁର ପ୍ରାଣର ସହିତ ଅନୁଭବ କରିବାକୁ ଲାଗିଲେ । କିନ୍ତୁ କଲେ ମଧ୍ୟ ଉପାୟ କ'ଣ ? ଜଗଦମ୍ବା କେଉଁ ପଥ ଦେଇ କିପରି ଭାବରେ କେଉଁଆଡ଼େ ନେଇଯାଉଛନ୍ତି, ତାହା ବୁଝିବାକୁ ନ ଦେଲେ ସିଏ ବା କ'ଣ କରିବେ ? 'ମା ମୋର, ମୁଁ ମା'ର' — ଏହି କଥା କହି ସତକୁ ସତ ସେ ଚିରଦିନ ପାଇଁ ଜଗଦମ୍ବାଙ୍କର ବାଳକ ହୋଇଯାଇଛନ୍ତି ! ମା'ଙ୍କର ଇଚ୍ଛା ବ୍ୟତୀତ ତାଙ୍କର ଯେ ବାସ୍ତରେ ଅପର କୌଣସି ଇଚ୍ଛା ନ ଥିଲା ! ଗୋଟିଏ ଇଚ୍ଛା ଯାହା ସମୟ ସମୟରେ ଉଦିତ ହେଉଥିଲା — ମା'କୁ ନାନା ଭାବରେ ନାନା ପଥଦେଇ ଜାଣିବେ, ତାହା ମଧ୍ୟ ଯେ ସେହି ମା' ବିଭିନ୍ନ ସମୟରେ ତାଙ୍କ ମନରେ ଉତ୍‌ଥିତ କରାଉଥିଲେ ଏହି କଥା ମଧ୍ୟ ମା' ତାହାଙ୍କୁ ପୂର୍ବରୁ ସ୍ପଷ୍ଟଭାବରେ ବୁଝାଇ ଦେଇଥିଲେ । ଅତଏବ ବର୍ତ୍ତମାନର ଅଭିନବ ଅନୁଭବରେ ଜଗଦମ୍ବାଙ୍କର ବାଳକ ସାନନ୍ଦରେ ମା'ଙ୍କର ମୁହଁକୁ ଚାହିଁ ରହିଲେ ଏବଂ ଜଗନ୍ମାତା ପୂର୍ବପରି ଏବେ ମଧ୍ୟ ତାଙ୍କୁ ଧରି ଖେଳିବାକୁ ଲାଗିଲେ ।

**ଆମମାନଙ୍କ ପରି ଅହଂକାରର ବଶବର୍ତ୍ତୀ ହୋଇ ଠାକୁର ଆଚାର୍ଯ୍ୟ–ପଦବୀ ଗ୍ରହଣ କରି ନାହାନ୍ତି :**

ତୀର୍ଥାଦିଦର୍ଶନରେ ପୂର୍ବୋକ୍ତ ସତ୍ୟସମୂହର ଅନୁଭବରେ ଠାକୁର ଯେ ଆମମାନଙ୍କ ପରି ଅହଂକାରର ବଶବର୍ତ୍ତୀ ହୋଇ ଆଚାର୍ଯ୍ୟପଦବୀ ଗ୍ରହଣ କରି ନ ଥିଲେ ଏକଥା ଆମେ ଦିବ୍ୟପ୍ରେମିକା ତପସ୍ୱିନୀ ଗଙ୍ଗାମାତାଙ୍କ ସହିତ

ଶ୍ରୀବୃନ୍ଦାବନରେ ତାଙ୍କର ଜୀବନର ଅବଶିଷ୍ଟ ସମୟ କଟାଇ ଦେବାର ଇଚ୍ଛାରୁ ହିଁ ବେଶ୍ ବୁଝିପାରୁ । 'ମା'ଙ୍କର କାମ ମା' କରିବେ, ମୁଁ ଜଗତର କାର୍ଯ୍ୟ କରିବାକୁ ଲୋକଶିକ୍ଷା ଦେବାକୁ କିଏ ?' —ଏହି ଭାବଟି ଠାକୁରଙ୍କ ମନରେ ଆଜୀବନ ଯେ କେତେ ବଦ୍ଧମୂଳ ହୋଇଥିଲା, ତାହା ଆମେ କଳ୍ପନାରେ ମଧ୍ୟ ବୁଝିପାରିବୁ ନାହିଁ । କିନ୍ତୁ ସେହିପରି ହେବାରୁ ତାଙ୍କର ଜଗଦମ୍ବାଙ୍କ କାର୍ଯ୍ୟର ଯଥାର୍ଥ ଯନ୍ତ୍ରସ୍ୱରୂପ ହେବା, ସେହିପରି ହେବାରୁ ହିଁ ତାଙ୍କର ଭାବମୁଖରେ ନିରନ୍ତର ସ୍ଥିତି, ସେପରି ହେବାରେ ହିଁ ତାଙ୍କଠାରେ ଶ୍ରୀଗୁରୁଭାବର ପ୍ରକାଶ ଏବଂ ସେପରି ହେବାରେ ହିଁ ତାଙ୍କ ମନରେ ସେହି ଗୁରୁଭାବ ଘନୀଭୂତ ହୋଇ ଏକ ଅପୂର୍ବ ଅଭିନବ ଆକାର ଧାରଣ କରି ପୂର୍ବୋକ୍ତ ରୂପରେ ପ୍ରକାଶ ପାଇବା ! ଏତେଦିନ ଗୁରୁଭାବର ଆବେଶ ସମୟରେ ଠାକୁର ଆତ୍ମହରା ହୋଇ ତାଙ୍କର ଶରୀର-ମନ ଆଶ୍ରୟରେ ଯେଉଁ କାର୍ଯ୍ୟ ହେଉଥିଲା ତାହା ନିଷ୍ପନ୍ନ ହେଲା ପରେ ସେ ତାହା ବୁଝିପାରୁଥିଲେ । ବର୍ତ୍ତମାନ ତାଙ୍କର ଶରୀର-ମନ ଏହି ଭାବର ନିରନ୍ତର ଧାରଣ ଓ ପ୍ରକାଶରେ ଅଭ୍ୟସ୍ତ ହୋଇ ତାହା ତାଙ୍କର ସହଜ ସ୍ୱାଭାବିକ ଅବସ୍ଥା ହୋଇଯିବାରୁ, ସେ ନ ଚାହିଁଲେ ମଧ୍ୟ, ତାଙ୍କୁ ଯଥାର୍ଥ ଆଚାର୍ଯ୍ୟ ପଦବୀରେ ପ୍ରତିଷ୍ଠିତ କରି ରଖିଲା । ପୂର୍ବରୁ ଦୀନସାଧକ ବା ବାଳକଭାବ ହିଁ ଠାକୁରଙ୍କ ମନର ସହଜ ଅବସ୍ଥା ଥିଲା; ଏହିଭାବର ଅବଲମ୍ବନରେ ହିଁ ସେ ଅନେକ କାଳ ଅବସ୍ଥିତ କରୁଥିଲେ; ଏବଂ ଗୁରୁଭାବର ପ୍ରକାଶ ତାଙ୍କଠାରେ ସ୍ୱଳ୍ପକାଳ ହିଁ ହେଉଥିଲା । ଏବେ ଏହାର ବିପରୀତ ହୋଇ ଗୁରୁଭାବରେ ହିଁ ଅଧିକ କାଳ ଅବସ୍ଥିତି ଏବଂ ଦୀନସାଧକ ବା ବାଳକ-ଭାବ ତାଙ୍କଠାରେ ଅଳ୍ପ ସମୟ ରହିବାକୁ ଲାଗିଲା ।

## ସେହି ବିଷୟରେ ପ୍ରମାଣ—ଭାବମୁଖରେ ଠାକୁରଙ୍କର ଜଗଦମ୍ବାଙ୍କ ସହିତ କଳହ :

ଅହଂକୃତ ହୋଇ ଆଚାର୍ଯ୍ୟ ପଦବୀଗ୍ରହଣ ଯେ ଠାକୁରଙ୍କ ମନ ନିକଟରେ ଏକପ୍ରକାର ଅସମ୍ଭବ ଥିଲା ଏହାର ପରିଚୟ ଆମେ ଅନେକ ଦିନ ଠାକୁରଙ୍କର ଭାବାବେଶରେ ଜଗଦମ୍ବାଙ୍କ ସହିତ ବାଳକ ସଦୃଶ କଳହ ସମୟରେ ପାଇଛୁ । ପ୍ରସ୍ଫୁଟିତ କମଳର ସୌରଭରେ ମଧୁକରସମୂହ ପରି ଠାକୁରଙ୍କ ଆଧ୍ୟାତ୍ମିକ ପ୍ରକାଶରେ ଆକୃଷ୍ଟ ହୋଇ ଦକ୍ଷିଣେଶ୍ୱରରେ ଯେତେବେଳେ ବହୁଲୋକଙ୍କର ସମାବେଶ ହେଉଥିଲା ସେତେବେଳେ ଦିନେ ଆମେ ଦେଖିଲୁ ଯେ ଠାକୁର ଭାବାବସ୍ଥାରେ ମା'ଙ୍କ ସହିତ କଥା ହେଉଛନ୍ତି । କହୁଛନ୍ତି, ''କ'ଣ କରୁଛୁ ? ଏତେ ଲୋକଙ୍କର ଭିଡ଼ କାହିଁକି କରୁଛୁ ? (ମୋର) ଗାଧୋଇବାର ଖାଇବାର ସମୟ ନାହିଁ ! (ଏସମୟରେ ଠାକୁରଙ୍କ ଗଳାରେ ବେଦନା ହେଉଥାଏ । ନିଜର ଶରୀରକୁ

ଲକ୍ଷ୍ୟକରି) ଏହାତ ଭଙ୍ଗା ଢୋଲ ! ଏତେ ବଜାଇଲେ କେଉଁଦିନ ଫାଟିଯିବ ଯେ ! ସେତେବେଳେ କ'ଣ କରିବୁ ?''

### ସେହି ବିଷୟରେ ଦ୍ୱିତୀୟ ଦୃଷ୍ଟାନ୍ତ :

ପୁଣି ଦିନେ ଦକ୍ଷିଣେଶ୍ୱରରେ ଆମେ ତାଙ୍କ ନିକଟରେ ବସିଛୁ । ବୋଧହୁଏ ୧୮୮୪ ମସିହାର ଅକ୍ଟୋବର ମାସ । ଏହାର କିଛିଦିନ ପୂର୍ବରୁ ଶ୍ରୀଯୁକ୍ତ ପ୍ରତାପ ହାଜରାଙ୍କର ମା'ଙ୍କର ପୀଡ଼ା ଖବର ଆସିବାରୁ ଠାକୁର ତାଙ୍କୁ ବହୁତ ବୁଝାଇ ମାତାଙ୍କ ସେବା କରିବା ପାଇଁ ଦେଶକୁ ପଠାଇଥିଲେ, ସେଦିନ ମଧ ଆମେ ସେଠାରେ ଥିଲୁ । ଆଜି ସମ୍ବାଦ ମିଳିଛି ଯେ ପ୍ରତାପଚନ୍ଦ୍ର ନିଜ ଗ୍ରାମକୁ ନ ଯାଇ ଦେଓଘର ବୈଦ୍ୟନାଥକୁ ଯାଇଛନ୍ତି । ଏହା ଶୁଣି ଠାକୁର ଟିକିଏ ବିରକ୍ତ ହେଲେ । ଏକଥା ସେକଥା ପରେ ଠାକୁର ଆମକୁ ଏକ ଗୀତ ଗାଇବାକୁ କହିଲେ ଏବଂ କିଛିକ୍ଷଣ ପରେ ଠାକୁରଙ୍କ ଭାବାବେଶ ହେଲା । ସେଦିନ ମଧ ଠାକୁର ସେହି ଭାବାବେଶରେ ଜଗଦମ୍ବାଙ୍କ ସହିତ ବାଳକ ପରି ବିବାଦ ଆରମ୍ଭ କରିଦେଲେ । କହିଲେ, ''ଏପରି ସବୁ ଅବାଗିଆ ଲୋକଙ୍କୁ ଏଠାକୁ କାହିଁକି ଆଣୁଛୁ ? (ଟିକିଏ ଚୁପ୍ ରହି) ମୁଁ ଏତେ ପାରିବି ନାହିଁ । ଏକ ସେର ଦୁଧରେ ଅଧପାଏ-ପାଏ ଜଳ ରହୁ—ତାହା ନ ହୋଇ ଏକସେର ଦୁଧରେ ପାଞ୍ଚ ସେର ଜଳ ! ଚୁଲ୍ଲିରେ କାଠ ଠେଲି ଠେଲି ଧୂଆଁରେ ଆଖି ଜଳିଗଲା ! ତୋର ଯଦି ଇଚ୍ଛା ହୁଏ ତୁ କର । ମୁଁ ଏତେ କାଠ ଠେଲିପାରିବି ନାହିଁ । ଏପରି ଲୋକଙ୍କୁ ଆଣିବୁ ନାହିଁ ।'' କାହାକୁ ଲକ୍ଷ୍ୟ କରି ଠାକୁର ଏସବୁ ମା'ଙ୍କୁ କହୁଛନ୍ତି, ତାଙ୍କର କି ଦୂରଦୃଷ୍ଟି— ଏକଥା ଭାବୁ ଭାବୁ ଆମେ ଭୟରେ ତଥା ବିସ୍ମୟରେ ଅଭିଭୂତ ହୋଇ ସ୍ଥିର ଭାବରେ ବସିରହିଲୁ ! ମାଙ୍କ ସହିତ ଏପରି କଳି ତାଙ୍କର ପ୍ରତିଦିନ ହେଉଥିଲା; ସେଥିରୁ ଦେଖାଯାଉଥିଲା ଯେ, ଯେଉଁ ଆଚାର୍ଯ୍ୟ ପଦବୀର ସମ୍ମାନ ପାଇଁ ସମସ୍ତେ ଲାଳାୟିତ, ଠାକୁର ତାହାକୁ ନିତାନ୍ତ ଅକିଞ୍ଚିତ୍କର ଜ୍ଞାନରେ ମା'ଙ୍କୁ ପ୍ରତିଦିନ ତାଙ୍କ ନିକଟରୁ ତାହା ଫେରାଇ ନେବାକୁ କହୁଛନ୍ତି ।

### ଠାକୁରଙ୍କର ଅନୁଭବ—''ମୁଁ ସରକାରୀ ଲୋକ—ଜଗଦମ୍ବାଙ୍କ ଜମିଦାରୀର ଯେଉଁଠାରେ ଯେତେବେଳେ ଗୋଳମାଳ ହେବ ସେତେବେଳେ ହିଁ ମୋତେ ସେଠାକୁ ଏହା ବନ୍ଦ କରିବାକୁ ଧାଇଁବାକୁ ହେବ ।'' :

ଏହିଭାବରେ ଇଚ୍ଛାମୟୀ ଜଗଦମ୍ବା ନିଜ ଅଚିନ୍ତ୍ୟ ଲୀଳାରେ ତାଙ୍କୁ ଅଦୃଷ୍ଟପୂର୍ବ ଅଦ୍ଭୁତ ଉପଲବ୍ଧିସକଳ ଆଜୀବନ କରାଇ ତାଙ୍କ ଭିତରେ ଯେଉଁ ମହତ୍ ଉଦାର ଆଧ୍ୟାତ୍ମିକ ଭାବର ଅବତାରଣା କରାଇଥିଲେ, ତାହା ଇତିପୂର୍ବରୁ ଜଗତରେ ଅନ୍ୟ କୌଣସି ଆଚାର୍ଯ୍ୟ ମହାପୁରୁଷଙ୍କଠାରେ କରି ନାହାନ୍ତି—

ଏହି କଥା ଠାକୁରଙ୍କୁ ବୁଝାଇବା ସହିତ, ଅନ୍ୟମାନଙ୍କୁ କୃତାର୍ଥ କରିବା ପାଇଁ ଠାକୁରଙ୍କ ଭିତରେ ଧର୍ମଶକ୍ତି ଯେ କେତେଦୂର ସଞ୍ଚିତ ରଖିଛନ୍ତି ଏବଂ ସେହି ଶକ୍ତି ଅନ୍ୟମାନଙ୍କଠାରେ ସଂକ୍ରମଣ କରିବା ପାଇଁ ତାହାଙ୍କୁ ଯେ କି ଅଦ୍ଭୁତ ଯନ୍ତ୍ରସ୍ୱରୂପ କରି ନିର୍ମାଣ କରିଛନ୍ତି, ସେସମ୍ବନ୍ଧରେ ମଧ୍ୟ ଜଗନ୍ମାତା ଠାକୁରଙ୍କୁ ଏହି ସମୟରେ ଦେଖାଇ ଦେଇଥିଲେ ! ଠାକୁରେ ବିସ୍ମୟ ସହକାରେ ଦେଖିଲେ—ବାହାରେ ଚତୁର୍ଦ୍ଦିଗରେ ଧର୍ମର ଅଭାବ, ଆଉ ଭିତରେ ମାଆଙ୍କର ଲୀଳାରେ ସେହି ଅଭାବ ପୂରଣ ପାଇଁ ଅଦୃଷ୍ଟପୂର୍ବ ଶକ୍ତି-ସଞ୍ଚୟ ! ଏହା ଦେଖି ବୁଝିବାକୁ ବାକି ରହିଲା ନାହିଁ ଯେ, ପୁଣି ମା ଏହି ଯୁଗରେ ଅଜ୍ଞାନ-ମୋହରୂପକ ଦୁର୍ଦ୍ଦାନ୍ତ-ରକ୍ତବୀଜ-ବଧ ନିମିତ୍ତ ରଣରଙ୍ଗରେ ଅବତୀର୍ଣ୍ଣା ହୋଇଛନ୍ତି ! ପୁଣି ଏହି ଜଗତ ମାଆଙ୍କର ଅହେତୁକୀ କରୁଣାର ଖେଳ ଦେଖି ନୟନ ସାର୍ଥକ କରିବ ଏବଂ ଅନନ୍ତଗୁଣମୟୀ କୋଟି-ବ୍ରହ୍ମାଣ୍ଡ-ନାୟିକାର ଜୟସ୍ତୁତି କରିବାକୁ ବାକ୍ୟ ଖୋଜି ପାଇବ ନାହିଁ ! ଉତ୍ତାପର ଆତିଶଯ୍ୟରେ ମେଘର ଉଦୟ, ହ୍ରାସର ଶେଷରେ ସ୍ଫୀତର ଉଦୟ, ଦୁର୍ଦ୍ଦିନର ଅବସାନରେ ସୁଦିନର ଉଦୟ ଏବଂ ବହୁଲୋକର ବହୁକାଳସଞ୍ଚିତ ପ୍ରାଣର ଅଭାବରେ ଜଗଦମ୍ବାଙ୍କର ଅହେତୁକୀ କରୁଣା ଘନୀଭୂତ ହୋଇ ଏହି ରୂପରେ ହିଁ ଗୁରୁଭାବର ଜୀବନ୍ତ ସଚଳ ବିଗ୍ରହରୂପରେ ଅବତୀର୍ଣ୍ଣ ହୁଏ ! ଜଗଦମ୍ବା କୃପା କରି ଠାକୁରଙ୍କୁ ସେହିକଥା ବୁଝାଇ ପୁଣି କୃପା କରି ଦେଖାଇଲେ, ଠାକୁରଙ୍କୁ ନେଇ ତାଙ୍କର ସେହିପରି ଲୀଳା ବହୁଯୁଗରେ ବହୁବାର ହୋଇଅଛି !—ପରେ ମଧ୍ୟ ବହୁବାର ହେବ ! ସାଧାରଣ ଜୀବପରି ତାଙ୍କର ମୁକ୍ତି ନାହିଁ । 'ମୁଁ ସରକାରୀ ଲୋକ—ମୋତେ ଜଗଦମ୍ବାଙ୍କ ଜମିଦାରୀର ଯେଉଁଠାରେ ଯେତେବେଳେ କୌଣସି ଗୋଳମାଳ ଉପସ୍ଥିତ ହେବ ତତ୍କ୍ଷଣାତ୍ ଗଣ୍ଡଗୋଳ ବନ୍ଦ କରିବାକୁ ଧାଇଁବାକୁ ପଡ଼ିବ ।'—ଠାକୁରଙ୍କ ସେହି ସବୁ କଥାର ଅନୁଭବ ଏବେଠାରୁ ଯେ ହୋଇଥିଲା ତାହା ଆମେ ବେଶ୍ ବୁଝିପାରୁ ।

### ନିଜର ଭକ୍ତଗଣଙ୍କୁ ଦେଖିବା ପାଇଁ ଠାକୁରଙ୍କର ପ୍ରାଣ ବ୍ୟାକୁଳ ହେବା :

ଜଗଦମ୍ବା କୃପା କରି 'ଲୋକହିତାୟ' ତାଙ୍କଠାରେ 'ଯେତେ ମତ ସେତେ ପଥ' ରୂପକ ଉଦାର ମତର ଉଦୟ କରାଇଛନ୍ତି ଏବିଷୟ ବୁଝିବା ସଙ୍ଗେ ସଙ୍ଗେ ଠାକୁରଙ୍କର ବିଚାରଶୀଳ ମନ ଆଉ ଏକ ବିଷୟର ଅନୁସନ୍ଧାନରେ ଯେ ଏବେଠାରୁ ଅଗ୍ରସର ହୋଇଥିଲା ଏକଥା ସ୍ପଷ୍ଟ ପ୍ରତୀତ ହୁଏ । କେଉଁ ଭାଗ୍ୟବାନମାନେ ତାଙ୍କର ଶରୀର-ମନ ଆଶ୍ରୟରେ ଅବସ୍ଥିତ ସାକ୍ଷାତ୍ ମା'ଙ୍କ ନିକଟରୁ ସେହି ନବୀନ ଉଦାର ଭାବ ଗ୍ରହଣ କରି ନିଜ ନିଜର ଜୀବନ ଗଠନରେ ଧନ୍ୟ ହେବେ, କେଉଁମାନେ ମା'ଙ୍କ ନିକଟରୁ ଶକ୍ତି ଗ୍ରହଣ କରି ତାଙ୍କର ବର୍ତ୍ତମାନ ଯୁଗର ଅଭିନବ ଲୀଳାର

ସହାୟକ ହୋଇ ଅନ୍ୟକୁ ଏଭାବ ଗ୍ରହଣ କରାଇ କୃତାର୍ଥ କରିବେ, କେଉଁମାନଙ୍କୁ ମା' ସେହି ମହତ କାର୍ଯ୍ୟାନୁଷ୍ଠାନ ନିମିତ୍ତ ଚିହ୍ନିତ କରି ରଖିଛନ୍ତି—ଏହି ସକଳ କଥା ବୁଝିବାକୁ ଓ ଜାଣିବାକୁ ତାଙ୍କର ମନ ଏସମୟରେ ବ୍ୟାକୁଳ ହୋଇଉଠିଥିଲା । ମଥୁରଙ୍କ ସହିତ ଠାକୁରଙ୍କର ପ୍ରେମସମ୍ବନ୍ଧ-ବିଚାର କାଳରେ ଠାକୁରଙ୍କର ନିଜର ଭକ୍ତଗଣଙ୍କୁ ଦର୍ଶନର କଥା ଆମେ ଏହାପୂର୍ବରୁ କହିଅଛୁ ।[୧] ଜଗଦମ୍ବାଙ୍କର ଅଚିନ୍ତ୍ୟ ଲୀଳାରେ ପୃଥିବୀର ସକଳ ବିଷୟରେ ଏତେକାଳ ସମ୍ପୂର୍ଣ୍ଣ ଅନାସକ୍ତ ଭାବରେ ଅବସ୍ଥିତ ଠାକୁରଙ୍କ ମନରେ ସେମାନଙ୍କର ପୂର୍ବଦୃଷ୍ଟ ମୁଖଗୁଡ଼ିକ ଏବେ ଉଜ୍ଜ୍ୱଳ ଜୀବନ୍ତ ଭାବ ଧାରଣ କଲା ! ସେମାନେ କେତେଜଣ ହେବେ, କେବେ, କେତେଦିନରେ ମା' ସେମାନଙ୍କୁ ଏଠାକୁ ଆଣିବେ—ସେମାନଙ୍କର କାହାଦ୍ୱାରା ମା' କେଉଁ କାର୍ଯ୍ୟ କରାଇନେବେ, ମା' ସେମାନଙ୍କୁ ତାଙ୍କ ପରି ତ୍ୟାଗୀ କରିବେ ଅଥବା ଗୃହସ୍ଥଧର୍ମରେ ରଖିବେ—ସଂସାରରେ ଏପର୍ଯ୍ୟନ୍ତ ଦୁଇ-ଚାରି ଜଣ ହିଁ ତାଙ୍କୁ ନେଇ ମା'ଙ୍କର ଏହି ଅପୂର୍ବ ଲୀଳାର କଥା କିଞ୍ଚିତ୍ ମାତ୍ର ବୁଝିଛନ୍ତି, ଆଗତ ବ୍ୟକ୍ତିମାନଙ୍କ ମଧ୍ୟରୁ କେହି କ'ଣ ଜଗଦମ୍ବାଙ୍କର ସେହି ଲୀଳାର କଥା ଯଥାଯଥ ସମ୍ୟକ୍ ବୁଝିପାରିବେ ଅଥବା ଆଂଶିକ ବୁଝି ଚାଲିଯିବେ—ଏପରି ନାନାକଥାର ବିଚାର କରି ଯେ ଏହି ଅଦ୍ଭୁତ ସନ୍ନ୍ୟାସୀଙ୍କ ଏବେ ଦିନ ବିତିବାକୁ ଲାଗିଲା, ଏକଥା ସେ ପରେ ଆମକୁ ଅନେକ ସମୟରେ କହିଛନ୍ତି । ସେ କହୁଥିଲେ, ''ତୁମମାନଙ୍କୁ ସବୁ ଦେଖିବାପାଇଁ ପ୍ରାଣ ଭିତରଟା ସେତେବେଳେ ଏପରି ଭାବରେ ମୋଡ଼ି ହେଉଥିଲା ଯେ ଯନ୍ତ୍ରଣାରେ ଅସ୍ଥିର ହୋଇପଡୁଥିଲି ! ଚିତ୍କାର କରି କାନ୍ଦିବାକୁ ଇଚ୍ଛା ହେଉଥିଲା ! ଲୋକେ କ'ଣ ମନେ କରିବେ ଭାବି, କାନ୍ଦି ପାରୁ ନ ଥିଲି; କୌଣସି ପ୍ରକାରରେ ସମ୍ଭାଳି ରହୁଥିଲି ! ଆଉ ଯେତେବେଳେ ଦିନ ଯାଇ ରାତି ଆସେ, ମା'ର ମନ୍ଦିରରେ, ବିଷ୍ଣୁମନ୍ଦିରରେ ଆରତୀର ଘଣ୍ଟା ବାଜି ଉଠୁଥିଲା, ସେତେବେଳେ ଆଉ ଗୋଟିଏ ଦିନ ଚାଲିଗଲା—ତୁମେମାନେ ଏପର୍ଯ୍ୟନ୍ତ ଆସିଲ ନାହିଁ ଭାବି ଆଉ ସମ୍ଭାଳି ପାରୁ ନ ଥିଲି; କୋଠିର ଛାତ ଉପରକୁ ଉଠି 'ତୁମେ ସବୁ କେଉଁଠି ଅଛ ଆସରେ' ବୋଲି ବଡ଼ ପାଟିରେ ଡାକୁଥିଲି ଏବଂ ଜୋରରେ କାନ୍ଦୁଥିଲି । ମନେ ହେଉଥିଲା ପାଗଳ ହୋଇଯିବି ! ତା'ପରେ କିଛିଦିନ ପରେ ତୁମେସବୁ ଜଣ ଜଣ କରି ଆସିବାକୁ ଲାଗିଲ—ତେବେ ଯାଇ ଶାନ୍ତ ହେଲି ! ପୁଣି ଆଗେ ଦେଖିଥିଲି ବୋଲି ତୁମେସବୁ ଯେମିତି ଆସିବାକୁ ଲାଗିଲ ସଙ୍ଗେ ସଙ୍ଗେ ଚିହ୍ନିପାରିଲି ! ତା'ପରେ ପୂର୍ଣ୍ଣ ଯେତେବେଳେ ଆସିଲା, ସେତେବେଳେ ମା' କହିଲେ 'ତୁ ଯେଉଁମାନେ ଆସିବେ ବୋଲି ଦେଖିଥିଲୁ ଏହି ପୂର୍ଣ୍ଣରେ ହିଁ ସେମାନଙ୍କର ଆସିବା ପୂର୍ଣ୍ଣ ହେଲା । ସେହି ଥାକର (ଶ୍ରେଣୀର) ଲୋକ ଆଉ କେହି ଆସିବାକୁ ବାକି ରହିଲା ନାହିଁ ।' ମା' ଦେଖାଇ କହିଲେ, 'ଏମାନେ

---

୧. ଗୁରୁଭାବ-ପୂର୍ବାର୍ଦ୍ଧର ୭ମ ଅଧ୍ୟାୟ ଦେଖ ।

ହିଁ ସବୁ ତୋ'ର ଅନ୍ତରଙ୍ଗ' ।'' ଅଦ୍ଭୁତ ଦର୍ଶନ—ଅଦ୍ଭୁତ ତାହାର ସଫଳତା ! ଆମେ ଠାକୁରଙ୍କର ଏସମସ୍ତ କଥାର ଅର୍ଥ କେତେଦୂର ବୁଝିପାରିବୁ ? ଠାକୁରଙ୍କର ବର୍ତ୍ତମାନ ଅବସ୍ଥା ସମ୍ବନ୍ଧରେ ଆମର ପୂର୍ବୋକ୍ତ କଥାସବୁ ଯେ ସ୍ୱକପୋଳକଳ୍ପିତ ନୁହେଁ, ପାଠକଙ୍କୁ ତାହା ବୁଝାଇବା ପାଇଁ ଠାକୁରଙ୍କର ସେହିକଥାଗୁଡ଼ିକ ଏଠାରେ ଉଲ୍ଲେଖ କଲୁ ।

### ଠାକୁରଙ୍କର ଧାରଣା—'ଯାହାର ଶେଷ ଜନ୍ମ ସେ ଏଠାକୁ ଆସିବ; ଯିଏ ଈଶ୍ୱରଙ୍କୁ ଥରେ ମାତ୍ର ଠିକ୍ ଭାବରେ ଡାକିଛି, ତାକୁ ଏଠାକୁ ଆସିବାକୁ ହିଁ ହେବ' :

ଏହିପରି ନିଜର ଉଦାର ମତ ଅନୁଭବ କରିବା ଏବଂ ଗ୍ରହଣର ଅଧିକାରୀ କେଉଁମାନେ, ଏବିଷୟ ନିର୍ଣ୍ଣୟ କରିବାକୁ ଯାଇ ଠାକୁରଙ୍କ ଆଉ ଗୋଟିଏ କଥାର ମଧ୍ୟ ଧାରଣା ଉପସ୍ଥିତ ହୋଇଥିଲା । ଠାକୁର ତାହା ସ୍ୱୟଂ ଆମକୁ ଅନେକ ସମୟରେ କହିଥିଲେ । କହୁଥିଲେ, ''ଯାହାର ଶେଷ ଜନ୍ମ ସେ ଏଠାକୁ ଆସିବ—ଯିଏ ଈଶ୍ୱରଙ୍କୁ ଥରେ ଠିକ୍ ଭାବରେ ଡାକିଛି ତାକୁ ଏଠାକୁ ଆସିବାକୁ ହିଁ ହେବ ।'' କଥାଗୁଡ଼ିକ ଶୁଣି ଲୋକମାନେ କେତେ କ'ଣ ଯେ ଭାବିଛନ୍ତି ତାହା କହିଲେ ନ ସରେ । କେହି ଏକଥାକୁ ଏକ ଅଯୁକ୍ତିକର ସିଦ୍ଧାନ୍ତ କହିଛନ୍ତି; କେହି ଭାବିଛନ୍ତି ତାହା ଠାକୁରଙ୍କର ଭକ୍ତି-ବିଶ୍ୱାସ-ପ୍ରସୂତ ଅସମ୍ବନ୍ଧ ପ୍ରଳାପମାତ୍ର; କେହି ବା ଏଥିରେ ଠାକୁରଙ୍କର ମସ୍ତିଷ୍କବିକୃତି ଅଥବା ଅହଂକାରର ପରିଚୟ ପାଇଛନ୍ତି; ପୁଣି କେହି—ଆମେ ନ ବୁଝି ପାରିଲେ ମଧ୍ୟ ଠାକୁର ଯେତେବେଳେ କହୁଛନ୍ତି, ତେଣୁ ଏହା ବାସ୍ତବିକ୍ ସତ୍ୟ, ଏହିପରି ବୁଝି ସେସମ୍ବନ୍ଧୀୟ ଯୁକ୍ତିତର୍କର ଅବତାରଣା କରିବା ବିଶ୍ୱାସର ହାନିକର ଭାବି ଚକ୍ଷୁକର୍ଣ୍ଣରେ ଅଙ୍ଗୁଳି ପ୍ରଦାନ କରିଛନ୍ତି; ପୁଣି କେହିବା—ଠାକୁର ଯଦି ଏହା କେବେ ବୁଝାଇବେ ତ ବୁଝିବୁ, ଭାବି ଏଥିରେ ବିଶ୍ୱାସ ବା ଅବିଶ୍ୱାସ କିଛି ଗୋଟେ ପକ୍କା ନ କରି ତାହାର ସପକ୍ଷରେ ବା ବିପକ୍ଷରେ ଯିଏ ଯାହା କହୁଛନ୍ତି, ତାହା ଅବିଚଳିତ ଚିତ୍ତରେ ଶୁଣୁଛନ୍ତି । କିନ୍ତୁ ଅହଂକାରଶୂନ୍ୟ ସ୍ୱାଭାବିକ ସହଜ ଭାବରେ ଯେ ଜଗଦମ୍ବା ଠାକୁରଙ୍କୁ ନିଜ ଉଦାର ମତର ଅନୁଭବ ଓ ଯଥାର୍ଥ ଆଚାର୍ଯ୍ୟ-ପଦବୀରେ ଆରୁଢ଼ କରାଇଥିଲେ—ଏହି କଥା ଯଦି ଆମେ ପାଠକଙ୍କୁ ବୁଝାଇ ପାରିଥାଉ ତାହେଲେ ତାଙ୍କର ଏହି କଥାଗୁଡ଼ିକର ଅର୍ଥ ବୁଝିବାକୁ ବିଳମ୍ବ ହେବ ନାହିଁ । କେବଳ ସେତିକି ନୁହେଁ, ଟିକିଏ ଗଭୀରତାର ସହ ଦେଖିଲେ ହିଁ ପାଠକ ବୁଝିବେ ଯେ ସେହି କଥାଗୁଡ଼ିକ ଠାକୁରଙ୍କର ସହଜ ସ୍ୱାଭାବିକଭାବରେ ବର୍ତ୍ତମାନର ଉଚ୍ଚ ଆଧ୍ୟାତ୍ମିକ ଅବସ୍ଥାଲାଭ ବିଷୟର ବିଶିଷ୍ଟ ପ୍ରମାଣସ୍ୱରୂପ ।

### ଜଗଦମ୍ବାଙ୍କ ପ୍ରତି ଏକାନ୍ତ ନିର୍ଭରତାରେ ଠାକୁରଙ୍କର ଏପରି ଧାରଣା ଆସି ଉପସ୍ଥିତ ହୋଇଥିଲା :

ଜଗଦମ୍ବାଙ୍କର ବାଳକ ଠାକୁର ନିଜର ଶରୀର-ମନର ଅନ୍ତରରେ ଦୃଷ୍ଟିପାତ କରି ବର୍ତ୍ତମାନ ଯେଉଁ ଅପୂର୍ବ ଆଧ୍ୟାତ୍ମିକ ଶକ୍ତି-ସଞ୍ଚୟ ଓ ଶକ୍ତି-ସଂକ୍ରମଣ-କ୍ଷମତାର ପରିଚୟ ପାଇଥିଲେ, ତାହା ଯେ ତାଙ୍କର ନିଜ ଚେଷ୍ଟାର ଫଳସ୍ୱରୂପ, ଏକଥା କ୍ଷଣକ ପାଇଁ ମଧ୍ୟ ତାଙ୍କର ଜନନୀଗତ-ପ୍ରାଣ-ମନରେ ଉଦିତ ହୋଇ ନାହିଁ । ସେଥିରେ ସେ ଅଚିନ୍ତ୍ୟଲୀଳାମୟୀ ଜଗତଜନନୀଙ୍କର ଖେଳ ହିଁ ଦେଖିଥିଲେ ଏବଂ ଦେଖି ସ୍ତମ୍ଭିତ ଓ ବିସ୍ମିତ ହୋଇଥିଲେ । ଅଘଟଣଘଟଣପଟୀୟସୀ ମା' ନିରକ୍ଷର ଶରୀର-ମନଟିକୁ ଆଶ୍ରୟ କରି ଏକେଉଁ ବିପୁଳ ଖେଳର ଆୟୋଜନ କରିଛନ୍ତି !—ମୂକକୁ ବାଗ୍ମୀ କରିବା, ପଙ୍ଗୁ ଦ୍ୱାରା ସୁମେରୁ ଲଙ୍ଘନ କରାଇବା ପ୍ରଭୃତି ମା'ଙ୍କର ଯେଉଁ ସମସ୍ତ ଲୀଳା ଦେଖି ଲୋକେ ମୋହିତ ହୋଇ ତାଙ୍କର ମହିମା କୀର୍ତ୍ତନ କରନ୍ତି, ବର୍ତ୍ତମାନର ଲୀଳା ଯେ ସେହି ସବୁକୁ ଶତସହସ୍ର ଗୁଣରେ ବଳିଯାଇଛି ! ମା'ଙ୍କର ଏହି ଲୀଳାରେ ବେଦ, ବାଇବେଲ, ପୁରାଣ, କୋରାନ୍ ଆଦି ଯାବତୀୟ ଧର୍ମଶାସ୍ତ୍ର ପ୍ରମାଣିତ, ଧର୍ମ ପ୍ରତିଷ୍ଠିତ ଏବଂ ଜଗତର ଯେଉଁ ଅଭାବ ପୂର୍ବରୁ କୌଣସି ଯୁଗରେ କେହି ଦୂର କରିବାକୁ ସମର୍ଥ ହୋଇ ନାହିଁ, ତାହା ଚିରକାଳ ପାଇଁ ବାସ୍ତବିକ୍ ଅନ୍ତର୍ହିତ ହୋଇଛି ! ଧନ୍ୟ ମା, ଧନ୍ୟ ଲୀଳାମୟୀ ବ୍ରହ୍ମଶକ୍ତି ! ଏପରି ଭାବନାର ଉଦୟ ହିଁ ଠାକୁରଙ୍କର ସେହି ଦର୍ଶନରେ ଉପସ୍ଥିତ ହୋଇଥିଲା । ମା'ଙ୍କର କଥାରେ, ମା'ଙ୍କର ଅନନ୍ତ କରୁଣାରେ ଓ ଅଚିନ୍ତ୍ୟ ଶକ୍ତିରେ ଏକାନ୍ତ ବିଶ୍ୱାସ ହିଁ ଠାକୁରଙ୍କର ମନ ସେହି ଦର୍ଶନକୁ ଧ୍ରୁବସତ୍ୟ ବୋଲି ଧରି ସେହି ଲୀଳାର ପ୍ରସାର କେତେଦୂର ହେବ, କେଉଁମାନେ ଏହାର ସହାୟକ ହେବେ ଏବଂ କେଉଁମାନଙ୍କ ହୃଦୟରେ ଏହି ଶକ୍ତିବୀଜ ରୋପିତ ହେବ—ଏସକଳ ପ୍ରଶ୍ନ ଗୋଟିଏ ଗୋଟିଏ କରି ପଚାରି ତାହାର ଫଳସ୍ୱରୂପ ଅନ୍ତରଙ୍ଗ ଭକ୍ତମାନଙ୍କୁ ଦେଖିବା ଏବଂ ଯାହାର ଶେଷ ଜନ୍ମ, ଯିଏ ଈଶ୍ୱରଙ୍କୁ ପାଇବା ପାଇଁ ଥରେ ମଧ୍ୟ ମନପ୍ରାଣରେ ଡାକିଛି ସେହି ବ୍ୟକ୍ତି ମା'ଙ୍କର ଏହି ଅପୂର୍ବ ଉଦାର ନୂତନ ଭାବ-ଗ୍ରହଣର ଅଧିକାରୀ ହେବେ, ଠାକୁର ଏହି ସିଦ୍ଧାନ୍ତରେ ପହଞ୍ଚିଥିଲେ । ଅତଏବ ଦେଖାଯାଉଛି, ତାହା ଜଗଜ୍ଜନନୀଙ୍କ ଉପରେ ଠାକୁରଙ୍କର ଐକାନ୍ତିକ ବିଶ୍ୱାସ ଫଳରେ ହିଁ ଆସିଥିଲା । ମା'ଙ୍କ ଉପରେ ନିର୍ଭରଶୀଳ ବାଳକର ସେହିପ୍ରକାର ସିଦ୍ଧାନ୍ତ କରିବା ବ୍ୟତୀତ ଅନ୍ୟପ୍ରକାର କରିବାର ଉପାୟ ହିଁ ନ ଥିଲା ଏବଂ ସେହି ପ୍ରକାର କରିବାରେ ଠାକୁରଙ୍କର ଅହଂକାରର ଲେଶମାତ୍ର ମନରେ ଉଦିତ ହୋଇ ନ ଥିଲା ।

**ଠାକୁରଙ୍କର ସେହି କଥାର ଅର୍ଥ :**

ଅତଏବ 'ଯାହାର ଶେଷଜନ୍ମ ସେ ହିଁ ଏଠାକୁ ଆସିବେ, ଈଶ୍ୱରଙ୍କୁ ଯିଏ ଥରେ ମଧ୍ୟ ଠିକ୍ ଠିକ୍ ଡାକିଛି, ତାକୁ ଏଠାକୁ ଆସିବାକୁ ହିଁ ହେବ'—ଠାକୁରଙ୍କର ଏହି କଥାଗୁଡ଼ିକ ଭିତରେ 'ଏଠାକୁ' କଥାଟିର ଅର୍ଥ ଯଦି ଆମେ 'ମା'ଙ୍କର ଅଭିନବ ଉଦାର ଭାବ' ଏହିପ୍ରକାର କରୁ, ତାହେଲେ ବୋଧହୁଏ ଅଯୁକ୍ତିକର ହେବ ନାହିଁ ଏବଂ କାହାରି ମଧ୍ୟ ଏଥିରେ ଆପତ୍ତି ରହିବ ନାହିଁ । କିନ୍ତୁ ଏପରି ଅର୍ଥ ସ୍ୱୀକାର କଲେ ହିଁ ପୁଣି ଅନ୍ୟ ପ୍ରଶ୍ନ ଆସିବ—ସେମାନେ କ'ଣ ଜଗଦମ୍ବାଙ୍କର 'ଯେତେ ମତ ସେତେ ପଥ' ରୂପକ ଉଦାର ଭାବରେ ଆପେ ଆସିବେ ଅଥବା ଜଗଦମ୍ବା ଯାହାଙ୍କୁ ଯନ୍ତ୍ରସ୍ୱରୂପ କରି ଜଗତରେ ସେହି ଭାବ ପ୍ରଥମେ ପ୍ରଚାର କଲେ, ତାଙ୍କ ସହାୟରେ ଉପସ୍ଥିତ ହେବେ ? —ଏହି ପ୍ରଶ୍ନର ଉତ୍ତର ଆମ ଧାରଣାରେ, ପ୍ରଶ୍ନକର୍ତ୍ତାର ନିଜ ପ୍ରାଣରେ ବା ଅନ୍ୟ କାହାର ପ୍ରାଣରେ ସେହି ଭାବ ଠିକ୍ ଠିକ୍ ଅନୁଭୂତି କରିବାର ଫଳ ଦେଖି ହିଁ କରିବା ଉଚିତ୍ ଏବଂ ଯେତେଦିନ ନା ଏହି ଦର୍ଶନ ଆସି ଉପସ୍ଥିତ ହେଉଛି, ସେତେଦିନ ଚୁପ କରି ରହିବା ହିଁ ଭଲ । ତେବେ ପାଠକ ଯଦି ଆମ ଧାରଣାର କଥା ପଚାରନ୍ତି ତା'ହେଲେ କହିବାକୁ ହୁଏ, ଠିକ୍ ଠିକ୍ ସେହି ଭାବାନୁଭୂତିର ସଙ୍ଗେ ସଙ୍ଗେ ଜଗଦମ୍ବା ଯାହାଙ୍କୁ ସେହି ଭାବମୟ କରି ଜଗତ ପାଇଁ ସଂସାରକୁ ପ୍ରଥମେ ଆନୟନ କରିଛନ୍ତି, ତାହାଙ୍କ ଦର୍ଶନ ମଧ୍ୟ ତୁମର ଯୁଗପତ୍ ଲାଭ ହେବ ଏବଂ ତାଙ୍କର 'ମାନମୋହବିବର୍ଜିତ' ମୂର୍ତ୍ତିରେ ପ୍ରାଣର ଶ୍ରଦ୍ଧାଭକ୍ତି ତୁମେ ସ୍ୱୟଂ ଢାଳି ଦେବ । ଠାକୁର ତାହା ପ୍ରାର୍ଥନା କରିବେ ନାହିଁ—ଅନ୍ୟ କେହି ମଧ୍ୟ ତୁମକୁ ଏପରି କରିବାକୁ କହିବେ ନାହିଁ, କିନ୍ତୁ ତୁମେ ଜଗଦମ୍ବାଙ୍କ ପ୍ରତି ପ୍ରେମରେ ନିଜେ ହିଁ ଏହା କରିବ ! ଏହି ବିଷୟରେ ଆଉ ଅଧିକ କହିବା ନିଷ୍ପ୍ରୟୋଜନ ।

**ଗୁରୁଭାବର ଘନୀଭୂତାବସ୍ଥାକୁ ହିଁ ତନ୍ତ୍ର ଦିବ୍ୟଭାବ କହିଛନ୍ତି । ଦିବ୍ୟଭାବରେ ଉପନୀତ ଗୁରୁଗଣ ଶିଷ୍ୟଙ୍କୁ କିପରି ଦୀକ୍ଷା ଦେଇଥାଆନ୍ତି :**

ଜଗଦମ୍ବାଙ୍କର ଇଚ୍ଛାରେ ଗୁରୁଭାବ କାହା ଭିତରେ କିଞ୍ଚିତ୍‌ମାତ୍ର ସହଜ ବା ଘନୀଭୂତ ହେଲେ ସେହି ବ୍ୟକ୍ତିଙ୍କର କାର୍ଯ୍ୟକଳାପ, ବିହାର, ବ୍ୟବହାର ଏବଂ ଅନ୍ୟମାନଙ୍କ ପ୍ରତି ଅହେତୁକୀ କରୁଣାପ୍ରକାଶ ସମସ୍ତ ହିଁ ମାନବ ବୁଦ୍ଧିର ଅଗମ୍ୟ ଏକ ଅଦ୍ଭୁତ ଆକାର ଯେ ଧାରଣ କରେ, ଭାରତର ତନ୍ତ୍ରକାର ଏହି କଥା ବାରମ୍ବାର କହିଛନ୍ତି । ସେହି ଭାବର ସେହପରି ବିକାଶକୁ ତନ୍ତ୍ର ଦିବ୍ୟଭାବ ଆଖ୍ୟା ପ୍ରଦାନ କରନ୍ତି ଏବଂ ସେହି ଦିବ୍ୟଭାବରେ ଭାବିତ ପୁରୁଷମାନଙ୍କର ଅପରକୁ ଶିକ୍ଷାଦୀକ୍ଷା ପ୍ରଦାନ ଶାସ୍ତ୍ରବିଧିବଦ୍ଧ ନିୟମସକଳର ବହିର୍ଭୂତ ଅସମ୍ଭାବିତ ଉପାୟରେ

ହୋଇଥାଏ, ଏକଥା ମଧ୍ଧ କହନ୍ତି । କାହାପ୍ରତି କରୁଣାରେ ସେମାନେ ଇଚ୍ଛା ବା ସ୍ପର୍ଶ ମାତ୍ରେ ହିଁ ସେହି ବ୍ୟକ୍ତିଙ୍କଠାରେ ଧର୍ମଶକ୍ତି ସମ୍ୟକ୍ ଜାଗ୍ରତ କରି ସେହିକ୍ଷଣି ସମାଧିସ୍ଥ କରିପାରନ୍ତି; ଅଥବା ଆଂଶିକ ଭାବରେ ସେହି ଶକ୍ତିକୁ ସେମାନଙ୍କ ମଧ୍ୟରେ ଜାଗ୍ରତ କରି ଏହି ଜନ୍ମରେ ହିଁ ଯେପରି ତାହା ସମ୍ୟକ୍ ଭାବରେ ଜାଗରିତା ହୁଏ ଓ ସାଧକକୁ ଯଥାର୍ଥ ଧର୍ମଲାଭରେ କୃତାର୍ଥ କରେ, ତାହା ମଧ୍ୟ କରିଦେଇପାରନ୍ତି । ତନ୍ତ୍ର କହନ୍ତି, ଗୁରୁଭାବର ଈଷତ୍ ଘନୀଭୂତ ଅବସ୍ଥାରେ ଆଚାର୍ଯ୍ୟ ଶିଷ୍ୟକୁ 'ଶାକ୍ତୀ' ଦୀକ୍ଷାଦାନରେ ଏବଂ ବିଶେଷ ଘନୀଭୂତ ଅବସ୍ଥାରେ 'ଶାମ୍ଭବୀ' ଦୀକ୍ଷାଦାନରେ ସମର୍ଥ ହୋଇଥାଆନ୍ତି । ଆଉ ସାଧାରଣ ଗୁରୁମାନଙ୍କର ଶିଷ୍ୟକୁ 'ମାନ୍ତ୍ରୀ ବା ଆଣବୀ' ଦୀକ୍ଷାଦାନ ତନ୍ତ୍ରନିର୍ଦ୍ଦିଷ୍ଟ ରହିଛି । 'ଶାକ୍ତୀ' ଓ 'ଶାମ୍ଭବୀ' ଦୀକ୍ଷା ସମ୍ବନ୍ଧରେ ରୁଦ୍ରଯାମଳ, ଷଡ଼ନ୍ବୟ ମହାରତ୍ନ, ବାୟବୀୟ ସଂହିତା, ସାରଦା, ବିଶ୍ୱସାର ପ୍ରଭୃତି ସମସ୍ତ ତନ୍ତ୍ର ସମାନ କଥା କହିଛନ୍ତି । ଆମେ ଏଠାରେ ବାୟବୀୟ ସଂହିତାର ଶ୍ଳୋକଗୁଡ଼ିକ ଉଦ୍ଧୃତ କରୁଛୁ—

ଶାମ୍ଭବୀ ଚୈବ ଶାକ୍ତୀ ଚ ମାନ୍ତ୍ରୀ ଚୈବ ଶିବାଗମେ ।
ଦୀକ୍ଷୋପଦିଶ୍ୟତେ ତ୍ରେଧା ଶିବେନ ପରମାତ୍ମନା ।।
ଗୁରୋରାଲୋକମାତ୍ରେଣ ସ୍ପର୍ଶାତ୍ ସମ୍ଭାଷଣାଦପି ।
ସଦ୍ୟଃ ସଂଜ୍ଞା ଭବେଜ୍ଜନ୍ତୋର୍ଦୀକ୍ଷା ସା ଶାମ୍ଭବୀ ମତା ।।
ଶାକ୍ତୀ ଜ୍ଞାନବତୀ ଦୀକ୍ଷା ଶିଷ୍ୟଦେହଂ ପ୍ରବିଶ୍ୟତି ।
ଗୁରୁଣା ଜ୍ଞାନମାର୍ଗେନ କ୍ରିୟତେ ଜ୍ଞାନଚକ୍ଷୁସା ।।
ମାନ୍ତ୍ରୀ କ୍ରିୟାବତୀ ଦୀକ୍ଷା କୁମ୍ଭମଣ୍ଡଲପୂର୍ବିକା ।

*    *    *    *

**ଶ୍ରୀଗୁରୁଙ୍କ ଦର୍ଶନ, ସ୍ପର୍ଶନ ଓ ସମ୍ଭାଷଣମାତ୍ରକେ ଶିଷ୍ୟର ଜ୍ଞାନର ଉଦୟ ହେବାକୁ ଶାମ୍ଭବୀ ଦୀକ୍ଷା କୁହାଯାଏ ଏବଂ ଗୁରୁଙ୍କର ଶକ୍ତି ଶିଷ୍ୟଶରୀରରେ ପ୍ରବିଷ୍ଟ ହୋଇ ତାଙ୍କ ଭିତରେ ଜ୍ଞାନର ଉଦୟ କରାଇଦେବାକୁ ହିଁ ଶାକ୍ତୀ ଦୀକ୍ଷା କୁହାଯାଏ :**

ଅର୍ଥାତ୍—ଆଗମଶାସ୍ତ୍ରରେ ପରମାତ୍ମା ଶିବ ତିନି ପ୍ରକାର ଦୀକ୍ଷାର ଉପଦେଶ କରିଛନ୍ତି, ଯଥା—ଶାମ୍ଭବୀ, ଶାକ୍ତୀ ଓ ମାନ୍ତ୍ରୀ । ଶାମ୍ଭବୀ ଦୀକ୍ଷାରେ ଶ୍ରୀଗୁରୁ-ଦର୍ଶନ, ସ୍ପର୍ଶନ ବା ସମ୍ଭାଷଣ (ପ୍ରଣାମାଦି) ମାତ୍ରେ ହିଁ ଜୀବର ସେହି ମୁହୂର୍ତ୍ତରେ ଜ୍ଞାନୋଦୟ ହୁଏ । ଶାକ୍ତୀ ଦୀକ୍ଷାରେ ଜ୍ଞାନଚକ୍ଷୁ ଗୁରୁ ଦିବ୍ୟଜ୍ଞାନ ସହାୟରେ ଶିଷ୍ୟ ଭିତରେ ନିଜର ଶକ୍ତି ପ୍ରବିଷ୍ଟ କରାଇ ତାର ପ୍ରାଣରେ ଧର୍ମଭାବ ଜାଗ୍ରତ କରାଇ ଦିଅନ୍ତି । ମାନ୍ତ୍ରୀ ଦୀକ୍ଷାରେ ମଣ୍ଡଳ-ଅଙ୍କନ, ଘଟସ୍ଥାପନ ଏବଂ ଦେବତାଙ୍କ ପୂଜାଦି ପୂର୍ବକ ଶିଷ୍ୟର କର୍ଣ୍ଣରେ ମନ୍ତ୍ରୋଚ୍ଚାରଣ କରିବାକୁ ହୁଏ ।

ରୁଦ୍ରଯାମଳ କହେ—ଶାକ୍ତୀ ଓ ଶାମ୍ଭବୀ ଦୀକ୍ଷା ସଦ୍ୟୋମୁକ୍ତିବିଧାୟିନୀ ! ଯଥା—

ଶାକ୍ତୀ ଚ ଶାମ୍ଭବୀ ଚାନ୍ୟା ସଦ୍ୟୋମୁକ୍ତିବିଧାୟିନୀ ।

*　　　*

ସିଦ୍ଧୈଃ ସ୍ୱଶକ୍ତିମାଲୋକ୍ୟ ତୟା କେବଲୟା ଶିଶୋଃ ।
ନିରୁପାୟଂ କୃତା ଦୀକ୍ଷା ଶାକ୍ତେୟୀ ପରିକୀର୍ତ୍ତିତା ॥
ଅଭିସନ୍ଧିଂ ବିନାଚାର୍ୟଶିଷ୍ୟୟୋରୁଭୟୋରପି ।
ଦେଶିକାନୁଗ୍ରହେଣୈବ ଶିବତା-ବ୍ୟକ୍ତିକାରିଣୀ ॥

ଅର୍ଥାତ୍—ସିଦ୍ଧ ପୁରୁଷମାନେ କୌଣସି ପ୍ରକାର ବାହ୍ୟିକ ଉପାୟ ଅବଲମ୍ବନ ନ କରି କେବଳ ନିଜ ଆଧ୍ୟାତ୍ମିକ ଶକ୍ତି ସହାୟରେ ଶିଷ୍ୟ ଭିତରେ ଯେଉଁ ଦିବ୍ୟଜ୍ଞାନର ଉଦୟ କରାଇଥାଆନ୍ତି, ତାହାକୁ ହିଁ ଶାକ୍ତୀ ଦୀକ୍ଷା କୁହାଯାଏ । ଶାମ୍ଭବୀ ଦୀକ୍ଷାରେ ଆଚାର୍ଯ୍ୟ ଓ ଶିଷ୍ୟର ମନରେ ଦୀକ୍ଷା ପ୍ରଦାନ ଓ ଗ୍ରହଣ କରିବା ପୂର୍ବରୁ ଏପରି କୌଣସି ସଂକଳ୍ପ ନ ଥାଏ । ପରସ୍ପର ଦର୍ଶନ-ମାତ୍ରେ ହିଁ ଆଚାର୍ଯ୍ୟଙ୍କର ହୃଦୟରେ ସହସା କରୁଣାର ଉଦୟ ହୋଇ ଶିଷ୍ୟକୁ କୃପା କରିବାକୁ ଇଚ୍ଛା ହୁଏ ଏବଂ ସେଥିରେ ହିଁ ଶିଷ୍ୟ ଭିତରେ ଅଦ୍ୱୈତବସ୍ତୁର ଜ୍ଞାନୋଦୟ ହୋଇ ସେ ଶିଷ୍ୟତ୍ୱ ସ୍ୱୀକାର କରେ ।

ପୁରଶ୍ଚରଣୋଲ୍ଲାସ ତନ୍ତ୍ର କହନ୍ତି ଏହି ପ୍ରକାର ଦୀକ୍ଷାରେ ଶାସ୍ତ୍ରନିର୍ଦ୍ଦିଷ୍ଟ କାଳାକାଳ ବିଚାରର ମଧ୍ୟ ଆବଶ୍ୟକତା ନାହିଁ । ଯଥା—

ଦୀକ୍ଷାୟାଂ ଚଞ୍ଚଳାପାଙ୍ଗି ନ କାଲନିୟମଃ କ୍ୱଚିତ୍ ।
ସଦ୍‌ଗୁରୋର୍ଦର୍ଶନାଦେବ ସୂର୍ୟପର୍ବେ ଚ ସର୍ବଦା ॥
ଶିଷ୍ୟମାହୂୟ ଗୁରୁଣା କୃପୟା ଯଦି ଦୀୟତେ ।
ତତ୍ର ଲଗ୍ନାଦିକଂ କିଞ୍ଚିତ୍ ନ ବିଚାର୍ୟଂ କଦାଚନ ॥

## ସେହି ପ୍ରକାର ଦୀକ୍ଷାରେ କାଳାକାଳ ବିଚାରର ଆବଶ୍ୟକତା ନାହିଁ :

ଅର୍ଥାତ୍—ହେ ଚଞ୍ଚଳନୟନୀ ପାର୍ବତୀ, ବୀର ଓ ଦିବ୍ୟଭାବାପନ୍ନ ଗୁରୁଙ୍କ ନିକଟରୁ ଦୀକ୍ଷାଗ୍ରହଣରେ କାଳବିଚାରର କୌଣସି ଆବଶ୍ୟକତା ନାହିଁ । ଉତ୍ତରାୟଣ କାଳରେ ସଦ୍‌ଗୁରୁଙ୍କର ଦର୍ଶନଲାଭ ହେଲେ ଏବଂ ସେ କୃପାକରି ଶିଷ୍ୟକୁ ଦୀକ୍ଷା ଦେବାକୁ ଆହ୍ୱାନ କଲେ ଲଗ୍ନାଦି ବିଚାର ନ କରି ଏହା ଗ୍ରହଣ କରିବ ।

## ଦିବ୍ୟଭାବାପନ୍ନ ଗୁରୁମାନଙ୍କ ମଧ୍ୟରେ ଠାକୁର ସର୍ବଶ୍ରେଷ୍ଠ—ଏହାର କାରଣ :

ସାଧାରଣ ଦିବ୍ୟଭାବାପନ୍ନ ଗୁରୁଙ୍କ ସମ୍ବନ୍ଧରେ ହିଁ ଶାସ୍ତ୍ର ଯେତେବେଳେ ଏହିପରି ବ୍ୟବସ୍ଥା ନିର୍ଣ୍ଣୟ କରିଛନ୍ତି, ସେତେବେଳେ ଏହି ଅଲୌକିକ ଠାକୁରଙ୍କର

ଜଗଦମ୍ବାଙ୍କ ହସ୍ତରେ ସର୍ବଦା ଯନ୍ତ୍ରସ୍ୱରୂପ ରହି ଅହୈତୁକୀ କରୁଣାରେ ଅନ୍ୟକୁ ଶିକ୍ଷାଦାନ ଓ ଧର୍ମଶକ୍ତି-ସଞ୍ଚାରର ସ୍ୱରୂପ ଆମେ କିପରି ନିର୍ଣ୍ଣୟ କରିପାରିବୁ ! କାରଣ, ଜଗନ୍ମାତା କୃପା କରି ଠାକୁରଙ୍କର ଶରୀର-ମନ ଆଶ୍ରୟରେ ଏବେ ଯେ କେବଳ ତନ୍ତ୍ରୋକ୍ତ ଦିବ୍ୟଭାବର ଖେଳ ଦେଖାଇବାକୁ ଲାଗିଲେ ତାହା ନୁହେଁ, କିନ୍ତୁ ଦିବ୍ୟଭାବାପନ୍ନ ଯାବତୀୟ ଗୁରୁଗଣ 'ଯେତେ ମତ ସେତେ ପଥ' ରୂପକ ଯେଉଁ ଉଦାର ଭାବର ସାଧନ ଏବଂ ଉପଲବ୍ଧି ଏପର୍ଯ୍ୟନ୍ତ କଦାପି କରି ନାହାନ୍ତି, ସେହି ମହତ୍ ଉଦାର ଭାବର ପ୍ରକାଶ ମଧ୍ୟ ସେ ଏବେଠାରୁ ଠାକୁରଙ୍କ ଭିତର ଦେଇ ଜଗତର ହିତ ପାଇଁ ତାହା କରିବାକୁ ଲାଗିଲେ । ତେଣୁ ଆମେ କହୁଛୁ, ଏହି ସମୟରୁ ଠାକୁରଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା ।

### ଅବତାର ମହାପୁରୁଷମାନଙ୍କ ଭିତରେ ସବୁ ସମୟରେ ସମସ୍ତ ଶକ୍ତି ପ୍ରକାଶିତ ରହେ ନାହିଁ । ଏବିଷୟରେ ପ୍ରମାଣ :

ଭକ୍ତିମାନ ଶ୍ରୋତା ହୁଏତ ଆମର ଏହି କଥାରେ କୁଟିଳ କଟାକ୍ଷ କରି କହିବେ—ତୁମମାନଙ୍କର ଏସବୁ କି ପ୍ରକାର କଥା ? ଠାକୁରଙ୍କୁ ଯଦି ଈଶ୍ୱରାବତାର ବୋଲି ଆଖ୍ୟା ପ୍ରଦାନ କର, ତେବେ ତାଙ୍କର ସେହିଭାବ ବା ଶକ୍ତିପ୍ରକାଶ ଯେ କେବେ ମଧ୍ୟ ନ ଥିଲା, ଏକଥା ତ କହିପାରିବ ନାହିଁ । ଏହାର ଉତ୍ତରରେ ଆମେ କହିବୁ—ହେ ଭାଇ, ଠାକୁରଙ୍କର କଥା-ପ୍ରମାଣରେ ଆମେ ସେହିପରି କହୁଛୁ । ନରଦେହ ଧାରଣ କରି ଈଶ୍ୱରାବତାରମାନଙ୍କର ମଧ୍ୟ ସମସ୍ତ ପ୍ରକାର ଈଶ୍ୱରୀୟ ଭାବ ଏବଂ ଶକ୍ତିପ୍ରକାଶ ସବୁବେଳେ ରହି ନ ଥାଏ; ଯେତେବେଳେ ଯେଉଁଟାର ଆବଶ୍ୟକ ହୁଏ, ସେତେବେଳେ ହିଁ ସେହିଟି ଆସି ଉପସ୍ଥିତ ହୁଏ । କାଶୀପୁରର ବଗିଚାରେ ବହୁକାଳ ବ୍ୟାଧି ସହିତ ସଂଗ୍ରାମରେ ଠାକୁରଙ୍କର ଶରୀର ଯେତେବେଳେ ଅସ୍ଥିଚର୍ମସାର ହୋଇପଡ଼ିଥିଲା, ସେତେବେଳେ ତାଙ୍କର ଅନ୍ତରର ଭାବ ଓ ଶକ୍ତିର ପ୍ରକାଶ ଲକ୍ଷ୍ୟ କରି ଠାକୁର ଆମକୁ ଦିନେ କହିଥିଲେ :

''ମା ଦେଖାଇ ଦେଉଛନ୍ତି ଯେ, (ନିଜ ଶରୀର ଦେଖାଇ) ଏହା ଭିତରେ ଏବେ ଏମିତି ଗୋଟିଏ ଶକ୍ତି ଆସିଛି ଯେ, ଏବେ ଆଉ କାହାକୁ ଛୁଇଁବାକୁ ମଧ୍ୟ ହେବ ନାହିଁ; ତୁମକୁ ଛୁଇଁବାକୁ କହିବି ତୁମେ ଛୁଇଁବ, ସେଥିରେ ଅନ୍ୟର ଚୈତନ୍ୟ ହୋଇଯିବ ! ମା ଯଦି ଏଥର (ଶରୀର ଦେଖାଇ) ଏହା ସୁସ୍ଥ କରି ଦିଅନ୍ତି ତାହେଲେ ଏତେ ସବୁ ଲୋକ ଆସିବେ ଯେ, ଦୁଆରେ ଲୋକଙ୍କ ଭିଡ଼ ସମ୍ଭାଳି ପାରିବି ନାହିଁ । ଏତେ ଖଟିବାକୁ ହେବ ଯେ, ଔଷଧ ଖାଇ ଦେହର ପୀଡ଼ା ଦୂର କରିବାକୁ ପଡ଼ିବ !''

ଠାକୁରଙ୍କର ଏହି କଥାରୁ ବୁଝାଯାଏ, ଠାକୁର ସ୍ୱୟଂ କହୁଛନ୍ତି ଯେ, ଯେଉଁ ଶକ୍ତିର ପ୍ରକାଶ ତାଙ୍କଠାରେ ପୂର୍ବେ କେବେ ମଧ୍ୟ ଅନୁଭବ କରି ନାହାନ୍ତି ତାହା ହିଁ

ସେତେବେଳେ ତାଙ୍କ ଭିତରେ ଅନୁଭବ କରୁଥିଲେ । ଏହିପରି ଆହୁରି ଅନେକ ଦୃଷ୍ଟାନ୍ତ ଏହି ବିଷୟରେ ଦିଆଯାଇପାରେ ।

## ଠାକୁରଙ୍କର ଭକ୍ତପ୍ରବର କେଶବଚନ୍ଦ୍ରଙ୍କ ସହିତ ମିଳନ ଏବଂ ଏହାପରେ ତାଙ୍କର ନିଜ ଭକ୍ତଗଣଙ୍କର ଆଗମନ :

ଦିବ୍ୟଭାବର ଆବେଗରେ ଠାକୁର ଏବେ ଭକ୍ତମାନଙ୍କୁ ବ୍ୟାକୁଳ ଚିତ୍ତରେ ପୂର୍ବୋକ୍ତ ପ୍ରକାରରେ ଡାକି ନିଶ୍ଚିନ୍ତ ରହିପାରୁ ନ ଥିଲେ । ଯେଉଁଠାରେ ଖବର ପହଞ୍ଚିଲେ ତାଙ୍କର ଦକ୍ଷିଣେଶ୍ୱର ଅବସ୍ଥାନର କଥା ପ୍ରାୟ ସମସ୍ତ ଭକ୍ତଗଣ ଜାଣିପାରିବେ, ଜଗଦମ୍ବା ତାଙ୍କୁ ସେହି କଥା ପ୍ରାଣେ ପ୍ରାଣେ କହି ବେଲଘରିଆର ଉଦ୍ୟାନକୁ ନେଇଯାଇ ଭକ୍ତପ୍ରବର ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନଙ୍କ ସହିତ ସାକ୍ଷାତ କରାଇଦେଲେ । ସେହି ଘଟଣାର ଅଳ୍ପଦିନ ପରେ ଠାକୁରଙ୍କ କୃପାସମ୍ପଦର ବିଶେଷ ଭାବରେ ଅଧିକାରୀ, ଭାବାବସ୍ଥାରେ ପୂର୍ବରୁ ଦୃଷ୍ଟ ସ୍ୱାମୀ ବିବେକାନନ୍ଦ ଓ ବ୍ରହ୍ମାନନ୍ଦପ୍ରମୁଖ ଭକ୍ତମାନେ ଜଣକ ପରେ ଜଣେ ଆଗମନ କଲେ । ସେମାନଙ୍କ ସହିତ ଠାକୁରଙ୍କର ଦିବ୍ୟଭାବରେ ଲୀଳାର ବିଷୟ ଠାକୁର କୃପା କଲେ ଆମେ ଅନ୍ୟ ସମୟରେ କହିବାକୁ ଚେଷ୍ଟା କରିବୁ । ଏବେ ଏହି ଅଦୃଷ୍ଟପୂର୍ବ ଦିବ୍ୟ ଭାବାବେଶରେ ସେ ୧୮୮୫ ମସିହାର ରଥଯାତ୍ରା ସମୟରେ ନିଜର ଭକ୍ତମାନଙ୍କୁ ନେଇ ଯେପରି କେତୋଟି ଦିନ କଟାଇଥିଲେ, ଦୃଷ୍ଟାନ୍ତ-ସ୍ୱରୂପ ତାହାର ଚିତ୍ର ପାଠକଙ୍କର ନୟନଗୋଚର କରି ଆମେ ଗୁରୁଭାବ ପର୍ବର ଉପସଂହାର କରିବାକୁ ଚାହୁଁଛୁ ।

# ପଞ୍ଚମ ଅଧ୍ୟାୟ

## ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ — ୧୮୮୫ ଖ୍ରୀଷ୍ଟାବ୍ଦର ନବଯାତ୍ରା :

କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।
କୌନ୍ତେୟ ପ୍ରତିଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି ।। – ଗୀତା, ୯/୩୧

ଦିବ୍ୟ ଭାବମୁଖରେ ଅବସ୍ଥିତ ଶ୍ରୀରାମକୃଷ୍ଣଦେବଙ୍କର ଅଦ୍ଭୁତ ଚରିତ୍ର କିଞ୍ଚିତ୍ ମାତ୍ର ବୁଝିବାକୁ ହେଲେ ଭକ୍ତମାନଙ୍କ ସହିତ ତାଙ୍କୁ ଦେଖିବାକୁ ହେବ । କିପରି କେତେଭାବରେ ଠାକୁର ତାଙ୍କର ନାନା ପ୍ରକୃତିର ଭକ୍ତବୃନ୍ଦଙ୍କ ସହିତ ପ୍ରତିଦିନ ବସା-ଉଠା, କଥାବାର୍ତ୍ତା, ହସ-ଥଟ୍ଟା କରୁଥିଲେ ଏବଂ ଭାବ ଓ ସମାଧିରେ ରହୁଥିଲେ, ତାହା ଶୁଣିବାକୁ ଓ ଚିନ୍ତା କରି ବୁଝିବାକୁ ହେବ, ତେବେଯାଇ ତାଙ୍କର ସେହି ଭାବର ଲୀଳା ଟିକିଏ ଅଧେ ବୁଝି ହେବ । ଅତଏବ ଭକ୍ତଗଣଙ୍କୁ ନେଇ ଠାକୁରଙ୍କ ସେହି ପ୍ରକାରର କେତୋଟି ଦିନର ଲୀଳାକଥା ଆମେ ଏବେ ପାଠକମାନଙ୍କୁ ଉପହାର ଦେବୁ ।

### ଠାକୁରଙ୍କଠାରେ ଦେବ ଓ ମାନବ ଉଭୟ ଭାବର ସମ୍ମିଳନ :

ଆମେ ଯେତେଦୂର ଦେଖିଛୁ, ଏହି ଅଲୌକିକ ମହାପୁରୁଷଙ୍କର ଅତି ସାମାନ୍ୟ ଚେଷ୍ଟା ମଧ୍ୟ ଉଦ୍ଦେଶ୍ୟବିହୀନ ବା ଅର୍ଥଶୂନ୍ୟ ନ ଥିଲା । ଏପରି ଅପୂର୍ବ ଦେବ ଓ ମାନବ-ଭାବର ଏକତ୍ର ସମ୍ମିଳନ ଆଉ କେଉଁଠି ଦେଖିବା ଦୁର୍ଲ୍ଲଭ — ଅନ୍ତତଃ ପୃଥିବୀର ନାନାସ୍ଥାନରେ ଏହି ପଚିଶ ବର୍ଷ ଧରି ବୁଲି ମଧ୍ୟ ଏପରି ଆମ ଆଖିରେ ଆଉ ଗୋଟିଏ ମଧ୍ୟ ପଡ଼ି ନାହିଁ ! କଥାରେ ଅଛି — 'ଦାନ୍ତ ଥିଲାବେଳେ ଦାନ୍ତର ମର୍ଯ୍ୟାଦା ବୁଝି ହୁଏ ନାହିଁ ।' ଠାକୁରଙ୍କ ସମ୍ବନ୍ଧରେ ଆମର ଅନେକଙ୍କର ଭାଗ୍ୟରେ ସେପରି ହୋଇଛି । ଗଳାର ରୋଗ ଚିକିତ୍ସା କରାଇବାକୁ ଭକ୍ତମାନେ ଯେତେବେଳେ ଠାକୁରଙ୍କୁ କିଛିଦିନ କଲିକତାର ଶ୍ୟାମପୁକୁରଠାରେ ଆଣି ରଖିଲେ, ସେତେବେଳେ ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ତାଙ୍କୁ ଦିନେ ଦର୍ଶନ କରିବାକୁ ଆସି ଆମମାନଙ୍କୁ ନିମ୍ନଲିଖିତ କଥାଗୁଡ଼ିକ କହିଥିଲେ ।

### ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀଙ୍କର ଦର୍ଶନ :

ଶ୍ରୀଯୁକ୍ତ ବିଜୟକୃଷ୍ଣ ଏହାର କିଛିଦିନ ପୂର୍ବରୁ ଢାକାରେ ଥିବାବେଳେ ଦିନେ ନିଜ ଘର କବାଟ କିଳି ବସି ଚିନ୍ତା କରୁ କରୁ ଶ୍ରୀରାମକୃଷ୍ଣଦେବଙ୍କ ସାକ୍ଷାତ୍ ଦର୍ଶନ ପାଇଲେ ଏବଂ ତାହା ତାଙ୍କ ମନର ଖିଆଲ କି ନୁହେଁ ଜାଣିବା ପାଇଁ ସାମନାରେ ଦେଖୁଥିବା ମୂର୍ତ୍ତିର ଶରୀର ଓ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ବହୁସମୟ ଧରି ସ୍ୱହସ୍ତରେ

ଚିପି ଚିପି ଦେଖି ପରୀକ୍ଷା କରିଥିଲେ — ସେକଥା ମଧ୍ୟ ସେହିଦିନ ସେ ଠାକୁର ଓ ଆମମାନଙ୍କ ସମ୍ମୁଖରେ ମୁକ୍ତକଣ୍ଠରେ କହିଥିଲେ ।

ଶ୍ରୀଯୁକ୍ତ ବିଜୟକୃଷ୍ଣ — ଦେଶ-ବିଦେଶ ପାହାଡ଼-ପର୍ବତ ବୁଲିବୁଲି ଅନେକ ସାଧୁ-ମହାତ୍ମା ଦେଖିଲି, କିନ୍ତୁ (ଠାକୁରଙ୍କୁ ଦେଖାଇ) ଏପରି ଆଉ କେଉଁଠି ଦେଖିଲି ନାହିଁ; ଏଠାରେ ଯେଉଁ ଭାବର ପୂର୍ଣ୍ଣ ପ୍ରକାଶ ଦେଖୁଛି, ତାହାର ହିଁ କେଉଁଠାରେ ଦୁଇଅଣା, କେଉଁଠାରେ ଏକଅଣା, ଅବା ପଇସାଏ କିମ୍ବା କେଉଁଠାରେ ଅଧ-ପଇସା ମାତ୍ର; ଚାରିଅଣା ମଧ୍ୟ କେଉଁଠାରେ ଦେଖିଲି ନାହିଁ ।

ଠାକୁର — (ମୃଦୁହାସ୍ୟରେ ଆମମାନଙ୍କୁ ଲକ୍ଷ୍ୟ କରି) କ'ଣ କହୁଛି !

ଶ୍ରୀଯୁକ୍ତ ବିଜୟକୃଷ୍ଣ — (ଠାକୁରଙ୍କୁ) ସେଦିନ ଢାକାରେ ଯେପରି ଦେଖିଛି, ସେଥିରେ ଆପଣ ନ ମାନିଲେ ମଧ୍ୟ ମୁଁ ଶୁଣିବି ନାହିଁ; ଅତି ସହଜ ହୋଇ ଆପଣ ଯେତେ ଗଣ୍ଡଗୋଳ କରିଛନ୍ତି । କଲିକତା ନିକଟରେ ହିଁ ଦକ୍ଷିଣେଶ୍ୱର; ଯେତେବେଳେ ଇଚ୍ଛା ଏଠାକୁ ଆସି ଆପଣଙ୍କୁ ଦର୍ଶନ କରିପାରିବି । ଆସିବାକୁ କୌଣସି କଷ୍ଟ ନାହିଁ — ନୌକା, ଗାଡ଼ି ଯଥେଷ୍ଟ; ଘର ନିକଟରେ ଏତେ ସହଜରେ ଆପଣ ମିଳିଯାଉଛନ୍ତି ବୋଲି ଆମେ ଆପଣଙ୍କୁ ବୁଝିଲୁ ନାହିଁ । ଯଦି କୌଣସି ପାହାଡ଼ ଶିଖରରେ ବସିଥାଆନ୍ତେ, ଆଉ ପଥ ଚାଲି ଅନାହାରରେ ଗଛର ଚେର ଧରି ଉଠି ଆପଣଙ୍କର ଦର୍ଶନ ମିଳିଥାଆନ୍ତା, ତା'ହେଲେ ଆମେ ଆପଣଙ୍କର ମୂଲ୍ୟ ବୁଝିଥାଆନ୍ତୁ । ଏବେ ମନେ କରୁଛି ଘର ପାଖରେ ଯେତେବେଳେ ଏପ୍ରକାର, ତାହାହେଲେ ନ ଜାଣେ ବାହାରେ ଦୂର ଦୂରାନ୍ତରରେ ଆହୁରି କେତେ କ'ଣ ଭଲ ଭଲ ସବୁ ଅଛି; ସେଥିପାଇଁ ଆପଣଙ୍କୁ ଛାଡ଼ି ଧାଁ ଧପଡ଼ କରି ମରୁଛୁ, ଏହା ନୁହେଁ ତ ଆଉ କ'ଣ !

## ଠାକୁରଙ୍କର ଭକ୍ତମାନଙ୍କ ସହିତ ଅଲୌକିକ ଆଚରଣରେ ସେମାନଙ୍କ ମନରେ କିପରି ଅନୁଭବ ହେଉଥିଲା :

ବାସ୍ତବରେ ତାଙ୍କ କଥା ସତ ଥିଲା ! କରୁଣାମୟ ଠାକୁର, ତାଙ୍କ ନିକଟକୁ ଯେଉଁମାନେ ଆସୁଥିଲେ, ସେ ସମସ୍ତଙ୍କୁ ଠାକୁର ନିଜର ବୋଲି ଗ୍ରହଣ କରୁଥିଲେ, ଥରେ ଗ୍ରହଣ କଲେ ସେମାନେ ଛାଡ଼ିଲେ ମଧ୍ୟ ଠାକୁର ଛାଡ଼ୁ ନ ଥିଲେ ଏବଂ କେତେବେଳେ କୋମଳ, ଅନ୍ୟ କେତେବେଳେ କଠୋର ହସ୍ତରେ ସେମାନଙ୍କର ଜନ୍ମଜନ୍ମାର୍ଜିତ ସଂସ୍କାର-ରାଶିକୁ ଶୁଷ୍କ, ଦଗ୍ଧ କରି ନିଜର ନୂତନ ନୂତନ ଭାବରେ ଅଦୃଷ୍ଟପୂର୍ବ, ଅମୃତମୟ ଛାଞ୍ଚରେ ନୂଆ କରି ଗଠନ କରି ସେମାନଙ୍କୁ ଚିରଶାନ୍ତିର ଅଧିକାରୀ କରୁଥିଲେ ! ଭକ୍ତମାନଙ୍କର ନିଜ ନିଜର ଜୀବନ-କଥା ଖୋଲି କହିଲେ, ଏକଥାରେ ଆଉ ସନ୍ଦେହ ରହିବ ନାହିଁ । ସେଥିପାଇଁ ଦେଖିବାକୁ ପାଉ, ଶ୍ରୀଯୁକ୍ତ ନରେନ୍ଦ୍ରନାଥ ସ୍ୱଗୃହରେ ଅବସ୍ଥାନ କାଳରେ କୌଣସି ଏକ ସମୟରେ

ସାଂସାରିକ ଦୁଃଖକଷ୍ଟରେ ଅଭିଭୂତ ହୋଇ ଏବଂ ଏତେଦିନ ଧରି ଶ୍ରୀଭଗବାନଙ୍କର ଶରଣାପନ୍ନ ରହି ମଧ୍ୟ ତାଙ୍କର ସାକ୍ଷାତକାର ହେଲା ନାହିଁ, ଠାକୁର କିଛି କଲେ ନାହିଁ ଭାବି ଅଭିମାନରେ ଲୁଚି ଗୃହତ୍ୟାଗ କରିବାକୁ ଉଦ୍ୟତ ହେବାରୁ ଠାକୁର ସେତେବେଳେ ତାଙ୍କୁ ତାହା କରିବାକୁ ଦେଇ ନ ଥିଲେ । ଦୈବଶକ୍ତି-ପ୍ରଭାବରେ ତାଙ୍କର ଉଦ୍ଦେଶ୍ୟ ଜାଣିପାରି ବିଶେଷ ଅନୁରୋଧ କରି ତାଙ୍କୁ ସେଦିନ ଦକ୍ଷିଣେଶ୍ୱରକୁ ସାଙ୍ଗରେ ନେଇ ଆସିଲେ ଏବଂ ପରେ ତାଙ୍କର ଅଙ୍ଗ ସ୍ପର୍ଶ କରି ଭାବାବେଶରେ ଗୀତ ଆରମ୍ଭ କଲେ—''କଥା କହିତେଓ ଡରାଇ, ନା କହିତେଓ ଡରାଇ; ଆମାର ମନେ ସନ୍ଦ ହୟ, ବୁଝି ତୋମାୟ ହାରାଇ—ହା, ରାଇ !'' (ଅର୍ଥାତ୍—ତୁମକୁ କିଛି କହିବାକୁ ବି ଡର ଲାଗୁଛି, ନ କହିଲେ ବି ଡର ଲାଗୁଛି । ମୋର ମନରେ ସନ୍ଦେହ ହେଉଛି ଯେ ମୁଁ ତୁମକୁ ହରାଇ ନ ଦିଏ ।) ଏବଂ ନାନାପ୍ରକାରରେ ବୁଝାଇ ଶୁଝାଇ ତାଙ୍କୁ ନିଜ ପାଖରେ ରଖିଲେ । ପୁଣି ଦେଖୁ ନାହଁ—ଓକାଲତନାମା ପାଇ ମଧ୍ୟ ଶ୍ରୀଯୁକ୍ତ ଗିରିଶ ପୂର୍ବସଂସ୍କାରର ପ୍ରଭାବ ସ୍ମରଣ କରି ନିଶ୍ଚିନ୍ତ ଓ ଭୟଶୂନ୍ୟ ହୋଇପାରୁ ନାହାନ୍ତି ଦେଖି, ଠାକୁର ତାଙ୍କୁ ଅଭୟଦାନ ଦେଇ କହିଥିଲେ, ''ଏ କ'ଣ ତତେ ଧଣ୍ଡ ସାପ ଧରିଛିରେ ଶଳା ? ଅସଲି ସାପ ଧରିଛି—ବସାକୁ ପଳାଇ ଗଲେ ମଧ୍ୟ ମରିବାକୁ ପଡ଼ିବ ! ଦେଖି ନାହୁଁ ? ବେଙ୍ଗକୁ ଯେତେବେଳେ ଧଣ୍ଡ ସାପ ଧରେ, ସେତେବେଳେ କଁ୍ୟା-କଁ୍ୟା-କଁ୍ୟା-କଁ୍ୟା କରୁଥାଏ, ଏପରି ହଜାର ଥର ଡାକେ ତା'ପରେ ମରେ, କେଉଁଟା ହୁଏତ ଖସି ପଳାଇଯାଏ; କିନ୍ତୁ ଯେତେବେଳେ ଗୋଖର ସାପ ଧରେ ସେତେବେଳେ କଁ୍ୟା-କଁ୍ୟା-କଁ୍ୟା ତିନି ଡାକ ପକାଇ ଆଉ ଡାକିପାରେ ନାହିଁ, ସବୁ ଥଣ୍ଡା ହୋଇଯାଏ । ଯଦି କେଉଁଟା ଦୈବାତ୍ ପଳାଇଯାଏ, ଗାତରେ ପଶି ମରେ । —ଏଠାକାର କଥା ସେପରି ବୋଲି ଜାଣିବୁ !'' କିନ୍ତୁ ସେତେବେଳେ ଠାକୁରଙ୍କର ସେସବୁ କଥା ଏବଂ ବ୍ୟବହାରର ମର୍ମ କିଏ ବୁଝୁଥିଲା ? ସମସ୍ତେ ଭାବୁଥିଲେ ଠାକୁରଙ୍କ ପରି ପୁରୁଷ ବୋଧହୁଏ ସର୍ବତ୍ର ବିଦ୍ୟମାନ ଅଛନ୍ତି । ଠାକୁର ଯେପରି ସମସ୍ତଙ୍କର ସବୁ ସମସ୍ୟା ସହି ବରାଭୟ ହସ୍ତରେ ସମସ୍ତଙ୍କ ଦ୍ୱାରରେ ଅଯାଚିତ ହୋଇ ବୁଲୁଛନ୍ତି, ସର୍ବତ୍ର ହିଁ ବୋଧେ ଏହିପରି ହୁଏ । କରୁଣାମୟ ଠାକୁରଙ୍କର ସ୍ନେହର ଆଞ୍ଚଳରେ ଆବୃତ ରହି ଭକ୍ତଙ୍କର ଜୋର୍ କେତେ, ଅଳି କେତେ, ଅଭିମାନ ହିଁ ବା କେତେ ଥିଲା ! ପ୍ରାୟ ସମସ୍ତେ ଭାବୁଥିଲେ ଧର୍ମକର୍ମ ଅତି ସହଜ ଜିନିଷ । ଯେତେବେଳେ ଧର୍ମରାଜ୍ୟର ଯେଉଁଭାବ ଦର୍ଶନାଦି ଲାଭ କରିବାକୁ ଇଚ୍ଛା ହେବ, ତତ୍କ୍ଷଣାତ୍ ତାହା ନିଶ୍ଚିତ ପାଇବି । କେବଳ ଠାକୁରଙ୍କୁ ଟିକିଏ ବ୍ୟାକୁଳ ହୋଇ ଜୋର୍ କରି ଧରିଲେ ହେଲା—ଠାକୁର ତତ୍କ୍ଷଣାତ୍ ତାହା ଅନାୟାସରେ ସ୍ପର୍ଶ, ବାକ୍ୟ ବା କେବଳ ଇଚ୍ଛା ଦ୍ୱାରା ଲାଭ କରାଇଦେବେ ! ସେହି ବିଷୟରେ କେତେ ବା ଦୃଷ୍ଟାନ୍ତ ଦେବୁ ! ଲେଖାପଢ଼ା ମାଧ୍ୟମରେ କେତେ ବା କୁହାଯାଇପାରିବ !

## ସ୍ୱାମୀ ପ୍ରେମାନନ୍ଦଙ୍କର ଭାବସମାଧିଲାଭ ଇଚ୍ଛାରେ ଠାକୁରଙ୍କୁ ଧରିବା ଓ ତାଙ୍କର ଭାବନା ଓ ଦର୍ଶନ :

ଶ୍ରୀଯୁକ୍ତ ବାବୁରାମଙ୍କର (ସ୍ୱାମୀ ପ୍ରେମାନନ୍ଦଙ୍କର) ଇଚ୍ଛା ହେଲା, ତାଙ୍କର ଭାବ ସମାଧି ହେଉ । ଠାକୁରଙ୍କ ନିକଟରେ କନ୍ଦାକଟା କରି ବିଶେଷ ଭାବରେ ଏକଥା ନିବେଦନ କଲେ—"ଆପଣ କରି ଦିଅନ୍ତୁ ।" ଠାକୁର ତାଙ୍କୁ ଶାନ୍ତ କରି କହିଲେ, "ଠିକ୍ ଅଛି, ମା'କୁ କହିବି; ମୋର ଇଚ୍ଛାରେ କ'ଣ ହେବ କିରେ ?" —ଇତ୍ୟାଦି । କିନ୍ତୁ ଠାକୁରଙ୍କର ଏକଥା ଶୁଣୁଛି କିଏ ? ବାବୁରାମଙ୍କର ସେହି ଗୋଟିଏ କଥା—'ଆପଣ କରି ଦିଅନ୍ତୁ ।' ଏପରି ଅଳି କରିବାର କେତେଦିନ ପରେ ଶ୍ରୀଯୁକ୍ତ ବାବୁରାମଙ୍କୁ କାର୍ଯ୍ୟବଶତଃ ନିଜ ଘର ଆଁଟପୁର ଯିବାକୁ ହେଲା । ଏହା ୧୮୮୪ ମସିହାର କଥା । ଏପଟେ ଠାକୁର ଭାବି ବ୍ୟାକୁଳ—କିପରି ବାବୁରାମଙ୍କ ଭାବସମାଧି ହେବ ! ସେକଥା ଯାକୁ କହନ୍ତି, ତାକୁ କହନ୍ତି, "ବାବୁରାମ ବହୁତ କରି କନ୍ଦାକଟା କରିଯାଇଛି ଯେପରି ତା'ର ଭାବ ସମାଧି ହୁଏ—କ'ଣ ହେବ ? ଯଦି ନ ହୁଏ, ତେବେ ସେ ଏଠି ମୋ କଥା ମାନିବ ନାହିଁ ।" ତା'ପରେ ମା'କୁ (ଶ୍ରୀଶ୍ରୀ ଜଗଦମ୍ବାଙ୍କୁ) କହିଲେ, "ମା', ବାବୁରାମର ଯେପରି ଟିକିଏ ଭାବ ହୁଏ, ସେପରି କରିଦେ ।" ମା' କହିଲେ, "ତା'ର ଭାବ ହେବ ନାହିଁ; ଜ୍ଞାନ ହେବ ।" ଶ୍ରୀଶ୍ରୀଜଗଦମ୍ବାଙ୍କଠାରୁ ସେହି ବାଣୀ ଶୁଣି ଠାକୁରଙ୍କର ପୁଣି ଭାବନା ହେଲା । ଆମମାନଙ୍କ କେତେକଙ୍କ ପାଖରେ କହିଲେ ମଧ—"ଆରେ ବାବୁରାମର କଥା ମା'କୁ କହିଲି, କିନ୍ତୁ ମାଆ କହିଲେ, 'ତା'ର ଭାବ ହେବ ନାହିଁ, ତା'ର ଜ୍ଞାନ ହେବ'; ସେ ଯାହା ହେଉ, କିଛି ଗୋଟେ ହୋଇ ତା' ମନରେ ଶାନ୍ତି ହେଲେ ହିଁ ହେଲା; ତା ପାଇଁ ମନଟା ଖରାପ ହେଉଛି—ଅନେକ କନ୍ଦାକଟା କରିଯାଇଛି"—ଇତ୍ୟାଦି । ଆହା, ତାଙ୍କର କେତେ ଚିନ୍ତା, ଯେପରି ବାବୁରାମର କୌଣସି ପ୍ରକାରରେ ସାକ୍ଷାତ୍ ଧର୍ମୋପଲବ୍ଧି ହୁଏ ! ପୁଣି ସେଇ ଭାବନା କଥା କହିବା ବେଳେ ଠାକୁରଙ୍କର କିପରି କହିବା—"ଏଇଟା ନ ହେଲେ ବାବୁରାମ ମାନିବ ନାହିଁ ।"—ଯେପରି ତାଙ୍କର ମାନିବା ନ ମାନିବା ଉପରେ ଠାକୁରଙ୍କର ସବୁ କିଛି ନିର୍ଭର କରୁଛି !

## ଠାକୁରଙ୍କର ଭକ୍ତମାନଙ୍କ ପାଇଁ ଏତେ ଚିନ୍ତା କାହିଁକି ତାହା ବୁଝାଇ ଦେବା । ହାଜରାଙ୍କର ଠାକୁରଙ୍କୁ ଏକଥା ଭାବିବାକୁ ବାରଣ କରିବାରୁ ତାଙ୍କର ଦର୍ଶନ ଓ ଉତ୍ତର :

ପୁଣି ବେଳେ ବେଳେ କହନ୍ତି—"ଆଚ୍ଛା, କୁହ ଦେଖି, (ବାଳକ ଭକ୍ତମାନଙ୍କୁ ଲକ୍ଷ୍ୟକରି) ଏମାନଙ୍କ ପାଇଁ ଏତେ ଭାବେ କାହିଁକି ? ତା'ର କ'ଣ ହେଲା, ଏହାର କ'ଣ ହେଲା, ଏତେସବୁ କଥା ଭାବେ କାହିଁକି ? ଏମାନେ ତ ସବୁ

ଇସ୍କୁଲ୍‌[୧] ବୟ (School boy); କିଛି ହିଁ ନାହିଁ—ପଇସାକର ମିଠେଇ ଦେଇ ଯେ ମୋ ଖବର ନେବେ, ସେ ଶକ୍ତି ନାହିଁ; ତଥାପି ସେମାନଙ୍କ ପାଇଁ ଏତେ ଚିନ୍ତା କାହିଁକି ? କିଏ ଯଦି ଦୁଇଦିନ ନ ଆସିଛି ତ ତା' ପାଇଁ ମନଟା ଆଉଟୁ ପାଉଟୁ ହୁଏ, ତା'ର ଖବର ଜାଣିବାକୁ ଇଚ୍ଛା ହୁଏ—ଏମିତି କାହିଁକି ହୁଏ ?'' ଜିଜ୍ଞାସିତ ବାଳକ ହୁଏତ କହେ, ''ଆମେ କ'ଣ ଜାଣୁ ମହାଶୟ କାହିଁକି ହୁଏ । ତେବେ ସେମାନଙ୍କର ମଙ୍ଗଳ ପାଇଁ ହିଁ ହୁଏ ।''

ଠାକୁର—କ'ଣ ଜାଣିଛ, ଏମାନେ ସବୁ ଶୁଦ୍ଧସତ୍ତ୍ୱ; ଏମାନଙ୍କୁ ଏପର୍ଯ୍ୟନ୍ତ କାମକାଞ୍ଚନ ସ୍ପର୍ଶ କରି ନାହିଁ, ଏମାନେ ଯଦି ଭଗବାନଙ୍କ ଆଡ଼କୁ ମନ ଦିଅନ୍ତି ତାହାହେଲେ ତାଙ୍କୁ ଲାଭ କରିପାରିବେ, ଏଥିପାଇଁ ହୁଏ ! ଏଠାକାର (ମୋର) ଯେପରି ଗଞ୍ଜେଇଖୋର୍‌ର ସ୍ୱଭାବ; ଗଞ୍ଜେଇଖୋରଙ୍କର ଯେପରି ଏକୁଟିଆ ଗଞ୍ଜେଇ ଟାଣିଲେ ଶାନ୍ତି ହୁଏ ନାହିଁ—ଥରେ ଟାଣିନେଇ ଚିଲମଟାକୁ ଆଉଜଣଙ୍କ ହାତରେ ଦେବା ଦରକାର, ତେବେ ନିଶା ଠିକ୍ ଜମେ—ଏହା ଠିକ୍ ସେହିପରି । ତେବେ ପ୍ରଥମେ ପ୍ରଥମେ ନରେନ୍ଦ୍ର ପାଇଁ ଯେପରି ହେଉଥିଲା, ସେହିପରି ଏମାନଙ୍କ କାହା ପାଇଁ ହୋଇ ନାହିଁ । ଦୁଇଦିନ ଯଦି (ନରେନ୍ଦ୍ରନାଥ) ଆସିବାକୁ ଡେରି କରିଛି ତ' ଛାତି ଭିତରଟା ଯେପରି ଗାମୁଛା ଚିପୁଡ଼ିଲା ପରି ମୋଡ଼ି ହୋଇଯାଏ ! ଲୋକେ କ'ଣ କହିବେ ବୋଲି ଝାଉଁବଣକୁ[୨] ଯାଇ ରଡ଼ି ଛାଡ଼ି କାନ୍ଦେ । ହାଜରା[୩] (ଥରେ) କହୁଥିଲା, 'ଏହା ତୁମର କି ସ୍ୱଭାବ ? ତୁମର ପରମହଂସ ଅବସ୍ଥା; ତୁମେ ସବୁବେଳେ ତାଙ୍କଠାରେ (ଶ୍ରୀଭଗବାନଙ୍କଠାରେ) ମନ ଦେଇ ସମାଧିରେ ତାଙ୍କ ସଙ୍ଗରେ ଏକ ହୋଇ ରହିବ; ତା ନୁହେଁ, ନରେନ୍ଦ୍ର ଆସିଲା ନାହିଁ କାହିଁକି, ଭବନାଥର କ'ଣ ହେବ—ଏ ସବୁ ଭାବୁଛ କାହିଁକି ?' ଶୁଣି ଭାବିଲି—ଠିକ୍ ତ କହିଛି, ଆଉ ଏପରି କରିବି ନାହିଁ; କିନ୍ତୁ ତା'ପରେ ଝାଉଁବଣରୁ ଫେରୁଛି ଆଉ (ଶ୍ରୀଶ୍ରୀଜଗଦମ୍ବା) ଦେଖାଇଦେଲେ ଯେ, ଯେପରି କଲିକତା ସାମନାରେ, ଆଉ ଲୋକଗୁଡ଼ାକ କାମ-କାଞ୍ଚନରେ ଦିନରାତି ବୁଡ଼ି ରହିଛନ୍ତି ଏବଂ ଯନ୍ତ୍ରଣା ଭୋଗ କରୁଛନ୍ତି । ଦେଖି ଦୟା ହେଲା । ଭାବିଲି, ଲକ୍ଷଗୁଣ କଷ୍ଟ ପାଇ ମଧ୍ୟ ଯଦି ଏମାନଙ୍କର ମଙ୍ଗଳ ହୁଏ, ଉଦ୍ଧାର ହୁଏ ତେବେ ତାହା କରିବି । ସେତେବେଳେ ଫେରିଆସି ହାଜରାକୁ କହିଲି—'ବେଶ୍ କରିଛି, ଏମାନଙ୍କ ପାଇଁ ସବୁ ଭାବୁଛି, ତୋ'ର କ'ଣରେ ଶଳା ?'

---

୧. ଠାକୁର ସ୍କୁଲ ଶବ୍ଦକୁ ଏପରି ଉଚ୍ଚାରଣ କରିଥିଲେ ।

୨. ରାଣୀ ରାସମଣୀଙ୍କ କାଳୀମନ୍ଦିରର ଉତ୍ତରାଂଶରେ ଝାଉଁବୃକ୍ଷଗୁଡ଼ିକ ଅବସ୍ଥିତ । ଉଦ୍ୟାନର ଏହି ଅଂଶ ଶୌଚାଦି ପାଇଁ ନିର୍ଦ୍ଦିଷ୍ଟ ଥିବାରୁ ସେଦିଗକୁ କେହି ଅନ୍ୟ କୌଣସି କାରଣରୁ ଯାଉ ନ ଥିଲେ ।

୩. ଶ୍ରୀଯୁକ୍ତ ପ୍ରତାପଚନ୍ଦ୍ର ହାଜରା ।

## ସ୍ୱାମୀ ବିବେକାନନ୍ଦଙ୍କର ଠାକୁରଙ୍କୁ ସେହି ବିଷୟରେ ବାରଣ କରିବା ଏବଂ ଠାକୁରଙ୍କର ଦର୍ଶନ ଓ ଉତ୍ତର :

''ନରେନ୍ଦ୍ର ଥରେ କହିଥିଲା, 'ତୁମେ ଏତେ ନରେନ୍ଦର ନରେନ୍ଦର କର କାହିଁକି ? ଏତେ ନରେନ୍ଦର ନରେନ୍ଦର କଲେ ତୁମେ ନରେନ୍ଦର ପରି ହୋଇଯିବ । ଭରତ ରାଜା ହରିଣକୁ ଭାବି ଭାବି ହରିଣ ହୋଇଯାଇଥିଲେ ।' ନରେନ୍ଦ୍ରର କଥାରେ ଖୁବ୍ ବିଶ୍ୱାସ ଥିଲା ତ ? ଶୁଣି ଭୟ ହେଲା ! ମା'କୁ କହିଲି । ମା' କହିଲେ, 'ସେ ପିଲାଲୋକ; ତା'କଥା କାହିଁକି ଶୁଣୁଛୁ ? ତା ଭିତରେ ନାରାୟଣଙ୍କୁ ଦେଖିବାକୁ ପାଉ, ସେଥିପାଇଁ ତା ଆଡ଼କୁ ଆକର୍ଷଣ ହୁଏ !' ତାହା ଶୁଣି ବଞ୍ଚିଲି ! ନରେନ୍ଦରକୁ ଆସି କହିଲି, 'ତୋ କଥା ମୁଁ ମାନିବି ନାହିଁ; ମା' କହିଛି ତୋ' ଭିତରେ ନାରାୟଣଙ୍କୁ ଦେଖେ ବୋଲି ତୋ' ଆଡ଼କୁ ଆକର୍ଷଣ ହୁଏ, ଯେଉଁ ଦିନ ତାହା ନ ଦେଖିବି, ସେହି ଦିନଠାରୁ ତୋର ମୁହଁ ଚାହିଁବି ନାହିଁରେ ଶଳା' ।'' ଏହିପରି ଅଦ୍ଭୁତ ଠାକୁରଙ୍କର ଅଦ୍ଭୁତ ବ୍ୟବହାରର ପ୍ରତ୍ୟେକଟିର ହିଁ ଅର୍ଥ ଥିଲା, ଆମେ ସେକଥା ନ ବୁଝି ବିପରୀତ ଭାବନା କଲେ ଆମମାନଙ୍କର ଅକଲ୍ୟାଣ ହେବ, ସେଥିପାଇଁ ଏହିପରି ବୁଝାଇ ଦେଉଥିଲେ ।

## ଠାକୁରଙ୍କର ଗୁଣୀ ଓ ମାନୀବ୍ୟକ୍ତିଙ୍କୁ ସମ୍ମାନ କରିବାର କାରଣ :

ଆମେମାନେ ଶ୍ରୀରାମକୃଷ୍ଣଦେବଙ୍କୁ ସର୍ବଦା ଗୁଣୀବ୍ୟକ୍ତିଙ୍କର ଗୁଣର ଆଦର ଓ ସମ୍ମାନନୀୟ ବ୍ୟକ୍ତିଙ୍କର ସମ୍ମାନର ମର୍ଯ୍ୟାଦା ରଖିବାର ଦେଖୁଛୁ । ଠାକୁର କହୁଥିଲେ, ''ଆରେ, ମାନୀଙ୍କୁ ମାନ ନ ଦେଲେ ଭଗବାନ ରୁଷ୍ଟ ହୁଅନ୍ତି; ତାଙ୍କର (ଶ୍ରୀଭଗବାନଙ୍କର) ଶକ୍ତିରେ ହିଁ ତ ସେମାନେ ବଡ଼ ହୋଇଛନ୍ତି, ସେ ହିଁ ତ ତାଙ୍କୁ ବଡ଼ କରିଛନ୍ତି—ସେମାନଙ୍କୁ ଅବଜ୍ଞା କଲେ ତାଙ୍କୁ (ଶ୍ରୀଭଗବାନଙ୍କୁ) ଅବଜ୍ଞା କରିବା ହୁଏ ।''ତେଣୁ ଦେଖିବାକୁ ପାଉ, ଯେତେବେଳେ ହିଁ ଠାକୁର କେଉଁଠି କେବେ ବିଶେଷ ଗୁଣୀ ପୁରୁଷଙ୍କର ଖବର ପାଉଥିଲେ, ସଙ୍ଗେ ସଙ୍ଗେ ତାଙ୍କୁ ଯେକୌଣସି ଉପାୟରେ ଦର୍ଶନ କରିବାକୁ ବ୍ୟସ୍ତ ହେଉଥିଲେ । ଉକ୍ତ ବ୍ୟକ୍ତି ଯଦି ତାଙ୍କ ନିକଟରେ ଉପସ୍ଥିତ ହୁଅନ୍ତି, ତା'ହେଲେ ତ ଆଉ କଥା ହିଁ ନାହିଁ, ନତୁବା ସ୍ୱୟଂ ତାଙ୍କ ନିକଟକୁ ଅନାହୂତ ହୋଇ ମଧ୍ୟ ଗମନ କରି ତାଙ୍କୁ ଦର୍ଶନ, ପ୍ରଣାମ ଓ ଆଳାପ କରି ଆସୁଥିଲେ । ବର୍ଦ୍ଧମାନ ରାଜାଙ୍କର ସଭାପଣ୍ଡିତ ପଦ୍ମଲୋଚନ, ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଭକ୍ତପ୍ରବର କେଶବ ସେନ୍, କାଶୀଧାମର ପ୍ରସିଦ୍ଧ ବୀଣାକାର ମହେଶ, ଶ୍ରୀବୃନ୍ଦାବନରେ ସଖୀଭାବରେ ଭାବିତା ଗଙ୍ଗାମାତା—ଏପରି ଆହୁରି ଅନେକ ଲୋକଙ୍କର ନାମ କୁହାଯାଇପାରେ । ଏମାନଙ୍କର

ପ୍ରତ୍ୟେକଙ୍କର ବିଶେଷ ବିଶେଷ ଗୁଣ କଥା ଶୁଣି ସେମାନଙ୍କୁ ଦର୍ଶନ କରିବା ପାଇଁ ଅନୁସନ୍ଧାନ କରି ଠାକୁର ସ୍ୱୟଂ ସେମାନଙ୍କ ଦ୍ୱାରରେ ଉପସ୍ଥିତ ହୋଇଥିଲେ ।

## ଠାକୁର ଅଭିମାନରହିତ ହେବାପାଇଁ କେତେ ଦୂର ଆଚରଣ କରିଥିଲେ :

ଅବଶ୍ୟ ଠାକୁରଙ୍କର ସେହିପରି ଅଯାଚିତ ହୋଇ କାହାର ଦ୍ୱାରରେ ପହଞ୍ଚିବା ଆଶ୍ଚର୍ଯ୍ୟର ବିଷୟ ନୁହେଁ, କାରଣ 'ମୁଁ ଏତେ ବଡ଼ଲୋକ, ମୁଁ ଅନ୍ୟମାନଙ୍କ ନିକଟକୁ ଏପରି ଗଲେ ମର୍ଯ୍ୟାଦାହାନି ହେବ'—ଏସବୁ ଭାବ ଠାକୁରଙ୍କ ମନରେ କେବେ ହେଲେ ଉଦିତ ହେଉ ନ ଥିଲା । ଅହଂକାର ଓ ଅଭିମାନକୁ ସେ ସମୂଳ ଭସ୍ମକରି ଗଙ୍ଗାରେ ବିସର୍ଜନ ଦେଇଥିଲେ ! କାଳୀମନ୍ଦିରରେ କାଙ୍ଗାଳୀ-ଭୋଜନ ପରେ କାଙ୍ଗାଳମାନଙ୍କ ଅଇଁଠା ପତ୍ରଗୁଡ଼ିକୁ ମୁଣ୍ଡରେ ମୁଣ୍ଡେଇ ବାହାରେ ପକାଇ ସ୍ୱହସ୍ତରେ ସେହି ସ୍ଥାନ ପରିଷ୍କାର କରିଥିଲେ; ସାକ୍ଷାତ୍ ନାରାୟଣଜ୍ଞାନରେ ସେମାନଙ୍କର ଉଚ୍ଛିଷ୍ଟ ମଧ୍ୟ କୌଣସି ସମୟରେ ଗ୍ରହଣ କରିଥିଲେ; କାଳୀମନ୍ଦିରର ଚାକର-ବାକରମାନଙ୍କର ଶୌଚାଦି ନିମନ୍ତେ ଯେଉଁ ସ୍ଥାନ ନିର୍ଦ୍ଦିଷ୍ଟ ଥିଲା, ସେସ୍ଥାନକୁ ମଧ୍ୟ କେବେ କେବେ ସ୍ୱହସ୍ତରେ ଧୌତ କରି ନିଜ କେଶ ଦ୍ୱାରା ପୋଛି[୧] ଜଗଦମ୍ବାଙ୍କ ନିକଟରେ ପ୍ରାର୍ଥନା କରିଥିଲେ ଯେ, 'ମା, ଏମାନଙ୍କଠାରୁ ବଡ଼ ଏହିଭାବ ଯେପରି ମୋର କଦାପି ନ ହୁଏ !' ସେଥିଯୋଗୁଁ ଠାକୁରଙ୍କର ଜୀବନର ଅଦ୍ଭୁତ ନିରଭିମାନତା ଦେଖିଲେ ମଧ୍ୟ ଆମେମାନେ ବିସ୍ମିତ ହେଉ ନାହୁଁ, କିନ୍ତୁ ଅନ୍ୟ ସାଧାରଣଙ୍କର ଯଦି ଅଭିମାନ ସାମାନ୍ୟ କମ୍ ଦେଖୁ ତା ହେଲେ 'କି ଆଶ୍ଚର୍ଯ୍ୟ' ବୋଲି କହିଥାଉ ! କାରଣ, ଠାକୁର ତ ଆମମାନଙ୍କର ଏସଂସାରର ଲୋକ ନ ଥିଲେ !

## ଠାକୁରଙ୍କର ଅଭିମାନ-ରାହିତ୍ୟର ଦୃଷ୍ଟାନ୍ତ : କୈଳାସ ଡାକ୍ତର ଓ ତ୍ରୈଲୋକ୍ୟବାବୁ ସମ୍ବନ୍ଧୀୟ ଘଟଣା :

ଠାକୁର କାଳୀମନ୍ଦିର ବଗିଚାରେ ପିନ୍ଧିଥିବା ଧୋତିର କୁଞ୍ଚଟି ବେକରେ ପକାଇ ବୁଲୁଛନ୍ତି ଦେଖି, ଜନୈକ ବାବୁ ତାଙ୍କୁ ସାମାନ୍ୟ ମାଳୀ-ଜ୍ଞାନରେ କହିଲେ, "ଆରେ, ମୋତେ ସେହି ଫୁଲଗୁଡ଼ିକ ତୋଳି ଦିଅ ତ ।" ଠାକୁର ଏଥିରେ ଦ୍ୱିରୁକ୍ତି ନ କରି ତାହା କରି ସେଠାରୁ ଚାଲିଆସିଲେ ! ମଥୁରବାବୁଙ୍କର ପୁତ୍ର ପରଲୋକଗତ ତ୍ରୈଲୋକ୍ୟବାବୁ ଥରେ ଠାକୁରଙ୍କର ଭଣଜା ହୃଦୁ (ହୃଦୟନାଥ ମୁଖୋପାଧ୍ୟାୟ) ଉପରେ ବିରକ୍ତ ହୋଇ ହୃଦୟକୁ ସେଠାରୁ ବାହାରି ଯିବାକୁ ହୁକୁମ କଲେ । ସେହି ସମୟରେ ଠାକୁରଙ୍କର ମଧ୍ୟ ଆଉ କାଳୀମନ୍ଦିରରେ ରହିବା ଆବଶ୍ୟକତା ନାହିଁ—କ୍ରୋଧରେ ଏହିପରି ଭାବ ଅନ୍ୟମାନଙ୍କ ନିକଟରେ ପ୍ରକାଶ

---

୧. ଠାକୁରଙ୍କ ସାଧନାକାଳରେ ନିଜ ଶରୀର ଉପରେ ଆଦୌ ଦୃଷ୍ଟି ନ ଥିବାରୁ ମୁଣ୍ଡରେ ବଡ଼ ବଡ଼ ବାଳ ହୋଇ ଯାଇଥିଲା ଓ ଧୂଳି ଲାଗି ଏହା ଆପେ ଆପେ ଜଟା ହୋଇଯାଇଥିଲା ।

କରିଥିଲେ । ଠାକୁରଙ୍କ କାନରେ ଏକଥା ପଡ଼ିଲା ମାତ୍ରେ ସେ ହସି ହସି କାନ୍ଧରେ ଗାମୁଛା ପକାଇ ତତ୍‌କ୍ଷଣାତ୍ ସେଠାରୁ ଯିବାକୁ ଉଦ୍ୟତ ହେଲେ । ପ୍ରାୟ ଗେଟ୍ ପର୍ଯ୍ୟନ୍ତ ଯାଇଛନ୍ତି, ଏତିକି ବେଳେ ତ୍ରୈଲୋକ୍ୟବାବୁ ଅମଙ୍ଗଳ–ଆଶଙ୍କାରେ ଭୀତ ହୋଇ ତାଙ୍କ ପାଖରେ ପହଞ୍ଚିଲେ ଏବଂ କହିଲେ 'ମୁଁ ତ ଆପଣଙ୍କୁ ଯିବାକୁ କହି ନାହିଁ, ଆପଣ କାହିଁକି ଯାଉଛନ୍ତି', ଇତ୍ୟାଦି କହି ଠାକୁରଙ୍କୁ ଫେରିବାକୁ ଅନୁରୋଧ କଲେ । ଠାକୁର ମଧ୍ୟ ଯେପରି କିଛି ହୋଇ ନାହିଁ, ସେହି ଭାବରେ ପୂର୍ବପରି ହସି ହସି ନିଜ ଘରକୁ ଆସି ଉପବେଶନ କଲେ !

## ବିଷୟୀ ଲୋକର ବିପରୀତ ବ୍ୟବହାର :

ଏପରି ଆହୁରି ଅନେକ ଘଟଣା ଉଲ୍ଲେଖ କରାଯାଇପାରେ । ସେହି ସମସ୍ତ ବ୍ୟବହାରରେ ଆମେ ଯେତେ ଆଶ୍ଚର୍ଯ୍ୟ ନ ହେଉ, ସଂସାରରେ ଅନ୍ୟ କେହି ଯଦି ଏତେ ପରିମାଣରେ ନ କରି ମଧ୍ୟ ଅଳ୍ପ କିଛି ସେହିପରି କାର୍ଯ୍ୟ କରେ ତ ଆମେ ତାକୁ ଧନ୍ୟ ଧନ୍ୟ କରୁ ! କାରଣ, ଆମେ ମୁହଁରେ କହୁ କି ନ କହୁ ମନ ଭିତରେ ଧରି ନେଇଛୁ ଯେ, ସଂସାରରେ ରହିବାକୁ ହେଲେ 'ଦୁର୍ବଳକୁ ସବଳ ହସ୍ତରେ ହଟାଇ ନିଜର ପଥ ପରିଷ୍କାର କରି ନେବାକୁ ହେବ, ନିଜ ବିଷୟ ଷୋଳଅଣା କରି ଡିଣ୍ଡିମ ପିଟିବାକୁ ହେବ, ନିଜର ଦୁର୍ବଳତାଗୁଡ଼ିକ ଅନ୍ୟଠାରୁ ଲୁଚାଇ ରଖିବାକୁ ହେବ ଏବଂ ସରଳ ଭାବରେ ଭଗବାନ ବା ମନୁଷ୍ୟ ଉପରେ ଷୋଳଅଣା ବିଶ୍ୱାସ କଲେ ସେ କେଉଁ କାମର ହେବ ନାହିଁ ! ହାୟରେ ସଂସାର, ତୁମର ଆନ୍ତର୍ଜାତିକ ନୀତି, ରାଜନୀତି, ସମାଜନୀତି ଓ ବ୍ୟକ୍ତିଗତ ଧର୍ମନୀତି ସର୍ବତ୍ର ହିଁ ଏହି ପ୍ରକାର । ତୁମର 'ଦିଲ୍ଲୀକା ଲଡ୍ଡୁ' ଯିଏ ଖାଇଛି ସେ ତ ପଶ୍ଚାତ୍ତାପ କରିଛି—ପୁଣି ଯିଏ ନ ଖାଇଛି ସିଏ ମଧ୍ୟ ପଶ୍ଚାତ୍ତାପ କରୁଛି ।

## ଠାକୁରଙ୍କର ପ୍ରକଟ ହେବା ସମୟରେ ଧର୍ମ ଆନ୍ଦୋଳନ ଓ ତାହାର କାରଣ :

୧୮୮୫ ମସିହାର ଘଟଣା । ସେହି ସମୟରେ ଠାକୁରଙ୍କର ଭାବ ବିଶେଷରୂପରେ ପ୍ରକଟ ହୋଇଥିଲା । ତାଙ୍କର ଅଦ୍ଭୁତ ଆକର୍ଷଣରେ ସେତେବେଳେ ପ୍ରତିଦିନ ଅନେକ ନୂଆ ନୂଆ ଲୋକ ଦକ୍ଷିଣେଶ୍ୱରକୁ ଆସି ତାଙ୍କୁ ଦର୍ଶନ କରି ଧନ୍ୟ ହେଉଥିଲେ । କଲିକତାର ଛୋଟ ବଡ଼ ସମସ୍ତେ ସେତେବେଳେ ଦକ୍ଷିଣେଶ୍ୱରର ପରମହଂସଙ୍କ ନାମ ଶୁଣିଥିଲେ ଏବଂ ଅନେକେ ତାଙ୍କୁ ଦର୍ଶନ କରିଥିଲେ । ଆହୁରି ମଧ୍ୟ କଲିକତାର ଜନସାଧାରଣଙ୍କ ମନ ଅଧିକାର କରି ଭିତରେ ଭିତରେ ଯେପରି ଏକ ଧର୍ମସ୍ରୋତ ନିରନ୍ତର ପ୍ରବାହିତ ହେଉଥିଲା ।[୧] କେଉଁଠାରେ ହରିସଭା, କେଉଁଠାରେ ନାମ ସଂକୀର୍ତ୍ତନ, କେଉଁଠାରେ ବ୍ରାହ୍ମସମାଜ, କେଉଁଠାରେ ଧର୍ମବ୍ୟାଖ୍ୟା

---

୧. ଚତୁର୍ଥ ଅଧ୍ୟାୟ ଦେଖ ।

ଇତ୍ୟାଦିରେ ସେତେବେଳେ କଲିକତା ନଗରୀ ପୂରି ଉଠିଥିଲା । ଅନ୍ୟମାନେ ଏହାର କାରଣ ନ ବୁଝିଲେ ମଧ୍ୟ ଠାକୁରେ ଏକଥା ଭଲଭାବରେ ବୁଝିଥିଲେ ଏବଂ ତାଙ୍କର ସ୍ତ୍ରୀ-ପୁରୁଷ ଉଭୟବିଧ ଭକ୍ତଙ୍କ ନିକଟରେ ଏବଂ ଆମମାନଙ୍କ ନିକଟରେ ସେହିକଥା ଅନେକଥର କହିଥିଲେ । ଜନୈକ ସ୍ତ୍ରୀ-ଭକ୍ତ କହନ୍ତି, ଠାକୁର ଦିନେ ତାଙ୍କୁ ସେହି ସମ୍ବନ୍ଧରେ କହିଥିଲେ— ''ଆଗୋ, ଏହି ଯାହା ସବୁ ଦେଖୁଛ, ଏତେ ହରିସଭା-ଫରିସଭା, ଏସବୁ ଜାଣିବ (ନିଜ ଶରୀର ଦେଖାଇ) ଏହା ନିମିତ୍ତ । ଏସବୁ କ'ଣ ଥିଲା ? କିପରି କ'ଣ ସବୁ ହୋଇଯାଇଥିଲା ! (ପୁନର୍ବାର ନିଜର ଶରୀର ଦେଖାଇ) ଏହା ଆସିବା ପରଠାରୁ ଏତେ ସବୁ ହୋଇଛି, ଭିତରେ ଭିତରେ ଏକ ଧର୍ମର ସ୍ରୋତ ବହି ଚାଲୁଛି !'' ପୁଣି ଅନ୍ୟ ସମୟରେ ଠାକୁର ଆମକୁ କହିଥିଲେ, ''ଏହି ଯେ ଦେଖୁଛ ସବୁ ୟଙ୍ଗ୍‌ବେଙ୍ଗଲ (Young Bengal) ଏମାନେ କ'ଣ ଭକ୍ତି-ଫକ୍ତିର ଧାର ଧରୁଥିଲେ ? ମଥା ନୁଆଇଁ ପ୍ରଣାମ କରିବା ପର୍ଯ୍ୟନ୍ତ ଜାଣି ନ ଥିଲେ ! ମଥା ନଇଁ ଆଗେ ପ୍ରଣାମ କରୁ କରୁ ତେବେ ଏମାନେ ଧୀରେ ଧୀରେ ମୁଣ୍ଡ ନୁଆଁଇବାକୁ ଶିଖିଛନ୍ତି । କେଶବ ଘରକୁ ଦେଖାକରିବାକୁ ଗଲି, ଦେଖିଲି ଚେୟାରରେ ବସି ଲେଖୁଛି । ମଥା ନୁଆଁଇ ପ୍ରଣାମ କଲି, ସେଥିରେ ସେ ବେକ ହଲାଇ ଟିକିଏ ହସିଦେଲେ ! ତା'ପରେ ଆସିବା ସମୟରେ ମୁଣ୍ଡ ନୁଆଇଁ ଭୂମିରେ ମଥାକୁ ଲଗାଇ ପ୍ରଣାମ କଲି । ସେଥିରେ ହାତଯୋଡ଼ି ମଥାରେ ଲଗାଇଲେ । ତା'ପରେ ଯେତେ ଯିବା ଆସିବା ଚାଲିଲା ଓ କଥାବାର୍ତ୍ତା ଶୁଣିବାକୁ ଲାଗିଲେ, ଏବଂ ମୁଣ୍ଡ ନୁଆଇଁ ପ୍ରଣାମ କରିବାକୁ ଲାଗିଲି କ୍ରମେ କ୍ରମେ ସେତେ ହିଁ ତାର ମୁଣ୍ଡ ନଇଁବାକୁ ଲାଗିଲା; ନ'ହେଲେ ଆଗେ ସବୁ ଏପରି କ'ଣ ସେମାନେ ଭକ୍ତି-ଫକ୍ତି ଜାଣୁଥିଲେ, ନା ମାନୁଥିଲେ !''

### ପଣ୍ଡିତ ଶଶଧରଙ୍କର ଏହି ସମୟରେ କଲିକତା ଆଗମନ ଓ ଧର୍ମବ୍ୟାଖ୍ୟା :

ନବବିଧାନ ବ୍ରାହ୍ମସମାଜ ଠାକୁରଙ୍କର ସଙ୍ଗଲାଭ କରି ଯେତେବେଳେ ଖୁବ୍ ଜମିଯାଇଥିଲା, ସେଇ ସମୟରେ ପଣ୍ଡିତ ଶଶଧରଙ୍କର ହିନ୍ଦୁଧର୍ମ ବ୍ୟାଖ୍ୟା କରିବାକୁ କଲିକତା ଆଗମନ ଓ ପାଶ୍ଚାତ୍ୟ ବିଜ୍ଞାନ ମାଧମରେ ହିନ୍ଦୁଧର୍ମର ନିତ୍ୟ କର୍ତ୍ତବ୍ୟ ଅନୁଷ୍ଠାନଗୁଡ଼ିକୁ ବୁଝାଇବାର ଚେଷ୍ଟା ହୋଇଥିଲା । 'ନାନାମୁନିଙ୍କର ନାନାମତ', କଥାଟି ସବୁ ବିଷୟରେ ସବୁ ସମୟରେ ସତ୍ୟ; ପଣ୍ଡିତ ମହାଶୟଙ୍କର ବୈଜ୍ଞାନିକ ଧର୍ମବ୍ୟାଖ୍ୟା ସମ୍ବନ୍ଧରେ ମଧ୍ୟ ତାହା ମିଥ୍ୟା ହୋଇ ନ ଥିଲା । କିନ୍ତୁ ସେଥିପାଇଁ ଶ୍ରୋତାଙ୍କର ଭିଡ଼ର ଅଭାବ ନ ଥିଲା । ଅଫିସ୍ ଫେରନ୍ତା ବାବୁ-ଭାୟା ଓ ସ୍କୁଲ କଲେଜର ଛାତ୍ରମାନଙ୍କର ଭିଡ଼ ଲାଗି ରହୁଥିଲା । ଆଲ୍‌ବର୍ଟ ହଲରେ ସ୍ଥାନାଭାବ ହେତୁ ଖୁନ୍ଦାଖୁନ୍ଦି ହୋଇ ଠିଆ ହୋଇ ରହିବାକୁ ହେଉଥିଲା । ସମସ୍ତେ ହିଁ ସ୍ଥିର,

ଉଦ୍‌ଗ୍ରୀବ — କୌଣସି ମତେ ପଣ୍ଡିତ ମହାଶୟଙ୍କର ଅପୂର୍ବ ଧର୍ମବ୍ୟାଖ୍ୟା ଯଦି କିଛିଟା ଶୁଣିପାରିବେ ! ଆମର ମନେ ଅଛି, ଆମେ ମଧ ଦିନେ କିଛି ସମୟ ଏହିପରି ଠିଆହୋଇ ଦୁଇ ଚାରିକଥା ଶୁଣିବାକୁ ପାଇଥିଲୁ ଏବଂ ଭିଡ଼ ଭିତର ଦେଇ ମୁଣ୍ଡ ଗୁଞ୍ଜି କୌଣସି ପ୍ରକାରରେ ପୌଢ଼ବୟସ୍କ ପଣ୍ଡିତଜୀଙ୍କର କୃଷ୍ଣଶ୍ମଶ୍ରୁରାଜି–ଶୋଭିତ ସୁନ୍ଦର ମୁଖମଣ୍ଡଳ ଏବଂ ଗୈରିକରୁଦ୍ରାକ୍ଷଶୋଭିତ ବକ୍ଷଃସ୍ଥଳର କିୟଦଂଶର ଦର୍ଶନ ପାଇଥିଲୁ । କଲିକତାର ଅନେକ ସ୍ଥଳରେ ହିଁ ସେତେବେଳେ ସେହି ଗୋଟିଏ ଆଲୋଚନା ହେଉଥିଲା — ଶଶଧର ପଣ୍ଡିତଙ୍କର ଧର୍ମବ୍ୟାଖ୍ୟା !

## ଠାକୁରଙ୍କର ଶଶଧର ପଣ୍ଡିତଙ୍କୁ ଦେଖିବାକୁ ଇଚ୍ଛା :

ପ୍ରବାଦ ଅଛି, ତୁଣ୍ଡ ବାଇଦ ସହସ୍ର କୋଶ — ଅତଏବ ଦକ୍ଷିଣେଶ୍ୱରର ମହାପୁରୁଷଙ୍କ କଥା ପଣ୍ଡିତଜୀଙ୍କ ନିକଟରେ ଏବଂ ପଣ୍ଡିତ ମହାଶୟଙ୍କର ଗୁଣଗାଥା ଠାକୁରଙ୍କ ନିକଟରେ ପହଞ୍ଚିବାରେ ବିଳମ୍ବ ହେଲା ନାହିଁ ! ଭକ୍ତମାନଙ୍କ ମଧ୍ୟରୁ କେହି କେହି ଠାକୁରଙ୍କ ନିକଟରେ ଗଳ୍ପ କରିବାକୁ ଲାଗିଲେ, ''ଖୁବ୍ ପଣ୍ଡିତ, ଭଲ କହୁଛନ୍ତି ! ବତ୍ରିଶାକ୍ଷରୀ ହରିନାମର ସେଦିନ ଦେବୀପକ୍ଷରେ ଅର୍ଥ କଲେ, ଶୁଣି ସମସ୍ତେ ବାଃ ବାଃ କରିବାକୁ ଲାଗିଲେ, ଇତ୍ୟାଦି ।'' ଠାକୁର ଏସବୁ କଥା ଶୁଣି କହିଲେ, ''ଆଚ୍ଛା ? ତାହା ଥରେ ମୋର ଶୁଣିବାକୁ ଇଚ୍ଛା ହେଉଛି ।'' ଏହାକହି ଠାକୁର ପଣ୍ଡିତଙ୍କୁ ଦେଖିବାର ଇଚ୍ଛା ଭକ୍ତମାନଙ୍କ ନିକଟରେ ପ୍ରକାଶ କଲେ ।

## ଠାକୁରଙ୍କର ଶୁଦ୍ଧମନରେ ଉଦିତ ବାସନାସମୂହ ସର୍ବଦା ସଫଳ ହେଉଥିଲା :

ଦେଖାଯାଇଛି, ଠାକୁରଙ୍କର ଶୁଦ୍ଧମନରେ ଯେଉଁ ବାସନା ଯେତେବେଳେ ଉଦୟ ହେଉଥିଲା, ତାହା କୌଣସି ନା କୌଣସି ପ୍ରକାରରେ ପୂର୍ଣ୍ଣ ହେଉଥିଲା । କିଏ ଯେପରି ସେହି ବିଷୟର ପ୍ରତିବନ୍ଧକଗୁଡ଼ିକ ଭିତରେ ଭିତରେ ଘୁଞ୍ଚାଇ ଦେଇ ତାହାର ସଫଳ ହେବା ପଥ ପରିଷ୍କାର କରି ରଖୁଥିଲା ! ପୂର୍ବରୁ ଶୁଣିଛୁ, କାୟମନୋବାକ୍ୟରେ ସତ୍ୟପାଳନ ଓ ଶୁଦ୍ଧ ପବିତ୍ର ଭାବ ମନରେ ନିରନ୍ତର ରଖି ରଖି ମନୁଷ୍ୟର ଏପରି ଅବସ୍ଥା ହୋଇଥାଏ ଯେ, ସେତେବେଳେ ସେ ଆଉ କୌଣସି ଅବସ୍ଥାରେ କୌଣସି ପ୍ରକାର ମିଥ୍ୟା ଭାବ ଚେଷ୍ଟା କରି ମଧ ମନରେ ଆଣିପାରେ ନାହିଁ — ଯାହା କିଛି ସଂକଳ୍ପ ତାର ମନରେ ଆସେ ସେସବୁ ହିଁ ସତ୍ୟ ହୁଏ । କିନ୍ତୁ ଏକଥା ଯେ ମନୁଷ୍ୟ ଶରୀରରେ ଏତେଦୂର ହୋଇପାରେ, ତାହା କେବେ ବିଶ୍ୱାସ କରିପାରି ନ ଥିଲୁ । ଠାକୁରଙ୍କର ମନର ସଂକଳ୍ପଗୁଡ଼ିକ ଅତର୍କିତ ଭାବରେ ସିଦ୍ଧ ହେବାର ବାରମ୍ବାର ଦେଖି ହିଁ ସେହି କଥାରେ ଆମର କ୍ରମେ କ୍ରମେ ବିଶ୍ୱାସ ଜନ୍ମିଥିଲା । ତାହା ମଧ ଠାକୁରଙ୍କ ଶରୀର ଥିବାବେଳେ ହୋଇ ନ ଥିଲା । ଠାକୁର କହିଥିଲେ, ''କେଶବ, ବିଜୟଙ୍କ ଭିତରେ ଦେଖିଲି ଗୋଟିଏ ଗୋଟିଏ

ଦୀପଶିଖା ସଦୃଶ ଜ୍ଞାନର ଶିଖା ଜଳୁଛି, ଆଉ ନରେନ୍ଦ୍ର ଭିତରେ ଦେଖେ ଯେ ଜ୍ଞାନ-ସୂର୍ଯ୍ୟ ରହିଛି ! କେଶବ ଗୋଟିଏ ଶକ୍ତିରେ ଜଗତକୁ ଆନ୍ଦୋଳିତ କରିଛି, ନରେନ୍ ଭିତରେ ସେପରି ଅଠରଟି ଶକ୍ତି ରହିଛି ।'' —ଏ ସମସ୍ତ ତାଙ୍କର ନିଜର ସଂକଳ୍ପର କଥା ନୁହେଁ, ଭାବାବେଶରେ ଦେଖାଶୁଣା କଥା; କିନ୍ତୁ ଏସବୁ କଥାରେ କ'ଣ ଆମର ଠିକ୍ ଠିକ୍ ବିଶ୍ୱାସ ଆସୁଥିଲା ? କେତେବେଳେ ଭାବୁଥିଲୁ— ହୋଇପାରେ, ଠାକୁର ଲୋକଙ୍କ ଭିତର ଦେଖିବାକୁ ପାଆନ୍ତି; ସେ ଯେତେବେଳେ କହୁଛନ୍ତି, ଏହା ମଧ୍ୟରେ କିଛି ଗୂଢ଼ କଥା ଅଛି; ପୁଣି କେତେବେଳେ ଭାବୁଥିଲୁ, ଜଗତ ବିଖ୍ୟାତ ବାଗ୍ମୀ ଭକ୍ତ କେଶବଚନ୍ଦ୍ର ସେନ୍ କେଉଁଠି ଆଉ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କ ପରି ଗୋଟିଏ ସ୍କୁଲର ଛାତ୍ର କେଉଁଠି ! ଏହା କ'ଣ କେବେ ହୋଇପାରେ ? ଠାକୁରଙ୍କର ଦେଖିବା ଶୁଣିବା କଥାରେ ଯେତେବେଳେ ଆମମାନଙ୍କର ଏପରି ସନ୍ଦେହ ଆସିଥାଏ, ସେତେବେଳେ 'ମୋର ଏହି ଇଚ୍ଛା ହେଉଛି' ବୋଲି ଠାକୁର ଯେତେବେଳେ ତାଙ୍କର ମନୋଗତ ସଂକଳ୍ପ କଥା କହୁଥିଲେ, ତାହା ଘଟିବା ସମ୍ବନ୍ଧରେ ଯେ ସନ୍ଦେହ ଆସୁ ନ ଥିଲା, ଏହା କେମିତି କହିବୁ ।

### ୧୮୮୫ ମସିହାରେ ନବଯାତ୍ରା ସମୟରେ ଠାକୁର ଯେଉଁ ଯେଉଁ ସ୍ଥାନକୁ ଯାଇଥିଲେ ତାହାର ବିବରଣ :

ପଣ୍ଡିତ ଶଶଧରଙ୍କ ସମ୍ବନ୍ଧରେ ଠାକୁରଙ୍କ ସହିତ ଏପରି କଥାବାର୍ତ୍ତା ହେବାର କିଛିଦିନ ପରେ ରଥଯାତ୍ରା ଆସିଲା । ନଅଦିନ ଧରି ରଥୋତ୍ସବ ହେଉଥିବାରୁ ଏହାକୁ ନବଯାତ୍ରା ବୋଲି କୁହାଯାଏ । ୧୮୮୫ ମସିହା ନବଯାତ୍ରା ସମୟରେ ଠାକୁରଙ୍କ ସମ୍ବନ୍ଧରେ ଅନେକଗୁଡ଼ିଏ କଥା ଆମମାନଙ୍କ ମନରେ ଉଦିତ ହେଉଅଛି । ଠାକୁରଙ୍କର ଏହି ବର୍ଷର ରଥଯାତ୍ରା ଦିନ ସକାଳେ ଠନଠନିୟାର ଶ୍ରୀଯୁକ୍ତ ଈଶାନଚନ୍ଦ୍ର ମୁଖୋପାଧ୍ୟାୟଙ୍କର ଗୃହକୁ ନିମନ୍ତ୍ରଣ ରକ୍ଷା ପାଇଁ ଗମନ କରିଥିଲେ । ସେଠାରୁ ଅପରାହ୍ଣରେ ଶଶଧର ପଣ୍ଡିତଙ୍କୁ ଦେଖିବାକୁ ଗଲେ ଓ ସନ୍ଧ୍ୟାପରେ ବାଗବଜାରର ଶ୍ରୀଯୁକ୍ତ ବଳରାମବାବୁଙ୍କ ଘରକୁ ଯାଇ ସେଠାରେ ରଥଯାତ୍ରା ଉତ୍ସବରେ ଯୋଗଦାନ କରି ସେହି ରାତ୍ରି ସେଠାରେ ଅବସ୍ଥାନ କରିଥିଲେ ଏବଂ ପରଦିନ ସକାଳେ କେତେକ ଭକ୍ତଙ୍କ ସହିତ ନୌକାରେ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ପୁନରାଗମନ କଲେ । ଏହାର କେତେଦିନ ପରେ ପୁଣି ପଣ୍ଡିତ ଶଶଧର ଆଲମବଜାର ବା ଉତ୍ତର ବରାହନଗରର ଗୋଟିଏ ସ୍ଥାନରେ ଧର୍ମ-ସମ୍ବନ୍ଧୀୟ ବକ୍ତୃତା ଦେବାକୁ ଆସି ସେଠାରୁ ଠାକୁରଙ୍କର ଦର୍ଶନ ପାଇଁ ଦକ୍ଷିଣେଶ୍ୱରର କାଳୀମନ୍ଦିରକୁ ଆଗମନ କରିଥିଲେ । ଏହାପରେ ବାହୁଡ଼ାଦିନ ସକାଳେ ଠାକୁର ପୁନରାୟ ବାଗବଜାରର ବଳରାମବାବୁଙ୍କ ଘରକୁ ଯାଇଥିଲେ ଏବଂ ସେଦିନ ରାତିରେ ଏବଂ ପରଦିନ ରାତିରେ ସେଠାରେ ଭକ୍ତମାନଙ୍କ ସହିତ ଆନନ୍ଦରେ

ଅବସ୍ଥାନ କରି ତୃତୀୟ ଦିନ ସକାଳେ 'ଗୋପାଳର ମା' ପ୍ରଭୃତି ଭକ୍ତମାନଙ୍କ ସହିତ ନୌକାରେ ଦକ୍ଷିଣେଶ୍ୱର ପ୍ରତ୍ୟାବର୍ତ୍ତନ କରିଥିଲେ । ବାହୁଡ଼ା ଦିନ ପଣ୍ଡିତ ଶଶଧର ମଧ୍ୟ ଠାକୁରଙ୍କୁ ଦର୍ଶନ କରିବାକୁ ବଳରାମବାବୁଙ୍କ ଘରକୁ ସ୍ୱୟଂ ଆଗମନ କରି ସଜଳନୟନରେ କରଯୋଡ଼ି ଠାକୁରଙ୍କୁ ପୁନର୍ବାର ନିବେଦନ କଲେ, ''ଦର୍ଶନ-ଚର୍ଚ୍ଚା କରି କରି ମୋର ହୃଦୟ ଶୁଷ୍କ ହୋଇଯାଇଛି; ମୋତେ ଏକ ବିନ୍ଦୁ ଭକ୍ତି ଦାନ କରନ୍ତୁ ।'' ଏହି କଥାରେ ଠାକୁର ଭାବାବିଷ୍ଟ ହୋଇ ପଣ୍ଡିତ ମହାଶୟଙ୍କର ହୃଦୟ ସେଦିନ ସ୍ପର୍ଶ କରିଥିଲେ । ସେହି ସମୟର କଥାଗୁଡ଼ିକ ଆମେ ପାଠକମାନଙ୍କୁ ସବିସ୍ତାର କହିଲେ ମନ୍ଦ ହେବ ନାହିଁ ।

### ଈଶାନବାବୁଙ୍କର ପରିଚୟ :

ଏହାପୂର୍ବରୁ କୁହାହୋଇଛି, ରଥଦିନ ସକାଳେ ଠାକୁର କଲିକତାରେ ଠନ୍‌ଠନିୟାର ଈଶାନବାବୁଙ୍କ ଘରକୁ ଯାଇଥିଲେ । ତାଙ୍କ ସହିତ ଶ୍ରୀଯୁକ୍ତ ଯୋଗେନ୍ (ସ୍ୱାମୀ ଯୋଗାନନ୍ଦ), ହାଜରା ପ୍ରଭୃତି କେତେଜଣ ଭକ୍ତ ଥିଲେ । ଶ୍ରୀଯୁକ୍ତ ଈଶାନଙ୍କ ପରି ଦୟାଳୁ, ଦାନଶୀଳ ଓ ଭଗବତ୍‌ବିଶ୍ୱାସୀ ଭକ୍ତଙ୍କର ଦର୍ଶନ ସଂସାରରେ ଦୁର୍ଲ୍ଲଭ । ତାଙ୍କର ଆଠଗୋଟି ପୁତ୍ର, ସମସ୍ତେ କୃତବିଦ୍ୟ । ତୃତୀୟ ପୁତ୍ର ସତୀଶ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କ (ସ୍ୱାମୀ ବିବେକାନନ୍ଦଙ୍କ) ସହପାଠୀ । ଶ୍ରୀଯୁକ୍ତ ସତୀଶଙ୍କର ପଖୱାଜରେ ଦକ୍ଷତା ଥିବାରୁ ତାଙ୍କର ଏହି ବାଦ୍ୟ ସହିତ ନରେନ୍ଦ୍ରଙ୍କର ସୁଲଳିତ କଣ୍ଠର ଗାନ ଏଠାରେ ଅନେକ ସମୟରେ ଶୁଣିବାକୁ ମିଳୁଥିଲା । ଈଶାନବାବୁଙ୍କର ଦୟା ସମ୍ବନ୍ଧରେ ଉଲ୍ଲେଖ କରି ସ୍ୱାମୀ ବିବେକାନନ୍ଦ ଆମକୁ ଦିନେ କହିଥିଲେ ଯେ, ତାହା ପଣ୍ଡିତ ବିଦ୍ୟାସାଗରଙ୍କ ଅପେକ୍ଷା କିଛି କମ୍ ନ ଥିଲା । ସ୍ୱାମୀଜୀ ସ୍ୱଚକ୍ଷୁରେ ଦେଖିଥିଲେ, ଈଶାନବାବୁ ନିଜର ଅନ୍ନବ୍ୟଞ୍ଜନ ଇତ୍ୟାଦି ଅନେକଥର (ଘରେ ସେତେବେଳେ କିଛି ଖାଦ୍ୟ ପ୍ରସ୍ତୁତ ନ ଥିବାରୁ) ଅଭୁକ୍ତ ଭିକାରୀଙ୍କୁ ଅର୍ପଣ କରି ଯାହା ତାହା ଖାଇ ଦିନ କଟାଇ ଦେଉଥିଲେ । ଅନ୍ୟମାନଙ୍କ ଦୁଃଖ କଷ୍ଟ କଥାଶୁଣି ଏହା ଦୂର କରିବା ନିଜର ସାଧ୍ୟାତୀତ ଦେଖି କେତେଦିନ ଯେ ସ୍ୱାମୀଜୀ ତାଙ୍କୁ (ଈଶାନବାବୁଙ୍କୁ) ଅଶ୍ରୁ ବିସର୍ଜନ କରିବାର ଦେଖିଥିଲେ, ତାହା ମଧ୍ୟ କହୁଥିଲେ । ଶ୍ରୀଯୁକ୍ତ ଈଶାନ ଯେପରି ଦୟାଳୁ ଥିଲେ ସେପରି ଜପ-ପରାୟଣ ମଧ୍ୟ ଥିଲେ । ତାଙ୍କର ଦକ୍ଷିଣେଶ୍ୱରରେ ନିୟମପୂର୍ବକ ଉଦୟାସ୍ତ ଜପ କରିବା କଥା ଆମେମାନେ ଅନେକେ ଜାଣିଥିଲୁ । ଜାପକ ଈଶାନ ଠାକୁରଙ୍କର ବିଶେଷ ପ୍ରିୟ ତଥା ଅନୁଗ୍ରହର ପାତ୍ର ଥିଲେ । ଆମର ମନେ ଅଛି, ଜପ ଶେଷ କରି ଈଶାନବାବୁ ଯେତେବେଳେ ଠାକୁରଙ୍କର ଚରଣରେ ଦିନେ ସନ୍ଧ୍ୟା ସମୟରେ ପ୍ରଣାମ କରିବାକୁ ଆସିଲେ, ସେତେବେଳେ ଠାକୁର ଭାବାବିଷ୍ଟ ହୋଇ ତାଙ୍କର ଶ୍ରୀଚରଣ ଈଶାନଙ୍କର ମସ୍ତକ ଉପରେ ରଖିଥିଲେ । ପରେ ବାହ୍ୟଦଶା ପ୍ରାପ୍ତ ହୋଇ ଉଚ୍ଚସ୍ୱରରେ ଈଶାନଙ୍କୁ

କହିବାକୁ ଲାଗିଲେ, ''ଆରେ ବ୍ରାହ୍ମଣ, ଡୁବିଯା, ଡୁବିଯା'' (ଅର୍ଥାତ୍ କେବଳ ଉପରେ ଉପରେ ଜପ ନ କରି ଶ୍ରୀଭଗବାନଙ୍କର ନାମରେ ତନ୍ମୟ ହୋଇଯାଆ) । ଏହାପରଠାରୁ ସକାଳର ପୂଜା ଓ ଜପରେ ହିଁ ଈଶାନଙ୍କର ପ୍ରାୟ ଅପରାହ୍ଣ ୪ଟା ହୋଇଯାଉଥିଲା । ପରେ କିଞ୍ଚିତ୍ ଲଘୁ ଆହାର କରି ଅନ୍ୟମାନଙ୍କ ସହିତ କଥାବାର୍ତ୍ତା ବା ଭଜନ-ଶ୍ରବଣାଦିରେ ସନ୍ଧ୍ୟା ପର୍ଯ୍ୟନ୍ତ କଟାଇ ପୁନରାୟ ସାନ୍ଧ୍ୟ ଜପରେ ଉପବେଶନ କରି କେତେ ଘଣ୍ଟା କଟାଉଥିଲେ । ବିଷୟକର୍ମ ଦେଖିବା ଦାୟିତ୍ୱ ପୁତ୍ରମାନେ ହିଁ ନେଇଥିଲେ । ଠାକୁର ଈଶାନଙ୍କର ଘରକୁ ବେଳେ ବେଳେ ଯାଉଥିଲେ, ଏବଂ ଈଶାନ ମଧ୍ୟ କଲିକତାରେ ଥିଲେ ଦକ୍ଷିଣେଶ୍ୱରକୁ ଠାକୁରଙ୍କର ଦର୍ଶନ ନିମନ୍ତେ ଆସୁଥିଲେ । ଅଥବା ପବିତ୍ର ଦେବସ୍ଥାନ ଓ ତୀର୍ଥାଦି-ଦର୍ଶନରେ ଯାଇ ତପସ୍ୟାରେ କାଳ କଟାଉଥିଲେ ।

ସେହିବର୍ଷ (୧୮୮୫ ମସିହା) ରଥଯାତ୍ରା ଦିନ ଶ୍ରୀଯୁକ୍ତ ଈଶାନଙ୍କ ଗୃହକୁ ଆସି ଠାକୁର ଭାଟପଡ଼ାର କେତେଜଣ ପଣ୍ଡିତଙ୍କ ସହିତ ଧର୍ମ ବିଷୟକ ନାନା କଥାବାର୍ତ୍ତା କରିଥିଲେ । ପରେ ସ୍ୱାମୀ ବିବେକାନନ୍ଦଙ୍କଠାରୁ ପଣ୍ଡିତ ମହାଶୟଙ୍କ କଥାଶୁଣି ଏବଂ ତାଙ୍କର ବାସସ୍ଥାନ ଅତି ନିକଟରେ ଥିବା ଜାଣିପାରି ଠାକୁର ଶଶଧରଙ୍କୁ ସେଦିନ ଦେଖିବାକୁ ଯାଇଥିଲେ । ଶଶଧର ପଣ୍ଡିତଙ୍କର କଲିକତା ଆସିବା କଥା ସ୍ୱାମୀଜୀ ପ୍ରଥମରୁ ଜାଣିଥିଲେ । କାରଣ, ଯେଉଁମାନଙ୍କର ସାଦର ନିମନ୍ତ୍ରଣରେ ସେ ଧର୍ମବକ୍ତୃତା ଦେବାକୁ ଆଗମନ କରିଥିଲେ ସ୍ୱାମୀଜୀଙ୍କର ସେମାନଙ୍କ ସହିତ ଆଗରୁ ପରିଚୟ ଥିଲା ଏବଂ କଲେଜଷ୍ଟ୍ରିଟ୍‌ସ୍ଥିତ ସେମାନଙ୍କ ବାସଭବନକୁ ସ୍ୱାମୀଜୀଙ୍କର ଯିବା ଆସିବା ମଧ୍ୟ ଥିଲା । ପୁନଶ୍ଚ ପଣ୍ଡିତଜୀଙ୍କର ଆଧ୍ୟାତ୍ମିକ ଧର୍ମବ୍ୟାଖ୍ୟାଗୁଡ଼ିକ ଭ୍ରମପ୍ରମାଦପୂର୍ଣ୍ଣ ବୋଲି ଧାରଣା ହେବାରୁ ଯୁକ୍ତିତର୍କ ଦ୍ୱାରା ତାଙ୍କୁ ଏବିଷୟ ବୁଝାଇ ଦେବା ଇଚ୍ଛାରେ ସ୍ୱାମୀଜୀଙ୍କର ଏହି ଗୃହକୁ ଗମନାଗମନ ଏହି ସମୟରେ ବୃଦ୍ଧି ପାଇଥିଲା । ସ୍ୱାମୀ ବ୍ରହ୍ମାନନ୍ଦ କହନ୍ତି, ଏହିପରି ସ୍ୱାମୀଜୀ ହିଁ ପଣ୍ଡିତ ମହାଶୟଙ୍କ ସମ୍ବନ୍ଧରେ ଅନେକ କଥା ଜ୍ଞାତ ହୋଇ ଠାକୁରଙ୍କୁ ଏସବୁ କହିଥିଲେ ଏବଂ ଠାକୁରଙ୍କୁ ଅନୁରୋଧ କରି ତାଙ୍କ ନିକଟକୁ ନେଇଥିଲେ । ପଣ୍ଡିତ ଶଶଧରଙ୍କୁ ଦେଖିବାକୁ ଯାଇ ସେଦିନ ଠାକୁର ତାଙ୍କୁ ଅନେକ ଅମୂଲ୍ୟ ଉପଦେଶ ଦେଇଥିଲେ । ଶ୍ରୀଶ୍ରୀଜଗଦମ୍ବାଙ୍କଠାରୁ କ୍ଷମତାପ୍ରାପ୍ତ ନ ହୋଇ ଧର୍ମପ୍ରଚାର କରିବାକୁ ଗଲେ ତାହା ସମ୍ପୂର୍ଣ୍ଣ ନିଷ୍ଫଳ ହୋଇଥାଏ ଏବଂ ବେଳେ ବେଳେ ପ୍ରଚାରକର ଅଭିମାନ-ଅହଂକାର ବଢ଼ିଯାଇ ତାର ସର୍ବନାଶର ପଥ ପରିଷ୍କାର କରିଦେଇଥାଏ, ଏହି ସମସ୍ତ କଥା ଠାକୁର ପଣ୍ଡିତ ମହାଶୟଙ୍କୁ ତାଙ୍କର ପ୍ରଥମ ଦର୍ଶନ ସମୟରେ ହିଁ କହିଥିଲେ । କହିବା ନିଷ୍ପ୍ରୟୋଜନ ଯେ, ଏହି ସମସ୍ତ ଜ୍ୱଳନ୍ତ ଶକ୍ତିପୂର୍ଣ୍ଣ ମହାବାକ୍ୟ ଫଳରେ ହିଁ ଯେ ପଣ୍ଡିତ ମହାଶୟ କିଛି କାଳ ପରେ ପ୍ରଚାର କାର୍ଯ୍ୟ ତ୍ୟାଗକରି କାମାକ୍ଷାପୀଠକୁ ତପସ୍ୟା ନିମିତ୍ତ ଗମନ କରିଥିଲେ ।

## ସ୍ୱାମୀ ଯୋଗାନନ୍ଦଙ୍କର ଆଚାରନିଷ୍ଠା :

ପଣ୍ଡିତ ମହାଶୟଙ୍କଠାରୁ ବିଦାୟ ନେଇ ଆସି ଠାକୁର ସେଦିନ ଶ୍ରୀଯୁକ୍ତ ଯୋଗେନଙ୍କ ସହିତ ସନ୍ଧ୍ୟାସମୟରେ ବାଗବଜାରରେ ବଳରାମ ବସୁଙ୍କ ବାସଗୃହରେ ପହଞ୍ଚିଲେ । ଯୋଗେନ୍ ସେତେବେଳେ ଆହାରାଦିରେ ବିଶେଷ 'ଆଚାରୀ' ଥିଲେ, ଏବଂ କାହା ଘରେ ଜଳଗ୍ରହଣ ପର୍ଯ୍ୟନ୍ତ କରୁ ନ ଥିଲେ । ତେଣୁ ନିଜ ଘରେ ସାମାନ୍ୟ ଜଳଯୋଗ କରି ଠାକୁରଙ୍କ ସହିତ ଆସିଥିଲେ । ଠାକୁର ମଧ୍ୟ ତାଙ୍କୁ କେଉଁଠି ଖାଇବାକୁ ଅନୁରୋଧ କରୁ ନ ଥିଲେ; କାରଣ, ଯୋଗେନଙ୍କର ନିଷ୍ଠାଚାରିତା ବିଷୟ ଠାକୁରଙ୍କୁ ଅଜ୍ଞାତ ନ ଥିଲା । କେବଳ ବଳରାମବାବୁଙ୍କର ଶ୍ରଦ୍ଧାଭକ୍ତି ଓ ଠାକୁରଙ୍କ ଉପରେ ବିଶ୍ୱାସ ପ୍ରତ୍ୟକ୍ଷ କରି ଶ୍ରୀଯୁକ୍ତ ଯୋଗେନ୍ ତାଙ୍କ ଘରେ ଫଳମୂଳ–ଦୁଗ୍ଧ ତଥା ମିଷ୍ଟାନ୍ନାଦି ଗ୍ରହଣ କରୁଥିଲେ — ଏକଥା ମଧ୍ୟ ଠାକୁରଙ୍କୁ ଜଣାଥିଲା । ସେଥିପାଇଁ ସେଠାରେ ପହଞ୍ଚିଲା ମାତ୍ରେ ବଳରାମବାବୁଙ୍କୁ କହିଲେ, ''ଆହେ, ଏହାର (ଯୋଗେନ୍‌ର) ଆଜି ଖାଇବା ହୋଇ ନାହିଁ, ତାକୁ କିଛି ଖାଇବାକୁ ଦିଅ ।'' ବଳରାମବାବୁ ଯୋଗେନ୍‌ଙ୍କୁ ସାଦରେ ଘର ଭିତରକୁ ନେଇ ଜଳଯୋଗ କରାଇଲେ । ଭାବସମାଧିରେ ଆତ୍ମହରା ଠାକୁରଙ୍କର ଭକ୍ତମାନଙ୍କର ଶାରୀରିକ ଓ ମାନସିକ ପ୍ରତ୍ୟେକ ବିଷୟରେ କେତେଦୂର ଲକ୍ଷ୍ୟ ରହୁଥିଲା, ଏହା ତାହାର ହିଁ ଅନ୍ୟତମ ଦୃଷ୍ଟାନ୍ତ ବୋଲି ଆମେ ଏଠାରେ ଏହାର ଉଲ୍ଲେଖ କଲୁ ।

ବଳରାମବାବୁଙ୍କ ଗୃହରେ ରଥଯାତ୍ରା ଦିନ ଠାକୁରଙ୍କୁ ନେଇ ଆନନ୍ଦର ହାଟ ବସୁଥିଲା । ଆଜି ସନ୍ଧ୍ୟା ପରେ ଶ୍ରୀଶ୍ରୀ ଜଗନ୍ନାଥଙ୍କ ଶ୍ରୀବିଗ୍ରହଙ୍କୁ ମାଲ୍ୟଚନ୍ଦନରେ ଭୂଷିତ କରି ଭିତରର ଠାକୁର ଘରୁ ବାହାରକୁ ଅଣାଗଲା ଏବଂ ବସ୍ତ୍ର ପତାକା ଆଦି ଦ୍ୱାରା ଏହା ପୂର୍ବରୁ ସଜ୍ଜିତ ଏକ ଛୋଟ ରଥରେ ବସାଇ ପୁଣି ପୂଜା କରାହେଲା । ବଳରାମବାବୁଙ୍କର ପୁରୋହିତ ବଂଶଜ ଠାକୁରଙ୍କର ଭକ୍ତ ଶ୍ରୀଯୁକ୍ତ ଫକୀର ହିଁ ସେହି ପୂଜା କରିଥିଲେ ।

ଶ୍ରୀଯୁକ୍ତ ଫକୀର ବଳରାମବାବୁଙ୍କ ପାଖରେ ରହି ସ୍କୁଲରେ ପଢୁଥିଲେ ଏବଂ ଆଶ୍ରୟଦାତାଙ୍କର ରାମକୃଷ୍ଣ ନାମକ ଏକମାତ୍ର ଶିଶୁପୁତ୍ରଙ୍କର ପଢ଼ାଶୁଣାର ତତ୍ତ୍ୱାବଧାନ କରୁଥିଲେ । ସେ ଅତ୍ୟନ୍ତ ନିଷ୍ଠାପରାୟଣ ଓ ଭକ୍ତିମାନ ଥିଲେ ଏବଂ ଠାକୁରଙ୍କୁ ପ୍ରଥମ ଦର୍ଶନ ପରଠାରୁ ତାଙ୍କ ପ୍ରତି ବିଶେଷ ଭକ୍ତିପରାୟଣ ହୋଇଥିଲେ । ଠାକୁର ବେଳେ ବେଳେ ତାଙ୍କଠାରୁ ସ୍ତୋତ୍ର ଇତ୍ୟାଦି ଶୁଣିବାକୁ ଭଲ ପାଉଥିଲେ ଏବଂ ଶ୍ରୀମତ୍ ଶଙ୍କରାଚାର୍ଯ୍ୟକୃତ କାଳୀକାସ୍ତୋତ୍ର କିପରି ଧୀରେ ଧୀରେ ପ୍ରତ୍ୟେକ ଶବ୍ଦଗୁଡ଼ିକ ସମ୍ପୂର୍ଣ୍ଣ ଉଚ୍ଚାରଣ କରି ଆବୃତ୍ତି କରିବାକୁ ହୁଏ, ତାହା ତାଙ୍କୁ ଦିନେ ଶିଖାଇ ଦେଇଥିଲେ । ଠାକୁର ସେଦିନ ସନ୍ଧ୍ୟାସମୟରେ ଫକୀରଙ୍କୁ ନିଜ କକ୍ଷର ଉତ୍ତର ଦିଗ ବାରଣ୍ଡାକୁ ନେଇ ଯାଇ ଭାବାବିଷ୍ଟ ହୋଇ ସ୍ପର୍ଶ ମଧ୍ୟ

କରିଥିଲେ ଏବଂ ଧ୍ୟାନ କରିବାକୁ କହିଥିଲେ । ଫକୀରଙ୍କର ସେଥିରେ ଅଦ୍ଭୁତ ଦର୍ଶନାଦି ହୋଇଥିଲା ।

### ବଳରାମବାବୁଙ୍କ ଘରେ ରଥଯାତ୍ରା ଉତ୍ସବ :

ଏଥର ସଂକୀର୍ତ୍ତନ କରୁ କରୁ ରଥ ଟଣା ଆରମ୍ଭ ହେଲା । ଠାକୁର ସ୍ୱୟଂ ରଥର ରସି ଧରି ଅଳ୍ପ ସମୟ ଟାଣିଲେ । ପରେ ଭାବାବେଶରେ ସଂକୀର୍ତ୍ତନର ତାଳେ ତାଳେ ସୁନ୍ଦରଭାବରେ ନୃତ୍ୟ କରିବାକୁ ଲାଗିଲେ । ସେହି ଭାବମତ୍ତ ହୁଙ୍କାର ଓ ନୃତ୍ୟରେ ମୁଗ୍ଧ ହୋଇ ସମସ୍ତେ ସେତେବେଳେ ଆତ୍ମହରା ହୋଇ ଭଗବଦ୍ ଭକ୍ତିରେ ଉନ୍ମାଦ ହେଲେ ! ବାହାର ଗୃହର ଦୋତାଲା ବାରଣ୍ଡାରେ ଘୁରି ଘୁରି ଅନେକ ସମୟ ଧରି ଏହିପରି ନୃତ୍ୟ, କୀର୍ତ୍ତନ ଓ ରଥଟଣା ହେଲା ପରେ ଶ୍ରୀଶ୍ରୀଜଗନ୍ନାଥଦେବ, ଶ୍ରୀଗୋବିନ୍ଦ, ଶ୍ରୀମତୀ ରାଧାରାଣୀ, ଶ୍ରୀମହାପ୍ରଭୁ ଓ ତାଙ୍କର ସାଙ୍ଗୋପାଙ୍ଗ ଏବଂ ପରିଶେଷରେ ସେମାନଙ୍କର ଭକ୍ତବୃନ୍ଦ, ସମସ୍ତଙ୍କର ପୃଥକ୍ ପୃଥକ୍ ନାମ ଉଲ୍ଲେଖ କରି ଜୟକାର ଦେଇ ପ୍ରଣାମାନ୍ତେ କୀର୍ତ୍ତନ ଶେଷ ହେଲା । ପରେ ରଥରୁ ଜଗନ୍ନାଥଦେବଙ୍କର ଶ୍ରୀବିଗ୍ରହଙ୍କୁ ଅବରୋହଣ କରାଇ ତିନିତାଲା ଛାତ ଘରେ ସାତଦିନ ପାଇଁ ସ୍ଥାନାନ୍ତରିତ କରି ସ୍ଥାପନ କରାହେଲା । ଏହାର ଅର୍ଥ—ରଥରେ ଚଢ଼ି ଯେପରି ଜଗନ୍ନାଥଦେବ ଅନ୍ୟତ୍ର ଆସିଛନ୍ତି; ସାତଦିନ ପରେ ପୁନରାୟ ଏଠାରୁ ରଥରେ ଚଢ଼ି ନିଜର ପୂର୍ବସ୍ଥାନକୁ ଗମନ କରିବେ । ଜଗନ୍ନାଥଦେବଙ୍କ ଶ୍ରୀବିଗ୍ରହଙ୍କୁ ପୂର୍ବୋକ୍ତ ସ୍ଥାନରେ ରଖି ଭୋଗ ନିବେଦନ ହେଲାପରେ, ପ୍ରଥମେ ଠାକୁର ଓ ପରେ ଭକ୍ତମାନେ ସମସ୍ତେ ପ୍ରସାଦ ଗ୍ରହଣ କଲେ । ଠାକୁର ଓ ତାଙ୍କ ସହିତ ଆସିଥିବା ଯୋଗେନ୍ ସେହି ରାତିରେ ବଳରାମବାବୁଙ୍କ ଘରେ ହିଁ ରହିଲେ । ଅନ୍ୟାନ୍ୟ ଭକ୍ତମାନେ ଯିଏ ଯାହା ସ୍ଥାନକୁ ଚାଲିଗଲେ ।

### ସ୍ତ୍ରୀ–ଭକ୍ତମାନଙ୍କର ଠାକୁରଙ୍କ ପ୍ରତି ଅନୁରାଗ :

ପରଦିନ ସକାଳ ୮ଟା କିମ୍ବା ୯ଟା ବେଳେ ନୌକା ଡକା ହେଲା — ଠାକୁର ଦକ୍ଷିଣେଶ୍ୱରକୁ ପ୍ରତ୍ୟାଗମନ କରିବେ । ନୌକା ଆସିଲା ପରେ ଠାକୁର ଘର ଭିତରକୁ ଯାଇ ଶ୍ରୀଜଗନ୍ନାଥଦେବଙ୍କୁ ପ୍ରଣାମ କରି ଏବଂ ଭକ୍ତପରିବାରବର୍ଗଙ୍କର ପ୍ରଣାମ ସ୍ୱୟଂ ଗ୍ରହଣ କରି ବାହାରକୁ ଆସିଲେ । ସ୍ତ୍ରୀଭକ୍ତମାନେ ଠାକୁରଙ୍କ ପଛେ ପଛେ ଆସି ଭିତର ଘରର ପୂର୍ବଦିଗରେ ରନ୍ଧନଶାଳା ସମ୍ମୁଖରେ ଛାତର ଶେଷ ପର୍ଯ୍ୟନ୍ତ ଆସି ବିଷଣ୍ଣ ମନରେ ଫେରିଗଲେ; କାରଣ ଏହି ଅଦ୍ଭୁତ ଜୀବନ୍ତ ଠାକୁରଙ୍କୁ ଛାଡ଼ିବାକୁ କାହାର ପ୍ରାଣ ଚାହେଁ ? ଉକ୍ତ ଛାତରୁ କେତେ ପାଦ ଆସିଲା ପରେ ତିନି–ଚାରୋଟି ପାହାଚ ଚଢ଼ିଲେ ଗୋଟିଏ ଦ୍ୱାର ଏବଂ ଏହି ଦରଜାଟି ପାର ହୋଇ ଦୋତାଲାର ବାହାର ବାରଣ୍ଡା । ସମସ୍ତ ସ୍ତ୍ରୀ–ଭକ୍ତମାନେ ସେହି ଛାତର ଶେଷ

ପର୍ଯ୍ୟନ୍ତ ଆସି ଫେରିଯାଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରୁ ଜଣେ ଆତ୍ମହରା ହୋଇ ଠାକୁରଙ୍କ ସହିତ ବାହାର ବାରଣ୍ଡା ପର୍ଯ୍ୟନ୍ତ ଆସିଲେ—ବାହାରେ ଅପରିଚିତ ପୁରୁଷମାନେ ସମସ୍ତେ ଅଛନ୍ତି, ସେବିଷୟରେ ତାଙ୍କର ଆଦୌ ହୋସ୍ ନ ଥିଲା ।

## ଠାକୁରଙ୍କର ଅନ୍ୟମନସ୍କ ହୋଇ ଚାଲିବା ଏବଂ ଜନୈକ ସ୍ତ୍ରୀଭକ୍ତଙ୍କର ଆତ୍ମହରା ହୋଇ ତାଙ୍କର ପଛେ ପଛେ ଆସିବା :

ଠାକୁର ସ୍ତ୍ରୀ–ଭକ୍ତମାନଙ୍କ ନିକଟରୁ ବିଦାୟ ଗ୍ରହଣ କରି ଭାବାବେଶରେ ଏକମୁହାଁ ହୋଇ ଏପରି ଭାବରେ ଚାଲୁଥିଲେ ଯେ, ସ୍ତ୍ରୀ–ଭକ୍ତମାନେ ଯେ ତାଙ୍କ ପଛେ ପଛେ କେତେଦୂର ପର୍ଯ୍ୟନ୍ତ ଆସି ଫେରିଯାଇଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଜଣେ ଯେ ଏବେ ମଧ୍ୟ ସେହି ଭାବରେ ତାଙ୍କ ପଛରେ ଆସୁଛନ୍ତି, ସେବିଷୟରେ ତାଙ୍କର ଆଦୌ ହୋସ୍ ନ ଥିଲା । ଠାକୁରଙ୍କର ଏପରି ଏକମୁହାଁ ହୋଇ ଚାଲିବା ଯେଉଁମାନେ ଚକ୍ଷୁରେ ଦେଖିଛନ୍ତି, ସେମାନେ ହିଁ କେବଳ ବୁଝିପାରିବେ; ଅନ୍ୟମାନଙ୍କୁ ତାହା ବୁଝାଇବା କଠିନ । ଦ୍ୱାଦଶବର୍ଷବ୍ୟାପୀ, କେବଳ ଦ୍ୱାଦଶବର୍ଷ ହିଁ କାହିଁକି କହୁଛି—ଆଜନ୍ମ ଏକାଗ୍ରତା ଅଭ୍ୟାସ ଫଳରେ ଠାକୁରଙ୍କର ମନ-ବୁଦ୍ଧି ଏପରି ଏକନିଷ୍ଠ ହୋଇଯାଇଥିଲା ଯେ, ଯେତେବେଳେ ଯେଉଁଠାରେ ବା ଯେଉଁ କାର୍ଯ୍ୟରେ ରଖୁଥିଲେ ତାଙ୍କର ମନ ସେତେବେଳେ ଠିକ୍ ସେହି ସ୍ଥାନରେ ହିଁ ରହୁଥିଲା—ଚାରି ଆଡ଼କୁ ବିକ୍ଷିପ୍ତ ହେଉ ନ ଥିଲା । ତାଙ୍କର ଶରୀର ଓ ଇନ୍ଦ୍ରିୟଗୁଡ଼ିକ ଏପରି ବଶୀଭୂତ ହୋଇଯାଇଥିଲା ଯେ, ମନରେ ଯେତେବେଳେ ଯେଉଁ ଭାବଟି ଥିଲା, କେବଳ ସେହି ଭାବଟି ହିଁ ପ୍ରକାଶିତ ହେଉଥିଲା ! ଟିକିଏ ହେଲେ ଏପାଖ ସେପାଖ ହେଉ ନ ଥିଲା ! ଏବିଷୟ ବୁଝାଇବା ଅତ୍ୟନ୍ତ କଠିନ । କାରଣ, ନିଜ ନିଜର ମନ ଆଡ଼କୁ ଦୃଷ୍ଟିଦେଲେ ଆମେ ଦେଖିବାକୁ ପାଉ, ବିଭିନ୍ନ ପ୍ରକାର ପରସ୍ପର–ବିପରୀତ ଭାବନାଗୁଡ଼ିକ ଯେପରି ଏକା ସମୟରେ ରାଜତ୍ୱ କରୁଛନ୍ତି ଏବଂ ସେଗୁଡ଼ିକ ଭିତରେ ଯେଉଁଟି ଅଭ୍ୟାସବଶତଃ ଅପେକ୍ଷାକୃତ ପ୍ରବଳ, ଶରୀର ଓ ଇନ୍ଦ୍ରିୟାଦି ନିଷେଧ ନ ମାନି ମନ ତାହାରି ବଶୀଭୂତ ହୋଇ ଧାଉଁଅଛି । ଠାକୁରଙ୍କ ମନର ଗଠନ ଓ ଆମମାନଙ୍କ ମନର ଗଠନରେ କେତେ ଗଭୀର ପାର୍ଥକ୍ୟ ଅଛି !

## ଠାକୁରଙ୍କର ଏପରି ଅନ୍ୟମନସ୍କ ଭାବରେ ଚାଲିବାର ଆଉ କେତୋଟି ଦୃଷ୍ଟାନ୍ତ ଓ ସେହିପରି ହେବାର କାରଣ :

ଦୃଷ୍ଟାନ୍ତସ୍ୱରୂପ ଆହୁରି ଅନେକ କଥା ଏଠାରେ କୁହାଯାଇପାରେ । ଦିନେ ଦକ୍ଷିଣେଶ୍ୱରରେ ନିଜ କୋଠରୀରୁ ବାହାରି ଠାକୁର ମା' କାଳୀଙ୍କୁ ଦର୍ଶନ କରିବାକୁ ଗଲେ । ଘରର ପୂର୍ବ ପଟକୁ ଆସି ସିଢ଼ିଦେଇ ଠାକୁର ଘରର ଅଗଣାରେ ଓହ୍ଲାଇ ସିଧା ମା' କାଳୀଙ୍କ ମନ୍ଦିର ଆଡ଼କୁ ଚାଲିଲେ । ଠାକୁରଙ୍କର ରହିବାର କୋଠରୀଠାରୁ

ମା' କାଳୀଙ୍କ ମନ୍ଦିରକୁ ଯିବାବେଳେ ପ୍ରଥମେ ଶ୍ରୀରାଧାଗୋବିନ୍ଦଜୀଉଙ୍କର ମନ୍ଦିର ପଡ଼େ। ଯିବା ସମୟରେ ଠାକୁର ଉକ୍ତ ମନ୍ଦିରକୁ ଯାଇ ଶ୍ରୀବିଗ୍ରହଙ୍କୁ ପ୍ରଣାମ କରି ମା' କାଳୀଙ୍କର ମନ୍ଦିରକୁ ଯାଇପାରନ୍ତି; ମାତ୍ର ତାହା ସେ କେବେ କରିପାରୁ ନ ଥିଲେ। ପ୍ରଥମେ ମା'କାଳୀଙ୍କ ମନ୍ଦିରକୁ ଯାଇ ପ୍ରଣାମାଦି କରି ଫେରିବା ସମୟରେ ସେହି ମନ୍ଦିରକୁ ଯାଉଥିଲେ। ସେତେବେଳେ ଆମେ ଭାବୁଥିଲୁ, ଠାକୁର ମା' କାଳୀଙ୍କୁ ଅଧିକ ଭଲ ପାଉଥିବାରୁ ଏପରି କରନ୍ତି। ପରେ ଦିନେ ଠାକୁର ନିଜେ ହିଁ କହିଲେ, ''ଆଚ୍ଛା, ଏହା କ'ଣ କୁହ ତ ? ମା' କାଳୀଙ୍କୁ ଦେଖିବାକୁ ଯିବି ମନସ୍ଥ କରିଛି ତ' ତେବେ ସିଧା ମା' କାଳୀଙ୍କର ମନ୍ଦିରକୁ ଯିବାକୁ ହେବ। ଏପାଖ ସେପାଖ ବୁଲି କିମ୍ବା ରାଧାଗୋବିନ୍ଦଙ୍କ ମନ୍ଦିରକୁ ଯାଇ ପ୍ରଣାମ କରିଯିବି ତାହା ହେବ ନାହିଁ। କିଏ ଯେପରି ଗୋଡ଼କୁ ଟାଣି ସିଧା ମା'ଙ୍କର ମନ୍ଦିରକୁ ନେଇଯାଏ—ଟିକିଏ ହେଲେ ଏପାଖ ସେପାଖ ଯିବାକୁ ଦିଏ ନାହିଁ ! ମା' କାଳୀଙ୍କୁ ଦେଖିବାପରେ, ଯେଉଁଠାକୁ ଇଚ୍ଛା ଯାଇପାରେ—ଏମିତି କାହିଁକି ହୁଏ କୁହ ତ ?'' ଆମେ ମୁହଁରେ କହୁଥିଲୁ, 'କିଏ ଜାଣେ ମହାଶୟ'; ପୁଣି ମନେ ମନେ ଭାବୁଥିଲୁ, 'ଏମିତି ମଧ କ'ଣ ହୁଏ ? ଇଚ୍ଛା କଲେ ହିଁ ତ ପ୍ରଥମେ ରାଧାଗୋବିନ୍ଦଙ୍କୁ ପ୍ରଣାମ କରି ଯାଇପାରନ୍ତି। ମା' କାଳୀଙ୍କୁ ଦେଖିବାର ଇଚ୍ଛା ବେଶୀ ହୁଏ ବୋଲି ହିଁ ବୋଧହୁଏ ଅନ୍ୟ ପ୍ରକାର ଇଚ୍ଛା ହୁଏ ନାହିଁ' ଇତ୍ୟାଦି; କିନ୍ତୁ ଏସବୁ କଥା ସହସା ଖୋଲି କହିପାରୁ ନ ଥିଲୁ। ଠାକୁର ହିଁ କେବେକେବେ ଏବିଷୟର ଉତ୍ତରରେ କହୁଥିଲେ, ''କ'ଣ ଜାଣିଛୁ ? ଯେତେବେଳେ ଯାହା କରିବି ମନେ ହୁଏ, ତାହା ସେତେବେଳେ ହିଁ କରିବାକୁ ହୁଏ—ଟିକିଏ ବିଳମ୍ବ ସହିପାରେ ନାହିଁ।'' ତାଙ୍କର ଏକନିଷ୍ଠ ମନର ଏପରି ଗତି ତଥା ଚେଷ୍ଟାଦି ସେତେବେଳେ କିଏ ବୁଝିପାରୁଥିଲା ? କାହାକୁ ଏକଥା ଜଣାଥିଲା ଯେ, ଦୀର୍ଘକାଳ ଏକନିଷ୍ଠ ହୋଇ ରହିଥିବାରୁ ତାଙ୍କର ସମଗ୍ର ମନ ଗୋଟିଏ ଭାବରେ ପୂର୍ଣ୍ଣତୟା ଆବିଷ୍ଟ ହୋଇଯାଉଥିଲା। ଅନ୍ୟ କୌଣସି ଭାବକୁ ଅବଲମ୍ବନ କରି ସେଥିରେ ବିପରୀତ ତରଙ୍ଗର ଉଦୟ କେବେହେଲେ ହେଉ ନ ଥିଲା। ପୁଣି କେତେବେଳେ କହୁଥିଲେ, ''ଦେଖ, ନିର୍ବିକଳ୍ପ ଅବସ୍ଥାରେ ଉଠିଲେ ସେତେବେଳେ ଆଉ ମୁଁ-ତୁ, ଦେଖିବା-ଶୁଣିବା, କହିବା-ବୋଲିବା କିଛି ହିଁ ରହେ ନାହିଁ; ସେ ସ୍ତରରୁ ଦୁଇ-ତିନି ସୋପାନ ଓହ୍ଲାଇ ଆସି ମଧ ଏତେ ଝୁଙ୍କ ଥାଏ ଯେ, ସେତେବେଳେ ମଧ ବହୁଲୋକଙ୍କ ସହିତ ବା ବହୁ ଜିନିଷ ନେଇ ବ୍ୟବହାର ଚଳେ ନାହିଁ। ସେତେବେଳେ ଯଦି ଖାଇବାକୁ ବସେ ଆଉ ପଚାଶ ପ୍ରକାର ବ୍ୟଞ୍ଜନ ସଜା ହୋଇଥାଏ, ତଥାପି ହାତ ସେସବୁ ଆଡ଼କୁ ଯାଏ ନାହିଁ, ଗୋଟିଏ ଜାଗାରୁ ହିଁ ପାଟିକୁ ଯାଏ। ଏପରି ସବୁ ଅବସ୍ଥା ହୁଏ ! ସେତେବେଳେ ଭାତ ଡାଲି ତରକାରୀ ପାୟସ ସବୁ ଏକତ୍ର ମିଶାଇ ଖାଇବାକୁ ହୁଏ !'' ଆମେ ଏହି ସମରସ ଅବସ୍ଥାର ଦୁଇ-ତିନି ଥାକ ନିମ୍ନର କଥାଶୁଣି ହିଁ ଆଶ୍ଚର୍ଯ୍ୟ ହୋଇଯାଉଥିଲୁ। ପୁଣି

କହୁଥିଲେ, ''ଏପରି ଏକ ଅବସ୍ଥା ହୁଏ, ସେତେବେଳେ କାହାକୁ ଛୁଇଁପାରେ ନାହିଁ । (ଭକ୍ତମାନଙ୍କୁ ଦେଖାଇ) ଏମାନେ କେହି ଛୁଇଁ ଦେଲେ ଯନ୍ତ୍ରଣାରେ ଚିତ୍କାର କରିଉଠେ ।'' —ଆମ ଭିତରେ କିଏ ସେତେବେଳେ ଏକଥାର ମର୍ମ ବୁଝିଛି ଯେ, ଶୁଦ୍ଧସତ୍ତ୍ୱ ଗୁଣଟି ସେତେବେଳେ ଠାକୁରଙ୍କ ମନରେ ଏତେ ବେଶୀ ହେଉଥିଲା ଯେ, ଏତେ ଟିକିଏ ମଧ୍ୟ ଅଶୁଦ୍ଧତାର ସ୍ପର୍ଶ ସହ୍ୟ କରିପାରୁ ନ ଥିଲେ ! ପୁନରାୟ କହୁଥିଲେ, ''ଭାବରେ ଗୋଟିଏ ଅବସ୍ଥା ହୁଏ, ସେତେବେଳେ ଖାଲି (ଶ୍ରୀଯୁକ୍ତ ବାବୁରାମ ମହାଶୟଙ୍କୁ ଦେଖାଇ) ତାକୁ ଛୁଇଁପାରେ; ସେ ଯଦି ସେତେବେଳେ ଧରେ[୧] କଷ୍ଟ ହୁଏ ନାହିଁ । ସେ ଖୁଆଇଦେଲେ ତେବେ ଖାଇପାରେ ।'' ଏବେ ଏବିଷୟ ଏଠାରେ ଛାଡ଼ି ଆମେ ପୂର୍ବକଥାର ଅନୁସରଣ କରିବା ।

**ଉକ୍ତ ସ୍ତ୍ରୀଭକ୍ତକୁ ଠାକୁର ଦକ୍ଷିଣେଶ୍ୱର ଯିବା ପାଇଁ କହିବା :**

ଠାକୁର ଏପରି ଅନ୍ୟମନସ୍କଭାବରେ ଚାଲି ଚାଲି ବାହାରର ବାରଣ୍ଡାରେ (ଯେଉଁଠି ଗତକାଲି ରାତିରେ ରଥଟଣା ହେଉଥିଲା) ଆସି ହଠାତ୍ ପଛକୁ ଚାହିଁ ଦେଖନ୍ତି, ସେହି ସ୍ତ୍ରୀ-ଭକ୍ତଟି ତାଙ୍କ ପଛେ ପଛେ ଆସୁଛନ୍ତି । ଏହାଦେଖି ଠିଆ ହେଲେ ଏବଂ 'ମା ଆନନ୍ଦମୟୀ, ମା ଆନନ୍ଦମୟୀ' କହି ବାରମ୍ବାର ତାଙ୍କୁ ପ୍ରଣାମ କରିବାକୁ ଲାଗିଲେ । ଭକ୍ତଟି ମଧ୍ୟ ଠାକୁରଙ୍କ ଶ୍ରୀଚରଣରେ ମୁଣ୍ଡରଖି ପ୍ରତିପ୍ରଣାମ କରି ଉଠିବା ମାତ୍ରେ ଠାକୁର ତା'ର ମୁହଁକୁ ଚାହିଁ କହିଲେ, 'ଚ ନା ଗୋ ମା, ଚ ନା !' (ଚାଲ ନା ମା, ଚାଲ ନା) କଥାଗୁଡ଼ିକ ଏପରି ଭାବରେ କହିଲେ ଏବଂ ଭକ୍ତ ଜଣକ ମଧ୍ୟ ଏପରି ଏକ ଆକର୍ଷଣ ଅନୁଭବ କଲେ ଯେ, କେଉଁଆଡ଼େ ନ ଚାହିଁ ଠାକୁରଙ୍କ ପଛେ ପଛେ ପଦବ୍ରଜରେ ଦକ୍ଷିଣେଶ୍ୱର ଚାଲିଲେ । (ଉକ୍ତ ସ୍ତ୍ରୀ-ଭକ୍ତଙ୍କର ବୟସ ତିରିଶ ବର୍ଷ ହେବ ଏବଂ ଗାଡ଼ି-ପାଲିଙ୍କି ବ୍ୟତୀତ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ କେବେ ଏହା ପୂର୍ବରୁ ଯାତାୟାତ କରି ନାହାନ୍ତି) ଘର ଭିତରକୁ ଥରେ ମାତ୍ର ଦୌଡ଼ିଯାଇ ବଳରାମବାବୁଙ୍କ ସ୍ତ୍ରୀଙ୍କୁ କହିଲେ, ''ମୁଁ ଠାକୁରଙ୍କ ସହିତ ଦକ୍ଷିଣେଶ୍ୱର ଚାଲିଲି ।'' ତାଙ୍କର ଏପରି ଦକ୍ଷିଣଶ୍ୱର ଯିବା କଥା ଶୁଣି, ଅନ୍ୟ ଜଣେ ସ୍ତ୍ରୀ-ଭକ୍ତ ମଧ୍ୟ ସବୁ କାମ ଛାଡ଼ି ତାଙ୍କ ସହିତ ଦକ୍ଷିଣଶ୍ୱର ଚାଲିଲେ । ଏପଟେ

---

୧. ଭାବାବେଶ ହେଲେ ଠାକୁରଙ୍କର ଶରୀର-ଜ୍ଞାନ ନ ଥିବାରୁ ଅଙ୍ଗ ପ୍ରତ୍ୟଙ୍ଗ ଆଦି (ହାତ, ମୁଖ, ଗ୍ରୀବା ଇତ୍ୟାଦି) ବଙ୍କା ହୋଇଯାଉଥିଲା ଏବଂ ବେଳେ ବେଳେ ସମସ୍ତ ଶରୀର ଝୁଙ୍କି ପଡ଼ିଗଲା ପରି ହେଉଥିଲା । ସେତେବେଳେ ନିକଟସ୍ଥ ଭକ୍ତମାନେ ଏସବୁ ଅଙ୍ଗଗୁଡ଼ିକୁ ଧରି ଧୀରେ ଧୀରେ ଯଥାଯଥ ଭାବରେ ଠିକ୍ କରି ଦେଉଥିଲେ ଏବଂ କାଳେ ଠାକୁର ପଡ଼ିଯାଇ ଆଘାତ ପାଇବେ, ସେଥିପାଇଁ ତାଙ୍କୁ ଧରି ରହୁଥିଲେ । ଆଉ ଯେଉଁ ଦେବଦେବୀଙ୍କ ଭାବରେ ଠାକୁରଙ୍କର ସେହି ଅବସ୍ଥା ହୋଇଛି, ସେହି ଦେବଦେବୀଙ୍କ ନାମ ସେତେବେଳେ ତାଙ୍କ କାନରେ ଶୁଣାଉଥିଲେ, ଯଥା—କାଳୀ କାଳୀ, ରାମ ରାମ, ଓଁ ଓଁ ବା ଓଁ ତତ୍‌ସତ୍ ଇତ୍ୟାଦି । ଏହିପରି ଶୁଣାଉ ଶୁଣାଉ ଧୀରେ ଧୀରେ ଠାକୁରଙ୍କର ବାହ୍ୟ ଚୈତନ୍ୟ ଆସୁଥିଲା । ଯେଉଁ ଭାବରେ ଠାକୁର ଯେତେବେଳେ ଆବିଷ୍ଟ ଓ ଆତ୍ମହରା ହେଉଥିଲେ, ସେହି ନାମ ଭିନ୍ନ ଅନ୍ୟ ନାମ ଶୁଣାଇଲେ ତାଙ୍କର ଭୀଷଣ ଯନ୍ତ୍ରଣା ବୋଧ ହେଉଥିଲା ।

ଠାକୁର ଭାବାବେଶରେ ସ୍ତ୍ରୀଭକ୍ତଟିକୁ ଏପରି ଆସିବାକୁ କହି ଆଉ ପଛକୁ ନ ଚାହିଁ ଶ୍ରୀଯୁକ୍ତ ଯୋଗେନ୍, ଛୋଟ ନରେନ୍ ପ୍ରଭୃତି ବାଳକ ଭକ୍ତଗଣଙ୍କୁ ସାଙ୍ଗରେ ନେଇ ସିଧା ନୌକାରେ ଯାଇ ବସିଲେ । ସ୍ତ୍ରୀଭକ୍ତ ଦୁଇଜଣ ମଧ୍ୟ ଦଉଡ଼ି ଦଉଡ଼ି ଆସି ନୌକାରେ ଉଠି ବାହାର ପଟାଉପରେ ବସିଲେ । ନୌକା ଛାଡ଼ିଲା ।

ଯାଉ ଯାଉ ସ୍ତ୍ରୀଭକ୍ତ ଜଣକ ଠାକୁରଙ୍କୁ କହିବାକୁ ଲାଗିଲେ, ''ଇଚ୍ଛା ହୁଏ ଖୁବ୍ ତାଙ୍କୁ (ଈଶ୍ୱରଙ୍କୁ) ଡାକିବି, ତାଙ୍କଠାରେ ଷୋଳ-ଅଣା ମନଦେବି, କିନ୍ତୁ ମନ କୌଣସି ମତେ ମାନୁ ନାହିଁ—କ'ଣ କରିବି ?''

**ନୌକାରେ ଯିବା ବେଳେ ସ୍ତ୍ରୀ-ଭକ୍ତଙ୍କର ପ୍ରଶ୍ନରେ ଠାକୁରଙ୍କର ଉତ୍ତର—'ଝଡ଼ ଆଗରେ ଅଇଁଠା ପତ୍ର ପରି ହୋଇ ରହିବ' :**

ଠାକୁର—ତାଙ୍କ ଉପରେ ଭାର ଦେଇ ରୁହ ଗୋ ! ଝଡ଼ର ଅଇଁଠା ପତର ହୋଇ ରହିବାକୁ ହୁଏ—ସେଇଟା କ'ଣ ଜାଣ ? ପତରଟା ପଡ଼ିରହିଛି; ଯେପରି ପବନ ବୋହିନେଲା ସେପରି ଉଡ଼ିଚାଲିଲା, ସେହିପ୍ରକାର; ଏହିପରି ଭାବରେ ତାଙ୍କ ଉପରେ ଭାର ଦେଇ (ନିର୍ଭର କରି) ପଡ଼ିରହିବାକୁ ହୋଇଥାଏ—ଚୈତନ୍ୟ ବାୟୁ ମନକୁ ଯେପରି ଫେରାଇବ, ସେପରି ଫେରିବ, ଏହିତ କଥା ।

ଏପରି ପ୍ରସଙ୍ଗ ଚାଲୁ ଚାଲୁ ନୌକା କାଳୀମନ୍ଦିରର ଘାଟରେ ଆସି ଲାଗିଲା । ନୌକାରୁ ଓହ୍ଲାଇ ଠାକୁର କାଳୀଘରକୁ ଗଲେ ।[୧] ସ୍ତ୍ରୀଭକ୍ତମାନେ କାଳୀମନ୍ଦିରର ଉତ୍ତରରେ ଅବସ୍ଥିତ ନହବତଖାନାରେ[୨] ଶ୍ରୀଶ୍ରୀମାତାଠାକୁରାଣୀଙ୍କ ନିକଟକୁ ଗଲେ ଏବଂ ତାଙ୍କୁ ପ୍ରଣାମ କରି ମା'କାଳୀଙ୍କୁ ପ୍ରଣାମ କରିବାକୁ କାଳୀ ମନ୍ଦିର ଅଭିମୁଖରେ ଚାଲିଲେ ।

ଏପଟେ ଠାକୁର ବାଳକ ଭକ୍ତମାନଙ୍କ ସହିତ ମା' କାଳୀଙ୍କ ମନ୍ଦିରକୁ ଆସି ତାଙ୍କୁ ପ୍ରଣାମ କରି ଭାବାବିଷ୍ଟ ହୋଇ ନାଟମନ୍ଦିରରେ ଆସି ବସିଲେ ଏବଂ ମଧୁର କଣ୍ଠରେ ଗୀତ ଗାଇବାକୁ ଲାଗିଲେ—

ଭୁବନ ଭୁଲାଇଲି ମା ଭବମୋହିନୀ ।
ମୂଳାଧାରେ ମହୋତ୍ପଳେ ବିଣାବାଦ୍ୟ-ବିନୋଦିନି ।।
ଶରୀରେ ଶାରୀରି ଯନ୍ତ୍ରେ, ସୁଷୁମ୍ନାଦି ତ୍ରୟ ତନ୍ତ୍ରେ,
ଗୁଣଭେଦେ ମହାମନ୍ତ୍ରେ ତିନିଗ୍ରାମ-ସଞ୍ଚାରିଣି ।।
ଆଧାରେ ଭୈରବକାର, ଷଡ଼ଦଳେ ଶ୍ରୀରାଗ ଆର

---

୧. ଠାକୁର ମା' କାଳୀଙ୍କ ମନ୍ଦିରକୁ 'କାଳୀଘର' ଓ ରାଧାଗୋବିନ୍ଦଜୀଙ୍କ ମନ୍ଦିରକୁ 'ବିଷ୍ଣୁଘର' କହୁଥିଲେ ।

୨. ଏହି ନହବତ ଖାନାର ତଳ ଘରେ ଶ୍ରୀଶ୍ରୀମା' ଶୟନ କରୁଥିଲେ ଏବଂ ସବୁ ପ୍ରକାର ଦ୍ରବ୍ୟ ଆଦି ରଖୁଥିଲେ । ତଳ ଘରର ସାମ୍ନା ବାରଣ୍ଡାରେ ରୋଷେଇ ହେଉଥିଲା । ଉପର ଘରକୁ ଦିନବେଳା କେତେବେଳେ କେତେବେଳେ ଯାଉଥିଲେ ଏବଂ କଲିକତାରୁ ଆସୁଥିବା ସ୍ତ୍ରୀ ଭକ୍ତମାନଙ୍କ ସଂଖ୍ୟା ଅଧିକ ହେଲେ ଶୋଇବାକୁ ଦେଉଥିଲେ ।

ମଣିପୁରେତେ ମଲ୍ଲାର ବସନ୍ତେ ହୃଦ୍‌ପ୍ରକାଶିନି ।।
ବିଶୁଦ୍ଧେ ହିନ୍ଦୋଳସୁରେ କର୍ଣ୍ଣାଟକ ଆଜ୍ଞାପୁରେ
ତାନ ମାନ ଲୟ ସୁରେ ତ୍ରିସପ୍ତ–ସୁରଭେଦିନୀ ।।
ଶ୍ରୀନନ୍ଦକୁମାରେ କୟ, ତତ୍ତ୍ୱ ନା ନିଶ୍ଚୟ ହୟ
ତବ ତତ୍ତ୍ୱ ଗୁଣତ୍ରୟ କାକୀମୁଖ–ଆଚ୍ଛାଦିନି ।।

[ଅର୍ଥାତ୍—ହେ ମା ଭବମୋହିନୀ, ତୁମେ ସଂସାରକୁ ଭୁଲାଇ ରଖିଛ । ମୂଳାଧାର ମହାକମଳରେ ତୁମେ ବିଣାବାଦ୍ୟ–ବିନୋଦିନୀ ରୂପରେ ଅଛ । ଶରୀର ରୂପକ ଶାରୀରିକ ଯନ୍ତ୍ରର ସୁଷୁମ୍ନାଦି ତିନି ତାରରେ ଗୁଣଭେଦ ଦ୍ୱାରା ମହାମନ୍ତ୍ରର ଅବଲମ୍ବନ କରି ତିନି ଗ୍ରାମରେ ତୁମେ ସଞ୍ଚାରଣ କରୁଛ । ମୂଳାଧାରଚକ୍ରରେ ତୁମେ ଭୈରବରାଗ ରୂପରେ ବିଦ୍ୟମାନ ଅଛ; ସ୍ୱାଧିଷ୍ଠାନରେ ଷଡ୍‌ଦଳରେ ଶ୍ରୀରାଗ ରୂପରେ, ମଣିପୁରରେ ମଲ୍ଲାର ତଥା ଅନାହତ ନାମକ ହୃଦୟପଦ୍ମରେ ବସନ୍ତରାଗ ରୂପରେ ପ୍ରକାଶିତ ଅଛି । ବିଶୁଦ୍ଧଚକ୍ରରେ ହିନ୍ଦୋଳ ତଥା ଆଜ୍ଞାଚକ୍ରରେ ତୁମେ କର୍ଣ୍ଣାଟକ ରାଗରେ ବିଦ୍ୟମାନ ଅଛ । ଦାନ, ମାନ, ଲୟ ତଥା ସୁର ଦ୍ୱାରା ତୁମେ ତ୍ରିସପ୍ତ ଅର୍ଥାତ୍ ମନ୍ଦ୍ର, ମଧ ତଥା ତାର ଏହି ତିନି ସପ୍ତକକୁ ଭେଦନ କରୁଛ । ପଦକର୍ତ୍ତା ଶ୍ରୀନନ୍ଦକୁମାରଜୀ କହୁଛନ୍ତି ଯେ, ତୁମର ତତ୍ତ୍ୱକୁ ନିଶ୍ଚୟ କରିବା କଠିନ ଅଟେ, ଗୁଣତ୍ରୟ ହିଁ ତୁମର ତତ୍ତ୍ୱ ଏବଂ ସୁଷୁମ୍ନାଦ୍ୱାରକୁ ଆଚ୍ଛାଦିତ କରି ତୁମେ ଅବସ୍ଥାନ କରୁଛ ।]

### ଦକ୍ଷିଣେଶ୍ୱରରେ ପହଞ୍ଚିବା ପରେ ଠାକୁରଙ୍କର ଭାବାବେଶ ଓ କ୍ଷତଶରୀରରେ ଦେବତାଙ୍କୁ ସ୍ପର୍ଶ କରିବା ନିଷେଧ ସମ୍ବନ୍ଧରେ ଭକ୍ତମାନଙ୍କର ପ୍ରମାଣ ପାଇବା :

ନାଟ ମନ୍ଦିରର ଉତ୍ତର ପ୍ରାନ୍ତରେ ଶ୍ରୀଶ୍ରୀଜଗଦମ୍ବାଙ୍କର ସାମନାରେ ବସି ଠାକୁର ଏହିପରି ଗୀତ ଗାଉଛନ୍ତି, ସଙ୍ଗରେ ଥିବା ଭକ୍ତମାନେ କେହି କେହି ବସି କେହି କେହି ଠିଆ ହୋଇ ସ୍ତମ୍ଭିତ ହୃଦୟରେ ତାହା ଶୁଣି ମୋହିତ ହେଉଛନ୍ତି । ଗାଉ ଗାଉ ଭାବାବିଷ୍ଟ ହୋଇ ଠାକୁର ହଠାତ୍ ଠିଆ ହେଲେ, ଗୀତ ବନ୍ଦ ହୋଇଗଲା, ମୁହଁର ଅଦୃଷ୍ଟପୂର୍ବ ହସ ଯେପରି ସେହି ସ୍ଥାନରେ ଆନନ୍ଦ ବର୍ଷଣ କଲା—ଭକ୍ତମାନେ ନିଷ୍ପନ୍ଦ ହୋଇ ଏବେ ଠାକୁରଙ୍କର ଶ୍ରୀମୂର୍ତ୍ତିକୁ ହିଁ ଦେଖିବାକୁ ଲାଗିଲେ । ସେତେବେଳେ ଠାକୁରଙ୍କ ଶରୀର ଟିକିଏ ହଲଚଲ ହେବାରୁ, ସେ କାଳେ ପଡ଼ିଯିବେ ବୋଲି ଶ୍ରୀଯୁକ୍ତ ଛୋଟ ନରେନ ତାଙ୍କୁ ଧରିବାକୁ ଉଦ୍ୟତ ହେଲେ । କିନ୍ତୁ ସେ ସ୍ପର୍ଶ କରିବା ମାତ୍ରେ ଠାକୁର ଯନ୍ତ୍ରଣାରେ ଚିତ୍କାର କରିଉଠିଲେ । ତାଙ୍କର ସ୍ପର୍ଶ ଠାକୁରଙ୍କର ଏବେ ଅଭିମତ ନୁହେଁ ଛୋଟ ନରେନ୍ ବୁଝି ଘୁଞ୍ଚି ଠିଆହେଲେ ଏବଂ ଠାକୁରଙ୍କର ଭ୍ରାତୁଷ୍ପୁତ୍ର ଶ୍ରୀଯୁକ୍ତ ରାମଲାଲ ମନ୍ଦିର ଅଭ୍ୟନ୍ତରରୁ ଠାକୁରଙ୍କର ପୂର୍ବୋକ୍ତ ଅବ୍ୟକ୍ତ କଷ୍ଟସୂଚକ ଶବ୍ଦ ଶୁଣିପାରି ଦଉଡ଼ି ଆସି ଠାକୁରଙ୍କ

ଶ୍ରୀଅଙ୍ଗ ଧାରଣ କଲେ । କେତେ ସମୟ ଏପରି ଭାବରେ ରହି ନାମ ଶୁଣୁ ଶୁଣୁ ଠାକୁରଙ୍କର ଧିରେ ଧିରେ ବାହ୍ୟଚେତନା ଫେରିଆସିଲା; କିନ୍ତୁ ସେତେବେଳେ ମଧ୍ୟ ଯେପରି ନିଶା ପ୍ରଭାବରେ ସହଜ ଭାବରେ ଠିଆ ହୋଇପାରୁ ନାହାନ୍ତି । ପାଦ ଖୁବ୍ ଜୋର୍‌ରେ ଟଳମଳ ହେଉଅଛି ।

ଏହିପରି ଅବସ୍ଥାରେ କୌଣସି ପ୍ରକାରରେ ଗୁରୁଣ୍ଡିଲା ପରି ଠାକୁର ନାଟମନ୍ଦିରର ଉତ୍ତରର ପାହାଚଦେଇ ମନ୍ଦିରର ପ୍ରାଙ୍ଗଣକୁ ଓହ୍ଲାଇ ଆସିବାକୁ ଲାଗିଲେ ଏବଂ ଛୋଟ ଶିଶୁପରି କହିବାକୁ ଲାଗିଲେ, ''ମା, ପଡ଼ିଯିବି ନାହିଁ ତ—ପଡ଼ିଯିବି ନାହିଁ ତ ?'' ବାସ୍ତବିକ୍ ସେତେବେଳେ ଠାକୁରଙ୍କୁ ଦେଖି ମନେ ହେଉଥିଲା, ସେ ଯେପରି ଏକ ଛୋଟ ତିନି-ଚାରିବର୍ଷର ପିଲା, ମା'ଙ୍କ ଆଡ଼କୁ ଚାହିଁ ଏସବୁ କଥା କହୁଛନ୍ତି, ପୁଣି ମା'ଙ୍କର ଆଖିରେ ଆଖି ରଖି ଭରସାନ୍ୱିତ ହୋଇ ପାହାଚ ଓହ୍ଲାଇପାରୁଛନ୍ତି ! ଅତି ସାମାନ୍ୟ କଥାରେ ଏପରି ଅପୂର୍ବ ନିର୍ଭରତାର ଭାବ ଆଉ କେଉଁଠାରେ ଦେଖିପାରିବ କି ?

**ଭାବାବେଶରେ କୁଳକୁଣ୍ଡଳିନୀ-ଦର୍ଶନ ଓ ଠାକୁରଙ୍କ କଥା :**

ପ୍ରାଙ୍ଗଣ ଅତିକ୍ରମ କରି ଠାକୁର ଏଥର ନିଜ କକ୍ଷକୁ ଆସି ପଶ୍ଚିମ ଦିଗର ଗୋଲ ବାରଣ୍ଡାରେ ଯାଇ ବସିଲେ—ସେତେବେଳେ ମଧ୍ୟ ଭାବାବିଷ୍ଟ । ସେ ଭାବ ଆଉ ଛାଡୁ ନାହିଁ—କେତେବେଳେ ଟିକିଏ କମୁଛି ପୁଣି ବଢ଼ିଯାଇ ବାହ୍ୟଚେତନା ଲୁପ୍ତପ୍ରାୟ ହେଉଅଛି ! ଏପରି କେତେ ସମୟ ରହିବା ପରେ ଭାବାବସ୍ଥାରେ ଠାକୁର ସଙ୍ଗୀ ଭକ୍ତଗଣଙ୍କୁ କହିବାକୁ ଲାଗିଲେ, ''ତୁମେ ସାପ ଦେଖିଛ ? ସାପର ଜ୍ୱାଳାରେ ଜଳିଗଲି !'' ପୁଣି ସଙ୍ଗେ ସଙ୍ଗେ ଯେପରି ଭକ୍ତମାନଙ୍କ କଥା ଭୁଲି ଯାଇ ସର୍ପାକୃତି କୁଳକୁଣ୍ଡଳିନୀକୁ (ତାହାଙ୍କୁ ହିଁ ଯେ ଠାକୁର ବର୍ତ୍ତମାନ ଭାବାବସ୍ଥାରେ ଦେଖୁଥିଲେ ଏକଥା କହିବାର ଆବଶ୍ୟକତା ନାହିଁ) ସମ୍ବୋଧନ କରି କହୁଛନ୍ତି, ''ତୁମେ ଏବେ ଚାଲି ଯା ବାବୁ; ଠାକୁରାଣୀ, ତୁମେ ଏବେ ହଟିଯାଅ; ମୁଁ ତମାଖୁ ଖାଇବି, ମୁହଁ ଧୋଇବି, ଦାନ୍ତ ଘଷି ନାହିଁ'' —ଇତ୍ୟାଦି । ଏହିପରି କେତେବେଳେ ଭକ୍ତମାନଙ୍କ ସହିତ ଏବଂ କେତେବେଳେ ଭାବାବେଶରେ ଦୃଷ୍ଟ ମୂର୍ତ୍ତିସହିତ କଥା କହୁ କହୁ ଠାକୁର କ୍ରମେ ସାଧାରଣ ମାନବ ପରି ବାହ୍ୟ ଚୈତନ୍ୟ ପ୍ରାପ୍ତ ହେଲେ ।

**ଭାବଭଙ୍ଗ ପରେ ଆଗତ ଭକ୍ତମାନେ କ'ଣ ଖାଇବେ ବୋଲି ଠାକୁରଙ୍କର ଚିନ୍ତା ଓ ସ୍ତ୍ରୀ-ଭକ୍ତମାନଙ୍କୁ ବଜାର କରିବାକୁ ପଠାଇବା :**

ସାଧାରଣ ମାନବ ପରି ଯେତେବେଳେ ଥାଆନ୍ତି, ସେତେବେଳେ ଠାକୁରଙ୍କର ଭକ୍ତମାନଙ୍କ ପାଇଁ ହିଁ ଚିନ୍ତା ଥାଏ । ଶ୍ରୀଶ୍ରୀ ମାତାଠାକୁରାଣୀଙ୍କୁ ପଚାରି ପଠାଇଲେ ଘରେ ପନିପରିବା ଅଛି କି ନାହିଁ । ଶ୍ରୀଶ୍ରୀମା' ତଦୁତ୍ତରରେ 'କିଛି ନାହିଁ' କହିବାରୁ ଠାକୁରଙ୍କର ପୁଣି ଚିନ୍ତା ହେଲା, 'କିଏ ଏବେ ବଜାରକୁ ଯିବ'; କାରଣ,

ବଜାରରୁ କିଛି ପରିବାପତ୍ର କିଣି ନ ଆଣିଲେ କଲିକତାରୁ ଆସିଥିବା ସ୍ତ୍ରୀ ଓ ପୁରୁଷ ଭକ୍ତମାନେ କଣ ଖାଇବେ ? ଭାବିଚିନ୍ତି ସ୍ତ୍ରୀ ଭକ୍ତ ଦୁଇଜଣଙ୍କୁ ପଚାରିଲେ, ''ତୁମେ ବଜାର କରିପାରିବ ?'' ସେମାନେ ମଧ୍ୟ କହିଲେ, 'ପାରିବୁ' ଏବଂ ବଜାରକୁ ଯାଇ ଦୁଇଟି ବଡ଼ ବାଇଗଣ, କିଛି ଆଳୁ ଓ ଶାଗ କିଣି ଆଣିଲେ; ଶ୍ରୀଶ୍ରୀମା' ସେସବୁ ରନ୍ଧା ରନ୍ଧି କଲେ । କାଳୀମନ୍ଦିରରୁ ପ୍ରତିଦିନର ବରାଦ ଅନୁସାରେ ଥାଳିଏ ମା' କାଳୀଙ୍କ ପ୍ରସାଦ ଆସିଲା । ପରେ ଠାକୁରଙ୍କର ଭୋଜନ ସମାପ୍ତ ହେବାପରେ ଭକ୍ତମାନେ ପ୍ରସାଦ ଗ୍ରହଣ କଲେ ।

ଏହାପରେ ଠାକୁରଙ୍କର ଭାବାବସ୍ଥା ସମୟରେ ଶ୍ରୀଯୁକ୍ତ ଛୋଟ ନରେନ୍ ଧରିବା ପାଇଁ ଯିବାରୁ ଠାକୁରଙ୍କର ସେପରି କଷ୍ଟ କାହିଁକି ହେଲା, ସେକଥା ଅନୁସନ୍ଧାନରେ ତାହାର କାରଣ ଜଣାପଡ଼ିଲା । ଛୋଟ ନରେନ୍‌ର ମସ୍ତକର ବାମ ପାଖରେ ଗୋଟିଏ ଛୋଟ ଆବୁ ହୋଇଥିଲା ଓ କ୍ରମେ ତାହା ବଢୁଥିଲା । ତାହା ପରେ ଯନ୍ତ୍ରଣାଦାୟକ ହେବ ବୋଲି ଡାକ୍ତରମାନେ ଔଷଧ ଦେଇ ସେହି ସ୍ଥାନଟିକୁ ଘାଆ କରି ଦେଇଥିଲେ । ପୂର୍ବରୁ ଶୁଣିଥିଲୁ, ଶରୀରରେ କ୍ଷତସ୍ଥାନ ରହିଥିଲେ ଦେବମୂର୍ତ୍ତିକୁ ସ୍ପର୍ଶ କରାଯାଏ ନାହିଁ, କିନ୍ତୁ କଥାଟିର ସତ୍ୟତା ଯେ ଆମ ଚକ୍ଷୁ ସମ୍ମୁଖରେ ଏପରି ଭାବରେ ପ୍ରମାଣିତ ହେବ, ତାହା କିଏ ଭାବିଥିଲା ! ଦେବଭାବରେ ତନ୍ମୟତ୍ୱ ପ୍ରାପ୍ତ ହୋଇ ବାହ୍ୟଜ୍ଞାନ ସମ୍ପୂର୍ଣ୍ଣ ଲୁପ୍ତ ହୋଇଥିଲେ ମଧ୍ୟ ଠାକୁର ଯେ କେଉଁ ଅନ୍ତର୍ନିହିତ ଦୈବଶକ୍ତିବଳରେ ସେପରି ଚିତ୍କାର କରିଉଠିଲେ, ତାହା ବୁଝିବା ଆମର ଆୟତ୍ତସାଧ୍ୟ ନ ଥିଲେ ମଧ୍ୟ ତାଙ୍କର ଯେ ପ୍ରକୃତରେ କଷ୍ଟ ହୋଇଥିଲା, ଏହା ନିଃସନ୍ଦେହ । ଛୋଟ ନରେନ୍‌ଙ୍କୁ ଠାକୁର ଅତ୍ୟନ୍ତ ଶୁଦ୍ଧସ୍ୱଭାବସମ୍ପନ୍ନ ବୋଲି କହିଥାଆନ୍ତି, ତାହା ଆମକୁ ଜଣା ଥିଲା ଏବଂ ସାଧାରଣ ଅବସ୍ଥାରେ ଠାକୁର ଅନ୍ୟ ସମସ୍ତଙ୍କ ପରି ତାଙ୍କ ଶରୀରରେ ସେପରି କ୍ଷତସ୍ଥାନ ରହିଥିଲେ ମଧ୍ୟ ଛୁଉଁଛନ୍ତି, ଏପରି କ୍ଷତସ୍ଥାନ ଥାଇ ମଧ୍ୟ ପାଦସ୍ପର୍ଶ କରିବାକୁ ଦେଇଛନ୍ତି ଏବଂ ତାଙ୍କ ସହିତ ଏକାଠି ଉଠାବସା କରିଛନ୍ତି । ତେଣୁ ସେ କେମିତି ଜାଣିବେ ଯେ, ଭାବସମୟରେ ଠାକୁର ତାଙ୍କ ସ୍ପର୍ଶ ସହ୍ୟ କରିପାରିବେ ନାହିଁ ? ଯାହା ହେଉ, ସେହିଦିନଠାରୁ ସେ ଉକ୍ତ କ୍ଷତଟି ଭଲ ନ ହେବା ପର୍ଯ୍ୟନ୍ତ ଠାକୁରଙ୍କୁ ଭାବାବସ୍ଥା ସମୟରେ ସ୍ପର୍ଶ କରୁ ନ ଥିଲେ ।

ଠାକୁରଙ୍କ ସହିତ ନାନା ସତ୍ କଥାରେ ସମସ୍ତ ଦିନ କଟିଗଲା । ପରେ ସନ୍ଧ୍ୟାହେବା ପୂର୍ବରୁ ଭକ୍ତମାନେ ଯିଏ ଯାହାର ଘରକୁ ଗଲେ । ସ୍ତ୍ରୀ ଲୋକ ଦୁଇଜଣ ମଧ୍ୟ ଠାକୁର ଓ ଶ୍ରୀଶ୍ରୀମା'ଙ୍କ ନିକଟରୁ ବିଦାୟ ଗ୍ରହଣ କରି ପଦବ୍ରଜରେ କଲିକତା ଗଲେ ।

* * *

## ବାଳକସ୍ୱଭାବ ଠାକୁରଙ୍କର ବାଳକସଦୃଶ ଭୟ :

ପୂର୍ବୋକ୍ତ ଘଟଣାଗୁଡ଼ିକ ପରେ ଦୁଇତିନି ଦିନ ବିତିଯାଇଛି ! ଆଜି ପଣ୍ଡିତ ଶଶଧର ଠାକୁରଙ୍କୁ ଦର୍ଶନ କରିବାକୁ ଅପରାହ୍ଣରେ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଆସିବେ । ବାଳକସ୍ୱଭାବ ଠାକୁର ଅନେକ ସମୟରେ ବାଳକ ସଦୃଶ ଭୟଭୀତ ହେଉଥିଲେ । ବିଶେଷ କୌଣସି ଖ୍ୟାତନାମା ବ୍ୟକ୍ତି ତାଙ୍କ ସହିତ ଦେଖା କରିବାକୁ ଆସିବେ ଶୁଣିଲେ ହିଁ ଡରି ଯାଉଥିଲେ । ଭାବୁଥିଲେ, ସେ ତ ଲେଖାପଢ଼ା କିଛି ଜାଣନ୍ତି ନାହିଁ, ତା'ଉପରେ କେତେବେଳେ କି ପ୍ରକାର ଭାବାବେଶ ହୁଏ ତାହାର ତ' କିଛି ଠିକଣା ନାହିଁ, ପୁଣି ଭାବାବେଶ ଅବସ୍ଥାରେ ତାଙ୍କର ଶରୀରର ହିଁ ହୋସ୍ ରହେ ନାହିଁ । ପୁଣି ପରିଧେୟ ବସ୍ତ୍ରାଦିର କଥା ଆଉ କ'ଣ !—ଏପରି ଅବସ୍ଥାରେ ଆଗନ୍ତୁକ କ'ଣ ଭାବିବେ ଓ କହିବେ ! ସେଥିପାଇଁ ଆମର ମନେ ହେଉଥିଲା, ଆଗନ୍ତୁକ ଯାହା ଭାବନ୍ତୁ ନା କାହିଁକି, ସେଥିରେ ତାଙ୍କର କ'ଣ ଗଲା ନା ରହିଲା ? ସେ ତ ନିଜେ ହିଁ ବାରମ୍ବାର କେତେ ଲୋକଙ୍କୁ ଶିକ୍ଷା ଦେଉଛନ୍ତି, 'ଲୋକ ନା ପୋକ; ଲଜ୍ଜା, ଘୃଣା, ଭୟ—ତିନି ରହିଲେ ନୁହଁ ।' ତେବେ କ'ଣ ସେ ନାମଯଶ ପାଇଁ କାଙ୍ଗାଳ ? କିନ୍ତୁ ପରୀକ୍ଷା କରି ଦେଖିବାକୁ ଗଲେ ହିଁ, ଦେଖୁଥିଲୁ—ବାଳକ ଯେପରି କୌଣସି ଅପରିଚିତ ବ୍ୟକ୍ତିଙ୍କୁ ଦେଖିଲେ ଭୟ ଲଜ୍ଜାରେ ସଙ୍କୁଚିତ ହୁଏ, ଏବଂ ପୁଣି ଟିକିଏ ପରିଚୟ ହୋଇଗଲେ ସେହି ବ୍ୟକ୍ତିର କାନ୍ଧରେ ଓ ପିଠିରେ ଚଢ଼ି କେଶ ଟାଣି ନିଃଶଙ୍କ ଚିତ୍ତରେ ନାନାପ୍ରକାର ସାଦର ଅତ୍ୟାଚାର କରିଥାଏ—ଠାକୁରଙ୍କର ଏହି ଭାବ ମଧ୍ୟ ଠିକ୍ ସେହିପରି । ନତୁବା ମହାରାଜ ଯତୀନ୍ଦ୍ରମୋହନ, ସୁବିଖ୍ୟାତ କୃଷ୍ଣଦାସ ପାଲ୍ ପ୍ରଭୃତିଙ୍କ ସହିତ ସେ ଯେପରି ସ୍ୱାଧୀନ ଭାବରେ କଥାବାର୍ତ୍ତା କରିଥିଲେ, ସେଥିରୁ ବେଶ୍ ବୁଝାଯାଏ ଯେ, ନାମଯଶର କିଞ୍ଚିତ୍ ମାତ୍ର ଇଚ୍ଛା ଭିତରେ ରହିଥିଲେ ସେ ସେମାନଙ୍କ ସହିତ କଦାପି ଏପରି ଭାବରେ କଥା ହୋଇପାରି ନ ଥାନ୍ତେ ।[୧]

ପୁଣି ବେଳେ ବେଳେ ଦେଖାଯାଇଛି, ଠାକୁର ଆଗନ୍ତୁକଙ୍କର କାଳେ ଅକଲ୍ୟାଣ ହେବ ଭାବି ମଧ୍ୟ ଭୀତ ହେଉଥିଲେ । କାରଣ ତାଙ୍କର ଆଚରଣ ବ୍ୟବହାର ପ୍ରଭୃତି ବୁଝିପାରନ୍ତୁ ବା ନପାରନ୍ତୁ ଠାକୁରଙ୍କର ସେଥିରେ କିଛି ଯାଏ ଆସେ ନାହିଁ ସତ୍ୟ; କିନ୍ତୁ ଆଗନ୍ତୁକ ବୁଝି ନ ପାରି ଯଦି ଠାକୁରଙ୍କର ଅଯଥା

---

୧. ମହାରାଜ ଯତୀନ୍ଦ୍ରମୋହନଙ୍କୁ ପ୍ରଥମରୁ ହିଁ ଠାକୁର କହିଥିଲେ, ''ବାବୁ, ମୁଁ କିନ୍ତୁ ତୁମକୁ ରାଜା କହିପାରିବି ନାହିଁ; ମିଥ୍ୟା କଥା କହିବି କିପରି ?'' ପୁଣି ମହାରାଜା ଯତୀନ୍ଦ୍ରମୋହନ ନିଜ କଥା କହୁ କହୁ ଯେତେବେଳେ ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ନିଜର ତୁଳନା କଲେ, ସେତେବେଳେ ଠାକୁର ବିଶେଷ ବିରକ୍ତ ହୋଇ ତାଙ୍କର ସେହି ପ୍ରକାର ବୁଦ୍ଧିର ନିନ୍ଦା କରିଥିଲେ । ଶ୍ରୀଯୁକ୍ତ କୃଷ୍ଣଦାସ ପାଲ ମଧ୍ୟ ଯେତେବେଳେ ଜଗତର ଉପକାର କରିବା ଛଡ଼ା ଅନ୍ୟ କୌଣସି ଧର୍ମ ହିଁ ନାହିଁ ଇତ୍ୟାଦି କହି ଠାକୁରଙ୍କ ସହିତ ତର୍କ ଉତ୍‌ଥାପନ କଲେ, ସେତେବେଳେ ଠାକୁର ବିଶେଷ ବିରକ୍ତି ସହିତ ତାଙ୍କ ବୁଦ୍ଧିର ଦୋଷ ଦେଖାଇ ଦେଇଥିଲେ ।

ନିନ୍ଦା କରନ୍ତି, ସେଥିରେ ତାଙ୍କର ଅକଲ୍ୟାଣ ନିଶ୍ଚିତ ଜାଣି ହିଁ ଠାକୁର ସେପରି ଭୟ କରୁଥିଲେ । ତେଣୁ ଶ୍ରୀଯୁକ୍ତ ଗିରିଶ ଅଭିମାନ–ଅଳି କରି ଥରେ ଠାକୁରଙ୍କ ସମ୍ମୁଖରେ ତାଙ୍କ ପ୍ରତି ନାନା କଟୂକ୍ତି ପ୍ରୟୋଗ କରିବାରୁ ଠାକୁର କହିଥିଲେ, ‘‘ଆରେ, ସେ ମୋତେ ଯାହା କହୁଛି କହୁ, ମୋ ମା’ଙ୍କୁ କିଛି କହି ନାହିଁ ତ ?’’ ଏବେ ସେକଥା ଥାଉ ।

## ଶଶଧର ପଣ୍ଡିତଙ୍କର ଦ୍ୱିତୀୟ ଦିବସ ଠାକୁରଙ୍କୁ ଦର୍ଶନ :

ପଣ୍ଡିତ ଶଶଧର ତାଙ୍କ ସହିତ ଦେଖା କରିବାକୁ ଆସିବେ ଶୁଣି ଠାକୁରଙ୍କ ଭୟର ସୀମା ନାହିଁ । ଶ୍ରୀଯୁକ୍ତ ଯୋଗେନ୍ (ସ୍ୱାମୀ ଯୋଗାନନ୍ଦ), ଶ୍ରୀଯୁକ୍ତ ଛୋଟ ନରେନ୍ ଓ ଆହୁରି ଅନେକଙ୍କୁ କହିଲେ, ‘‘ଆରେ, ତୁମେମାନେ ସେତେବେଳେ (ପଣ୍ଡିତ ମହାଶୟ ଯେତେବେଳେ ଆସିବେ) ରହିବ !’’ ଉଦ୍ଦେଶ୍ୟ ହେଉଛି, ସେ ମୂର୍ଖ ଲୋକ, ପଣ୍ଡିତଙ୍କ ସହିତ କଥା କହିଲେ କ’ଣ କହିବାକୁ ଯାଇ କ’ଣ କହିଦେବେ, ତେଣୁ ଆମେ ସମସ୍ତେ ଉପସ୍ଥିତ ରହି ପଣ୍ଡିତଜୀଙ୍କ ସହିତ କଥାବାର୍ତ୍ତା କହିବୁ ଓ ଠାକୁରଙ୍କୁ ସମ୍ଭାଳିବୁ ! ଆହା, ସେହି ଛୋଟପିଲା ପରି ଭୟର କଥା ଅପରଙ୍କୁ ବୁଝାଇବା ଦୁଷ୍କର । କିନ୍ତୁ ପଣ୍ଡିତ ଶଶଧର ଯେତେବେଳେ ବାସ୍ତବିକ୍ ଆସି ପହଞ୍ଚିଗଲେ, ଠାକୁର ସେତେବେଳେ ଯେପରି ଆଉ ଜଣେ ଲୋକ ! ହାସ୍ୟ ପ୍ରସ୍ଫୁରିତ ଅଧରରେ ସ୍ଥିର ଦୃଷ୍ଟିରେ ତାଙ୍କ ଆଡ଼କୁ ଦେଖୁ ଦେଖୁ ତାଙ୍କର ଅର୍ଦ୍ଧବାହ୍ୟଦଶା ପରି ଅବସ୍ଥା ହେଲା ଏବଂ ପଣ୍ଡିତ ଶଶଧରଙ୍କୁ ସମ୍ବୋଧନ କରି କହିଲେ, ‘‘ଆହେ, ତୁମେ ପଣ୍ଡିତ, ତୁମେ କିଛି କୁହ ।’’

ଶଶଧର—ମହାଶୟ, ଦର୍ଶନ–ଶାସ୍ତ୍ର ପଢ଼ି ମୋର ହୃଦୟ ଶୁଷ୍କ ହୋଇଯାଇଛି; ସେଥିପାଇଁ ଭକ୍ତିରସ ପାଇବି ବୋଲି ଆପଣଙ୍କ ନିକଟକୁ ଆସିଛି; ଅତଏବ ମୁଁ ଶୁଣିବି, ଆପଣ କିଛି କହନ୍ତୁ ।

ଠାକୁର—ମୁଁ ଆଉ କ’ଣ କହିବି, ବାବୁ ! ସଚ୍ଚିଦାନନ୍ଦ ଯେ କ’ଣ (ପଦାର୍ଥ) ତାହା କେହି କହିପାରେ ନାହିଁ ! ତେଣୁ ସେ ପ୍ରଥମେ ଅର୍ଦ୍ଧନାରୀଶ୍ୱର ହେଲେ । କାହିଁକି ? —ନା, ଦେଖାଇବେ ବୋଲି ଯେ, ପୁରୁଷ ପ୍ରକୃତି ଉଭୟ ହିଁ ମୁଁ । ତାପରେ ସେ ଅବସ୍ଥାରୁ ଆହୁରି ଗୋଟିଏ ଥାକ ଓହ୍ଲାଇ ଅଲଗା ଅଲଗା ପୁରୁଷ ଓ ଅଲଗା ଅଲଗା ପ୍ରକୃତି ହେଲେ ।

ସେପରି ଆରମ୍ଭ କରି ଆଧ୍ୟାତ୍ମିକ ନିଗୂଢ଼ କଥାସକଳ କହୁ କହୁ ଉତ୍ତେଜିତ ହୋଇ ଠାକୁର ଠିଆ ହୋଇ ପଣ୍ଡିତ ଶଶଧରଙ୍କୁ ସମ୍ବୋଧନ କରି କହିବାକୁ ଲାଗିଲେ ।

ଠାକୁର—ସଚ୍ଚିଦାନନ୍ଦଙ୍କଠାରେ ଯେତେଦିନ ମନ ଲୟ ନ ହୁଏ ସେତେଦିନ ତାଙ୍କୁ ଡାକିବା ଓ ସଂସାରର କର୍ମ କରିବା ଉଭୟ ହିଁ ରହିଥାଏ । ତାପରେ

ତାଙ୍କଠାରେ ମନ ଲୟ ହେଲେ, ଆଉ କୌଣସି କାର୍ଯ୍ୟ କରିବାର ପ୍ରୟୋଜନ ରହେ ନାହିଁ । ଧରାଯାଉ ଜଣେ କୀର୍ତ୍ତନ ଗାଉଛି—'ନିତାଇ ମୋର ମତ୍ତ ହାତୀ ।' ଯେତେବେଳେ ପ୍ରଥମେ ଗୀତ ଆରମ୍ଭ ହୋଇଛି ସେତେବେଳେ ଗୀତର କଥା, ସୁର, ତାଳ, ମାନ, ଲୟ—ସବୁଆଡ଼େ ମନ ରଖି ଠିକ ଭାବରେ ଗାଉଛି । ତାପରେ ଯେତେବେଳେ ଗୀତର ଭାବରେ ମନ ଟିକିଏ ଲୟ ହୋଇଛି ସେତେବେଳେ କହୁଛି— 'ମତ୍ତ ହାତୀ, ମତ୍ତ ହାତୀ ।' ପୁଣି ପରେ ସେଇ ମନ ଯେତେବେଳେ ଆହୁରି ଭାବରେ ଲୟ ହେଲା ସେତେବେଳେ ଖାଲି କହୁଛି— 'ହାତୀ, ହାତୀ ।' ଆଉ, ଯେତେବେଳେ ମନ ଭାବରେ ଆହୁରି ଲୟ ହେଲା ସେତେବେଳେ 'ହାତୀ' କହିବାକୁ ଯାଇ 'ହା—' (କହି ଆଁ କରି ରହିଲା) !

ଠାକୁର ସେହିଭାବରେ 'ହା—'ପର୍ଯ୍ୟନ୍ତ କହି ଭାବାବେଶରେ ସମ୍ପୂର୍ଣ୍ଣ ନିର୍ବାକ ନିଷ୍ପନ୍ଦ ହୋଇଗଲେ ଏବଂ ସେପରି ଅବସ୍ଥାରେ ପ୍ରାୟ ପନ୍ଦରମିନିଟ୍ କାଳ ପ୍ରସନ୍ନ ଉଜ୍ଜ୍ୱଳ ବଦନରେ ବାହ୍ୟଜ୍ଞାନଶୂନ୍ୟ ହୋଇ ଅବସ୍ଥାନ କରିବାକୁ ଲାଗିଲେ । ଏହି ଭାବାବସାନ ପରେ ପୁଣି ଶଶଧରଙ୍କୁ ସମ୍ବୋଧନ କରି କହିଲେ ।

ଠାକୁର—ଆହେ ପଣ୍ଡିତ, ତମକୁ ଦେଖିଲି ।[୧] ତୁମେ ବେଶ୍ ଲୋକ । ଯେପରି ଗୃହିଣୀ ରନ୍ଧାବଢ଼ା ସାରି ସମସ୍ତଙ୍କୁ ଖାଇବାକୁ ଦେଇ ଗାମୁଛା କାନ୍ଧରେ ପକାଇ ପୋଖରୀଘାଟକୁ ସ୍ନାନ କରିବାକୁ, ଲୁଗାପଟା କାଚିବାକୁ ଯାଏ, କେହି ଡାକିଲେ ମଧ୍ୟ ଆଉ ରୋଷେଇ-ଘରକୁ ଫେରେ ନାହିଁ—ତୁମେ ମଧ୍ୟ ସେହିପରି ସମସ୍ତଙ୍କୁ ତାଙ୍କ କଥା କହିସାରି ଯିବ ଯେ, ଆଉ ଫେରିବ ନାହିଁ !

ପଣ୍ଡିତ ଶଶଧର ଠାକୁରଙ୍କର ଏକଥା ଶୁଣି କହିଲେ, 'ଏହା ଆପଣଙ୍କର ଅନୁଗ୍ରହ'—ଏହା କହି ଠାକୁରଙ୍କର ପଦଧୂଳି ବାରମ୍ବାର ଗ୍ରହଣ କରିବାକୁ ଲାଗିଲେ ଏବଂ ତାଙ୍କର ସବୁ କଥା ଶୁଣୁ ଶୁଣୁ ସ୍ତମ୍ଭିତ ଓ ଆର୍ଦ୍ର ହୃଦୟରେ ଭଗବଦ୍‌ବସ୍ତୁ ଜୀବନରେ ଲାଭ ହେଲା ନାହିଁ ଭାବି ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ ।

ଆମମାନଙ୍କର ଜଣେ ପରମ ବନ୍ଧୁ ପଣ୍ଡିତ ଶଶଧରଙ୍କର ଦକ୍ଷିଣେଶ୍ୱର ଆଗମନର ପରଦିନ ଠାକୁରଙ୍କ ନିକଟରେ ପହଞ୍ଚିଲେ, ଠାକୁର ଯେପରି ଭାବରେ ଏସବୁ କଥା ତାଙ୍କ ନିକଟରେ କହିଥିଲେ—ତାହା ହିଁ ଆମେ ଏବେ ଏଠାରେ ଉଲ୍ଲେଖ କରିବୁ ।

### ଠାକୁରଙ୍କର ସେଦିନର କଥା ଜନୈକ ଭକ୍ତ ନିକଟରେ ନିଜେ ଯେପରି କହିଥିଲେ :

ଠାକୁର—ଆହେ, ଦେଖୁଛ ତ ଏଠାରେ ସେସବୁ (ଲେଖାପଢ଼ା) କିଛି ନାହିଁ, ନିରକ୍ଷର ମଣିଷ, ପଣ୍ଡିତ ଦେଖା କରିବାକୁ ଆସିବେ ଶୁଣି ବଡ଼ ଭୟ

୧. ଅର୍ଥାତ୍ ସମାଧି ସହାୟରେ ଉଚ୍ଚ ଭୂମିକୁ ଉଠି ତୁମ ଅନ୍ତରରେ କିପରି ପୂର୍ବସଂସ୍କାର ସକଳ ରହିଛି ତାହା ଦେଖିଲି ।

ହେଲା । ଏହି ତ ଦେଖୁଛ, ପିନ୍ଧିଥିବା ଲୁଗାପଟାର ହିଁ ହୋସ ରହେ ନାହିଁ, କ'ଣ କହିବାକୁ ଯାଇ କ'ଣ କହିବି ଭାବି ସଙ୍କୁଚିତ ହେଲି ! ମା'କୁ କହିଲି, 'ତୁ ମୋତେ ଦେଖିବୁ ମା', ମୁଁ ତୋ ତତେ ଛଡ଼ା ଶାସ୍ତର (ଶାସ୍ତ୍ର) ଫାସ୍ତର କିଛି ଜାଣେ ନାହିଁ, ତୁ ମୋତେ ଦେଖିବୁ ।' ତା'ପରେ ୟାକୁ କହିଲି ତୁ ସେତେବେଳେ ରହିବୁ, ତାକୁ କହିଲି ତୁ ସେତେବେଳେ ଆସିବୁ—ତୁମମାନଙ୍କୁ ଦେଖିଲେ ଭରସା ହେବ ।' ପଣ୍ଡିତ ଯେତେବେଳେ ଆସି ବସିଲେ ସେତେବେଳେ ମଧ୍ୟ ଡର ରହିଛି—ଚୁପ୍ କରି ବସି ତାଙ୍କ ଆଡ଼କୁ ଦେଖୁଛି, ତାଙ୍କ କଥା ହିଁ ଶୁଣୁଛି, ଏପରି ସମୟରେ ଦେଖୁଛି—ଯେପରି ତାଙ୍କ (ପଣ୍ଡିତଙ୍କ) ଭିତରଟା ମା' ଦେଖାଇ ଦେଉଛି । ଶାସ୍ତ୍ର-ଫାସ୍ତ୍ର ପଢ଼ିଲେ କ'ଣ ହେବ, ବିବେକ-ବୈରାଗ୍ୟ ନ ହେଲେ ଏସମସ୍ତ କିଛି ନୁହେଁ ! ତା'ପରେ ସଡ଼ ସଡ଼ କରି (ନିଜ ଶରୀର ଦେଖାଇ) କ'ଣ ଗୋଟେ ମୁଣ୍ଡ ଉପରକୁ ଉଠିଗଲା ଏବଂ ଡର-ଭୟ ସବୁ କୁଆଡ଼େ ଚାଲିଗଲା ! ପୂରା ନିର୍ଭୟ ହୋଇଗଲି ! ମୁହଁ ଉପରକୁ ହୋଇଯାଇ ତା ଭିତରୁ ଯେପରି କଥାର ଝର ବାହାରିବାକୁ ଲାଗିଲା—ଏପରି ବୋଧ ହେବାକୁ ଲାଗିଲା ! ଯେତେ ବାହାରୁଛି, ସେତେ ଭିତରୁ କିଏ ଯେପରି ଠେଲି ଠେଲି ଯୋଗାଇ ଦେଉଛି ! ସେ ଦେଶରେ (କାମାରପୁକୁରରେ) ଧାନ ମାପିବା ସମୟରେ ଯେପରି ଜଣେ 'ରାମେ ରାମ, ଦୁଇରେ ଦୁଇ' କରି ମାପେ, ଏବଂ ଆଉ ଜଣେ ତା'ପଛରେ ବସି ଧାନଗୁଡ଼ିକ ଠେଲି ଦିଏ, ସେହିପରି । କିନ୍ତୁ କ'ଣ ଯେ ସବୁ କହିଛି, ସେସବୁ କିଛି ଜାଣେ ନାହିଁ ! ଯେତେବେଳେ ଟିକିଏ ହୋସ୍ ଆସିଲା ସେତେବେଳେ ଦେଖିଲି ଯେ, ସେ (ପଣ୍ଡିତ) ଖାଲି କାନ୍ଦୁଛି, ବସ୍ତ୍ରାଦି ସବୁ ଭିଜିଯାଇଛି ! ସେହିପରି ଗୋଟିଏ ଅବସ୍ଥା ମଝିରେ ମଝିରେ ହୁଏ । କେଶବ ଯେଉଁଦିନ ଖବର ପଠାଇଲେ, ଜାହାଜରେ ଗଙ୍ଗାରେ ବୁଲାଇବାକୁ ନେଇଯିବେ, ଜଣେ ସାହେବଙ୍କୁ (ଭାରତ ଭ୍ରମଣ ଉଦ୍ଦେଶ୍ୟରେ ଆସିଥିବା ପାଦ୍ରି କୁକ୍) ସାଙ୍ଗରେ ନେଇ ଆସିବେ, ସେଦିନ ମଧ୍ୟ ଭୟରେ ବାରମ୍ବାର ଝାଉଁତଳାକୁ ଶୌଚ ପାଇଁ ଯାଉଛି ! ତା'ପରେ ସେମାନେ ଯେତେବେଳେ ଆସିଲେ ଓ ଜାହାଜରେ ଚଢ଼ିଲି, ସେତେବେଳେ ସେପ୍ରକାର ହୋଇଯାଇଥିଲା ! ଆଉ କେତେକ'ଣ କହିଥିଲି ! ପରେ ଏମାନେ (ଆମମାନଙ୍କୁ ଦେଖାଇ) ସବୁ କହିଲେ, 'ଖୁବ୍ ଉପଦେଶ ଦେଇଥିଲେ ।' ମୁଁ କିନ୍ତୁ ବାବୁ କିଛି ଜାଣି ନାହିଁ !

### ଠାକୁରଙ୍କର ଅଲୌକିକ ବ୍ୟବହାର ଦେଖି ଅନ୍ୟାନ୍ୟ ଅବତାରମାନଙ୍କ ସମ୍ବନ୍ଧରେ ପ୍ରଚଳିତ ସେହିପରି କଥାଗୁଡ଼ିକ ସତ୍ୟ ବୋଲି ବିଶ୍ୱାସ ହୁଏ :

ଅଦ୍ଭୁତ ଠାକୁରଙ୍କର ଏହି ପ୍ରକାର ଅଦ୍ଭୁତ ଅବସ୍ଥାର କଥା କିପରି ବୁଝିବୁ ? ଆମେମାନେ ଆଶ୍ଚର୍ଯ୍ୟ ହୋଇ ଆଁ କରି କେବଳ ଶୁଣୁଥାଉ । କିପରି ଏକ ଅଦୃଷ୍ଟପୂର୍ବ

ଶକ୍ତି ଯେ ତାଙ୍କର ଶରୀର-ମନକୁ ଆଶ୍ରୟ କରି ଏହି ସକଳ ଅପୂର୍ବ ଲୀଳା ବିସ୍ତାର କରୁଥିଲା, ଅଦ୍ଭୁତ ଆକର୍ଷଣରେ ଯାହାକୁ ଇଚ୍ଛା ଟାଣି ଆଣି ଦକ୍ଷିଣେଶ୍ୱରରେ ଉପସ୍ଥିତ କରୁଥିଲା ଓ ଧର୍ମରାଜ୍ୟର ଉଚ୍ଚତର ସ୍ତରସମୂହ ଆରୋହଣରେ ସାମର୍ଥ୍ୟ ପ୍ରଦାନ କରୁଥିଲା, ତାହା ଦେଖିଲେ ମଧ୍ୟ ବୁଝି ହେଉ ନ ଥିଲା । ତେବେ ଫଳ ଦେଖି ବୁଝାଯାଉଥିଲା, ସତରେ ହିଁ ସେହିପରି ହେଉଅଛି, ଏତିକି ମାତ୍ର । କେତେ ଥର ଯେ ଆମ ଚକ୍ଷୁ ସମ୍ମୁଖରେ ଦେଖିଅଛୁ, ଅତି ଦ୍ୱେଷୀ ବ୍ୟକ୍ତି ଦ୍ୱେଷ କରିବା ପାଇଁ ଠାକୁରଙ୍କ ନିକଟକୁ ଆସିଛି ଏବଂ ଠାକୁର ମଧ୍ୟ ସେହି ଶକ୍ତିପ୍ରଭାବରେ ଆତ୍ମହରା ହୋଇ ଭାବାବେଶରେ ତାକୁ ସ୍ପର୍ଶ କରିଛନ୍ତି, ଆଉ ସେହିକ୍ଷଣଠାରୁ ତା'ର ଭିତରର ସ୍ୱଭାବ ଆମୂଳ ପରିବର୍ତ୍ତିତ ହୋଇ ସେ ନବଜୀବନଲାଭରେ ଧନ୍ୟ ହୋଇଛି । ମେରୀ ନାମକ ଏକ ବାରାଙ୍ଗନାକୁ ଈଶା ସ୍ପର୍ଶମାତ୍ରକେ ନୂତନ ଜୀବନ ଦାନ କଲେ, ଭାବାବେଶରେ ଶ୍ରୀଚୈତନ୍ୟ କାହାର ସ୍କନ୍ଧରେ ଆରୋହଣ କଲେ ଓ ତାର ଭିତରର ସଂଶୟ, ଅବିଶ୍ୱାସ ପ୍ରଭୃତି ପାଷଣ୍ଡ ଭାବସକଳ ଦଳିତ ହୋଇ ସେ ଭକ୍ତି ଲାଭ କଲା । ଭଗବଦ୍ ଅବତାରମାନଙ୍କର ଜୀବନୀ ପାଠରେ ଏସମସ୍ତ ଘଟଣାର ବର୍ଣ୍ଣନା ଦେଖି ଏହାପୂର୍ବରୁ ଭାବୁଥିଲୁ, ଶିଷ୍ୟ-ପ୍ରଶିଷ୍ୟମାନଙ୍କର ଧର୍ମାନ୍ଧତା ଓ ଦଳପୁଷ୍ଟି କରିବାର ହୀନଇଚ୍ଛାରୁ ହିଁ ସେପରି ମିଥ୍ୟା କଳ୍ପନାସମୂହ ଲିପିବଦ୍ଧ ହୋଇ ଧର୍ମରାଜ୍ୟର ଯଥାଯଥ ସତ୍ୟଲାଭ ପଥରେ ବିଶେଷ ଅନ୍ତରାୟସ୍ୱରୂପ ହୋଇ ରହିଅଛି ! ଆମମାନଙ୍କର ମନେ ଅଛି, ହରିନାମରେ ଶ୍ରୀଚୈତନ୍ୟଙ୍କର ବାହ୍ୟଜ୍ଞାନ ଲୁପ୍ତ ହେଉଥିଲା, ନବବିଧାନ ସମାଜଦ୍ୱାରା ପ୍ରକାଶିତ 'ଭକ୍ତିଚୈତନ୍ୟଚନ୍ଦ୍ରିକା' ନାମକ ଗ୍ରନ୍ଥରେ ଏକଥା ସତ୍ୟ ବୋଲି ସ୍ୱୀକୃତ ଦେଖି ଆମେ ସେତେବେଳେ ଭାବିଥିଲୁ, ଗ୍ରନ୍ଥକାରଙ୍କର ମସ୍ତିଷ୍କ ବିକୃତି ହୋଇଅଛି ! କେତେ କୂପମଣ୍ଡୁକ ଯେ ଆମେ ସେତେବେଳେ ଥିଲୁ ଏବଂ ଠାକୁରଙ୍କର ଦର୍ଶନ ନ ପାଇଥିଲେ କି ଯେ ଦୁର୍ଦ୍ଦଶା ଆମର ହୋଇଥାଆନ୍ତା ! ଠାକୁରଙ୍କ ଦର୍ଶନ ପାଇ ଅନ୍ତତଃପକ୍ଷେ ଏବେ ଏତିକି ହୋଇଛି ଯେ, ବଙ୍ଗଳାରେ ଯେପରି ପ୍ରବାଦ ଅଛି : 'ଆମେ ଚାଳ ଛପର କରିବା ଜାଣି ନ ଥିଲେ ମଧ୍ୟ ଛପର ଠିକ୍‌ରେ ହୋଇଛି ନା ନାହିଁ ତାହା ଅବଶ୍ୟ ଜାଣିପାରିବୁ ।' ଏବେ ଆମର ଦୁଷ୍ଟମନ ଯେ ନାନା ସନ୍ଦେହ ଉଠାଇ ବା ଅନ୍ୟମାନେ ଯେ ନାନା କଥା କହି ଯାହାକିଛିକୁ ଧର୍ମ ବୋଲି ବୁଝାଇଦେବେ, ସେଥିରୁ ଅନ୍ତତଃ ନିଷ୍କୃତି ପାଇଅଛୁ । ଅଧିକନ୍ତୁ, ଭକ୍ତିବିଶ୍ୱାସ ଆଦି ଅନ୍ୟାନ୍ୟ ସାଧାରଣ ବସ୍ତୁପରି ଯେ ହାତେହାତେ ଅନ୍ୟମାନଙ୍କୁ ଦେଇ ହୁଏ, ଏକଥା ମଧ୍ୟ ଏବେ ଜାଣିପାରି 'ଅହେତୁକ କୃପାସିନ୍ଧୁ' ଠାକୁରଙ୍କର କୃପାକଣାଲାଭରେ ଅମୃତତ୍ୱ ପାଇବା ଯେ ନିଶ୍ଚିତ, ଏହା ବୁଝି ଆଶାର ପଥ ଚାହିଁ ପଡ଼ିରହିଛୁ ।

# ଷଷ୍ଠ ଅଧ୍ୟାୟ

## ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣଦେବ—ଗୋପାଳର ମା'ଙ୍କର[୧] ପୂର୍ବକଥା

ନବୀନ-ନୀରଦ-ଶ୍ୟାମଂ ନୀଲେନ୍ଦୀବରଲୋଚନମ୍ ।
ବଲ୍ଲବୀନନ୍ଦନଂ ବନ୍ଦେ କୃଷ୍ଣଂ ଗୋପାଲରୂପିଣମ୍ ।
ସ୍ଫୁରଦ୍‌ବର୍ହଦଲୋଦ୍ଧଦ୍ଧ-ନୀଲ-କୁଞ୍ଚିତ-ମୂର୍ଦ୍ଧଜମ୍ ।

* * *

ବଲ୍ଲବୀବଦନାମ୍ଭୋଜ-ମଧୁପାନ-ମଧୁବ୍ରତମ୍ ।। - ଶ୍ରୀଗୋପାଳସ୍ତୋତ୍ର ।

ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ।
ତସ୍ୟ ତସ୍ୟାଚଲାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍ ।। ଗୀତା, ୭/୨୧

"And who so shall receive one such little child in my name receiveth me." — Matthew xviii-5

ଗୋପାଳର ମା' ପ୍ରଥମେ ଠାକୁରଙ୍କୁ କେବେ ଦେଖିବାକୁ ଆସିଥିଲେ, ତାହା ଠିକ୍ ଭାବରେ କହିପାରିବୁ ନାହିଁ—ତେବେ ୧୮୮୪ ମସିହାର ଚୈତ୍ର ବା ବୈଶାଖ ମାସରେ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ଯେତେବେଳେ ଆମେ ତାଙ୍କୁ ପ୍ରଥମେ ଦେଖିଲୁ, ସେତେବେଳେ ସେ ପ୍ରାୟ ଛଅ ମାସ ହେଲା ଠାକୁରଙ୍କ ନିକଟକୁ ଯିବା ଆସିବା କରୁଛନ୍ତି ଏବଂ ତାଙ୍କ ସହିତ ଶ୍ରୀଭଗବାନଙ୍କର ବାଳଗୋପାଳ ଭାବରେ ଅପୂର୍ବ ଲୀଳା ମଧ୍ୟ ଚାଲୁଅଛି । ଆମର ବେଶ୍ ମନେ ଅଛି—ସେଦିନ ଗୋପାଳର ମା' ଶ୍ରୀଶ୍ରୀଠାକୁରଙ୍କର ଦକ୍ଷିଣେଶ୍ୱର ଘରର ଉତ୍ତରପଶ୍ଚିମ କୋଣରେ ଯେଉଁ ଗଙ୍ଗାଜଳର ମାଠିଆ ଥିଲା, ତା ନିକଟରେ ଦକ୍ଷିଣ-ପୂର୍ବ ହୋଇ ଅର୍ଥାତ୍ ଠାକୁରଙ୍କ ଆଡ଼କୁ ମୁହଁ କରି ବସିଥିଲେ; ବୟସ ପ୍ରାୟ ଷାଠିଏ ବର୍ଷ ହେଲେ ମଧ୍ୟ

---

୧. ଦିବ୍ୟ-ଭାବମୁଖରେ ଅବସ୍ଥିତ ଠାକୁରଙ୍କୁ ବିଶିଷ୍ଟ ସାଧକ-ଭକ୍ତଗଣଙ୍କ ସହିତ କିଭଳି ଲୀଳା କରିବାକୁ ଦେଖିଛୁ ତାହାର ଅନ୍ୟତମ ଦୃଷ୍ଟାନ୍ତସ୍ୱରୂପ ଆମେ ଶ୍ରୀରାମକୃଷ୍ଣଙ୍କ ଭକ୍ତ ଗୋପାଳ-ମା'ଙ୍କ ଅଦ୍ଭୁତ ଦର୍ଶନାଦିର କଥା ପାଠକଙ୍କୁ ଏଠାରେ ଉପହାର ଦେଉଛୁ । ଯେଉଁମାନେ ମନେକରିବେ ଆମେ ଏହା ଅତିରଞ୍ଜିତ କରିଛୁ, ସେମାନଙ୍କ ନିକଟରେ ଆମମାନଙ୍କର ବକ୍ତବ୍ୟ ଏହି ଯେ, ଆମେମାନେ ଏଥିରେ କୌଣସି ନିଜ କର୍ତ୍ତୃତ୍ୱ ଦେଖାଇ ନାହୁଁ—ଏପରିକି ଭାଷାରେ ମଧ୍ୟ ନୁହେଁ । ଠାକୁରଙ୍କ ସ୍ତ୍ରୀ-ଭକ୍ତମାନଙ୍କ ନିକଟରୁ ଯେପରି ସଂଗ୍ରହ କରିଛୁ ପ୍ରାୟ ସେହିପରି ହିଁ ଉପସ୍ଥାପନା କରିଛୁ । ପୁଣି ଏହିସବୁ ଏପରି ଲୋକଙ୍କଠାରୁ ସଂଗ୍ରହ କରିଛୁ, ଯେଉଁମାନେ ସମସ୍ତ ବିଷୟରେ ସମ୍ପୂର୍ଣ୍ଣ ଯଥାଯଥ କହିବାର ପ୍ରୟାସ କରନ୍ତି, ନ ପାରିଲେ ଅନୁତପ୍ତା ହୁଅନ୍ତି ଏବଂ 'କାମାରହାଟିର ବ୍ରାହ୍ମଣୀ'ର ସ୍ତାବକ ହେବା ଦୂରର କଥା ବେଳେ ବେଳେ ତାଙ୍କ ଦ୍ୱାରା ଅନୁଷ୍ଠିତ କୌଣସି କୌଣସି ଆଚରଣର ତୀବ୍ର ସମାଲୋଚନା ମଧ୍ୟ ଆମମାନଙ୍କ ନିକଟରେ କରିଛନ୍ତି ।

ବୁଝିବା କଠିନ, କାରଣ ବୃଦ୍ଧାଙ୍କର ମୁହଁରେ ବାଳିକାର ଆନନ୍ଦ ବିଦ୍ୟମାନ ଥିଲା ! ଆମମାନଙ୍କର ପରିଚୟ ପାଇ କହିଲେ, ''ତୁମେ କ'ଣ ଗି–ର ପୁଅ ? ତୁମେ ତ ମୋର ନିଜର ଗୋ । ଓ ମା, ଗି–ର ପୁଅ ପୁଣି ଭକ୍ତ ହୋଇଛି ! ଗୋପାଳ ଏଥର ଆଉ କାହାକୁ ବାକି ରଖିବ ନାହିଁ; ଜଣ ଜଣ କରି ସମସ୍ତଙ୍କୁ ଟାଣି ନେବ ! ତାହା ବେଶ୍, ଆଗେ ତୁମ ସହିତ ମାୟିକ ସମ୍ବନ୍ଧ ଥିଲା, ଏବେ ତା'ଠାରୁ ଅଧିକ ନିକଟ ସମ୍ବନ୍ଧ ହେଲା'' ଇତ୍ୟାଦି—ସେ ଆଜିଠାରୁ ଚବିଶ ବର୍ଷ ତଳର କଥା ।

**ଗୋପାଳର ମା'ଙ୍କର ଠାକୁରଙ୍କ ସହିତ ପ୍ରଥମ ଦର୍ଶନ :**

୧୮୮୪ ମସିହା ମାର୍ଗଶୀର ମାସ; ଆକାଶ ଖୁବ୍ ପରିଷ୍କାର ଓ ଉଜ୍ଜ୍ୱଳ ଥିଲା । ଆମର ମନେ ଅଛି, ଏବର୍ଷ ପୁଣି କାର୍ତ୍ତିକ ଆରମ୍ଭରୁ ହିଁ ଅଳ୍ପ ଶୀତ ପଡ଼ିଥିଲା । ଏହି ନାତିଶୀତୋଷ୍ଣ ହେମନ୍ତରେ ହିଁ ବୋଧହୁଏ ଗୋପାଳର ମା' ଶ୍ରୀରାମକୃଷ୍ଣ ଦେବଙ୍କର ପ୍ରଥମ ଦର୍ଶନ ଲାଭ କରିଥିଲେ । ପଟଲଡାଙ୍ଗାର ଗୋବିନ୍ଦ୍ରଚନ୍ଦ୍ର ଦତ୍ତଙ୍କର କାମାରହାଟିରେ ଗଙ୍ଗାକୂଳରେ ଯେଉଁ ଠାକୁରବାଡ଼ି ଓ ବଗିଚା ଅଛି, ସେହିଠାରୁ ନୌକାରେ ସେମାନେ ଠାକୁରଙ୍କୁ ଦେଖିବାକୁ ଆସିଥିଲେ । ସେମାନେ କହୁଛି—କାରଣ ଗୋପାଳର ମା' ସେଦିନ ଏକୁଟିଆ ଆସି ନ ଥିଲେ; ଉକ୍ତ ବଗିଚା ମାଲିକଙ୍କର ବିଧବା ପତ୍ନୀ, କାମିନୀ ନାମ୍ନୀ ତାଙ୍କର ଜଣେ ଦୂରସମ୍ପର୍କୀୟ ଆତ୍ମୀୟାଙ୍କୁ ସାଥିରେ ନେଇ ଗୋପାଳର ମା'ଙ୍କ ସହିତ ଆସିଥିଲେ । ଶ୍ରୀଶ୍ରୀରାମକୃଷ୍ଣଦେବଙ୍କର ନାମ ସେତେବେଳେ କଲିକତାର ଅନେକଙ୍କ ନିକଟରେ ପରିଚିତ । ଏମାନେ ମଧ୍ୟ ଏହି ଅଲୌକିକ ଭକ୍ତ ସାଧୁଙ୍କର କଥା ଶୁଣିବା ପରଠାରୁ ତାଙ୍କର ଦର୍ଶନ ନିମନ୍ତେ ଲାଳାୟିତ ଥିଲେ । କାର୍ତ୍ତିକ ମାସରେ ଶ୍ରୀବିଗ୍ରହଙ୍କର ନିୟମ ପୂର୍ବକ ସେବା କରିବାକୁ ହୋଇଥାଏ, ସେଥିପାଇଁ ଗୋବିନ୍ଦବାବୁଙ୍କର ସ୍ତ୍ରୀ ସେହି ସମୟରେ କାମାରହାଟି ଉଦ୍ୟାନରେ ପ୍ରତିବର୍ଷ ଅବସ୍ଥାନ କରି ସ୍ୱୟଂ ଉକ୍ତ ସେବାର ତତ୍ତ୍ୱାବଧାନ କରୁଥିଲେ । କାମାରହାଟିଠାରୁ ଦକ୍ଷିଣେଶ୍ୱର ଦୁଇ ବା ତିନି ମାଇଲ୍ ହେବ—ତେଣୁ ଆସିବା ପାଇଁ ବେଶ୍ ସୁବିଧା ଥିଲା । କାମାରହାଟିର ଗୋବିନ୍ଦବାବୁଙ୍କ ସ୍ତ୍ରୀ ଏବଂ ଗୋପାଳର ମା ମଧ୍ୟ ସେଇ ସୁଯୋଗରେ ରାଣୀ ରାସମଣିଙ୍କର କାଳୀବାଡ଼ୀରେ ଉପସ୍ଥିତ ହୋଇଥିଲେ ।

ଠାକୁର ସେଦିନ ସେମାନଙ୍କୁ ଆଦର କରି ସ୍ୱଗୃହରେ ବସାଇ ଭକ୍ତିତତ୍ତ୍ୱର ଅନେକ ଉପଦେଶ ଦେଲେ ଓ ଭଜନ ଗାଇ ଶୁଣାଇଲେ ଏବଂ ପୁନରାୟ ଆସିବାକୁ କହି ବିଦାୟ ଦେଲେ । ଆସିବାବେଳେ ଗୋବିନ୍ଦବାବୁଙ୍କର ପତ୍ନୀ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କୁ ତାଙ୍କର କାମାରହାଟି ଠାକୁରବାଡ଼ିରେ ପାଦଧୂଳି ଦେବାକୁ ନିମନ୍ତ୍ରଣ ଜଣାଇଲେ । ଠାକୁର ମଧ୍ୟ ସୁବିଧା ଦେଖି ଦିନେ ଯିବେ ବୋଲି ପ୍ରତିଶ୍ରୁତି ଦେଲେ । ପ୍ରକୃତରେ ଠାକୁର ସେଦିନ ତାଙ୍କର ଓ ଗୋପାଳର ମା'ଙ୍କର ଅନେକ

ପ୍ରଶଂସା କରିଥିଲେ । କହିଥିଲେ, ''ଆହା, ଚକ୍ଷୁ ଓ ମୁଖର କି ଭାବ—ଭକ୍ତି-ପ୍ରେମରେ ଯେପରି ଭାସୁଛି—ପ୍ରେମମୟ ଚକ୍ଷୁ ! ନାକର ତିଳକ ପର୍ଯ୍ୟନ୍ତ ସୁନ୍ଦର ।'' ଅର୍ଥାତ୍ ସେମାନଙ୍କର ଚାଲି-ଚଳନ, ବେଶଭୂଷା ଇତ୍ୟାଦିରେ ଭିତରର ଭକ୍ତିଭାବ ହିଁ ଯେପରି ଫୁଟି ବାହାରୁଛି, ଅଥଚ ଲୋକ ଦେଖାଣିଆ କିଛି ହିଁ ନାହିଁ ।

**ପଟଲଡାଙ୍ଗାର ଗୋବିନ୍ଦଚନ୍ଦ୍ର ଦତ୍ତ :**

ପଟଲଡାଙ୍ଗାର ଗୋବିନ୍ଦଚନ୍ଦ୍ର ଦତ୍ତ କଲିକତାର କୌଣସି ଏକ ବିଖ୍ୟାତ ସୌଦାଗର ଅଫିସରେ ଗୁମାସ୍ତା ଥିଲେ । ସେଠାରେ କାର୍ଯ୍ୟଦକ୍ଷତା ଓ ଉଦ୍ୟମଶୀଳତା ଯୋଗୁଁ ଅନେକ ସମ୍ପତ୍ତିର ଅଧିକାରୀ ହୋଇଥିଲେ । କିନ୍ତୁ କିଛି କାଳ ପରେ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ଅକର୍ମଣ୍ୟ ହୋଇପଡ଼ିଲେ । ତାଙ୍କର ଏକମାତ୍ର ପୁତ୍ର ଏହା ପୂର୍ବରୁ ହିଁ ମୃତ୍ୟୁମୁଖରେ ପତିତ ହୋଇଥିଲେ । କେବଳ ଦୁଇ ଭୂତ ଓ ନାରଣ[୧] ନାମ୍ନୀ ଦୁଇ କନ୍ୟା ଏବଂ ସେମାନଙ୍କ ସନ୍ତାନସନ୍ତତି ଥିଲେ । ଏପଟେ ବିଷୟ ସମ୍ପତ୍ତି କିଛି କମ୍ ନ ଥିଲା, ତେଣୁ ଶେଷ ଜୀବନରେ ଗୋବିନ୍ଦବାବୁଙ୍କର ଧର୍ମାଲୋଚନା ଓ ପୁଣ୍ୟକର୍ମରେ ହିଁ ଦିନ ବିତୁଥିଲା । ଘରେ ରାମାୟଣ–ମହାଭାରତ ଆଦି କଥା କରାଇବା, କାମାରହାଟିର ବଗିଚାରେ ଶ୍ରୀଶ୍ରୀରାଧାକୃଷ୍ଣବିଗ୍ରହ ସମାରୋହ ସହକାରେ ସ୍ଥାପନ କରିବା, ଭାଗବତ ଆଦି ଶାସ୍ତ୍ର ପାରାୟଣ, ସସ୍ତ୍ରୀକ ତୁଳାଦଣ୍ଡ ଅନୁଷ୍ଠାନ କରି ବ୍ରାହ୍ମଣ, ଦରିଦ୍ର ପ୍ରଭୃତିଙ୍କୁ ଦାନ ଇତ୍ୟାଦି ସତ୍‌କର୍ମ ଅନେକ କରିଥିଲେ । ବିଶେଷତଃ କାମାରହାଟି ବଗିଚାରେ ଶ୍ରୀବିଗ୍ରହଙ୍କର ପୂଜା ଉପଲକ୍ଷେ ସେତେବେଳେ ବାରମାସରେ ତେର ପାର୍ବଣ ଲାଗି ରହୁଥିଲା ଏବଂ ଅତିଥି ଅଭ୍ୟାଗତ, ଦୀନ–ଦରିଦ୍ର ସମସ୍ତଙ୍କୁ ଶ୍ରୀଶ୍ରୀରାଧାକୃଷ୍ଣଜୀଉଙ୍କର ପ୍ରସାଦ ଅକାତରରେ ବିତରଣ କରାଯାଉଥିଲା ।

**ତାଙ୍କର ଭକ୍ତିମତୀ ପତ୍ନୀ :**

ଗୋବିନ୍ଦବାବୁଙ୍କର ମୃତ୍ୟୁ ପରେ ତାଙ୍କର ସତୀ ସାଧ୍ୱୀ ରମଣୀ ମଧ ଶ୍ରୀବିଗ୍ରହଙ୍କର ସେହି ପ୍ରକାର ସମାରୋହରେ ସେବା ଅନେକ ଦିନ ପର୍ଯ୍ୟନ୍ତ ଚଳାଇ ଆସୁଥିଲେ । ପରେ ନାନା କାରଣରୁ ସମ୍ପତ୍ତିର ଅଧିକାଂଶ ନଷ୍ଟ ହେଲା । ସେହି କାରଣରୁ ଶ୍ରୀବିଗ୍ରହଙ୍କର ସେବାରେ ଯେପରି ତ୍ରୁଟି ନ ହୁଏ, ସେବିଷୟରେ ଲକ୍ଷ୍ୟ ରଖିବାକୁ ଗୋବିନ୍ଦବାବୁଙ୍କର ପତ୍ନୀ ଏବେ ସ୍ୱୟଂ ଏଠାରେ ରହି ସେହି ବିଷୟର ତତ୍ତ୍ୱାବଧାନ କରୁଥିଲେ । ଗୋବିନ୍ଦବାବୁଙ୍କ ସ୍ତ୍ରୀ ପୁରୁଣାକାଳିଆ ଝିଅ, ଜୀବନରେ ଶୋକତାପ ମଧ ଢେର ପାଇଛନ୍ତି, ସୁତରାଂ—ଧର୍ମାନୁଷ୍ଠାନରେ ହିଁ ଶାନ୍ତି, ଏକଥା ମର୍ମେ ମର୍ମେ ବୁଝିଥିଲେ । କିନ୍ତୁ ତଥାପି ମାୟା କ'ଣ ସହଜରେ ଛାଡ଼େ—ଝିଅ, ଜ୍ୱାଇଁ, ସମାଜ, ମାନ, ସମ୍ଭ୍ରମ ଇତ୍ୟାଦି ମଧ ଦେଖି ଚଳିବାକୁ ପଡୁଥିଲା ।

---

୧. ଯଜ୍ଞେଶ୍ୱରୀ ଓ ନାରାୟଣୀ

ସ୍ୱାମୀଙ୍କର ମୃତ୍ୟୁ ଦିନଠାରୁ ନିଜେ କିନ୍ତୁ କଠୋର ବ୍ରହ୍ମଚର୍ଯ୍ୟର ଅନୁଷ୍ଠାନ କରୁଥିଲେ । ମାଟିରେ ଶୟନ, ତ୍ରିସନ୍ଧ୍ୟା ସ୍ନାନ, ଥରେ ମାତ୍ର ଭୋଜନ, ବ୍ରତ, ନିୟମ, ଉପବାସ, ଶ୍ରୀବିଗ୍ରହଙ୍କର ସେବା, ଜପ, ଧ୍ୟାନ, ଦାନ ଇତ୍ୟାଦିରେ ଦିନ କଟାଉଥିଲେ ।

**ବାଲ୍ୟ ବିଧବା ଅଘୋରମଣି ତାଙ୍କର ପୁରୋହିତ ବଂଶ :**

କାମାରହାଟି ମନ୍ଦିରର ଅତି ନିକଟରେ ଗୋବିନ୍ଦବାବୁଙ୍କର ପୁରୋହିତ ବଂଶର ବାସସ୍ଥାନ ଥିଲା । ପୁରୋହିତ ନୀଳମାଧବ ବନ୍ଦୋପାଧ୍ୟାୟ ମହାଶୟ ମଧ୍ୟ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ଥିଲେ । 'ଗୋପାଳର ମା' ଏହାଙ୍କର ଭଉଣୀ— ପୂର୍ବନାମ ଅଘୋରମଣି ଦେବୀ—ବାଳିକା ବୟସରେ ବିଧବା ହେବାରୁ ପିତ୍ରାଳୟରେ ଚିରକାଳ ବାସ କରୁଥିଲେ । ଗୃହିଣୀ ଅର୍ଥାତ୍ ଗୋବିନ୍ଦବାବୁଙ୍କର ପତ୍ନୀଙ୍କ ସହିତ ବିଶେଷ ଘନିଷ୍ଠତା ହେବା ପରଠାରୁ ଅଘୋରମଣି କାମାରହାଟିର ବଗିଚାରେ ଠାକୁର-ସେବାରେ ହିଁ କାଳ କଟାଉଥିଲେ । କ୍ରମେ ଅନୁରାଗର ଆଧିକ୍ୟରେ ଗଙ୍ଗାତୀରରେ ମନ୍ଦିରରେ ବାସ କରିବା ଇଚ୍ଛା ପ୍ରବଳ ହେବାରୁ ସେ ଗୃହିଣୀଙ୍କ ଅନୁମତି ନେଇ ମହିଳାମହଲର ଗୋଟିଏ ଘରେ ଆସି ବସବାସ କଲେ; ପିତ୍ରାଳୟକୁ ଦିନରେ ଥରେ ଦୁଇ ଥର ଯାଇ ଦେଖା ସାକ୍ଷାତ କରି ଆସୁଥିଲେ ।

ଗୋବିନ୍ଦବାବୁଙ୍କ ପତ୍ନୀ ଯେପରି କଠୋର ବ୍ରହ୍ମଚର୍ଯ୍ୟ ଓ ତପାନୁଷ୍ଠାନରେ ଅନୁରାଗ, ଅଘୋରମଣିଙ୍କ ମଧ୍ୟ ତଦ୍ରୂପ ଥିଲା । ସେଥିପାଇଁ ଉଭୟଙ୍କ ମଧ୍ୟରେ ମାନସିକ ଚିନ୍ତା ଓ ଭାବର ଅନେକ ସାଦୃଶ୍ୟ ଥିଲା । କିନ୍ତୁ ବାହାରେ ବିଷୟର ଅଧିକାରିଣୀ ଗୋବିନ୍ଦବାବୁଙ୍କ ପତ୍ନୀଙ୍କୁ ସାମାଜିକ ମାନସମ୍ଭ୍ରମାଦି ଦେଖି ଚଳିବାକୁ ପଡୁଥିଲା, ଅଘୋରମଣିଙ୍କର କିଛି ନ ଥିବାରୁ ସେସବୁ କିଛି ଦେଖିବାକୁ ପଡୁ ନ ଥିଲା । ସନ୍ତାନ ନ ଥିବାରୁ ଜଞ୍ଜାଳ ମଧ୍ୟ କିଛି ନ ଥିଲା । ସମ୍ପତ୍ତି ଭିତରେ ବୋଧହୁଏ ଅଳଙ୍କାରାଦି ସ୍ତ୍ରୀଧନ ବିକ୍ରୟ ଦ୍ୱାରା ପ୍ରାପ୍ତ ପାଞ୍ଚ-ସାତଶହ ଟଙ୍କା; ତାହା ମଧ୍ୟ ସରକାରୀ କାଗଜ ଆକାରରେ ଗୋବିନ୍ଦବାବୁଙ୍କ ପତ୍ନୀଙ୍କ ନିକଟରେ ଗଚ୍ଛିତ ଥିଲା । ଏହାର ସୁଧରେ ଏବଂ ସମୟ ସମୟରେ ଅସୁବିଧା ହେଲେ ମୂଳଧନରୁ ଅଳ୍ପ ଅଳ୍ପ ଅର୍ଥନେଇ ସେ ଦିନ ବିତାଉଥିଲେ । ଅବଶ୍ୟ ଗୋବିନ୍ଦବାବୁଙ୍କ ପତ୍ନୀ ମଧ୍ୟ ସବୁ ବିଷୟରେ ତାଙ୍କୁ ଓ ତାଙ୍କ ଭାଇଙ୍କ ପରିବାରବର୍ଗଙ୍କୁ ସାହାଯ୍ୟ କରୁଥିଲେ ।

**ଅଘୋରମଣିଙ୍କର ଆଚାର ନିଷ୍ଠା :**

ଅଘୋରମଣି ବାଲ୍ୟ ବିଧବା ଥିଲେ । ସ୍ୱାମୀ ସୁଖ କେବେ ଜୀବନରେ ଜାଣି ନାହାନ୍ତି । ସ୍ତ୍ରୀଲୋକମାନେ କହନ୍ତି, ''ଏମାନେ ସବୁ ନିଷ୍ଠାପର ବିଧବା, ଲୁଣକୁ ମଧ୍ୟ ଧୋଇ ଖାଆନ୍ତି''—ଅଘୋରମଣି ବୟସ ପ୍ରାପ୍ତ ହେବା ପର୍ଯ୍ୟନ୍ତ ସେହିପରି ଥିଲେ । ପ୍ରବଳ ଆଚାର-ବିଚାର ଥିଲା ! ଆମେ ଜାଣୁ, ଦିନେ ସେ ରନ୍ଧନ କରି ଡେକ୍‌ଚିରୁ ଭାତ ନେଇ ପରମହଂସଦେବଙ୍କର ଥାଳିରେ ପରିବେଷଣ

କରୁଛନ୍ତି, ଏହି ସମୟରେ ଶ୍ରୀରାମକୃଷ୍ଣଦେବ କୌଣସି କାରଣରୁ ଭାତର ଚଟୁକୁ ଛୁଇଁ ଦେଲେ । ଅଘୋରମଣିଙ୍କର ସେହି ଭାତ ଆଉ ଖାଇବା ହେଲା ନାହିଁ ଏବଂ ଭାତର ଚଟୁଟି ମଧ୍ୟ ଗଙ୍ଗା ଗର୍ଭରେ ନିକ୍ଷିପ୍ତ ହେଲା ! ସେ ଯେତେବେଳେ ପ୍ରଥମେ ପ୍ରଥମେ ଠାକୁରଙ୍କ ନିକଟକୁ ଆସୁଥିଲେ, ଏହା ସେହି ସମୟର କଥା ।

ଦକ୍ଷିଣେଶ୍ୱରର ନହବତ ଘରେ ଦୁଇ–ତିନୋଟି ଚୂଲି ଥିଲା । ଶ୍ରୀଶ୍ରୀକାଳୀମାତାଙ୍କର ଭୋଗରାଗ ସରିବାକୁ ଅନେକ ବିଳମ୍ବ ହେଉଥିଲା, କେବେ କେବେ ଦିନ ଅଢ଼େଇଟା ହୋଇଯାଉଥିଲା । ପରମହଂସଦେବଙ୍କର ଶରୀର ଅସୁସ୍ଥ ଥିଲା ଓ ତାଙ୍କର ପେଟବେମାର ସର୍ବଦା ଲାଗି ରହୁଥିଲା, ତେଣୁ ପରମାରାଧ୍ୟା ମାତାଠାକୁରାଣୀ ଏହି ଚୂଲିରେ ଶୀଘ୍ର ଶୀଘ୍ର ଅଳ୍ପ ଝୋଳ ଓ ଭାତ ରାନ୍ଧି ତାଙ୍କୁ ଦେଉଥିଲେ । ଯେଉଁ ସମସ୍ତ ଭକ୍ତମାନେ ଠାକୁରଙ୍କ ନିକଟରେ ମଝିରେ ମଝିରେ ରାତ୍ରିଯାପନ କରୁଥିଲେ, ସେମାନଙ୍କ ପାଇଁ ଡାଲି ରୁଟି ଏହି ଚୂଲିରେ ତିଆରି ହେଉଥିଲା । ପୁଣି କଲିକତା ପ୍ରଭୃତି ସ୍ଥାନରୁ ଅନେକ ଭଦ୍ରମହିଳା ଠାକୁରଙ୍କ ଦର୍ଶନରେ ଆସି ମାତାଠାକୁରାଣୀଙ୍କ ସହିତ ସେହି ନହବତଖାନାରେ ସାରା ଦିନ ରହୁଥିଲେ ଏବଂ ବେଳେ ବେଳେ ସେଠାରେ ରାତ୍ରିଯାପନ ମଧ୍ୟ କରୁଥିଲେ— ସେମାନଙ୍କର ଆହାରାଦି ମଧ୍ୟ ଶ୍ରୀଶ୍ରୀମା' ସେହି ଚୂଲିରେ ପ୍ରସ୍ତୁତ କରୁଥିଲେ । ଅଘୋରମଣି—ଅଥବା ଠାକୁର ଯେପରି ତାଙ୍କୁ ପ୍ରଥମେ ପ୍ରଥମେ ନିର୍ଦ୍ଦେଶ କରୁଥିଲେ, 'କାମାରହାଟିର ବ୍ରାହ୍ମଣ ଠାକୁରାଣୀ ବା ବ୍ରାହ୍ମଣୀ'—ଯେଉଁ ଦିନ ଠାକୁରଙ୍କୁ ଦର୍ଶନ କରିବାକୁ ଆସୁଥିଲେ ସେଦିନ ଠାକୁରଙ୍କର ଝୋଳ, ଭାତ ରାନ୍ଧିବା ପରେ ଶ୍ରୀଶ୍ରୀମା'ଙ୍କୁ ଗୋବର, ଗଙ୍ଗାଜଳ ଆଦି ଦେଇ ତିନିଥର ଚୂଲିକୁ ଲିପିବାକୁ ହେଉଥିଲା, ତେବେଯାଇ ସେଥିରେ ବ୍ରାହ୍ମଣୀର ଭାତ ଡେକ୍‌ଚି ବସୁଥିଲା ! ଏତେଦୂର ତାଙ୍କର ଆଚାର ବିଚାର ଥିଲା ।

**ଗୋବିନ୍ଦବାବୁଙ୍କର ମନ୍ଦିରରେ ବାସ ଓ ତପସ୍ୟା :**

'କାମାରହାଟିର ବ୍ରାହ୍ମଣୀ', ପିଲାବେଳରୁ ବଡ଼ ଅଭିମାନିନୀ ଥିଲେ । କାହାରି ସାମାନ୍ୟ କଥା ସହିପାରୁ ନ ଥିଲେ—ଅର୍ଥ ସାହାଯ୍ୟ ପାଇଁ ହାତ ପତାଇବା ତ' ଦୂରର କଥା । ସେଥିରେ ପୁଣି ଅନ୍ୟାୟ ଦେଖିଲେ ହିଁ ଲୋକଙ୍କ ମୁହଁ ଉପରେ କହିବାକୁ ଆଦୌ ଲଜ୍ଜା କରୁ ନ ଥିଲେ—ତେଣୁ ଖୁବ୍ କମ୍ ଲୋକଙ୍କ ସହିତ ତାଙ୍କର ଭଲ ସମ୍ପର୍କ ଥିଲା । ଗୋବିନ୍ଦବାବୁଙ୍କ ପତ୍ନୀ ଯେଉଁ ଘରଟି ତାଙ୍କୁ ରହିବାକୁ ଦେଇଥିଲେ, ତାହା ଏକାବେଳକେ ବଗିଚାର ଦକ୍ଷିଣପ୍ରାନ୍ତରେ ଅବସ୍ଥିତ । ଘରର ଦକ୍ଷିଣର ତିନିଗୋଟି ଝରକା ଦେଇ ସୁନ୍ଦର ଗଙ୍ଗାଦର୍ଶନ ହେଉଥିଲା ଏବଂ ଉତ୍ତର ଓ ପଶ୍ଚିମରେ ଦୁଇଟି କବାଟ ଥିଲା । ବ୍ରାହ୍ମଣୀ ସେହି ଘରେ ବସି ଗଙ୍ଗାଦର୍ଶନ କରୁଥିଲେ ଓ ଦିବାରାତ୍ରି ଜପ କରୁଥିଲେ । ଏହିପରି ସେହିଘରେ ତିରିଶିବର୍ଷରୁ

ଅଧିକ କାଳ ବ୍ରାହ୍ମଣୀଙ୍କର ସୁଖ-ଦୁଃଖରେ କଟିଯିବା ପରେ ଶ୍ରୀଶ୍ରୀରାମକୃଷ୍ଣଙ୍କର ପ୍ରଥମ ଦର୍ଶନ ସେ ଲାଭ କରିଥିଲେ ।

ବ୍ରାହ୍ମଣୀଙ୍କ ପିତୃବଂଶ ବୋଧହୁଏ ଶାକ୍ତ ଥିଲେ — ଶ୍ୱଶୁରକୁଳ କ'ଣ ଥିଲେ କହିପାରିବୁ ନାହିଁ — କିନ୍ତୁ ତାଙ୍କର ନିଜର ସ୍ୱଭାବତଃ ବୈଷ୍ଣବପଦାନୁଗା ଭକ୍ତି ଥିଲା ଓ ଗୁରୁଙ୍କଠାରୁ ଗୋପାଳମନ୍ତ୍ର-ଗ୍ରହଣ କରିଥିଲେ । ଗୋବିନ୍ଦବାବୁଙ୍କ ପତ୍ନୀଙ୍କ ସହିତ ଘନିଷ୍ଠତା ମଧ୍ୟ ବୋଧହୁଏ ତାଙ୍କର ସେହି ବିଷୟରେ ସହାୟକ ହୋଇଥିଲା । କାରଣ, ମାଲପଡ଼ାର ଗୋସ୍ୱାମୀବଂଶୀୟମାନେ ହିଁ ଗୋବିନ୍ଦବାବୁଙ୍କର ଗୁରୁବଂଶ ଏବଂ ଏହାଙ୍କ ମଧ୍ୟରୁ ଜଣେ-ଦୁଇଜଣ କାମାରହାଟିର ଠାକୁରବାଡ଼ି ହେବା ପର୍ଯ୍ୟନ୍ତ ପ୍ରାୟ ସବୁ ସମୟରେ ସେହି ସ୍ଥାନରେ ଅବସ୍ଥାନ କରୁଥିଲେ । କିନ୍ତୁ ମାୟିକ ସମ୍ବନ୍ଧରେ ସନ୍ତାନ-ବାତ୍ସଲ୍ୟର ସ୍ୱାଦ ଏଜନ୍ମରେ କିଛିମାତ୍ର ନ ପାଇ ମଧ୍ୟ କିପରି ଯେ ଅଘୋରମଣିଙ୍କର ବାତ୍ସଲ୍ୟରସରେ ଏତେ ନିଷ୍ଠା ହେଲା ଏବଂ ଶ୍ରୀଭଗବାନଙ୍କୁ ପୁତ୍ରସ୍ଥାନୀୟ କରି ଗୋପାଳଭାବରେ ଭଜନା କରିବାକୁ ଇଚ୍ଛା ହେଲା, ତାହାର ମୀମାଂସା କରିବା କଠିନ । ଅନେକେ କହିବେ ଏହା ପୂର୍ବଜନ୍ମର ସଂସ୍କାର — ଯାହା ହେଉ, ଏଘଟଣା କିନ୍ତୁ ସତ୍ୟ ।

### ପ୍ରାଚ୍ୟ ଓ ପାଶ୍ଚାତ୍ୟର ସ୍ତ୍ରୀଲୋକମାନଙ୍କର ଧର୍ମନିଷ୍ଠା ବିଭିନ୍ନଭାବରେ ପ୍ରକାଶ :

ବିଲାତ ଆମେରିକାରେ ସଂସାରରେ ଦୁଃଖ-କଷ୍ଟ ପାଇ ବା ଅନ୍ୟ କୌଣସି କାରଣରୁ ସ୍ତ୍ରୀଲୋକମାନଙ୍କ ଭିତରେ ଧର୍ମନିଷ୍ଠା ଆସିଲେ ହିଁ ତାହା ଦାନ, ପରୋପକାର ଏବଂ ଦରିଦ୍ର ଓ ରୋଗୀଙ୍କର ସେବାରୂପକ କର୍ମ ଦ୍ୱାରା ପ୍ରକାଶିତ ହୁଏ । ଦିବାରାତ୍ର ସତ୍‌କର୍ମ କରିବା ହିଁ ସେମାନଙ୍କର ଲକ୍ଷ୍ୟ ହୁଏ । ଆମ ଦେଶରେ ଠିକ୍ ଏହାର ବିପରୀତ । କଠୋର ବ୍ରହ୍ମଚର୍ଯ୍ୟ, ତପଶ୍ଚରଣ, ଆଚାର ଏବଂ ଜପ ଆଦି ଦ୍ୱାରା ହିଁ ସେହି ଧର୍ମନିଷ୍ଠା ପ୍ରକାଶିତ ହେବାକୁ ଆରମ୍ଭ ହୁଏ । ସଂସାର-ତ୍ୟାଗ ଏବଂ ଅନ୍ତର୍ମୁଖୀଭାବ ଆଡ଼କୁ ଅଗ୍ରସର ହେବା ହିଁ କ୍ରମେ ସେମାନଙ୍କର ଲକ୍ଷ୍ୟ ହୁଏ । ବିଶେଷତଃ ଶ୍ରୀଭଗବାନଙ୍କର ଏଜୀବନରେ ଦର୍ଶନଲାଭ କରିବା ଜୀବର ସାଧ୍ୟ ଏବଂ ସେଥିରେ ହିଁ ଯଥାର୍ଥ ଶାନ୍ତି — ଏ କଥା ଏହିଦେଶର ଜଳବାୟୁରେ ରହି ସ୍ତ୍ରୀ-ପୁରୁଷ ସମସ୍ତଙ୍କର ଅସ୍ଥିମଜ୍ଜାରେ ପ୍ରବିଷ୍ଟ ହୋଇରହିଛି । ତେଣୁ 'କାମାରହାଟିର ବ୍ରାହ୍ମଣୀ'ଙ୍କର ଏକାନ୍ତ ବାସ ଓ ତପଶ୍ଚରଣ ଅନ୍ୟଦେଶ ପାଇଁ ଆଶ୍ଚର୍ଯ୍ୟର ବିଷୟ ହେଲେ ମଧ୍ୟ ଏଦେଶରେ ଏହା ସ୍ୱାଭାବିକ ଭାବ ।

* * *

ପ୍ରଥମ ଦର୍ଶନ ଦିନରୁ ହିଁ କାମାରହାଟିର ବ୍ରାହ୍ମଣୀ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଥିଲେ — କାହିଁକି, କେଉଁ କାରଣରୁ ଏବଂ

ଏହା କେତେଦୂର ଯିବ, ସେକଥା ଅବଶ୍ୟ କିଛି ଅନୁଭବ କରିପାରି ନ ଥିଲେ; କିନ୍ତୁ 'ଏ ଭଲ ଲୋକ, ଯଥାର୍ଥ ସାଧୁ–ଭକ୍ତ ଏବଂ ଏହାଙ୍କ ନିକଟକୁ ପୁନରାୟ ସମୟ ପାଇଲେ ହିଁ ଆସିବି'—ଏହି ଭାବରେ କିପରି ଏକ ଅବ୍ୟକ୍ତ ଆକର୍ଷଣର ଉଦୟ ହୋଇଥିଲା । ଗୋବିନ୍ଦବାବୁଙ୍କ ପତ୍ନୀ ମଧ୍ୟ ସେହିପ୍ରକାର ଅନୁଭବ କରିଥିଲେ, କିନ୍ତୁ ସମାଜ–ନିନ୍ଦା ଭୟରେ ଆଉ ଆସିଥିଲେ କି ନାହିଁ ସନ୍ଦେହ । ତା' ସହିତ ଝିଅ–ଜୋଇଁମାନଙ୍କ ପାଇଁ ତାଙ୍କୁ ଅନେକ ସମୟ ପୁଣି ପଟଲଡାଙ୍ଗା ଘରେ କଟାଇବାକୁ ପଡୁଥିଲା । ସେଠାରୁ ଦକ୍ଷିଣେଶ୍ୱର ଅନେକ ଦୂର ଏବଂ ଆସିବାକୁ ହେଲେ ସମସ୍ତଙ୍କୁ ଜଣାଇ ଅନେକ ପ୍ରସ୍ତୁତି ନେଇ ଆସିବାକୁ ହୁଏ—ସେଥିପାଇଁ ଆଉ ବିଶେଷ ଆସିବା ହୋଇପାରୁ ନ ଥିଲା ।

## ଅଘୋରମଣିଙ୍କର ଠାକୁରଙ୍କୁ ଦ୍ୱିତୀୟଥର ଦର୍ଶନ :

ବ୍ରାହ୍ମଣୀଙ୍କର ଏସବୁ ଜଞ୍ଜାଳ ନ ଥିଲା—ତେଣୁ ପ୍ରଥମ ଦର୍ଶନର ଅଳ୍ପ ଦିନ ପରେ ଜପ କରୁ କରୁ ଠାକୁରଙ୍କ ନିକଟକୁ ଆସିବା ଇଚ୍ଛା ହେବା ମାତ୍ରେ ଦୁଇତିନି ପଇସାର ସନ୍ଦେଶ (ମିଠାଇ) କିଣି ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । ଠାକୁର ତାଙ୍କୁ ଦେଖିବା ମାତ୍ରେ କହିଉଠିଲେ, ''ଆସିଛ, ମୋ ପାଇଁ କ'ଣ ଆଣିଛ ଦିଅ ।'' ଗୋପାଳର ମା' କହନ୍ତି, ''ମୁଁ ତ ଏଥିରେ ଭାବି ଆକୁଳ, କେମିତି ସେହି ଖରାପ ସନ୍ଦେଶ ବାହାର କରିବି—ଏହାଙ୍କୁ ତ କେତେ ଲୋକ କେତେ ଭଲ ଭଲ ଜିନିଷ ଆଣି ଖୁଆଉଛନ୍ତି—ପୁଣି କ'ଣ ନା ମୁଁ ଆସିବା ମାତ୍ରେ ଖାଇବାକୁ ମାଗିଲେଣି !'' ଲଜ୍ଜା-ଭୟରେ କିଛି କହି ନ ପାରି ସେହି ସନ୍ଦେଶଗୁଡ଼ିକ ବାହାର କରି ଦେଲି । ଠାକୁର ମଧ୍ୟ ଏହାକୁ ମହା ଆନନ୍ଦରେ ଖାଉ ଖାଉ କହିବାକୁ ଲାଗିଲେ, ''ତୁମେ ପଇସା ଖର୍ଚ୍ଚ କରି ସନ୍ଦେଶ କାହିଁକି ଆଣିଲ ? ନଡ଼ିଆ କୋରା କରି ରଖିବ, ଆସିବା ବେଳେ ତାହା ହିଁ ଦୁଇଟା ଆଣିବ । ନ ହେଲେ ଯାହା ତୁମେ ନିଜ ହାତରେ ରାନ୍ଧିବ, ଲାଉ ଶାଗ–ତରକାରୀ, ଆଳୁ, ବାଇଗଣ, ବଡ଼ି ଦେଇ ସଜନାଛୁଇଁ ତରକାରୀ—ତାହା ହିଁ ନେଇ ଆସିବ । ତୁମ ହାତର ରନ୍ଧା ଖାଇବାକୁ ଭାରି ଇଚ୍ଛା ହୁଏ ।'' ଗୋପାଳର ମା' କହିଲେ, ''ଧର୍ମକର୍ମ ଦୂରକୁ ଗଲା, ଏହିପରି ଖାଲି ଖାଇବା କଥା ହିଁ ଚାଲିଲା; ମୁଁ ଭାବିବାକୁ ଲାଗିଲି, ଭଲ ସାଧୁ ଦେଖିବାକୁ ଆସିଲି—କେବଳ ଖାଇବା ଆଉ ଖାଇବା; ମୁଁ ଗରିବ କାଙ୍ଗାଳ ଲୋକ—କେଉଁଠୁ ଏତେ ଖାଇବାକୁ ଦେଇପାରିବି ? ଯାହା ହେଉ, ଆଉ ଆସିବି ନାହିଁ । କିନ୍ତୁ ଯିବା ସମୟରେ ଦକ୍ଷିଣେଶ୍ୱର ବଗିଚାର ଗେଟ୍ ଯେମିତି ପାର ହୋଇଛି, ଠିକ୍ ଯେପରି ସେ ପଛରୁ ଟାଣିବାକୁ ଲାଗିଲେ । କୌଣସି ମତେ ଆଉ ଆଗେଇପାରୁ ନାହିଁ । ଅନେକ ଭାବରେ ମନକୁ ବୁଝାଇ ଟାଣି ଓଟାରି କାମାରହାଟି ଫେରିଲି ।'' ଏହାର କେତେଦିନ ପରେ ପୁଣି କାମାରହାଟିର ବ୍ରାହ୍ମଣୀ 'ତରକାରୀ'

ହାତରେ ଧରି ତିନିମାଇଲ ଚାଲି ଚାଲି ଆସି ପରମହଂସଦେବଙ୍କ ଦର୍ଶନ ନିମନ୍ତେ ଉପସ୍ଥିତ ହେଲେ ! ଠାକୁର ମଧ୍ୟ ପୂର୍ବପରି ଆସିବା ମାତ୍ରେ ତାହା ମାଗି ଖାଇଲେ ଏବଂ ''ଆହା କେଡ଼େ ସୁନ୍ଦର ରନ୍ଧା, ଯେପରି ସୁଧା, ସୁଧା'' କହି ଆନନ୍ଦ ପ୍ରକାଶ କରିବାକୁ ଲାଗିଲେ । ଗୋପାଳର ମା'ଙ୍କର ସେହି ଆନନ୍ଦ ଦେଖି ଚକ୍ଷୁରେ ଅଶ୍ରୁ ଆସିଲା । ଭାବିଲେ—ସେ ଗରିବ କାଙ୍ଗାଳ ବୋଲି ତାଙ୍କର ଏହି ସାମାନ୍ୟ ଜିନିଷରେ ଠାକୁର ଏତେ ପ୍ରଶଂସା କରୁଛନ୍ତି ।

ଏହିପରି ଦୁଇ-ଚାରିମାସ ଦକ୍ଷିଣେଶ୍ୱରକୁ ଘନଘନ ଯିବା ଆସିବା ହେବାକୁ ଲାଗିଲା । ଯେଉଁ ଦିନ ଯାହା ରାନ୍ଧନ୍ତି, ଭଲ ଲାଗିଲେ ହିଁ ତାହା ପର ଥର ଠାକୁରଙ୍କୁ ଦେଖିବାକୁ ଆସିବା ବେଳେ ବ୍ରାହ୍ମଣୀ କାମାରହାଟିରୁ ନେଇ ଆସୁଥିଲେ । ଠାକୁର ମଧ୍ୟ ତାହା ଖୁବ୍ ଆନନ୍ଦ କରି ଖାଉଥିଲେ । ପୁଣି କେବେ କିଛି ସାମାନ୍ୟ ଜିନିଷ, ଯଥା—ସୁନସୁନିଆ ଶାଗ ତରକାରୀ, କଳମି ଶାଗ ତରକାରୀ ଇତ୍ୟାଦି ଆଣିବାକୁ ଅନୁରୋଧ କରୁଥିଲେ । କେବଳ 'ଏହା ଆଣିବ, ତାହା ଆଣିବ' ଆଉ ଖାଇବି ଖାଇବି କଥାରେ ବିରକ୍ତ ହୋଇ ଗୋପାଳ ମା' ବେଳେ ବେଳେ ଭାବନ୍ତି, ''ଗୋପାଳ, ତୁମକୁ ଡାକି କ'ଣ ଏହା ହେଲା ?'' ଏପରି ସାଧୁ ପାଖକୁ ନେଇଆସିଲ ଯେ, କେବଳ ଖାଇବାକୁ ଚାହେଁ ! ଆଉ ଆସିବିନି ।'' କିନ୍ତୁ ସେ ଏକ ପ୍ରଚଣ୍ଡ ଆକର୍ଷଣ ! ଦୂରକୁ ଗଲେ ହିଁ ପୁଣି କେବେ ଯିବି, କେତେବେଳେ ଯିବି, ଏପରି ମନେ ହୁଏ ।

### ଠାକୁରଙ୍କର ଗୋବିନ୍ଦବାବୁଙ୍କ ବଗିଚାକୁ ଆଗମନ :

ଇତିମଧ୍ୟରେ ଶ୍ରୀଶ୍ରୀରାମକୃଷ୍ଣଦେବ ମଧ୍ୟ ଥରେ କାମାରହାଟିକୁ ଗୋବିନ୍ଦ-ବାବୁଙ୍କର ବଗିଚାକୁ ଯାଇଥିଲେ ଏବଂ ସେଠାରେ ଶ୍ରୀବିଗ୍ରହଙ୍କର ସେବାଦି ଦର୍ଶନ କରି ବିଶେଷ ଆନନ୍ଦ ପ୍ରକାଶ କରିଥିଲେ । ସେଥର ସେ ଶ୍ରୀବିଗ୍ରହଙ୍କ ସମ୍ମୁଖରେ କୀର୍ତ୍ତନ ଆଦି କରି ପ୍ରସାଦ ପାଇବା ପରେ ପୁନରାୟ ଦକ୍ଷିଣେଶ୍ୱର ଫେରିଥିଲେ । କୀର୍ତ୍ତନ ସମୟରେ ତାଙ୍କର ଅଦ୍ଭୁତ ଭାବାବେଶ ଦେଖି ଗୋବିନ୍ଦବାବୁଙ୍କ ପତ୍ନୀ ଏବଂ ଅନ୍ୟ ସମସ୍ତେ ବିଶେଷ ମୁଗ୍ଧ ହୋଇଥିଲେ । ତେବେ ଗୋସ୍ୱାମୀପାଦମାନଙ୍କର ମନରେ କାଳେ ପ୍ରଭୁତ୍ୱ ହରାଇବାକୁ ପଡ଼ିବ ବୋଲି ଟିକିଏ ଈର୍ଷା ବିଦ୍ୱେଷ ଆସିଥିଲା କି ନାହିଁ କହିବା କଠିନ । ଆମେ ଶୁଣିବାକୁ ପାଉ ତାହା ହିଁ ହୋଇଥିଲା ।

*　　*　　*

ରାତି ଦୁଇଟାରେ ଉଠି ନିତ୍ୟ କର୍ମ ସାରି ତିନିଟାରେ ଜପରେ ବସିବା କାମାରହାଟି ବ୍ରାହ୍ମଣୀଙ୍କ ବହୁକାଳର ଅଭ୍ୟାସ ଥିଲା । ଦିନଆଠଟା-ନଅଟା ପର୍ଯ୍ୟନ୍ତ ଜପ କରିସାରି ସ୍ନାନ ଓ ଶ୍ରୀଶ୍ରୀରାଧାକୃଷ୍ଣଜୀଙ୍କର ଦର୍ଶନ ଓ ସେବାକାର୍ଯ୍ୟରେ ଯଥାସାଧ୍ୟ ଯୋଗଦାନ କରୁଥିଲେ । ପରେ ଶ୍ରୀବିଗ୍ରହଙ୍କର ଭୋଗରାଗ ହୋଇଗଲେ

ଦିନ ଦୁଇପ୍ରହର ସମୟରେ ନିଜ ପାଇଁ ରନ୍ଧନାଦି କରୁଥିଲେ ଓ ଆହାର ପରେ ସାମାନ୍ୟ ବିଶ୍ରାମ କରି ପୁଣି ଜପରେ ବସିବା ଓ ସନ୍ଧ୍ୟା ଆରତି ଦର୍ଶନ କରିବା ପରେ ପୁନରାୟ ଅନେକ ରାତ୍ରି ପର୍ଯ୍ୟନ୍ତ ଜପରେ କଟାଉଥିଲେ । ପରେ ସାମାନ୍ୟ ଦୁଗ୍ଧପାନ କରି କେଇ ଘଣ୍ଟା ବିଶ୍ରାମ ନେଉଥିଲେ ! ସ୍ୱଭାବତଃ ତାଙ୍କର ବାୟୁପ୍ରଧାନ ଶରୀର ଥିଲା, ତେଣୁ ନିଦ୍ରା ଅତି ଅଳ୍ପ ହେଉଥିଲା । ବେଳେ ବେଳେ ତାଙ୍କର ଛାତି ଧଡ଼ଫଡ଼ ଓ ପ୍ରାଣ ଅଶାନ୍ତ ହେଉଥିଲା । ଠାକୁର ଶୁଣି କହିଥିଲେ, ''ତାହା ତୁମର ହରିବାୟୁ — ତାହା ଗଲେ କ'ଣ ନେଇ ରହିବ ? ଯେତେବେଳେ ସେପରି ହେବ ସେତେବେଳେ କିଛି ଖାଇବ ।''

## ଅଲୌକିକ ବାଳଗୋପାଳ–ମୂର୍ତ୍ତି ଦର୍ଶନରେ ଅଘୋରମଣିଙ୍କର ଅବସ୍ଥା :

୧୮୮୪ ମସିହା — ଶୀତଋତୁ ଚାଲିଯାଇ କୁସୁମାକର ସରସ ବସନ୍ତର ଆଗମନ ହେଲା । ପତ୍ର–ପୁଷ୍ପ–ଗୀତିପୂର୍ଣ୍ଣ ବସୁନ୍ଧରା ଏକ ଅପୂର୍ବ ଉନ୍ମତ୍ତତାରେ ଜାଗରିତା ହୋଇଉଠିଲା । ସେହି ଉନ୍ମତ୍ତତାର ଭଲମନ୍ଦ ନାହିଁ — କିନ୍ତୁ ଜୀବର ପ୍ରବୃତ୍ତିର ଅଛି । ଯାହାର ଯେପରି ସୁ ବା କୁ ପ୍ରବୃତ୍ତି ଓ ସଂସ୍କାର, ତାହା ନିକଟରେ ତାହା ସେହିପରି ପ୍ରକାଶିତ ହୁଏ । ସାଧୁ ସତ୍–ବିଷୟରେ ନବ–ଜାଗରଣରେ ଜାଗରିତ ହୁଏ ଏବଂ ଅସାଧୁ ଅନ୍ୟ ରୂପରେ — ଏହା ହିଁ ପ୍ରଭେଦ ।

ଏପରି ସମୟରେ ଥରେ 'କାମାରହାଟିର ବ୍ରାହ୍ମଣୀ' ରାତି ତିନିଟା ସମୟରେ ଜପରେ ବସିଛନ୍ତି । ଜପ ସରିବା ପରେ ଇଷ୍ଟଦେବତାଙ୍କୁ ଜପ ସମର୍ପଣ କରିବା ପୂର୍ବରୁ ପ୍ରାଣାୟାମ କରିବାକୁ ଆରମ୍ଭ କରୁଛନ୍ତି, ଏପରି ସମୟରେ ଦେଖିଲେ ଶ୍ରୀଶ୍ରୀରାମକୃଷ୍ଣଦେବ ତାଙ୍କ ନିକଟରେ ବାମପାଖରେ ବସିଛନ୍ତି ଏବଂ ଠାକୁରଙ୍କର ଦକ୍ଷିଣ ହସ୍ତଟି ମୁଠାକରିବା ପରି ଦେଖାଯାଉଛି ! ଦକ୍ଷିଣେଶ୍ୱରରେ ଠାକୁରଙ୍କୁ ଯେପରି ଦର୍ଶନ କରିଥିଲେ ଏବେ ମଧ ଠିକ୍ ସେହିପରି ସ୍ପଷ୍ଟ ଜୀବନ୍ତ ଦେଖିଲେ ! ଭାବିଲେ, ''ଇଏ ମୁଁ କ'ଣ ଦେଖୁଛି ? ଏହି ସମୟରେ ଇଏ କେଉଁଠୁ କିପରି ଏଠାକୁ ଆସିଲେ ?'' ଗୋପାଳର ମା' କହନ୍ତି, ''ମୁଁ ଅବାକ୍ ହୋଇ ତାଙ୍କୁ ଦେଖୁଛି, ଆଉ ସେହି କଥା ଭାବୁଛି — ଏପଟେ ଗୋପାଳ (ଶ୍ରୀଶ୍ରୀରାମକୃଷ୍ଣଦେବଙ୍କୁ ସେ 'ଗୋପାଳ' ବୋଲି କହୁଥିଲେ) ବସି ମୁରୁକି ମୁରୁକି ହସୁଛି ! ତାପରେ ସାହସ କରି ବାଁ ହାତରେ ଯେମିତି ଗୋପାଳର (ଶ୍ରୀଶ୍ରୀରାମକୃଷ୍ଣଦେବଙ୍କର) ବାଁ ହାତଟି ଧରିଛି, ସେହି ମୂର୍ତ୍ତି ତତ୍‌କ୍ଷଣାତ୍ କେଉଁଠି ଉଭେଇଗଲା, ଆଉ ତାଙ୍କ ଭିତରୁ ଦଶମାସର ସତକୁ ସତ ଗୋପାଳ, (ହାତ ଦ୍ୱାରା ଦେଖାଇ) ଏତେ ବଡ଼ପିଲା, ବାହାରି ଗୁରୁଣ୍ଡି ଗୋଟିଏ ହାତ ଟେକି ମୋର ମୁହଁକୁ ଚାହିଁ (ସେ କି ରୂପ, ଆଉ କି ଚାହାଣୀ !) କହିଲା, 'ମା', ଲହୁଣି ଦେ' ! ମୁଁ ତ' ତାହା ଦେଖି ଏକାବେଳକେ

ହତଜ୍ଞାନ, ତାହା ଏକ ଚମତ୍କାର ଘଟଣା । ମୁଁ ଚିତ୍କାର କରି କାନ୍ଦି ଉଠିଲି—ସେ ତ' ସାଧାରଣ ଚିତ୍କାର ନୁହେଁ, ଘରେ କେହି ନ ଥିଲେ, ନ ହେଲେ ଲୋକ ଜମା ହୋଇଯାଇଥାଆନ୍ତେ । କାନ୍ଦିକାନ୍ଦି କହିଲି, 'ବାବା, ମୁଁ ଦୁଃଖିନୀ, କାଙ୍ଗାଳିଣୀ, ମୁଁ ତୁମକୁ କ'ଣ ଖୁଆଇପାରିବି, ଲହୁଣୀ, କ୍ଷୀର କେଉଁଠୁ ପାଇବି, ବାବା !' କିନ୍ତୁ ସେ ଅଦ୍ଭୁତ ଗୋପାଳ କ'ଣ ତାହା ଶୁଣୁଛି—କେବଳ କହୁଛି 'ଖାଇବାକୁ ଦେ' । କ'ଣ କରିବି, କାନ୍ଦି କାନ୍ଦି ଉଠି ଶିକାରୁ ଶୁଖିଲା ନଡ଼ିଆଲଡୁ ତାଙ୍କ ହାତରେ ଦେଲି ଓ କହିଲି, 'ବାବା, ଗୋପାଳ, ମୁଁ ତୁମକୁ ଏହି କଦର୍ଯ୍ୟ ଜିନିଷ ଖାଇବାକୁ ଦେଉଛି ବୋଲି ମୋତେ ଯେପରି ଏମିତି ଖାଇବାକୁ ନ ଦିଅ ।'

**ଏହି ଅବସ୍ଥାରେ ଗୋପାଳର ମା'ଙ୍କର ଦକ୍ଷିଣେଶ୍ୱରକୁ ଠାକୁରଙ୍କ ନିକଟକୁ ଆସିବା :**

''ତା'ପରେ ଆଉ ସେଦିନ ଜପ କିଏ କରେ ? ଗୋପାଳ ଆସି କୋଳରେ ବସୁଛି, ମାଳା ଛଡ଼ାଇନେଉଛି, କାନ୍ଧଉପରେ ଚଢୁଛି, ଘରସାରା ଘୂରିବୁଲୁଛି ! ଯେମିତି ସକାଳ ହେଲା, ପାଗଳୀ ପରି ଦୌଡ଼ି ଦକ୍ଷିଣେଶ୍ୱର ଚାଲିଆସିଲି । ଗୋପାଳ ମଧ୍ୟ କୋଳକୁ ଉଠି କାନ୍ଧ ଉପରେ ମୁଣ୍ଡ ରଖି ମୋ ସହିତ ଆସିଲା ! ମୁଁ ମଧ୍ୟ ଗୋଟିଏ ହାତରେ ଗୋପାଳର ଅଣ୍ଟାକୁ ଧରି ଅନ୍ୟ ହାତ ତା ପିଠିରେ ପକାଇ ଛାତିରେ ଧରି ପୂରା ରାସ୍ତା ଚାଲିଲି । ମୁଁ ସ୍ପଷ୍ଟ ଦେଖୁଥାଏ ଗୋପାଳର ନାଲି ଟୁକଟୁକ ପାଦ ଦୁଇଟି ମୋର ଛାତି ଉପରେ ଝୁଲୁଛି !''

ଅଘୋରମଣି ଯେଉଁଦିନ ସେହିରୂପରେ ସହସା ନିଜ ଉପାସ୍ୟ ଦେବତାଙ୍କର ଦର୍ଶନଲାଭ କରି ଭାବରେ ଓ ପ୍ରେମରେ ଉନ୍ମତ୍ତ ହୋଇ କାମାରହାଟି ବଗିଚାରୁ ଚାଲି ଚାଲି ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ପ୍ରତ୍ୟୁଷରେ ଆସି ଉପସ୍ଥିତ ହେଲେ  ସେଦିନ ଆମର ଜଣେ ପରିଚିତା ସ୍ତ୍ରୀ-ଭକ୍ତ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ତାଙ୍କ ନିକଟରୁ ଆମେ ଯାହା ଶୁଣିଥିଲୁ ସେ କଥା ଆମେ ଏବେ ପାଠକଙ୍କୁ କହିବୁ । ସେ କହିଥିଲେ :

''ମୁଁ ସେତେବେଳେ ଠାକୁରଙ୍କ ଘରକୁ ଝାଡୁ ମାରି ସଫା କରୁଛି—ସମୟ ସାତଟା କି ସାଢ଼େ ସାତଟା ହେବ । ଏହି ସମୟରେ ଶୁଣିବାକୁ ପାଇଲି, ବାହାରେ କିଏ 'ଗୋପାଳ', 'ଗୋପାଳ' ବୋଲି ଡାକି ଡାକି ଠାକୁରଙ୍କ ଘରଆଡ଼କୁ ଆସୁଛି । କଣ୍ଠସ୍ୱର ପରିଚିତ, କ୍ରମେ ନିକଟତର ହେବାକୁ ଲାଗିଲା । ଦେଖିଲି ଗୋପାଳର ମା' !—ପାଗଳୀପରି, ଚକ୍ଷୁଦ୍ୱୟ ଯେପରି କପାଳରେ ଉଠିଛି, ଲୁଗା କାନି ଭୂଇଁରେ ଘୁସୁରୁଛି, କେଉଁଥିରେ ଯେପରି ଭ୍ରୂକ୍ଷେପ ନାହିଁ ! —ଏପରି ଭାବରେ ଠାକୁରଙ୍କ ଘରେ ପୂର୍ବ ଦିଗର ଦ୍ୱାର ଦେଇ ପଶୁଛି । ଠାକୁର ସେତେବେଳେ ଘର ଭିତରେ ଛୋଟ ତକ୍ତପୋଷ ଉପରେ ବସିଥିଲେ ।

''ଗୋପାଳର ମା'କୁ ଏପରି ଅବସ୍ଥାରେ ଦେଖି ମୁଁ ଏକାବେଳକେ ଅବାକ୍ ହେଲି—ଏହି ସମୟରେ ତାକୁ ଦେଖି ଠାକୁରଙ୍କର ମଧ୍ୟ ଭାବ ହୋଇଗଲା । ଇତିମଧ୍ୟରେ ଗୋପାଳର ମା' ଆସି ଠାକୁରଙ୍କ ନିକଟରେ ବସିପଡ଼ିଲା ଏବଂ ଠାକୁର ମଧ୍ୟ ପୁତ୍ର ପରି ତା'ର କୋଳରେ ଯାଇ ବସିଲେ ! ଗୋପାଳ ମା'ର ଦୁଇ ଚକ୍ଷୁରୁ ସେତେବେଳେ ଅବିରତ ଅଶ୍ରୁଧାର ବହୁଛି; ପୁଣି ଯେଉଁ କ୍ଷୀର ସର ଲହୁଣୀ ଆଣିଥିଲା ସେସବୁ ଠାକୁରଙ୍କ ପାଟିରେ ଦେଇ ଖୁଆଇବାକୁ ଲାଗିଲା । ମୁଁ ତ' ଦେଖି ଅବାକ୍ ନିଶ୍ଚଳ ହୋଇଗଲି, କାରଣ ଏହା ପୂର୍ବରୁ ଠାକୁରଙ୍କୁ ଭାବାବସ୍ଥାରେ କୌଣସି ସ୍ତ୍ରୀଲୋକଙ୍କୁ ସ୍ପର୍ଶ କରିବାର ଦେଖି ନାହିଁ; କିନ୍ତୁ ଶୁଣିଥିଲି ଠାକୁରଙ୍କ ଗୁରୁ ବ୍ରାହ୍ମଣୀଙ୍କର ବେଳେ ବେଳେ ଯଶୋଦାଙ୍କର ଭାବ ହେଉଥିଲା ଏବଂ ଠାକୁରେ ସେତେବେଳେ ଗୋପାଳ ଭାବରେ ତାଙ୍କ କୋଳରେ ଯାଇ ବସୁଥିଲେ । ସେ ଯାହା ହେଉ, ଗୋପାଳର ମା'ଙ୍କର ଏହି ଅବସ୍ଥା ଓ ଠାକୁରଙ୍କର ଭାବ ଦେଖି ମୁଁ ତ ପୂରା ସ୍ତମ୍ଭିତ ! କେତେ ସମୟ ପରେ ଠାକୁରଙ୍କର ସେଭାବ କମିଲା ଏବଂ ସେ ଯାଇ ନିଜର ଖଟ ଉପରେ ବସିଲେ । ଗୋପାଳ ମା'ର କିନ୍ତୁ ସେଭାବ କମୁ ନାହିଁ ! ଆନନ୍ଦରେ ଉଠିପଡ଼ି 'ବ୍ରହ୍ମା ନାଚେ, ବିଷ୍ଣୁ ନାଚେ' ଇତ୍ୟାଦି ପାଗଳୀପରି କହି ଘରସାରା ନାଚିନାଚି ବୁଲିଲା ! ଠାକୁର ଏହା ଦେଖି ହସି ହସି ମୋତେ କହିଲେ—'ଦେଖ, ଦେଖ, ଆନନ୍ଦରେ ପରିପୂର୍ଣ୍ଣ ହୋଇଯାଇଛି । ତା'ର ମନ ଏବେ ଗୋପାଳ–ଲୋକକୁ ଚାଲିଯାଇଛି !' ବାସ୍ତବିକ୍ ଗୋପାଳର ମା'ଙ୍କର ଯେତେବେଳେ ଭାବାବେଶର ଏପରି ଦର୍ଶନ ହେଉଥିଲା; ସେ ଯେପରି ଅନ୍ୟ ଜଣେ ମଣିଷ ହୋଇଯାଉଥିଲେ ! ଆଉ ଦିନେ ଖାଇବା ସମୟରେ ଭାବରେ ପ୍ରେମରେ ଗଦ୍‌ଗଦ୍ ହୋଇ ଆମ ସମସ୍ତଙ୍କୁ ଗୋପାଳ ବୋଲି ନିଜ ହାତରେ ଭାତ ଖୁଆଇ ଦେଇଥିଲେ । ମୁଁ ଆମ ସମାନ ଜାତିରେ ଝିଅ ବିଭା ଦେଇ ନାହିଁ ବୋଲି ମୋତେ ମନେ ମନେ ଟିକିଏ ଘୃଣାଭାବ କରୁଥିଲେ—ସେଦିନ ସେଥିପାଇଁ ଗୋପାଳର ମା' କେତେ ଅନୁନୟ–ବିନୟ କରି କହିଲେ, 'ମୁଁ କ'ଣ ଆଗେ ଜାଣିଥିଲି ଯେ ତୋ ଭିତରେ ଏତେ ଭକ୍ତି–ବିଶ୍ୱାସ ଅଛି ! ଯେଉଁ ଗୋପାଳ ଭାବ ସମୟରେ ପ୍ରାୟ କାହାକୁ ଛୁଇଁପାରେ ନାହିଁ, ସେ ଆଜି ଭାବାବେଶରେ ତୋ'ପିଠି ଉପରେ ଯାଇବସିଲା ! ତୁ କ'ଣ ସାମାନ୍ୟ' !'' ବାସ୍ତବିକ୍ ସେଦିନ ଠାକୁର ଗୋପାଳ ମା'କୁ ଦେଖି ସହସା ଗୋପାଳ ଭାବାବିଷ୍ଟ ହୋଇ ପ୍ରଥମେ ଏହି ସ୍ତ୍ରୀ–ଭକ୍ତଟିର ପିଠିରେ ଏବଂ ପରେ ଗୋପାଳର ମା'ଙ୍କ କ୍ରୋଡ଼ରେ କିଛି ସମୟ ପାଇଁ ଉପବେଶନ କରିଥିଲେ ।

ଅଘୋରମଣି ଏପରି ଭାବରେ ଦକ୍ଷିଣେଶ୍ୱରରେ ଉପସ୍ଥିତ ହୋଇ ଭାବର ଆଧିକ୍ୟ ଯୋଗୁଁ ଅଶ୍ରୁଜଳ ଝରାଇ ଶ୍ରୀରାମକୃଷ୍ଣଦେବଙ୍କୁ କେତେ କ'ଣ କହିଗଲେ ! ''ହେଇତ ଗୋପାଳ ମୋ କୋଳରେ'', ''ହେଇ ସେ ତୁମ (ଶ୍ରୀରାମକୃଷ୍ଣଦେବଙ୍କ)

ଭିତରେ ପଶିଗଲା'', ''ପୁଣି ସେ ବାହାରି ଆସିଲା,'' ''ଆସ ବାବା, ଦୁଃଖିନୀ ମା' ପାଖକୁ ଆସ''—ଇତ୍ୟାଦି କହୁ କହୁ ଦେଖିଲେ ଚପଳ ଗୋପାଳ କେତେବେଳେ ଠାକୁରଙ୍କ ଶରୀରରେ ମିଶିଗଲା, ପୁଣି କେତେବେଳେ ଉଜ୍ଜ୍ୱଳ ବାଳକ-ମୂର୍ତ୍ତିରେ ତାଙ୍କ ନିକଟକୁ ଆସି ଅଦୃଷ୍ଟପୂର୍ବ ବାଲ୍ୟଲୀଳା-ତରଙ୍ଗ ଉଠାଇ ତାଙ୍କୁ ବାହ୍ୟ ଜଗତର କଠୋର ଶାସନ, ନିୟମ ପ୍ରଭୃତି ସବୁକିଛି ଭୁଲାଇ ଦେଇ ସମ୍ପୂର୍ଣ୍ଣ ଆତ୍ମହରା କରିଦେଲା ! ସେହି ପ୍ରବଳ ଭାବ-ତରଙ୍ଗରେ ପଡ଼ି କିଏ ବା ନିଜକୁ ସମ୍ଭାଳିପାରିବ !

### ଠାକୁରଙ୍କର ସେହି ଅବସ୍ଥା ଦୁର୍ଲ୍ଲଭ ବୋଲି ପ୍ରଶଂସା କରିବା ଏବଂ ତାଙ୍କୁ ଶାନ୍ତ କରିବା :

ଆଜିଠାରୁ ଅଘୋରମଣି ବାସ୍ତବରେ ହିଁ 'ଗୋପାଳର ମା' ହେଲେ ଏବଂ ଠାକୁର ମଧ୍ୟ ତାଙ୍କୁ ଏହି ନାମରେ ଡାକିବାକୁ ଲାଗିଲେ । ଶ୍ରୀଶ୍ରୀରାମକୃଷ୍ଣଦେବ ଗୋପାଳର ମା'ଙ୍କର ସେହିପରି ଅପରୂପ ଅବସ୍ଥା ଦେଖି କେତେ ଆନନ୍ଦ ପ୍ରକାଶ କଲେ ଏବଂ ତାଙ୍କୁ ଶାନ୍ତ କରିବା ପାଇଁ ତାଙ୍କର ଛାତିରେ ହାତ ବୁଲାଇ ଦେଲେ ଏବଂ ଘରେ ଯାହା କିଛି ଭଲ ଭଲ ଖାଦ୍ୟ-ସାମଗ୍ରୀ ଥିଲା ସେସବୁ ଆଣି ତାଙ୍କୁ ଖୁଆଇଲେ । ଖାଉ ଖାଉ ମଧ୍ୟ ଭାବରେ ବ୍ରାହ୍ମଣୀ କହିବାକୁ ଲାଗିଲେ, ''ବାବା ଗୋପାଳ, ତୁମର ଦୁଃଖିନୀ ମା' ଏହି ଜନ୍ମରେ ବଡ଼ କଷ୍ଟରେ କାଳ କଟାଇଛି, ଅରଟରେ ସୂତାକାଟି ପଇତା କରି ବିକି ଦିନ କଟାଇଛି, ସେଥିପାଇଁ ବୋଧହୁଏ ଆଜି ଏତେ ଯତ୍ନ କରୁଛୁ !'' ଇତ୍ୟାଦି ।

ସାରା ଦିନ ପାଖରେ ରଖି ସ୍ନାନାହାର କରାଇ କିଞ୍ଚିତ୍ ଶାନ୍ତ କରି ସନ୍ଧ୍ୟାପୂର୍ବରୁ ଶ୍ରୀରାମକୃଷ୍ଣଦେବ ଗୋପାଳର ମା'ଙ୍କୁ କାମାରହାଟି ପଠାଇଦେଲେ । ଫେରିବା ସମୟରେ ଭାବଦୃଷ୍ଟ ବାଳକ ଗୋପାଳ ମଧ୍ୟ ପୂର୍ବପରି ବ୍ରାହ୍ମଣୀଙ୍କ କୋଳରେ ଚଢ଼ି ଚାଲିଲା । ଘରକୁ ଫେରି ଗୋପାଳର ମା' ପୂର୍ବ ଅଭ୍ୟାସବଶତଃ ଜପ କରିବାକୁ ବସିଲେ, କିନ୍ତୁ ସେଦିନ କ'ଣ ଆଉ ଜପ ହୋଇପାରୁଛି ? ଯାହାଙ୍କ ପାଇଁ ଜପ, ଏବଂ ଯାହାଙ୍କୁ ଏତେ କାଳ ଧରି ଭାବିବା—ସେ ଯେ ସମ୍ମୁଖରେ ନାନା ରଙ୍ଗ, ଢଙ୍ଗ, ନାନା ଅଳି କରୁଅଛି ! ଶେଷରେ ବ୍ରାହ୍ମଣୀ ଉଠି ଗୋପାଳକୁ ପାଖରେ ନେଇ ତକ୍ତପୋଷ ଉପରେ ବିଛଣାରେ ଶୋଇଲେ ! ବ୍ରାହ୍ମଣୀ ସାଧାରଣ ଭାବରେ ଶୟନ କରୁଥିଲେ—ମୁଣ୍ଡତଳେ ଦେବାକୁ ତାଙ୍କର ତକିଆଟିଏ ମଧ୍ୟ ନ ଥିଲା । ଏବେ କିନ୍ତୁ ଶୋଇ ମଧ୍ୟ ନିଷ୍କୃତି ନାହିଁ—ଗୋପାଳ ବିନା ତକିଆରେ ଶୋଇବାକୁ କୁଣ୍ଠକୁଣ୍ଠ କରୁଛି ! ଅଗତ୍ୟା ବ୍ରାହ୍ମଣୀ ନିଜର ବାମ ବାହୁ ଉପରେ ଗୋପାଳର ମୁଣ୍ଡକୁ ରଖି କୋଳରେ ଶୁଆଇ କେତେ କ'ଣ କହି ଭୁଲାଇବାକୁ ଲାଗିଲେ ଯେ, ''ବାବା, ଆଜି ଏହିପରି ଶୋଇଯାଆ; ରାତି ପାହିଲେ କାଲି କଲିକତା ଯାଇ

ଭୂତୋକୁ (ଗୋବିନ୍ଦବାବୁଙ୍କର ବଡ଼ଝିଅକୁ) କହି ତୋ ପାଇଁ କଅଁଳିଆ ତକିଆ ବନେଇଦେବି'', ଇତ୍ୟାଦି ।

ଆଗରୁ କୁହାହୋଇଛି ଗୋପାଳର ମା' ନିଜ ହାତରେ ରାନ୍ଧି ଗୋପାଳକୁ ଖୁଆଇ ପରେ ନିଜେ ଖାଉଥିଲେ । ପୂର୍ବୋକ୍ତ ଘଟଣାର ପରଦିନ, ସକାଳୁ ସକାଳୁ ରନ୍ଧନ କରି ସାକ୍ଷାତ୍ ଗୋପାଳକୁ ଖାଇବାକୁ ଦେବା ପାଇଁ ବଗିଚାରୁ ଶୁଖିଲା କାଠ ଗୋଟାଇବାକୁ ଗଲେ । ଦେଖିଲେ, ଗୋପାଳ ମଧ୍ୟ ତାଙ୍କ ସହିତ ମିଶି କାଠ ଗୋଟାଉଛି ଏବଂ ରୋଷେଇଘରେ ଆଣି ଜମା କରୁଛି ! ଏପରି ମା'–ପୁଅ ମିଶି କାଠ ଗୋଟାଇବା ହେଲା—ତା'ପରେ ରୋଷେଇ କରିବାକୁ ବସିଲେ । ରାନ୍ଧିବା ସମୟରେ ମଧ୍ୟ ଚଗଲା ଗୋପାଳ କେତେବେଳେ ପାଖରେ ବସି, କେତେବେଳେ ପିଠି ଉପରେ ଚଢ଼ି ସବୁ ଦେଖିବାକୁ ଲାଗିଲା, କେତେ କଥା କହିବାକୁ ଲାଗିଲା, କେତେ କ'ଣ ଅଳି କରିବାକୁ ଲାଗିଲା ! ବ୍ରାହ୍ମଣୀ କେତେବେଳେ ମିଠା କଥା କହି ତାକୁ ଶାନ୍ତ କରିବାକୁ ଲାଗିଲେ, କେତେବେଳେ ଗାଳି କରିବାକୁ ଲାଗିଲେ ।

**ଠାକୁରଙ୍କର ଗୋପାଳର ମା'ଙ୍କୁ କହିବା—'ତୁମର ସବୁ ହୋଇଛି' :**

ପୂର୍ବୋକ୍ତ ଘଟଣାର କିଛିଦିନ ପରେ ଗୋପାଳର ମା' ଦିନେ ଦକ୍ଷିଣେଶ୍ୱର ଆସିଥିଲେ । ଠାକୁରଙ୍କ ସହିତ ସାକ୍ଷାତ୍ କରି ନହବତରେ—ଯେଉଁଠାରେ ଶ୍ରୀଶ୍ରୀମାତାଠାକୁରାଣୀ ରହୁଥିଲେ—ଯାଇ ଜପ କରିବାକୁ ବସିଲେ । ନିୟମିତ ଜପ ସାରି ପ୍ରଣାମ କରି ଉଠି ଦେଖିଲେ ଠାକୁର ପଞ୍ଚବଟୀଆଡୁ ଆସି ସେଠାରେ ପହଞ୍ଚିଲେ । ଠାକୁର ଗୋପାଳର ମା'କୁ ଦେଖିପାରି କହିଲେ, ''ତୁମେ ଏବେ ମଧ୍ୟ ଏତେ ଜପ କାହିଁକି କରୁଛ ? ତୁମର (ଦର୍ଶନାଦି)ତ ଖୁବ୍ ହୋଇଛି !''

ଗୋପାଳର ମା'—ଜପ କରିବି ନାହିଁ ? ମୋର କ'ଣ ସବୁ ହୋଇଛି ?

ଠାକୁର—ତୁମର ସବୁ ହୋଇଛି ।

ଗୋପାଳର ମା'—ସବୁ ହୋଇଛି ?

ଠାକୁର—ହଁ, ସବୁ ହୋଇଛି ।

ଗୋପାଳର ମା'—ତୁମେ କ'ଣ କହୁଛ, ସବୁ ହୋଇଛି ?

ଠାକୁର—ହଁ, ତୁମର ନିଜ ପାଇଁ ଜପ, ତପ ସବୁ କରା ହୋଇଯାଇଛି, ତେବେ (ନିଜ ଶରୀର ଦେଖାଇ) ଏହି ଶରୀରଟା ଭଲ ରହିବ ବୋଲି ଯଦି ଇଚ୍ଛାହୁଏ ତେବେ ଜପ କରିପାର ।

ଗୋପାଳର ମା'—ତେବେ ଏବେଠାରୁ ଯାହା କିଛି କରିବି ସବୁ ତୁମର, ତୁମର, ତୁମର ।

ଏହି ଘଟଣା ଉଲ୍ଲେଖ କରି ଗୋପାଳର ମା' ଆମକୁ ବେଳେ ବେଳେ କହୁଥିଲେ, ''ଗୋପାଳ ମୁହଁରୁ ସେଦିନ ଏକଥା ଶୁଣି ଥଳି ମାଳୀ ସବୁ ଗଙ୍ଗାରେ ପକାଇଦେଇଥିଲି । ଗୋପାଳର କଲ୍ୟାଣ ପାଇଁ କରରେ ଜପ କରୁଥିଲି, ତା'ପରେ ଅନେକ ଦିନ ପରେ ପୁଣି ଗୋଟିଏ ମାଳା ନେଲି । ଭାବିଲି—କିଛି ଗୋଟେ ତ କରିବାକୁ ହେବ ? ଚବିଶ ଘଣ୍ଟା କ'ଣ କରିବି ? ସେଥିପାଇଁ ଗୋପାଳର କଲ୍ୟାଣ ପାଇଁ ମାଳା ଗଡ଼ାଉଛି !''

ଏହି ଘଟଣା ପରଠାରୁ ଗୋପାଳର ମା'ଙ୍କର ଜପତପ ସବୁ ଶେଷ ହେଲା । ଦକ୍ଷିଣେଶ୍ୱରକୁ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କ ନିକଟକୁ ଯିବା ଆସିବା ବଢ଼ିଗଲା । ଏହାପୂର୍ବରୁ ତାଙ୍କର ଯେଉଁ ଖାଇବା-ପିଇବା ଇତ୍ୟାଦିର ଆଚାରନିଷ୍ଠା ଥିଲା ସେସମସ୍ତ ମଧ ଏହି ମହାଭାବତରଙ୍ଗରେ ପଡ଼ି ଦିନକୁ ଦିନ କେଉଁଆଡ଼େ ଭାସିଯିବାକୁ ଲାଗିଲା । ଗୋପାଳ ତାଙ୍କର ମନ-ପ୍ରାଣ ସମ୍ପୂର୍ଣ୍ଣ ଭାବେ ଅଧିକାର କରି କେତେ ରୂପରେ ତାହାଙ୍କୁ ଯେ ଶିକ୍ଷା ଦେବାକୁ ଲାଗିଲେ ତାର କଳନା ନ ଥିଲା । ତେଣୁ ନିଷ୍ଠା କିପରି ରଖିବେ ? —ଗୋପାଳ ଯେତେବେଳେ ସେତେବେଳେ ଖାଇବାକୁ ମାଗେ, ଏବଂ ନିଜେ ଖାଉ ଖାଉ ମା'ର ମୁହଁରେ ଗୁଞ୍ଜି ଦିଏ ! ତାହା କ'ଣ ପକାଇ ହେବ ? ଆଉ ପକାଇ ଦେଲେ ସେ ଯେ କାନ୍ଦେ ! ବ୍ରାହ୍ମଣୀ ଏହି ଅପୂର୍ବ ଭାବ ତରଙ୍ଗରେ ପଡ଼ି ବୁଝିଥିଲେ ଯେ, ତାହା ଶ୍ରୀଶ୍ରୀରାମକୃଷ୍ଣଦେବଙ୍କର ହିଁ ଖେଳ ଏବଂ ଶ୍ରୀଶ୍ରୀରାମକୃଷ୍ଣଦେବ ହିଁ ତାଙ୍କର 'ନବୀନ-ନୀରଦଶ୍ୟାମ, ନୀଳେନ୍ଦୀବରଲୋଚନ' ଗୋପାଳରୂପୀ ଶ୍ରୀକୃଷ୍ଣ ! ଫଳରେ ତାଙ୍କୁ ରାନ୍ଧି ଖାଇବାକୁ ଦେବା, ତାଙ୍କର ପ୍ରସାଦ ଖାଇବା ଇତ୍ୟାଦିରେ ଆଉ ଦ୍ୱିଧା ରହିଲା ନାହିଁ ।

ଏହିପରି ଅନବରତ ଦୁଇ ମାସ କାଳ କାମାରହାଟିର ବ୍ରାହ୍ମଣୀ ଗୋପାଳ ରୂପୀ ଶ୍ରୀକୃଷ୍ଣଙ୍କୁ ଦିନରାତି କାଖରେ, ପିଠିରେ ଧରି ଏକାସଙ୍ଗରେ ବାସ କରିଥିଲେ ! ଭାବରାଜ୍ୟରେ ଏପରି ଦୀର୍ଘ କାଳ ବାସ କରି 'ଚିନ୍ମୟ ନାମ, ଚିନ୍ମୟ ଧାମ, ଚିନ୍ମୟ ଶ୍ୟାମ'ର ପ୍ରତ୍ୟକ୍ଷ ଉପଲବ୍ଧି ଓ ଦର୍ଶନ ମହାଭାଗ୍ୟବାନଙ୍କ ପକ୍ଷରେ ହିଁ ସମ୍ଭବ । ଏକେ ତ' ଶ୍ରୀଭଗବାନଙ୍କଠାରେ ବାତ୍ସଲ୍ୟଭାବ ଜଗତରେ ଦୁର୍ଲ୍ଲଭ— ଶ୍ରୀଭଗବାନଙ୍କ ଐଶ୍ୱର୍ଯ୍ୟଜ୍ଞାନର ଲେଶମାତ୍ର ମନରେ ଥିଲେ ଏହାର ଉଦୟ ଅସମ୍ଭବ—ତାପରେ ସେହି ଭାବ ଐକାନ୍ତିକ ନିଷ୍ଠା ସହାୟରେ ଘନୀଭୂତ ହୋଇ ଶ୍ରୀଭଗବାନଙ୍କର ଏପରି ଦର୍ଶନଲାଭ କରିବା ଯେ ଆହୁରି କେତେ ଦୁର୍ଲ୍ଲଭ ତାହା ସହଜରେ ଅନୁମେୟ । ପ୍ରବାଦ ଅଛି, 'କଲୌ ଜାଗର୍ତି ଗୋପାଲଃ', 'କଲୌ

ଜାଗର୍ତି କାଳିକା' — ତେଣୁ ବୋଧହୁଏ ଅଦ୍ୟାପି ଶ୍ରୀଭଗବାନଙ୍କ ଏହି ଦୁଇ ଭାବର ଏହି ପ୍ରକାର ଜ୍ୱଳନ୍ତ ଉପଲବ୍ଧି ବେଳେ ବେଳେ ଦୃଷ୍ଟିଗୋଚର ହୁଏ ।

ଶ୍ରୀଶ୍ରୀରାମକୃଷ୍ଣଦେବ ଗୋପାଳର ମା'ଙ୍କୁ କହିଥିଲେ, ''ତୁମର ଖୁବ୍ ହୋଇଛି । କଳିରେ ଏପରି ଅବସ୍ଥା ବରାବର ରହିଲେ, ଶରୀର ବେଶୀଦିନ ରହେ ନାହିଁ ।'' ବୋଧ ହୁଏ ଠାକୁରଙ୍କ ଇଚ୍ଛା ଥିଲା, ବାତ୍ସଲ୍ୟ ଭାବର ଉଜ୍ଜ୍ୱଳ ଦୃଷ୍ଟାନ୍ତସ୍ୱରୂପ ଏହି ଦରିଦ୍ର ବ୍ରାହ୍ମଣୀଙ୍କର ଭାବପୂତ ଶରୀର ଲୋକହିତାୟ ଆଉ କିଛି ଦିନ ଏସଂସାରରେ ରହୁ । ପୂର୍ବୋକ୍ତ ଦୁଇମାସ ପରେ ଗୋପାଳର ମା'ଙ୍କର ଦର୍ଶନାଦି ପୂର୍ବାପେକ୍ଷା ଅନେକାଂଶରେ କମିଗଲା । ତେବେ ଟିକିଏ ସ୍ଥିର ହୋଇ ବସି ଗୋପାଳର ଚିନ୍ତା କଲେ ହିଁ ପୂର୍ବପରି ଦର୍ଶନ ପାଇବାକୁ ଲାଗିଲେ ।

# ସପ୍ତମ ଅଧ୍ୟାୟ

## ଭକ୍ତଙ୍କ ସଙ୍ଗରେ ଶ୍ରୀରାମକୃଷ୍ଣ—୧୮୮୫ ମସିହା
## ପୁନର୍ଯାତ୍ରା ଓ ଗୋପାଳର ମା'ଙ୍କ ଶେଷକଥା

ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ୟେ ଜନାଃ ପର୍ଯ୍ୟୁପାସତେ ।
ତେଷାଂ ନିତ୍ୟାଭିୟୁକ୍ତାନାଂ ୟୋଗକ୍ଷେମଂ ବହାମ୍ୟହମ୍ ॥

—ଶ୍ରୀମଦ୍‌ଭଗବତ୍‌ଗୀତା, ୯/୨୨

### ବଳରାମ ବସୁଙ୍କ ଘରେ ପୁନର୍ଯାତ୍ରା ଉପଲକ୍ଷେ ଉତ୍ସବ :

'କାମାରହାଟି ବ୍ରାହ୍ମଣୀ'ଙ୍କର ଗୋପାଳରୂପୀ ଶ୍ରୀଭଗବାନଙ୍କର ଦର୍ଶନର କିଛି କାଳ ପରେ ରଥଯାତ୍ରା ସମୟରେ ଠାକୁର କଲିକତାକୁ ଶୁଭାଗମନ କରିଛନ୍ତି । ବାଗବଜାରର ବଳରାମ ବସୁଙ୍କ ଘରେ ଭକ୍ତମାନଙ୍କର ଭିଡ଼ ଲାଗିଛି । ବଳରାମବାବୁ ମଧ୍ୟ ଆନନ୍ଦରେ ଉଲ୍ଲସିତ ହୋଇ ସମସ୍ତଙ୍କୁ ସମୁଚିତ ଆଦର-ଅଭ୍ୟର୍ଥନା କରୁଛନ୍ତି । ବସୁ ମହାଶୟ ପୁରୁଷାନୁକ୍ରମରେ ବୁନିଆଦି ଭକ୍ତ—ତାଙ୍କ ଭକ୍ତି ଏକ ପୁରୁଷର ନୁହେଁ । ଠାକୁରଙ୍କ କୃପା ମଧ୍ୟ ତାଙ୍କର ଓ ତାଙ୍କ ପରିବାରବର୍ଗଙ୍କ ଉପରେ ଅସୀମ ଥିଲା ।

### ଠାକୁରଙ୍କର ଶ୍ରୀଚୈତନ୍ୟଦେବଙ୍କର ସଂକୀର୍ତ୍ତନ ଦେଖିବାର ଇଚ୍ଛା ଏବଂ ଏହା ଦେଖିବା; ବଳରାମ ବସୁଙ୍କୁ ଏହା ଭିତରେ ଦର୍ଶନ କରିବା :

ଠାକୁରଙ୍କ ଶ୍ରୀମୁଖରୁ ଶୁଣିଅଛୁ ଯେ, ଥରେ ଠାକୁରଙ୍କର ଶ୍ରୀଶ୍ରୀଚୈତନ୍ୟଦେବଙ୍କର ସଂକୀର୍ତ୍ତନ କରି ନଗର ପ୍ରଦକ୍ଷିଣ କରିବା ଦୃଶ୍ୟ ଦେଖିବାର ଇଚ୍ଛା ହେବାରୁ ଭାବାବସ୍ଥାରେ ତାହାର ଦର୍ଶନ ହେଲା । ସେ ଏକ ଅଦ୍ଭୁତ ଦର୍ଶନ—ଅସୀମ ଜନତା, ହରିନାମରେ ଉଦ୍ଦାମ ଉନ୍ମତ୍ତ ହେଉଥିଲେ ! ସେହି ଉନ୍ମାଦ-ତରଙ୍ଗ ଭିତରେ ଉନ୍ମାଦ ଶ୍ରୀଚୈତନ୍ୟଙ୍କର ଉନ୍ମାଦନୀ ଆକର୍ଷଣ ! ସେହି ଅପାର ଜନସମୂହ ଧିରେ ଧିରେ ଦକ୍ଷିଣେଶ୍ୱର ଉଦ୍ୟାନର ପଞ୍ଚବଟୀ ଆଡୁ ଠାକୁରଙ୍କ ଘର ସମ୍ମୁଖ ଦେଇ ଆଗକୁ ଚାଲିଯିବାକୁ ଲାଗିଲେ । ଠାକୁର କହୁଥିଲେ, ତାହା ଭିତରେ ଯେଉଁ କେତେଜଣଙ୍କ ମୁହଁ ଠାକୁରଙ୍କ ସ୍ମୃତିରେ ଚିର-ଅଙ୍କିତ ହୋଇ ରହିଥିଲା ବଳରାମବାବୁଙ୍କର ଭକ୍ତିଜ୍ୟୋତିଃପୂର୍ଣ୍ଣ ସ୍ନିଗ୍ଧୋଜ୍ଜ୍ୱଳ ମୁହଁଟି ସେମାନଙ୍କ ଭିତରୁ ଅନ୍ୟତମ । ବଳରାମବାବୁ ଯେଉଁଦିନ ପ୍ରଥମେ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଉପସ୍ଥିତ ହୋଇଥିଲେ, ସେଦିନ ଠାକୁର ତାଙ୍କୁ ଦେଖିବା ମାତ୍ରେ ଚିହ୍ନିଥିଲେ—ଏବ୍ୟକ୍ତି ସେହି ଲୋକ ।

### ବଳରାମଙ୍କର ବିଭିନ୍ନ ସ୍ଥାନରେ ଦେବସେବା ଓ ଶୁଦ୍ଧ ଅନ୍ନ ବିଷୟ :

ବସୁ ମହାଶୟଙ୍କର ଭଦ୍ରକ ନିକଟସ୍ଥ କୋଠାରରେ (ଓଡ଼ିଶା ଅନ୍ତର୍ଗତ) ଜମିଦାରୀ ଓ ଶ୍ୟାମଚାନ୍ଦବିଗ୍ରହଙ୍କର ସେବା ରହିଛି । ଶ୍ରୀବୃନ୍ଦାବନରେ କୁଞ୍ଜ ଓ ଶ୍ୟାମସୁନ୍ଦରଙ୍କର ସେବା ଅଛି ଏବଂ କଲିକତା ଘରେ ମଧ୍ୟ ଶ୍ରୀଜଗନ୍ନାଥଦେବଙ୍କର ବିଗ୍ରହ[୧] ଓ ସେବା ଆଦି ରହିଛି । ଠାକୁର କହୁଥିଲେ, ''ବଳରାମଙ୍କର ଅନ୍ନ ଶୁଦ୍ଧ— ସେମାନଙ୍କର ପୁରୁଷାନୁକ୍ରମରେ ଦେବ-ସେବା ଓ ଅତିଥି-ଫକୀରଙ୍କ ସେବା ଅଛି । ତାଙ୍କର ପିତା ସବୁକିଛି ତ୍ୟାଗ କରି ଶ୍ରୀବୃନ୍ଦାବନରେ ବସି ହରିନାମ କରୁଛନ୍ତି । ମୁଁ ତାଙ୍କର ଅନ୍ନ ଖୁବ୍ ଖାଇପାରେ, ମୁହଁରେ ଦେଲେ ଯେପରି ଆପେ ଆପେ ଗଳିଯାଏ ।'' ବାସ୍ତବିକ୍ ଠାକୁରଙ୍କର ଏତେ ଭକ୍ତଙ୍କ ଭିତରେ ବଳରାମବାବୁଙ୍କର ଅନ୍ନ ହିଁ ତାଙ୍କୁ ବିଶେଷ ପ୍ରୀତିର ସହିତ ଭୋଜନ କରିବାର ଦେଖିଛୁ । କଲିକତାକୁ ଯେଉଁ ଦିନ ଠାକୁର ସକାଳୁ ଆସିଥାଆନ୍ତି, ସେଦିନ ମଧ୍ୟାହ୍ନ ଭୋଜନ ବଳରାମଙ୍କ ଘରେ ହିଁ ହେଉଥିଲା ! ଠାକୁର ବ୍ରାହ୍ମଣ ଭକ୍ତଗଣଙ୍କ ଘର ବ୍ୟତୀତ ଅନ୍ୟ କାହାଘରେ କେବେ ଅନ୍ନ ଗ୍ରହଣ କରିଛନ୍ତି କି ନାହିଁ ସନ୍ଦେହ— ତେବେ ଅବଶ୍ୟ ନାରାୟଣ ବା ବିଗ୍ରହାଦିଙ୍କର ପ୍ରସାଦ ହେଲେ ଅଲଗା କଥା ଥିଲା ।

### ଠାକୁରଙ୍କ ଚାରିଜଣ ରସଦ୍‌ଦାର ଓ ବଳରାମବାବୁଙ୍କର ସେବା ଅଧିକାର :

ଅଲୌକିକ ମହାପୁରୁଷମାନଙ୍କର ଅତି ସାମାନ୍ୟ ନିତ୍ୟନୈମିତ୍ତିକ ଚେଷ୍ଟାଦିରେ ମଧ୍ୟ କିପରି ଏକ ଅଲୌକିକତ୍ୱ, ନୂତନତ୍ୱ ଥାଏ । ଶ୍ରୀରାମକୃଷ୍ଣଦେବଙ୍କ ସହିତ ଯେଉଁମାନେ ଦିନଟିଏ ମଧ୍ୟ ସଙ୍ଗ କରିଛନ୍ତି, ସେମାନେ ହିଁ କେବଳ ଏହି କଥାର ମର୍ମ ବିଶେଷ ରୂପରେ ବୁଝିପାରିବେ । ବଳରାମବାବୁଙ୍କର ଅନ୍ନ ଗ୍ରହଣ କରିପାରିବା ବିଷୟରେ ଟିକିଏ ଚିନ୍ତା କରି ଦେଖିଲେ ଏହା ହିଁ ଉପଲବ୍ଧି ହେବ । ସାଧନକାଳରେ ଠାକୁର ଥରେ ଜଗଦମ୍ବାଙ୍କ ନିକଟରେ ପ୍ରାର୍ଥନା କରି କହିଥିଲେ, ''ମା, ମୋତେ ଶୁଷ୍କ ସାଧୁ କରିବୁ ନାହିଁ—ସରସ କରି ରଖିବୁ''; ଜଗଦମ୍ବା ମଧ୍ୟ ତାଙ୍କୁ ଦେଖାଇ ଦେଲେ, ତାଙ୍କର ଖାଦ୍ୟାଦି ଯୋଗାଇବା ନିମିତ୍ତ ଚାରିଜଣ ରସଦ୍‌ଦାର ପ୍ରେରିତ ହୋଇଛନ୍ତି । ଠାକୁର କହୁଥିଲେ—ସେହି ଚାରିଜଣଙ୍କ ଭିତରେ ରାଣୀରାସମଣିଙ୍କର ଜ୍ୱାଇଁ ମଥୁରାନାଥ ପ୍ରଥମ ଓ ଶମ୍ଭୁ ମଲ୍ଲିକ ଦ୍ୱିତୀୟ ଥିଲେ । ସିମଳାର ସୁରେନ୍ଦ୍ରନାଥ ମିତ୍ରଙ୍କୁ (ଯାହାକୁ ଠାକୁର 'ସୁରେନ୍ଦର' ଏବଂ କେତେବେଳେ 'ସୁରେଶ' ବୋଲି ଡାକୁଥିଲେ) ଠାକୁର 'ଅର୍ଦ୍ଧେକ ରସଦ୍‌ଦାର' କହୁଥିଲେ, ଅର୍ଥାତ୍ ସୁରେନ୍ଦ୍ର ସମ୍ପୂର୍ଣ୍ଣ ରସଦ୍‌ଦାର ନୁହଁନ୍ତି । ମଥୁରବାବୁ ଓ ଶମ୍ଭୁ ମଲ୍ଲିକଙ୍କର ସେବା ଦେଖିବା ଆମ ଭାଗ୍ୟରେ ହୋଇ ନ ଥିଲା—କାରଣ, ଆମେ

---

୧. ଏହି ବିଗ୍ରହ ଏବେ କୋଠାରରେ ଅଛନ୍ତି ।

ସେମାନଙ୍କ ପରଲୋକ ପ୍ରାପ୍ତିର ଅନେକ ପରେ ଠାକୁରଙ୍କ ପାଖକୁ ଆସିଥିଲୁ । ତେବେ ଠାକୁରଙ୍କ ପାଖରୁ ଶୁଣିଛୁ ଯେ, ସେ ଏକ ଅଦ୍ଭୁତ ବିଷୟ ଥିଲା । ବଳରାମବାବୁଙ୍କୁ ଠାକୁର ତାଙ୍କର ରସଦ୍‌ଦାରମାନଙ୍କ ମଧ୍ୟରେ ଅନ୍ୟତମ କହିଥିବା ଆମର ମନେହୁଏ ନାହିଁ; ମାତ୍ର ତାଙ୍କର ଯେପରି ସେବା ଅଧିକାର ଦେଖିଛୁ ତାହା ଆମ ନିକଟରେ ଅଦ୍ଭୁତ ବୋଲି ବୋଧ ହୁଏ ଏବଂ ଏହା ମଥୁରବାବୁ ଭିନ୍ନ ଅନ୍ୟ ରସଦ୍‌ଦାରମାନଙ୍କଠାରୁ ସେବାଧିକାର ଅପେକ୍ଷା କୌଣସି ପ୍ରକାରରେ କମ୍ ନ ଥିଲା । ସେସବୁ କଥା ଅନ୍ୟ କୌଣସିଠାରେ କହିବାକୁ ଚେଷ୍ଟା କରିବୁ । ବର୍ତ୍ତମାନ ଏତିକି କହିବୁ ଯେ, ବଳରାମବାବୁ ଯେଉଁ ଦିନଠାରୁ ଦକ୍ଷିଣେଶ୍ୱର ଯାଇଛନ୍ତି, ସେହିଦିନଠାରୁ ଠାକୁରଙ୍କର ମହାପ୍ରୟାଣ ଦିନ ପର୍ଯ୍ୟନ୍ତ ଠାକୁରଙ୍କର ଯାହା କିଛି ଆହାର୍ଯ୍ୟର ପ୍ରୟୋଜନ ହେଉଥିଲା,—ଚାଉଳ, ମିଶ୍ରି, ସୁଜି, ସାଗୁ, ବାର୍ଲି, ଭାର୍ମିସେଲି, ଟେପିଓକା ଇତ୍ୟାଦି ପ୍ରାୟ ସେ ଯୋଗାଉଥିଲେ ଏବଂ ସୁରେନ୍ଦ୍ର ବା 'ସୁରେଶ ମିତ୍ତିର' (ମିତ୍ର) ଦକ୍ଷିଣେଶ୍ୱରରେ ଠାକୁରଙ୍କୁ ଦର୍ଶନ କରିବାର ଅଳ୍ପଦିନ ପରେ ଠାକୁରଙ୍କର ସେବା ପାଇଁ ଯେଉଁସମସ୍ତ ଭକ୍ତ ସେଠାରେ ରାତ୍ରିଯାପନ କରୁଥିଲେ, ସେମାନଙ୍କ ପାଇଁ ବିଛଣାପତ୍ର ଓ ଡାଲି–ରୁଟିର ବନ୍ଦୋବସ୍ତ କରିଦେଇଥିଲେ ।

କେଉଁ ନିଗୂଢ଼ ସମ୍ବନ୍ଧରେ ଏସମସ୍ତ ବ୍ୟକ୍ତି ଠାକୁରଙ୍କ ସହିତ ଅତି ଘନିଷ୍ଠ ଭାବରେ ଜଡ଼ିତ ହୋଇଥିଲେ ସେକଥା କିଏ କହିପାରିବ ? କେଉଁ କାରଣରୁ ଏମାନେ ଏତେ ଉଚ୍ଚ ଅଧିକାର ପ୍ରାପ୍ତ ହୋଇଥିଲେ, ସେକଥା ମଧ୍ୟ କିଏ କହିବ ? ଆମେ ଏତିକି ମାତ୍ର ବୁଝିଅଛୁ ଯେ, ଏମାନେ ମହାଭାଗ୍ୟବାନ—ଜଗଦମ୍ବାଙ୍କର ଚିହ୍ନିତ ବ୍ୟକ୍ତି ! ନତୁବା ଲୋକୋତ୍ତର ମହାପୁରୁଷ ଶ୍ରୀରାମକୃଷ୍ଣଦେବଙ୍କର ବର୍ତ୍ତମାନ ଲୀଳାରେ ଏମାନେ ବିଶେଷ ସହାୟକ ହେବାପାଇ ଜନ୍ମଲାଭ କରି ନ ଥାନ୍ତେ ! ଆହୁରି ମଧ୍ୟ ଏପରି କାରଣ କିଛି ନ ଥିଲେ ଶ୍ରୀରାମକୃଷ୍ଣଦେବଙ୍କର ଶୁଦ୍ଧ–ବୁଦ୍ଧ–ମୁକ୍ତ ମନରେ ଏମାନଙ୍କର ମୁହଁର ଛବି ଏପରି ଭାବରେ ଅଙ୍କିତ ରହି ନ ଥାନ୍ତା, ଯେଉଁଥିରେ ସେ (ଠାକୁର) ଦର୍ଶନ ମାତ୍ରେ ହିଁ ତାହା ବୁଝିପାରି କହିଥିଲେ, ''ଏମାନେ ଏଠାକାର, ଏହି ବିଶେଷ ଅଧିକାର ନେଇ ଆସିଛନ୍ତି !''

### ଠାକୁର 'ମୁଁ' ଓ 'ମୋର' ଶବ୍ଦ ପରିବର୍ତ୍ତେ ସବୁବେଳେ 'ଏଠାରେ', 'ଏଠାର' ବୋଲି କହୁଥିଲେ । ଏହାର କାରଣ :

'ମୁଁ, ମୋର' ନ କହି ଠାକୁର 'ଏଠାକାର' କହୁଥିଲେ, କାରଣ ଶ୍ରୀରାମକୃଷ୍ଣଦେବଙ୍କର ଅପାପବିଦ୍ଧ ମନରେ ଅହଂ–ବୁଦ୍ଧି ଟିକିଏ ମଧ୍ୟ ସ୍ଥାନ ପାଉ ନ ଥିଲା । ତେଣୁ 'ମୁଁ', 'ମୋର' ଏହି କଥାଗୁଡ଼ିକ ପ୍ରୟୋଗ କରିବା ତାଙ୍କ ପକ୍ଷରେ ଅତ୍ୟନ୍ତ କଠିନ ଥିଲା ! କଠିନ ଥିଲା ବୋଲି କାହିଁକି କହୁଛି ? ସେ ସେହି ଦୁଇଟି ଶବ୍ଦ ଆଦୌ କହିପାରୁ ନ ଥିଲେ । ଯେତେବେଳେ ନିହାତି କହିବା

ଦରକାର ହୁଏ, ସେତେବେଳେ 'ଶ୍ରୀଶ୍ରୀଜଗଦମ୍ବାଙ୍କର ଦାସ ବା ସନ୍ତାନ ମୁଁ'— ଏହି ଅର୍ଥରେ କହୁଥିଲେ, ଏବଂ ତାହା ମଧ୍ୟ ପୂର୍ବରୁ ଏହିଭାବ ଠିକ୍ ଠିକ୍ ମନରେ ଆସିଲେ ତେବେ ହିଁ କହିପାରୁଥିଲେ, ସେଥିପାଇଁ କଥୋପକଥନ ସମୟରେ କୌଣସି ଜାଗାରେ, 'ମୋର' କହିବାକୁ ହେଲେ ଠାକୁର ନିଜ ଶରୀର ଦେଖାଇ 'ଏଠାକାର' କଥାଟି ପ୍ରାୟ କହୁଥିଲେ—ଭକ୍ତମାନେ ଏଥିରୁ ବୁଝି ନେଉଥିଲେ; ଯଥା, 'ଏଠାକାର ଲୋକ', 'ଏଠାକାର ଭାବ' ନୁହେଁ ଇତ୍ୟାଦି କହିଲେ ଆମେ ବୁଝୁଥିଲୁ, ସେ 'ତାଙ୍କର ଲୋକ ନୁହଁନ୍ତି', 'ତାଙ୍କର ଭାବ ନୁହେଁ', ବୋଲି କହୁଛନ୍ତି ।

## ରସଦ୍ଦାରମାନେ କିଏ କିପରି ଭାବରେ କେତେଦିନ ଠାକୁରଙ୍କର ସେବା କରିଥିଲେ :

ଏବେ ସେ କଥା ଥାଉ—ଆମେ ବର୍ତ୍ତମାନ ରସଦ୍ଦାରମାନଙ୍କ କଥା ହିଁ କହିବୁ । ପ୍ରଥମ ରସଦ୍ଦାର ଶ୍ରୀଯୁକ୍ତ ମଥୁରାନାଥ ଶ୍ରୀରାମକୃଷ୍ଣଦେବଙ୍କର ଦକ୍ଷିଣେଶ୍ୱରରେ ପ୍ରଥମ ଶୁଭାଗମନଠାରୁ ସାଧନା ଅବସ୍ଥା ଶେଷ ହେବା ପର୍ଯ୍ୟନ୍ତ ଚଉଦବର୍ଷ ତାଙ୍କ ସେବାରେ ନିଯୁକ୍ତ ଥିଲେ । ଦ୍ୱିତୀୟ ଦେଢ଼ଜଣଙ୍କ ମଧ୍ୟରେ ଶମ୍ଭୁବାବୁ ମଥୁରବାବୁଙ୍କର ଶରୀରତ୍ୟାଗର କିଛି ଦିନ ପରଠାରୁ କେଶବବାବୁପ୍ରମୁଖ କଲିକତାର ଭକ୍ତମାନଙ୍କର ଠାକୁରଙ୍କ ନିକଟକୁ ଯିବାର କିଛିଦିନ ପୂର୍ବ ପର୍ଯ୍ୟନ୍ତ ବଞ୍ଚି ରହି ଠାକୁରଙ୍କ ସେବା କରିଥିଲେ । ଅଧା ରସଦ୍ଦାର ସୁରେଶବାବୁ ଶ୍ରୀରାମକୃଷ୍ଣଦେବଙ୍କର ଅଦର୍ଶନର ଛଅସାତ ବର୍ଷ ପୂର୍ବରୁ ଚାରିପାଞ୍ଚବର୍ଷ ପର ପର୍ଯ୍ୟନ୍ତ ଜୀବିତ ରହି ତାଙ୍କର ଓ ତଦୀୟ ସନ୍ନ୍ୟାସୀ ଭକ୍ତମାନଙ୍କର ସେବା ଓ ତତ୍ତ୍ୱାବଧାନରେ ନିଯୁକ୍ତ ଥିଲେ । ୧୮୮୬ ମସିହାର ଆଶ୍ୱିନ ମାସରେ ବରାହନଗରଠାରେ ମୁନ୍ସୀବାବୁମାନଙ୍କର ପୁରାତନ ଭଗ୍ନ ଜୀର୍ଣ୍ଣ ଗୃହରେ ପ୍ରତିଷ୍ଠିତ ବରାହନଗର ମଠ—ଯାହା ଏବେ ବେଲୁଡ଼ ମଠରେ ପରିଣତ ହୋଇଛି—ଏହି ସୁରେଶବାବୁଙ୍କର ଆଗ୍ରହ ଏବଂ ବ୍ୟୟରେ ହିଁ ପ୍ରତିଷ୍ଠିତ ହୋଇଥିଲା । ହିସାବରେ ବାକି ଆଉ ଦେଢ଼ଜଣ ରସଦ୍ଦାର—ସେମାନେ କେଉଁଠି ? ଆମର ପ୍ରସଙ୍ଗୋକ୍ତ ବଳରାମବାବୁ ଏବଂ ଯେଉଁ ଆମେରିକା-ନିବାସିନୀ ମହିଳା (Mrs Sara W.C. Bull) ସ୍ୱାମୀ ବିବେକାନନ୍ଦଙ୍କୁ ବେଲୁଡ଼ ମଠ-ସ୍ଥାପନା କରିବାରେ ବିଶେଷ ସହାୟତା କରିଥିଲେ—ସେମାନେ କ'ଣ ଏହି ଦେଢ଼ଜଣ ? ଶ୍ରୀରାମକୃଷ୍ଣଦେବ ଏବଂ ସ୍ୱାମୀ ବିବେକାନନ୍ଦଙ୍କ ଅଦର୍ଶନରେ ଏହି ବିଷୟ ଏବେ ଆଉ କିଏ ମୀମାଂସା କରିପାରିବ ?

* * *

### 'ବଳରାମଙ୍କର ପରିବାରର ସମସ୍ତେ ଗୋଟିଏ ସୁରରେ ବନ୍ଧା' :

ବଳରାମବାବୁ ଦକ୍ଷିଣେଶ୍ୱର ଯିବା ପରଠାରୁ ପ୍ରତିବର୍ଷ ରଥସମୟରେ ଠାକୁରଙ୍କୁ ନିଜ ଘରକୁ ନେଇଆସୁଥିଲେ । ବାଗବଜାରସ୍ଥିତ ରାମକାନ୍ତ ବସୁ ଷ୍ଟ୍ରୀଟ୍‌ରେ ତାଙ୍କର ନିବାସସ୍ଥାନ ଥିଲା; ତାଙ୍କର ଭାଇ କଟକର ପ୍ରସିଦ୍ଧ ଓକିଲ ରାୟ ହରିବଲ୍ଲଭ ବସୁ ବାହାଦୁରଙ୍କ ଘର ଥିଲା । ବଳରାମବାବୁ ତାଙ୍କର ଭାଇଙ୍କ ଘରେ ହିଁ ରହୁଥିଲେ—ଘର ନମ୍ବର ୫୭ । ଏହି ୫୭ ନମ୍ବର ରାମକାନ୍ତ ବସୁ ଷ୍ଟ୍ରୀଟ୍ ଘରକୁ ଠାକୁରଙ୍କର ଯେ କେତେଥର ଶୁଭାଗମନ ହୋଇଛି ତାହା କହିହେବ ନାହିଁ । କେତେ ଯେ ଲୋକ ଏଠାରେ ଠାକୁରଙ୍କୁ ଦର୍ଶନ କରି ଧନ୍ୟ ହୋଇଛନ୍ତି, ତାର ସୀମା ନାହିଁ । ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଠାକୁର ବେଳେ ବେଳେ ରହସ୍ୟ କରି 'ମା କାଳୀର କିଲ୍ଲା' ବୋଲି କହୁଥିଲେ, କଲିକତାର ବସୁପଡ଼ାର ଏହି ଘରକୁ ତାଙ୍କର ଦ୍ୱିତୀୟ କିଲ୍ଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଠାକୁର କହୁଥିଲେ, ''ବଳରାମଙ୍କର ପରିବାରର ସମସ୍ତେ ଗୋଟିଏ ସୁରରେ ବନ୍ଧା''—କର୍ତ୍ତା ଗୃହିଣୀଙ୍କଠାରୁ ଘରର ଛୋଟ ଛୋଟ ପିଲା ପର୍ଯ୍ୟନ୍ତ ସମସ୍ତେ ହିଁ ଠାକୁରଙ୍କର ଭକ୍ତ; ଭଗବାନଙ୍କର ନାମ ନ କରି ଜଳଗ୍ରହଣ କରନ୍ତି ନାହିଁ ଏବଂ ପୂଜା, ପାଠ, ସାଧୁସେବା, ସତ୍ ବିଷୟରେ ଦାନପ୍ରଭୃତିରେ ସମସ୍ତଙ୍କର ସମାନ ଅନୁରାଗ ଅଛି । ପ୍ରାୟ ଅନେକ ପରିବାରରେ ହିଁ ଦେଖାଯାଏ, ଯଦି ଜଣେ କି ଦୁଇଜଣ ଧାର୍ମିକ ତ' ଅନ୍ୟ ସମସ୍ତେ ଅନ୍ୟ ପ୍ରକାରର, ବିଜାତୀୟ; କିନ୍ତୁ ଏପରିବାରରେ ସେପରି ନାହିଁ । ସମସ୍ତେ ହିଁ ଏକ ଜାତୀୟ ଲୋକ ! ପୃଥିବୀରେ ନିଃସ୍ୱାର୍ଥ ଧର୍ମାନୁରାଗୀ ପରିବାର ବୋଧହୁଏ ଅଳ୍ପ ହିଁ ମିଳନ୍ତି—ତା'ପରେ ପରିବାରସ୍ଥ ସମସ୍ତଙ୍କର ଗୋଟିଏ ବିଷୟରେ ଏପରି ଅନୁରାଗ ରହିବା ଏବଂ ପରସ୍ପର ପରସ୍ପରକୁ ସେହି ବିଷୟରେ ସାହାଯ୍ୟ କରିବା, ଏପରି ଖୁବ୍ କମ୍ ଦେଖାଯାଏ । ତେଣୁ ଏହି ପରିବାରବର୍ଗ ହିଁ ଯେ ଠାକୁରଙ୍କର ଦ୍ୱିତୀୟ କିଲ୍ଲାସ୍ୱରୂପ ହେବ ଏବଂ ଏଠାକୁ ଆସି ଯେ ଠାକୁର ବିଶେଷ ଆନନ୍ଦ ପାଇବେ ଏହା ବିଚିତ୍ର ନୁହେଁ ।

### ବଳରାମବାବୁଙ୍କ ଘରେ ଆଡ଼ମ୍ବରଶୂନ୍ୟ ଭକ୍ତିପୂର୍ଣ୍ଣ ରଥଯାତ୍ରା–ଅନୁଷ୍ଠାନ :

ଆଗରୁ କୁହାଯାଇଅଛି, ଏହି ଘରେ ଶ୍ରୀଶ୍ରୀଜଗନ୍ନାଥଦେବଙ୍କର ସେବା ଥିଲା, ତେଣୁ ରଥଯାତ୍ରା ସମୟରେ ଏଠାରେ ରଥଟଣା ହେଉଥିଲା; କିନ୍ତୁ ସବୁକିଛି ଭକ୍ତିର ବିଷୟ ଥିଲା ବାହ୍ୟ ଆଡ଼ମ୍ବର ଆଦୌ ନ ଥିଲା । ଘର ସଜାଇବା, ବାଦ୍ୟଯନ୍ତ୍ର, ଏଣୁ ତେଣୁ ଲୋକମାନଙ୍କର ଭିଡ଼, ଗୋଳମାଳ, ଧାଁଧପଡ଼—ଏ ସମସ୍ତ କିଛି ନ ଥିଲା । ଗୋଟିଏ ଛୋଟ ରଥ, ବାହାର ଘରର ଦୋତାଲାର ବାରଣ୍ଡାରେ ଚାରିପଟେ ବୁଲି ବୁଲି ଟଣା ହୁଏ—ଦଳେ କୀର୍ତ୍ତନୀୟା ଆସୁଥିଲେ,

ସେମାନେ କୀର୍ତ୍ତନ ଗାଉଥିଲେ, ଠାକୁର ଏବଂ ତାଙ୍କର ଭକ୍ତଗଣ ସେହି କୀର୍ତ୍ତନରେ ଯୋଗଦାନ କରୁଥିଲେ । କିନ୍ତୁ ସେହି ଆନନ୍ଦ, ଭଗବଦ୍ ଭକ୍ତି, ମତୁଆଲା ଭାବ, ସେହି ଠାକୁରଙ୍କର ମଧୁର ନୃତ୍ୟ—ତାହା ଆଉ ଅନ୍ୟ କେଉଁଠି ମିଳିବ ? ସାତ୍ତ୍ୱିକ ପରିବାରର ବିଶୁଦ୍ଧ ଭକ୍ତିରେ ପ୍ରସନ୍ନ ହୋଇ ସାକ୍ଷାତ୍ ଜଗନ୍ନାଥ ମହାପ୍ରଭୁ ରଥର ବିଗ୍ରହରେ ଏବଂ ଶ୍ରୀରାମକୃଷ୍ଣଙ୍କ ଶରୀରରେ ଆବିର୍ଭୂତ—ସେହି ଅପୂର୍ବ ଦର୍ଶନ ଆଉ କେଉଁଠି ମିଳିବ ? ସେହି ବିଶୁଦ୍ଧ ପ୍ରେମସ୍ରୋତରେ ପଡ଼ିଲେ ପାଷଣ୍ଡର ହୃଦୟ ମଧ୍ୟ ଦ୍ରବୀଭୂତ ହୋଇ ନୟନାଶ୍ରୁ ରୂପରେ ପ୍ରବାହିତ ହେଉଥିଲା—ଭକ୍ତର କଥା କ'ଣ କହିବା ! ଏପରି କେତେ ଘଣ୍ଟା କୀର୍ତ୍ତନ ପରେ ଶ୍ରୀଜଗନ୍ନାଥଦେବଙ୍କୁ ଭୋଗ ଲଗାଯାଏ ଏବଂ ଠାକୁରଙ୍କର ସେବା ପରେ ଭକ୍ତଗଣ ପ୍ରସାଦ ପାଉଥିଲେ । ତା'ପରେ ଅନେକ ରାତିରେ ଏହି ଆନନ୍ଦର ହାଟ ଭାଙ୍ଗୁଥିଲା ଏବଂ ଭକ୍ତମାନେ ଦୁଇ-ଚାରି ଜଣଙ୍କ ବ୍ୟତୀତ ଯିଏ ଯାହାର ଗୃହକୁ ଚାଲିଯାଉଥିଲେ । ଲେଖକଙ୍କର ଏହି ଆନନ୍ଦ-ସମ୍ଭୋଗ ଜୀବନରେ ଥରେ ମାତ୍ର ହୋଇଥିଲା । ସେହିଥର ହିଁ ଗୋପାଳର ମା'ଙ୍କୁ ଏହି ଘରକୁ ଠାକୁରଙ୍କ କଥାରେ ଅଣା ହୋଇଥିଲା । ୧୮୮୫ ମସିହା ବାହୁଡ଼ା କଥା ହିଁ ଆମେ ଏଠାରେ କହୁଅଛୁ । ଠାକୁର ଏହି ବର୍ଷ ସେହି ଦିନ ଏଠାକୁ ଆସି ବଳରାମବାବୁଙ୍କ ଘରେ ଦୁଇଦିନ ଦୁଇ ରାତି ରହି ତୃତୀୟ ଦିନ ସକାଳ ଆଠଟା ବା ନଅଟା ସମୟରେ ଦକ୍ଷିଣେଶ୍ୱରକୁ ନୌକାରେ ପ୍ରତ୍ୟାଗମନ କରିଥିଲେ ।

*          *

ଆଜି ଠାକୁର ଏହି ଗୃହକୁ ପ୍ରତ୍ୟୁଷରୁ ଆଗମନ କରିଛନ୍ତି । ବାହାରେ କିଛି ସମୟ ବସିବାପରେ ଠାକୁରଙ୍କୁ ଘର ଭିତରକୁ ଜଳଯୋଗ କରିବା ପାଇଁ ନିଆଗଲା । ବାହାରେ ଅନେକ ଜଣ ପୁରୁଷ ଭକ୍ତଙ୍କ ସମାଗମ ହୋଇଅଛି, ଭିତରେ ନିକଟବର୍ତ୍ତୀ ଘରମାନଙ୍କରୁ ସ୍ତ୍ରୀଭକ୍ତମାନେ ମଧ୍ୟ ଆସିଛନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ବଳରାମବାବୁଙ୍କର ଆତ୍ମୀୟା ବା ପରିଚିତା ଏବଂ ତାଙ୍କ ଘରକୁ ଯେତେବେଳେ ଠାକୁର ଆସିଥାଆନ୍ତି ବା ସେ ନିଜେ ଯେତେବେଳେ ଶ୍ରୀରାମକୃଷ୍ଣଦେବଙ୍କୁ ଦକ୍ଷିଣେଶ୍ୱରକୁ ଦର୍ଶନ କରିବାକୁ ଯାଉଥିଲେ, ସେବେ ହିଁ ସେମାନଙ୍କୁ ଖବର ପଠାଇ ଘରକୁ ଅଣାଉଥିଲେ ବା ସାଙ୍ଗରେ ନେଇଯାଉଥିଲେ । ଭାବିନୀ ଠାକୁରାଣୀ, ଅସୀମର ମା', ଗନୁର ମା' ଓ ତାଙ୍କ ମା'—ଏହିପରି କାହାର ମା, କାହାର ପିଉସୀ, କାହାର ନଣନ୍ଦ, କାହାର ପଡ଼ୋଶୀ ପ୍ରଭୃତି ଅନେକଜଣ ଭକ୍ତିମତୀ ସ୍ତ୍ରୀଲୋକଙ୍କର ଆଜି ସମାଗମ ହୋଇଅଛି ।

## ସ୍ତ୍ରୀଭକ୍ତମାନଙ୍କ ସହିତ ଠାକୁରଙ୍କର ଅପୂର୍ବ ସମ୍ବନ୍ଧ :

ଏହି ସମସ୍ତ ସତୀ ସ୍ୱାଧ୍ୱୀ ଭକ୍ତିମତୀ ସ୍ତ୍ରୀଲୋକମାନଙ୍କ ସହିତ କାମଗନ୍ଧହୀନ ଠାକୁରଙ୍କର ଯେପରି କି ଏକ ମଧୁର ସମ୍ବନ୍ଧ ଥିଲା ତାହା କହି ବୁଝାଇ ହେବ ନାହିଁ । ଏମାନଙ୍କ ମଧ୍ୟରୁ ଅନେକେ ଠାକୁରଙ୍କୁ ତାଙ୍କର ଇଷ୍ଟଦେବତା ବୋଲି ସେବେଠାରୁ ହିଁ ମାନୁଥିଲେ । ସମସ୍ତଙ୍କର ଠାକୁରଙ୍କ ଉପରେ ଏହିପରି ବିଶ୍ୱାସ ଥିଲା । ଆହୁରି ମଧ୍ୟ କୌଣସି କୌଣସି ଭାଗ୍ୟବତୀ ଗୋପାଳର ମା'ଙ୍କ ପରି ଦର୍ଶନାଦି ଦ୍ୱାରା ସାକ୍ଷାତ୍ ପ୍ରତ୍ୟକ୍ଷ କରିଥିଲେ । ସୁତରାଂ ଠାକୁରଙ୍କୁ ଏମାନେ ନିଜଠାରୁ ମଧ୍ୟ ନିଜର ବୋଲି ଜାଣୁଥିଲେ ଏବଂ ତାଙ୍କ ନିକଟରେ କୌଣସି ପ୍ରକାର ଡର-ଭୟ ବା ସଙ୍କୋଚ ଅନୁଭବ କରୁ ନ ଥିଲେ । ଘରେ କୌଣସି ଭଲ ଖାଇବା ଜିନିଷ ତିଆରି କଲେ ସେମାନେ ତାହା ପତି-ପୁତ୍ରଙ୍କୁ ପ୍ରଥମେ ନ ଦେଇ ଠାକୁରଙ୍କ ପାଇଁ ଆଗେ ପଠାଉଥିଲେ କିମ୍ବା ସ୍ୱୟଂ ନେଇଯାଉଥିଲେ । ଠାକୁର ଦକ୍ଷିଣେଶ୍ୱରରେ ଥିବାବେଳେ ଏସମସ୍ତ ଭଦ୍ରମହିଳାମାନେ କେତେଦିନ ଯେ କଲିକତାରୁ ଦକ୍ଷିଣେଶ୍ୱରକୁ ଚାଲି ଚାଲି ଯାତାୟାତ କରିଛନ୍ତି ତାହା କହି ହେବ ନାହିଁ । କେଉଁଦିନ ସନ୍ଧ୍ୟାପରେ, କେଉଁଦିନ ରାତି ଦଶଟା, ପୁଣି କେଉଁଦିନ ଉତ୍ସବ-କୀର୍ତ୍ତନ ଇତ୍ୟାଦି ସରିଲା ପରେ ଦକ୍ଷିଣେଶ୍ୱରରୁ ଫେରିବା ବେଳକୁ ରାତି ଦୁଇପ୍ରହରରୁ ମଧ୍ୟ ଅଧିକ ହୋଇଯାଇଛି ! ଏମାନଙ୍କ ମଧ୍ୟରୁ କାହାକୁ ଠାକୁର ପିଲାଙ୍କପରି ନିଜର ପେଟ ଖରାପ ପ୍ରଭୃତି ରୋଗର ଔଷଧ ପଚାରୁଥିଲେ; କେହି ତାଙ୍କୁ ସେପରି ପଚାରିବାର ଦେଖି ହସିଲେ, ଠାକୁର କହୁଥିଲେ, ''ତୁ କ'ଣ ଜାଣିଛୁ ? ସେ କେତେ ବଡ଼ ଡାକ୍ତରର ସ୍ତ୍ରୀ—ସେ ଦୁଇଚାରିଟା ଔଷଧ ନିଶ୍ଚୟ ଜାଣେ ।'' କାହାର ଭାବପ୍ରେମ ଦେଖି କହୁଥିଲେ, ''କୃପାସିଦ୍ଧ ଗୋପୀ ।'' କାହାର ସୁନ୍ଦର ରନ୍ଧା ଖାଦ୍ୟ ଖାଇ କହୁଥିଲେ, ''ସେ ବୈକୁଣ୍ଠର ରାନ୍ଧୁଣୀ, ସୁକ୍ତୋ (ଏକ ପ୍ରକାର ବଙ୍ଗାଳୀ ସନ୍ତୁଳା ତରକାରୀ) ରାନ୍ଧିବାରେ ସିଦ୍ଧହସ୍ତ'' ଇତ୍ୟାଦି ।।

## ଠାକୁରଙ୍କ ସ୍ତ୍ରୀ-ଭକ୍ତମାନଙ୍କୁ ଗୋପାଳର ମା'ଙ୍କର ଦର୍ଶନର କଥା କହିବା ଓ ତାଙ୍କୁ ଡକାଇ ପଠାଇବା :

ଠାକୁର ଜଳଖିଆ ଖାଇବା ବେଳେ ଆଜି ଏହି ସମସ୍ତ ସ୍ତ୍ରୀ-ଭକ୍ତମାନଙ୍କୁ ଗୋପାଳର ମା'ଙ୍କ ସୌଭାଗ୍ୟର କଥା କହିବାକୁ ଲାଗିଲେ । କହିଲେ, ''ଆଗୋ, ସେ ଯେଉଁ କାମାରହାଟିରୁ ବ୍ରାହ୍ମଣୀ ଝିଅଟି ଆସେ, ଯାହାର ଗୋପାଳଭାବ— ତା'ର ସବୁ କେତେ କ'ଣ ଯେ ଦର୍ଶନ ହୋଇଛି; କ'ଣ କହିବି; ସେ କୁହେ, ଗୋପାଳ ତା'ପାଖରୁ ହାତ ପତାଇ ଖାଇବାକୁ ମାଗେ । ସେଦିନ କେତେ କ'ଣ ସେହିପରି ସବୁ ଭାବରେ ପ୍ରେମରେ ଦେଖି ଉନ୍ମାଦ ହୋଇ ଦକ୍ଷିଣେଶ୍ୱରରେ ପହଞ୍ଚିଥିଲା । ଖାଇବା ପିଇବା କରିବାରୁ ଟିକିଏ ଥଣ୍ଡା ହେଲା ! ରହିବାକୁ କହିଲି,

କିନ୍ତୁ ରହିଲା ନାହିଁ । ଯିବାବେଳେ ମଧ୍ୟ ସେହି ପରି ଉନ୍ମାଦ —ଲୁଗାପଟା ଖୋଲି ଭୂଇଁରେ ଲୋଟୁଛି, ହୋସ ନାହିଁ । ମୁଁ ଲୁଗାପଟା ସଜାଡ଼ି ଦେଇ ତା'ର ଛାତିରେ ମୁଣ୍ଡରେ ହାତ ବୁଲାଇଦେଲି ! ଖୁବ୍ ଭକ୍ତି ବିଶ୍ୱାସ—ବେଶ୍ ! ତାକୁ ଏଠାକୁ ଆଣିବାକୁ କାହାକୁ ପଠାଅ ନା ।''

ବଳରାମବାବୁଙ୍କ କାନରେ ଏକଥା ପଡ଼ିବା ମାତ୍ରେ ସେ ତତ୍କ୍ଷଣାତ୍ କାମାରହାଟିରୁ ଗୋପାଳର ମା'ଙ୍କୁ ଆଣିବାକୁ ଲୋକ ପଠାଇଲେ—କାରଣ, ଆସିବା ପାଇଁ ଯଥେଷ୍ଟ ସମୟ ଅଛି; ଠାକୁର ଆଜି ଓ କାଲି ତ ଏଠାରେ ହିଁ ରହିବେ ।

ଜଳଖିଆ ଶେଷ ହେଲେ ଠାକୁର ବାହାରେ ଆସି ବସିଲେ, ଏବଂ ଭକ୍ତମାନଙ୍କ ସହିତ ନାନା କଥାବାର୍ତ୍ତା କହିବାକୁ ଲାଗିଲେ ।

## ଅପରାହ୍ଣରେ ଠାକୁରଙ୍କର ହଠାତ୍ ଗୋପାଳ-ଭାବାବେଶ ଓ ଠିକ୍ ସେତିକିବେଳେ ଗୋପାଳର ମା'ଙ୍କର ଆଗମନ :

ଯଥାସମୟରେ ଠାକୁରଙ୍କ ମଧ୍ୟାହ୍ନ ଭୋଜନ ସରିବା ପରେ ଭକ୍ତମାନେ ମଧ୍ୟ ସମସ୍ତେ ପ୍ରସାଦ ପାଇଲେ । ସାମାନ୍ୟ ବିଶ୍ରାମ ପରେ ଠାକୁର ବାହାରେ ହଲ୍‌ଘରେ ବସି ଭକ୍ତମାନଙ୍କ ସହିତ ନାନା କଥା କହିବାକୁ ଲାଗିଲେ । ପ୍ରାୟ ସନ୍ଧ୍ୟା ହୋଇ ଆସୁଛି ଏହି ସମୟରେ ତାଙ୍କର ଭାବାବେଶ ହେଲା । ଆମେ ସମସ୍ତେ ବାଳଗୋପାଳଙ୍କର ଧାତୁ ନିର୍ମିତ ମୂର୍ତ୍ତି ଦେଖିଛୁ—ଦୁଇ ଜାନୁ ଓ ଗୋଟିଏ ହାତ ଭୂମିରେ ଗୁରୁଣ୍ଡିବା ପରି ରଖି ଅନ୍ୟ ହାତ ଉପରକୁ ଉଠାଇ ଊର୍ଦ୍ଧ୍ୱମୁଖରେ ଯେପରି କାହାର ମୁହଁକୁ ସାହ୍ଲାଦ-ସତୃଷ୍ଣ-ନୟନରେ ଚାହିଁ ରହିଛନ୍ତି ଓ କ'ଣ ମାଗୁଛନ୍ତି ! ଭାବାବେଶରେ ଠାକୁରଙ୍କର ଅଙ୍ଗପ୍ରତ୍ୟାଙ୍ଗାଦିର ଠିକ୍ ସେହିପରି ସଂସ୍ଥାନ ହୋଇଗଲା, କେବଳ ଚକ୍ଷୁ ଦୁଇଟି ଯେପରି ବାହାରର କିଛି ଦେଖୁ ନାହିଁ, ଏହିପରି ଭାବରେ ଅର୍ଦ୍ଧନିମୀଳିତ ଅବସ୍ଥାରେ ରହିଲା; ଠାକୁରଙ୍କର ଏହିପରି ଭାବାବସ୍ଥା ଆରମ୍ଭ ହେବାର ଟିକିଏ ପରେ ହିଁ ଗୋପାଳର ମା'ଙ୍କ ଗାଡ଼ି ଆସି ବଳରାମବାବୁଙ୍କ ଦୁଆରେ ଠିଆ ହେଲା । ଏବଂ ଗୋପାଳର ମା' ମଧ୍ୟ ଉପରକୁ ଆସି ଠାକୁରଙ୍କୁ ନିଜର ଇଷ୍ଟରୂପରେ ଦର୍ଶନ କଲେ ! ଉପସ୍ଥିତ ସମସ୍ତେ ଗୋପାଳର ମା'ଙ୍କର ଭକ୍ତି ଯୋଗୁଁ ହିଁ ଠାକୁରଙ୍କର ହଠାତ୍ ଏପରି ଗୋପାଳ-ଭାବାବେଶ ହୋଇଅଛି ଜାଣି ତାଙ୍କୁ ଅତ୍ୟନ୍ତ ଭାଗ୍ୟବତୀ ଜ୍ଞାନରେ ସମ୍ମାନ ଓ ବନ୍ଦନା କଲେ । ସମସ୍ତେ କହିବାକୁ ଲାଗିଲେ 'କି ଭକ୍ତି, ଏହାଙ୍କ ଭକ୍ତି ବଳରେ ହିଁ ଠାକୁର ସାକ୍ଷାତ୍ ଗୋପାଳ-ରୂପ ଧାରଣ କଲେ', ଇତ୍ୟାଦି । ଗୋପାଳର ମା କହିଲେ, ''ମୁଁ କିନ୍ତୁ ବାବୁ ଭାବରେ ଏପରି କାଠ ପରି ହେବା ଭଲ ପାଏ ନାହିଁ । ମୋ ଗୋପାଳ ହସିବ, ଖେଳିବ, ବୁଲିବ, ଦୌଡ଼ିବ, ଓ ମା', ଏକ'ଣ ! ପୂରା ଯେମିତି କାଠ ! ମୋର

ଏପରି ଗୋପାଳ ଦେଖିବା ଦରକାର ନାହିଁ !'' ବାସ୍ତବରେ ଭାବ ସମାଧିରେ ଠାକୁରଙ୍କର ଏପରି ବାହ୍ୟଜ୍ଞାନ-ହରାଇବା ପ୍ରଥମେ ଯେଉଁ ଦିନ ସେ ଦେଖିଲେ, ସେଦିନ ଭୟରେ କାତର ହୋଇ ଠାକୁରଙ୍କର ଶ୍ରୀଅଙ୍ଗ ଠେଲି ଠେଲି କହିଥିଲେ, ''ଓ ବାବା, ତୁମେ ଏପରି ହେଲ କାହିଁକି ?''—ତାହା କାମାରହାଟିକୁ ଠାକୁର ଯେଉଁଦିନ ପ୍ରଥମେ ଯାଇଥିଲେ ସେଦିନର ଘଟଣା ।

**ଠାକୁର ଭାବାବେଶରେ ଯେତେବେଳେ ଯାହା କରୁଥିଲେ ତାହା ହିଁ ସୁନ୍ଦର ଦେଖାଯାଉଥିଲା । ଏହାର କାରଣ :**

ଆମେ ଯେତେବେଳେ ଠାକୁରଙ୍କ ନିକଟକୁ ଯିବା ପାଇଁ ଆରମ୍ଭ କଲୁ ଠାକୁରଙ୍କ ବୟସ ସେତେବେଳେ ଅଣଚାଶ ପାଖାପାଖି—ଅଣଚାଶ ହେବାକୁ ବୋଧହୁଏ ପାଞ୍ଚ ଛଅମାସ ବାକି ଅଛି; ଗୋପାଳ ମା' ମଧ୍ୟ ଏହି ସମୟରେ ହିଁ ଯାଉଥିଲେ । ଠାକୁରଙ୍କ ନିକଟକୁ ଯିବା ପୂର୍ବରୁ ମନେ ହେଉଥିଲା ଛୋଟ ଛୁଆ ନାଚିବା, ଅଙ୍ଗଭଙ୍ଗୀ କରିବା, ଏସବୁ ଲୋକଙ୍କୁ ଭଲ ଲାଗେ, କିନ୍ତୁ ଯଦି ଜଣେ ବୁଢ଼ା ମଣିଷ କିମ୍ବା ଯୱାନ ଟୋକା ଯଦି ସେପରି କରେ, ତା'ହେଲେ ଲୋକଙ୍କର ବିରକ୍ତିକର ତଥା ହାସ୍ୟୋଦ୍ଦୀପକ ହିଁ ହୁଏ । ସ୍ୱାମୀ ବିବେକାନନ୍ଦ କହୁଥିଲେ, 'ଗଣ୍ଡାର ଉଦ୍ଦଣ୍ଡ ନାଚ କ'ଣ କାହାକୁ ଭଲ ଲାଗେ ?' କିନ୍ତୁ ଠାକୁରଙ୍କ ପାଖକୁ ଆସି ଦେଖିଲୁ ସବୁ ଓଲଟା କଥା । ପ୍ରୌଢ଼ବୟସ୍କ ହେଲେ ମଧ୍ୟ ଠାକୁର ନାଚନ୍ତି, ଗାଆନ୍ତି, କେତେ ଭାବଭଙ୍ଗୀ ଦେଖାନ୍ତି—କିନ୍ତୁ ତାଙ୍କର ଏସବୁ କେତେ ମଧୁର ଲାଗେ ! ଗିରିଶବାବୁ କହୁଥିଲେ, 'ଜଣେ ବୁଢ଼ା ଲୋକ ନାଚିଲେ ଯେ ଏତେ ଭଲ ଦେଖାଯିବ, ଆମେ ଏକଥା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲୁ !' ବାସ୍ତବିକ ତାଙ୍କର ଏକଥା କହିବାର ଯଥାର୍ଥତା ଥିଲା । ଆଜି ବଳରାମବାବୁଙ୍କ ଘରେ ଏହି ଯେ ତାଙ୍କର ଗୋପାଳ-ଭାବାବେଶରେ ଅଙ୍ଗ-ପ୍ରତ୍ୟଙ୍ଗର ସଂସ୍ଥାନ ବାଳଗୋପାଳଙ୍କ ପରି ହେଲା, ତାହା ମଧ୍ୟ କେତେ ସୁନ୍ଦର ଥିଲା ! କାହିଁକି ଯେ ଏପରି ସୁନ୍ଦର ବୋଧ ହେଉଥିଲା, ତାହା ସେତେବେଳେ ବୁଝୁ ନ ଥିଲୁ—କେବଳ ସୁନ୍ଦର ଏହା ହିଁ ଅନୁଭବ କରୁଥିଲୁ । ଏବେ ବୁଝୁଛୁ ଯେ, ଯେଉଁ ଭାବ ଯେତେବେଳେ ତାଙ୍କ ଭିତରେ ଆସୁଥିଲା ସେତେବେଳେ ତାହା ସମ୍ପୂର୍ଣ୍ଣ ଭାବରେ ଆସୁଥିଲା, ତାଙ୍କ ଭିତରେ ଟିକିଏ ମଧ୍ୟ ଅନ୍ୟ କୌଣସି ଭାବ ରହୁ ନ ଥିଲା—ଅଳ୍ପ ଟିକିଏ ମଧ୍ୟ 'ଭାବର ଘରେ ଚୋରି' ବା ଲୋକ-ଦେଖାଣିଆ ଭାବ ରହୁ ନ ଥିଲା । ସେହି ଭାବରେ ସେ ସେତେବେଳେ ଏକାନ୍ତ ଭାବରେ ଅନୁପ୍ରାଣିତ, ତନ୍ମୟ ବା (ସେ ନିଜେ ଯେପରି ରହସ୍ୟ କରି କହୁଥିଲେ) ଡାଇଲୁଟ୍ (Dilute) ହୋଇଯାଉଥିଲେ; ତେଣୁ ସେତେବେଳେ ସେ ବୃଦ୍ଧ ହୋଇ ବାଳକର ଅଭିନୟ କରୁଛନ୍ତି ବା ପୁରୁଷ ହୋଇ ସ୍ତ୍ରୀର ଅଭିନୟ କରୁଛନ୍ତି—ଏକଥା ଲୋକଙ୍କ ମନରେ ଉଦୟ ହୋଇପାରୁ ନ ଥିଲା ! ଅଭ୍ୟନ୍ତରର ପ୍ରବଳ ଭାବତରଙ୍ଗ

ଶରୀର ମଧ୍ୟଦେଇ ଫୁଟି ବାହାରି ଶରୀରକୁ ଯେପରି ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ ବା ରୂପାନ୍ତରିତ କରି ପକାଉଥିଲା !

**ପୁନର୍ଯାତ୍ରା–ଶେଷରେ ଠାକୁରଙ୍କର ଦକ୍ଷିଣେଶ୍ୱରକୁ ଫେରିବା :**

ଭକ୍ତମାନଙ୍କ ସହିତ ଆନନ୍ଦରେ ବଳରାମବାବୁଙ୍କ ଘରେ ଦୁଇଦିନ ଦୁଇରାତି କଟାଇ ଠାକୁର ଆଜି ତୃତୀୟ ଦିନରେ ଦକ୍ଷିଣେଶ୍ୱରକୁ ଫେରିବେ । ସମୟ ଦିନ ଆଠଟା ବା ନଅଟା ହେବ — ଘାଟରେ ନୌକା ପ୍ରସ୍ତୁତ । ସ୍ଥିର ହେଲା, ଗୋପାଳର ମା ଏବଂ ଅନ୍ୟ ଜଣେ ସ୍ତ୍ରୀ–ଭକ୍ତ (ଗୋଲାପ–ମା') ମଧ୍ୟ ସେହି ନୌକାରେ ଠାକୁରଙ୍କ ସହିତ ଦକ୍ଷିଣେଶ୍ୱର ଯିବେ; ଏହାଛଡ଼ା ଜଣେ ଦୁଇଜଣ ବାଳକ–ଭକ୍ତ, ଯେଉଁମାନେ ଠାକୁରଙ୍କର ପରିଚର୍ଯ୍ୟା ପାଇଁ ସାଙ୍ଗରେ ଆସିଥିଲେ, ସେମାନେ ମଧ୍ୟ ଯିବେ । ବୋଧହୁଏ ଶ୍ରୀଯୁକ୍ତ କାଳୀ (ସ୍ୱାମୀ ଅଭେଦାନନ୍ଦ) ସେମାନଙ୍କ ମଧ୍ୟରେ ଅନ୍ୟତମ ।

ଠାକୁର ଘର ଭିତରକୁ ଯାଇ ଶ୍ରୀଜଗନ୍ନାଥଦେବଙ୍କୁ ପ୍ରଣାମ କରି ଏବଂ ଭକ୍ତ–ପରିବାରର ପ୍ରଣାମ ଗ୍ରହଣ କରି ନୌକାରେ ବସିଲେ । ଗୋପାଳର ମା' ଓ ଅନ୍ୟମାନେ ମଧ୍ୟ ତାଙ୍କ ପଛରେ ଯାଇ ନୌକାରେ ବସିଲେ । ବଳରାମବାବୁଙ୍କର ପରିବାରବର୍ଗର ଅନେକେ ଭକ୍ତି ସହିତ ଗୋପାଳର ମା'ଙ୍କୁ ଲୁଗାପଟା ଇତ୍ୟାଦି ଏବଂ ତାଙ୍କର ଅଭାବ ଥିବା ଜାଣି ରନ୍ଧନ ନିମିତ୍ତ ଡଙ୍କି, ଚିମୁଟା ଆଦି ଅନେକଗୁଡ଼ିଏ ଜିନିଷ ତାଙ୍କୁ ଦେଇଥିଲେ । ସେହି ପୁଟୁଳିଟି ନୌକାରେ ରଖା ହେଲା । ନୌକା ଛାଡ଼ିଲା ।

**ନୌକାରେ ଯିବା ସମୟରେ ଠାକୁର ଗୋପାଳର ମା'ଙ୍କ ପୁଟୁଳିଟି ଦେଖି ବିରକ୍ତ ହେବା । ଭକ୍ତମାନଙ୍କୁ ସେ ଯେପରି ଭଲ ପାଉଥିଲେ ସେପରି କଠୋର ଶାସନ ମଧ୍ୟ କରୁଥିଲେ :**

ଯାଉ ଯାଉ ପୁଟୁଳିଟିକୁ ଦେଖି ଠାକୁର ପଚାରି ଜାଣିଲେ — ତାହା ଗୋପାଳର ମା'ଙ୍କର; ଭକ୍ତ–ପରିବାର ତାଙ୍କୁ ଯେଉଁ ସବୁ ଜିନିଷ ଦେଇଛନ୍ତି, ତାହାର ହିଁ ପୁଟୁଳି । ଏହା ଶୁଣିବା ମାତ୍ରେ ଠାକୁରଙ୍କର ମୁଖ ଗମ୍ଭୀର ଭାବ ଧାରଣ କଲା । ଗୋପାଳର ମା'କୁ କିଛି ନ କହି ଅନ୍ୟ ସ୍ତ୍ରୀ–ଭକ୍ତ ଗୋଲାପ–ମାତାଙ୍କୁ ଲକ୍ଷ୍ୟ କରି ତ୍ୟାଗ ବିଷୟରେ ନାନା କଥା କହିବାକୁ ଲାଗିଲେ । କହିଲେ, "ଯିଏ ତ୍ୟାଗୀ ସେ ହିଁ ଭଗବାନଙ୍କୁ ପାଏ । ଯିଏ ଲୋକଙ୍କ ଘରକୁ ଯାଇ ଖାଇ–ପିଇ ଖାଲି ହାତରେ ଚାଲିଆସେ, ସେ ଭଗବାନଙ୍କ ଦେହରେ ଆଉଜି ହୋଇ ବସେ ।" — ଇତ୍ୟାଦି । ସେଦିନ ଯିବାବେଳେ ଠାକୁର ଗୋପାଳର ମା'ଙ୍କ ସହିତ ପଦେ ମଧ୍ୟ କଥା କହିଲେ ନାହିଁ, ଏବଂ ବାରମ୍ବାର ସେହି ପୁଟୁଳିଟିକୁ ଦେଖିବାକୁ ଲାଗିଲେ । ଠାକୁରଙ୍କ ସେହି ଭାବ ଦେଖି ଗୋପାଳର ମା'ଙ୍କର ମନେ ହେବାକୁ

ଲାଗିଲା, ପୁତୁଳିଟାକୁ ଗଙ୍ଗାରେ ପକାଇଦେବି । ଗୋଟିଏ ଦିଗରେ ଯେପରି ଠାକୁରଙ୍କର ପଞ୍ଚମ ବର୍ଷୀୟ ବାଳକ ଭାବରେ ଭକ୍ତମାନଙ୍କ ସହିତ ହସ ଥଟ୍ଟା ତାମସା ଖେଳ କୌତୁକ ଥିଲା, ଅନ୍ୟ ଦିଗରେ ସେପରି କଠୋର ଶାସନ ମଧ୍ୟ ଥିଲା । କାହାରି ଟିକିଏ ମଧ୍ୟ ଭୁଲ୍ ବ୍ୟବହାର ସହିପାରୁ ନ ଥିଲେ । କ୍ଷୁଦ୍ରଠାରୁ ମଧ୍ୟ କ୍ଷୁଦ୍ର ଜିନିଷର ତତ୍ତ୍ୱାବଧାନ ଥିଲା, କାହାରି ଅତି ସାମାନ୍ୟ ବ୍ୟବହାରରେ ବ୍ୟତିକ୍ରମ ହେଲେ ତତ୍‌କ୍ଷଣାତ୍ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ତାହା ଉପରେ ପଡୁଥିଲା ଓ ଯେଉଁଥିରେ ତାହା ସଂଶୋଧନ ହେବ, ସେଥିପାଇଁ ଚେଷ୍ଟା କରୁଥିଲେ । ଚେଷ୍ଟାର ମଧ୍ୟ ବେଶୀ ଆଡ଼ମ୍ବର କରିବାକୁ ପଡୁ ନ ଥିଲା, ଥରେ ଗମ୍ଭୀର ହୋଇ ତାଙ୍କ ସହିତ କିଛି ସମୟ କଥା ନ କହିଲେ ହିଁ ସେ ଛଟ୍‌ପଟ୍ ହେଉଥିଲା ଓ ସ୍ୱକୃତ ଦୋଷ ପାଇଁ ଅନୁତପ୍ତ ହେଉଥିଲା ! ସେଥିରେ ମଧ୍ୟ ଯିଏ ନିଜର ଭୁଲ ସଂଶୋଧନ ନ କରେ, ଠାକୁରଙ୍କ ଶ୍ରୀମୁଖରୁ ଗୋଟିଏ ଦୁଇଟା ସାମାନ୍ୟ ତିରସ୍କାର ହିଁ ତାହାର ବୁଦ୍ଧି ଠିକ୍ କରିବାକୁ ଯଥେଷ୍ଟ ହେଉଥିଲା ! ଅଦ୍ଭୁତ ଠାକୁରଙ୍କର ପ୍ରତ୍ୟେକ ଭକ୍ତ ସହିତ ଅଦୃଷ୍ଟପୂର୍ବ ବ୍ୟବହାର ଓ ଶିକ୍ଷାଦାନ ଏହିପରି ହିଁ ଚାଲୁଥିଲା — ପ୍ରଥମେ ଗଭୀର ସ୍ନେହ ଦେଇ ତାର ହୃଦୟ ସମ୍ପୂର୍ଣ୍ଣ ରୂପରେ ଅଧିକାର କରି ପରେ ଯାହା କିଛି କହିବା କଥା ଦୁଇ ଚାରୋଟି କଥାରେ କହିବା ବା ବୁଝାଇବା ତାଙ୍କର ସ୍ୱଭାବ ଥିଲା ।

### ଠାକୁରଙ୍କର ବିରକ୍ତି ପ୍ରକାଶରେ ଗୋପାଳର ମା'ଙ୍କର କଷ୍ଟ ଏବଂ ଶ୍ରୀଶ୍ରୀମା' ତାଙ୍କୁ ସାନ୍ତ୍ୱନା ଦେବା :

ଦକ୍ଷିଣେଶ୍ୱରରେ ପହଞ୍ଚି ଗୋପାଳର ମା' ନହବତରେ ଶ୍ରୀଶ୍ରୀମାଙ୍କ ନିକଟକୁ ବ୍ୟାକୁଳ ହୋଇ ଯାଇ ତାଙ୍କୁ କହିଲେ, ''ଆଗୋ ବୋହୂମା, ଗୋପାଳ ଏହି ସବୁ ଜିନିଷର ପୁଟୁଳି ଦେଖି ରାଗିଛି; ଏବେ ଉପାୟ କ'ଣ ? ତେଣୁ ଏହି ସବୁ ଆଉ ମୁଁ ନେଇଯିବି ନାହିଁ, ଏଠାରେ ବାଣ୍ଟିଦେଇ ଯିବି ।'' ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଅପାର ଦୟା —ଗୋପାଳର ମା'ଙ୍କ କାତରତା ଦେଖି ସାନ୍ତ୍ୱନା ଦେଇ କହିଲେ, ''ସେ କହୁଥାଆନ୍ତୁ । ତୁମକୁ ତ କେହି ଦେବାର ଲୋକ ନାହାନ୍ତି, ତୁମେ କ'ଣ କରିବ ମା — ଦରକାର ବୋଲି ତ ଆଣିଛ ?''

ଗୋପାଳର ମା' ତଥାପି ପୁଟୁଳିରୁ ଖଣ୍ଡେ ଲୁଗା ଓ ଆଉ ଗୋଟେ ଦୁଇଟା ଜିନିଷ ବାଣ୍ଟି ଦେଲେ ଏବଂ ଡରି ଡରି ଗୋଟିଏ ଦୁଇଟି ତରକାରୀ ସ୍ୱହସ୍ତରେ ରାନ୍ଧି ଠାକୁରଙ୍କୁ ଭାତ ଖୁଆଇବାକୁ ଗଲେ । ଅନ୍ତର୍ଯ୍ୟାମୀ ଠାକୁର ତାଙ୍କୁ ଅନୁତପ୍ତା ଦେଖି ଆଉ କିଛି କହିଲେ ନାହିଁ ଏବଂ ଗୋପାଳ ମା' ସହିତ ହସି ହସି କଥା କହି ପୂର୍ବପରି ବ୍ୟବହାର କରିବାକୁ ଲାଗିଲେ । ଗୋପାଳର ମା' ମଧ୍ୟ ଆଶ୍ୱସ୍ତା ହୋଇ ଠାକୁରଙ୍କୁ ଖୁଆଇ ପିଆଇ ଉପରବେଳା କାମାରହାଟି ଫେରିଲେ ।

ପୂର୍ବରୁ କୁହାଯାଇଅଛି, ଗୋପାଳର ମା'ଙ୍କର ଭାବଘନ ଗୋପାଳମୂର୍ତ୍ତିର ପ୍ରଥମ ଦର୍ଶନର ଦୁଇମାସ ପରେ ସେହି ଦର୍ଶନ ଆଉ ସଦାସର୍ବଦା ହେଉ ନ ଥିଲା । ଏଥିରେ କେହି ଯେପରି ମନେ ନ କରନ୍ତି ଯେ, ଏହାପରେ ତାଙ୍କର କ୍ୱଚିତ୍ ଗୋପାଳମୂର୍ତ୍ତିଙ୍କର ଦର୍ଶନ ହେଉଥିଲା । କାରଣ, ପ୍ରତିଦିନ ହିଁ ସେ ଦିନରେ ଆଠ ଦଶଥର ଗୋପାଳଙ୍କର ଦର୍ଶନ ପାଉଥିଲେ । ଯେତେବେଳେ ହିଁ ଦେଖିବା ନିମିତ୍ତ ପ୍ରାଣ ବ୍ୟାକୁଳ ହୁଏ, ସେତେବେଳେ ହିଁ ଦେଖା ପାଉଥିଲେ ଏବଂ ଯେବେ କୌଣସି ବିଷୟରେ ତାଙ୍କର ଶିକ୍ଷାର ପ୍ରୟୋଜନ ସେତେବେଳେ ଗୋପାଳ ସମ୍ମୁଖରେ ସହସା ଆବିର୍ଭୂତ ହୋଇ ସଙ୍କେତରେ, କଥାରେ ବା ନିଜେ କରି ଦେଖାଇ ତାଙ୍କୁ ସେପରି କରିବାକୁ ପ୍ରବୃତ୍ତ କରୁଥିଲେ । ଠାକୁରଙ୍କର ଶ୍ରୀଅଙ୍ଗରେ ବାରମ୍ବାର ମିଶିଯାଇ ତାଙ୍କୁ ଶିଖାଇଥିଲେ ସେ ଓ ଶ୍ରୀରାମକୃଷ୍ଣଦେବ ଅଭିନ୍ନ । ଖାଇବା ଓ ଶୋଇବା ଜିନିଷ ମାଗିଯାଚି ଆଣି କିପରି ଭାବରେ ତାଙ୍କର ସେବା କରିବା ଉଚିତ୍ ତାହା ଶିଖାଇଥିଲେ । ପୁଣି କୌଣସି ବିଶେଷ ବିଶେଷ ଶ୍ରୀରାମକୃଷ୍ଣଭକ୍ତମାନଙ୍କ ସହିତ ଏକତ୍ର ବୁଲିବା ବା ସେମାନଙ୍କ ସହିତ ଅନ୍ୟ ପ୍ରକାର ଆଚରଣ କରି ଦେଖାଇ ନିଜ ମାତାଙ୍କୁ ବୁଝାଇଥିଲେ, ଏମାନେ ଓ ସେ ଅଭେଦ—ଭକ୍ତ ଓ ଭଗବାନ ଏକ । ଫଳରେ ତାଙ୍କର ଶୁଚିବାଇ ଅଭ୍ୟାସ କ୍ରମେ କ୍ରମେ ଦୂର ହୋଇଯାଇଥିଲା ।

**ଗୋପାଳର ମା'ଙ୍କର ଠାକୁରଙ୍କଠାରେ ଇଷ୍ଟ-ବୁଦ୍ଧି ଦୃଢ଼ ହେବାପରେ ଯେପରି ଦର୍ଶନ ହେଉଥିଲା :**

ଶ୍ରୀରାମକୃଷ୍ଣଦେବଙ୍କଠାରେ ଇଷ୍ଟଦେବ-ବୁଦ୍ଧି ଦୃଢ଼ ହେବା ପରଠାରୁ ତାଙ୍କର ଆଉ ବିଶେଷ ଗୋପାଳଙ୍କ ମୂର୍ତ୍ତିର ଦର୍ଶନ ହେଉ ନ ଥିଲା । ଯେତେବେଳେ ସେତେବେଳେ ଶ୍ରୀରାମକୃଷ୍ଣଦେବଙ୍କୁ ହିଁ ଦେଖିବାକୁ ପାଉଥିଲେ ଏବଂ ସେହି ମୂର୍ତ୍ତି ମାଧ୍ୟମରେ ହିଁ ବାଳ-ଗୋପାଳରୂପୀ ଭଗବାନ ତାଙ୍କୁ ଯାହା କିଛି ଶିକ୍ଷା ଦେଉଥିଲେ । ପ୍ରଥମେ ପ୍ରଥମେ ଏଥିରେ ତାଙ୍କ ମନରେ ବଡ଼ ଅଶାନ୍ତି ହେଉଥିଲା । ଶ୍ରୀରାମକୃଷ୍ଣଦେବଙ୍କ ନିକଟକୁ ଆସି କାନ୍ଦି କାନ୍ଦି କହୁଥିଲେ, ''ଗୋପାଳ ତୁମେ ମୋର କ'ଣ କଲ, ମୋର କ'ଣ ଅପରାଧ ହେଲା, କାହିଁକି ମୁଁ ତୁମକୁ ଆଉ ପୂର୍ବପରି (ଗୋପାଳ ରୂପରେ) ଦେଖିବାକୁ ପାଉ ନାହିଁ ?'' ଇତ୍ୟାଦି । ସେଥିରେ ଶ୍ରୀରାମକୃଷ୍ଣଦେବ ଉତ୍ତର ଦେଲେ, ''ଏପରି ସଦାସର୍ବଦା ଦର୍ଶନ ହେଲେ କଳିଯୁଗରେ ଶରୀର ରହେ ନାହିଁ; ଏକୋଇଶି ଦିନମାତ୍ର ଶରୀର ରହି ତା'ପରେ ଶୁଖିଲା ପତ୍ର ପରି ଝଡ଼ିଯାଏ ।'' ବାସ୍ତବିକ୍ ପ୍ରଥମ ଦର୍ଶନର ପର ଦୁଇମାସ ଗୋପାଳର ମା' ସର୍ବଦା ହିଁ ଗୋଟିଏ ଭାବର ଆବେଶରେ ରହୁଥିଲେ । ରନ୍ଧା-ବଢ଼ା, ସ୍ନାନ-ଆହାର, ଜପ-ଧ୍ୟାନ ପ୍ରଭୃତି ଯାହାକିଛି କରନ୍ତି, ସେ ସବୁ ଯେପରି ପୂର୍ବର ବହୁକାଳର ଅଭ୍ୟାସ ଯୋଗୁଁ ଓ କରିବାକୁ ହୁଏ ବୋଲି; ତାଙ୍କର ଶରୀର

ଅଭ୍ୟାସବଶତଃ ଆପେ ଆପେ ସେସମସ୍ତ କରି ନେଉଥିଲା ! କିନ୍ତୁ ସେ ନିଜେ ସବୁ ସମୟରେ ଯେପରି ଏକ ନିଶାର ଝୁଙ୍କରେ ରହୁଥିଲେ, ସୁତରାଂ ଏପରି ଭାବରେ ଶରୀର ଆଉ କେତେଦିନ ରହିବ ? ଦୁଇମାସ ଯେ ଥିଲା, ଏହା ହିଁ ଆଶ୍ଚର୍ଯ୍ୟ ! ଦୁଇ ମାସ ପରେ ସେହି ନିଶାର ଝୁଙ୍କ ଅନେକ କଟିଗଲା । ମାତ୍ର ଗୋପାଳଙ୍କୁ ପୂର୍ବପରି ନ ଦେଖିପାରିବାରୁ ପୁଣି ଏକ ବ୍ୟାକୁଳତା ଆସିଲା । ବାୟୁ ପ୍ରଧାନ ଦେହ—ବାୟୁ ବୃଦ୍ଧି ପାଇ ଦେହ ଓ ଛାତି ଭିତରେ ଏକ ପ୍ରଚଣ୍ଡ ଯନ୍ତ୍ରଣା ଅନୁଭୂତ ହେବାକୁ ଲାଗିଲା । ଶ୍ରୀରାମକୃଷ୍ଣଦେବଙ୍କୁ ଏଥିପାଇଁ ସେ କହିଲେ, ''ବାୟୁବୃଦ୍ଧି ହେତୁ ଛାତିଟା ଯେପରି କରତରେ ଚିରିଲା ପରି ଲାଗୁଛି !'' ଠାକୁର ସେଥିରେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, ''ଏହା ତୁମର ହରିବାୟୁ; ଏହା ଚାଲିଗଲେ କ'ଣ ନେଇ ରହିବ ଗୋ ? ଏହା ରହିଲେ ଭଲ; ଯେତେବେଳେ ବେଶୀ କଷ୍ଟ ହେବ ସେତେବେଳେ କିଛି ଖାଇନେବ ।'' ଏକଥା କହି ଠାକୁର ସେଦିନ ତାଙ୍କୁ ନାନା ପ୍ରକାର ଭଲ ଭଲ ଜିନିଷ ଖାଇବାକୁ ଦେଇଥିଲେ ।

* * *

**ଠାକୁରଙ୍କ ନିକଟକୁ ମାର୍‌ୱାଡ଼ି ଭକ୍ତମାନଙ୍କର ଆଗମନ । କାମନାପୂର୍ବକ ଦେବା ଜିନିଷ ଠାକୁର ଗ୍ରହଣ ତଥା ଭୋଜନ କରିପାରୁ ନ ଥିଲେ । ଭକ୍ତମାନଙ୍କୁ ମଧ ତାହା ଖାଇବାକୁ ଦେଉ ନ ଥିଲେ :**

କଲିକତାରୁ ଆମେମାନେ ସ୍ତ୍ରୀ-ପୁରୁଷ ଯେପରି ଅନେକେ ଠାକୁରଙ୍କୁ ଦେଖିବାକୁ ଯାଉଥିଲୁ ସେପରି ଅନେକ ମାରୱାଡ଼ି ସ୍ତ୍ରୀ-ପୁରୁଷ ମଧ ବେଳେ ବେଳେ ଠାକୁରଙ୍କୁ ଦେଖିବାକୁ ଆସୁଥିଲେ । ସେମାନେ ସମସ୍ତେ ଅନେକଗୁଡ଼ିଏ ଗାଡ଼ିରେ ଦକ୍ଷିଣେଶ୍ୱର ଆସୁଥିଲେ ଏବଂ ଗଙ୍ଗାସ୍ନାନ କରି, ଫୁଲ ତୋଳି ଶିବ ପୂଜା କରି ପଞ୍ଚବଟୀରେ ଭିଡ଼ ଜମାଉଥିଲେ । ପରେ ସେହି ଗଛତଳେ ଚୁଲି ଖୋଳି ଡାଲି, ଲେଚି, ଚୁରମା ପ୍ରଭୃତି ପ୍ରସ୍ତୁତ କରି ଦେବତାଙ୍କୁ ନିବେଦନପୂର୍ବକ ପ୍ରଥମେ ଠାକୁରଙ୍କୁ ସେସମସ୍ତ ଖାଦ୍ୟ ଦେଉଥିଲେ ଏବଂ ପରେ ନିଜେ ପ୍ରସାଦ ପାଉଥିଲେ । ଏମାନଙ୍କ ମଧରୁ ଅନେକେ ପୁଣି ଠାକୁରଙ୍କ ପାଇଁ ବାଦାମ, ଖିସ୍‌ମିସ୍, ପେସ୍ତା, ମିଶ୍ରି, ଅଙ୍ଗୁର, ବେଦନା, ପିଜୁଳି, ପାନ, ଇତ୍ୟାଦି ଆଣି ଠାକୁରଙ୍କ ଆଗରେ ରଖି ତାଙ୍କୁ ପ୍ରଣାମ କରୁଥିଲେ । କାରଣ, ସେମାନେ ଆମ ଅନେକଙ୍କ ପରି ନ ଥିଲେ, ରିକ୍ତ ହସ୍ତରେ ସାଧୁଙ୍କ ଆଶ୍ରମକୁ ବା ଦେବତାଙ୍କ ସ୍ଥାନକୁ ଯେ ଯାଆନ୍ତି ନାହିଁ, ସମସ୍ତେ ଏକଥା ଜାଣିଥିଲେ, ଏବଂ ସେଥିପାଇଁ କିଛି ନା କିଛି ନେଇ ଆସୁଥିଲେ । ଶ୍ରୀରାମକୃଷ୍ଣଦେବ କିନ୍ତୁ ସେମାନଙ୍କ ମଧରେ ଜଣେ ଦୁଇଜଣଙ୍କ ବ୍ୟତୀତ ଅନ୍ୟ ମାରୁୱାଡ଼ିମାନଙ୍କ ପ୍ରଦତ୍ତ ଜିନିଷ ଆଦୌ ସ୍ୱୟଂ ଗ୍ରହଣ କରୁ ନ ଥିଲେ । କହୁଥିଲେ,

''ଏମାନେ ଯଦି ଖଣ୍ଡିଏ ପାନ ଦେବେ ତ' ତା'ସହିତ ଷୋଳଟା କାମନା ଯୋଡ଼ି ଦେଇଥିବେ—'ମୋର ମକଦ୍ଦମାରେ ଜୟ ହେଉ, ମୋର ରୋଗ ଭଲ ହେଉ, ମୋର ବ୍ୟବସାୟରେ ଲାଭ ହେଉ' ଇତ୍ୟାଦି !'' ଠାକୁର ନିଜେ ତ ଏସବୁ ଜିନିଷ ଖାଆନ୍ତି ନାହିଁ, ପୁଣି ଭକ୍ତମାନଙ୍କୁ ମଧ୍ୟ ଏହିସବୁ ଖାଦ୍ୟ ଖାଇବାକୁ ଦିଅନ୍ତି ନାହିଁ । ତେବେ ରୁଟି, ଡାଲି ଇତ୍ୟାଦି ରନ୍ଧା ହୋଇଥିବା ଖାଦ୍ୟ, ଯାହା ସେମାନେ ଦେବତାଙ୍କୁ ଅର୍ପଣ କରି ତାଙ୍କୁ ଦେଉଥିଲେ, 'ପ୍ରସାଦ' ଜ୍ଞାନରେ ନିଜେ ମଧ୍ୟ ତାହା କେବେକେବେ ଟିକିଏ ଗ୍ରହଣ କରୁଥିଲେ ଏବଂ ଆମ ସମସ୍ତଙ୍କୁ ମଧ୍ୟ ଖାଇବାକୁ ଦେଉଥିଲେ । ସେମାନେ ଦେଇଥିବା ସେସମସ୍ତ ମିଶ୍ରି, ଖୁଆ ପ୍ରଭୃତି ଖାଦ୍ୟର ଅଧିକାରୀ ଥିଲେ ଏକମାତ୍ର ନରେନ୍ଦ୍ରନାଥ (ସ୍ୱାମୀ ବିବେକାନନ୍ଦଜୀ) । ଠାକୁର କହୁଥିଲେ, ''ତା (ନରେନ୍ଦ୍ରର) ପାଖରେ ଜ୍ଞାନ-ଅସି ରହିଛି—ଯେପରି ଖୋଲା ତରୱାଲ୍, ତା'ର ଏସବୁ ଖାଇଲେ କିଛି ଦୋଷ ହେବ ନାହିଁ, ବୁଦ୍ଧି ମଳିନ ହେବ ନାହିଁ ।'' ତେଣୁ ଠାକୁର ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ପାଆନ୍ତି ତାହା ହାତରେ ଏସମସ୍ତ ଖାଦ୍ୟ ନରେନ୍ଦ୍ରନାଥଙ୍କ ଘରକୁ ପଠାଇ ଦେଉଥିଲେ । ଯେଉଁ ଦିନ କାହାକୁ ନ ପାଆନ୍ତି, ସେଦିନ ନିଜ ଭ୍ରାତୁଷ୍ପୁତ୍ର ମା'କାଳୀଙ୍କର ପୂଜାରୀ ରାମଲାଲଙ୍କ ହାତରେ ହିଁ ପଠାଇ ଦେଉଥିଲେ । ଆମେ ରାମଲାଲଦାଦାଙ୍କ ନିକଟରୁ ଶୁଣିଛୁ, ପ୍ରତିଦିନ ଏପରି ନେଇ ଯିବାକୁ କାଳେ ରାମଲାଲ ବିରକ୍ତ ହେବେ ତେଣୁ ଦିନେ ମଧ୍ୟାହ୍ନ ଭୋଜନ ପରେ ରାମଲାଲକୁ ପଚାରିଲେ, ''ଆରେ, ତୋର କଲିକତାରେ କିଛି ଦରକାର ନାହିଁ ?''

ରାମଲାଲ—ଆଜ୍ଞା, ମୋର କଲିକତାରେ କ'ଣ ଦରକାର ! ତେବେ ଆପଣ କହିଲେ ଯିବି ।

### ମାରୱାଡ଼ିମାନଙ୍କ ଦ୍ୱାରା ପ୍ରଦତ୍ତ ଖାଦ୍ୟଦ୍ରବ୍ୟ ନରେନ୍ଦ୍ରନାଥଙ୍କ ପାଖକୁ ପଠାଇବା :

ଶ୍ରୀରାମକୃଷ୍ଣ—ନା ଏମିତି କହୁଥିଲି; କହୁଥିଲି କି ତୁ ଅନେକ ଦିନ ହେଲା କୁଆଡ଼େ ବୁଲାବୁଲି କରିବାକୁ ଯାଇ ନାହୁଁ, ତେଣୁ ଯଦି ବୁଲିବାକୁ ଇଚ୍ଛା ହେଉଥାଏ, ତ' ଥରେ ଯା ନା । ଯଦି ଯାଉ ତ' ଏହି ଟିଣ ଡବାରେ ପଇସା ଅଛି, ତାହା ନେଇ ବରାହନଗରଠାରୁ ସେୟାର ଗାଡ଼ିରେ ଯିବୁ । ତା ନ ହେଲେ ଖରା ବାଜି ଦେହ ଖରାପ ହେବ । ଆଉ ସେହି ମିଶ୍ରି, ବାଦାମଗୁଡ଼ିକ ନରେନ୍ଦ୍ରକୁ ଦେଇ ଆସିବୁ ଓ ତାର ଖବର ନେଇ ଆସିବୁ । —ସେ ଅନେକ ଦିନ ହେଲା ଆସି ନାହିଁ; ତା'ଖବର ପାଇଁ ମନଟା 'ଆଉଟୁ-ପାଉଟୁ' ହେଉଛି ।'

ରାମଲାଲ ଦାଦା କହନ୍ତି, ''ଆହା, ତାଙ୍କର କେତେ ସଙ୍କୋଚ, କାଳେ ମୁଁ ବିରକ୍ତ ହୁଏ !'' ରାମଲାଲ ଦାଦା ମଧ୍ୟ ସେହି ସୁଯୋଗରେ କଲିକତା ଆସି ଭକ୍ତମାନଙ୍କର ଆନନ୍ଦବର୍ଦ୍ଧନ କରୁଥିଲେ ।

* * *

ଆଜି ଅନେକଗୁଡ଼ିଏ ମାରୱାଡ଼ି ଭକ୍ତ ଦକ୍ଷିଣେଶ୍ୱର ଆସିଛନ୍ତି । ପୂର୍ବପରି ଫଳ ମିଶ୍ରି ଇତ୍ୟାଦି ଠାକୁରଙ୍କ ଘରେ ଅନେକ ଜମିଯାଇଛି । ଏହି ସମୟରେ ଗୋପାଳର ମା' ଓ କେତେଜଣ ସ୍ତ୍ରୀ-ଭକ୍ତ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଆସି ପହଞ୍ଚିଲେ । ଗୋପାଳର ମା'କୁ ଦେଖି ଠାକୁର ନିକଟକୁ ଆସି ଠିଆ ହୋଇ ତାଙ୍କ ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଆଉଁସି ଦେଉ ଦେଉ ଯେପରି ପୁତ୍ର ମା'କୁ ପାଇ କେତେ ପ୍ରକାରରେ ଆଦର କରିଥାଏ, ସେହିପରି କରିବାକୁ ଲାଗିଲେ । ଗୋପାଳର ମା'ର ଶରୀରକୁ ଦେଖାଇ ସମସ୍ତଙ୍କୁ କହିଲେ, ''ଏହି ଖୋଳଟା ଭିତରେ କେବଳ ହରି ଭରି ରହିଛନ୍ତି; ହରିମୟ ଶରୀର !'' ଗୋପାଳର ମା ମଧ୍ୟ ଚୁପ୍ ହୋଇ ଠିଆ ହୋଇ ରହିଲେ । ଠାକୁର ତାଙ୍କର ପାଦରେ ହାତ ଦେଉଛନ୍ତି ବୋଲି ଟିକିଏ ମଧ୍ୟ ସଙ୍କୁଚିତା ହେଲେ ନାହିଁ ! ପରେ, ଘରେ ଯାହା କିଛି ଭଲ ଭଲ ଜିନିଷ ଥିଲା, ସେସବୁ ଆଣି ଠାକୁର ବୃଦ୍ଧାଙ୍କୁ ଖୁଆଇବାକୁ ଲାଗିଲେ । ଗୋପାଳର ମା' ଦକ୍ଷିଣେଶ୍ୱର ଗଲେ ଠାକୁର ସେହି ପ୍ରକାର କରୁଥିଲେ ଓ ଖୁଆଉଥିଲେ ! ଗୋପାଳର ମା' ତାଙ୍କୁ ଦିନେ କହିଲେ, ''ଗୋପାଳ, ତୁମେ ମୋତେ ଏତେ ଖୁଆଇବାକୁ ଭଲ ପାଅ କାହିଁକି ?''

ଶ୍ରୀରାମକୃଷ୍ଣ—ତୁମେ ଯେ ମୋତେ ଆଗରୁ କେତେ ଖୁଆଇଛ ।

ଗୋପାଳ ମା'—ମୁଁ ପୂର୍ବରୁ କେବେ ଖୁଆଇଛି ?

ଶ୍ରୀରାମକୃଷ୍ଣ—ଜନ୍ମାନ୍ତରରେ ।

ସାରା ଦିନ ଦକ୍ଷିଣେଶ୍ୱରରେ ରହି ଯେତେବେଳେ ଗୋପାଳର ମା କାମାରହାଟି ଫେରିବେ ବୋଲି ବିଦାୟ ଗ୍ରହଣ କରୁଛନ୍ତି, ସେତେବେଳେ ଠାକୁର ମାରୱାଡ଼ିମାନେ ଦେଇଥିବା ଯେତେ ସବୁ ମିଶ୍ରି ଆଣି ଗୋପାଳର ମା'କୁ ଦେଲେ ଓ ସବୁ ନେଇଯିବା ପାଇଁ କହିଲେ । ଗୋପାଳର ମା' କହିଲେ, ''ଏତେ ସବୁ ମିଶ୍ରି ଦେଉଛ କାହିଁକି ?''

ଶ୍ରୀରାମକୃଷ୍ଣ—(ଗୋପାଳ ମା'ଙ୍କର ଚିବୁକକୁ ଶ୍ରଦ୍ଧାରେ ଧରି) ଆଗୋ, ଥିଲ ଗୁଡ଼, ହେଲ ଚିନି, ତାପରେ ହେଲ ମିଶ୍ରି, ଏବେ ମିଶ୍ରି ହୋଇଛ—ମିଶ୍ରି ଖାଅ ଆନନ୍ଦ କର !

**ଗୋପାଳର ମା'ଙ୍କୁ ଠାକୁରେ ମାରୱାଡ଼ିମାନଙ୍କ ପ୍ରଦତ୍ତ ମିଶ୍ରି ଦେବା :**

ମାରୱାଡ଼ିମାନଙ୍କର ମିଶ୍ରି ଏପରି ଗୋପାଳର ମା'ଙ୍କୁ ଦେବାରୁ ସମସ୍ତେ ଅବାକ୍ ହୋଇରହିଲେ—ବୁଝିଲେ ଠାକୁରଙ୍କ କୃପାରୁ ଏବେ ଆଉ ଗୋପାଳର ମା'ଙ୍କ ମନ କୌଣସି ପ୍ରକାରରେ ମଳିନ ହେବାର ନୁହେଁ । ଗୋପାଳର ମା' ଆଉ କ'ଣ ବା କରିବେ, ଅଗତ୍ୟା ସେହି ମିଶ୍ରିଗୁଡ଼ିକ ନେଇଗଲେ, ନତୁବା ଗୋପାଳ (ଶ୍ରୀରାମକୃଷ୍ଣଦେବ) ଛାଡ଼ିବେ ନାହିଁ; ପୁଣି ଶରୀର ଥିଲେ ତ ସମସ୍ତ ଜିନିଷ ଦରକାର—ଗୋପାଳର ମା ଯେପରି ଆମକୁ ବେଳେ ବେଳେ କହୁଥିଲେ, ''ଶରୀର ଥିଲେ ସବୁ ଦରକାର—ଜିରା ଟିକିଏ, ମେଥି ଟିକିଏ ପର୍ଯ୍ୟନ୍ତ, ଦେଖି ନାହଁ !''

* * *

**ଦର୍ଶନର କଥା ଅନ୍ୟମାନଙ୍କୁ କହିବ ନାହିଁ :**

ଗୋପାଳର ମା' ପୂର୍ବରୁ ଜପ-ଧ୍ୟାନ କରିବାବେଳେ ଯାହା କିଛି ଦେଖୁଥିଲେ ସେସମସ୍ତ ଠାକୁରଙ୍କୁ ଆସି କହୁଥିଲେ; ସେଥିରେ ଠାକୁର କହୁଥିଲେ, ''ଦର୍ଶନର ବିଷୟ କାହାକୁ କହନ୍ତି ନାହିଁ, କହିଲେ ଆଉ ସେପରି ହୁଏ ନାହିଁ ।'' ଗୋପାଳର ମା' ସେଥିରେ ତାଙ୍କୁ ଦିନେ କହିଲେ, ''କାହିଁକି ? ସେ ସବୁ ତ ତୁମରି ଦର୍ଶନର କଥା, ତୁମକୁ ମଧ୍ୟ କହିବି ନାହିଁ ?'' ଠାକୁର ଏହାର ଉତ୍ତରରେ କହିଲେ, ''ଏଠାକାର ଦର୍ଶନ ହେଲେ ମଧ୍ୟ ମୋତେ କହିବ ନାହିଁ ।'' ଗୋପାଳର ମା' କହିଲେ, 'ଠିକ୍ ଅଛି ।' ସେବେଠାରୁ ସେ ଦର୍ଶନ ଆଦିର କଥା କାହାକୁ ବିଶେଷ କହୁ ନ ଥିଲେ । ସରଳ ଉଦାର ଗୋପାଳର ମା'ଙ୍କୁ ଶ୍ରୀରାମକୃଷ୍ଣଦେବ ଯାହା କହୁଥିଲେ ସେଥିରେ ହିଁ ତାଙ୍କର ପକ୍‌କା ବିଶ୍ୱାସ ହେଉଥିଲା । ଆଉ ସଂଶୟାତ୍ମା ଆମେ ? ଆମମାନଙ୍କର ଠାକୁରଙ୍କ କଥା ପରୀକ୍ଷା କରୁ କରୁ ହିଁ ଜୀବନ କଟିଗଲା—ଜୀବନରେ ପରିଣତ କରି ଏହି ସକଳର ଫଳଭୋଗରେ ଆନନ୍ଦ କରିବା ଆଉ ହୋଇପାରିଲା ନାହିଁ !

**ସ୍ୱାମୀ ବିବେକାନନ୍ଦଙ୍କ ସହିତ ଠାକୁର ଗୋପାଳର ମା'ଙ୍କର ପରିଚୟ କରାଇଦେବା :**

ଏହି ସମୟରେ ଥରେ ଗୋପାଳର ମା' ଓ ଶ୍ରୀନରେନ୍ଦ୍ରନାଥ (ସ୍ୱାମୀ ବିବେକାନନ୍ଦ) ଉଭୟ ଦକ୍ଷିଣେଶ୍ୱରରେ ଉପସ୍ଥିତ ଥିଲେ । ନରେନ୍ଦ୍ରନାଥଙ୍କର ସେତେବେଳେ ମଧ୍ୟ ବ୍ରାହ୍ମସମାଜର ନିରାକାରବାଦ ଉପରେ ଖୁବ୍ ବିଶ୍ୱାସ ଥିଲା । ଠାକୁର ଦେବତା, ପୌତ୍ତଳିକତାରେ ବିଶେଷ ବିଦ୍ୱେଷ ଥିଲା; ତେବେ ଏହା ଧାରଣା ହୋଇଥିଲା ଯେ, ମୂର୍ତ୍ତି-ଫୁର୍ତ୍ତି ଅବଲମ୍ବନ କରି ମଧ୍ୟ ଲୋକ ନିରାକାର ସର୍ବଭୂତସ୍ଥ

ଭଗବାନଙ୍କ ନିକଟରେ ଶେଷରେ ପହଞ୍ଚିଥାଏ । ଠାକୁରଙ୍କର ରହସ୍ୟବୋଧ ଖୁବ୍ ଥିଲା । ଗୋଟିଏ ପାଖରେ ଏହି ସର୍ବଗୁଣସମ୍ପନ୍ନ ସୁପଣ୍ଡିତ ମେଧାବୀ ବିଚାରପ୍ରିୟ ଭଗବତ୍‌ଭକ୍ତ ନରେନ୍ଦ୍ରନାଥ ଏବଂ ଅନ୍ୟ ପାଖରେ ଗରିବ କାଙ୍ଗାଳୀ ନାମମାତ୍ର ଅବଲମ୍ବନରେ ଶ୍ରୀଭଗବାନଙ୍କ ଦର୍ଶନ ଓ କୃପାପ୍ରୟାସୀ ସରଳବିଶ୍ୱାସୀ ଗୋପାଳର ମା'—ଯିଏ କେବେ ମଧ୍ୟ ଲେଖାପଢ଼ା, ଜ୍ଞାନବିଚାରର ଧାର ଧାରି ନାହାନ୍ତି—ଏହି ଉଭୟଙ୍କୁ ଏକତ୍ର ପାଇ ଏକ ମଜା ଲଗାଇ ଦେଲେ । ବ୍ରାହ୍ମଣୀ ଯେପରି ବାଳଗୋପାଳରୂପୀ ଭଗବାନଙ୍କର ଦର୍ଶନ ପ୍ରାପ୍ତ ହୋଇଥିଲେ ଏବଂ ସେବେଠାରୁ ଗୋପାଳ ଯେଉଁଭାବରେ ତାଙ୍କ ସହିତ ଲୀଳାବିଳାସ କରୁଛନ୍ତି, ସେସମସ୍ତ କଥା ଶ୍ରୀଯୁକ୍ତ ନରେନ୍ଦ୍ରଙ୍କ ନିକଟରେ ଗୋପାଳର ମା'କୁ କହିବାକୁ ଠାକୁର ନିର୍ଦ୍ଦେଶ କଲେ । ଗୋପାଳର ମା' ଠାକୁରଙ୍କ କଥା ଶୁଣି କହିଲେ, ''ଏଥିରେ କିଛି ଦୋଷ ହେବ ନାହିଁ ତ, ଗୋପାଳ ?'' ପରେ ସେହି ବିଷୟରେ ଠାକୁରଙ୍କଠାରୁ ଆଶ୍ୱାସନା ପାଇ ଅବିରତ ଅଶ୍ରୁଜଳ ବର୍ଷଣ କରୁ କରୁ ଗଦ୍‌ଗଦ୍‌ସ୍ୱରରେ ଗୋପାଳରୂପୀ ଶ୍ରୀଭଗବାନଙ୍କର ପ୍ରଥମ ଦର୍ଶନପରଠାରୁ ଦୁଇମାସ କାଳ ପର୍ଯ୍ୟନ୍ତ ଯେତେ ଲୀଳାବିଳାସର କଥା ଆଦ୍ୟୋପାନ୍ତ କହିବାକୁ ଲାଗିଲେ—କିପରି ସେହି ଗୋପାଳ ତାଙ୍କର କୋଳରେ ଉଠି କାନ୍ଧରେ ମୁଣ୍ଡ ରଖି କାମାରହାଟିରୁ ଦକ୍ଷିଣେଶ୍ୱର ପର୍ଯ୍ୟନ୍ତ ସମସ୍ତ ରାସ୍ତା ଆସିଥିଲେ, ଏବଂ ତାଙ୍କ ଲାଲ ଟୁକୁଟୁକୁ ପାଦ ଯୋଡ଼ିକ ତାଙ୍କ ଛାତି ଉପରେ ଝୁଲି ରହିଥିଲା ଯାହା ସେ ସ୍ପଷ୍ଟ ଦେଖିପାରୁଥିଲେ; ଠାକୁରଙ୍କ ଅଙ୍ଗରେ କିପରି ମଝିରେ ମଝିରେ ପ୍ରବେଶ କରି ପୁଣି ନିର୍ଗତ ହୋଇ ତାଙ୍କ ନିକଟକୁ ପୁନରାୟ ଆସିଥିଲେ; ଶୋଇବା ସମୟରେ ତକିଆ ନ ପାଇ କିପରି ବାରମ୍ବାର କୁନ୍ଥକୁନ୍ଥ ହେଉଥିଲେ; ରାନ୍ଧିବା ପାଇଁ କାଠ ଗୋଟାଇଥିଲେ ଏବଂ ଖାଇବା ପାଇଁ କିପରି ଅଝଟ କରୁଥିଲେ—ଏ ସମସ୍ତ କଥା ସବିସ୍ତାର କହିବାକୁ ଲାଗିଲେ । କହୁ କହୁ ବୃଦ୍ଧା ଭାବରେ ବିଭୋର ହୋଇ ଗୋପାଳରୂପୀ ଶ୍ରୀଭଗବାନଙ୍କୁ ପୁନରାୟ ଦର୍ଶନ କରିବାକୁ ଲାଗିଲେ । ନରେନ୍ଦ୍ରନାଥଙ୍କର ବାହାରେ କଠୋର ଜ୍ଞାନବିଚାରର ଆବରଣ ଥିଲେ ମଧ୍ୟ ଭିତରଟା ଚିରକାଳ ହିଁ ଭକ୍ତିପ୍ରେମରେ ପୂର୍ଣ୍ଣ ଥିଲା । ସେ ବୃଦ୍ଧାଙ୍କର ଏପରି ଭାବାବସ୍ଥା ଓ ଦର୍ଶନ ଇତ୍ୟାଦିର କଥାଶୁଣି ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ । ପୁଣି କହୁ କହୁ ବୃଦ୍ଧା ବାରମ୍ବାର ନରେନ୍ଦ୍ରନାଥଙ୍କୁ ସରଳ ଭାବରେ ପଚାରିବାକୁ ଲାଗିଲେ, ''ବାବା, ତୁମେମାନେ ପଣ୍ଡିତ ବୁଦ୍ଧିମାନ, ମୁଁ ଦୁଃଖୀ କାଙ୍ଗାଳୀ କିଛି ଜାଣେ ନାହିଁ, କିଛି ବୁଝେ ନାହିଁ—ତୁମେ କୁହ, ମୋର ଏସମସ୍ତ ମିଥ୍ୟା ନୁହେଁ ତ' ?'' ନରେନ୍ଦ୍ରନାଥ ମଧ୍ୟ ବୃଦ୍ଧାଙ୍କୁ ବାରମ୍ବାର ଆଶ୍ୱାସନା ଦେଇ ବୁଝାଇ କହିଲେ, ''ନା, ମା', ତୁମେ ଯାହା ଦେଖିଛ ସେସବୁ ସତ୍ୟ !'' ଗୋପାଳର ମା' ଏପରି ବ୍ୟାକୁଳ ହୋଇ ଯେ ନରେନ୍ଦ୍ରନାଥଙ୍କୁ ଏପରି

ପଚାରିଲେ ତାର କାରଣ, ବୋଧହୁଏ ସେତେବେଳେ ସେ ଆଉ ପୂର୍ବପରି ସର୍ବଦା ଶ୍ରୀଗୋପାଳଙ୍କର ଦର୍ଶନ ପାଉ ନ ଥିଲେ ।

ଏହି ସମୟରେ ଠାକୁର ଦିନେ ଶ୍ରୀଯୁକ୍ତ ରାଖାଲଙ୍କୁ (ସ୍ୱାମୀ ବ୍ରହ୍ମାନନ୍ଦ) ସାଙ୍ଗରେ ଧରି କାମାରହାଟିରେ ଗୋପାଳର ମା'ଙ୍କ ନିକଟରେ ଆସି ଉପସ୍ଥିତ ହେଲେ — ପ୍ରାୟ ଦିନ ଦଶଟା ହେବ । କାରଣ, ଗୋପାଳର ମା'ଙ୍କର ବିଶେଷ ଇଚ୍ଛା ହୋଇଥିଲା, ନିଜ ହାତରେ ଭଲ ଭାବରେ ରାନ୍ଧି ଦିନେ ଠାକୁରଙ୍କୁ ଖୁଆଇବେ । ବୃଦ୍ଧା ଠାକୁରଙ୍କୁ ପାଇ ଏକାବେଳକେ ଆନନ୍ଦରେ ବିଭୋର । ଯାହା ଯୋଗାଡ଼ କରି ପାରିଥିଲେ, ତାହା ଜଳଖିଆ ପାଇଁ ଦେଇ ବାବୁଙ୍କର ବୈଠକଖାନାରେ ବିଛଣା ପାରି ତାଙ୍କୁ ସେଠାରେ ବସାଇ ଦେଇ ଅଣ୍ଟାଭିଡ଼ି ରାନ୍ଧିବାକୁ ଗଲେ । ଭିକ୍ଷା କରି ନାନା ଭଲ ଭଲ ଜିନିଷ ଯୋଗାଡ଼ କରିଥିଲେ । —ନାନାପ୍ରକାର ରୋଷେଇ କରି ମଧ୍ୟାହ୍ନରେ ଠାକୁରଙ୍କୁ ଭଲ କରି ଖୁଆଇଲେ ଏବଂ ବିଶ୍ରାମ ପାଇଁ ସ୍ତ୍ରୀଲୋକମାନଙ୍କ ପାଇଁ ଥିବା ଦୋତାଲାର ଦକ୍ଷିଣଦିଗର ଘରେ ନିଜର ରେଜେଇଟି ପକାଇ ପରିଷ୍କାର ଚାଦର ଗୋଟିଏ ତା' ଉପରେ ବିଛାଇ ଭଲ କରି ବିଛଣା କରିଦେଲେ ! ଠାକୁର ସେଥିରେ ଶୋଇ ଟିକିଏ ବିଶ୍ରାମ କରିବାକୁ ଲାଗିଲେ । ଶ୍ରୀଯୁକ୍ତ ରାଖାଲ ମଧ୍ୟ ଠାକୁରଙ୍କ ପାଖରେ ହିଁ ଶୟନ କଲେ, କାରଣ ଠାକୁର ରାଖାଲ ମହାରାଜ ବା ସ୍ୱାମୀ ବ୍ରହ୍ମାନନ୍ଦଙ୍କୁ ଠିକ୍ ନିଜର ସନ୍ତାନ ପରି ଦେଖୁଥିଲେ ଏବଂ ତାଙ୍କ ସହିତ ସର୍ବଦା ସେପରି ବ୍ୟବହାର କରୁଥିଲେ ।

### ଗୋପାଳର ମା'ଙ୍କର ନିମନ୍ତ୍ରଣରେ ଠାକୁରଙ୍କର କାମାରହାଟି ବଗିଚାକୁ ବୁଲିଯିବା ଓ ସେଠାରେ ପ୍ରେତଯୋନି–ଦର୍ଶନ :

ଏହି ସମୟରେ ସେହି ସ୍ଥାନରେ ଏକ ଅଦ୍ଭୁତ ଘଟଣା ଠାକୁର ଦେଖିଲେ । ତାଙ୍କ ନିଜ ମୁହଁରୁ ଏହିକଥା ଶୁଣିଥିବାରୁ ଆମେ ଏଠାରେ ସେବିଷୟ କହିବାକୁ ସାହସ କରୁଛୁ, ନ ହେଲେ ସେକଥା ଉଲ୍ଲେଖ କରିବା ପାଇଁ ଆମେ ଇଚ୍ଛୁକ ନ ଥିଲୁ । ଠାକୁରଙ୍କୁ ଦିନ ବା ରାତିରେ ନିଦ୍ରା ଅଳ୍ପ ହେଉଥିଲା, ତେଣୁ ସେ ସ୍ଥିର ହୋଇ ଶୋଇଅଛନ୍ତି; ରାଖାଲ ମହାରାଜ ତାଙ୍କ ପାଖରେ ଶୋଇପଡ଼ିଛନ୍ତି । ଠାକୁର କହୁଥିଲେ, ''ଏପରି ସମୟରେ ଏକ ଦୁର୍ଗନ୍ଧ ବାହାରିବାକୁ ଲାଗିଲା; ତା'ପରେ ଦେଖିଲି ଘର କୋଣରେ ଦୁଇଟି ମୂର୍ତ୍ତି ! ବିକଟାଳ ଚେହେରା, ପେଟରୁ ଅନ୍ତନାଳୀ ସବୁ ବାହାରି ଝୁଲୁଛି; ଆଉ ମୁହଁ, ହାତ, ପାଦ ମେଡ଼ିକାଲ କଲେଜରେ ଥରେ ଯେପରି ମଣିଷର ହାଡ଼ଗୋଡ଼ ସଜା ହୋଇଥିବା ଦେଖିଥିଲି (ମାନବ–ଅସ୍ଥି–କଙ୍କାଳ) ଠିକ୍ ସେହିପରି । ସେମାନେ ମୋତେ ଅନୁନୟ କରି କହୁଛନ୍ତି, 'ଆପଣ ଏଠାରେ କାହିଁକି ଅଛନ୍ତି ? ଆପଣ ଏଠାରୁ ଚାଲିଯାଆନ୍ତୁ, ଆପଣଙ୍କ ଦର୍ଶନରେ (ନିଜ ଅବସ୍ଥା କଥା ମନେ ପଡ଼ି ବୋଧହୁଏ) ଆମର ବଡ଼ କଷ୍ଟ ହେଉଅଛି !'

ସେମାନେ ଏପରି କାକୁତିମିନତି କରୁଥିବା ସମୟରେ ରାଖାଲ ସେଠାରେ ନିଦରେ ଶୋଇଥିଲା । ତାଙ୍କର କଷ୍ଟ ହେବା ଦେଖି ବଟୁଆ ଓ ଗାମୁଛାଟା ନେଇ ଚାଲି ଆସିବାକୁ ଉଠୁଛି, ହଠାତ୍ ରାଖାଲ ଉଠିପଡ଼ି କହିଲା, 'ତୁମେ କେଉଁଆଡ଼େ ଯାଉଛ ?' ମୁଁ ତାକୁ ପରେ ସବୁ କହିବି ବୋଲି କହି ତା' ହାତ ଧରି ତଳକୁ ଓହ୍ଲାଇ ଆସିଲି ଓ ବୁଢ଼ୀକୁ (ତାଙ୍କର ସେତେବେଳେ ଖାଇବା ସରିଥାଏ) କହି ନୌକାରେ ଉଠିଲି । ସେତେବେଳେ ରାଖାଲକୁ ସବୁ କହିଲି—ଏଠାରେ ଦୁଇଟା ଭୂତ ଅଛନ୍ତି । ବଗିଚା ପାଖରେ କାମାରହାଟିର ଏକ କାରଖାନା—ଏହି କାରଖାନାର ସାହେବମାନେ ମାଂସ ଖାଇ ସାରି ଯେଉଁ ହାଡ଼ ଗୋଡ଼ ସବୁ ପକାଇ ଦେଇଥାଆନ୍ତି ତାକୁ ଶୁଙ୍ଘନ୍ତି (କାରଣ ଘ୍ରାଣ ଦ୍ୱାରା ହିଁ ସେମାନଙ୍କର ଭୋଜନ କରିବା !) ଓ ସେହି ଘରେ ରହନ୍ତି ! ବୁଢ଼ୀକୁ ଏକଥା କିଛି କହିଲି ନାହିଁ—ତାକୁ ସେହିଘରେ ହିଁ ସବୁବେଳେ ଏକୁଟିଆଁ ରହିବାକୁ ହୁଏ, ଏହା ଶୁଣି ସେ ଡରିବ ।''

* * *

### କାଶୀପୁର ବଗିଚାରେ ଠାକୁରଙ୍କର ଗୋପାଳର ମା'କୁ କ୍ଷୀର ଖୁଆଇବା ଏବଂ କହିବା ଯେ ତାଙ୍କ ମୁହଁରେ ଗୋପାଳ ଖାଇଥାନ୍ତି :

କଲିକତାର ଯେଉଁ ରାସ୍ତାଟି ବାଗବଜାରଠାରେ ଗଙ୍ଗାର କୂଳ ଦେଇ ପୋଲ ପାରି ହୋଇ ଉତ୍ତର ଆଡ଼କୁ ସିଧା ବରାହନଗର ବଜାର ପର୍ଯ୍ୟନ୍ତ ଯାଇଛି, ସେହି ରାସ୍ତା ଉପରେ ହିଁ ମୋତିଝିଲ ବା କଲିକତାର ବିଖ୍ୟାତ ଧନୀ ପରଲୋକଗତ ମୋତିଲାଲ ଶୀଲଙ୍କର ବଗିଚା ସମ୍ମୁଖସ୍ଥ ପୁଷ୍କରିଣୀ (ଝିଲ୍) ଅଛି । ଏହି ମୋତିଝିଲ୍ର ଉତ୍ତରାଂଶ ଯେଉଁଠାରେ ରାସ୍ତାରେ ମିଶିଛି ତାହାର ପୂର୍ବରେ ରାସ୍ତାର ଅପର ପାର୍ଶ୍ୱରେ ରାଣୀ କାତ୍ୟାୟନୀ (ଲାଲାବାବୁଙ୍କର ପତ୍ନୀ)ଙ୍କର ଜ୍ୱାଇଁ କୃଷ୍ଣଗୋପାଳ ଘୋଷଙ୍କର ଉଦ୍ୟାନ-ଗୃହ ଅବସ୍ଥିତ । ଏହି ବଗିଚା ଘରେ ହିଁ ଶ୍ରୀରାମକୃଷ୍ଣଦେବ ଆଠମାସ କାଳ ଅବସ୍ଥାନ କରି (୧୮୮୫ ମସିହା ଡିସେମ୍ବର ମଧ୍ୟଭାଗରୁ ୧୮୮୬ ମସିହା ଅଗଷ୍ଟ ମାସ ମଧ୍ୟ ପର୍ଯ୍ୟନ୍ତ) ଭକ୍ତମାନଙ୍କ ସ୍ଥୂଳନେତ୍ର ସମ୍ମୁଖରୁ ଅନ୍ତର୍ହିତ ହୋଇଥିଲେ । ଏହି ଉଦ୍ୟାନ ହିଁ ସେମାନଙ୍କ ପାଖରେ 'କାଶୀପୁରର ବଗିଚା' ବୋଲି ଅଭିହିତ ହୋଇ ସମସ୍ତଙ୍କ ମନରେ କେତେ ଯେ ହର୍ଷବିଷାଦ ଆଣିଦିଏ ! ପାଠକମାନେ କହିପାରନ୍ତି—ଠାକୁର ତ ସେତେବେଳେ ରୋଗ ଶଯ୍ୟାରେ, ତେଣୁ ହର୍ଷ ପୁଣି କ'ଣ ପାଇଁ ? ଆପାତଦୃଷ୍ଟିରେ ରୋଗଶଯ୍ୟା ସତ, କିନ୍ତୁ ଠାକୁରଙ୍କର ଦେବଶରୀରରେ ଏପ୍ରକାର ରୋଗର ବାହ୍ୟିକ ବିକାଶ ତାଙ୍କର ଭକ୍ତମାନଙ୍କୁ ବିଭିନ୍ନ ଶ୍ରେଣୀବଦ୍ଧ ଓ ଏକତ୍ର ସମ୍ମିଳିତ କରି କେଉଁ ଏକ ଅଦୃଷ୍ଟପୂର୍ବ ପ୍ରେମବନ୍ଧନରେ ଗୁନ୍ଥି ଦେଇଥିଲା, ତାହା କହି ବୁଝାଇ ହେବ ନାହିଁ । ଅନ୍ତରଙ୍ଗ, ବହିରଙ୍ଗ, ସନ୍ନ୍ୟାସୀ, ଗୃହୀ, ଜ୍ଞାନୀ ଭକ୍ତ—ଏସବୁ ବିଭିନ୍ନ ଶ୍ରେଣୀବିଭାଗ ଭକ୍ତମାନଙ୍କ ଭିତରେ ଏହିଠାରେ

ହିଁ ସ୍ୱୀକୃତ ହୋଇଥିଲା; ଏବଂ ଏମାନେ ସମସ୍ତେ ଯେ ଗୋଟିଏ ପରିବାରର ଅନ୍ତର୍ଗତ, ଏହି ଧାରଣାର ସୁଦୃଢ଼ ଭିତ୍ତି ଏଠାରେ ହିଁ ପ୍ରତିଷ୍ଠିତ ହୋଇଥିଲା । ଆହୁରି ମଧ୍ୟ କେତେଲୋକ ଯେ ଏଠାକୁ ଆସି ଧର୍ମାଲୋକର ଅପରୋକ୍ଷାନୁଭବ କରି ଧନ୍ୟ ହୋଇଥିଲେ, ତା'ର କଳନା କିଏ କରିବ ? ଏହିଠାରେ ହିଁ ଶ୍ରୀମାନ ନରେନ୍ଦ୍ରନାଥଙ୍କର ସାଧନାରେ ନିର୍ବିକଳ୍ପସମାଧି-ଅନୁଭବ, ଏହିଠାରେ ହିଁ ନରେନ୍ଦ୍ରପ୍ରମୁଖ ବାରଜଣ ବାଳକ ଭକ୍ତଙ୍କର ଠାକୁରଙ୍କ ଶ୍ରୀହସ୍ତରୁ ଗୈରିକବସନ-ଲାଭ, ପୁଣି ଏଠାରେ ହିଁ ୧୮୮୬ ମସିହାର ଜାନୁଆରୀ ୧ ତାରିଖ ଅପରାହ୍ଣରେ (ସମୟ ଦିନ ୩ଟାରୁ ୪ଟା ଭିତରେ)ଉଦ୍ୟାନ ପଥରେ ଶେଷଦିନ ପରିଭ୍ରମଣ କରିବାବେଳେ ଭକ୍ତବୃନ୍ଦ ସମସ୍ତଙ୍କୁ ଦେଖି ଠାକୁରଙ୍କର ଅପୂର୍ବ ଭାବାନ୍ତର ଉପସ୍ଥିତ ହୋଇଥିଲା ଏବଂ 'ମୁଁ ଆଉ ତୁମମାନଙ୍କୁ କ'ଣ କହିବି, ତୁମମାନଙ୍କର ଚୈତନ୍ୟ ହେଉ' କହି ସମସ୍ତଙ୍କର ବକ୍ଷସ୍ଥଳ ଶ୍ରୀହସ୍ତଦ୍ୱାରା ସ୍ପର୍ଶ କରି ସେ ସେମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ଧର୍ମଶକ୍ତି ସଂଚାରିତ କରିଥିଲେ ! ଦକ୍ଷିଣେଶ୍ୱରରେ ଯେପରି, ଏଠାରେ ମଧ୍ୟ ସେପରି ସ୍ତ୍ରୀ-ପୁରୁଷମାନଙ୍କର ନିତ୍ୟ ସମାଗମ ହେଉଥିଲା ! ଏଠାରେ ମଧ୍ୟ ଶ୍ରୀଶ୍ରୀମାତାଠାକୁରାଣୀ ଠାକୁରଙ୍କର ଖାଦ୍ୟ ପ୍ରସ୍ତୁତ ଆଦି ସେବାରେ ନିତ୍ୟ ନିଯୁକ୍ତା ରହୁଥିଲେ ଏବଂ ଗୋପାଳର ମାଆ ପ୍ରଭୃତି ଠାକୁରଙ୍କର ସମସ୍ତ ସ୍ତ୍ରୀ-ଭକ୍ତମାନେ ତାଙ୍କ ନିକଟକୁ ଆସି ଠାକୁର ଓ ତାଙ୍କର ଭକ୍ତମାନଙ୍କ ସେବାରେ ସହାୟତା କରୁଥିଲେ—କେହି କେହି ରାତ୍ରିଯାପନ ମଧ୍ୟ କରୁଥିଲେ । ଅତଏବ କାଶୀପୁର ବଗିଚାରେ ଭକ୍ତମାନଙ୍କର ଅପୂର୍ବ ମିଳନର କଥା ଅନୁଧାବନ କରି ଆମର ମନେହୁଏ, ଜଗଦମ୍ବା ଏକ ଅଦୃଷ୍ଟପୂର୍ବ ମହତ୍ ଉଦ୍ଦେଶ୍ୟ ସଂସାଧିତ କରିବେ ବୋଲି ହିଁ ଠାକୁରଙ୍କର ଦେବ ଶରୀରରେ ବ୍ୟାଧିର ସଞ୍ଚାର କରିଥିଲେ । ଏଠାରେ ଠାକୁରଙ୍କର ନିତ୍ୟ ନୂତନ ଲୀଳା ଏବଂ ନୂଆ ନୂଆ ଭକ୍ତମାନଙ୍କର ସମାଗମ ଦେଖି ଏବଂ ଠାକୁରଙ୍କର ସଦାନନ୍ଦମୂର୍ତ୍ତି ଓ ନିତ୍ୟ ଅଦୃଷ୍ଟପୂର୍ବ ଶକ୍ତିପ୍ରକାଶ ଦର୍ଶନ କରି ଅନେକ ପୁରାତନ ଭକ୍ତଙ୍କର ମଧ୍ୟ ମନେ ହୋଇଥିଲା ଯେ, ଠାକୁର ଲୋକକଲ୍ୟାଣ ନିମିତ୍ତ ବ୍ୟାଧିର ଛଳନା ମାତ୍ର କରୁଛନ୍ତି—ଇଚ୍ଛାମାତ୍ରେ ହିଁ ସେ ଏହି ରୋଗକୁ ଦୂରୀଭୂତ କରି ପୂର୍ବ ପରି ସୁସ୍ଥ ହୋଇଯିବେ ।

* * *

କାଶୀପୁର ବଗିଚାରେ ଠାକୁରଙ୍କର ବାର୍ଲି, ଭର୍ମିସେଲି, ସୁଜି ପ୍ରଭୃତି ତରଳ ପଦାର୍ଥ ଆହାରରେ ଦିନ ବିତୁଥିଲା । ଦିନେ ସେ ପାଲୁଅ ପଡ଼ିଥିବା କ୍ଷୀର—ଯେପରି କଲିକତାରେ ନିମନ୍ତ୍ରଣ ଘରେ ଖାଇବାକୁ ଦିଆଯାଇଥାଏ—ଖାଇବାକୁ ଇଚ୍ଛାକଲେ—ଏଥିରେ କେହି ଆପତ୍ତି କଲେ ନାହିଁ, କାରଣ କ୍ଷୀରରେ ସିଝାଇ ସୁଜି ବା ବାର୍ଲି ଯଦି ଖାଇବା ଚାଲୁଛି, ତେଣୁ ପାଲୁଅ ମିଶ୍ରିତ କ୍ଷୀର ଟିକିଏ ଖାଇଲେ

ବ୍ୟାଧି ଆଉ ଅଧିକ କ'ଣ ବଢ଼ିବ ? ଡାକ୍ତରମାନେ ମଧ୍ୟ ଅମତ ହେଲେ ନାହିଁ । ତେଣୁ ସ୍ଥିର ହେଲା, ଶ୍ରୀଯୁକ୍ତ ଯୋଗୀନ୍ଦ୍ର (ସ୍ୱାମୀ ଯୋଗାନନ୍ଦ) ପରଦିନ ଭୋର୍‌ରୁ କଲିକତା ଯାଇ ଏହିପରି କ୍ଷୀର କିଣି ଆଣିବେ ।

ଯୋଗୀନ୍ଦ୍ର ବା ଯୋଗେନ ଠିକ୍ ସମୟରେ ବାହାରିଲେ । ରାସ୍ତାରେ ଯାଉ ଯାଉ ଭାବିବାକୁ ଲାଗିଲେ, 'ବଜାରର କ୍ଷୀରରେ ପାଲୁଅ ଛଡ଼ା ଆଉ କେତେ କ'ଣ ଭେଜାଲ ମିଶିଥାଏ, ଠାକୁର ଖାଇଲେ ଅସୁଖ ବଢ଼ିବ ନାହିଁ ତ ?' ଭକ୍ତମାନେ ସମସ୍ତେ ଠାକୁରଙ୍କୁ ନିଜର ପ୍ରାଣର ପ୍ରାଣସ୍ୱରୂପ ଦେଖୁଥିଲେ, ସୁତରାଂ ସମସ୍ତଙ୍କ ମନରେ ହିଁ ଠାକୁରଙ୍କ ବେମାରି ହେବାଠାରୁ ସେହି ଗୋଟିଏ ଚିନ୍ତା ହିଁ ସବୁବେଳେ ରହୁଥିଲା । ଯୋଗେନଙ୍କର ସେଥିପାଇଁ ଏପରି ଚିନ୍ତାର ଉଦୟ ହେଲା । ପୁଣି ଭାବିଲେ, ଠାକୁରଙ୍କୁ ତ' ସେହି କଥା ପଚାରି ନାହାନ୍ତି, ଅତଏବ କୌଣସି ଭକ୍ତଦ୍ୱାରା ସେହିପରି କ୍ଷୀର ତିଆରି କରି ନେଇଗଲେ ସେ ବିରକ୍ତ ହେବେ ନାହିଁ ତ ? ଏହି ସବୁ ଭାବୁ ଭାବୁ ଯୋଗେନ ବଳରାମବାବୁଙ୍କ ଘରେ ପହଞ୍ଚିଲେ ଏବଂ ଜିଜ୍ଞାସିତ ହୋଇ ତାଙ୍କ ଘରକୁ ଆସିବାର କାରଣ କହିଲେ । ସେଠାରେ ଥିବା ଭକ୍ତମାନେ କହିଲେ, 'ବଜାରର କ୍ଷୀର କାହିଁକି ? ଆମେ ପାଲୁଅ ଦେଇ କ୍ଷୀର ତିଆରି କରିଦେବୁ; କିନ୍ତୁ ଏଓଳି ନେଇ ହେବ ନାହିଁ, କାରଣ ତିଆରି କରିବାକୁ ଡେରି ହେବ । ଅତଏବ ତୁମେ ଏଓଳି ଏଠାରେ ଖାଇ ନିଅ, ଇତି ମଧ୍ୟରେ କ୍ଷୀର ତିଆରି ହୋଇଯିବ । ଉପରବେଳା ୩ଟା ସମୟରେ ନେଇଯିବ ।' ଯୋଗେନ ମଧ୍ୟ ସେକଥାରେ ସମ୍ମତ ହୋଇ ସେପରି କଲେ ଏବଂ ପ୍ରାୟ ଚାରିଟା ବେଳକୁ କ୍ଷୀର ନେଇ କାଶୀପୁରରେ ପହଞ୍ଚିଲେ ।

ଏଣେ ଠାକୁର ମଧ୍ୟାହ୍ନରେ କ୍ଷୀର ଖାଇବେ ବୋଲି ଅନେକକ୍ଷଣ ଅପେକ୍ଷା କରି ଶେଷରେ ସେ ଯାହା ଖାଆନ୍ତି ସେହି ଖାଦ୍ୟ ହିଁ ଖାଇଲେ । ପରେ ଯୋଗେନ ଆସି ପହଞ୍ଚିଲା ପରେ ସମସ୍ତ କଥା ଶୁଣି ବିଶେଷ ବିରକ୍ତି ପ୍ରକାଶ କରି ଯୋଗେନଙ୍କୁ କହିଲେ, ''ତୋତେ ବଜାରରୁ କ୍ଷୀର କିଣି ଆଣିବାକୁ କୁହାଯାଇଥିଲା, ବଜାରର କ୍ଷୀର ଖାଇବାର ଇଚ୍ଛା ଥିଲା, ତୁ କାହିଁକି ଭକ୍ତଙ୍କ ଘରକୁ ଯାଇ ସେମାନଙ୍କୁ କଷ୍ଟ ଦେଇ ଏହିପରି କ୍ଷୀର ନେଇଆସିଲୁ ? ତା'ପରେ ସେହି କ୍ଷୀର ଗାଢ଼, ଗୁରୁପାକ, ତାହା କ'ଣ ଖାଇହେବ—ତାହା ମୁଁ ଖାଇବି ନାହିଁ ।'' ବାସ୍ତବିକ୍ ସେ ତାହା ସ୍ପର୍ଶ ମଧ୍ୟ କଲେ ନାହିଁ; ଶ୍ରୀଶ୍ରୀମା'ଙ୍କୁ ତାହା ଗୋପାଳର ମା'କୁ ଖୁଆଇବାକୁ କହି, କହିଲେ, ''ଭକ୍ତଙ୍କ ଦେବା ଜିନିଷ, ତାଙ୍କ ଭିତରେ ଗୋପାଳ ଅଛନ୍ତି, ସେ ଖାଇଲେ ହିଁ ମୋର ଖାଇବା ହେବ ।''

* * *

## ଗୋପାଳର ମା'ଙ୍କର ବିଶ୍ୱରୂପ ଦର୍ଶନ :

ଠାକୁରଙ୍କର ଅଦର୍ଶନ ହେବା ଯୋଗୁଁ ଗୋପାଳର ମା'ଙ୍କର ଅଶାନ୍ତିର ସୀମା ରହିଲା ନାହିଁ । ଅନେକ ଦିନ ସେ କାମାରହାଟି ଛାଡ଼ି କେଉଁଠାକୁ ଗଲେ ନାହିଁ । ଏକୁଟିଆ ନିର୍ଜନରେ ରହୁଥିଲେ । ପରେ ପୁନରାୟ ଠାକୁରଙ୍କର ଦର୍ଶନାଦି ପାଇ ସେହି ଭାବର ଶାନ୍ତି ହୋଇଥିଲା । ଠାକୁରଙ୍କର ଅଦର୍ଶନ ପରେ ମଧ୍ୟ ଗୋପାଳର ମା'ଙ୍କର ଏପରି ଦର୍ଶନାଦିର କଥା ଆମେ ଅନେକ ଶୁଣିଛୁ । ତନ୍ମଧ୍ୟରେ ଥରେ ଗଙ୍ଗାର ଆର ପାରିରେ 'ମାହେଶ'ର ରଥଯାତ୍ରା ଦେଖିବାକୁ ଯାଇ ସର୍ବଭୂତରେ ଶ୍ରୀଗୋପାଳଙ୍କର ଦର୍ଶନ ପାଇ ତାଙ୍କର ବିଶେଷ ଆନନ୍ଦ ହୋଇଥିଲା । ସେ କହୁଥିଲେ, ସେତେବେଳେ ରଥ, ରଥ ଉପରେ ଶ୍ରୀଶ୍ରୀଜଗନ୍ନାଥଦେବ, ଯେଉଁମାନେ ରଥ ଟାଣୁଛନ୍ତି, ସେହି ଅପାର ଜନସଂଘ ସମସ୍ତଙ୍କୁ ହିଁ ସେ ଗୋପାଳରୂପରେ ଦେଖିଥିଲେ ! —ପ୍ରଭେଦ କେବଳ ଏତିକି ଯେ ଗୋପାଳ ଭିନ୍ନ ଭିନ୍ନ ରୂପ ଧାରଣ କରି ରହିଛନ୍ତି·ମାତ୍ର ! ଏହିପରି ଶ୍ରୀଭଗବାନଙ୍କର ବିଶ୍ୱରୂପର ଦର୍ଶନାଭାସ ପାଇ ଭାବରେ ପ୍ରେମରେ ଉନ୍ମତ୍ତ ହୋଇ ତାଙ୍କର ଆଉ ବାହ୍ୟଜ୍ଞାନ ରହି ନ ଥିଲା । ଜନୈକା ସ୍ତ୍ରୀବନ୍ଧୁଙ୍କ ନିକଟରେ ସେ ନିଜେ ଏକଥା କହିଲା ବେଳେ କହିଥିଲେ, ''ସେତେବେଳେ ମୋର ହୋସ୍ ନ ଥିଲା, ନାଚି କୁଦି ସେସ୍ଥାନକୁ କୁରୁକ୍ଷେତ୍ର କରିଥିଲି ।''

## ବରାହନଗର ମଠରେ ଗୋପାଳର ମା :

ଏହି ସମୟଠାରୁ ମନରେ କିଛି ମାତ୍ର ଅଶାନ୍ତି ହେଲେ ହିଁ ଗୋପାଳର ମା' ବରାହନଗର ମଠକୁ ଠାକୁରଙ୍କର ସନ୍ନ୍ୟାସୀ ଭକ୍ତମାନଙ୍କ ନିକଟକୁ ଆସୁଥିଲେ ଏବଂ ଆସିଲେ ହିଁ ଶାନ୍ତି ପାଉଥିଲେ । ଯେଉଁଦିନ ସେ ମଠକୁ ଆସନ୍ତି ସେଦିନ ସନ୍ନ୍ୟାସୀ ଭକ୍ତମାନେ ତାଙ୍କୁ ହିଁ ଠାକୁରଙ୍କୁ ଭୋଗ ଲଗାଇ ଖୁଆଇବା ପାଇଁ ଅନୁରୋଧ କରୁଥିଲେ । ଗୋପାଳର ମା' ମଧ୍ୟ ଆନନ୍ଦର ସହିତ ଗୋଟିଏ ଦୁଇଟି ତରକାରୀ ନିଜ ହାତରେ ରାନ୍ଧି ଠାକୁରଙ୍କୁ ଖୁଆଉଥିଲେ । ମଠଟି ଯେତେବେଳେ ଆଲମବଜାରରେ ଓ ପରେ ଗଙ୍ଗା ଅପରପାର୍ଶ୍ୱରେ ନୀଳାମ୍ବରବାବୁଙ୍କ ଘରକୁ ଉଠାଇ ନିଆଯାଇଥିଲା, ସେତେବେଳେ ମଧ୍ୟ ଗୋପାଳର ମା ସେହି ସେହି ସ୍ଥାନମାନଙ୍କରେ ପହଞ୍ଚି ସାରା ଦିନ ରହି ବେଳେ ବେଳେ ଆନନ୍ଦ କରୁଥିଲେ, କେବେ କେବେ ଥରେ ଅଧେ ରାତ୍ରିଯାପନ ମଧ୍ୟ କରିଥିଲେ ।

## ପାଶ୍ଚାତ୍ୟ ମହିଳାମାନଙ୍କ ସହିତ ଗୋପାଳର ମା' :

ସ୍ୱାମୀ ବିବେକାନନ୍ଦଙ୍କର ବିଲାତରୁ ପ୍ରତ୍ୟାଗମନ ପରେ ସାରା (Mrs Sara C. Bull), ଜୟା[୧] (Miss J. Macleod) ଓ ନିବେଦିତା ଯେତେବେଳେ ଭାରତ ଆସିଥିଲେ ସେତେବେଳେ ଥରେ ସେମାନେ ଗୋପାଳର ମା'ଙ୍କୁ ଦର୍ଶନ କରିବାକୁ କାମାରହାଟି ଯାଇଥିଲେ ଏବଂ ତାଙ୍କର କଥା ଓ ବ୍ୟବହାରରେ ବିଶେଷ ଆପ୍ୟାୟିତ ହୋଇଥିଲେ ! ଆମର ମନେଅଛି, ଗୋପାଳର ମା' ସେଦିନ ତାଙ୍କ ଗୋପାଳକୁ ସେମାନଙ୍କ ଭିତରେ ଅବସ୍ଥିତ ଦେଖି ଚିବୁକ ଧରି ସେମାନଙ୍କୁ ସସ୍ନେହରେ ଚୁମ୍ବନ କରିଥିଲେ; ନିଜ ବିଛଣାରେ ବସାଇ ମୁଢ଼ି, ନଡ଼ିଆକୋରା, ପ୍ରଭୃତି ଯାହାସବୁ ଘରେ ଥିଲା ସେସବୁ ଖାଇବାକୁ ଦେଇଥିଲେ ଓ ସେମାନଙ୍କର ପ୍ରଶ୍ନରେ ତାଙ୍କର ଦର୍ଶନାଦିର କଥା ମଧ୍ୟ ସେମାନଙ୍କୁ କିଛି କିଛି କହିଥିଲେ । ସେମାନେ ତାହା ସାନନ୍ଦରେ ଖାଇ ଓ ତାଙ୍କର ସେହିସବୁ କଥା ଶ୍ରବଣ କରି ମୋହିତ ହୋଇଥିଲେ ଏବଂ ସେହି ମୁଢ଼ିରୁ କିଛି ଆମେରିକା ନେବେ ବୋଲି ମାଗି ନେଇଥିଲେ ।

## ଭଗିନୀ ନିବେଦିତାଙ୍କ ଭବନରେ ଗୋପାଳର ମା' :

ଗୋପାଳର ମା'ଙ୍କର ଅଦ୍ଭୁତ ଜୀବନ ଶୁଣି ଭଗିନୀ ନିବେଦିତା ଏପରି ମୋହିତ ହୋଇଥିଲେ ଯେ, ୧୯୦୪ ମସିହାରେ ଯେତେବେଳେ ଗୋପାଳର ମା'ଙ୍କର ଶରୀର ଅସୁସ୍ଥ ଓ ବିଶେଷ ଅକର୍ମଣ୍ୟ ହେବାରୁ ତାଙ୍କୁ ବାଗବଜାରସ୍ଥ ବଳରାମବାବୁଙ୍କ ଘରକୁ ଅଣାହୋଇଥିଲା, ସେତେବେଳେ ସେ ତାଙ୍କୁ ନିଜର ବାଗବଜାରସ୍ଥ ଘରକୁ (୧୭ନମ୍ବର ବସୁପଡ଼ା) ନେଇ ରଖିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ଗୋପାଳର ମା' ମଧ୍ୟ ତାଙ୍କର ଆଗ୍ରହ ଦେଖି ସେଠାକୁ ଯାଇଥିଲେ; କାରଣ ପୂର୍ବରୁ ହିଁ କୁହାହୋଇଛି, ଧୀରେ ଧୀରେ ତାଙ୍କର ସମସ୍ତ ବିଷୟରେ ଦ୍ୱିଧା ଶ୍ରୀଗୋପାଳଜୀ ଦୂରୀଭୂତ କରିଦେଇଥିଲେ । ଏହାର ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଆଉ ଗୋଟିଏ କଥା ମନେପଡୁଛି—ଦକ୍ଷିଣେଶ୍ୱରରେ ଶ୍ରୀଯୁକ୍ତ ନରେନ୍ଦ୍ରନାଥ ଦିନେ ମା'କାଳୀଙ୍କର ପ୍ରସାଦି ମାଂସ ଖାଇ ହାତ ଧୋଇବାକୁ ଯିବାପରେ ଠାକୁର ଜଣୈକା ସ୍ତ୍ରୀ-ଭକ୍ତଙ୍କୁ ସେହି ସ୍ଥାନ ପରିଷ୍କାର କରିବାକୁ କହିଲେ । ଗୋପାଳର ମା' ସେତେବେଳେ ସେଠାରେ ଠିଆ ହୋଇଥିଲେ । ଠାକୁରଙ୍କର ଏକଥା ଶୁଣିବା ମାତ୍ରେ ସେ ସମସ୍ତ ହାଡ଼ ଉଚ୍ଛିଷ୍ଟାଦି ତତ୍‌କ୍ଷଣାତ୍

---

୧. ପରମାରାଧ୍ୟା ଶ୍ରୀଶ୍ରୀମାତାଠାକୁରାଣୀ ଏମାନଙ୍କୁ ଏହି ନାମରେ ଡାକୁଥିଲେ ଏବଂ ଏମାନଙ୍କର ସରଳତା ଓ ଭକ୍ତି, ବିଶ୍ୱାସାଦି ଦେଖି ବିଶେଷ ପ୍ରୀତା ହେଉଥିଲେ ।

ନିଜ ହାତରେ ଉଠାଇ ସଫା କରିଦେଇଥିଲେ । ଠାକୁର ଏହା ଦେଖି ଆନନ୍ଦରେ ପୂର୍ବୋକ୍ତ ସ୍ତ୍ରୀ-ଭକ୍ତଙ୍କୁ କହିଲେ, ''ଦେଖ, ଦେଖ, ଦିନକୁ ଦିନ କିପରି ଉଦାର ହୋଇଉଠୁଛି !''

### ଗୋପାଳର ମା'ଙ୍କ ଶରୀର ତ୍ୟାଗ :

ଭଗିନୀ ନିବେଦିତାଙ୍କ ଘରେ ସେହିଦିନଠାରୁ ଗୋପାଳର ମା' ବାସ କରିବାକୁ ଲାଗିଲେ । ସ୍ୱାମୀଜୀଙ୍କର ମାନସ-କନ୍ୟା ନିବେଦିତା ମାତୃବତ୍ ତାଙ୍କର ସେବା କରିବାକୁ ଲାଗିଲେ । ତାଙ୍କର ଆହାରର ବନ୍ଦୋବସ୍ତ ନିକଟବର୍ତ୍ତୀ କୌଣସି ବ୍ରାହ୍ମଣ ପରିବାରରେ କରାହେଲା । ଖାଇବା ସମୟରେ ଗୋପାଳର ମା' ସେଠାକୁ ଯାଇ ଭାତ ଖାଇ ଆସୁଥିଲେ ଏବଂ ରାତିରେ ଲୁଚି ଇତ୍ୟାଦି ସେହି ବ୍ରାହ୍ମଣ ପରିବାରର କେହି ସ୍ୱୟଂ ଗୋପାଳର ମା'ଙ୍କ ଘରେ ପହଞ୍ଚାଇ ଦେଉଥିଲେ । ଏହିପରି ପ୍ରାୟ ଦୁଇ ବର୍ଷ ରହି ଗୋପାଳର ମା' ଗଙ୍ଗାଗର୍ଭରେ ଶରୀର ତ୍ୟାଗ କଲେ । ତାଙ୍କୁ ଗଙ୍ଗା କୂଳରେ ରଖିବା ସମୟରେ ନିବେଦିତା ଫୁଲ, ଚନ୍ଦନ, ମାଲ୍ୟାଦି ଦେଇ ତାଙ୍କର ଶଯ୍ୟାଦି ସ୍ୱହସ୍ତରେ ସୁନ୍ଦରଭାବେ ଢାଙ୍କି ସଜାଇ ଦେଇ ଏକ କୀର୍ତ୍ତନଦଳ ଆନୟନ କଲେ ଏବଂ ସ୍ୱୟଂ ଅନାବୃତ ପଦରେ ସାଶ୍ରୁନୟନରେ ସେମାନଙ୍କ ସହିତ ଗଙ୍ଗାତୀର ପର୍ଯ୍ୟନ୍ତ ଗମନ କରି ଯେଉଁ ଦୁଇଦିନ ଗଙ୍ଗାତୀରରେ ଗୋପାଳର ମା' ଜୀବିତା ଥିଲେ, ସେହି ଦୁଇଦିନ ସେଠାରେ ହିଁ ରାତ୍ରିଯାପନ କରିଥିଲେ । ୧୯୦୬ ମସିହା ଜୁଲାଇ ଆଠ ତାରିଖ (ବଙ୍ଗାବ୍ଦ ୧୩୧୩ ସାଲ ଆଷାଢ଼ ମାସ ୨୪) ଦିନ ବ୍ରାହ୍ମମୁହୂର୍ତ୍ତରେ ଉଦୀୟମାନ ସୂର୍ଯ୍ୟଙ୍କର ରକ୍ତିମ ଆଭାରେ ଯେତେବେଳେ ପୂର୍ବଗଗନ ରଞ୍ଜିତ ହୋଇ ଅପୂର୍ବ ଶ୍ରୀ ଧାରଣ କରିଥିଲା ଏବଂ ନୀଳାମ୍ବର ତଳେ ଦୁଇ-ଚାରୋଟି କ୍ଷୀଣପ୍ରଭା ତାରକା କ୍ଷୀଣଜ୍ୟୋତି ଚକ୍ଷୁ ସଦୃଶ ପୃଥିବୀ ଆଡ଼କୁ ଦୃଷ୍ଟିପାତ କରିରହିଥିଲେ, ଯେତେବେଳେ ଶୈଳସୁତା ଭାଗୀରଥୀ ଜୁଆରରେ ପୂର୍ଣ୍ଣା ହୋଇ ଧବଳ ତରଙ୍ଗରେ ଦୁଇକୂଳ ପ୍ଲାବିତ କରି ମୃଦୁମଧୁର ନାଦରେ ପ୍ରବାହିତ ହେଉଥିଲା, ସେହି ସମୟରେ ଗୋପାଳର ମା'ଙ୍କ ଶରୀର ସେହି ତରଙ୍ଗରେ ଅର୍ଦ୍ଧନିମଜ୍ଜିତ ଅବସ୍ଥାରେ ସ୍ଥାପିତ କରାହେଲା ଏବଂ ତାଙ୍କର ପୂତ ପଞ୍ଚପ୍ରାଣ ଶ୍ରୀଭଗବାନଙ୍କର ଅଭୟ ପଦରେ ମିଳିତ ହେଲା ଓ ସେ ଅଭୟଧାମ ପ୍ରାପ୍ତ ହେଲେ ।

### ଗୋପାଳର ମା'ଙ୍କ କଥାର ଉପସଂହାର :

ଆତ୍ମୀୟମାନେ କେହି ନିକଟରେ ନ ଥିବାରୁ ବେଲୁଡ଼ ମଠର ଜନୈକ ବ୍ରାହ୍ମଣ ବ୍ରହ୍ମଚାରୀ ଗୋପାଳର ମା'ଙ୍କର ମୃତ ଶରୀର ସଂସ୍କାର କରି ଦ୍ୱାଦଶ ଦିନ

ନିୟମ ରକ୍ଷାକଲେ । ଶୋକ ସନ୍ତପ୍ତହୃଦୟା ଭଗିନୀ ନିବେଦିତା ସେହି ଦ୍ୱାଦଶ ଦିନ ଗତ ହେଲା ପରେ ଗୋପାଳର ମା'ଙ୍କର ପରିଚିତା ପଲ୍ଲୀସ୍ଥ ଅନେକଗୁଡ଼ିଏ ସ୍ତ୍ରୀଲୋକଙ୍କୁ ନିଜର ସ୍କୁଲଘରକୁ ନିମନ୍ତ୍ରଣ କରି କୀର୍ତ୍ତନ ଓ ଉତ୍ସବ ଆଦିର ବନ୍ଦୋବସ୍ତ କରିଥିଲେ ।

ଗୋପାଳର ମା' ଶ୍ରୀରାମକୃଷ୍ଣଦେବଙ୍କ ଯେଉଁ ଛବିଟିକୁ ଏତେ ଦିନ ପୂଜା କରୁଥିଲେ, ତାହା ବେଲୁଡ଼ ମଠରେ ଠାକୁରଙ୍କ ଘରେ ରଖିବା ପାଇଁ ଦେଇଗଲେ ଏବଂ ଏହି ଠାକୁରଙ୍କ ସେବାପାଇଁ ଦୁଇ ଶହ ଟଙ୍କା ମଧ୍ୟ ତା' ସହିତ ଦେଇ ଯାଇଥିଲେ ।

ଶରୀର ତ୍ୟାଗର ଦଶ ବାର ବର୍ଷ ପୂର୍ବରୁ ସେ ନିଜକୁ ସନ୍ନ୍ୟାସିନୀ ବୋଲି ମନେ କରୁଥିଲେ ଏବଂ ସର୍ବଦା ଗୈରିକ ବସ୍ତ୍ର ଧାରଣ କରୁଥିଲେ ।

# ପରିଶିଷ୍ଟ

## ଠାକୁରଙ୍କର ମନୁଷ୍ୟଭାବ

## ଭଗବାନ ଶ୍ରୀରାମକୃଷ୍ଣଦେବଙ୍କର ବାସ୍ତରୀତମ ଜନ୍ମୋତ୍ସବ ଉପଲକ୍ଷେ ୧୩୧୪ ବଙ୍ଗାବ୍ଦ ଚୈତ୍ର ଛଅ ଦିନ (୧୯୦୮ ଖ୍ରୀଷ୍ଟାବ୍ଦ) ବେଲୁଡ଼ ମଠରେ ଆହୂତ ସଭାରେ ପାଠକରାଯାଇଥିବା ପ୍ରବନ୍ଧ

### ଶ୍ରୀରାମକୃଷ୍ଣଦେବଙ୍କର ଯୋଗବିଭୂତି କଥା ଶୁଣି ହିଁ ସାଧାରଣ ଲୋକଙ୍କର ତାଙ୍କ ପ୍ରତି ଭକ୍ତି :

ଭଗବାନ ଶ୍ରୀରାମକୃଷ୍ଣଦେବଙ୍କର ଦେବଭାବ ସମ୍ବନ୍ଧରେ ଅନେକ ଲୋକ ଅନେକ କଥା କହିଥାଆନ୍ତି; ଏପରିକି, ଅନେକଙ୍କର ଶ୍ରଦ୍ଧା, ବିଶ୍ୱାସ ଏବଂ ନିର୍ଭରତାର କାରଣ ଅନୁସନ୍ଧାନ କଲେ ତାଙ୍କର ଅତିମାନବୀୟ ଯୋଗବିଭୂତିଗୁଡ଼ିକ ହିଁ ଏହାର ମୂଳରେ ଦେଖିବାକୁ ମିଳେ । କାହିଁକି ତାଙ୍କୁ ତୁମେ ମାନ ? —ଏହି ପ୍ରଶ୍ନର ଉତ୍ତରରେ ବକ୍ତା ପ୍ରାୟତଃ ହିଁ କହିଥାଆନ୍ତି ଯେ, ଶ୍ରୀରାମକୃଷ୍ଣଦେବ ବହୁଦୂରର ଘଟଣାବଳୀ ଭାଗିରଥୀତୀରରେ ଦକ୍ଷିଣେଶ୍ୱରର-ମନ୍ଦିରରେ ବସି ଦେଖିପାରୁଥିଲେ, ସ୍ପର୍ଶ କରି କଠିନ ଶାରୀରିକ ବ୍ୟାଧିସମୂହ ବେଳେ ବେଳେ ଆରାମ କରିଛନ୍ତି, ଦେବତାଙ୍କ ସହିତ ତାଙ୍କର ସର୍ବଦା ବାକ୍ୟାଳାପ ହେଉଥିଲା ଏବଂ ତାଙ୍କର ବାକ୍ୟ ଏତେଦୂର ଅମୋଘ ଥିଲା ଯେ, ତାଙ୍କ ମୁଖରୁ କୌଣସି ଅସମ୍ଭବ କଥା ବାହାରିଲେ ମଧ୍ୟ ବହିଃପ୍ରକୃତିର ଘଟଣାବଳୀ ଠିକ୍ ସେହିଭାବରେ ପରିବର୍ତ୍ତିତ ଏବଂ ନିୟମିତ ହେଉଥିଲା । ଦୃଷ୍ଟାନ୍ତସ୍ୱରୂପ କୁହାଯାଇପାରେ ଯେ, ରାଜଦ୍ୱାରରେ ପ୍ରାଣଦଣ୍ଡ ଆଦେଶ ପ୍ରାପ୍ତ ବ୍ୟକ୍ତି ମଧ୍ୟ ତାଙ୍କର କୃପାବିନ୍ଦୁ ଓ ଆଶୀର୍ବାଦ-ଲାଭରେ ଆସନ୍ନ ମୃତ୍ୟୁରୁ ରକ୍ଷା ପାଇଥିଲେ ଏବଂ ବିଶେଷ ସମ୍ମାନିତ ହୋଇଥିଲେ; ଅଥବା କେବଳ ନାଲି ଫୁଲ ଫୁଟୁଥିବା ବୃକ୍ଷରେ ଶ୍ୱେତ କୁସୁମର ମଧ୍ୟ ଆବିର୍ଭାବ ହୋଇଥିଲା, ଇତ୍ୟାଦି ।

ଅଥବା କହନ୍ତି ଯେ, ସେ ମନ କଥା ବୁଝିପାରୁଥିଲେ, ସେ ତୀକ୍ଷ୍ଣଦୃଷ୍ଟି ସହାୟରେ ପ୍ରତ୍ୟେକ ମାନବଶରୀରର ସ୍ଥୂଳ ଆବରଣ ଭେଦ କରି ତା'ର ମନର ଚିନ୍ତା, ଗଠନ ଏବଂ ପ୍ରବୃତ୍ତିସମୂହ ମଧ୍ୟ ଦେଖିପାରୁଥିଲେ, ତାଙ୍କର କୋମଳ କରସ୍ପର୍ଶମାତ୍ରେ ହିଁ ଚଞ୍ଚଳଚିତ୍ତ ଭକ୍ତର ଚକ୍ଷୁରେ ଇଷ୍ଟମୂର୍ତ୍ତି ଆଦିର ଆବିର୍ଭାବ ହେଉଥିଲା, ଅଥବା ଗଭୀର ଧ୍ୟାନ ଏବଂ ଅଧିକାରୀବିଶେଷରେ ନିର୍ବିକଳ୍ପ ସମାଧିର ଦ୍ୱାର ପର୍ଯ୍ୟନ୍ତ ଉନ୍ମୁକ୍ତ ହେଉଥିଲା ।

କେହି କେହି ପୁଣି କହିଥାଆନ୍ତି ଯେ, କାହିଁକି ତାଙ୍କୁ ମାନେ, ତାହା ମୁଁ ଜାଣେ ନାହିଁ, କପରି ଏକ ଅଦ୍ଭୁତ ଜ୍ଞାନ ଏବଂ ପ୍ରେମର ସମ୍ପୂର୍ଣ୍ଣ ଆଦର୍ଶ ଯେ

ତାଙ୍କଠାରେ ଦେଖିଅଛି, ତାହା ଜୀବିତ ବା ପରିଚିତ ମନୁଷ୍ୟକୁଳର ତ' କଥା ହିଁ ନାହିଁ, ବେଦପୁରାଣାଦିଗ୍ରନ୍ଥସମୂହରେ ଉଲ୍ଲିଖିତ, ଜଗତପୂଜ୍ୟ ଆଦର୍ଶସମୂହରେ ମଧ୍ୟ ଦେଖିବାକୁ ପାଏ ନାହିଁ !—ସେମାନେ ମଧ୍ୟ ତାଙ୍କ ପାଖରେ ଆମ ଚକ୍ଷୁରେ ହୀନଜ୍ୟୋତିଃ ହୋଇଯାଆନ୍ତି । ଏହା ମୋର ମନର ଭ୍ରମ କି ନୁହେଁ ତାହା କହିବାକୁ ଅକ୍ଷମ, କିନ୍ତୁ ମୋର ଚକ୍ଷୁ ସେହି ଉଜ୍ଜ୍ୱଳ ପ୍ରଭାରେ ଝଲସି ଯାଇଅଛି ଏବଂ ମନ ତାଙ୍କର ପ୍ରେମରେ ଚିରକାଳ ପାଇଁ ମଗ୍ନ ହୋଇଅଛି, ଫେରାଇ ଆଣିବାକୁ ଚେଷ୍ଟା କଲେ ମଧ୍ୟ ଫେରେ ନାହିଁ, ବୁଝାଇଲେ ମଧ୍ୟ ବୁଝେ ନାହିଁ; ଜ୍ଞାନ ତର୍କ ଯୁକ୍ତି ଯେପରି କେଉଁଠି ଭାସିଯାଇଛି । ଏତିକି ମାତ୍ର ମୁଁ କହିବାକୁ ସକ୍ଷମ—

''ଦାସ ତୁମ ଜନମେ ଜନମେ ଆହେ ଦୟାନିଧି !
ତବ ଗତି ଜଣା ନାହିଁ,
ମମ ଗତି—ତାହା ମଧ୍ୟ ନାହିଁ ଜଣା ।
କେ ବା ଚାହେଁ ଜାଣିବାରେ ?
ଭୁକ୍ତି ମୁକ୍ତି ଭକ୍ତି ଆଦି ଯେତେ,
ଜପ-ତପ ସାଧନ-ଭଜନ,
ଆଜ୍ଞା ତବ ଦେଇଅଛି ତଡ଼ି,
ଅଛି ମାତ୍ର ଜଣାଜଣି-ଆଶା,
ତାହା ମଧ୍ୟ ପ୍ରଭୁ କର ଦୂର ।''

—ସ୍ୱାମୀ ବିବେକାନନ୍ଦ

ଅତଏବ ଦେଖାଯାଉଛି ଯେ, ଶେଷୋକ୍ତ ଅଳ୍ପସଂଖ୍ୟକ ବ୍ୟକ୍ତିଙ୍କ କଥା ଛାଡ଼ିଦେଲେ ଅନ୍ୟାନ୍ୟ ସାଧାରଣ ଲୋକ ସ୍ଥୂଳ ବାହ୍ୟିକ ବିଭୂତି ଅଥବା ସୂକ୍ଷ୍ମ ମାନସିକ ବିଭୂତି ନିମିତ୍ତ ହିଁ ତାଙ୍କୁ ଭକ୍ତି, ବିଶ୍ୱାସ ଓ ନିର୍ଭର କରିଥାଆନ୍ତି । ସ୍ଥୂଳଦୃଷ୍ଟି ମାନବ ମନେକରେ ଯେ, ତାଙ୍କୁ ମାନିଲେ ତାହାର ମଧ୍ୟ ରୋଗ ଆଦି ଆରୋଗ୍ୟ ହେବ, ଅଥବା ତାହାର ସଙ୍କଟ ବିପଦାଦି ସମୟରେ ବାହ୍ୟ ଘଟଣାସମୂହ ତାହାର ଅନୁକୂଳରେ ନିୟମିତ ହେବ । ସ୍ପଷ୍ଟ ସ୍ୱୀକାର ନ କଲେ ମଧ୍ୟ ତାହାର ମନ ଭିତରେ ଯେ ଏହି ସ୍ୱାର୍ଥପରତାର ସ୍ରୋତ ପ୍ରବାହିତ ରହିଅଛି, ତାହା ଦେଖିବାକୁ ବିଳମ୍ବ ହୁଏ ନାହିଁ ।

ଦ୍ୱିତୀୟଶ୍ରେଣୀ ମଧ୍ୟଗତ କିଞ୍ଚିତ୍ ସୂକ୍ଷ୍ମଦୃଷ୍ଟିସମ୍ପନ୍ନ ମାନବ ମଧ୍ୟ ତାଙ୍କର କୃପାରେ ଦୂରଦର୍ଶନ ଆଦି ବିଭୂତି ଲାଭ କରିବେ, ତାଙ୍କ ସାଙ୍ଗୋପାଙ୍ଗମଧ୍ୟରେ ପରିଗଣିତ ହୋଇ ଗୋଲୋକାଦି ସ୍ଥାନରେ ବାସ କରିବେ ଅଥବା ଆଉ କିଞ୍ଚିତ୍ ସମୁନ୍ନତ ଦୃଷ୍ଟି ହେଲେ ସମାଧିସ୍ଥ ହୋଇ ଜନ୍ମ-ଜରାଦି ବନ୍ଧନରୁ ମୁକ୍ତିଲାଭ କରିବେ, ଏଥିପାଇଁ ତାଙ୍କୁ ମାନିଥାଆନ୍ତି । ନିଜର ପ୍ରୟୋଜନସିଦ୍ଧି ଯେ ଏହି ବିଶ୍ୱାସ ମୂଳରେ ବର୍ତ୍ତମାନ, ଏହା ବୁଝିବାକୁ ବିଳମ୍ବ ହୁଏ ନାହିଁ ।

**ସତ୍ୟ ହେଲେ ମଧ ସେହି ସମସ୍ତ ଆଲୋଚନା ଆମର ଉଦ୍ଦେଶ୍ୟ ନୁହେଁ, କାରଣ ସକାମଭକ୍ତି ଉନ୍ନତିର ବାଧକ ଅଟେ :**

ଶ୍ରୀରାମକୃଷ୍ଣଦେବଙ୍କର ସେହିପ୍ରକାର ଦୈବବିଭୂତିଗୁଡ଼ିକର ଅନେକ ନିଦର୍ଶନ ପ୍ରାପ୍ତ ହେଲେ ମଧ ଅଥବା ନିଜ ନିଜ ଅଭୀଷ୍ଟସିଦ୍ଧି-ପ୍ରୟୋଜନରୂପକ ସକାମ ଭକ୍ତି ମଧ ତାଙ୍କଠାରେ ଅର୍ପିତ ହୋଇ ଅଶେଷ ମଙ୍ଗଳର କାରଣ ହୁଏ, ଏବିଷୟରେ ସନ୍ଦିହାନ ନ ହେଲେ ମଧ ସେସମସ୍ତ ବିଷୟର ଆଲୋଚନା ଆଜିକାର ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ; ତାଙ୍କର ମନୁଷ୍ୟଭାବର ଚିତ୍ର କିଞ୍ଚିତ୍ ଅଙ୍କିତ କରିବା ପାଇଁ ଚେଷ୍ଟା କରିବା ହିଁ ଆଜି ଆମର ଉଦ୍ଦେଶ୍ୟ ।

ସକାମ ଭକ୍ତି—ଅର୍ଥାତ୍ ନିଜର କୌଣସି ପ୍ରକାର ଅଭାବ ପୂରଣ ପାଇଁ ଭକ୍ତି, ଭକ୍ତଙ୍କୁ ସତ୍ୟଦୃଷ୍ଟିର ଉଚ୍ଚ ସୋପାନକୁ ଉଠିବାକୁ ଦିଏ ନାହିଁ । ସ୍ୱାର୍ଥପରତା ସବୁ ସମୟରେ ଭୟ ଜନ୍ମାଇଥାଏ ଏବଂ ସେହି ଭୟ ମାନବକୁ ଦୁର୍ବଳରୁ ଦୁର୍ବଳତର କରିପକାଏ । ସ୍ୱାର୍ଥଲାଭ ମଧ ମାନବମନରେ ଅହଂକାର ଏବଂ ବେଳେ ବେଳେ ଆଳସ୍ୟବୃଦ୍ଧି କରାଇ ତାର ଚକ୍ଷୁ ଆବୃତ କରେ ଏବଂ ସେଥିପାଇଁ ସେ ଯଥାର୍ଥ ସତ୍ୟଦର୍ଶନରେ ସମର୍ଥ ହୋଇ ନ ଥାଏ । ଏଥିପାଇଁ ହିଁ ଶ୍ରୀରାମକୃଷ୍ଣଦେବ ତାଙ୍କର ଭକ୍ତମାନଙ୍କ ଭିତରେ ଯେପରି ସେହି ଦୋଷ ପ୍ରବେଶ ନ କରିବ, ସେବିଷୟରେ ବିଶେଷ ଲକ୍ଷ୍ୟ ରଖୁଥିଲେ । ଧ୍ୟାନାଦି ଅଭ୍ୟାସରେ ଦୂରଦର୍ଶନ ଆଦି କୌଣସି ପ୍ରକାର ମାନସିକ ଶକ୍ତିର ନୂତନ ବିକାଶ ହୋଇଅଛି ଜାଣିଲେ ହିଁ କାଳେ ଏହା ଦ୍ୱାରା ଭକ୍ତର ମନରେ ଅହଂକାର ପ୍ରବେଶ କରି ତାହାକୁ ଭଗବାନ-ଲାଭରୂପକ ଉଦ୍ଦେଶ୍ୟରୁ ଦୂର କରିଦେବ, ସେଥିପାଇଁ ସେ ତାଙ୍କୁ କିଛିଦିନ ଧ୍ୟାନ କରିବାକୁ ନିଷେଧ କରୁଥିଲେ, ଏହା ବହୁବାର ପ୍ରତ୍ୟକ୍ଷ ହୋଇଅଛି । ସେହି ପ୍ରକାର ବିଭୂତିସମ୍ପନ୍ନ ହେବା ହିଁ ଯେ ମାନବ ଜୀବନର ଉଦ୍ଦେଶ୍ୟ ନୁହେଁ, ଏହା ସେ ବାରମ୍ବାର କହିବାର ଶୁଣିଅଛୁ । କିନ୍ତୁ ଦୁର୍ବଳ ମାନବ ନିଜର ଲାଭ-କ୍ଷତିର ହିସାବ ନ ରଖି କିଛି କରିବାକୁ ବା କାହାକୁ ମାନିବାକୁ ଅଗ୍ରସର ହୁଏ ନାହିଁ ଏବଂ ତ୍ୟାଗର ଜ୍ୱଳନ୍ତ ମୂର୍ତ୍ତି ଶ୍ରୀରାମକୃଷ୍ଣଦେବଙ୍କର ଜୀବନରୁ ତ୍ୟାଗ ଶିକ୍ଷା ନ କରି ନିଜର ଭୋଗସିଦ୍ଧି ନିମିତ୍ତ ଏପରି ମହତ୍ ଜୀବନକୁ ଆଶ୍ରୟ କରିଥାଏ । ତାଙ୍କର ତ୍ୟାଗ, ତାଙ୍କର ଅଲୌକିକ ତପସ୍ୟା, ତାଙ୍କର ଅଦୃଷ୍ଟପୂର୍ବ ସତ୍ୟାନୁରାଗ, ତାଙ୍କର ବାଳକ ସଦୃଶ ସରଳତା ଏବଂ ନିର୍ଭରତା—ଏହି ସମସ୍ତ ଯେପରି ତାଙ୍କର ଭୋଗସିଦ୍ଧି ନିମିତ୍ତ ଅନୁଷ୍ଠିତ ହୋଇଥିଲା, ଏହିପରି ମନେକରିଥାଏ । ଆମମାନଙ୍କ ମନୁଷ୍ୟତ୍ୱର ଅଭାବ ହିଁ ସେହିପରି ହେବାର କାରଣ ଏବଂ ସେଥିପାଇଁ ଶ୍ରୀରାମକୃଷ୍ଣଦେବଙ୍କର ମନୁଷ୍ୟଭାବର ଆଲୋଚନା ହିଁ ଆମର ଅଶେଷ କଲ୍ୟାଣକର ହେବ ।

## ଯଥାର୍ଥ ଭକ୍ତି ଭକ୍ତଙ୍କୁ ଉପାସ୍ୟର ଅନୁରୂପ କରିବ :

ଭକ୍ତି ଯତ୍‌କିଞ୍ଚିତ୍ ଓ ଯଥାର୍ଥ ଭାବରେ ଅନୁଷ୍ଠିତ ହେଲେ ଭକ୍ତକୁ ଉପାସ୍ୟର ଅନୁରୂପ କରିତୋଳିଥାଏ ! ସବୁଜାତିର ସର୍ବଧର୍ମଗ୍ରନ୍ଥମାନଙ୍କରେ ଏହି କଥା ପ୍ରସିଦ୍ଧ ଅଛି । କ୍ରୁଶବିଦ୍ଧଈଶାଙ୍କ ମୂର୍ତ୍ତିରେ ସମାଧିସ୍ଥ–ମନ ଭକ୍ତର ହସ୍ତପଦରୁ ରଧିର ନିର୍ଗମନ କରିବା, ଶ୍ରୀମତୀଙ୍କର ବିରହ ଦୁଃଖାନୁଭୂତିରେ ନିମଗ୍ନମନ ଶ୍ରୀଚୈତନ୍ୟଙ୍କର ବିଷମ ଗାତ୍ରଦାହ ଏବଂ କେତେବେଳେ ଅବା ମୃତବତ୍ ଅବସ୍ଥା ହେବା, ଧ୍ୟାନସ୍ତିମିତ ବୁଦ୍ଧଙ୍କର ମୂର୍ତ୍ତି ସମ୍ମୁଖରେ ବୌଦ୍ଧ ଭକ୍ତଙ୍କର ବହୁକାଳବ୍ୟାପୀ ନିଃଶ୍ଚେଷ୍ଟ ଅବସ୍ଥାନ କରିବା ପ୍ରଭୃତି ଘଟଣାଗୁଡ଼ିକ ଏହାର ନିଦର୍ଶନ । ଆମେମାନେ ପ୍ରତ୍ୟକ୍ଷ କରିଅଛୁ ଯେ, ମନୁଷ୍ୟବିଶେଷରେ ପ୍ରଯୁକ୍ତ ଭଲପାଇବା ଧୀରେ ଧୀରେ ଅଜ୍ଞାତସାରରେ ମନୁଷ୍ୟକୁ ତାହାଙ୍କର ପ୍ରେମାସ୍ପଦର ଅନୁରୂପ କରି ତୋଳିଛି; ତାଙ୍କର ବାହ୍ୟିକ ହାବଭାବ ଚାଲିଚଳନ ଆଦି ଏବଂ ମାନସିକ ଚିନ୍ତାପ୍ରଣାଳୀ ମଧ୍ୟ ସମୂଳରେ ପରିବର୍ତ୍ତିତ ହୋଇ ତତ୍‌ସାରୂପ୍ୟ ପ୍ରାପ୍ତ ହୋଇଅଛି ! ଶ୍ରୀଶ୍ରୀରାମକୃଷ୍ଣଙ୍କ ପ୍ରତି ଭକ୍ତି ମଧ୍ୟ ତଦ୍ରୂପ ଯଦି ଆମର ଜୀବନକୁ ଦିନକୁ ଦିନ ତାଙ୍କ ଜୀବନର କିଞ୍ଚିତ୍‌ମାତ୍ର ଅନୁରୂପ ନ କରେ, ତାହେଲେ ବୁଝିବାକୁ ହେବ ଯେ, ସେହିଭକ୍ତି ଓ ଭଲପାଇବା ତାଙ୍କ ନାମର ଯୋଗ୍ୟ ନୁହେଁ ।

ପ୍ରଶ୍ନ ଉଠିପାରେ, ତେବେ ଆମେ କ'ଣ ସମସ୍ତେ ରାମକୃଷ୍ଣ ପରମହଂସ ହେବାକୁ ସକ୍ଷମ ? ଜଗତରେ ଜଣେ ଅନ୍ୟ ଜଣକ ପରି ହେବା କ'ଣ କେବେ ଦେଖାଯାଇଛି ? ଏହାର ଉତ୍ତରରେ ଆମେ କହିବୁ, ''ସମ୍ପୂର୍ଣ୍ଣ ଏକା ପରି ନ ହେଲେ ମଧ୍ୟ ଏକ ଛାଞ୍ଚରେ ଗଠିତ ପଦାର୍ଥସମୂହ ସଦୃଶ ନିଶ୍ଚିତ ହୋଇପାରେ । ଧର୍ମ ଜଗତରେ ପ୍ରତ୍ୟେକ ମହାପୁରୁଷଙ୍କର ଜୀବନ ଗୋଟିଏ ଗୋଟିଏ ଭିନ୍ନ ଭିନ୍ନ ପ୍ରକାରର ଛାଞ୍ଚସଦୃଶ । ସେମାନଙ୍କର ଶିଷ୍ୟପରମ୍ପରା ମଧ୍ୟ ସେହି ସେହି ଛାଞ୍ଚରେ ଗଠିତ ହୋଇ ଅଦ୍ୟାବଧି ସେସମସ୍ତ ବିଭିନ୍ନ ଛାଞ୍ଚର ରକ୍ଷା କରିଆସୁଅଛି । ମନୁଷ୍ୟ ଅଳ୍ପଶକ୍ତିସମ୍ପନ୍ନ; ସେହି ସମସ୍ତ ଛାଞ୍ଚର କୌଣସି ଗୋଟିକ ପରି ହେବା ମଧ୍ୟ ତାର ଆଜୀବନ ଚେଷ୍ଟାରେ ମଧ୍ୟ ଯଥେଷ୍ଟ ନୁହେଁ । ଭାଗ୍ୟବଶତଃ କେହି କେତେବେଳେ କୌଣସି ଗୋଟିଏ ଛାଞ୍ଚର ଯଥାର୍ଥ ଅନୁରୂପ ହେଲେ ଆମେ ତାଙ୍କୁ ସିଦ୍ଧବୋଲି ସମ୍ମାନ କରିଥାଉ । ସିଦ୍ଧ ମାନବର ଚାଲିଚଳନ, ଭାଷା, ଚିନ୍ତା ପ୍ରଭୃତି ଶାରୀରିକ ଏବଂ ମାନସିକ ସକଳ ବୃତ୍ତି ହିଁ ସେହି ଛାଞ୍ଚ ପ୍ରବର୍ତ୍ତକ ମହାପୁରୁଷଙ୍କ ସଦୃଶ ହୋଇଥାଏ । ସେହି ମହାପୁରୁଷଙ୍କର ଜୀବନରେ ଯେଉଁ ମହାଶକ୍ତିର ପ୍ରଥମ ଅଭ୍ୟୁଦୟ ଦେଖି ଜଗତ ଚମତ୍କୃତ ହୋଇଥିଲା, ତାଙ୍କର ଦେହ ମନ ସେହି ଶକ୍ତିର କିଞ୍ଚିତ୍ ଧାରଣ, ସଂରକ୍ଷଣ ଏବଂ ସଞ୍ଚାରର ପୂର୍ଣ୍ଣାବୟବ ଯନ୍ତ୍ରସ୍ୱରୂପ ହୋଇଥାଏ । ଏହିପରି ଭିନ୍ନ ଭିନ୍ନ ମହାପୁରୁଷ–ପ୍ରଣୋଦିତ ଧର୍ମଶକ୍ତିନିଚୟର ସଂରକ୍ଷଣ, ଭିନ୍ନ ଭିନ୍ନ ଜାତି ଆବହମାନକାଳରୁ କରିଆସୁଅଛି ।

## ଅବତାରପୁରୁଷଙ୍କର ଜୀବନ ଆଲୋଚନାରେ କେଉଁ କେଉଁ ଅପୂର୍ବ ବିଷୟର ପରିଚୟ ମିଳିଥାଏ :

ଧର୍ମ ଜଗତରେ ଯେଉଁ ସମସ୍ତ ମହାପୁରୁଷ ଅଦୃଷ୍ଟପୂର୍ବ ନୂତନ ଛାଞ୍ଚର ଜୀବନ ଦେଖାଇ ଦେଇଯାଆନ୍ତି, ସେମାନଙ୍କୁ ହିଁ ଜଗତ ଆଜି ପର୍ଯ୍ୟନ୍ତ ଈଶ୍ୱରଙ୍କର ଅବତାର ବୋଲି ପୂଜା କରିଥାଆନ୍ତି । ଅବତାର ଧର୍ମଜଗତରେ ନୂତନ ମତ ଓ ନୂତନ ପଥ ଆବିଷ୍କାର କରନ୍ତି; ସ୍ପର୍ଶମାତ୍ରେ ହିଁ ଅନ୍ୟମାନଙ୍କଠାରେ ଧର୍ମଶକ୍ତି ସଞ୍ଚାରିତ କରିଥାଆନ୍ତି । ତାଙ୍କର ଦୃଷ୍ଟି କେବେ ମଧ୍ୟ ଅନିତ୍ୟ ସଂସାରର କାମକାଞ୍ଚନର କୋଳାହଳ ଆଡ଼କୁ ଆକୃଷ୍ଟ ହୁଏ ନାହିଁ । ସେମାନଙ୍କର ଜୀବନ ପର୍ଯ୍ୟାଲୋଚନାରେ ବୁଝିହୁଏ ଯେ, ସେମାନେ ଅନ୍ୟମାନଙ୍କୁ ପଥପ୍ରଦର୍ଶନ କରିବା ପାଇଁ ହିଁ ଜନ୍ମ ଗ୍ରହଣ କରିଛନ୍ତି । ନିଜର ଭୋଗସାଧନ ବା ମୁକ୍ତିଲାଭ ମଧ୍ୟ ସେମାନଙ୍କ ଜୀବନର ଉଦ୍ଦେଶ୍ୟ ହୋଇ ନ ଥାଏ । କିନ୍ତୁ ଅନ୍ୟର ଦୁଃଖରେ ସହାନୁଭୂତି, ଏବଂ ଗଭୀର ପ୍ରେମ ହିଁ ସେମାନଙ୍କୁ କାର୍ଯ୍ୟରେ ପ୍ରେରଣ କରି ଅନ୍ୟର ଦୁଃଖ ନିବାରଣ ପଥ –ଆବିଷ୍କାରର କାରଣ କରିଥାଏ ।

ଶ୍ରୀରାମକୃଷ୍ଣଙ୍କର ଦେବଶରୀର ଯେତେଦିନ ପର୍ଯ୍ୟନ୍ତ ଦେଖି ନ ଥିଲୁ, ସେତେଦିନ ପର୍ଯ୍ୟନ୍ତ ଭଗବାନ ଶ୍ରୀକୃଷ୍ଣ, ବୁଦ୍ଧ, ଈଶା, ଶଙ୍କର, ଶ୍ରୀଚୈତନ୍ୟ ପ୍ରଭୃତି ବିଶିଷ୍ଟ ଅବତାର ମହାପୁରୁଷମାନଙ୍କର ଜୀବନବେଦ ପାଠ କରିବାକୁ ଏକପ୍ରକାର ଅସମର୍ଥ ଥିଲୁ । ସେମାନଙ୍କର ଜୀବନର ଅଲୌକିକ ଘଟଣାବଳୀ ଦଳର ପୁଷ୍ଟି ନିମିତ୍ତ ଶିଷ୍ୟପରମ୍ପରାରଚିତ ପ୍ରରୋଚନାବାକ୍ୟ ବୋଲି ମନେ ହେଉଥିଲା; ଅବତାର ସଭ୍ୟଜଗତର ବିଶ୍ୱାସବହିର୍ଭୂତ କିମ୍ଭୂତ–କିମାକାର କାଳ୍ପନିକ ପ୍ରାଣୀବିଶେଷ ବୋଲି ହିଁ ଅନୁମାନ ହେଉଥିଲା । ଅଥବା ଈଶ୍ୱରଙ୍କର ଅବତାର ହେବା ସମ୍ଭବ ବୋଧ ହେଲେ ମଧ୍ୟ ସେସମସ୍ତ ଅବତାରମୂର୍ତ୍ତିରେ ଯେ ଆମମାନଙ୍କ ସଦୃଶ ମନୁଷ୍ୟଭାବ ସକଳ ବିଦ୍ୟମାନ ଥିଲା, ଏକଥା ବିଶ୍ୱାସ ହେଉ ନ ଥିଲା । ସେମାନଙ୍କ ଶରୀରରେ ଯେ ଆମମାନଙ୍କ ପରି ରୋଗବ୍ୟାଧି ହୋଇପାରେ, ପୁଣି ସେମାନଙ୍କର ମନରେ ଯେ ଆମମାନଙ୍କ ପରି ହର୍ଷଶୋକ ଇତ୍ୟାଦି ବିଦ୍ୟମାନ ଥାଏ, ସେମାନଙ୍କ ଭିତରେ ଯେ ଆମମାନଙ୍କ ପରି ପ୍ରବୃତ୍ତିମାନଙ୍କର ଦେବାସୁର–ସଂଗ୍ରାମ ଚାଲିପାରେ, ତାହା ଧାରଣା ହେଉ ନ ଥିଲା । ଶ୍ରୀରାମକୃଷ୍ଣଦେବଙ୍କର ପବିତ୍ର ସ୍ପର୍ଶରେ ହିଁ ସେବିଷୟର ଉପଲବ୍ଧି ହୋଇଅଛି । ଅବତାରଙ୍କ ଶରୀରରେ ଦେବ ଏବଂ ମନୁଷ୍ୟ ଭାବର ଅଦ୍ଭୁତ ସମ୍ମିଳନର କଥା ଆମେ ସମସ୍ତେ ପ୍ରାୟ ପଢ଼ିଛୁ ଏବଂ ଶୁଣିଛୁ, ମାତ୍ର ଶ୍ରୀରାମକୃଷ୍ଣଙ୍କୁ ଦେଖିବା ପୂର୍ବରୁ କୌଣସି ମନୁଷ୍ୟ ମଧ୍ୟରେ ଯେ ବାଳକତ୍ୱ ଏବଂ କଠୋର ମନୁଷ୍ୟତ୍ୱର ଏକତ୍ର ସାମଞ୍ଜସ୍ୟରେ ଅବସ୍ଥାନ ହୋଇପାରେ, ଏକଥା ଭାବି ନ ଥିଲୁ । ଅନେକେ ହିଁ କହିଥାଆନ୍ତି, ତାଙ୍କର ପାଞ୍ଚବର୍ଷର ବାଳକସ୍ୱଭାବ ହିଁ ସେମାନଙ୍କୁ ଆକର୍ଷଣ କରିଥିଲା । ଅଜ୍ଞାନ ବାଳକ ସମସ୍ତଙ୍କର ହିଁ ପ୍ରେମର ଆସ୍ପଦ ହୋଇଥାଏ

ଏବଂ ସମସ୍ତେ ହିଁ ତାକୁ ରକ୍ଷା କରିବାକୁ ସ୍ୱଭାବତଃ ଆଗ୍ରହୀ ହୋଇଥାଆନ୍ତି । ପୂର୍ଣ୍ଣବୟସ୍କ ହେଲେ ମଧ୍ୟ ଶ୍ରୀରାମକୃଷ୍ଣଦେବଙ୍କୁ ଦେଖି ଲୋକଙ୍କ ମନରେ ସେହିପରି ଭାବର ସ୍ଫୁରଣ ହୋଇ ସେମାନଙ୍କୁ ମୋହିତ ଓ ଆକୃଷ୍ଟ କରୁଥିଲା । ଏହା ସତ୍ୟ ହେଲେ ମଧ୍ୟ ଆମମାନଙ୍କର ଧାରଣା — ପରମହଂସଦେବଙ୍କର ଶୁଦ୍ଧ ବାଳକଭାବ ହିଁ ଯେ ଜନସାଧାରଣଙ୍କୁ ଆକୃଷ୍ଟ କରୁଥିଲା ତାହା ନୁହେଁ; କିନ୍ତୁ ହର୍ଷ ଓ ପ୍ରୀତି ସହିତ ଦର୍ଶକର ମନରେ ସେହି ସମୟରେ ଯୁଗପତ୍ ଶ୍ରଦ୍ଧା ଓ ଭକ୍ତିର ଉଦୟ ଦେଖି ମନେ ହୁଏ, କୁସୁମକୋମଳ ବାଳକ-ପରିଚ୍ଛଦରେ ଆବୃତ ଭିତରର ବଜ୍ରକଠୋର ମନୁଷ୍ୟତ୍ୱ ହିଁ ସେହି ଆକର୍ଷଣର କାରଣ ଥିଲା । ଭାରତବର୍ଷର ଯଶସ୍ୱୀ କବି ଅଯୋଧ୍ୟାଧିପତି ଶ୍ରୀରାମଚନ୍ଦ୍ରଙ୍କର ଲୋକୋତ୍ତର ଚରିତ୍ର ବର୍ଣ୍ଣନାରେ ଲେଖିଯାଇଛନ୍ତି —

''ବଜ୍ରାଦପି କଠୋରାଣି ମୃଦୂନି କୁସୁମାଦପି ।
ଲୋକୋତ୍ତରାଣାଂ ଚେତାଂସି କୋ ନୁ ବିଜ୍ଞାତୁମର୍ହତି ॥''

ଏହିକଥା ଶ୍ରୀରାମକୃଷ୍ଣଦେବଙ୍କ ସମ୍ବନ୍ଧରେ ମଧ୍ୟ ପ୍ରତିପଦରେ କୁହାଯାଇପାରେ ।

ଶ୍ରୀରାମକୃଷ୍ଣଦେବଙ୍କର ବାଳକଭାବ ଗୋଟିଏ ଅଭିନବ ପଦାର୍ଥ ଥିଲା । ଅସୀମ ସରଳତା, ଅପାର ବିଶ୍ୱାସ, ଅଶେଷ ସତ୍ୟାନୁରାଗ ସେହି ବାଳକର ମନରେ ସର୍ବଦା ପ୍ରକାଶିତ ରହିଥିଲେ ମଧ୍ୟ ବିଷୟବୁଦ୍ଧିଯୁକ୍ତ ମାନବ ସେଥିରେ କେବଳ ନିର୍ବୁଦ୍ଧିତା ଏବଂ ବିଷୟବୁଦ୍ଧିରାହିତ୍ୟର ପରିଚୟ ପାଉଥିଲା । ସମସ୍ତ ଲୋକଙ୍କ କଥାରେ, ବିଶେଷତଃ ଧର୍ମଲିଙ୍ଗଧାରୀଙ୍କର କଥାରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ! ଦେଶର ଏବଂ ନିଜ ଗ୍ରାମରେ ପ୍ରଚଳିତ ଭାବସମୂହ ମଧ୍ୟ ତାଙ୍କଠାରେ ଏହି ଅଦ୍ଭୁତ ବାଳକତ୍ୱ ପରିସ୍ଫୁଟ କରିବାରେ ବିଶେଷ ସହାୟତା କରିଥିଲା ।

### ଶ୍ରୀରାମକୃଷ୍ଣଦେବଙ୍କର ଜନ୍ମଭୂମି କାମାରପୁକୁର ଗ୍ରାମ :

ଶସ୍ୟଶ୍ୟାମଳଯୁକ୍ତ ହୋଇ ନୀଳ ସମୁଦ୍ରପରି ଅଥବା ତାହାର ଅଭାବରେ ଧୂସର ମୃତ୍ତିକାସମୁଦ୍ର ସଦୃଶ ଅବସ୍ଥିତ ବିସ୍ତୀର୍ଣ୍ଣ ବହୁ ଯୋଜନବ୍ୟାପୀ ପ୍ରାନ୍ତର — ତନ୍ମଧ୍ୟରେ ବାଉଁଶ, ବଟ, ଆମ୍ବ, ଖଜୁରୀ, ଅଶ୍ୱତ୍ଥାଦି ବୃକ୍ଷ ଆଚ୍ଛାଦିତ କୃଷକକୁଳର ମୃତ୍ତିକାନିର୍ମିତ ସୁପରିଚ୍ଛନ୍ନ ଦ୍ୱୀପପୁଞ୍ଜ ପରି ଶୋଭମାନ ପର୍ଣ୍ଣକୁଟୀରରାଜି, ସୁନୀଳ ପତ୍ରାଚ୍ଛାଦିତ ବୃହତ ତାଳବୃକ୍ଷଶ୍ରେଣୀ ଭ୍ରମରମୁଖରିତ ପଦ୍ମସମାଚ୍ଛନ୍ନ ହାଲ୍‌ଦାର ପୁଷ୍କରିଣୀ ନାମରେ ଖ୍ୟାତ ବୃହତ୍ ସରୋବରସମୂହ, 'ବୁଡ଼ୋଶିବ' (ବୃଦ୍ଧଶିବ) ନାମଙ୍କ ପ୍ରଥିତଯଶ ଦେବାଧିଷ୍ଠିତ ଇଷ୍ଟକ ବା ପ୍ରସ୍ତରନିର୍ମିତ କ୍ଷୁଦ୍ର କ୍ଷୁଦ୍ର ଦେବଗୃହ, ଅଦୂରରେ ପୁରାତନ ଗଡ଼ମାନ୍ଦାରଣ ଦୁର୍ଗର ଭଗ୍ନସ୍ତୂପରାଜି; ଏବଂ ପାର୍ଶ୍ୱରେ ଅସ୍ଥିସମୂହ ବିକ୍ଷିପ୍ତ ଗ୍ରାମର ଅନ୍ତିମ ସୀମାରେ ତଥା ବହୁପ୍ରାଚୀନ ଶ୍ମଶାନ, ତୃଣାଚ୍ଛାଦିତ

ଗୋଚାରଣ ଭୂମି, ନିବିଡ଼ ଆମ୍ରକାନନ, ବକ୍ର ସଞ୍ଚରଣଶୀଳ 'ଭୂତିର ଖାଲ' ନାମକ କ୍ଷୁଦ୍ର କେନାଲ ଏବଂ ସମଗ୍ର ଗ୍ରାମର ଅର୍ଦ୍ଧେକରୁ ଅଧିକ ବେଷ୍ଟନ କରି ବିଦ୍ୟମାନ ବର୍ଦ୍ଧମାନଠାରୁ ଜଗନ୍ନାଥ ଧାମ ଯିବାର ଯାତ୍ରୀସମାକୁଳ ସୁଦୀର୍ଘ ରାଜପଥ—ଏହା ହିଁ ଶ୍ରୀରାମକୃଷ୍ଣ ଦେବଙ୍କର ଜନ୍ମଭୂମି କାମାରପୁକୁର ଅଟେ ।

**ବାଳକ ରାମକୃଷ୍ଣଙ୍କର ବିଚିତ୍ର କାର୍ଯ୍ୟକଳାପ :**

ଶ୍ରୀଚୈତନ୍ୟ ଏବଂ ତାଙ୍କର ଶିଷ୍ୟମାନଙ୍କ ଦ୍ୱାରା ପ୍ରଚଳିତ ବୈଷ୍ଣବ ଧର୍ମର ହିଁ ଏଠାରେ ପ୍ରବଳ ପ୍ରଭାବ ଅଛି । କୃଷକ ପ୍ରଜାକୁଳ ସେମାନଙ୍କର ପରିଶ୍ରମ ସହିତ ଅଥବା ଦିନାନ୍ତର କାର୍ଯ୍ୟ ସମାପ୍ତି ପରେ ସନ୍ଧ୍ୟା ସମୟରେ ସେମାନଙ୍କ ଦ୍ୱାରା ହିଁ ରଚିତ ପଦାବଳୀ ଗାନ କରି ଆନନ୍ଦରେ ବିଭୋର ହୋଇ କ୍ଳାନ୍ତି ଦୂର କରିଥାଆନ୍ତି । ସରଳ ପଦ୍ୟମୟ ବିଶ୍ୱାସ ହିଁ ଏହି ଧର୍ମର ମୂଳ, ଏବଂ ଜୀବନ-ସଂଗ୍ରାମର କଠୋରତରଙ୍ଗସମୂହଠାରୁ ଦୂରରେ ଅବସ୍ଥିତ ଏହି ଗ୍ରାମ ସଦୃଶ ବାଳକର ହୃଦୟ ମଧ୍ୟ ସେହିପରି ବିଶ୍ୱାସ ଏବଂ ଧର୍ମର ବିଶେଷ ଅନୁକୂଳଭୂମି ଥିଲା । ବାଳକ ରାମକୃଷ୍ଣଙ୍କର ବାଳକତ୍ୱ ଏଠାରେ ମଧ୍ୟ ଅଦ୍ଭୁତ ବୋଲି ପରିଗଣିତ ହୋଇଥିଲା । ତାଙ୍କ ବିଚିତ୍ର କାର୍ଯ୍ୟଗୁଡ଼ିକରେ ନ ହେଲେ ମଧ୍ୟ, ତାଙ୍କର ଉଦ୍ଦେଶ୍ୟର ଗଭୀରତା ଏବଂ ଏକାଗ୍ରତା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଉଥିଲେ । 'ରାମନାମରେ ମାନବ ନିର୍ମଳ ହୁଏ'—କଥକଙ୍କ ମୁହଁରୁ ଏକଥା ଶୁଣି କେତେବେଳେ ବା ଏହି ବାଳକ ଦୁଃଖିତ ମନରେ ଚିନ୍ତା କରୁଥିଲା ଯେ, ତାହେଲେ ଆଜିପର୍ଯ୍ୟନ୍ତ କଥକ-ଠାକୁରଙ୍କର ଶୌଚର ଆବଶ୍ୟକ ହୁଏ କାହିଁକି ? କେତେବେଳେ ଅବା ଥରେ ମାତ୍ର ଯାତ୍ରାଦି ଶୁଣି ତାହାର ସମସ୍ତ ଅଂଶ ଆୟତ୍ତ କରି ସମବୟସ୍କମାନଙ୍କ ସହିତ ଆମ୍ରକାନନରେ ଏହାର ପୁନରାଭିନୟ କରୁଥିଲା ! ଗ୍ରାମାନ୍ତରରୁ ଆଗତ ପଥିକମାନେ ସେହି ବାଟରେ ଯାଉଥିବା ବେଳେ ବାଳକର ସେହି ଅଦ୍ଭୁତ ଅଭିନୟ ଓ ସଙ୍ଗୀତ ଶ୍ରବଣରେ ମୁଗ୍ଧ ହୋଇ ନିଜର ଗନ୍ତବ୍ୟ ସ୍ଥାନକୁ ଯିବାକୁ ଭୁଲିଯାଉଥିଲେ ! ପ୍ରତିମାନିର୍ମାଣ, ଦେବତାଙ୍କ ଚିତ୍ର ତିଆରିକରିବା ଅନ୍ୟମାନଙ୍କର ହାବଭାବ ଅନୁକରଣ, ସଙ୍ଗୀତ, ସଂକୀର୍ତ୍ତନ, ରାମାୟଣ, ମହାଭାରତ ଏବଂ ଭାଗବତ ଆଦି ଶାସ୍ତ୍ର ଶ୍ରବଣ କରି ସେସମସ୍ତ ଆୟତ୍ତ କରିବା ଏବଂ ପ୍ରାକୃତିକ ସୌନ୍ଦର୍ଯ୍ୟର ଗଭୀର ଅନୁଭବରେ ଏହି ବାଳକର ବିଶେଷ ନୈପୁଣ୍ୟ ପ୍ରକାଶ ପାଉଥିଲା । ତାଙ୍କର ଶ୍ରୀମୁଖରୁ ଶୁଣିଅଛୁ ଯେ, କୃଷ୍ଣମେଘାବୃତ ଗଗନରେ ଉଡ୍ଡୀୟମାନ ଧବଳ ବକ ପଂକ୍ତି ଦେଖି ହିଁ ସେ ପ୍ରଥମ ସମାଧିସ୍ଥ ହୋଇଥିଲେ; ସେତେବେଳେ ତାଙ୍କୁ ମାତ୍ର ଛଅ-ସାତବର୍ଷ ବୟସ ହୋଇଥିଲା !

ଯେତେବେଳେ ଯେଉଁ ଭାବ ହୃଦୟରେ ଆସୁଥିଲା, ସେହି ଭାବରେ ତନ୍ମୟ ହେବା ହିଁ ଏହି ବାଳକ-ମନର ବିଶେଷ ଲକ୍ଷଣ ଥିଲା । ପ୍ରତିବେଶୀମାନେ

ଏବେ ମଧ୍ୟ ଏକ ବଣିକର ଗୃହପ୍ରାଙ୍ଗଣକୁ ନିର୍ଦ୍ଦେଶ କରି ଗଳ୍ପ କରନ୍ତି ଯେ, କିପରି ଦିନେ ଏହି ସ୍ଥାନରେ ହରପାର୍ବତୀ-ସମ୍ବାଦର ଅଭିନୟ ସମୟରେ ଅଭିନେତା ହଠାତ୍ ପୀଡ଼ିତ ହେବାରୁ ଶ୍ରୀରାମକୃଷ୍ଣଙ୍କୁ ସମସ୍ତେ ଅନୁରୋଧ କରି ଶିବ ସଜାଇ ଅଭିନୟ କରିବାର ଚେଷ୍ଟା କରିଥିଲେ; କିନ୍ତୁ ସେ ସେହି ବେଶରେ ସଜ୍ଜିତ ହୋଇ ସେହି ଭାବରେ ଏତେ ମଗ୍ନ ହୋଇଥିଲେ ଯେ, ବହୁ ସମୟ ପର୍ଯ୍ୟନ୍ତ ତାଙ୍କର ବାହ୍ୟଚେତନା ନ ଥିଲା ! ଏସମସ୍ତ ଘଟଣାରୁ ସ୍ପଷ୍ଟ ବୁଝାଯାଏ ଯେ, ବାଳକ ହେଲେ ମଧ୍ୟ ବାଳକର ଚିତ୍ତଚାଞ୍ଚଲ୍ୟ ତାଙ୍କୁ ଆଶ୍ରୟ କରି ନାହିଁ । ଦର୍ଶନ ବା ଶ୍ରବଣ ଦ୍ୱାରା କୌଣସି ବିଷୟରେ ଆକୃଷ୍ଟ ହେଲେ ହିଁ ତାର ଛବି ତାଙ୍କ ମନରେ ଏପରି ସୁଦୃଢ଼ ଅଙ୍କିତ ହେଉଥିଲା ଯେ, ସେହି ପ୍ରେରଣାରେ ତାହାକୁ ସମ୍ପୂର୍ଣ୍ଣ ଆୟତ୍ତ କରି ଏବଂ ଅଭିନବରୂପରେ ତାହା ପୁନଃ ପ୍ରକାଶ ନ କରି ସ୍ଥିର ରହିବା ଏବାଳକ ପକ୍ଷରେ ଅସମ୍ଭବ ଥିଲା ।

**ତାଙ୍କର ସତ୍ୟାନ୍ୱେଷଣ :**

ଗ୍ରନ୍ଥାଦି ନ ପଢ଼ିଥିଲେ ମଧ୍ୟ ବାହ୍ୟଜଗତର ସଂଘର୍ଷରେ ଏହି ବାଳକର ସମସ୍ତ ଇନ୍ଦ୍ରିୟସମୂହ ସ୍ୱଳ୍ପ କାଳରେ ହିଁ ସମୁଚିତ ପ୍ରସ୍ଫୁଟିତ ହୋଇଥିଲା । ଯାହା ସତ୍ୟ, ତାହା ପ୍ରମାଣ ପ୍ରୟୋଗ ଦ୍ୱାରା ବୁଝି ନେବି; ଯାହା ଶିଖିବି, ତାହା କାର୍ଯ୍ୟରେ ପ୍ରୟୋଗ କରିବି ଏବଂ ଅସତ୍ୟ ନ ହେଲେ ଜଗତର କୌଣସି ବସ୍ତୁକୁ ଘୃଣା ଚକ୍ଷୁରେ ଦେଖିବି ନାହିଁ, ଏହା ହିଁ ଏହି ବାଳକ-ମନର ମୂଳମନ୍ତ୍ର ଥିଲା । ଯୌବନର ଆରମ୍ଭରେ ଏହି ଅଦ୍ଭୁତ ମେଧାସମ୍ପନ୍ନ ବାଳକ ରାମକୃଷ୍ଣ ଶିକ୍ଷା ପାଇଁ ଟୋଲକୁ ପ୍ରେରିତ ହେଲେ, କିନ୍ତୁ ବାଳକତ୍ୱର ସମାପ୍ତି ହେଲା ନାହିଁ । ସେ ଭାବିଲେ, ଏହି କଠୋର ଅଧ୍ୟୟନ, ରାତ୍ରିଜାଗରଣ, ଟୀକାକାରଙ୍କ ଚର୍ବିତଚର୍ବଣ ପ୍ରଭୃତି କ'ଣ ପାଇଁ ? ଏଥିରେ କ'ଣ ବସ୍ତୁ ଲାଭ ହେବ ? ମନ ଏହି ପ୍ରକାର ଅଧ୍ୟବସାୟର ପୂର୍ଣ୍ଣଫଳ ଟୋଲର ଆଚାର୍ଯ୍ୟଙ୍କୁ ଦେଖାଇ କହିଲା, ତୁମେ ମଧ୍ୟ ଏହିପରି ସରଳ ଶବ୍ଦନିଚୟର କୁଟିଳ ଅର୍ଥ କରିବାରେ ସୁପଟୁ ହେବ, ତୁମେ ମଧ୍ୟ ତାଙ୍କପରି ଧନୀ ବ୍ୟକ୍ତିଙ୍କୁ ଖୋସାମତ କରି ଦାନ-ଦକ୍ଷିଣା ସଂଗ୍ରହ କରି କୌଣସି ପ୍ରକାରେ ସଂସାର ଯାତ୍ରା ନିର୍ବାହ କରିବ; ତୁମେ ମଧ୍ୟ ଏହିପରି ଶାସ୍ତ୍ରନିବଦ୍ଧ ସତ୍ୟସକଳ ପାଠ କରିବ ଏବଂ କରାଇବ, କିନ୍ତୁ ଚନ୍ଦନଭାରବାହୀ ଗଧ ପରି ସେସମସ୍ତର ଅନୁଭବ ଜୀବନରେ କରିପାରିବ ନାହିଁ । ତାଙ୍କର ବିଚାରବୁଦ୍ଧି କହିଲା, ଏହି ଚାଉଳ କଦଳୀ-ବନ୍ଧା ବିଦ୍ୟାର ପ୍ରୟୋଜନ ନାହିଁ । ଯେଉଁଥିରେ ମାନବ ଜୀବନର ଗୂଢ଼ରହସ୍ୟସମ୍ବନ୍ଧୀୟ ସମ୍ପୂର୍ଣ୍ଣ ସତ୍ୟ ଅନୁଭବ କରିପାର, ସେହି ପରାବିଦ୍ୟାର ସନ୍ଧାନ କର । ଶ୍ରୀରାମକୃଷ୍ଣ ପାଠଛାଡ଼ିଲେ ଏବଂ ଆନନ୍ଦ-ପ୍ରତିମା ଦେବୀମୂର୍ତ୍ତିର ପୂଜାକାର୍ଯ୍ୟରେ ସମ୍ପୂର୍ଣ୍ଣ ମନୋନିବେଶ କଲେ; କିନ୍ତୁ ଏଠାରେ ମଧ୍ୟ ଶାନ୍ତି କାହିଁ ?

ମନ କହିଲା, ସତରେ କ'ଣ ଇଏ ଆନନ୍ଦଘନମୂର୍ତ୍ତି ଜଗଜ୍ଜନନୀ ଅଥବା ପାଷାଣ ପ୍ରତିମାମାତ୍ର ? ସତରେ କ'ଣ ଇଏ ଭକ୍ତି ସହକାରେ ପ୍ରଦତ୍ତ ପତ୍ରପୁଷ୍ପଫଳମୂଳାଦି ଗ୍ରହଣ କରନ୍ତି ? ସତରେ କ'ଣ ମନୁଷ୍ୟ ଏହାଙ୍କର କୃପାକଟାକ୍ଷ-ଲାଭରେ ସର୍ବ ପ୍ରକାର ବନ୍ଧନମୁକ୍ତ ହୋଇ ଦିବ୍ୟ ଦର୍ଶନ ଲାଭ କରେ ?—ଅଥବା, ମାଂନବମନର ବହୁକାଳରୁ ସଞ୍ଚିତ କୁସଂସ୍କାରସମୂହ କଳ୍ପନା ଦ୍ୱାରା ଦୃଢ଼ୀଭୂତ ହୋଇ ଛାୟାମୟୀ ମୂର୍ତ୍ତି ପରିଗ୍ରହ କରିଅଛି ଏବଂ ମାନବ ଏହି ଭାବରେ ଆବହମାନ କାଳରୁ ପ୍ରତାରିତ ହୋଇ ଆସୁଅଛି ? ପ୍ରାଣ ଏହି ସନ୍ଦେହ ଦୂର କରିବାକୁ ବ୍ୟାକୁଳ ହୋଇଉଠିଲା ଏବଂ ତୀବ୍ର ବୈରାଗ୍ୟର ଅଙ୍କୁର ବାଳକ ମନରେ ଧୀରେ ଧୀରେ ଉଦ୍‌ଗତ ହେଲା । ବିବାହ ହେଲା, ମାତ୍ର ଉପରୋକ୍ତ ପ୍ରଶ୍ନର ମୀମାଂସା ନ କରି ସାଂସାରିକ ସୁଖଭୋଗ ତାଙ୍କ ପାଇଁ ଅସମ୍ଭବ ହେଲା । ସର୍ବକ୍ଷଣ ତାଙ୍କ ମନ ସେହି ପ୍ରଶ୍ନର ସମାଧାନରେ ହିଁ ମଜ୍ଜି ରହିଲା ଏବଂ ବିବାହ, ସଂସାର, ବିଷୟବୁଦ୍ଧି, ଉପାର୍ଜନ, ଭୋଗସୁଖ ଏବଂ ଆବଶ୍ୟକୀୟ ଆହାର-ବିହାରାଦି ପର୍ଯ୍ୟନ୍ତ ନିତାନ୍ତ ନିଷ୍ପ୍ରୟୋଜନୀୟ ବୋଧ ହେଲା । ସୁଦୂର କାମାରପୁକୁରରେ ଯେଉଁ ବାଳକତ୍ୱ ସଂସାରୀ ଲୋକଙ୍କର ପରିହାସର ବିଷୟ ହୋଇଥିଲା, ଶ୍ରୀରାମକୃଷ୍ଣଙ୍କ ସେହି ବାଳକତ୍ୱ ହିଁ ଦକ୍ଷିଣେଶ୍ୱରର ଦେବମନ୍ଦିରରେ ନିତାନ୍ତ ପ୍ରସ୍ଫୁଟିତ ହୋଇ ସେହି ସଂସାରୀ ଲୋକଙ୍କର ଆହୁରି ଅଧିକ ଉପେକ୍ଷଣୀୟ ବାତୁଳତା ବୋଲି ପରିଗଣିତ ହେଲା । କିନ୍ତୁ ଏହି ବାତୁଳତାରେ ଉଦ୍ଦେଶ୍ୟହୀନତା ବା ଅସମ୍ବନ୍ଧତା କେଉଁଠି ? ଇନ୍ଦ୍ରିୟାତୀତ ପଦାର୍ଥର ସାକ୍ଷାତ୍ ସମ୍ବନ୍ଧ ଜାଣିବା, ସ୍ପର୍ଶ କରିବା, ପୂର୍ଣ୍ଣଭାବରେ ଆସ୍ୱାଦନ କରିବା ଇତ୍ୟାଦି କ'ଣ ଏହାର ବିଶେଷ ଲକ୍ଷଣ ନ ଥିଲା ? ଯେଉଁ ସୁଦୃଢ଼ ଧାରଣା, ଅପରାଜିତ ଅଧ୍ୟବସାୟ ଏବଂ ଉଦ୍ଦେଶ୍ୟର ସରଳତା ଓ ଏକନିଷ୍ଠତା କାମାରପୁକୁରରେ ବାଳକ ରାମକୃଷ୍ଣଙ୍କର ବାଳକତ୍ୱରେ ଅଭିନବ ଶ୍ରୀ ପ୍ରଦାନ କରିଥିଲା, ତାହା ହିଁ ଏବେ ଆପାତଦୃଷ୍ଟିରେ ବାତୁଳ ରାମକୃଷ୍ଣଙ୍କର ବାତୁଳତ୍ୱକୁ ଏକ ଅଦ୍ଭୁତ ଅଦୃଷ୍ଟପୂର୍ବ ଘଟଣାରେ ରୂପାନ୍ତରିତ କଲା ।

ଦ୍ୱାଦଶ ବର୍ଷଧରି ପ୍ରବଳ ମାନସ ଝଡ଼ ବହିଚାଲିଲା । ଅନ୍ତଃପ୍ରକୃତିର ସେହି ଭୀଷଣ ସଂଗ୍ରାମରେ ଅବିଶ୍ୱାସ, ସନ୍ଦେହ ପ୍ରଭୃତିର ତୁମୁଳ ତରଙ୍ଗ ଆଘାତରେ ଶ୍ରୀରାମକୃଷ୍ଣଙ୍କର ଜୀବନତରୀର ଅସ୍ତିତ୍ୱ ମଧ୍ୟ ସେତେବେଳେ ସନ୍ଦେହର ବିଷୟ ହୋଇଉଠିଲା । କିନ୍ତୁ ସେହି ବୀରହୃଦୟ ଆସନ୍ନ-ମୃତ୍ୟୁ ସମ୍ମୁଖରେ ମଧ୍ୟ କମ୍ପିତ ହେଲା ନାହିଁ, ଗନ୍ତବ୍ୟ ପଥ ଛାଡ଼ିଲା ନାହିଁ—ଭଗବଦ୍ ଅନୁରାଗ ଓ ବିଶ୍ୱାସ ସହାୟରେ ଧୀର ସ୍ଥିରଭାବରେ ନିଜ ପଥରେ ଅଗ୍ରସର ହେଲା । ସଂସାରର କାମକାଞ୍ଚନମୟ କୋଳାହଳ ଏବଂ ଲୋକମାନେ ଯାହାକୁ ଭଲମନ୍ଦ, ଧର୍ମ ଅଧର୍ମ, ପାପ-ପୁଣ୍ୟ ଆଦି କହନ୍ତି, ସେସମସ୍ତ କେତେ ପଛରେ ପଡ଼ିରହିଲା—ଭାବର ପ୍ରବଳ ତରଙ୍ଗ ପ୍ରତିକୂଳ ପଥରେ ଉର୍ଦ୍ଧ୍ୱକୁ ଦୌଡ଼ିବାକୁ ଲାଗିଲା । ସେହି ପ୍ରବଳ

ତପସ୍ୟା ଓ ଅନନ୍ତ ଭାବରାଶିର ଗଭୀର ଉଚ୍ଛ୍ୱାସରେ ଶ୍ରୀରାମକୃଷ୍ଣଙ୍କର ମହାବଳିଷ୍ଠ ଶରୀର ଓ ମନ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ନୂତନ ଆକାର, ନୂତନ ଶ୍ରୀ ଧାରଣ କଲା ! ଏହିପରି ମହାସତ୍ୟ, ମହାଭାବ, ମହାଶକ୍ତି ଧାରଣ ଓ ସଞ୍ଚାରର ପୂର୍ଣ୍ଣାଙ୍ଗ ଯନ୍ତ୍ର ଗଠିତ ହେଲା ।

## ଏହି ସତ୍ୟ ଅନ୍ୱେଷଣର ଫଳ :

ହେ ମାନବ ! ଶ୍ରୀରାମକୃଷ୍ଣଙ୍କର ଏହି ଅଦ୍ଭୁତ ବୀରତ୍ୱକାହାଣୀ ତୁମେ କ'ଣ ହୃଦୟଙ୍ଗମ କରିପାରିବ ? ତୁମର ସ୍ଥୂଳ ଦୃଷ୍ଟିରେ ପରିମାଣ ଓ ସଂଖ୍ୟାଧିକ୍ୟ ନେଇ ହିଁ ପଦାର୍ଥର ଗୁରୁତ୍ୱ ବା ଲଘୁତ୍ୱ ଗ୍ରାହ୍ୟ ହୋଇଥାଏ । କିନ୍ତୁ ଯେଉଁ ସୂକ୍ଷ୍ମ ଶକ୍ତି, ସ୍ୱାର୍ଥଗନ୍ଧ ପର୍ଯ୍ୟନ୍ତ ବିଦୂରିତ କରି ଅହଂକାରକୁ ସମୂଳେ ଉତ୍ପାଟିତ କରେ, ଯାହାର ବଳରେ, ଇଚ୍ଛା କଲେ ମଧ୍ୟ କିଞ୍ଚିତ୍ ମାତ୍ର ସ୍ୱାର୍ଥଚେଷ୍ଟା ଶରୀର ଓ ମନ ପକ୍ଷରେ ଅସମ୍ଭବ ହୋଇଥାଏ, ସେହି ଶକ୍ତିର ପରିଚୟ ତୁମେ କେଉଁଠି ପାଇବ ? ଜ୍ଞାତ ବା ଅଜ୍ଞାତସାରରେ ଧାତୁସ୍ପର୍ଶମାତ୍ରେ ହିଁ ଶ୍ରୀରାମକୃଷ୍ଣଙ୍କର ହସ୍ତ ବଙ୍କା ହୋଇ ସେହି ଧାତୁ ଗ୍ରହଣରେ ଅସମର୍ଥ ହେଉଥିଲା; ପତ୍ର ପୁଷ୍ପ ପ୍ରଭୃତି ତୁଚ୍ଛ ବସ୍ତୁ ଜ୍ଞାତ ବା ଅଜ୍ଞାତସାରରେ ସତ୍ତ୍ୱାଧିକାରୀଙ୍କ ବିନା ଅନୁମତିରେ ଗ୍ରହଣ କଲେ ନିତ୍ୟ ଅଭ୍ୟସ୍ତ ପଥଦେଇ ଆସୁ ଆସୁ ସେ ପଥହରା ହୋଇ ବିପରୀତ ଦିଗରେ ଗମନ କରୁଥିଲେ; ଗଣ୍ଠି ପକାଇଲେ ସେହି ଗଣ୍ଠି ଯେପର୍ଯ୍ୟନ୍ତ ନ ଖୋଲିଛନ୍ତି, ସେପର୍ଯ୍ୟନ୍ତ ତାଙ୍କର ଶ୍ୱାସରୁଦ୍ଧ ରହୁଥିଲା, ବହୁଚେଷ୍ଟାରେ ମଧ୍ୟ ବହିର୍ଗତ ହେଉ ନ ଥିଲା; ସୁକୋମଳ ରମଣୀ ସ୍ପର୍ଶରେ ତାଙ୍କର ଇନ୍ଦ୍ରିୟ କୂର୍ମସଦୃଶ ସଙ୍କୁଚିତ ହୋଇଯାଉଥିଲା ! —ଏସମସ୍ତ ଶାରୀରିକ ବିକାର ଯେ ପବିତ୍ରତମ ମାନସିକ ଭାବସମୂହର ବାହ୍ୟ ଅଭିବ୍ୟକ୍ତି, ଆଜନ୍ମ ସ୍ୱାର୍ଥଦୃଷ୍ଟିପଟୁ ମାନବ-ନୟନ ତାହାର ଦର୍ଶନ କେଉଁଠାରେ ପାଇବ ? ଆମମାନଙ୍କର ଦୂରପ୍ରସାରୀ କଳ୍ପନା ମଧ୍ୟ କ'ଣ ଏହି ଶୁଦ୍ଧତମ ଭାବରାଜ୍ୟରେ ପ୍ରବେଶ ଅଧିକାର ପାଇପାରିବ ? 'ଭାବର ଘରେ ଚୋରି' କରିବାକୁ ହିଁ ଆମେ ଆଜୀବନ ଶିଖିଛୁ । ଯଥାର୍ଥକୁ ଗୋପନ ରଖି କୌଣସି ମତେ ଠକିଦେଇ ବଡ଼ଲୋକ ହେବାର ବା ନାମ କମାଇବାର ସୁଯୋଗ ପାଇଲେ ଆମମାନଙ୍କ ମଧ୍ୟରୁ କେତେଜଣ ପଶ୍ଚାତ୍‌ପଦ ହେବେ ? ସର୍ବୋପରି ସାହସର କଥା । ଥରେ ଆଘାତପ୍ରାପ୍ତ ହୋଇ ଦଶଥର ଆଘାତ କରିବା ଅଥବା ଅଗ୍ନିଉଦ୍‌ଗାରକାରୀ ତୋପ ସମ୍ମୁଖରେ ଧାବିତ ହୋଇ ସ୍ୱାର୍ଥସିଦ୍ଧି ନିମିତ୍ତ ପ୍ରାଣବିସର୍ଜନ ଦେବା ପରି ସାହସ କରି ନ ପାରିଲେ ମଧ୍ୟ ଏହାଶୁଣି ଆମର ପ୍ରୀତିର ଉଦ୍ଦୀପନ ହୁଏ, କିନ୍ତୁ ଯେଉଁ ସାହସରେ ଦଣ୍ଡାୟମାନ ହୋଇ ଶ୍ରୀରାମକୃଷ୍ଣଦେବ ପୃଥିବୀ ଓ ସ୍ୱର୍ଗର ଭୋଗସୁଖ ଏବଂ ନିଜର ଶରୀର ଓ ମନ ପର୍ଯ୍ୟନ୍ତ, ଜଗତର ଅପରିଚିତ ଅଜ୍ଞାତ ଅନୁପଲବ୍ଧ ଇନ୍ଦ୍ରିୟାତୀତ ପଦାର୍ଥ ନିମିତ୍ତ ତ୍ୟାଗ କରିଥିଲେ, ସେହି ସାହସର କିଞ୍ଚିତ୍

ଛାୟାମାତ୍ର ମଧ୍ୟ ଆମେ କ'ଣ ଅନୁଭବ କରିବାକୁ ସମର୍ଥ ? ଯଦି ଏହା ତୁମ ପାଇଁ ସମ୍ଭବ, ତେବେ ହେ ବୀର ଶ୍ରୋତା, ତୁମେ ମୋର ଓ ସମସ୍ତଙ୍କର ପୂଜନୀୟ ମୃତ୍ୟୁଞ୍ଜୟତ୍ୱ ଲାଭ କରିଅଛ ।

## ଶ୍ରୀରାମକୃଷ୍ଣଦେବଙ୍କର ସାମାନ୍ୟ କଥାର ଗଭୀର ଅର୍ଥ :

ଶ୍ରୀରାମକୃଷ୍ଣଦେବଙ୍କର ଅତି ତୁଚ୍ଛ କଥା ବା ଅତି କ୍ଷୁଦ୍ର କାର୍ଯ୍ୟସମୂହ ମଧ୍ୟ କେତେ ଗଭୀର ଅର୍ଥପୂର୍ଣ୍ଣ ରହୁଥିଲା, ତାହା ସ୍ୱୟଂ ନ ବୁଝାଇଲେ କାହାର ବୁଝିବାର ସାଧ୍ୟ ନ ଥିଲା । ସମାଧିଭଙ୍ଗ ପରେ ଅନେକ ସମୟରେ ଯେ ସେ ନିତ୍ୟପରିଚିତ ବସ୍ତୁ ବା ବ୍ୟକ୍ତିମାନଙ୍କର ନାମ ଉଲ୍ଲେଖ ବା ସ୍ପର୍ଶ କରୁଥିଲେ, ଅଥବା କୌଣସି ଖାଦ୍ୟଦ୍ରବ୍ୟବିଶେଷର ଉଲ୍ଲେଖ କରି ଗ୍ରହଣ କରିବା ପାଇଁ କହୁଥିଲେ, ତାହାର ଗୂଢ଼ ରହସ୍ୟ ଆମକୁ ଦିନେ ବୁଝାଇଥିଲେ । କହିଥିଲେ, "ସାଧାରଣ ମାନବର ମନ ଗୁହ୍ୟ, ଲିଙ୍ଗ ଏବଂ ନାଭି ସମାଶ୍ରିତ ସୂକ୍ଷ୍ମ ସ୍ନାୟୁଚକ୍ରରେ ହିଁ ବିଚରଣ କରେ । କିଞ୍ଚିତ୍ ଶୁଦ୍ଧ ହେଲେ ଏହି ମନ ବେଳେ ବେଳେ ହୃଦୟସମାଶ୍ରିତ ଚକ୍ରରେ ଉଠି ଜ୍ୟୋତି ବା ଜ୍ୟୋତିର୍ମୟ ରୂପର ଦର୍ଶନରେ ଅଳ୍ପ ଆନନ୍ଦ ଅନୁଭବ କରେ । ନିଷ୍ଠାର ଏକାଗ୍ରତାରେ ବିଶେଷ ଅଭ୍ୟସ୍ତ ହେଲେ କଣ୍ଠସମାଶ୍ରିତ ଚକ୍ରରେ ଏହା ଉଠିଥାଏ ଏବଂ ସେତେବେଳେ ଯେଉଁ ବସ୍ତୁରେ ସନ୍ନିବିଷ୍ଟ ହୋଇଅଛି ସେହି କଥା ଛଡ଼ା ଅନ୍ୟ କୌଣସି ବିଷୟର ଆଲୋଚନା ତା' ପକ୍ଷରେ ଅସମ୍ଭବ ହୋଇଥାଏ । ସେସ୍ଥାନରେ ଉଠିଲେ ମଧ୍ୟ ସେହି ମନ ନିମ୍ନାବସ୍ଥିତ ଚକ୍ରସମୂହକୁ ପୁନର୍ଗମନ କରି ଏହି ନିଷ୍ଠା ସମ୍ପୂର୍ଣ୍ଣ ଭୁଲି ଯାଇପାରେ । କିନ୍ତୁ ଯଦି କେବେ କୌଣସି ପ୍ରକାରରେ ପ୍ରବଳ ଏକନିଷ୍ଠା ସହାୟରେ କଣ୍ଠର ଉର୍ଦ୍ଧ୍ୱଦେଶସ୍ଥ ଭ୍ରୂମଧ୍ୟସ୍ଥିତ ଚକ୍ରରେ ତାହାର ଗମନ ହୁଏ, ସେତେବେଳେ ସେ ସମାଧିସ୍ଥ ହୋଇ ଯେଉଁ ଆନନ୍ଦ ଅନୁଭବ କରେ, ତାହା ନିକଟରେ ନିମ୍ନ ଚକ୍ର ଆଦିର ବିଷୟାନନ୍ଦ-ଉପଭୋଗ ତୁଚ୍ଛ ବୋଲି ପ୍ରତୀତ ହୁଏ; ଏଠାରୁ ତାର ଆଉ ପତନ ଆଶଙ୍କା ରହେ ନାହିଁ । ଏହିଠାରୁ କିଞ୍ଚିତ୍ ମାତ୍ର ଆବରଣରେ ଆବୃତ ପରମାତ୍ମାଙ୍କର ଜ୍ୟୋତି ତାହା ସମ୍ମୁଖରେ ପ୍ରକାଶିତ ହୁଏ । ପରମାତ୍ମାଙ୍କଠାରୁ ଅତିକମ୍ ମାତ୍ରାରେ ଭେଦ ରହିଲେ ମଧ୍ୟ ଏହି ସ୍ତରକୁ ପହଞ୍ଚିଲେ ଅଦ୍ୱୈତ ଜ୍ଞାନର ବିଶେଷ ଆଭାସ ପ୍ରାପ୍ତ ହୋଇଥାଏ ଏବଂ ଏହି ଚକ୍ର ଭେଦ କରିପାରିଲେ ହିଁ ଭେଦାଭେଦଜ୍ଞାନ ସମ୍ପୂର୍ଣ୍ଣରୂପେ ବିଗଳିତ ହୋଇ ପୂର୍ଣ୍ଣ ଅଦ୍ୱୈତଜ୍ଞାନରେ ଅବସ୍ଥାନ ହୁଏ । ମୋର ମନ ତୁମମାନଙ୍କୁ ଶିକ୍ଷା ଦେବା ନିମିତ୍ତ କଣ୍ଠାଶ୍ରିତ ଚକ୍ର ପର୍ଯ୍ୟନ୍ତ ଅବତରଣ କରିଥାଏ, ଏଠାରେ ମଧ୍ୟ ତାକୁ କୌଣସି ପ୍ରକାରେ ଜୋର କରି ରଖିବାକୁ ହୋଇଥାଏ । ଛଅମାସ କାଳଧରି ପୂର୍ଣ୍ଣ ଅଦ୍ୱୈତଜ୍ଞାନରେ ଅବସ୍ଥାନ କରିବା ଯୋଗୁଁ ତା'ର ଗତି ସ୍ୱଭାବତଃ ହିଁ ସେହି ମାର୍ଗରେ ପ୍ରବାହିତ ରହିଅଛି । ଏହା କରିବି, ତାହା ଖାଇବି, ତାକୁ ଦେଖିବି,

ସେଠାକୁ ଯିବି ଇତ୍ୟାଦି କ୍ଷୁଦ୍ର କ୍ଷୁଦ୍ର ବାସନାରେ ନିବଦ୍ଧ ନ ରଖିଲେ ତାକୁ ଅବତରଣ କରାଇବା ଅତ୍ୟନ୍ତ କଠିନ ହୋଇଥାଏ ଏବଂ ନିମ୍ନଗାମୀ ନ ହେଲେ କଥାବାର୍ତ୍ତା, ଚାଲବୁଲ, ଖାଇବା ଓ ଶରୀରରକ୍ଷା କରିବା ଇତ୍ୟାଦି ସବୁ ଅସମ୍ଭବ ହୋଇଥାଏ । ସେଥିପାଇଁ ସମାଧିରେ ଉଠିବା ସମୟରେ ହିଁ ମୁଁ କୌଣସି ନା କୌଣସି ଏକ କ୍ଷୁଦ୍ର ବାସନା, ଯଥା—ତମାଖୁ ଖାଇବି ବା ସେଠାକୁ ଯିବି ଇତ୍ୟାଦି ରଖିଥାଏ, ତାସତ୍ତ୍ୱେ ଅନେକ ସମୟରେ ସେହି ବାସନା ବାରମ୍ବାର ଉଲ୍ଲେଖ କଲେ ତେବେ ମନ ଟିକିଏ ଓହ୍ଲାଇ ଆସେ ।''

ପଞ୍ଚଦଶୀକାର କୌଣସି ସ୍ଥାନରେ କହିଛନ୍ତି, ସମାଧିଲାଭ ପୂର୍ବରୁ ମନୁଷ୍ୟ ଯେଉଁ ଅବସ୍ଥାରେ ଯେଉଁ ଭାବରେ ଥାଏ, ସମାଧିଲାଭ ପରେ ସମଧିକ ଶକ୍ତିସମ୍ପନ୍ନ ହୋଇ ମଧ ନିଜର ସେହି ଅବସ୍ଥା ପରିବର୍ତ୍ତନ କରିବାକୁ ତାର ଅଭିରୁଚି ହୁଏ ନାହିଁ । କାରଣ, ବ୍ରହ୍ମବସ୍ତୁ ବ୍ୟତୀତ ଅନ୍ୟ ସମସ୍ତ ବସ୍ତୁ ବା ଅବସ୍ଥା ହିଁ ତାଙ୍କ ନିକଟରେ ଅତି ତୁଚ୍ଛ ବୋଲି ପ୍ରତୀତ ହୁଏ । ପୂର୍ବୋକ୍ତ ପ୍ରବଳ ଧର୍ମାନୁରାଗ ପ୍ରବାହିତ ହେବା ପୂର୍ବରୁ ଶ୍ରୀରାମକୃଷ୍ଣଙ୍କର ଜୀବନ ଯେଉଁ ଭାବରେ ଚାଲିତ ହେଉଥିଲା, ତାହାର କିଛି କିଛି ନିଦର୍ଶନ ଦକ୍ଷିଣେଶ୍ୱରରେ ତାଙ୍କର ଦୈନନ୍ଦିନ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟସମୂହରେ ଦେଖାଯାଉଥିଲା । ସେଥିରୁ ଦୁଇ ଚାରୋଟି କଥା ଏଠାରେ ଉଲ୍ଲେଖ କରୁଅଛୁ ।

### ଦୈନନ୍ଦିନ ଜୀବନରେ ଯେଉଁ ସମସ୍ତ ବିଷୟର ପରିଚୟ ତାଙ୍କଠାରେ ମିଳୁଥିଲା :

ଶରୀର, ବସ୍ତ୍ର, ବିଛଣା ପ୍ରଭୃତି ଅତି ପରିଷ୍କାର ରଖିବା ତାଙ୍କର ଅଭ୍ୟାସ ଥିଲା । ଯେଉଁ ଜିନିଷ ଯେଉଁଠାରେ ରଖିବା କଥା, ସେହି ଜିନିଷ ସେହି ସ୍ଥାନରେ ନିଜେ ରଖିବାକୁ ଏବଂ ଅନ୍ୟମାନଙ୍କୁ ସେପରି ରଖିବା ଶିଖାଇବାକୁ ଭଲ ପାଉଥିଲେ, କେହି ଅନ୍ୟ କିଛି କଲେ ବିରକ୍ତ ହେଉଥିଲେ । କୌଣସି ସ୍ଥାନକୁ ଯିବାକୁ ହେଲେ ଗାମୁଛା, ବଟୁଆ ପ୍ରଭୃତି ସମସ୍ତ ଜିନିଷପତ୍ର ଠିକ୍ ଭାବରେ ନିଆଯାଇଛି କି ନାହିଁ, ତାହା ଅନୁସନ୍ଧାନ କରୁଥିଲେ ଏବଂ ସେଠାରୁ ଫେରିବା ସମୟରେ ମଧ ସେସବୁ ଜିନିଷ ଆଣିବାକୁ ଯେପରି ଭୁଲ୍ ନ ହୁଏ, ତାହା ସାଙ୍ଗରେ ଯାଇଥିବା ଶିଷ୍ୟଙ୍କୁ ମନେପକାଇ ଦେଉଥିଲେ । ଯେଉଁ ସମୟରେ ଯେଉଁ କର୍ମ କରିବେ ବୋଲି କହିଥାଆନ୍ତି ତାହା ଠିକ୍ ସେହି ସମୟରେ କରିବା ପାଇଁ ବ୍ୟସ୍ତ ହେଉଥିଲେ । ଯାହା ହାତରୁ ଯେଉଁ ଜିନିଷ ନେବେ କହିଥାଆନ୍ତି, ମିଥ୍ୟାକଥନ ଭୟରେ ସେବସ୍ତୁ ଅନ୍ୟ କାହାଠାରୁ ଗ୍ରହଣ କରୁ ନ ଥିଲେ । ସେଥିରେ ଯଦି ଦୀର୍ଘକାଳ ଅସୁବିଧା ଭୋଗ କରିବାକୁ ହୁଏ, ତାହା ମଧ ସ୍ୱୀକାର କରୁଥିଲେ । ଛିନ୍ନ ବସ୍ତ୍ର, ଛତା ବା ପାଦୁକାଦି କାହାକୁ ବ୍ୟବହାର କରିବାର ଦେଖିଲେ, ସାମର୍ଥ୍ୟ ଥିଲେ ନୂତନ କିଣିବାକୁ ଉପଦେଶ କରୁଥିଲେ ଏବଂ ଅସମର୍ଥ ହେଲେ ବେଳେ

ବେଳେ ନିଜେ କିଣି ଦେଉଥିଲେ । କହୁଥିଲେ, ସେପରି ବସ୍ତ୍ର ବ୍ୟବହାର କଲେ ମନୁଷ୍ୟ ଲକ୍ଷ୍ମୀଛଡ଼ା ଓ ହତଶ୍ରୀ ହୁଅନ୍ତି । ଅଭିମାନ ତଥା ଅହଂକାରସୂଚକ ବାକ୍ୟ ତାଙ୍କ ମୁହଁରୁ ନିଃସୃତ ହେବା ଏକାବେଳକେ ଅସମ୍ଭବ ଥିଲା । ନିଜର ଭାବ ବା ମତ କହିବାକୁ ହେଲେ ନିଜର ଶରୀରକୁ ଦେଖାଇ 'ଏଠାକାର ଭାବ', 'ଏଠାକାର ମତ' ଇତ୍ୟାଦି ଶବ୍ଦ ପ୍ରୟୋଗ କରୁଥିଲେ । ଶିଷ୍ୟବର୍ଗଙ୍କର ହାତ, ପାଦ, ଆଖି, ମୁହଁ ପ୍ରଭୃତି ଶାରୀରିକ ଅଙ୍ଗର ଗଠନ ଏବଂ ତାଙ୍କର ଚାଲିଚଳନ, ଆହାର-ବିହାର, ନିଦ୍ରା ପ୍ରଭୃତି କାର୍ଯ୍ୟକଳାପ ତନ୍ନ ତନ୍ନ କରି ଲକ୍ଷ୍ୟ କରି ସେମାନଙ୍କର ମାନସିକ ପ୍ରବୃତ୍ତିସମୂହର ଗତି, କେଉଁ ପ୍ରବୃତ୍ତି କେତେ ଅଧିକ ଇତ୍ୟାଦି, ଯାହା ସେ ସ୍ଥିର କରିଥାଆନ୍ତି, ତା'ର ବ୍ୟତିକ୍ରମ ଏପର୍ଯ୍ୟନ୍ତ ଆମେ ଦେଖିବାକୁ ପାଇ ନାହୁଁ ।

ଅନେକେ କହିଥାନ୍ତି ଯେ, ଶ୍ରୀରାମକୃଷ୍ଣଦେବଙ୍କ ନିକଟକୁ ଯେଉଁମାନେ ଯାଉଥିଲେ, ସେମାନେ ପ୍ରତ୍ୟେକେ ମନେ କରୁଥିଲେ ଯେ, ଶ୍ରୀରାମକୃଷ୍ଣଦେବ ତାଙ୍କୁ ହିଁ ସମସ୍ତଙ୍କ ଅପେକ୍ଷା ଅଧିକ ଭଲ ପାଆନ୍ତି । ଆମର ମନେହୁଏ ପ୍ରତ୍ୟେକ ବ୍ୟକ୍ତିଙ୍କର ସୁଖ-ଦୁଃଖ ଇତ୍ୟାଦି ଜୀବନାନୁଭବ ସହିତ ତାଙ୍କର ଯେଉଁ ପ୍ରଗାଢ଼ ସହାନୁଭୂତି ଥିଲା, ତାହା ହିଁ ଏହାର କାରଣ । ସହାନୁଭୂତି ଓ ଭଲପାଇବା ବା ପ୍ରେମ ଦୁଇଟି ଭିନ୍ନ ବସ୍ତୁ ହେଲେ ମଧ୍ୟ ଶେଷୋକ୍ତର ବାହ୍ୟିକ ଲକ୍ଷଣ ପ୍ରଥମଟି ସହିତ ବିଶେଷ ଅଲଗା ନୁହେଁ । ସେଥିପାଇଁ ସହାନୁଭୂତିକୁ ପ୍ରେମ ବୋଲି ଭାବିବା ବିଶେଷ ବିଚିତ୍ର ନୁହେଁ । ପ୍ରତ୍ୟେକ ବସ୍ତୁ ଭାବିବା ସମୟରେ ସେଥିରେ ତନ୍ମୟ ହେବା ତାଙ୍କ ମନର ସ୍ୱଭାବସିଦ୍ଧ ଗୁଣ ଥିଲା । ଏହି ଗୁଣ ଥିବାରୁ ହିଁ ସେ ପ୍ରତ୍ୟେକ ଶିଷ୍ୟଙ୍କର ମନର ଅବସ୍ଥା ଠିକ୍ ଭାବରେ ବୁଝିପାରୁଥିଲେ ଏବଂ ସେହି ଶିଷ୍ୟଙ୍କ ଉନ୍ନତି ନିମିତ୍ତ ଯାହା ଆବଶ୍ୟକ, ତାହା ମଧ୍ୟ ଠିକ୍ ଠିକ୍ ବିଧାନ କରିପାରୁଥିଲେ । ଶ୍ରୀରାମକୃଷ୍ଣଦେବଙ୍କର ବାଳକତ୍ୱ-ବର୍ଣ୍ଣନା ପ୍ରସଙ୍ଗରେ ଆମେ ପୂର୍ବରୁ ହିଁ ଦେଖାଇବାକୁ ଚେଷ୍ଟା କରିଛୁ, ଶୈଶବକାଳରୁ ସେ ତାଙ୍କର ଚକ୍ଷୁ ଆଦି ଇନ୍ଦ୍ରିୟର କେତେଦୂର ସମ୍ପୂର୍ଣ୍ଣ ବ୍ୟବହାର କରିବାକୁ ଶିକ୍ଷା କରିଥିଲେ । ଏହି ଶିକ୍ଷା ଯେ ପରେ ମନୁଷ୍ୟଚରିତ୍ର ଗଠନରେ ତାଙ୍କର ବିଶେଷ ସହାୟ ହୋଇଥିଲା ସେଥିରେ ସନ୍ଦେହ ନାହିଁ । ଶିଷ୍ୟବର୍ଗ ମଧ୍ୟ ଯେଉଁଥିରେ ସବୁ ସ୍ଥାନରେ ସବୁ ବିଷୟରେ ସେହିପରି ଇନ୍ଦ୍ରିୟାଦିର ବ୍ୟବହାର କରିବାକୁ ଶିଖନ୍ତି, ସେବିଷୟରେ ତାଙ୍କର ବିଶେଷ ଲକ୍ଷ୍ୟ ଥିଲା । ପ୍ରତ୍ୟେକ କାର୍ଯ୍ୟ ହିଁ ବିଚାର ବୁଦ୍ଧି ଅବଲମ୍ବନ କରି ଅନୁଷ୍ଠାନ କରିବାକୁ ସେ ସର୍ବଦା ଉପଦେଶ ଦେଉଥିଲେ । ବିଚାରବୁଦ୍ଧି ହିଁ ବସ୍ତୁର ଗୁଣାଗୁଣ ପ୍ରକାଶ କରି ମନକୁ ଯଥାର୍ଥ ତ୍ୟାଗ ଆଡ଼କୁ ଅଗ୍ରସର କରାଇବ, ଏହି କଥା ସେ ବାରମ୍ବାର କହିବାର ଆମେ ଶୁଣିଛୁ । ବୁଦ୍ଧିହୀନ ବା ଏକଦେଶୀ ବୁଦ୍ଧିମାନର ଆଦର ତାଙ୍କ ନିକଟରେ କେବେ ମଧ୍ୟ ନ ଥିଲା । ସମସ୍ତେ ତାଙ୍କୁ କହିବାର ଶୁଣିଛନ୍ତି, ''ଭଗବଦ୍ ଭକ୍ତ ହେବୁ ବୋଲି ବୋକା ହେବୁ କାହିଁକି ?'' ଅଥବା ''ଏକଦେଶୀ ବୁଦ୍ଧିଯୁକ୍ତ

ହୁଅ ନାହିଁ, ତାହା ଏଠାକାର ଭାବ ନୁହେଁ, ଏଠାରେ ଝୋଳ ବି ଖାଇବ, ରାଗ ଖାଇବ, ଆମ୍ବିଳ ଖାଇବ—ଏହି ଭାବ ।'' ଏକଦେଶୀ ବୁଦ୍ଧିକୁ ହିଁ ସେ ସଂକୀର୍ଣ୍ଣ ବୁଦ୍ଧି ବା ଏକାଙ୍ଗୀ ଭାବ ବୋଲି କହୁଥିଲେ । ''ତୁ ତ ବଡ଼ ସଂକୀର୍ଣ୍ଣ ବୁଦ୍ଧିଯୁକ୍ତ'' —ଭଗବଦ୍ ଭାବର ବିଶେଷ କୌଣସିଟିରେ କୌଣସି ଶିଷ୍ୟ ଆନନ୍ଦ ଅନୁଭବ କରି ନ ପାରିଲେ ପୂର୍ବୋକ୍ତ କଥାଗୁଡ଼ିକ ହିଁ ତାଙ୍କର ତିରସ୍କାରବାକ୍ୟ ଥିଲା । ସେହି ତିରସ୍କାରବାକ୍ୟ ଏପରି ଭାବରେ କହୁଥିଲେ ଯେ, ସେଥିରେ ଶିଷ୍ୟ ଲଜ୍ଜିତ ହୋଇ ମାଟିରେ ମିଶିଯିବା ପରି ହେଉଥିଲା । ଏଥିରେ ସନ୍ଦେହ ନାହିଁ ଯେ, ସେହି ଉଦାର ସାର୍ବଜନୀନ ଭାବର ପ୍ରେରଣାରେ ହିଁ ସେ ସକଳ ଧର୍ମମତର ସର୍ବପ୍ରକାର ଭାବର ସାଧନାରେ ପ୍ରବୃତ୍ତ ହୋଇ 'ଯେତେ ମତ ସେତେ ପଥ' ଏହି ସତ୍ୟ-ନିରୂପଣରେ ସମର୍ଥ ହୋଇଥିଲେ ।

### ଶ୍ରୀରାମକୃଷ୍ଣଦେବଙ୍କର ଧର୍ମପ୍ରଚାର କିପରି ଭାବରେ କେତେଦୂର ହୋଇଅଛି ଓ ପରେ ହେବ :

ଫୁଲ ଫୁଟିଲା । ଦେଶ ଦେଶାନ୍ତରର ମଧୁମକ୍ଷିକାବୃନ୍ଦ ମଧୁଲୋଭରେ ଉନ୍ମତ୍ତ ହୋଇ ଚତୁର୍ଦ୍ଦିଗରୁ ଛୁଟି ଆସିଲେ । ରବିକିରଣ ସ୍ପର୍ଶରେ ନିଜ ହୃଦୟ ସମ୍ପୂର୍ଣ୍ଣ ଅନାବୃତ କରି କମଳପୁଷ୍ପ ସେମାନଙ୍କୁ ପୂର୍ଣ୍ଣଭାବରେ ପରିତୃପ୍ତ କରିବାକୁ କୃପଣତା କଲା ନାହିଁ । ପାଶ୍ଚାତ୍ୟ ଶିକ୍ଷାସଂସ୍ପର୍ଶହୀନ, ଭାରତରେ ପ୍ରଚଳିତ କୁସଂସ୍କାର ଖ୍ୟାତ ଧର୍ମଭାବରେ ଗଠିତ ଜୀବନ ଶ୍ରୀରାମକୃଷ୍ଣ ଯେଉଁ ଧର୍ମ ମଧୁ ଆଜି ଜଗତକୁ ଦାନ କଲେ, ତାହାର ଅମୃତ-ଆସ୍ୱାଦ ଜଗତ ପୂର୍ବରୁ ଆଉ କେବେ ପାଇଛି କି ? ଯେଉଁ ମହାନ୍ ଧର୍ମଶକ୍ତି ସେ ସଞ୍ଚିତ କରି ଶିଷ୍ୟଙ୍କ ମଧ୍ୟରେ ସଞ୍ଚାରିତ କରିଛନ୍ତି, ଯାହାର ପ୍ରବଳ ଉଚ୍ଛ୍ୱାସରେ ବିଂଶ ଶତାବ୍ଦୀର ବିଜ୍ଞାନାଲୋକରେ ମଧ୍ୟ ଲୋକମାନେ ଧର୍ମକୁ ଜ୍ୱଳନ୍ତ ପ୍ରତ୍ୟକ୍ଷର ବିଷୟ ବୋଲି ଉପଲବ୍ଧି କରୁଛନ୍ତି ଏବଂ ସର୍ବଧର୍ମମତର ଅନ୍ତରରେ ଏକ ଅପରିବର୍ତ୍ତନୀୟ ଜୀବନ୍ତ ସନାତନଧର୍ମ-ସ୍ରୋତ ପ୍ରବାହିତ ଦେଖୁଛନ୍ତି— ସେହି ଶକ୍ତିର ଅଭିନୟ ଜଗତ୍ ଏହାପୂର୍ବରୁ ଆଉ କେବେ ଅନୁଭବ କରିଅଛି କି ? ପୁଷ୍ପରୁ ପୁଷ୍ପାନ୍ତରକୁ ବାୟୁ ସଞ୍ଚରଣ ସଦୃଶ ସତ୍ୟଠାରୁ ସତ୍ୟାନ୍ତରରେ ସଞ୍ଚରଣ କରି ମନୁଷ୍ୟଜୀବନ କ୍ରମଶଃ ଧୀର ପଦରେ ଏକ ଅପରିବର୍ତ୍ତନୀୟ ଅଦ୍ୱୈତ ସତ୍ୟ ଦିଗକୁ ଗମନ କରୁଅଛି ଏବଂ ଦିନେ ନା ଦିନେ ସେହି ଅନନ୍ତ ଅପାର ଅବାଙ୍ମନସଗୋଚର ସତ୍ୟକୁ ନିଶ୍ଚୟ ଉପଲବ୍ଧି କରି ପୂର୍ଣ୍ଣକାମ ହେବେ— ଏହି ଅଭୟବାଣୀ ମନୁଷ୍ୟଲୋକରେ ପୂର୍ବରୁ ଆଉ କେବେ କ'ଣ ଉଚ୍ଚାରିତ ହୋଇଅଛି ? ଭଗବାନ ଶ୍ରୀକୃଷ୍ଣ, ବୁଦ୍ଧ, ଶଙ୍କର, ରାମାନୁଜ, ଶ୍ରୀଚୈତନ୍ୟ ପ୍ରଭୃତି ଭାରତର, ଏବଂ ଈଶା, ମହମ୍ମଦ ପ୍ରଭୃତି ଭାରତଭିନ୍ନ ଦେଶର, ଧର୍ମାଚାର୍ଯ୍ୟମାନେ ଧର୍ମଜଗତର ଯେଉଁ ଏକଦେଶୀ ଭାବ ଦୂର କରିବାକୁ ସମର୍ଥ ହୋଇ ନାହାନ୍ତି,

ନିରକ୍ଷର ବ୍ରାହ୍ମଣବାଳକ ନିଜ ଜୀବନରେ ସମ୍ପୂର୍ଣ୍ଣରୂପରେ ସେହି ଭାବ ବିନଷ୍ଟ କରି ବିପରୀତ ଧର୍ମମତସମୂହର ପ୍ରକୃତ ସମନ୍ୱୟରୂପକ ଅସାଧସାଧନରେ ସମର୍ଥ ହେଲେ — ଏହି ଚିତ୍ର ଆଉ କେବେ କେହି କ'ଣ ଦେଖିଛନ୍ତି ? ହେ ମାନବ, ଧର୍ମ ଜଗତରେ ଶ୍ରୀରାମକୃଷ୍ଣଦେବଙ୍କର ଉଚ୍ଚାସନ ଯେ କେଉଁଠି ପ୍ରତିଷ୍ଠିତ, ତାହା ନିର୍ଣ୍ଣୟ କରିବାକୁ ଯଦି ସକ୍ଷମ ହୋଇଥାଅ ତେବେ କୁହ, ଆମେ କିନ୍ତୁ ସେହି ବିଷୟରେ ସାହସ କରିପାରିଲୁ ନାହିଁ, ତେବେ ଏତିକି ମାତ୍ର କହିପାରୁ ଯେ, 'ନିର୍ଜୀବ' ଭାରତ ତାଙ୍କର ପଦସ୍ପର୍ଶରେ ସମଧିକ ପବିତ୍ର ଓ ଜାଗ୍ରତ ହୋଇଅଛି ଏବଂ ଜଗତର ଗୌରବ ଓ ଆଶାର ସ୍ଥଳ ଅଧିକାର କରିଅଛି — ତାଙ୍କର ମନୁଷ୍ୟ ଶରୀର ପରିଗ୍ରହ କରିବା ଦ୍ୱାରା ନର ଦେବକୁଳର ପୂଜ୍ୟ ହୋଇଅଛି ଏବଂ ଯେଉଁ ଶକ୍ତିର ଉଦ୍‌ବୋଧନ ତାଙ୍କ ଦ୍ୱାରା ହୋଇଅଛି, ତା'ର ବିଚିତ୍ର ଲୀଳାଭିନୟର କେବଳ ଆରମ୍ଭ ମାତ୍ର ହିଁ ସ୍ୱାମୀ ବିବେକାନନ୍ଦଙ୍କଠାରେ ଜଗତ ଅନୁଭବ କରିଅଛି ।

ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗର
ଗୁରୁଭାବପର୍ବର ଉତ୍ତରାର୍ଦ୍ଧ ସମ୍ପୂର୍ଣ୍ଣ ।

*****

# ନିବେଦନ

'ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗ'ର ପଞ୍ଚମ ଖଣ୍ଡ ପ୍ରକାଶିତ ହେଲା । ବ୍ରାହ୍ମଭକ୍ତଗଣଙ୍କ ସହିତ ପ୍ରଥମ ପରିଚୟ ସମୟରୁ ଆରମ୍ଭ କରି ଗଳାରୋଗରେ ଆକ୍ରାନ୍ତ ହୋଇ ତାଙ୍କର ଚିକିତ୍ସା ନିମିତ୍ତ କଲିକତା ଆଗମନପୂର୍ବକ ଶ୍ୟାମପୁକୁରରେ ଅବସ୍ଥାନକାଳ ପର୍ଯ୍ୟନ୍ତ ସମୟ ମଧ୍ୟରେ ଠାକୁରଙ୍କର ଜୀବନର ଘଟଣାବଳୀ ଏଥିରେ ଯଥାସମ୍ଭବ ସନ୍ନିବେଶିତ ହୋଇଅଛି । ଠାକୁର ଏହି ସମୟରେ ନିରନ୍ତର ଦିବ୍ୟଭାବାରୁଢ଼ ରହି ପ୍ରତ୍ୟେକ ବ୍ୟକ୍ତିଙ୍କ ସହିତ ବ୍ୟବହାର ଓ ପ୍ରତିଟି କାର୍ଯ୍ୟର ଅନୁଷ୍ଠାନ କରୁଥିଲେ । ପୁଣି, ଏହି ସମୟରୁ ତାଙ୍କର ଅବଶିଷ୍ଟ ଜୀବନକାଳ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କ (ସ୍ୱାମୀ ବିବେକାନନ୍ଦଙ୍କର) ଜୀବନ ସହିତ ଏପରି ମଧୁର ସମ୍ବନ୍ଧରେ ଚିରକାଳ ପାଇଁ ମିଳିତ ହୋଇଥିଲା ଯେ, ସେହି କଥା ଆଲୋଚନା କରିବାକୁ ଗଲେ ସଙ୍ଗେ ସଙ୍ଗେ ନରେନ୍ଦ୍ରଙ୍କ ଜୀବନ-କଥା ଆସିଯାଏ । ସୁତରାଂ ବର୍ତ୍ତମାନ ଗ୍ରନ୍ଥଖଣ୍ଡିକ ''ଠାକୁରଙ୍କର ଦିବ୍ୟଭାବ ଓ ନରେନ୍ଦ୍ରନାଥ'' ନାମରେ ଅଭିହିତ ହେବା ହିଁ ଆମ ନିକଟରେ ଯୁକ୍ତିଯୁକ୍ତ ମନେ ହୋଇଅଛି ।

ଠାକୁରଙ୍କର ଜୀବନ-ଲୀଳା-ପ୍ରସଙ୍ଗ ଯେତେବେଳେ ପ୍ରଥମେ ଲିପିବଦ୍ଧ କରିବାକୁ ଆରମ୍ଭ କଲୁ, ସେତେବେଳେ ଆମେ ଏତେଦୂର ଅଗ୍ରସର ହୋଇପାରିବୁ, ଏକଥା କଳ୍ପନାତୀତ ଥିଲା । କିନ୍ତୁ ତାଙ୍କର ଅଚିନ୍ତ୍ୟ କୃପାରେ ଏହା ମଧ୍ୟ ସମ୍ଭବପର ହେଲା ! ଅତଏବ ତାଙ୍କର ଶ୍ରୀପାଦପଦ୍ମରେ ବାରମ୍ବାର ପ୍ରଣାମପୂର୍ବକ ଆମେ ଗ୍ରନ୍ଥଟିକୁ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କଲୁ । ଇତି—

ଶୁକ୍ଳ ଦ୍ୱିତୀୟା
୨୦ ଫାଲ୍‌ଗୁନ, ୧୩୨୫ ସାଲ
(୧୯୧୦ ଖ୍ରୀଷ୍ଟାବ୍ଦ)

ବିନୀତ-
**ଗ୍ରନ୍ଥକାର**

# ଠାକୁରଙ୍କର ଦିବ୍ୟଭାବ ଓ ନରେନ୍ଦ୍ରନାଥ

## ପୂର୍ବକଥା

### ଦିବ୍ୟଭାବର ବିଶେଷ ପ୍ରକାଶ ଠାକୁରଙ୍କର ଜୀବନରେ କେତେକାଳ ଥିଲା—ତାହାର ନିର୍ଣ୍ଣୟ :

ଷୋଡ଼ଶୀପୂଜା ଅନୁଷ୍ଠାନ କରି ଠାକୁର ନିଜର ସାଧନ-ଯଜ୍ଞ ସମ୍ପୂର୍ଣ୍ଣ କରିଥିଲେ, ଏକଥା ଆମେ ଏହା ପୂର୍ବରୁ ଉଲ୍ଲେଖ କରିଅଛୁ । ଏହିକାର୍ଯ୍ୟ ୧୨୮୦ ସାଲ, ଇଂରାଜୀ ୧୮୭୩ ମସିହାରେ ସମ୍ପାଦିତ ହୋଇଥିଲା । ଅତଏବ ସେବେଠାରୁ ସେ ଦିବ୍ୟଭାବର ପ୍ରେରଣାରେ ଜୀବନର ସମସ୍ତ କାର୍ଯ୍ୟ ଅନୁଷ୍ଠାନ କରିଥିଲେ, ଏକଥା କହିଲେ ଅସଙ୍ଗତ ହେବ ନାହିଁ । ଠାକୁରଙ୍କ ବୟସ ସେତେବେଳେ ଅଠତିରିଶ ବର୍ଷ ଥିଲା । ସୁତରାଂ ଅଣଚାଳିଶ ବର୍ଷ ବୟସରୁ ଆରମ୍ଭ କରି ପ୍ରାୟ ଦ୍ୱାଦଶ ବର୍ଷକାଳ ପର୍ଯ୍ୟନ୍ତ ତାଙ୍କ ଜୀବନରେ ଏହି ଭାବ ନିରନ୍ତର ପ୍ରବାହିତ ଥିଲା । ଶ୍ରୀଶ୍ରୀଜଗଦମ୍ବାଙ୍କର ଇଚ୍ଛାରେ ତାଙ୍କର ଚେଷ୍ଟାସମୂହ ଏହି ସମୟରେ ଅଦୃଷ୍ଟପୂର୍ବ ଅଭିନବ ଆକାର ଧାରଣ କରିଥିଲା । ଏହାର ପ୍ରେରଣାରେ ସେ ବର୍ତ୍ତମାନ ଯୁଗର ପାଶ୍ଚାତ୍ୟ ଶିକ୍ଷାସମ୍ପନ୍ନ ବ୍ୟକ୍ତିମାନଙ୍କ ମଧ୍ୟରେ ଧର୍ମ-ସଂସ୍ଥାପନରେ ମନୋନିବେଶ କରିଥିଲେ । ଅତଏବ ବୁଝାଯାଉଛି, ପୂର୍ଣ୍ଣ ଦ୍ୱାଦଶବର୍ଷବ୍ୟାପୀ ତପସ୍ୟା ଅନ୍ତେ ଠାକୁର ନିଜ ଶକ୍ତିର ଓ ଜନସାଧାରଣଙ୍କର ଆଧ୍ୟାତ୍ମିକ ଅବସ୍ଥା ସହିତ ପରିଚିତ ହେବାକୁ ଛଅବର୍ଷକାଳ ଅତିବାହିତ କରିଥିଲେ; ପରେ, ଇହକାଳସର୍ବସ୍ୱ ପାଶ୍ଚାତ୍ୟଭାବସମୂହର ପ୍ରବଳ ପ୍ରେରଣାରେ ଭାରତରେ ଯେଉଁ ଧର୍ମଗ୍ଲାନି ଉପସ୍ଥିତ ହୋଇଥିଲା ତାହାର ନିବାରଣ ଓ ସନାତନ ଧର୍ମର ପୁନଃ ପ୍ରତିଷ୍ଠା ପାଇଁ ବିଶେଷଭାବରେ ବ୍ରତୀ ହୋଇ ଦ୍ୱାଦଶବର୍ଷ ପରେ ଉକ୍ତ ବ୍ରତର ଉଦ୍‌ଯାପନପୂର୍ବକ ସଂସାରରୁ ଅବସର ଗ୍ରହଣ କରିଥିଲେ । ଉକ୍ତ କାର୍ଯ୍ୟ ସେ ଯେପରି ଭାବରେ ସମ୍ପନ୍ନ କରିଥିଲେ, ତାହା ହିଁ ଏବେ ଆମେ ଯଥାସାଧ୍ୟ ଲିପିବଦ୍ଧ କରିବାକୁ ପ୍ରବୃତ୍ତ ହେବୁ ।

### ଠାକୁରଙ୍କ ଜୀବନର ଶେଷ ଦ୍ୱାଦଶ ବର୍ଷରେ ସେହି ଭାବର ବିଶେଷ ପ୍ରକାଶ କାହିଁକି କୁହାଯାଉଛି :

ପାଠକ ହୁଏତ ଆମମାନଙ୍କର ପୂର୍ବୋକ୍ତ କଥାରୁ ସ୍ଥିର କରିବେ ଯେ, ଅଣଚାଳିଶ ବର୍ଷ ପର୍ଯ୍ୟନ୍ତ ଠାକୁର ସାଧକ ଭାବରେ ହିଁ ଅବସ୍ଥାନ କରିଥିଲେ; ତାହା ନୁହେଁ । 'ଗୁରୁଭାବ'-ଶୀର୍ଷକ ଗ୍ରନ୍ଥରେ ଆମେ ଏହାପୂର୍ବରୁ ବୁଝାଇବା ପାଇଁ ପ୍ରୟାସ କରିଥିଲୁ ଯେ, ଗୁରୁ, ନେତା ବା ଧର୍ମସଂସ୍ଥାପକଙ୍କର ପଦବୀ ସ୍ୱଭାବତଃ ଗ୍ରହଣପୂର୍ବକ ଯେଉଁମାନେ ମାନବର ହିତସାଧନ କରି ଚିରକାଳ ପାଇଁ ଜଗତରେ ପୂଜ୍ୟ ହୋଇଛନ୍ତି, ବାଲ୍ୟକାଳଠାରୁ ହିଁ ସେମାନଙ୍କର ଜୀବନରେ ସେହି

ସମସ୍ତ ଗୁଣର ପ୍ରକାଶ ଦେଖିବାକୁ ମିଳେ । ସେଥିପାଇଁ ଠାକୁରଙ୍କ ଜୀବନରେ ବାଲ୍ୟକାଳରୁ ଆମେ ସେହି ସମସ୍ତ ଭାବର ପରିଚୟ ପାଇଥାଉ—ଯୌବନରେ, ସାଧନକାଳରେ ଏହାର ପ୍ରେରଣାରେ ସେ ଅନେକ କାର୍ଯ୍ୟ ସମ୍ପନ୍ନ କରିଥିଲେ ଏକଥା ବୁଝିପାରୁ—ଏବଂ ସାଧନ ଅବସ୍ଥାର ଅବସାନରେ, ତାଙ୍କର ବତିଶ ବର୍ଷ ବୟସରେ ଶ୍ରୀଯୁକ୍ତ ମଥୁରଙ୍କ ସହିତ ତୀର୍ଥଭ୍ରମଣକାଳରେ ଏବଂ ପରେ, ସେଗୁଡ଼ିକର ସହାୟରେ ପ୍ରାୟ ସମସ୍ତ କାର୍ଯ୍ୟ କରୁଥିଲେ, ଏହା ମଧ୍ୟ ଦେଖିବାକୁ ପାଉ । ଅତଏବ ୧୨୮୧ ବଙ୍ଗାବ୍ଦରୁ (୧୮୭୫ ଖ୍ରୀ.)ତାଙ୍କଠାରେ ଦିବ୍ୟଭାବର ପ୍ରକାଶ ଏବଂ ତାଙ୍କର ଧର୍ମସଂସ୍ଥାପନ-କାର୍ଯ୍ୟରେ ମନୋନିବେଶ ବୋଲି ଯାହା ଏଠାରେ କହୁଅଛୁ ତାହାର କାରଣ, ଏବେଠାରୁ ସେ ଦିବ୍ୟଭାବର ନିରନ୍ତର ପ୍ରେରଣାରେ, ପାଶ୍ଚାତ୍ୟର ଜଡ଼ବାଦ ଓ ଜଡ଼ବିଜ୍ଞାନମୂଳକ ଯେଉଁ ଶିକ୍ଷା ଓ ସଭ୍ୟତା ଭାରତରେ ପ୍ରବିଷ୍ଟ ହୋଇ ଭାରତୀୟଙ୍କୁ ପ୍ରତିଦିନ ବିପରୀତ-ଭାବାପନ୍ନ କରି ସନାତନ ଧର୍ମମାର୍ଗରୁ ଦୂରକୁ ନେଇଯାଉଥିଲା, ତାହା ବିରୁଦ୍ଧରେ ଦଣ୍ଡାୟମାନ ହୋଇ ଇଂରାଜୀ ଶିକ୍ଷାସମ୍ପନ୍ନ ବ୍ୟକ୍ତିମାନଙ୍କ ମଧ୍ୟରେ ଧର୍ମର ପ୍ରତିଷ୍ଠା ନିମନ୍ତେ ସର୍ବଦା ନିଯୁକ୍ତ ରହି ଜନସାଧାରଣଙ୍କ ଜୀବନ ଧନ୍ୟ କରିଥିଲେ ।

**ଦିବ୍ୟଭାବର ସହାୟତାରେ ଠାକୁର
ପାଶ୍ଚାତ୍ୟଭାବବନ୍ୟାର ଗ୍ଳାନିରୁ ଭାରତକୁ ମୁକ୍ତ କରିଛନ୍ତି :**

ସେପରି କରିବା ଯେ ବିଶେଷ ପ୍ରୟୋଜନ ହୋଇଥିଲା, ସେକଥା କହିବା ଅନାବଶ୍ୟକ । ଈଶ୍ୱରଙ୍କ କୃପାରୁ ଠାକୁରଙ୍କର ଅଲୌକିକ ଆଧ୍ୟାତ୍ମିକଶକ୍ତିସମ୍ପନ୍ନ ଦିବ୍ୟଭାବମୟ ଜୀବନ ଏହାର ବିରୁଦ୍ଧରେ ଦଣ୍ଡାୟମାନ ନ ହୋଇଥିଲେ ଭାରତର ନିଜ ଜାତୀୟତ୍ୱର ଏବଂ ସନାତନ ଧର୍ମର ସମ୍ପୂର୍ଣ୍ଣ ଲୋପ ସାଧନ ହୋଇଥାଆନ୍ତା ବୋଲି ହୃଦୟଙ୍ଗମ ହୁଏ । ବାସ୍ତବିକ୍, ଏହା ଭାବି ଦେଖିଲେ ବେଶ୍ ବୁଝାଯାଏ ଯେ, ଠାକୁର ନିଜ ଜୀବନରେ ଯାବତୀୟ ସମ୍ପ୍ରଦାୟର ଧର୍ମମତ ସାଧନାପୂର୍ବକ 'ଯେତେ ମତ ସେତେ ପଥ'ରୂପକ ସତ୍ୟର ଆବିଷ୍କାର କରି ଯେପରି ପୃଥିବୀର ସବୁଦେଶର ସବୁଜାତିର କଲ୍ୟାଣସାଧନ କରିଯାଇଛନ୍ତି, ସେହିପରି ପାଶ୍ଚାତ୍ୟଭାବାପନ୍ନ ବ୍ୟକ୍ତିମାନଙ୍କ ସମ୍ମୁଖରେ ଦୀର୍ଘ ଦ୍ୱାଦଶ ବର୍ଷ ନିଜର ଆଦର୍ଶଜୀବନ ଅତିବାହିତ କରି ସେମାନଙ୍କ ମଧ୍ୟରେ ଏହି ସମୟରେ ଧର୍ମସଂସ୍ଥାପନର ଯେଉଁ ଚେଷ୍ଟା କରିଛନ୍ତି, ତାହାଦ୍ୱାରା ପାଶ୍ଚାତ୍ୟଭାବରୂପକ ବନ୍ୟା ପ୍ରତିରୁଦ୍ଧ ହେବାରୁ ବିଷମ ସଂକଟରୁ ଭାରତ ଉତ୍ତୀର୍ଣ୍ଣ ହେବାକୁ ସମର୍ଥ ହୋଇଅଛି । ଅତଏବ ସନାତନ ଧର୍ମ ସହିତ ପୂର୍ବପ୍ରଚଳିତ ସର୍ବପ୍ରକାର ଧର୍ମମତକୁ ସଂଯୁକ୍ତ କରି ଅଧିକାରୀଭେଦରେ ସେମାନଙ୍କର ସମାନ ପ୍ରୟୋଜନୀୟତା ସପ୍ରମାଣ କରିବା ଯେପରି ତାଙ୍କର ଜୀବନର ବିଶେଷ କାର୍ଯ୍ୟ ବୋଲି ବୁଝିହୁଏ, ତଦ୍ରୂପ ପାଶ୍ଚାତ୍ୟ ଜଡ଼ବାଦର ପ୍ରବଳ ସ୍ରୋତରେ ବୁଡ଼ିଯାଉଥିବା

ଭାରତର ଉଦ୍ଧାରସାଧନ ତାଙ୍କ ଜୀବନର ସେପରି ଦ୍ୱିତୀୟ କାର୍ଯ୍ୟ ବୋଲି କୁହାଯାଇପାରେ । ୧୨୪୨ ବଙ୍ଗାବ୍ଦ ବା ୧୮୩୬ ଖ୍ରୀଷ୍ଟାବ୍ଦରୁ ଭାରତରେ ପାଶ୍ଚାତ୍ୟ ଶିକ୍ଷା ପ୍ରବର୍ତ୍ତିତ ହୋଇଥିଲା ଏବଂ ସେହି ବର୍ଷ ହିଁ ଠାକୁର ଜନ୍ମଗ୍ରହଣ କରିଥିଲେ । ଅତଏବ ପାଶ୍ଚାତ୍ୟ ଶିକ୍ଷାର ଦୋଷସମୂହ ଯେଉଁ ଶକ୍ତି ଦ୍ୱାରା ପ୍ରତିରୋଧ ହେବ ଏବଂ ଯାହାର ସହାୟତାରେ ଭାରତ ନିଜ ବିଶେଷତ୍ୱ ରକ୍ଷା କରି ପାଶ୍ଚାତ୍ୟ ଶିକ୍ଷାର ଗୁଣସମୂହ ମାତ୍ର ନିଜସ୍ୱ କରିନେବ, ବିଧାତାଙ୍କ ବିଧାନରେ ସେହି ଉଭୟ ଶକ୍ତିର ଭାରତରେ ଯୁଗପତ୍ ଉଦୟ ଦେଖି ବିସ୍ମିତ ହେବାକୁ ପଡ଼େ ।

## ଦିବ୍ୟଭାବର ପ୍ରକାଶ ମନୁଷ୍ୟ ଜୀବନରେ କେତେବେଳେ ଉପସ୍ଥିତ ହୁଏ :

ଆଧ୍ୟାତ୍ମିକ ରାଜ୍ୟର ଶୀର୍ଷସ୍ଥାନରେ ଅବସ୍ଥିତ ଦିବ୍ୟଭାବର ପୂର୍ଣ୍ଣ ପ୍ରକାଶ ମନୁଷ୍ୟ ଜୀବନରେ ବିରଳ ଦେଖିବାକୁ ମିଳେ । କର୍ମବନ୍ଧନରେ ଆବଦ୍ଧ ଜୀବ ଈଶ୍ୱରଙ୍କ କୃପାରେ ମୁକ୍ତ ହୋଇ ଉକ୍ତ ଭାବର ସାମାନ୍ୟମାତ୍ର-ଆସ୍ୱାଦନରେ ହିଁ ସମର୍ଥ ହୋଇଥାଏ । କାରଣ, ମାନବ ଯେତେବେଳେ ଶମଦମାଦି ଗୁଣସମୂହ ଶ୍ୱାସପ୍ରଶ୍ୱାସ ସଦୃଶ ବିନା ଚେଷ୍ଟାରେ ଅନୁଷ୍ଠାନ କରିବାକୁ ସମର୍ଥ ହୁଏ, ପରମାତ୍ମାଙ୍କର ପ୍ରେମରେ ଆତ୍ମହରା ହୋଇ ତାର କ୍ଷୁଦ୍ର 'ମୁଁ'ତ୍ୱବୋଧ ଯେତେବେଳେ ଚିରକାଳ ପାଇଁ ଅଖଣ୍ଡ ସଚ୍ଚିଦାନନ୍ଦ ସାଗରରେ ବିଲୀନ ହୋଇଯାଏ, ନିର୍ବିକଳ୍ପ ସମାଧିରେ ଭସ୍ମୀଭୂତ ହୋଇ ତାର ମନ-ବୁଦ୍ଧି ଯେତେବେଳେ ସମସ୍ତ ପ୍ରକାର ମଳିନତା ପରିହାରପୂର୍ବକ ଶୁଦ୍ଧ ସାତ୍ତ୍ୱିକ ବିଗ୍ରହରେ ପରିଣତ ହୁଏ ଏବଂ ତାହାର ଅନ୍ତରର ଅନାଦି ବାସନାପ୍ରବାହ ଜ୍ଞାନସୂର୍ଯ୍ୟର ପ୍ରଚଣ୍ଡ ଉତ୍ତାପରେ ସମ୍ପୂର୍ଣ୍ଣ ଶୁଷ୍କ ହୋଇ ଯେତେବେଳେ ନବୀନ ସଂସ୍କାର ଓ କର୍ମସମୂହର ଉତ୍ପାଦନରେ ଆଉ ସମର୍ଥ ହୁଏ ନାହିଁ—ସେତେବେଳେ ହିଁ ତାଙ୍କଠାରେ ଦିବ୍ୟଭାବର ଉଦୟ ହୋଇ ତାଙ୍କର ଜୀବନ କୃତାର୍ଥ ହୋଇଥାଏ । ଅତଏବ ଦିବ୍ୟଭାବର ପୂର୍ଣ୍ଣ ପ୍ରକାଶରେ ଚିରପରିତୃପ୍ତ ବ୍ୟକ୍ତିଙ୍କର ଦର୍ଶନଲାଭ ଯେପରି ଅତୀବ ବିରଳ, ସେପରି ପୁଣି ସେହିପ୍ରକାର ବ୍ୟକ୍ତିଙ୍କର କାର୍ଯ୍ୟକଳାପ କୌଣସି ପ୍ରକାର ଅଭାବବୋଧରୁ ପ୍ରସୂତ ନ ହେବାରୁ ଉଦ୍ଦେଶ୍ୟବିହୀନ ବୋଲି ପ୍ରତୀତ ହୋଇ ସାଧାରଣ ମନ-ବୁଦ୍ଧି ନିକଟରେ ଚିରକାଳ ଦୁର୍ବୋଧ ରହେ । ସୁତରାଂ ଦିବ୍ୟଭାବର ସ୍ୱରୂପ ଯଥାର୍ଥରୂପରେ ହୃଦୟଙ୍ଗମ କରିବାକୁ କେବଳ ଦିବ୍ୟଭାବାରୂଢ଼ ବ୍ୟକ୍ତି ହିଁ ସମର୍ଥ ହୁଏ ଏବଂ ଉକ୍ତ ଭାବର ପ୍ରେରଣାରେ ଯେଉଁ ସକଳ ଅଲୌକିକ କାର୍ଯ୍ୟାବଳୀ ସମ୍ପାଦିତ ହୁଏ, ସେସମସ୍ତର ଆଲୋଚନା ପ୍ରଗାଢ଼ ଶ୍ରଦ୍ଧା ଓ ବିଶ୍ୱାସ ସହିତ ନ କଲେ ସେମାନଙ୍କର କିଞ୍ଚିତ୍‌ମାତ୍ର ମର୍ମଗ୍ରହଣ ମଧ୍ୟ ଆମମାନଙ୍କ ପରି ମନ-ବୁଦ୍ଧିର କଦାପି ସମ୍ଭବପର ହୁଏ ନାହିଁ ।

**ଅବତାରପୁରୁଷମାନଙ୍କ ଜୀବନରେ ଏହି ସ୍ୱଭାବର ବିଶେଷ ପ୍ରକାଶ ଥିବାରୁ ସେମାନଙ୍କର ଚରିତ୍ର ଏତେ ଦୁର୍ବୋଧ ଓ ରହସ୍ୟମୟ :**

ଦିବ୍ୟଭାବର ପୂର୍ଣ୍ଣପ୍ରକାଶ ଏକମାତ୍ର ଅବତାରପୁରୁଷମାନଙ୍କଠାରେ ହିଁ ଦେଖିବାକୁ ମିଳିଥାଏ । ଜଗତର ଆଧ୍ୟାତ୍ମିକ ଇତିହାସ ଏବିଷୟରେ ସାକ୍ଷ୍ୟ ପ୍ରଦାନ କରେ । ସେଥିପାଇଁ ହିଁ ଅବତାରଚରିତ୍ର ଆମମାନଙ୍କ ନିକଟରେ ଚିର-ରହସ୍ୟମୟ ବୋଲି ପ୍ରତୀୟମାନ ହୁଏ । ବାସ୍ତବିକ୍, ଆମେ କଳ୍ପନା-ସହାୟରେ ମାୟାରହିତ ବ୍ରହ୍ମଜ୍ଞାନ ଅବସ୍ଥାର ଆଂଶିକ ଚିତ୍ର ମନ ମଧ୍ୟରେ ଅଙ୍କିତ କରିପାରୁ, କିନ୍ତୁ ସେହି ଅବସ୍ଥାରେ ଯେଉଁମାନେ ସହଜ ଓ ସ୍ୱାଭାବିକଭାବରେ ସର୍ବଦା ଅବସ୍ଥାନ କରନ୍ତି, ସେମାନେ କିପରି କେଉଁ ଉଦ୍ଦେଶ୍ୟରେ—କେତେବେଳେ ଆମମାନଙ୍କ ପରି ଏବଂ କେତେବେଳେ ଅସୀମ ଶକ୍ତିସମ୍ପନ୍ନ ଦେବତାଙ୍କପରି—କାର୍ଯ୍ୟାଦିର ଅନୁଷ୍ଠାନ କରନ୍ତି, ତାହା ବୁଝିବାକୁ ସମର୍ଥ ହୋଇ ନ ଥାଉ । ଆମମାନଙ୍କର ମନ ବୁଦ୍ଧି ଦୂରରେ ଥାଉ, କଳ୍ପନା ପର୍ଯ୍ୟନ୍ତ ସେହି ବିଷୟରେ ଅଗ୍ରସର ହୋଇ ସର୍ବତୋଭାବରେ ପରାଜୟ ସ୍ୱୀକାର କରେ । ଅତଏବ ଶ୍ରୀରାମକୃଷ୍ଣ-ଜୀବନର ଏହି ସମୟର କାର୍ଯ୍ୟାବଳୀର ସମ୍ୟକ ଆଲୋଚନା ଯେ ସମ୍ଭବପର ନୁହେଁ, ତାହା ଆଉ କହିବା ଦରକାର ନାହିଁ । ସୁତରାଂ ତାଙ୍କର ଏହି କାଳର କାର୍ଯ୍ୟପରମ୍ପରାର ଉଲ୍ଲେଖମାତ୍ର କରି ସେଗୁଡ଼ିକର ସଫଳତା ଦର୍ଶନରେ ଯାହା ଯେଉଁ ଉଦ୍ଦେଶ୍ୟରେ ସମ୍ପାଦିତ ବୋଲି ଆମେ ଧାରଣା କରିଅଛୁ, ତାହା ହିଁ କେବଳ ପାଠକଙ୍କୁ କହିବୁ । କାର୍ଯ୍ୟର ଗୁରୁତ୍ୱ ଦେଖି ହିଁ ଆମେ କାରଣର ମହତ୍ତ୍ୱ ସବୁବେଳେ ନିର୍ଣ୍ଣୟ କରିଥାଉ । ଠାକୁରଙ୍କର ଏହି କାଳର କାର୍ଯ୍ୟାବଳୀର ଅଲୌକିକତ୍ୱ ଅନୁଧାବନ କରି ତାଙ୍କର ଅନ୍ତରରେ ଦିବ୍ୟଭାବର କେତେଦୂର ଅଦୃଷ୍ଟପୂର୍ବ ପ୍ରକାଶ ହୋଇଥିଲା, ତାହା ହୃଦୟଙ୍ଗମ କରିବାକୁ ଆମର ବିଳମ୍ବ ହେବ ନାହିଁ ।

**ଉକ୍ତ ଭାବ ଅବଲମ୍ବନରେ ଠାକୁର ଯେଉଁ ସମସ୍ତ କାର୍ଯ୍ୟ କରିଯାଇଛନ୍ତି ସେଗୁଡ଼ିକର ସାତୋଟି ପ୍ରଧାନ ବିଭାଗ-ନିର୍ଦ୍ଦେଶ :**

ଦିବ୍ୟଭାବାରୂଢ଼ ଶ୍ରୀରାମକୃଷ୍ଣଦେବଙ୍କର ସମସ୍ତ କର୍ମ ଏହାପରଠାରୁ କେବଳ ଧର୍ମସଂସ୍ଥାପନ ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଲେ ମଧ୍ୟ, ଏସମସ୍ତ ମଧ୍ୟରେ ସାତୋଟି ପ୍ରଧାନ ବିଭାଗ ଦୃଷ୍ଟ ହୋଇଥାଏ । ଦେଖିବାକୁ ମିଳେ—

୧. ସେ ତାଙ୍କର ସତୀସାଧ୍ୱୀ ସହଧର୍ମିଣୀଙ୍କର ଧର୍ମଜୀବନ ଅପୂର୍ବଭାବରେ ଗଠିତ କରି ତାହାଙ୍କୁ ଅନ୍ୟମାନଙ୍କଠାରେ ଧର୍ମଶକ୍ତିସଞ୍ଚାରର ପ୍ରବଳ କେନ୍ଦ୍ରସ୍ୱରୂପା କରି ଗଢ଼ିଥିଲେ ।

୨. ଉଚ୍ଚ ଆଦର୍ଶରେ ଜୀବନ ପରିଚାଳିତ କରି ଯେଉଁ ସମସ୍ତ ବ୍ୟକ୍ତି ସେହି ସମୟରେ କଲିକତା ମହାନଗରୀରେ ଧର୍ମ ବିଷୟରେ ନେତା ବୋଲି ପରିଗଣିତ

ହୋଇଥିଲେ, ସେମାନଙ୍କ ସହିତ ସାକ୍ଷାତପୂର୍ବକ ନିଜର ଆଧ୍ୟାତ୍ମିକ ଶକ୍ତି ସହାୟରେ ସେମାନଙ୍କର ଜୀବନ ସର୍ବାଙ୍ଗସମ୍ପୂର୍ଣ୍ଣ କରିବାକୁ ସଚେଷ୍ଟ ହୋଇଥିଲେ ।

୩. ଦକ୍ଷିଣେଶ୍ୱରରେ ସମାଗତ ସର୍ବବିଧ ସମ୍ପ୍ରଦାୟର ପିପାସୁ ବ୍ୟକ୍ତିମାନଙ୍କୁ ଧର୍ମାଲୋକ ପ୍ରଦାନରେ ପରିତୃପ୍ତ କରିଥିଲେ ।

୪. ଯୋଗଦୃଷ୍ଟି ସହାୟରେ ପୂର୍ବପରିଦୃଷ୍ଟ ବ୍ୟକ୍ତିଗଣଙ୍କୁ ତାଙ୍କ ନିକଟକୁ ଆଗମନ କରିବା ଦେଖି ଅଧିକାରୀଭେଦରେ ଶ୍ରେଣୀବିଭାଗପୂର୍ବକ ସେମାନଙ୍କର ଧର୍ମଜୀବନ ଗଠନ କରିଦେବାକୁ ଚେଷ୍ଟା କରିଥିଲେ ।

୫. ଏହି ସମସ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ କେତେକଙ୍କୁ ଈଶ୍ୱରଲାଭ ନିମିତ୍ତ ସର୍ବସ୍ୱତ୍ୟାଗରୂପକ ବ୍ରତରେ ଦୀକ୍ଷିତ କରି ସଂସାରରେ ନିଜ ଅଭିନବ ଉଦାର ମତପ୍ରଚାରର କେନ୍ଦ୍ର ସ୍ଥାପନ କରିଥିଲେ ।

୬. କଲିକତା-ନିବାସୀ ନିଜ ଭକ୍ତଗଣଙ୍କ ଘରକୁ ପୁନଃପୁନଃ ଆଗମନପୂର୍ବକ ଧର୍ମାଳାପ ଓ କୀର୍ତ୍ତନ ଇତ୍ୟାଦି ସହାୟରେ ସେମାନଙ୍କର ପରିବାରବର୍ଗଙ୍କର ଏବଂ ଗ୍ରାମବାସୀଗଣଙ୍କର ଜୀବନରେ ଧର୍ମଭାବ ବିଶେଷଭାବରେ ପ୍ରଦୀପ୍ତ କରିଥିଲେ ।

୭. ଅପୂର୍ବ ପ୍ରେମବନ୍ଧନରେ ନିଜ ଭକ୍ତଗଣଙ୍କୁ ଦୃଢ଼ଭାବରେ ଆବଦ୍ଧ କରି ସେମାନଙ୍କ ମଧ୍ୟରେ ଏପରି ଅଦ୍ଭୁତ ଏକପ୍ରାଣତା ଆନୟନ କରିଥିଲେ ଯେ, ତାହା ଫଳରେ ସେମାନେ ପରସ୍ପର ପ୍ରତି ଅନୁରକ୍ତ ହୋଇ କ୍ରମେ ଏହା ଏକ ଉଦାର ଧର୍ମସଂଘରେ ସ୍ୱଭାବତଃ ପରିଣତ ହୋଇଥିଲା ।

ଉକ୍ତ ସାତ ପ୍ରକାର କାର୍ଯ୍ୟାବଳୀ ମଧ୍ୟରେ ପ୍ରଥମୋକ୍ତଟି ଠାକୁର କିପରି ୧୨୮୦ ବଙ୍ଗାବ୍ଦ (୧୮୭୪ ଖ୍ରୀଷ୍ଟାବ୍ଦ)ରେ ଆରମ୍ଭ କରିଥିଲେ ତାହା ଆମେ ପାଠକଙ୍କୁ 'ସାଧକ ଭାବ'— ଶୀର୍ଷକ ଗ୍ରନ୍ଥର ଶେଷ ଭାଗରେ କହିଅଛୁ । ଏହାର ପରବର୍ଷ ୧୨୮୧ ବଙ୍ଗାବ୍ଦରେ (୧୮୭୫ ଖ୍ରୀଷ୍ଟାବ୍ଦ)*ସେ ଭାରତୀୟ ବ୍ରାହ୍ମସମାଜର ନେତା ଆଚାର୍ଯ୍ୟ କେଶବଚନ୍ଦ୍ରଙ୍କ ସହିତ ସାକ୍ଷାତ କରିବାକୁ ଯାଇ କେଉଁ ଭାବରେ ଦ୍ୱିତୀୟ ପ୍ରକାରର କାର୍ଯ୍ୟାବଳୀ ଆରମ୍ଭ କରିଥିଲେ, ତାହା ମଧ୍ୟ ଉକ୍ତ ଗ୍ରନ୍ଥର ପରିଶିଷ୍ଟରେ ଆମେ ଆଲୋଚନା କରିଛୁ, ପୁଣି ପୂର୍ବୋକ୍ତ ବିଭାଗର ତୃତୀୟ, ଚତୁର୍ଥ ଓ ଷଷ୍ଠ ଶ୍ରେଣୀର କାର୍ଯ୍ୟାବଳୀର ସାମାନ୍ୟ ପରିଚୟ ଆମେ 'ଗୁରୁଭାବ' ଗ୍ରନ୍ଥର ଉତ୍ତରାର୍ଦ୍ଧର ପଞ୍ଚମ, ଷଷ୍ଠ ଓ ସପ୍ତମ ଅଧ୍ୟାୟରେ ପାଠକଙ୍କୁ ପ୍ରଦାନ କରିଅଛୁ । ଅତଏବ ଅବଶିଷ୍ଟ ପ୍ରକାରର କାର୍ଯ୍ୟଗୁଡ଼ିକ ସେ କେବେ କିପରି ଭାବରେ ଆରମ୍ଭ କରିଥିଲେ, ତାହା ବର୍ତ୍ତମାନ ଆମେ ଆଲୋଚନା କରିବୁ ।

# ପ୍ରଥମ ଅଧ୍ୟାୟ—ପ୍ରଥମ ପାଦ

## ବ୍ରାହ୍ମସମାଜରେ ଠାକୁରଙ୍କର ପ୍ରଭାବ

### କେଶବ ପ୍ରଭୃତି ବ୍ରାହ୍ମଗଣଙ୍କର ଠାକୁରଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି :

ଭାରତୀୟ ବ୍ରାହ୍ମସମାଜର ଆଚାର୍ଯ୍ୟ ଶ୍ରୀଯୁକ୍ତ କେଶବଚନ୍ଦ୍ରଙ୍କ ସହିତ ସାକ୍ଷାତ୍ ହେବା ପରେ କଲିକତାର ଜନସାଧାରଣ ଠାକୁରଙ୍କ କଥା ଜାଣିପାରିଥିଲେ । ଗୁଣଗ୍ରାହୀ କେଶବ ପ୍ରଥମ ଦର୍ଶନ ଦିନରୁ ହିଁ ଯେ ଠାକୁରଙ୍କ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ, ଏକଥା ଆମେ ପୂର୍ବରୁ ଉଲ୍ଲେଖ କରିଛୁ । ପାଶ୍ଚାତ୍ୟଭାବରେ ଭାବିତ ହେଲେ ମଧ୍ୟ ତାଙ୍କର ହୃଦୟ ଯଥାର୍ଥ ଈଶ୍ୱର-ଭକ୍ତିରେ ପୂର୍ଣ୍ଣ ଥିଲା ଏବଂ ଅମୃତମୟ ଭକ୍ତିରସ ଏକାକୀ ସମ୍ଭୋଗ କରିବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ସୁତରାଂ ଠାକୁରଙ୍କର ପୁଣ୍ୟଦର୍ଶନ ଓ ଅମୃତମୟୀ ବାଣୀରେ ସେ ଜୀବନପଥରେ ଯେତେ ନୂତନ ଆଲୋକ ଦେଖିବାକୁ ଲାଗିଲେ, ସେତେ ସେସମସ୍ତ କଥା ମୁକ୍ତକଣ୍ଠରେ ଜନସାଧାରଣଙ୍କୁ ଜଣାଇ ସେମାନେ ସମସ୍ତେ ମଧ୍ୟ ଯେପରି ତାଙ୍କ ପରି ଶାନ୍ତି ଓ ଆନନ୍ଦ ଲାଭ କରିପାରିବେ, ସେଥିପାଇଁ ଉତ୍ସାହର ସହିତ ଆହ୍ୱାନ କରିବାକୁ ଲାଗିଲେ । ସେଥିପାଇଁ ଦେଖାଯାଏ, ପୂର୍ବୋକ୍ତ ସମାଜର ଇଂରାଜୀ ଓ ବଙ୍ଗଳା ଯାବତୀୟ ପତ୍ରିକା, ଯଥା—'ସୁଲଭସମାଚାର', 'ସନ୍‌ଡେ ମିରର, 'ଥେଇଷ୍ଟିକ୍ କ୍ୱାର୍ଟର୍ଲୀ ରିଭିୟୁ' ପ୍ରଭୃତି ସେବେଠାରୁ ଠାକୁରଙ୍କ ପୂତଚରିତ୍ର, ସାରଗର୍ଭ ବାଣୀ ଓ ଧର୍ମବିଷୟକ ମତାମତର ଆଲୋଚନାରେ ପୂର୍ଣ୍ଣ ହେଉଥିଲା । ବକ୍ତୃତା ଏବଂ ଏକତ୍ର ଉପାସନା ପରେ ବେଦୀରୁ ବ୍ରାହ୍ମସଂଘକୁ ସମ୍ବୋଧନପୂର୍ବକ ଉପଦେଶ-ପ୍ରଦାନସମୟରେ ମଧ୍ୟ କେଶବପ୍ରମୁଖ ବ୍ରାହ୍ମ-ନେତାଗଣ ଅନେକ ସମୟରେ ଠାକୁରଙ୍କ ବାଣୀଗୁଡ଼ିକ ଆବୃତ୍ତି କରୁଥିଲେ । ପୁଣି ଅବସର ମିଳିଲେ ସେମାନେ କେତେବେଳେ ଦୁଇଚାରିଜଣ ଅନ୍ତରଙ୍ଗଙ୍କ ସହିତ ଅଥବା କେତେବେଳେ ସଦଳବଳ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟକୁ ଆସି ତାଙ୍କ ସହିତ ସଦାଳାପରେ କିଛି ସମୟ ଅତିବାହିତ କରୁଥିଲେ ।

### ଠାକୁରଙ୍କର ବ୍ରାହ୍ମଗଣଙ୍କ ସହିତ ସପ୍ରେମ ସମ୍ବନ୍ଧ :

ବ୍ରାହ୍ମନେତାଗଣଙ୍କର ଧର୍ମପିପାସା ଓ ଈଶ୍ୱରାନୁରାଗଦର୍ଶନରେ ଆନନ୍ଦିତ ହୋଇ ଯେପରି ସେମାନେ ସାଧନାସମୁଦ୍ରରେ ଏକାବେଳକେ ବୁଡ଼ିଯାଇ ଈଶ୍ୱରଙ୍କ ପ୍ରତ୍ୟକ୍ଷ-ଦର୍ଶନରୂପକ ରତ୍ନଲାଭରେ କୃତାର୍ଥ ହୋଇପାରିବେ, ସେବିଷୟରେ ପଥ ଦେଖାଇବାକୁ ଠାକୁର ଏବେ ବିଶେଷ ଭାବରେ ଯତ୍ନଶୀଳ ହୋଇଥିଲେ । ସେମାନଙ୍କ ସହିତ ହରିକଥା ଓ କୀର୍ତ୍ତନରେ ସେ ଏତେ ଆନନ୍ଦ ଅନୁଭବ କରୁଥିଲେ ଯେ, ସ୍ୱତଃପ୍ରବୃତ୍ତ ହୋଇ ପ୍ରାୟଶଃ ମଝିରେ ମଝିରେ କେଶବଙ୍କ ଘରେ

ପହଞ୍ଚିଯାଉଥିଲେ । ଏହିପରି ଉକ୍ତ ସମାଜର ବହୁ ଧର୍ମପିପାସୁ ବ୍ୟକ୍ତିମାନଙ୍କ ସହିତ ସେ କ୍ରମେ ଘନିଷ୍ଠ ସମ୍ବନ୍ଧରେ ଯୋଡ଼ି ହୋଇଥିଲେ ଏବଂ କେଶବଙ୍କ ବ୍ୟତୀତ ଅନ୍ୟ କୌଣସି ବ୍ରାହ୍ମମାନଙ୍କ ଗୃହରେ ମଧ୍ୟ ବେଳେ ବେଳେ ଉପସ୍ଥିତ ହୋଇ ସେମାନଙ୍କର ଆନନ୍ଦବର୍ଦ୍ଧନ କରୁଥିଲେ । ସିନ୍ଦୁରିୟାପଟ୍ଟିର ମଣିମୋହନ ମଲ୍ଲିକ, ମଥାଘଷା ଗଳିର ଜୟଗୋପାଳ ସେନ୍, ବରାହନଗରର ସିନ୍ଥି ନାମକ ଗ୍ରାମର ବେଣୀମାଧବ ପାଲ୍, ନନ୍ଦନବାଗାନର କାଶୀଶ୍ୱର ମିତ୍ର ପ୍ରଭୃତି ବ୍ରାହ୍ମମତାବଲମ୍ବୀ ବ୍ୟକ୍ତିଗଣଙ୍କ ଗୃହରେ ଉତ୍ସବକାଳରେ ଏବଂ ଅନ୍ୟ ସମୟରେ ତାଙ୍କର ଗମନାଗମନ କଥା ଦୃଷ୍ଟାନ୍ତସ୍ୱରୂପ ଉଲ୍ଲିଖିତ ହୋଇପାରେ । ବେଳେ ବେଳେ ଏପରି ମଧ୍ୟ ହୋଇଅଛି ଯେ ବେଦୀରୁ ଉପଦେଶ ପ୍ରଦାନ ସମୟରେ ତାଙ୍କୁ ସହସା ମନ୍ଦିର ମଧ୍ୟକୁ ଆଗମନ କରିବାର ଦେଖି ଶ୍ରୀଯୁକ୍ତ କେଶବ ତାହା ସମ୍ପୂର୍ଣ୍ଣ ନ କରି ହିଁ ବେଦୀରୁ ଓହ୍ଲାଇ ଆସି ତାଙ୍କୁ ଅଭ୍ୟର୍ଥନା କରି ତାଙ୍କର ବାଣୀଶ୍ରବଣରେ ଓ ତାଙ୍କ ସହିତ କୀର୍ତ୍ତନ ଆନନ୍ଦରେ ସେହିଦିନର ଉପାସନାର ଉପସଂହାର କରିଛନ୍ତି ।

### ଠାକୁର ସେମାନଙ୍କ ମତର ଲୋକ— ବ୍ରାହ୍ମମାନଙ୍କର ଏପରି ଧାରଣା ହେବାର କାରଣ :

ନିଜ ନିଜ ସମ୍ପ୍ରଦାୟର ବ୍ୟକ୍ତିଗଣଙ୍କ ସହିତ ମାନବ ଅକପଟରେ ମିଳିତ ହେବାକୁ ଏବଂ ନିଃସଙ୍କୋଚରେ ଆନନ୍ଦ ଅନୁଭବ କରିବାକୁ ସମର୍ଥ ହୋଇଥାଏ । ସୁତରାଂ ସେମାନଙ୍କ ସହିତ ତାଙ୍କୁ ଏପରି ଭାବରେ ମିଳିତ ହେବାକୁ ଓ ଆନନ୍ଦ କରିବାକୁ ଦେଖି ବ୍ରାହ୍ମନେତାଗଣ ଠାକୁରଙ୍କୁ ତାଙ୍କ ଭାବର ଓ ମତର ଲୋକ ବୋଲି ଭାବିବା ବିଚିତ୍ର ନୁହେଁ । ହିନ୍ଦୁମାନଙ୍କର ଶାକ୍ତ-ବୈଷ୍ଣବ ଇତ୍ୟାଦି ଭିନ୍ନ ଭିନ୍ନ ସମ୍ପ୍ରଦାୟର ଲୋକମାନେ ମଧ୍ୟ ତାଙ୍କୁ ସେମାନଙ୍କର ପ୍ରତ୍ୟେକଙ୍କ ସହିତ ଯୋଗଦାନ ଓ ଆନନ୍ଦ କରିବା ଦେଖି ଅନେକ ସମୟରେ ସେପରି ଭାବୁଥିଲେ । କାରଣ ସର୍ବଭାବର ଉତ୍ପତ୍ତି ଏବଂ ସମନ୍ୱୟ ଭୂମି 'ଭାବମୁଖ'ରେ ଅବସ୍ଥିତ ହେବାକୁ ସମର୍ଥ ହୋଇଥିଲେ ବୋଲି ହିଁ ଯେ ଠାକୁର ସେହିପରି କରିପାରୁଥିଲେ—ଏକଥା ସେତେବେଳେ କିଏ ବୁଝିବ ? କିନ୍ତୁ ସେ ଯେ ସେମାନଙ୍କ ସହିତ ନିରାକାର ସଗୁଣ ବ୍ରହ୍ମର ଧ୍ୟାନ ଓ କୀର୍ତ୍ତନ ଇତ୍ୟାଦିରେ ତନ୍ମୟ ହୋଇ ସେମାନଙ୍କ ଅପେକ୍ଷା ଅଧିକ ଆନନ୍ଦ ଅନୁଭବ କରୁଛନ୍ତି ଏବଂ ସେମାନେ ଯେଉଁଠି ଅନ୍ଧକାର ଦେଖୁଛନ୍ତି, ସେଠାରେ ଅପୂର୍ବ ଆଲୋକ ସତରେ ପ୍ରତ୍ୟକ୍ଷ କରୁଛନ୍ତି, ଏହି ବିଷୟରେ ବ୍ରାହ୍ମସମାଜସ୍ଥ ବ୍ୟକ୍ତିମାନଙ୍କର ବିନ୍ଦୁମାତ୍ର ସନ୍ଦେହ ନ ଥିଲା । ସେମାନେ ଏକଥା ମଧ୍ୟ ବୁଝିଥିଲେ ଯେ, ଈଶ୍ୱରଙ୍କଠାରେ ସର୍ବସ୍ୱ ଅର୍ପଣ କରି ତାଙ୍କ ପରି ତନ୍ମୟ ହୋଇ ନ ପାରିଲେ ସେପରି ଦର୍ଶନ ଓ ଆନନ୍ଦ ଅନୁଭବ କଦାପି ସମ୍ଭବ ନୁହେଁ ।

## ବ୍ରାହ୍ମସାଧକମାନଙ୍କୁ ଠାକୁରଙ୍କର ସାଧନପଥରେ ଅଗ୍ରସର କରାଇବା :

ଭାରତବର୍ଷର ବ୍ରାହ୍ମସମାଜସ୍ଥ ଅନେକ ବ୍ୟକ୍ତିଙ୍କର ସତ୍ୟାନୁରାଗ, ତ୍ୟାଗଶୀଳତା ଏବଂ ଧର୍ମପିପାସା ପ୍ରଭୃତି ସଦ୍‌ଗୁଣମାନ ଦେଖି ଠାକୁର ସେମାନଙ୍କୁ ନିଜ ଜୀବନାଦର୍ଶରେ ଧର୍ମପଥରେ ଅଗ୍ରସର କରିଦେବାକୁ ସଚେଷ୍ଟ ହୋଇଥିଲେ । ଈଶ୍ୱରାନୁରାଗୀ ବ୍ୟକ୍ତିଗଣ ଯେଉଁ ସମ୍ପ୍ରଦାୟଭୁକ୍ତ ହୁଅନ୍ତୁ ନା କାହିଁକି, ସେ ସେମାନଙ୍କୁ ଚିରକାଳ ପରମାତ୍ମୀୟ ଜ୍ଞାନ କରୁଥିଲେ ଏବଂ ଯେଉଁଥିରେ ସେମାନେ ନିଜ ନିଜର ପଥରେ ଅଗ୍ରସର ହୋଇ ପୂର୍ଣ୍ଣତା ପ୍ରାପ୍ତ ହେବେ, ସେହି ବିଷୟରେ ଅକାତରରେ ସାହାଯ୍ୟ କରୁଥିଲେ । ପୁଣି ଯଥାର୍ଥ ଈଶ୍ୱରଭକ୍ତମାନଙ୍କୁ ଠାକୁର ଏକ ପୃଥକ ଜାତି ବୋଲି ସର୍ବଦା ନିର୍ଦ୍ଦେଶ କରୁଥିଲେ ଏବଂ ସେମାନଙ୍କ ସହିତ ଏକତ୍ର ଖାଇବାକୁ କେବେ ହେଲେ ଦ୍ୱିଧା କରୁ ନ ଥିଲେ । ଅତଏବ କେଶବ ଏବଂ ତାଙ୍କର ପାର୍ଷଦଗଣ, ଯଥା—ବିଜୟକୃଷ୍ଣ ଗୋସ୍ୱାମୀ, ପ୍ରତାପ ଚନ୍ଦ୍ର ମଜୁମଦାର, ଚିରଞ୍ଜୀବ ଶର୍ମା, ଶିବନାଥ ଶାସ୍ତ୍ରୀ, ଅମୃତଲାଲ ବସୁପ୍ରମୁଖ ବ୍ୟକ୍ତିଗଣଙ୍କୁ ସେ ଯେ ଏବେ ପରମ ସ୍ନେହ ଚକ୍ଷୁରେ ଦେଖି ସେମାନଙ୍କୁ ଆଧ୍ୟାତ୍ମିକ ସହାୟତା ପ୍ରଦାନ କରିବାକୁ ଉଦ୍ୟତ ହେବେ ଏବଂ ସେମାନଙ୍କ ସହିତ ଏକତ୍ର ଭୋଜନରେ ସଙ୍କୁଚିତ ହେବେ ନାହିଁ, ଏକଥା କହିବାର ଆବଶ୍ୟକତା ନାହିଁ । ପାଶ୍ଚାତ୍ୟ ଶିକ୍ଷା ଏବଂ ଭାବ ଯୋଗୁଁ ଏମାନେ ଯେ ଜାତୀୟ ଧର୍ମାଦର୍ଶରୁ ବହୁଦୂର ବିଚ୍ୟୁତ ହୋଇପଡ଼ିଛନ୍ତି ଏବଂ ଅନେକ ସମୟରେ ସମାଜ ସଂସ୍କାରକୁ ହିଁ ଧର୍ମାନୁଷ୍ଠାନର ଚୂଡ଼ାନ୍ତ ଜ୍ଞାନ କରୁଛନ୍ତି, ଏକଥା ବୁଝିବାକୁ ତାଙ୍କର ବିଳମ୍ବ ହୋଇ ନ ଥିଲା । ସେ ସେଥିପାଇଁ ସେମାନଙ୍କ ଭିତରେ ଯଥାର୍ଥ ସାଧନାନୁରାଗ ପ୍ରବୁଦ୍ଧ କରିଥିଲେ ଏବଂ ସମାଜ ସେମାନଙ୍କ ସହିତ ସେହିପଥରେ ଅଗ୍ରସର ହେଉ ବା ନ ହେଉ, ଏକମାତ୍ର ଈଶ୍ୱର-ଲାଭକୁ ହିଁ ସେମାନଙ୍କ ଜୀବନର ଉଦ୍ଦେଶ୍ୟରୂପେ ଅବଲମ୍ବନ କରାଇବାକୁ ସଚେଷ୍ଟ ହୋଇଥିଲେ । ଫଳରେ, ଶ୍ରୀଯୁକ୍ତ କେଶବ ସଦଳବଳ ତାଙ୍କ ପ୍ରଦର୍ଶିତ ମାର୍ଗରେ ଅନେକଦୂର ଅଗ୍ରସର ହୋଇଥିଲେ—ମଧୁର ମାତୃନାମରେ ଈଶ୍ୱରଙ୍କୁ ସମ୍ବୋଧନ ଓ ତାଙ୍କର ମାତୃତ୍ୱର ଉପାସନା ସମାଜରେ ପ୍ରଚଳିତ ହୋଇଥିଲା ଏବଂ ଉକ୍ତ ସମାଜର ସାହିତ୍ୟ, ସଙ୍ଗୀତ ପ୍ରଭୃତି ସମସ୍ତ ବିଷୟରେ ଠାକୁରଙ୍କର ଭାବ ପ୍ରବିଷ୍ଟ ହୋଇ ତାହାକୁ ସରସ କରି ଗଢ଼ି ତୋଳିଥିଲା । କେବଳ ସେତିକି ନୁହେଁ; ଭ୍ରମ ଓ କୁସଂସ୍କାରପୂର୍ଣ୍ଣ ଭାବି ହିନ୍ଦୁମାନଙ୍କର ଯେଉଁ ଆଦର୍ଶ ଓ ଅନୁଷ୍ଠାନଗୁଡ଼ିକରୁ ବ୍ରାହ୍ମସମାଜ ନିଜକୁ ବିଛିନ୍ନ ଓ ପୃଥକ୍ କରିଥିଲା, ସେସମସ୍ତ ମଧ୍ୟରେ ଅନେକ ବିଷୟ ଭାବିବାର ଓ ଶିଖିବାର ଅଛି—ଉକ୍ତ ସମାଜର ନେତାମାନେ ଏକଥା ମଧ୍ୟ ଠାକୁରଙ୍କର ଜୀବନ-ଆଲୋକରେ ବୁଝିପାରିଥିଲେ ।

### ବ୍ରାହ୍ମଗଣଙ୍କୁ 'ଲାଞ୍ଜ-ମୁଣ୍ଡ' ବାଦ ଦେଇ ତାଙ୍କର କଥା ଗ୍ରହଣ କରିବାକୁ କହିବାର କାରଣ :

ପାଶ୍ଚାତ୍ୟ ଭାବରେ ଭାବିତ କେଶବ ଓ ତାଙ୍କର ବନ୍ଧୁଗଣ ତାଙ୍କର ସମସ୍ତ ପ୍ରକାର ଭାବ ଓ ଉପଦେଶ ଯେ ଯଥାଯଥ ବୁଝିପାରିବେ ନାହିଁ ଏବଂ ଯାହା ବୁଝିପାରିବେ ତାହା ମଧ୍ୟ ସମ୍ୟକ୍ ଗ୍ରହଣ କରିବା ସେମାନଙ୍କର ରୁଚିକର ହେବ ନାହିଁ, ଏବିଷୟ ଠାକୁର ପୂର୍ବରୁ ହିଁ ହୃଦୟଙ୍ଗମ କରିଥିଲେ । ସେମାନଙ୍କୁ ଉପଦେଶ ପ୍ରଦାନ କାଳରେ କୌଣସି କଥା କହିବା ପରେ ସେହି ବିଷୟ ସ୍ମରଣ କରି ସେ ସେଥିପାଇଁ ପ୍ରାୟ କହୁଥିଲେ, ''ମୁଁ ଯାହା କହିବା କଥା କହିଗଲି, ତୁମେମାନେ ଏହାର ଲାଞ୍ଜ-ମୁଣ୍ଡ ବାଦ ଦେଇ ଗ୍ରହଣ କର ।'' ପୁଣି ବ୍ରାହ୍ମସମାଜଭୁକ୍ତ ଅନେକ ବ୍ୟକ୍ତିଙ୍କ ନିକଟରେ ସମାଜସଂସ୍କାର ଏବଂ ଭୋଗବାସନାର ତୃପ୍ତିସାଧନ ଜୀବନର-ଉଦ୍ଦେଶ୍ୟର ସ୍ଥାନ ଅଧିକାର କରିଅଛି—ଏକଥା ବୁଝିବାକୁ ତାଙ୍କର ବିଳମ୍ବ ହୋଇ ନ ଥିଲା । ଏହି ବିଷୟ ସେ ଅନେକ ସମୟ ରହସ୍ୟ ଛଳରେ ପ୍ରକାଶ ମଧ୍ୟ କରୁଥିଲେ । ସେ କହୁଥିଲେ—

### ଠାକୁରଙ୍କର ରହସ୍ୟ ଛଳରେ ଶିକ୍ଷା ପ୍ରଦାନ :

''କେଶବର ସେଠାକୁ ଯାଇଥିଲି । ସେମାନଙ୍କର ଉପାସନା ଦେଖିଲି । ଅନେକ ସମୟ ଭଗବାନଙ୍କର ଐଶ୍ୱର୍ଯ୍ୟର କଥାବାର୍ତ୍ତା ହେବା ପରେ କହିଲେ, 'ଏଥର ଆମେ ତାହାଙ୍କର (ଈଶ୍ୱରଙ୍କର) ଧ୍ୟାନ କରିବା ।' ଭାବିଲି କେତେ ସମୟ ଧ୍ୟାନ କରିବେ କିଏ ଜାଣେ ! ଓ ମା ! ଦୁଇମିନିଟ୍ ଚକ୍ଷୁ ବୁଜୁ ନ ବୁଜୁଣୁ ଧ୍ୟାନ ହୋଇଗଲା ।—ଏହିପରି ଧ୍ୟାନ କଲେ କ'ଣ ତାଙ୍କୁ ମିଳେ ? ଯେତେବେଳେ ସେମାନେ ଧ୍ୟାନ କରୁଥିଲେ, ସେତେବେଳେ ସମସ୍ତଙ୍କ ମୁହଁକୁ ଅନାଇ ଦେଖିଲି । ପରେ କେଶବଙ୍କୁ କହିଲି, ତୁମମାନଙ୍କର ଅନେକଙ୍କର ଧ୍ୟାନ ଦେଖିଲି, କ'ଣ ମନେ ହେଲା ଜାଣ ? —ଦକ୍ଷିଣେଶ୍ୱରର ଝାଉଁବଣରେ ବେଳେ ବେଳେ ମାଙ୍କଡ଼ ଦଳ ଚୁପ୍ ହୋଇ ବସିଥାନ୍ତି, ଯେପରି କେତେ ଭଲ, କିଛି ଜାଣନ୍ତି ନାହିଁ । କିନ୍ତୁ ତାହା ନୁହେଁ, ସେମାନେ ସେତେବେଳେ ବସି ଭାବୁଛନ୍ତି, କେଉଁ ଗୃହସ୍ଥର ଚାଳ ଉପରେ ଲାଉ ବା କଖାରୁ ଅଛି, କାହାର ବଗିଚାରେ କଦଳୀ ବା ବାଇଗଣ ହୋଇଛି । କିଛିକ୍ଷଣ ପରେ ଡିଆଁମାରି ସେଠି ପହଞ୍ଚି ସେଗୁଡ଼ିକ ଛିଣ୍ଡାଇ ଉଦରପୂର୍ତ୍ତି କରନ୍ତି । ଅନେକଙ୍କର ଧ୍ୟାନ ଦେଖିଲି ଠିକ୍ ସେହିପରି ! ସମସ୍ତେ ଏକଥା ଶୁଣି ହସିବାକୁ ଲାଗିଲେ ।''

ଏହିପରି ରହସ୍ୟଛଳରେ ସେ କେବେକେବେ ଆମମାନଙ୍କୁ ମଧ୍ୟ ଶିକ୍ଷାପ୍ରଦାନ କରୁଥିଲେ । ଆମମାନଙ୍କର ସ୍ମରଣ ଅଛି, ସ୍ୱାମୀ ବିବେକାନନ୍ଦ ଦିନେ ତାଙ୍କ ସମ୍ମୁଖରେ ଭଜନ ଗାଉଥିଲେ । ସ୍ୱାମୀଜୀ ସେତେବେଳେ ବ୍ରାହ୍ମସମାଜକୁ

ଯାତାୟାତ କରୁଥିଲେ ଏବଂ ସକାଳେ ଓ ସନ୍ଧ୍ୟାରେ ଦୁଇବେଳା ଉକ୍ତ ସମାଜର ଭାବରେ ଉପାସନା ଧ୍ୟାନ ଆଦି କରୁଥିଲେ । ''(ସେଇ) ଏକ ପୁରାତନ ପୁରୁଷ ନିରଞ୍ଜନରେ ଚିତ୍ତ ସମାଧାନ କର ରେ'' ଇତ୍ୟାଦି ବ୍ରାହ୍ମସଙ୍ଗୀତଟି ସେ ଅନୁରାଗର ସହିତ ତନ୍ମୟ ହୋଇ ଗାଇବାକୁ ଲାଗିଲେ । ଉକ୍ତ ସଙ୍ଗୀତରେ ଗୋଟିଏ ଧାଡ଼ିରେ ଅଛି—''ଭଜନ-ସାଧନ ତାଙ୍କର, କରରେ ନିରନ୍ତର'' । ଠାକୁର ଏହି କଥାଗୁଡ଼ିକ ସ୍ୱାମୀଜୀଙ୍କ ମନରେ ଦୃଢ଼ମୁଦ୍ରିତ କରାଇବା ପାଇଁ ସହସା କହି ଉଠିଲେ, ''ନା, ନା, କହ—'ଭଜନ-ସାଧନ ତାଙ୍କର, କର ରେ ଦିନକୁ ଦୁଇଥର'—କାର୍ଯ୍ୟରେ ଯାହା କରିବୁ ନାହିଁ, ମିଛରେ ତାହା କାହିଁକି କହିବୁ ?'' ସମସ୍ତେ ଉଚ୍ଚସ୍ୱରରେ ହସି ଉଠିଲେ, ସ୍ୱାମୀଜୀ ମଧ୍ୟ କିଞ୍ଚିତ୍ ଅପ୍ରତିଭ ହେଲେ ।

## ବ୍ରାହ୍ମଗଣଙ୍କୁ ଶିକ୍ଷାପ୍ରଦାନ—ଐଶ୍ୱର୍ଯ୍ୟଜ୍ଞାନରେ ଈଶ୍ୱରଙ୍କୁ ନିଜର କରାଯାଏ ନାହିଁ :

ଆଉ ଥରେ ଠାକୁର ଉପାସନା ସମ୍ବନ୍ଧରେ କେଶବପ୍ରମୁଖ ବ୍ରାହ୍ମଗଣଙ୍କୁ କହିଥିଲେ, ''ତୁମେମାନେ ଈଶ୍ୱରଙ୍କର ଐଶ୍ୱର୍ଯ୍ୟର କଥା ଏତେ କୁହ କାହିଁକି ? ସନ୍ତାନ କ'ଣ ତାର ପିତାଙ୍କ ନିକଟରେ ବସି, 'ମୋ ବାପାଙ୍କର କେତେ ଘର, କେତେ ଘୋଡ଼ା, କେତେ ଗୋରୁ, କେତେ ବଗିଚା ଅଛି' ଏସବୁ ଭାବେ ? ଅଥବା, ବାପା ତାର କେତେ ନିଜର, ତାହାକୁ କେତେ ଭଲପାନ୍ତି, ଏସବୁ ଭାବି ମୁଗ୍ଧ ହୁଏ ? ପିଲାଙ୍କୁ ତାର ବାପା ଖାଇବାକୁ ପିନ୍ଧିବାକୁ ଦିଏ, ସୁଖରେ ରଖେ, ସେଥିରେ ଅଧିକ କ'ଣ ହୋଇଛି ? ଆମେମାନେ ସମସ୍ତେ ହିଁ ତାଙ୍କ (ଈଶ୍ୱରଙ୍କର) ସନ୍ତାନ, ଅତଏବ ସେ ଆମ ପ୍ରତି ସେପ୍ରକାର ବ୍ୟବହାର କରିବେ ସେଥିରେ ଆଶ୍ଚର୍ଯ୍ୟ କ'ଣ ? ଯଥାର୍ଥ ଭକ୍ତ ସେଥିପାଇଁ ସେସମସ୍ତ କଥା ନ ଭାବି ତାଙ୍କୁ ନିଜର କରିନେଇ ତାଙ୍କଠାରେ ଅଳି କରେ, ଅଭିମାନ କରେ, ଏବଂ ତାଙ୍କୁ ଜୋର କରି କୁହେ, 'ତୁମକୁ ମୋର ପ୍ରାର୍ଥନା ପୂର୍ଣ୍ଣ କରିବାକୁ ହିଁ ହେବ, ମୋତେ ଦେଖା ଦେବାକୁ ହିଁ ହେବ ।' ଏତେ ବେଶୀ ଐଶ୍ୱର୍ଯ୍ୟ ଭାବିଲେ, ତାଙ୍କୁ ଖୁବ୍ ନିକଟରେ, ଖୁବ୍ ନିଜର ବୋଲି ଭାବିହୁଏ ନାହିଁ, ତାଙ୍କ ଉପରେ ଜୋର୍ କରିହୁଏ ନାହିଁ । ସେ କେତେ ମହାନ୍, ଏବଂ ଆମ ନିକଟରୁ କେତେ ଦୂରରେ, ଏପରି ଭାବ ଆସେ । ତାଙ୍କୁ ଖୁବ୍ ନିଜର ବୋଲି ଭାବ, ତା'ହେଲେ ତ' ହେବ (ତାଙ୍କୁ ପାଇବ) ।''

## ଈଶ୍ୱରଙ୍କର ସ୍ୱରୂପର ଅନ୍ତ କରାଯାଏ ନାହିଁ :

ଈଶ୍ୱରଲାଭ ନିମନ୍ତେ ସାଧନ-ଭଜନ ଓ ବିଷୟବାସନା-ତ୍ୟାଗର ଏକାନ୍ତ ପ୍ରୟୋଜନୀୟତା ଶିକ୍ଷା କରିବା ବ୍ୟତୀତ ଠାକୁରଙ୍କ ସଂସ୍ପର୍ଶରେ ଆସି କେଶବପ୍ରମୁଖ ବ୍ରାହ୍ମଗଣ ଅନ୍ୟ ଗୋଟିଏ ବିଷୟ ମଧ୍ୟ ଜାଣିପାରିଥିଲେ । ପାଶ୍ଚାତ୍ୟର ଧର୍ମ ପ୍ରଚାରକଗଣଙ୍କ ମୁହଁରୁ ଏବଂ ଇଂରାଜୀ ପୁସ୍ତକ ଆଦିରୁ ସେମାନେ ଶିକ୍ଷା

କରିଥିଲେ, ଈଶ୍ୱର କେବେ ମଧ୍ୟ ସାକାର ହୋଇପାରନ୍ତି ନାହିଁ, ତେଣୁ କୌଣସି ସାକାର ମୂର୍ତ୍ତିରେ ତାଙ୍କର ଅଧିଷ୍ଠାନ ସ୍ୱୀକାର କରି ପୂଜା ଉପାସନା କଲେ ମହାପାପ ହୋଇଥାଏ । କିନ୍ତୁ "ନିରାକାର ଜଳ ଜମି ସାକାର ବରଫ ହେବା ପରି, ନିରାକାର ସଚ୍ଚିଦାନନ୍ଦ ଭକ୍ତିହିମରେ ଜମି ସାକାର ହେବା," "ଶୋଲର ଆତ ଦେଖି ଯଥାର୍ଥ ଆତ ମନେ ପଡ଼ିବା ସଦୃଶ ସାକାର ମୂର୍ତ୍ତି-ଅବଲମ୍ବନରେ ଈଶ୍ୱରଙ୍କର ଯଥାର୍ଥ ସ୍ୱରୂପର ପ୍ରତ୍ୟକ୍ଷଜ୍ଞାନରେ ପହଞ୍ଚିବା"—ଇତ୍ୟାଦି ପ୍ରତୀକ-ଉପାସନାର କଥା ଠାକୁରଙ୍କ ଶ୍ରୀମୁଖରୁ ଶୁଣି ସେମାନେ ବୁଝିଥିଲେ, 'ପୌତ୍ତଳିକତା' ନାମରେ ସେମାନେ ଯେଉଁ କାର୍ଯ୍ୟଟିକୁ ଏତେଦିନ ନିତାନ୍ତ ଯୁକ୍ତିହୀନ ଓ ହେୟ ଭାବି ଆସିଛନ୍ତି, ସେ ସମ୍ବନ୍ଧରେ କହିବାର ଓ ଚିନ୍ତା କରିବାର ଅନେକ ବିଷୟ ଅଛି । ତା'ଉପରେ ଯେଉଁଦିନ ଠାକୁର, 'ଅଗ୍ନି ଓ ତାର ଦାହିକାଶକ୍ତି ସଦୃଶ ବ୍ରହ୍ମ ଓ ବ୍ରହ୍ମଶକ୍ତିର ପ୍ରକାଶ ବିରାଟ-ଜଗତର ଅଭିନ୍ନତା' କେଶବପ୍ରମୁଖ ବ୍ରାହ୍ମଗଣଙ୍କ ନିକଟରେ ପ୍ରତିପାଦନ କଲେ, ସେଦିନ ଯେ ସେମାନେ ସାକାର-ଉପାସନାକୁ ନୂତନ ଆଲୋକରେ ଦେଖିବାକୁ ପାଇଥିଲେ, ସେବିଷୟରେ ସନ୍ଦେହ ନାହିଁ । ସେମାନେ ସେଦିନ ନିଃସଂଶୟରେ ବୁଝିଥିଲେ ଯେ, କେବଳ ନିରାକାର ସଗୁଣ ବ୍ରହ୍ମରୂପରେ ଚିନ୍ତା କଲେ ଈଶ୍ୱରଙ୍କର ଯଥାର୍ଥ ସ୍ୱରୂପର ଗୋଟିଏ ଅଂଶମାତ୍ର ହିଁ ନିର୍ଦ୍ଦିଷ୍ଟ ହୋଇଥାଏ । ସେମାନେ ବୁଝିଥିଲେ, ଈଶ୍ୱର-ସ୍ୱରୂପକୁ କେବଳ ସାକାର ବୋଲି ନିର୍ଦ୍ଦିଷ୍ଟ କରିବାରେ ଯେଉଁ ଦୋଷ ହୁଏ, କେବଳ ନିରାକାର ସଗୁଣ ବୋଲି ତାହାଙ୍କୁ ନିର୍ଦ୍ଦେଶ କଲେ ସେହି ଦୋଷ ହୁଏ । କାରଣ, ଈଶ୍ୱର ସାକାର-ଜଗତ ରୂପରେ ବ୍ୟକ୍ତ ହୋଇ ରହିଛନ୍ତି, ନିରାକାର ସଗୁଣ-ବ୍ରହ୍ମସ୍ୱରୂପରେ ଜଗତର ନିୟାମକ ହୋଇ ରହିଛନ୍ତି, ପୁଣି ସର୍ବଗୁଣର ଅତୀତ ରହି ଈଶ୍ୱର ଜୀବ, ଜଗତ ପ୍ରଭୃତି ଯାବତୀୟ ବସ୍ତୁ ଓ ବ୍ୟକ୍ତିର ନାମରୂପଯୁକ୍ତ ପ୍ରକାଶର ଭିତ୍ତି-ସ୍ୱରୂପ ହୋଇ ସତତ ଅବସ୍ଥାନ କରୁଛନ୍ତି । "ଈଶ୍ୱର-ସ୍ୱରୂପର ଇତି କରିବା ଠିକ୍ ନୁହେଁ—ସେ ସାକାର, ସେ ନିରାକାର (ସଗୁଣ) ଏବଂ ଏହା ଛଡ଼ା ସେ ଯେ ଆହୁରି କ'ଣ, ତାହା କିଏ ଜାଣିପାରିବ ବା କହିପାରିବ ?" ଠାକୁରଙ୍କର ଏହି ସାମାନ୍ୟ ଉକ୍ତିର ସେପରି ଗଭୀର ଅର୍ଥ ଦେଖିବାକୁ ପାଇ କେଶବପ୍ରମୁଖ ସମସ୍ତେ ସେଦିନ ସ୍ତମ୍ଭିତ ହୋଇଥିଲେ ।

### ଭାରତବର୍ଷୀୟ ବ୍ରାହ୍ମସମାଜର ରୂପ-ପରିବର୍ତ୍ତନ :

ଏହିପରି ୧୨୮୧ ବଙ୍ଗାବ୍ଦ ଚୈତ୍ର ମାସରେ, ଇଂରାଜୀ ୧୮୭୫ ମସିହା ମାର୍ଚ୍ଚ ମାସରେ, ଠାକୁରଙ୍କର ପୁଣ୍ୟଦର୍ଶନ ପ୍ରଥମ ଲାଭ କରିବା ପରଠାରୁ ତିନିବର୍ଷରୁ ଅଧିକ ସମୟ ପର୍ଯ୍ୟନ୍ତ କେଶବଙ୍କ ପରିଚାଳିତ ଭାରତବର୍ଷୀୟ ବ୍ରାହ୍ମସମାଜ ପାଶ୍ଚାତ୍ୟଭାବର ମୋହରୁ ଦିନକୁ ଦିନ ବିମୁକ୍ତ ହୋଇ ନୂତନ

ଆକାର ଧାରଣ କରିବାକୁ ଲାଗିଲା ଏବଂ ବ୍ରାହ୍ମଗଣଙ୍କ ମଧ୍ୟରେ ଅନେକଙ୍କର ସାଧନାନୁରାଗ ସାଧାରଣଙ୍କର ଚିତ୍ତ ଆକର୍ଷଣ କଲା । ପରେ ୧୨୮୪ ବଙ୍ଗାବ୍ଦ ଇଂରାଜୀ ୧୮୭୮ ମସିହା ମାର୍ଚ୍ଚ ଛଅ ତାରିଖରେ, ଶ୍ରୀଯୁକ୍ତ କେଶବ ତାଙ୍କର କନ୍ୟାକୁ କୁଚବିହାର ପ୍ରଦେଶର ମହାରାଜାଙ୍କ ସହିତ ବିଭା ଦେଲେ । ବିବାହ କାଳରେ କନ୍ୟାର ବୟସର ଯେଉଁ ସୀମା ବ୍ରାହ୍ମସମାଜ ଏହା ପୂର୍ବରୁ ସ୍ଥିର କରିଥିଲା, କେଶବଙ୍କର କନ୍ୟାର ବୟସ ତାହା ଅପେକ୍ଷା କମ୍ ଥିବାରୁ ଉକ୍ତ ବିବାହ ନେଇ ସମାଜରେ ବିଷମ ଗଣ୍ଡଗୋଳ ଉପସ୍ଥିତ ହେଲା ଏବଂ ପାଶ୍ଚାତ୍ୟ ଅନୁକରଣରେ ସମାଜସଂସ୍କାରପ୍ରିୟତାରୂପକ ଶିଳାଖଣ୍ଡରେ ପ୍ରତିହତ ହୋଇ ଏହି ସମୟଠାରୁ ତାହା 'ଭାରତବର୍ଷୀୟ' ଓ 'ସାଧାରଣ' ନାମକ ଦୁଇ ଧାରାରେ ପ୍ରବାହିତ ହେବାକୁ ଲାଗିଲା । ବ୍ରାହ୍ମସମାଜ ଉପରେ ଠାକୁରଙ୍କ ପ୍ରଭାବ କିନ୍ତୁ ଏହି ଘଟଣାରେ ନିରସ୍ତ ହେଲା ନାହିଁ । ସେ ଉଭୟପକ୍ଷକୁ ସମାନ ଆଦର କରିବାକୁ ଲାଗିଲେ ଏବଂ ଉଭୟ ପକ୍ଷର ପିପାସୁ ବ୍ୟକ୍ତିଗଣ ହିଁ ତାଙ୍କ ନିକଟରେ ଉପସ୍ଥିତ ହୋଇ ପୂର୍ବପରି ଆଧ୍ୟାତ୍ମିକ ପଥରେ ସହାୟତା ଲାଭ କରିବାକୁ ଲାଗିଲେ ।

### ଠାକୁରଙ୍କର ଆବିଷ୍କୃତ ତତ୍ତ୍ୱର କିୟଦଂଶ ଗ୍ରହଣପୂର୍ବକ କେଶବଙ୍କର 'ନବବିଧାନ' ଆଖ୍ୟାପ୍ରଦାନ ଓ ପ୍ରଚାର :

ଭାରତବର୍ଷୀୟ ବ୍ରାହ୍ମଦଳର ନେତା ଶ୍ରୀଯୁକ୍ତ କେଶବ ଏବେଠାରୁ ଦ୍ରୁତ ପଦରେ ସାଧନମାର୍ଗରେ ଅଗ୍ରସର ହୋଇଥିଲେ ଏବଂ ଠାକୁରଙ୍କର କୃପାରେ ତାଙ୍କର ଆଧ୍ୟାତ୍ମିକ ଜୀବନ ଏବେଠାରୁ ସୁଗଭୀର ହୋଇଉଠିଥିଲା । ହୋମ, ଅଭିଷେକ, ମୁଣ୍ଡନ, କାଷାୟଧାରଣାଦି ସ୍ଥୂଳ କ୍ରିୟାସମୂହ ସହାୟରେ ମାନବ-ମନ ଆଧ୍ୟାତ୍ମିକ ରାଜ୍ୟର ସୂକ୍ଷ୍ମ ଏବଂ ଉଚ୍ଚ ସ୍ତରସମୂହରେ ଆରୋହଣ କରିବାକୁ ସମର୍ଥ ହୁଏ, ଏକଥା ହୃଦୟଙ୍ଗମ କରି ସେ ସେସମସ୍ତର ଅଳ୍ପବହୁତ ଅନୁଷ୍ଠାନ କରିଥିଲେ । ବୁଦ୍ଧ, ଶ୍ରୀଗୌରାଙ୍ଗ, ଈଶା ପ୍ରଭୃତି ମହାପୁରୁଷଗଣ ଜୀବନ୍ତ ଭାବମୟ ଶରୀରରେ ନିତ୍ୟବିଦ୍ୟମାନ ଏବଂ ସେମାନେ ପ୍ରତ୍ୟେକେ ଆଧ୍ୟାତ୍ମିକ ରାଜ୍ୟରେ ଗୋଟିଏ ଗୋଟିଏ ବିଶେଷ ବିଶେଷ ଭାବ ପ୍ରସ୍ରବଣ-ସ୍ୱରୂପରେ ସତତ ଅବସ୍ଥାନ କରୁଛନ୍ତି, ଏକଥା ବୁଝିପାରି ସେମାନଙ୍କର ଭାବ ଯଥାଯଥ ଉପଲବ୍ଧି କରିବା ପାଇଁ ସେ କେତେବେଳେ ଜଣଙ୍କର, କେତେବେଳେ ଅନ୍ୟଜଣଙ୍କର ଧ୍ୟାନରେ ତନ୍ମୟ ହୋଇ କିଛି କାଳ ଯାପନ କରିଥିଲେ । ଠାକୁର ସମସ୍ତ ପ୍ରକାର 'ଭେକ୍' (ବେଶ) ଧାରଣପୂର୍ବକ ସବୁମତର ସାଧନା କରିଥିଲେ ଶୁଣି ହିଁ ଯେ କେଶବଙ୍କର ପୂର୍ବୋକ୍ତ ପ୍ରବୃତ୍ତି ହୋଇଥିଲା, ତାହା ନିଃସନ୍ଦେହରେ କୁହାଯାଇପାରେ । ସେହି ପ୍ରକାରରେ ସାଧନସମୂହର ଅଳ୍ପ ବହୁତ ଅନୁଷ୍ଠାନପୂର୍ବକ 'ଯେତେ ମତ, ସେତେ ପଥ'-ରୂପକ ଠାକୁରଙ୍କର ନୂତନ ଆବିଷ୍କୃତ ତତ୍ତ୍ୱର ବିଷୟ ଶ୍ରୀଯୁକ୍ତ କେଶବ ଯେତେଦୂର

ବୁଝିବାକୁ ସମର୍ଥ ହୋଇଥିଲେ, ତାହା ହିଁ କୁଚବିହାର-ବିବାହର ପ୍ରାୟ ଦୁଇବର୍ଷ ପରେ 'ନବବିଧାନ' ଆଖ୍ୟା ଦେଇ ଜନସମାଜରେ ପ୍ରଚାର କରିଥିଲେ । ଠାକୁରଙ୍କୁ ସେ ଉକ୍ତ ବିଧାନର ଘନୀଭୂତ ମୂର୍ତ୍ତି ଜାଣି କେତେଦୂର ଶ୍ରଦ୍ଧା-ଭକ୍ତି କରୁଥିଲେ ତାହା ପ୍ରକାଶ କରିବାକୁ ଆମେ ଅସମର୍ଥ । ଆମମାନଙ୍କ ମଧ୍ୟରେ ଅନେକେ ଦେଖିଥିଲେ, ଦକ୍ଷିଣେଶ୍ୱରରେ ଠାକୁରଙ୍କ ପଦପ୍ରାନ୍ତରେ ଉପସ୍ଥିତ ହୋଇ ସେ 'ଜୟ ବିଧାନର ଜୟ', 'ଜୟ ବିଧାନର ଜୟ' ଏହି କଥା ବାରମ୍ବାର ଉଚ୍ଚାରଣ କରୁ କରୁ ତାଙ୍କର ପଦଧୂଳି ଗ୍ରହଣ କରୁଛନ୍ତି । 'ନବବିଧାନ' ପ୍ରଚାରର ପ୍ରାୟ ଚାରିବର୍ଷ ପରେ ସେ ଇହଲୋକରୁ ପ୍ରସ୍ଥାନ ନ କରିଥିଲେ ତାଙ୍କର ଆଧ୍ୟାତ୍ମିକ ଜୀବନ ଯେ କେତେ ସୁଗଭୀର ହୋଇଥାଆନ୍ତା, ତାହା କିଏ କହିପାରିବ ?

### ଠାକୁର କେଶବଙ୍କୁ କେତେଦୂର ନିଜର ବୋଲି ଜ୍ଞାନ କରୁଥିଲେ :

ଠାକୁର ଶ୍ରୀଯୁକ୍ତ କେଶବଙ୍କୁ ଏତେଦୂର ପରମ ଆତ୍ମୀୟ ଜ୍ଞାନ କରୁଥିଲେ ଯେ, ଥରେ ତାଙ୍କର ଅସୁସ୍ଥତା କଥା ଶୁଣି, ତାଙ୍କର ଆରୋଗ୍ୟ ନିମିତ୍ତ ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରେ ପଇଡ଼-ଚିନି ମାନସିକ କରିଥିଲେ । ପୀଡ଼ିତ ଅବସ୍ଥାରେ ତାଙ୍କୁ ଦେଖିବାକୁ ଯାଇ ଅତିଶୟ କୃଶ ହୋଇଥିବା ଦେଖି ଅଶ୍ରୁସମ୍ବରଣ କରି ପାରି ନ ଥିଲେ । ଏହାପରେ କହିଥିଲେ, ''ବସରାଇ ଗୋଲାପ (ଏକ ବିଶେଷ ଜାତିର ଗୋଲାପ) ଗଛରେ ବଡ଼ ଫୁଲ ହେବ ବୋଲି ମାଳୀ ବେଳେ ବେଳେ ଗଛଟିକୁ କାଟଛାଣ୍ଟ କରି ତାର ମୂଳ ପର୍ଯ୍ୟନ୍ତ ବାହାର କରି ଖରା ଓ ଥଣ୍ଡା କାକର ଲାଗିବାର ବ୍ୟବସ୍ଥା କରିଥାଏ । ତୁମର ଶରୀରର ଏହି ଅବସ୍ଥା ମାଳୀ (ଈଶ୍ୱର) ସେଥିପାଇଁ ହିଁ କରିଛନ୍ତି ।'' ପୁଣି ତାଙ୍କର ଶେଷ ଅସୁସ୍ଥତା ଯୋଗୁଁ ୧୮୮୪ ମସିହା ଜାନୁଆରୀ ମାସରେ ତାଙ୍କର ଶରୀର ରକ୍ଷା କଥା ଶୁଣି ଅଭିଭୂତ ହୋଇ ଠାକୁର ତିନିଦିନ ପର୍ଯ୍ୟନ୍ତ କାହା ସହିତ କଥାବାର୍ତ୍ତା ନ କରି ଶୟନ କରିଥିଲେ ଏବଂ ପରେ କହିଥିଲେ, ''କେଶବର ମୃତ୍ୟୁ କଥା ଶୁଣି ମୋର ବୋଧ ହେଲା, ଯେପରି ମୋର ଗୋଟିଏ ଅଙ୍ଗ ପଡ଼ିଯାଇଛି !'' ଶ୍ରୀଯୁକ୍ତ କେଶବଙ୍କର ପରିବାରବର୍ଗ ସ୍ତ୍ରୀ-ପୁରୁଷ ସମସ୍ତେ ଠାକୁରଙ୍କୁ ବିଶେଷ ଭକ୍ତି କରୁଥିଲେ ଏବଂ ବେଳେ ବେଳେ ତାଙ୍କୁ 'କମଳ କୁଟୀର'କୁ ନେଇଯାଉଥିଲେ ଏବଂ କେବେ ପୁଣି ଦକ୍ଷିଣେଶ୍ୱରରେ ତାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କର ଶ୍ରୀମୁଖରୁ ଆଧ୍ୟାତ୍ମିକ ଉପଦେଶାବଳୀ ଶ୍ରବଣ କରୁଥିଲେ । ମାଘୋତ୍ସବରେ ତାଙ୍କ ସହିତ ଭଗବଦ୍ ଆଳାପ ଓ କୀର୍ତ୍ତନାଦିରେ ଦିନଟିଏ ଆନନ୍ଦ କରିବା କେଶବଙ୍କର ଜୀବିତାବସ୍ଥାରେ ନବବିଧାନ ସମାଜର ଅବଶ୍ୟକର୍ତ୍ତବ୍ୟ ଅଙ୍ଗବିଶେଷ ହୋଇଉଠିଥିଲା । ଏହି ସମୟରେ କେଶବ ବେଳେ ବେଳେ ଜାହାଜ କରି ସଦଳବଳେ ଦକ୍ଷିଣେଶ୍ୱରରେ

ଉପସ୍ଥିତ ହେଉଥିଲେ ଏବଂ ଠାକୁରଙ୍କୁ ସେଥିରେ ବସାଇ ଭାଗୀରଥୀ-ବକ୍ଷରେ ପରିଭ୍ରମଣ କରୁ କରୁ କୀର୍ତ୍ତନାନନ୍ଦରେ ମଗ୍ନ ହେଉଥିଲେ ।

### ଠାକୁରଙ୍କ ପ୍ରଭାବରେ ବିଜୟକୃଷ୍ଣ ଗୋସ୍ୱାମୀଙ୍କର ମତ ପରିବର୍ତ୍ତନ ଓ ବ୍ରାହ୍ମସମାଜ ପରିତ୍ୟାଗ :

କୁଚବିହାର-ବିବାହ ନେଇ ବ୍ରାହ୍ମସମାଜ ବିଚ୍ଛିନ୍ନ ହେବା ପରେ ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ଓ ଶିବନାଥ ଶାସ୍ତ୍ରୀ 'ସାଧାରଣ' ବ୍ରାହ୍ମସମାଜର ଆଚାର୍ଯ୍ୟପଦ ଗ୍ରହଣ କରିଥିଲେ । ଶ୍ରୀଯୁକ୍ତ ବିଜୟ ଏହାପୂର୍ବରୁ ସତ୍ୟପରାୟଣତା ଏବଂ ସାଧନାନୁରାଗ ନିମିତ୍ତ କେଶବଙ୍କର ବିଶେଷ ପ୍ରିୟ ଥିଲେ । ଆଚାର୍ଯ୍ୟ କେଶବଙ୍କ ପରି ଠାକୁରଙ୍କର ପୁଣ୍ୟଦର୍ଶନଲାଭ ପରେ ବିଜୟକୃଷ୍ଣଙ୍କର ମଧ୍ୟ ସାଧନାନୁରାଗ ବିଶେଷ ଭାବରେ ପ୍ରବୃଦ୍ଧ ହୋଇଥିଲା । ସେହି ପଥରେ ଅଗ୍ରସର ହୋଇ ସ୍ୱଳ୍ପକାଳ ମଧ୍ୟରେ ହିଁ ତାଙ୍କର ନାନା ନୂତନ ଆଧ୍ୟାତ୍ମିକ ପ୍ରତ୍ୟକ୍ଷ ଉପସ୍ଥିତ ହୋଇଥିଲା ଏବଂ ଈଶ୍ୱରଙ୍କର ସାକାର ପ୍ରକାଶରେ ସେ ବିଶ୍ୱାସବାନ ହୋଇଉଠିଥିଲେ । ଆମେ ବିଶ୍ୱସ୍ତସୂତ୍ରରୁ ଶୁଣିଛୁ, ବ୍ରାହ୍ମସମାଜରେ ଯୋଗଦାନ ପୂର୍ବରୁ ବିଜୟ ଯେତେବେଳେ ସଂସ୍କୃତ କଲେଜରେ ଅଧ୍ୟୟନ କରିବାକୁ କଲିକତାକୁ ଆସିଥିଲେ, ସେତେବେଳେ ଦୀର୍ଘ ଶିଖା, ସୂତ୍ର ଏବଂ ନାନା କବଚ ଆଦିରେ ତାଙ୍କର ଅଙ୍ଗ ଭୂଷିତ ଥିଲା; ସତ୍ୟନିଷ୍ଠା ଯୋଗୁଁ ବିଜୟ ସେସବୁ ଗୋଟିଏ ଦିନରେ ପରିତ୍ୟାଗ କରି ବ୍ରାହ୍ମଦଳରେ ଯୋଗଦାନ କରିଥିଲେ । କୁଚବିହାର-ବିବାହ ପରେ ସତ୍ୟ ନିଷ୍ଠା କାରଣରୁ ସେ ନିଜ ଗୁରୁତୁଲ୍ୟ କେଶବଙ୍କୁ ବର୍ଜନ କରିଥିଲେ । ପୁଣି ସେହି ସତ୍ୟନିଷ୍ଠାରୁ ସେ ଏବେଠାରୁ ତାଙ୍କର ସାକାର ବିଶ୍ୱାସ ଲୁଚାଇ ନ ପାରି ବ୍ରାହ୍ମସମାଜରୁ ନିଜକୁ ପୃଥକ୍ କରିବାକୁ ବାଧ୍ୟ ହୋଇଥିଲେ । ଏଥିରେ ତାଙ୍କର ବୃତ୍ତିଲୋପ ହେବାରୁ କିଛି ଦିନ ପାଇଁ ତାଙ୍କୁ ଅର୍ଥ ଅଭାବରେ ବିଶେଷ କଷ୍ଟ ଭୋଗିବାକୁ ହୋଇଥିଲା । କିନ୍ତୁ ସେଥିରେ ସେ ଆଦୌ ଅବସନ୍ନ ହୋଇ ନ ଥିଲେ । ଶ୍ରୀଯୁକ୍ତ ବିଜୟ ଠାକୁରଙ୍କ ନିକଟରୁ ଆଧ୍ୟାତ୍ମିକ ସହାୟତା ଲାଭର କଥା ଏବଂ ବେଳେ ବେଳେ ଅଦ୍ଭୁତଭାବରେ ତାଙ୍କ ଦର୍ଶନ ପାଇବା ବିଷୟ ଅନେକ ସମୟରେ ଆମ ନିକଟରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଥିଲେ । କିନ୍ତୁ ସେ ତାଙ୍କୁ ଉପଗୁରୁ କିମ୍ବା ଅନ୍ୟ କୌଣସି ଭାବରେ ଭକ୍ତି ଶ୍ରଦ୍ଧା କରୁଥିଲେ, ତାହା କହିପାରିବୁ ନାହିଁ । କାରଣ, ଗୟାଧାମରେ ଆକାଶଗଙ୍ଗାର ପାହାଡ଼ରେ କୌଣସି ସାଧୁ କୃପା କରି ନିଜ ଯୋଗଶକ୍ତି-ସହାୟରେ ତାଙ୍କୁ ସହସା ସମାଧିସ୍ଥ କରିଦେଇଥିଲେ ଓ ତାଙ୍କର ଗୁରୁପଦବୀ ଗ୍ରହଣ କରିଥିଲେ, ଏକଥା ମଧ୍ୟ ଆମେ ତାଙ୍କ ନିକଟରୁ ଶ୍ରବଣ କରିଥିଲୁ । କିନ୍ତୁ ଠାକୁରଙ୍କ ସମ୍ବନ୍ଧରେ ଯେ

ତାଙ୍କର ଅତି ଉଚ୍ଚ ଧାରଣା ଥିଲା ସେଥିରେ ସଂଶୟ ନାହିଁ, ଏବଂ ସେହି ବିଷୟରେ ତାଙ୍କର ନିଜ ମୁହଁରୁ ଆମେ ଯେଉଁ ସବୁ କଥା ଶୁଣିଥିଲୁ, ତାହା ଏଗ୍ରନ୍ଥର ଅନ୍ୟତ୍ର ପ୍ରକାଶ କରିଛୁଁ[୧] ।

**ବିଜୟ ଏହାପରେ ସାଧନାରେ କେତେଦୂର ଅଗ୍ରସର ହୋଇଥିଲେ :**

ବ୍ରାହ୍ମସମାଜରୁ ପୃଥକ ହେବାପରେ ବିଜୟକୃଷ୍ଣଙ୍କର ଆଧ୍ୟାତ୍ମିକ ଗଭୀରତା ଦିନକୁ ଦିନ ପ୍ରବୃଦ୍ଧ ହୋଇଥିଲା । କୀର୍ତ୍ତନକାଳରେ ଭାବାବିଷ୍ଟ ହୋଇ ତାଙ୍କର ଉଦ୍ଦାମ ନୃତ୍ୟ ଓ ଘନ ଘନ ସମାଧି ଦେଖି ଲୋକମାନେ ମୋହିତ ହେଉଥିଲେ । ଠାକୁରଙ୍କର ଶ୍ରୀମୁଖରୁ ଆମେ ତାଙ୍କର ଉଚ୍ଚାବସ୍ଥାର କଥା ଏହିପରି ଶୁଣିଅଛୁ— "ଯେଉଁ ଘରେ ପ୍ରବେଶ କଲେ ଲୋକଙ୍କର ଈଶ୍ୱର ସାଧନା ପୂର୍ଣ୍ଣତ୍ୱ ଲାଭ କରେ ତାର ପାର୍ଶ୍ୱ ଘରେ ପହଞ୍ଚି ବିଜୟ ଦ୍ୱାର ଖୋଲି ଦେବା ନିମିତ୍ତ କରାଘାତ କରୁଛନ୍ତି !"—ଆଧ୍ୟାତ୍ମିକ ଗଭୀରତାଲାଭ ପରେ ଶ୍ରୀଯୁକ୍ତ ବିଜୟ ଅନେକ ଲୋକଙ୍କୁ ମନ୍ତ୍ରଶିଷ୍ୟ କରିଥିଲେ ଏବଂ ଠାକୁରଙ୍କର ଶରୀରରକ୍ଷାର ପ୍ରାୟ ଚଉଦବର୍ଷ ପରେ ପୁରୀଧାମରେ ଦେହରକ୍ଷା କରିଥିଲେ ।

**'ଶିବ ଓ ରାମଙ୍କର ଯୁଦ୍ଧ' କଥାରେ କେଶବ ଓ ବିଜୟଙ୍କର ମନୋମାଳିନ୍ୟ ଦୂର ହେବା :**

କୁଚବିହାର-ବିବାହ ପରେ ଭାରତବର୍ଷୀୟ ଓ ସାଧାରଣ ବ୍ରାହ୍ମଦଳଙ୍କ ମଧ୍ୟରେ ବିଶେଷ ମନାନ୍ତର ଲକ୍ଷିତ ହୋଇଥିଲା । ଗୋଟିଏ ଦଳ ସହିତ ଅନ୍ୟ ଦଳର କଥାବାର୍ତ୍ତା ପର୍ଯ୍ୟନ୍ତ ବନ୍ଦ ହୋଇଯାଇଥିଲା । ଉଭୟ ଦଳର ସାଧନାନୁରାଗୀ ବ୍ୟକ୍ତିଗଣ କିନ୍ତୁ ପୂର୍ବପରି ସମାନ ଭାବରେ ଦକ୍ଷିଣେଶ୍ୱରକୁ ଆସୁଥିଲେ, ଏକଥା ପୂର୍ବରୁ ଉଲ୍ଲେଖ ହୋଇଛି । କେଶବ ଓ ବିଜୟ ଉଭୟ ହିଁ ଦିନେ ଏହି ସମୟରେ ନିଜ ନିଜ ଅନ୍ତରଙ୍ଗଗଣଙ୍କ ସହିତ ହଠାତ୍ ଠାକୁରଙ୍କ ନିକଟରେ ଉପସ୍ଥିତ ହୋଇଥିଲେ । ଗୋଟିଏ ଦଳ ଅନ୍ୟଦଳ ଆସିବା କଥା ଜାଣି ନ ଥିବାରୁ ଅବଶ୍ୟ ସେହିପରି ହୋଇଥିଲା ଏବଂ ପୂର୍ବବିରୋଧ ସ୍ମରଣ କରି ଉଭୟ ଦଳ ମଧ୍ୟରେ ଏକ ସଙ୍କୋଚ ଭାବ ଦୃଷ୍ଟ ହୋଇଥିଲା । କେଶବ ଏବଂ ବିଜୟ ଭିତରେ ମଧ୍ୟ ସେହି ସଙ୍କୋଚ ଭାବ ଦେଖି ଠାକୁର ସେଦିନ ସେମାନଙ୍କର ବିବାଦ ଭଞ୍ଜନ କରିବା ଉଦ୍ଦେଶ୍ୟରେ କହିଥିଲେ—

"ଦେଖ, ଭଗବାନ ଶିବ ଏବଂ ରାମଚନ୍ଦ୍ରଙ୍କ ଭିତରେ ଥରେ ଦ୍ୱନ୍ଦ୍ୱ ଉପସ୍ଥିତ ହୋଇ ଭୀଷଣ ଯୁଦ୍ଧର ଅବତାରଣା ହୋଇଥିଲା । ଶିବଙ୍କର ଗୁରୁ ରାମ ଏବଂ ରାମଙ୍କର ଗୁରୁ ଶିବ—ଏକଥା ପ୍ରସିଦ୍ଧ ଅଛି । ସୁତରାଂ ଯୁଦ୍ଧପରେ ସେମାନଙ୍କର ପରସ୍ପର ମିଳନରେ ବିଳମ୍ବ ହେଲା ନାହିଁ । କିନ୍ତୁ ଶିବଙ୍କର ଚେଲା ଭୂତ-ପ୍ରେତାଦିଙ୍କ

୧. ଗୁରୁଭାବ ଉତ୍ତରାର୍ଦ୍ଧ, ୫ମ ଅଧ୍ୟାୟ ଦେଖ ।

ସହିତ ରାମଙ୍କର ଚେଲା ବାନରଗଣଙ୍କର ଆଉ କେବେ ହେଲେ ମିଳନ ହେଲା ନାହିଁ । ଭୂତଗଣ ଓ ବାନରଗଣଙ୍କ ଲଢ଼େଇ ସର୍ବଦା ଲାଗି ରହିଲା । (କେଶବ ଓ ବିଜୟଙ୍କୁ ସମ୍ବୋଧନ କରି) ଯାହା ହେବାର ହୋଇଗଲାଣି, ତୁମେମାନେ ପରସ୍ପର ଭିତରେ ଏବେ ଆଉ ମନୋମାଳିନ୍ୟ ରଖିବା ଉଚିତ୍ ନୁହେଁ, ଏହା ଭୂତ ଓ ବାନରଙ୍କ ମଧ୍ୟରେ ହିଁ ରହିଥାଉ'' ।

## ଠାକୁରଙ୍କ ପ୍ରଭାବରେ ବ୍ରାହ୍ମସଂଘ ଭାଙ୍ଗିଯିବ ବୋଲି ଆଚାର୍ଯ୍ୟ ଶିବନାଥଙ୍କର ଦକ୍ଷିଣେଶ୍ୱର ଯିବାରୁ ବିରତ ହେବା :

ସେବେଠାରୁ କେଶବ ଓ ବିଜୟଙ୍କ ମଧ୍ୟରେ ପୁନରାୟ କଥାବାର୍ତ୍ତା ଚାଲୁରହିଲା । ଶ୍ରୀଯୁକ୍ତ ବିଜୟ ନିଜର ଅଭିନବ ଆଧ୍ୟାତ୍ମିକ ଅନୁଭୂତି ହେତୁ ସାଧାରଣସମାଜ ପରିତ୍ୟାଗ କରିବାରୁ ଉକ୍ତ ଦଳରେ ଯେଉଁମାନେ ତାଙ୍କର ଅତ୍ୟନ୍ତ ବିଶ୍ୱାସବାନ ଥିଲେ, ସେମାନେ ମଧ୍ୟ ତାଙ୍କ ସହିତ ଚାଲି ଆସିଲେ । ଏଥିଯୋଗୁଁ ସାଧାରଣ-ସମାଜ ଏହି ସମୟରେ ବିଶେଷ କ୍ଷୀଣ ହୋଇଥିଲା । ଆଚାର୍ଯ୍ୟ ଶ୍ରୀଯୁକ୍ତ ଶିବନାଥ ଶାସ୍ତ୍ରୀ ହିଁ ଏବେ ଏହି ଦଳର ନେତା ହୋଇ ସମାଜକୁ ରକ୍ଷା କରିଥିଲେ । ଶିବନାଥ ଏହାପୂର୍ବରୁ ଅନେକ ଥର ଠାକୁରଙ୍କ ନିକଟକୁ ଆସିଥିଲେ ଏବଂ ତାଙ୍କୁ ବିଶେଷ ଶ୍ରଦ୍ଧା ଭକ୍ତି କରୁଥିଲେ । ଠାକୁର ମଧ୍ୟ ଶିବନାଥଙ୍କୁ ବିଶେଷ ସ୍ନେହ କରୁଥିଲେ । କିନ୍ତୁ ବିଜୟ ସମାଜ ଛାଡ଼ିବା ପରେ ଶିବନାଥ ବିଷମ ସମସ୍ୟାରେ ପଡ଼ିଲେ । ଠାକୁରଙ୍କ ଉପଦେଶ ପ୍ରଭାବରେ ହିଁ ବିଜୟକୃଷ୍ଣଙ୍କର ଧର୍ମଭାବ ପରିବର୍ତ୍ତନ ଏବଂ ପରିଣାମରେ ସମାଜ-ପରିତ୍ୟାଗ, ଏକଥା ଅନୁଧାବନ କରି ସେ ସେବେଠାରୁ ଠାକୁରଙ୍କ ନିକଟକୁ ପୂର୍ବ ଭଳି ଯିବାଆସିବା କଲେ ନାହିଁ । ସ୍ୱାମୀ ବିବେକାନନ୍ଦ ଏହି ସମୟର କିଛି ପୂର୍ବରୁ ସାଧାରଣ-ସମାଜରେ ଯୋଗଦାନ କରିଥିଲେ ଏବଂ ଶିବନାଥପ୍ରମୁଖ ବ୍ରାହ୍ମଭକ୍ତଗଣଙ୍କର ବିଶେଷ ପ୍ରିୟ ହୋଇଥିଲେ । ଏହିପରି ସାଧାରଣ-ସମାଜରେ ଯୋଗଦାନ କରିଥିଲେ ମଧ୍ୟ ସ୍ୱାମୀଜୀ ବେଳେ ବେଳେ ଶ୍ରୀଯୁକ୍ତ କେଶବଙ୍କ ନିକଟକୁ ଓ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟକୁ ଗମନାଗମନ କରୁଥିଲେ । ସ୍ୱାମୀଜୀ କହୁଥିଲେ, ଆଚାର୍ଯ୍ୟ ଶିବନାଥଙ୍କଠାରୁ ସେ ଠାକୁରଙ୍କ ନିକଟକୁ ନ ଯିବାର କାରଣ ଜାଣିବାକୁ ଚାହିଁବାରୁ ସେ କହିଥିଲେ, ଦକ୍ଷିଣେଶ୍ୱରକୁ ସେ ବାରମ୍ବାର ଯାତାୟାତ କଲେ ତାଙ୍କ ଦେଖାଦେଖି ବ୍ରାହ୍ମସଂଘର ଅନ୍ୟମାନେ ମଧ୍ୟ ସେପରି କରିବେ ଏବଂ ଏହା ଫଳରେ ଉକ୍ତ ଦଳ ଭାଙ୍ଗିଯିବ । ସ୍ୱାମୀଜୀ କହୁଥିଲେ, ସେହିପରି ଧାରଣାର ବଶବର୍ତ୍ତୀ ହୋଇ ଶ୍ରୀଯୁକ୍ତ ଶିବନାଥ ଏହି ସମୟରେ ତାଙ୍କୁ ଦକ୍ଷିଣେଶ୍ୱର ଯିବାରୁ ବିରତ ହେବାକୁ ପରାମର୍ଶ ଦେଇଥିଲେ ଏବଂ କହିଥିଲେ, ଠାକୁରଙ୍କର ଭାବ ସମାଧି ପ୍ରଭୃତି ସ୍ନାୟୁଦୌର୍ବଲ୍ୟରୁ ଉପସ୍ଥିତ ହୋଇଅଛି !—ଅତ୍ୟଧିକ ଶାରୀରିକ କଠୋରତାର ଅନୁଷ୍ଠାନରେ ତାଙ୍କର ମସ୍ତିଷ୍କ

ବିକୃତି ହୋଇଅଛି ! ଠାକୁର ଏହି କଥା ଶୁଣି ଶିବନାଥଙ୍କୁ ଯାହା କହିଥିଲେ, ତାହା[୧] ଆମେ ଅନ୍ୟ ସ୍ଥାନରେ ଉଲ୍ଲେଖ କରିଅଛୁ ।

## ବ୍ରାହ୍ମସମାଜରେ ଠାକୁରଙ୍କର ପ୍ରଭାବ ସମ୍ବନ୍ଧରେ ଆଚାର୍ଯ୍ୟ ପ୍ରତାପଚନ୍ଦ୍ରଙ୍କର କଥା :

ସେ ଯାହାହେଉ, ଠାକୁରଙ୍କ ପ୍ରଭାବରେ ବ୍ରାହ୍ମସଂଘରେ ଯେଉଁ ସାଧନାନୁରାଗ ପ୍ରବିଷ୍ଟ ହୋଇଥିଲା, ତାହା ଫଳରେ 'ନବବିଧାନ' ଏବଂ 'ସାଧାରଣ' ଉଭୟ ସମାଜର ଧର୍ମପିପାସୁ ବ୍ୟକ୍ତିଗଣ ଈଶ୍ୱରଙ୍କୁ ଯେପରି ପ୍ରତ୍ୟକ୍ଷ କରିପାରିବେ, ଏପରି ଭାବରେ ଜୀବନ ଗଠନରେ ଅଗ୍ରସର ହୋଇଥିଲେ । ଆଚାର୍ଯ୍ୟ ପ୍ରତାପଚନ୍ଦ୍ର ମଜୁମଦାର ଥରେ ଦକ୍ଷିଣେଶ୍ୱର ଆସି ଠାକୁରଙ୍କର ସଙ୍ଗଲାଭ ପରେ, ସମାଜରେ ଆଧ୍ୟାତ୍ମିକ ଭାବ-ପରିଣତି କିପରି ଏବଂ କେତେଦୂର ହୋଇଅଛି ସେବିଷୟରେ ଆମମାନଙ୍କ ପ୍ରଶ୍ନର ଉତ୍ତରରେ କହିଥିଲେ, "ଏହାଙ୍କୁ ଦେଖିବାର ପୂର୍ବେ ଆମେମାନେ ଧର୍ମ କାହାକୁ କୁହାଯାଏ ତା କ'ଣ ବୁଝିଥିଲୁ ? —କେବଳ ଗୁଣ୍ଡାମି କରି ବୁଲୁଥିଲୁ । ଏହାଙ୍କର ଦର୍ଶନଲାଭ ପରେ ବୁଝିଲୁ ଯେ ଯଥାର୍ଥ ଧର୍ମଜୀବନ କାହାକୁ କୁହାଯାଏ ।" ଶ୍ରୀଯୁକ୍ତ ପ୍ରତାପଚନ୍ଦ୍ରଙ୍କ ସହିତ ସେଦିନ ଆଚାର୍ଯ୍ୟ ଚିରଞ୍ଜୀବ ଶର୍ମା (ତ୍ରୈଲୋକ୍ୟନାଥ ସାନ୍ୟାଲ) ଉପସ୍ଥିତ ଥିଲେ ।

## ସାଧାରଣ ବ୍ରାହ୍ମସମାଜରେ ଠାକୁରଙ୍କର ପ୍ରଭାବ :

ନବବିଧାନ-ସମାଜରେ ଠାକୁରଙ୍କର ପ୍ରଭାବ ବିଶେଷ ପରିଲକ୍ଷିତ ହେଲେ ମଧ୍ୟ ବିଜୟକୃଷ୍ଣ ଯେତେଦିନ ଆଚାର୍ଯ୍ୟ-ପଦବୀରେ ପ୍ରତିଷ୍ଠିତ ଥିଲେ ସେତେଦିନ ପର୍ଯ୍ୟନ୍ତ ସାଧାରଣ ସମାଜରେ ମଧ୍ୟ ଏହା କିଛି କମ୍ ଦେଖାଯାଉ ନ ଥିଲା । ବିଜୟଙ୍କ ସହିତ ଅନେକଗୁଡ଼ିଏ ଧର୍ମପିପାସୁଙ୍କ ସମାଜ ପରିତ୍ୟାଗ ପରଠାରୁ ଉକ୍ତ ସମାଜରେ ଏହି ପ୍ରଭାବ ହ୍ରାସ ପାଇଥିଲା ଏବଂ ଏହା ସହିତ ତାହା ଆଧ୍ୟାତ୍ମିକତା ହରାଇ ସମାଜ-ସଂସ୍କାର, ଦେଶ-ହିତୈଷଣା ପ୍ରଭୃତି ଅନୁଷ୍ଠାନରେ ହିଁ ନିଜକୁ ପ୍ରଧାନତଃ ନିଯୁକ୍ତ କରିଥିଲା । ହ୍ରାସ ହେଲେ ମଧ୍ୟ ଉକ୍ତ ପ୍ରଭାବ ଯେ ସମ୍ପୂର୍ଣ୍ଣ ଲୁପ୍ତ ହୋଇ ନ ଥିଲା, ତାହାର ନିଦର୍ଶନ ସମାଜସ୍ଥ ବ୍ୟକ୍ତିମାନଙ୍କଠାରେ କାହା କାହାର, ଯୋଗାଭ୍ୟାସରେ, ବେଦାନ୍ତ-ଚର୍ଚ୍ଚାରେ ଏବଂ ପ୍ରେତତତ୍ତ୍ୱାଦିର (Spiritualism) ଅନୁଶୀଳନରେ ଦେଖିବାକୁ ମିଳେ । ଉଚ୍ଚଶ୍ରେଣୀର କର୍ତ୍ତାଭଜା-ସମ୍ପ୍ରଦାୟର ବୈଦିକ ମତର ଅନୁଶୀଳନ ମଧ୍ୟ ଯେ ସାଧାରଣସମାଜସ୍ଥ କୌଣସି କୌଣସି ବ୍ୟକ୍ତି କରୁଥିଲେ, ଏବଂ ଧ୍ୟାନାଦି ସାହାଯ୍ୟରେ ଶାରୀରିକ ବ୍ୟାଧି ନିବାରଣର ଚେଷ୍ଟା କରୁଥିଲେ, ଏବିଷୟ ମଧ୍ୟ ଆମକୁ ଜଣାଥିଲା ।

---

୧. ଗୁରୁଭାବ ଉତ୍ତରାର୍ଦ୍ଧ, ଦ୍ୱିତୀୟ ଅଧ୍ୟାୟ ।

**ବ୍ରାହ୍ମସଙ୍ଗୀତ ଉପରେ ଠାକୁରଙ୍କର ପ୍ରଭାବ :**

ନବବିଧାନ-ସମାଜର ଆଚାର୍ଯ୍ୟ ଚିରଞ୍ଜୀବ ଶର୍ମା ବ୍ରାହ୍ମସଙ୍ଗୀତର ବିଶେଷ ପୁଷ୍ଟିସାଧନ କରିଥିଲେ । ଅନୁସନ୍ଧାନରୁ ଜଣାଯାଇଥିଲା, ଠାକୁରଙ୍କର ନାନା ପ୍ରକାର ଦର୍ଶନ, ଭାବ ଓ ସମାଧି ପ୍ରଭୃତି ସହିତ ପରିଚିତ ହୋଇ ହିଁ ସେ ତାଙ୍କର ଶ୍ରେଷ୍ଠ ଭାବୋଦ୍ଦୀପକ ପଦଗୁଡ଼ିକ ରଚନାରେ ସମର୍ଥ ହୋଇଥିଲେ । ଏପରି କେତୋଟି ପଦର[୧] ପ୍ରଥମ ଅଂଶ ମାତ୍ର ନିମ୍ନରେ ଉଲ୍ଲେଖ କରୁଅଛୁ—

(୧) ନିବିଡ଼ ଅନ୍ଧାରରେ ମା ତୋର ଚମକେ ଅରୂପ ରାଶି ।
(୨) ଗଭୀର ସମାଧି-ସିନ୍ଧୁ ଅନନ୍ତ ଅପାର
(୩) ଚିଦାକାଶେ ହେଲା ପୂର୍ଣ୍ଣ ପ୍ରେମ-ଚନ୍ଦ୍ରୋଦୟରେ ।
(୪) ଚିଦାନନ୍ଦ-ସିନ୍ଧୁନୀରେ ପ୍ରେମାନନ୍ଦ ଲହରୀ ।
(୫) ମୋତେ ଦେମା ପାଗଳ କରି

ସୁକବି ଆଚାର୍ଯ୍ୟ ଚିରଞ୍ଜୀବ ଶର୍ମା ଏପରି ପଦସମୂହ ରଚନା କରି ସମଗ୍ର ବଙ୍ଗବାସୀଙ୍କର ଓ ଦେଶର ସାଧକଶ୍ରେଣୀର କୃତଜ୍ଞତାଭାଜନ ହୋଇଛନ୍ତି—ଏହା ନିଃସନ୍ଦେହ । କିନ୍ତୁ ଠାକୁରଙ୍କର ଭାବସମାଧି ଦେଖି ହିଁ ଯେ ସେ ଏହି ସମସ୍ତ ପଦ୍ୟ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ, ଏଥିରେ ମଧ ସଂଶୟ ନାହିଁ । ଆଚାର୍ଯ୍ୟ ଚିରଞ୍ଜୀବ ସୁକଣ୍ଠ ଥିଲେ । ତାଙ୍କର ସଙ୍ଗୀତ ଶ୍ରବଣରେ ଠାକୁର ଅନେକ ଥର ସମାଧିସ୍ଥ ହେବାର ଆମେ ପ୍ରତ୍ୟକ୍ଷ କରିଅଛୁ ।

**ବ୍ରାହ୍ମଧର୍ମ ଈଶ୍ୱରଲାଭର ଅନ୍ୟତମ ପଥ ବୋଲି ଠାକୁରଙ୍କର ଘୋଷଣା :**

ଏହିପରି ଭାବରେ ବ୍ରାହ୍ମସମାଜ ସେହି ସମୟରେ ଠାକୁରଙ୍କର ଅଦୃଷ୍ଟପୂର୍ବ ଆଧାତ୍ମିକ ପ୍ରଭାବରେ ଅନୁପ୍ରାଣିତ ହୋଇଥିଲା । ଈଶ୍ୱରଙ୍କର ନିରାକାର ସ୍ୱରୂପର ଉପାସନା ଉକ୍ତ ସମାଜରେ ଯେଉଁ ଭାବରେ ପ୍ରଚାରିତ ହୋଇଥିଲା, ସେଥିରେ ଠାକୁର ବେଳେ ବେଳେ ଏହା 'କଞ୍ଚା ନିରାକାର ଭାବ' ବୋଲି କହିଥିଲେ ମଧ[୨] ଯଥାର୍ଥ ବିଶ୍ୱାସର ସହିତ ସେହି ଭାବରେ ଉପାସନା କଲେ ସାଧକ ଈଶ୍ୱରଲାଭରେ ସମର୍ଥ ହେବେ—ଏକଥା ତାଙ୍କ ମୁହଁରୁ ଆମେ ବାରମ୍ବାର ଶ୍ରବଣ କରିଅଛୁ । କୀର୍ତ୍ତନ ପରେ ଈଶ୍ୱର ଏବଂ ତାଙ୍କର ସମସ୍ତ ସମ୍ପ୍ରଦାୟର ଭକ୍ତଗଣଙ୍କୁ ପ୍ରଣାମ କରିବା ସମୟରେ ଠାକୁର 'ଆଧୁନିକ ବ୍ରହ୍ମଜ୍ଞାନୀମାନଙ୍କୁ ପ୍ରଣାମ' କହି ବ୍ରାହ୍ମମଣ୍ଡଳୀଙ୍କୁ ପ୍ରଣାମ କରିବାକୁ କଦାପି ଭୁଲୁ ନ ଥିଲେ । ଏଥିରୁ ବୁଝାଯାଏ, ଭଗବତ୍ ଇଚ୍ଛାରେ ଈଶ୍ୱରଲାଭ ନିମିତ୍ତ ଜଗତରେ ପ୍ରଚାରିତ ଅନ୍ୟ ସମସ୍ତ ମତ ବା ପଥ ସଦୃଶ ବ୍ରାହ୍ମଧର୍ମକୁ ମଧ ସେ ଏକ ପଥ ବୋଲି ସତରେ ବିଶ୍ୱାସ କରୁଥିଲେ ।

---

୧. ନବବିଧାନ ସମାଜର ସଙ୍ଗୀତ-ପୁସ୍ତକରେ ପାଠକ ପଦଗୁଡ଼ିକ ଦେଖିପାରିବେ ।
୨. ଗୁରୁଭାବ, ପୂର୍ବାର୍ଦ୍ଧ, ଦ୍ୱିତୀୟ ଅଧ୍ୟାୟ ।

ତେବେ ପାଶ୍ଚାତ୍ୟ ଭାବରୁ ବିମୁକ୍ତ ହୋଇ ବ୍ରାହ୍ମମଣ୍ଡଳୀ ଯେଉଁଥିରେ ଯଥାର୍ଥ ଆଧ୍ୟାତ୍ମିକ ମାର୍ଗରେ ପ୍ରତିଷ୍ଠିତ ହୋଇପାରିବେ, ସେବିଷୟରେ ତାଙ୍କର ବିଶେଷ ଆଗ୍ରହ ଓ ଚେଷ୍ଟା ଥିଲା; ଏବଂ ସମାଜସଂସ୍କାର ଆଦି କାର୍ଯ୍ୟଗୁଡ଼ିକ ପ୍ରଶଂସନୀୟ ଓ ଅବଶ୍ୟକର୍ତ୍ତବ୍ୟ ହେଲେ ମଧ୍ୟ ସେହି ସମସ୍ତ କାର୍ଯ୍ୟ ଯେପରି ତାଙ୍କ ସମାଜରେ ମନୁଷ୍ୟଜୀବନର ଏକମାତ୍ର ଉଦ୍ଦେଶ୍ୟ ବୋଲି ପରିଗଣିତ ହୋଇ ଈଶ୍ୱରଲାଭ ନିମିତ୍ତ ସାଧନଭଜନାଦି ହେୟ ବିବେଚିତ ନ ହୁଏ, ସେବିଷୟରେ ସେ ସେମାନଙ୍କୁ ବିଶେଷ ଭାବରେ ସତର୍କ କରିଦେଉଥିଲେ । ବ୍ରାହ୍ମସମାଜ ହିଁ ଠାକୁରଙ୍କର ଅଦୃଷ୍ଟପୂର୍ବ ଆଧ୍ୟାତ୍ମିକ ଜୀବନର ପ୍ରଥମ ଅନୁଶୀଳନ କରି କଲିକତାର ଜନସାଧାରଣଙ୍କର ଚିତ୍ତ ଦକ୍ଷିଣେଶ୍ୱରକୁ ଆକୃଷ୍ଟ କରିଥିଲା । ଠାକୁରଙ୍କର ଶ୍ରୀପଦପ୍ରାନ୍ତରେ ବସି ଯେଉଁମାନେ ଆଧ୍ୟାତ୍ମିକ ଶକ୍ତି ଓ ଶାନ୍ତି ଲାଭରେ ଧନ୍ୟ ହୋଇଥିଲେ, ସେମାନଙ୍କର ପ୍ରତ୍ୟେକେ ସେଥିପାଇଁ 'ନବବିଧାନ' ଓ 'ସାଧାରଣ' ଉଭୟ ବ୍ରାହ୍ମସମାଜ ନିକଟରେ ହିଁ ଚିରଋଣୀ । ବର୍ତ୍ତମାନ ଲେଖକ ପୁଣି ସେହି ଉଭୟ ସମାଜ ନିକଟରେ ଅଧିକତର ଋଣୀ । କାରଣ, ଉଚ୍ଚ ଆଦର୍ଶ ସମ୍ମୁଖରେ ଧାରଣ କରି ଯୌବନର ପ୍ରାରମ୍ଭରେ ଆଧ୍ୟାତ୍ମିକଭାବରେ ଚରିତ୍ରଗଠନ କରିବାକୁ ତାହାଙ୍କୁ ଏହି ସମାଜଦ୍ୱୟ ହିଁ ସାହାଯ୍ୟ କରିଥିଲା । ଅତଏବ ବ୍ରହ୍ମ, ବ୍ରାହ୍ମଧର୍ମ ଏବଂ ବ୍ରାହ୍ମମଣ୍ଡଳୀ ବା ସମାଜରୂପୀ ଏହି ତ୍ରି–ରତ୍ନଙ୍କୁ ସ୍ୱରୂପତଃ ଏକ ଜ୍ଞାନରେ ଶ୍ରଦ୍ଧା ଓ କୃତଜ୍ଞତା ସହିତ ଆମେ ପୁନଃପୁନଃ ପ୍ରଣାମ କରୁଅଛୁ ଏବଂ ବ୍ରାହ୍ମମଣ୍ଡଳୀ ସହିତ ମିଳିତ ହୋଇ ଠାକୁରଙ୍କର ଆନନ୍ଦ କରିବା ସମ୍ବନ୍ଧରେ ଯେଉଁ ଦୁଇଟି ବିଶେଷ ଚିତ୍ର ସ୍ୱଚକ୍ଷୁରେ ଦର୍ଶନ କରିବାର ସୁଯୋଗ ଲାଭ କରିଥିଲି, ତାହା ହିଁ ଏବେ ପାଠକଙ୍କୁ ଉପହାର ଦେଉଛି ।

# ପ୍ରଥମ ଅଧ୍ୟାୟ—ଦ୍ୱିତୀୟ ପାଦ

## ମଣିମୋହନ ମଲ୍ଲିକଙ୍କ ଘରେ ବ୍ରାହ୍ମୋତ୍ସବ

### ଘଟଣାର ସମୟ–ନିର୍ଣ୍ଣୟ :

ଆମମାନଙ୍କର ବେଶ୍ ମନେଅଛି ଯେ, ସେହି ସମୟ ହେମନ୍ତ ଋତୁ ଥିଲା । ଗ୍ରୀଷ୍ମସନ୍ତପ୍ତା ପ୍ରକୃତି ସେତେବେଳେ ବର୍ଷାର ସ୍ନାନସୁଖରେ ପରିତୃପ୍ତା ହୋଇ ଶାରଦୀୟ ଅଙ୍ଗରାଗ ଧାରଣପୂର୍ବକ ଶୀତର ଉନ୍ମେଷ ଅନୁଭବ କରୁଥିଲା ଏବଂ ନିଜ ଅଙ୍ଗରେ ସଯତ୍ନରେ ସ୍ନିଗ୍ଧ ଶୀତଳ ବସନ ଟାଣି ଦେଉଥିଲା । ହେମନ୍ତର ତିନିଭାଗ ପ୍ରାୟ ଅତୀତ ହୋଇଥିଲା । ଏହି ସମୟର ଦିନକର ଘଟଣା ଆମେ ଏଠାରେ ବିବୃତ କରୁଅଛୁ । ଠାକୁରଙ୍କ ପରମଭକ୍ତ ଆମମାନଙ୍କର ଜନୈକ ଶ୍ରଦ୍ଧାସ୍ପଦ ବନ୍ଧୁ[୧] ସେଦିନ ଘଟଣା ସ୍ଥଳରେ ଉପସ୍ଥିତ ଥିଲେ ଏବଂ ତାଙ୍କର ଅଭ୍ୟାସବଶତଃ ପାଞ୍ଜିରେ ଏହି ତାରିଖ ଚିହ୍ନିତ କରି ସେହି କଥା ଲେଖି ରଖିଥିଲେ । ସେଥିରୁ ଜାଣୁଛୁ, ଘଟଣାଟି ସନ ୧୨୯୦ ସାଲର ୧୧ ମାର୍ଗଶୀର, ସୋମବାର, ଇଂରାଜୀ ୧୮୮୩ ମସିହା ୨୬ ନଭେମ୍ବରରେ ଘଟିଥିଲା ।

### ବୈକୁଣ୍ଠନାଥ ସାନ୍ୟାଲଙ୍କ ସହିତ ପରିଚୟ :

ସେତେବେଳେ କଲିକତାର 'ସେଣ୍ଟ ଜେଭିୟର୍ସ' କଲେଜରେ ଆମେ ପଢୁଥିଲୁ ଏବଂ ଏହାପୂର୍ବରୁ ୨/୩ ଥର ମାତ୍ର ଦକ୍ଷିଣେଶ୍ୱରରେ ଠାକୁରଙ୍କର ପୁଣ୍ୟ ଦର୍ଶନଲାଭ କରିଥିଲୁ । କୌଣସି କାରଣରୁ କଲେଜ ବନ୍ଦ ଥିବାରୁ ଆମେ[୨] ସେଦିନ ଅପରାହ୍ଣରେ ଠାକୁରଙ୍କ ନିକଟରେ ପହଞ୍ଚିବୁ ବୋଲି ପରାମର୍ଶ କରି ସ୍ଥିର କଲୁ । ଆମର ସ୍ମରଣ ଅଛି, ନୌକାରେ ଦକ୍ଷିଣେଶ୍ୱର ଯିବା ସମୟରେ ଆରୋହୀମାନଙ୍କ ମଧ୍ୟରେ ଥିବା ଜଣେ ବ୍ୟକ୍ତି ଆମପରି ଠାକୁରଙ୍କ ନିକଟକୁ ଯାଉଛନ୍ତି ଶୁଣି ତାଙ୍କ ସହିତ ଆଳାପ କରି ଜାଣିଲୁ ତାଙ୍କ ନାମ ବୈକୁଣ୍ଠନାଥ ସାନ୍ୟାଲ । ସେ ମଧ୍ୟ ଆମପରି ଅଳ୍ପଦିନ ହେବ ଠାକୁରଙ୍କର ଦର୍ଶନଲାଭରେ ଧନ୍ୟ ହୋଇଛନ୍ତି । ଏକଥା ମଧ୍ୟ ସ୍ମରଣ ହୁଏ, ନୌକାରେ ଅନ୍ୟଜଣେ ଆରୋହୀ ଆମ ମୁହଁରୁ ଠାକୁରଙ୍କ ନାମ ଶୁଣି ତାଙ୍କ ପ୍ରତି ଶ୍ଳେଷପୂର୍ଣ୍ଣ ବାକ୍ୟ ପ୍ରୟୋଗ କରିବାରୁ ବୈକୁଣ୍ଠନାଥ ଅତ୍ୟନ୍ତ ଘୃଣାର ସହିତ ତାଙ୍କ କଥାର ଉତ୍ତର ଦେଇ ତାଙ୍କୁ ନିରୁତ୍ତର କରାଇଥିଲେ । ଯେତେବେଳେ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲୁ ସେତେବେଳେ ଦିନ ୨ଟା ବା ୨.୩୦ଟା ହେବ ।

---

୧. ବାଗବଜାର ନିବାସୀ ଶ୍ରୀଯୁକ୍ତ ବଳରାମ ବସୁ ।

୨. କୁମିଲ୍ଲାନିବାସୀ ଶ୍ରୀଯୁକ୍ତ ବରଦାସୁନ୍ଦର ପାଲ ଏବଂ ଚବିଶ–ପରଗଣା ଅନ୍ତର୍ଗତ ବେଲଘରିଆ ନିବାସୀ ଶ୍ରୀଯୁକ୍ତ ହରିପ୍ରସନ୍ନ ଚଟ୍ଟୋପାଧ୍ୟାୟ (ସ୍ୱାମୀ ବିଜ୍ଞାନାନନ୍ଦ) ।

ଠାକୁରଙ୍କ ଘରେ ପ୍ରବେଶ କରି ତାଙ୍କ ପଦପ୍ରାନ୍ତରେ ପ୍ରଣାମ କରିବା ମାତ୍ରେ ସେ କହିଲେ, ''ଯାହା ହେଉ, ତୁମେମାନେ ଆଜି ଆସିଲ; ଆଉ କିଛି ସମୟ ପରେ ଆସିଥିଲେ ଦେଖାହୋଇ ନ ଥାନ୍ତା; ଆଜି କଲିକତା ଯାଉଛି, ଗାଡ଼ି ଆଣିବାକୁ ଲୋକ ଯାଇଛି; ସେଠାରେ ଉତ୍ସବ, ବ୍ରାହ୍ମମାନଙ୍କର ଉତ୍ସବ ହେବ । ଯାହାହେଉ, ଦେଖା ହେଲା, ଏହା ହିଁ ଭଲ, ବସ । ଦେଖା ନ ହୋଇ ଫେରି ଯାଇଥିଲେ ମନରେ କଷ୍ଟ ହୋଇଥାଆନ୍ତା ।''

**ବାବୁରାମଙ୍କ ସହିତ ପ୍ରଥମ ଆଳାପ :**

ଘରର ଚଟାଣରେ ଗୋଟିଏ ଶପ ଉପରେ ଆମେ ବସିଲୁ । ପରେ ପଚାରିଲୁ, ''ମହାଶୟ, ଆପଣ ଯେଉଁଠାକୁ ଯାଉଛନ୍ତି, ସେଠାକୁ ଆମେ ଗଲେ କ'ଣ ଆମକୁ ପ୍ରବେଶ କରିବାକୁ ଦେବେ ନାହିଁ ?'' ଠାକୁର କହିଲେ, ''ତାହା କାହିଁକି ? ଇଚ୍ଛା ହେଲେ ତୁମେମାନେ ଅନାୟାସରେ ଯାଇପାର—ସିନ୍ଦୁରିଆପଟି ମଣି ମଲ୍ଲିକଙ୍କ ଘର ।'' ଏତିକିବେଳେ ଜଣେ ନାତିକୃଶ ଗୌରବର୍ଣ୍ଣ ରକ୍ତବସ୍ତ୍ର-ପରିହିତଯୁବକ ସେହି ଘରେ ପ୍ରବେଶ କରୁଛନ୍ତି ଦେଖି ଠାକୁର ତାଙ୍କୁ କହିଲେ, ''ଆରେ, ଏମାନଙ୍କୁ ମଣି ମଲ୍ଲିକ୍‌ଙ୍କର ଘରର ନମ୍ବର କହି ଦେ ତ ।'' ଯୁବକ ବିନୀତଭାବରେ ଉତ୍ତର ଦେଲେ, ''୮୧ ନମ୍ବର ଚିତ୍‌ପୁର ରୋଡ୍, ସିନ୍ଦୁରିଆପଟି ।'' ଯୁବକର ବିନୀତ ସ୍ୱଭାବ ଓ ସାତ୍ତ୍ୱିକ ପ୍ରକୃତି ଦେଖି ଆମମାନଙ୍କର ମନେହେଲା ସେ ଠାକୁର ମନ୍ଦିର କୌଣସି ଭଟ୍ଟାଚାର୍ଯ୍ୟଙ୍କର ପୁତ୍ର ହୋଇଥିବେ । କିନ୍ତୁ ମାସେ ଦୁଇମାସ ପରେ ତାଙ୍କୁ ବିଶ୍ୱବିଦ୍ୟାଳୟରୁ ପରୀକ୍ଷା ଦେଇ ବାହାରିବାର ଦେଖି ଆମେ ତାଙ୍କ ସହିତ ଆଳାପ କରି ଜାଣିଲୁ, ଆମମାନଙ୍କର ଧାରଣା ଭୁଲ୍ ଥିଲା । ଜାଣିଲୁ ତାଙ୍କ ନାଁ ବାବୁରାମ; ଘର ତାରକେଶ୍ୱର ନିକଟସ୍ଥ ଆଁଟପୁର; କଲିକତାର କମ୍ବୁଲିୟାଟୋଲାରେ ଭଡ଼ାଘରେ ଅଛନ୍ତି ଏବଂ ବେଳେ ବେଳେ ଠାକୁରଙ୍କ ନିକଟକୁ ଯାଇ ରହନ୍ତି । କହିବା ବାହୁଲ୍ୟ, ଏହି ବ୍ୟକ୍ତି ଏବେ ସ୍ୱାମୀ ପ୍ରେମାନନ୍ଦ ନାମରେ ଶ୍ରୀରାମକୃଷ୍ଣ-ସଂଘରେ ସୁପରିଚିତ ।

ଅଳ୍ପ ସମୟ ପରେ ଗାଡ଼ି ଆସିଲା ଏବଂ ଠାକୁର ବାବୁରାମଙ୍କୁ ନିଜର ଗାମୁଛା, ମଶଲା ବଟୁଆ ଓ ବସ୍ତ୍ରାଦି ନେବାକୁ କହି ଶ୍ରୀଶ୍ରୀଜଗଦମ୍ବାଙ୍କୁ ପ୍ରଣାମପୂର୍ବକ ଗାଡ଼ିରେ ଆରୋହଣ କଲେ । ବାବୁରାମ ପୂର୍ବୋକ୍ତ ଜିନିଷ ସବୁ ନେଇ ଗାଡ଼ିର ଅନ୍ୟ ଦିଗରେ ଉପବିଷ୍ଟ ହେଲେ । ଆଉ ଜଣେ ବ୍ୟକ୍ତି ମଧ୍ୟ ସେଦିନ ଠାକୁରଙ୍କ ସହିତ କଲିକତା ଯାଇଥିଲେ । ପରେ ଜାଣିଲୁ ତାଙ୍କ ନାମ ପ୍ରତାପଚନ୍ଦ୍ର ହାଜରା ।

ଠାକୁର ଚାଲିଯିବା ପରେ ହିଁ ଆମେ ସୌଭାଗ୍ୟ କ୍ରମେ ଗୋଟିଏ ନୌକା ପାଇ କଲିକତାର ବଡ଼ବଜାର ଘାଟରେ ଓହ୍ଲାଇଲୁ ଏବଂ ଉତ୍ସବ ସନ୍ଧ୍ୟାସମୟରେ ହେବ ବୋଲି ଭାବି ଜଣେ ବନ୍ଧୁଙ୍କ ଘରେ କିଛି ସମୟ ଅପେକ୍ଷା କଲୁ । ନବପରିଚିତ

ବୈକୁଣ୍ଠନାଥ ଯଥା ସମୟରେ ଉତ୍ସବ ସ୍ଥାନରେ ଦେଖା ହେବ କହି କିଛି କାର୍ଯ୍ୟ ଥିବାରୁ ଅନ୍ୟସ୍ଥାନକୁ ଚାଲିଗଲେ ।

ପ୍ରାୟ ଦିନ ଚାରିଟା ସମୟରେ ଆମେ ଅନ୍ବେଷଣ କରି ମଣି ବାବୁଙ୍କ ଘରେ ପହଞ୍ଚିଲୁ । ଠାକୁରଙ୍କର ଆସିବା କଥା ପଚାରିବାରୁ ଜଣେ ଆମକୁ ଉପରେ ବୈଠକଖାନାକୁ ଯିବା ପାଇଁ ବାଟ ଦେଖାଇ ଦେଲେ । ଆମେ ସେଠାରେ ଉପସ୍ଥିତ ହୋଇ ଦେଖିଲୁ ଘରଟି ଉତ୍ସବ ନିମିତ୍ତ ପତ୍ରପୁଷ୍ପରେ ସଜ୍ଜିତ ହୋଇଅଛି ଏବଂ କେତୋଜଣ ଭକ୍ତ ପରସ୍ପର କଥାବାର୍ତ୍ତା କରୁଛନ୍ତି । ପଚାରି ବୁଝିଲୁ ମଧ୍ୟାହ୍ନରେ ଉପାସନା ଓ ସଙ୍ଗୀତ ଇତ୍ୟାଦି ହୋଇଯାଇଛି, ପୁନରାୟ ସନ୍ଧ୍ୟାରେ ଉପାସନା ଓ କୀର୍ତ୍ତନ ହେବ । ଏବେ ଠାକୁରଙ୍କୁ ସ୍ତ୍ରୀ-ଭକ୍ତମାନେ ଅନୁରୋଧ କରି ଭିତର ମହଲକୁ ନେଇଯାଇଛନ୍ତି ।

### ମଣି ମଲ୍ଲିକଙ୍କର ବୈଠକଖାନାରେ ଅପୂର୍ବ କୀର୍ତ୍ତନ ଓ ଠାକୁରଙ୍କର ଅପୂର୍ବ ନୃତ୍ୟ :

ଉପାସନା ଆଦି ବିଳମ୍ବ ହେବ ଶୁଣି ଆମେ କିଛିସମୟ ପାଇ ଅନ୍ୟ ଆଡକୁ ଗଲୁ । ପରେ ସନ୍ଧ୍ୟା ସମୟରେ ପୁନରାୟ ଉତ୍ସବସ୍ଥଳକୁ ଆସିଲୁ । ଘର ସାମନା ରାସ୍ତାରେ ପହଞ୍ଚିବା ମାତ୍ରେ ମଧୁର ସଙ୍ଗୀତ ଓ ମୃଦଙ୍ଗର ଧ୍ୱନି ଆମମାନଙ୍କର କର୍ଣ୍ଣଗୋଚର ହେଲା । କୀର୍ତ୍ତନ ଆରମ୍ଭ ହେଲା ବୁଝିପାରି ଆମେମାନେ ଦ୍ରୁତପଦରେ ବୈଠକଖାନାରେ ପହଞ୍ଚି ଯାହା ଦେଖିଲୁ ତାହା ଅବର୍ଣ୍ଣନୀୟ । ଘର ଭିତରେ ଓ ବାହାରେ ଲୋକଙ୍କ ଭିଡ଼ ଜମିଯାଇଛି । ପ୍ରତ୍ୟେକ ଦ୍ୱାରର ସମ୍ମୁଖରେ ଏବଂ ପଶ୍ଚିମପଟ ଛାତରେ ଏତେ ଲୋକ ଠିଆହୋଇଛନ୍ତି ଯେ, ସେହି ଭିଡ଼ ଠେଲି ତା' ଭିତରକୁ ପଶିବା ଏକାନ୍ତ ଅସାଧ । ସମସ୍ତେ ଉଦ୍‌ଗ୍ରୀବ ହୋଇ ଗୃହମଧରେ ଭକ୍ତିପୂର୍ଣ୍ଣ ସ୍ଥିରନେତ୍ରରେ ଦୃଷ୍ଟିପାତ କରି ରହିଛନ୍ତି; ପାଖରେ କିଏ ଅଛି କିଏ ନାହିଁ ସେଆଡ଼କୁ କାହାର ସଂଜ୍ଞା ନାହିଁ । ସମ୍ମୁଖ ଦ୍ୱାର ଦେଇ ଗୃହମଧ୍ୟରେ ପ୍ରବେଶ କରିବା ଅସମ୍ଭବ ବୁଝି ଆମେ ପଶ୍ଚିମର ଛାତ ଦେଇ ଘୁରି ବୈଠକଖାନାର ଉତ୍ତରର ଏକ ଦ୍ୱାରପାର୍ଶ୍ୱରେ ଉପସ୍ଥିତ ହେଲୁ । ଏଠାରେ ଲୋକ କିଛି କମ୍ ଥିବାରୁ କୌଣସି ମତେ ଘରଭିତରେ ମୁଣ୍ଡ ଗଳାଇ ଦେଖିଲୁ—ଅପୂର୍ବ ଦୃଶ୍ୟ ! ଗୃହ ମଧରେ ସ୍ୱର୍ଗୀୟ ଆନନ୍ଦର ବିଶାଳ ତରଙ୍ଗ ଖରସ୍ରୋତରେ ପ୍ରବାହିତ ହେଉଅଛି । ସମସ୍ତେ ଏକାବେଳକେ ଆତ୍ମହରା ହୋଇ କୀର୍ତ୍ତନ ସହିତ ହସୁଛନ୍ତି, କାନ୍ଦୁଛନ୍ତି, ଉଦ୍ଦାମ ନୃତ୍ୟ କରୁଛନ୍ତି; ଭୂମିରେ କଚାଡ଼ି ହୋଇ ପଡୁଛନ୍ତି, ବିହ୍ୱଳ ହୋଇ ଉନ୍ମତ୍ତ ପରି ଆଚରଣ କରୁଛନ୍ତି; ଏବଂ ଠାକୁର ସେହି ଉନ୍ମତ୍ତ ଦଳର ମଧଭାଗରେ ନୃତ୍ୟ କରୁ କରୁ କେତେବେଳେ ଦ୍ରୁତପଦରେ ତାଳେ ତାଳେ ସମ୍ମୁଖକୁ ଅଗ୍ରସର ହେଉଛନ୍ତି, ପୁଣି କେତେବେଳେ ସେପରି ପଶ୍ଚାତକୁ ଯାଉଛନ୍ତି ଏବଂ ଏପରି ଯେଉଁ ପାଖକୁ ସେ

ଯାଉଛନ୍ତି, ସେଦିଗରେ ଲୋକମାନେ ମନ୍ତ୍ରମୁଗ୍ଧବତ୍ ହୋଇ ତାଙ୍କର ଅନାୟାସ-ଗମନାଗମନ ପାଇଁ ସ୍ଥାନ ଛାଡ଼ି ଦେଉଛନ୍ତି । ତାଙ୍କର ହାସ୍ୟପୂର୍ଣ୍ଣ ଆନନରେ ଅଦୃଷ୍ଟପୂର୍ବ ଦିବ୍ୟଜ୍ୟୋତି କ୍ରୀଡ଼ା କରୁଅଛି ଏବଂ ପ୍ରତି ଅଙ୍ଗରେ ଅପୂର୍ବ କୋମଳତା ଏବଂ ମାଧୁର୍ଯ୍ୟର ସହିତ ସିଂହ ସଦୃଶ ବଳର ଯୁଗପତ୍ ଆବିର୍ଭାବ ହୋଇଅଛି । ତାହା ଏକ ଅପୂର୍ବ ନୃତ୍ୟ — ସେଥିରେ ଆଡ଼ମ୍ବର ନାହିଁ, ଲମ୍ଫନ ନାହିଁ, କଷ୍ଟସାଧ୍ୟ ଅସ୍ୱାଭାବିକ ଅଙ୍ଗବିକୃତି ବା ଅଙ୍ଗ-ସଂଯମରାହିତ୍ୟ ନାହିଁ ; ଅଛି କେବଳ ଆନନ୍ଦର ଅଧୀରତାରେ ମାଧୁର୍ଯ୍ୟ ଓ ଉଦ୍ୟମର ସମ୍ମିଳନରେ ପ୍ରତି ଅଙ୍ଗର ସ୍ୱାଭାବିକ ସଂସ୍ଥିତି ଓ ଗତିବିଧି ! ନିର୍ମଳ ସଲିଳରାଶି ପ୍ରାପ୍ତ ହୋଇ ମତ୍ସ୍ୟ ଯେପରି କେବେ ଧୀରଭାବରେ ଏବଂ କେତେବେଳେ ଦ୍ରୁତ ସନ୍ତରଣ ଦ୍ୱାରା ଚତୁର୍ଦ୍ଦିଗରେ ଧାବିତ ହୋଇ ଆନନ୍ଦ ପ୍ରକାଶ କରିଥାଏ, ଠାକୁରଙ୍କର ଏହି ଅପୂର୍ବ ନୃତ୍ୟ ମଧ ଠିକ୍ ସେହିପରି । ସେ ଯେପରି ଆନନ୍ଦସାଗର ବ୍ରହ୍ମସ୍ୱରୂପରେ ନିମଗ୍ନ ହୋଇ ନିଜ ଅନ୍ତରର ଭାବ ବାହାରର ଅଙ୍ଗସଂସ୍ଥାନରେ ପ୍ରକାଶ କରୁଥିଲେ । ସେହିଭାବରେ ନୃତ୍ୟ କରୁ କରୁ ସେ କେତେବେଳେ ବା ସଂଜ୍ଞାଶୂନ୍ୟ ହୋଇପଡୁଥିଲେ; କେତେବେଳେ ବା ତାଙ୍କର ପରିଧେୟ ବସନ ସ୍ଖଳିତ ହୋଇଯାଉଥିଲା ଏବଂ ଅନ୍ୟମାନେ ତାହା ତାଙ୍କ କଟିରେ ଦୃଢ଼ବଦ୍ଧ କରିଦେଉଥିଲେ; ପୁଣି କାହାକୁ କେତେବେଳେ ଭାବାବେଶରେ ସଂଜ୍ଞାଶୂନ୍ୟ ହେବା ଦେଖି ସେ ତାଙ୍କର ବକ୍ଷ ସ୍ପର୍ଶ କରି ତାଙ୍କୁ ପୁନରାୟ ସଚେତନ କରୁଥିଲେ । ବୋଧ ହେଉଥିଲା ଯେପରି ତାଙ୍କୁ ଅବଲମ୍ବନ କରି ଏକ ଦିବ୍ୟୋଜ୍ଜ୍ୱଳ ଆନନ୍ଦଧାରା ଚତୁର୍ଦ୍ଦିଗରେ ପ୍ରସାରିତ ହୋଇ ଯଥାର୍ଥ ଭକ୍ତଙ୍କୁ ଈଶ୍ୱରଦର୍ଶନରେ, ମୃଦୁ-ବୈରାଗ୍ୟବାନଙ୍କୁ ତୀବ୍ର ବୈରାଗ୍ୟଲାଭରେ, ଅଳସ ମନକୁ ଆଧ୍ୟାତ୍ମିକ ରାଜ୍ୟରେ ଉତ୍ସାହର ସହିତ ଅଗ୍ରସର ହେବାକୁ ସାମର୍ଥ୍ୟ ପ୍ରଦାନ କରୁଥିଲା ଏବଂ ଘୋର ବିଷୟୀ ମନରୁ ମଧ ସଂସାର ଆସକ୍ତିକୁ କ୍ଷଣିକ ପାଇଁ କେଉଁଠି ବିଲୁପ୍ତ କରିଦେଇଥିଲା । ତାଙ୍କର ଭାବାବେଶ ସଂକ୍ରମିତ ହୋଇ ଅନ୍ୟମାନଙ୍କୁ ଭାବବିହ୍ୱଳ କରିପକାଉଥିଲା ଏବଂ ତାଙ୍କର ପବିତ୍ରତାରେ ପ୍ରଦୀପ୍ତ ହୋଇ ସେମାନଙ୍କ ମନ ଯେପରି କେଉଁ ଏକ ଉଚ୍ଚ ଆଧ୍ୟାତ୍ମିକ ସ୍ତରରେ ଆରୋହଣ କରିଥିଲା । ସାଧାରଣ ବ୍ରାହ୍ମସମାଜର ଆଚାର୍ଯ୍ୟ ଗୋସ୍ୱାମୀ ବିଜୟକୃଷ୍ଣଙ୍କର ତ' କଥା ହିଁ ନାହିଁ, ଅନ୍ୟ ବ୍ରାହ୍ମ-ଭକ୍ତମାନଙ୍କ ମଧ୍ୟରୁ ଅନେକେ ସେଦିନ ମଝିରେ ମଝିରେ ଭାବାବିଷ୍ଟ ଓ ସଂଜ୍ଞାଶୂନ୍ୟ ହୋଇ ପଡ଼ିଯାଇଥିଲେ । ପୁଣି ସୁକଣ୍ଠ ଆଚାର୍ଯ୍ୟ ଚିରଞ୍ଜୀବ ସେଦିନ ଏକତାରା ସହିତ 'ନାଚରେ ଆନନ୍ଦମୟୀର ଛେଲେ, ତୋରା ଘୁରେ ଫିରେ' [ଆନନ୍ଦମୟୀଙ୍କ ସନ୍ତାନ, ତୁମେମାନେ ବୁଲି ବୁଲି ନାଚ] — ଇତ୍ୟାଦି ସଙ୍ଗୀତଟି ଗାଉ ଗାଉ ତନ୍ମୟ ହୋଇ ଯେପରି ନିଜ ମଧ୍ୟରେ ନିଜେ ବୁଡ଼ିଯାଇଥିଲେ । ସେହିପରି ପ୍ରାୟ ଦୁଇଘଣ୍ଟାରୁ ଅଧିକ ସମୟ କୀର୍ତ୍ତନାନନ୍ଦରେ ଅତିବାହିତ ହେଲାପରେ,

'ଏପରି ମଧୁର ହରିନାମ ଜଗତରେ ଆଣିଲା କିଏ'[୧] — ଏହି ପଦଟି ବୋଲା ଯାଇ ସବୁଧର୍ମସମ୍ପ୍ରଦାୟ ଓ ଭକ୍ତ୍ୟାଚାର୍ଯ୍ୟମାନଙ୍କୁ ପ୍ରଣାମ କରି ସେହି ଅପୂର୍ବ କୀର୍ତ୍ତନର ବେଗ ସେଦିନ ଶାନ୍ତ ହୋଇଥିଲା ।

ଆମମାନଙ୍କର ସ୍ମରଣ ଅଛି, କୀର୍ତ୍ତନ ସମାପନାନ୍ତେ ସମସ୍ତେ ଉପବିଷ୍ଟ ହେଲେ ଠାକୁର ଆଚାର୍ଯ୍ୟ ନଗେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କୁ 'ହରି ରସ ମଦିରା ପିଇ ମମ ମାନସ ମାତରେ'[୨] — ଏହି ସଙ୍ଗୀତଟି ଗାଇବାକୁ ଅନୁରୋଧ କରିଥିଲେ ଏବଂ ସେ ମଧ୍ୟ ଭାବାବିଷ୍ଟ ହୋଇ ଏହି ସଙ୍ଗୀତଟିକୁ ଦୁଇ ତିନିଥର ମଧୁରଭାବରେ ଗାଇ ସମସ୍ତଙ୍କୁ ଆନନ୍ଦିତ କରିଥିଲେ ।

ଏହାପରେ ରୂପରସାଦି ବିଷୟରୁ ମନ ଉଠାଇ ନେଇ ଈଶ୍ୱରଙ୍କଠାରେ ଅର୍ପଣ କରିପାରିଲେ ହିଁ ଜୀବର ପରମ ଶାନ୍ତିଲାଭ ହୁଏ, ଏହି ପ୍ରସଙ୍ଗରେ ଠାକୁର ସେଠାରେ ଥିବା ଲୋକମାନଙ୍କୁ ଅନେକ କଥା କହିବାକୁ ଲାଗିଲେ । ସ୍ତ୍ରୀଭକ୍ତମାନେ ମଧ୍ୟ ସେତେବେଳେ ବୈଠକଖାନାର ପୂର୍ବପଟରେ ପରଦା ପଛରେ ରହି ତାଙ୍କୁ ଆଧ୍ୟାତ୍ମିକ ବିଷୟରେ ନାନାପ୍ରକାର ପ୍ରଶ୍ନ କରି ଉତ୍ତରଲାଭରେ ଆନନ୍ଦିତା ହେବାକୁ ଲାଗିଲେ । ସେହିପରି ବିଭିନ୍ନ ପ୍ରଶ୍ନର ସମାଧାନ କରୁ କରୁ ଠାକୁର ସେହି ପ୍ରସଙ୍ଗରେ ଉଠିଥିବା ବିଷୟର ଦୃଢ଼ ଧାରଣା କରାଇଦେବା ନିମିତ୍ତ ଶ୍ରୀଶ୍ରୀଜଗଦମ୍ବାଙ୍କର ନାମ

---

୧. ଗୀତଟି ମୋର ଯେତେଦୂର ମନେ ଅଛି ତାହା ଉଲ୍ଲେଖ କରୁଛି —
ଏମନ ମଧୁର ହରିନାମ ଜଗତେ ଆନିଲ କେ ।
ଏନାମ ନିତାଇ ଏନେଛେ, ନା ହୟ ଗୌର ଏନେଛେ,
ନା ହୟ ଶାନ୍ତିପୁରେର ଅଦ୍ୱୈତ ସେଇ ଏନେଛେ ।

[ଅର୍ଥାତ୍ — ଏପରି ମଧୁର ହରିନାମ ଜଗତକୁ କିଏ ଆଣିଲା ? ଏହି ନାମ ନିତାଇ ଆଣିଛନ୍ତି ନ ହେଲେ ଗୌର ଆଣିଛନ୍ତି, ନ ହେଲେ ଶାନ୍ତିପୁରର ଅଦ୍ୱୈତ ହିଁ ଆଣିଛନ୍ତି ।]

୨. ହରି ରସ ମଦିରା ପିୟେ ମମ ମାନସ ମାତ ରେ ।
(ଏକବାର) ଲୁଟୟ ଅବନୀତଳ ହରି ହରି ବଲେ କାନ୍ଦ ରେ ।
(ଗତି କର କର ବଲେ)
ଗଭୀର ନିନାଦେ ହରି ହରି ନାମେ ଗଗନ ଛାଓ ରେ ।
ନାଚ ହରି ବୋଲେ ଦୁବାହୁ ତୁଲେ ହରିନାମ ବିଲାଓ ରେ ।
(ଲୋକେର ଦ୍ୱାରେ ଦ୍ୱାରେ)
ହରି-ପ୍ରେମାନନ୍ଦରସେ, ଅନୁଦିନ ଭାସ ରେ ।
ଗାଓ ହରିନାମ, ହଓ ପୂର୍ଣ୍ଣକାମ,
(ଯତ) ନୀଚ ବାସନା ନାଶ ରେ ।
(ପ୍ରେମାନନ୍ଦେ ମେତେ)

[ଅର୍ଥାତ୍ — ହେ ମୋର ମନ, ତୁ ହରିରସ ମଦିରା ପିଇ ମତ୍ତ ହୋଇଯାଆ । ଥରେ ମାଟିରେ ଗଡ଼ି ହରି ହରି କହି କାନ୍ଦ-ମୋର ଉଦ୍ଧାର କର, ଉଦ୍ଧାର କର ବୋଲି କାନ୍ଦ । ଗମ୍ଭୀର ଧ୍ୱନିରେ ହରି ନାମ ଉଚ୍ଚାରଣ କରି ଆକାଶ ପୂର୍ଣ୍ଣ କରି ଦେ' । ଦୁଇହାତ ଉପରକୁ ଉଠାଇ ହରିନାମ କରି କରି ନାଚ ଏବଂ ଲୋକଙ୍କ ଦ୍ୱାର ଦ୍ୱାର ଯାଇ ହରିନାମ ବିତରଣ କର । ହରିପ୍ରେମାନନ୍ଦରସରେ ସର୍ବଦା ସନ୍ତରଣ କର । ହରିନାମ ଗାଇ ପୂର୍ଣ୍ଣକାମ ହୁଅ । ଯେତେ ନୀଚ ବାସନା ଅଛି, ପ୍ରେମାନନ୍ଦରେ ମତ୍ତ ହୋଇ ସେସବୁ ନାଶ କର ।]

ଆରମ୍ଭ କଲେ ଏବଂ ଗୋଟିକ ପରେ ଗୋଟିଏ ରାମପ୍ରସାଦ, କମଳାକାନ୍ତ ପ୍ରଭୃତି ସାଧକ-ଭକ୍ତଗଣଙ୍କ-ରଚିତ ଅନେକ ଗୁଡ଼ିଏ ସଙ୍ଗୀତ ଗାଇବାକୁ ଲାଗିଲେ । ସେଗୁଡ଼ିକ ମଧ୍ୟରୁ ନିମ୍ନଲିଖିତ ଗୀତ କେତୋଟି ଯାହାକୁ ସେ ଗାଇଥିଲେ ଆମର ବେଶ୍ ସ୍ମରଣ ଅଛି—

୧. ମଜ୍‌ଲ ଆମାର ମନ-ଭ୍ରମରା ଶ୍ୟାମାପଦ ନୀଲକମଲେ । [ଶ୍ୟାମା ମା'ର ଚରଣରୂପୀ ନୀଳକମଳରେ ମୋର ମନ-ଭ୍ରମର ତନ୍ମୟ ହୋଇଗଲା ।]

୨. ଶ୍ୟାମାପଦ-ଆକାଶେତେ ମନ-ଘୁଡ଼ିଖାନ ଉଡ଼ତେଛିଲ । [ଶ୍ୟାମା ମା'ର ଚରଣରୂପକ ଆକାଶରେ ମୋର ମନରୂପକ ଗୁଡ଼ି ଉଡୁଥିଲା ।]

୩. ଏସବ ଖ୍ୟାପା ମାୟେର ଖେଲା । [ଏସବୁ ଆଦ୍ୟାଶକ୍ତି ଉନ୍ମତ୍ତ ମହାମାୟାର ଖେଳ ।]

୪. ମନ ବେଚାରୀର କି ଦୋଷ ଆଛେ ।
ତାରେ କେନ ଦୋଷୀ କର ମିଛେ ।। [ବିଚରା ମନର କଣ ଦୋଷ ଅଛି ? ତାକୁ କାହିଁକି ବୃଥାରେ ଦୋଷୀ କରୁଛ ?]

୫. ଆମି ଐ ଖେଦେ ଖେଦ କରି ।
ତୁମି ମାତା ଥାକତେ ଆମାର ଜାଗା ଘରେ ଚୁରି ।। [ମୁଁ ଏହି ଦୁଃଖରେ ଦୁଃଖିତ ଯେ, ତୁମେ ମା' ଥାଉ ଥାଉ ଜାଗ୍ରତ ଅବସ୍ଥାରେ ମୋର ଘରୁ ଚୋରୀ ହୋଇଗଲା !]

**ବିଜୟ ଗୋସ୍ୱାମୀଙ୍କ ସହିତ ଠାକୁରଙ୍କ ରହସ୍ୟାଳାପ :**

ଠାକୁର ଯେତେବେଳେ ଏହିପରି ମା'ଙ୍କର ନାମ କରୁଥିଲେ ସେତେବେଳେ ଗୋସ୍ୱାମୀ ବିଜୟକୃଷ୍ଣ ଅନ୍ୟ ଏକ ଗୃହ ମଧ୍ୟକୁ ଯାଇ କେତେକ ଭକ୍ତଙ୍କ ନିକଟରେ ତୁଳସୀଦାସ ରାମାୟଣ ପାଠ ଓ ବ୍ୟାଖ୍ୟା କରିବାରେ ନିଯୁକ୍ତ ଥିଲେ । ସନ୍ଧ୍ୟା ଉପାସନାର ସମୟ ଆଗତପ୍ରାୟ ଦେଖି ଠାକୁରଙ୍କୁ ପ୍ରଣାମ କରି ଉକ୍ତ କାର୍ଯ୍ୟ ଆରମ୍ଭ କରିବେ ବୋଲି ସେ ଏବେ ପୁନରାୟ ବୈଠକଖାନାରେ ଉପସ୍ଥିତ ହେଲେ । ବିଜୟଙ୍କୁ ଦେଖି ଠାକୁର ବାଳକ ପରି ଥଟ୍ଟା କରି କହିବାକୁ ଲାଗିଲେ, ''ବିଜୟଙ୍କର ଆଜିକାଲି ସଂକୀର୍ତ୍ତନରେ ବିଶେଷ ଆନନ୍ଦ । କିନ୍ତୁ ସେ ଯେତେବେଳେ ନାଚେ ସେତେବେଳେ ମୋର ଭୟ ହୁଏ ଯେପରି ଛାତ ଖସି ପଡ଼ିବ ! (ସମସ୍ତଙ୍କର ହସ) । ହଁ ଗୋ, ଏପରି ଏକ ଘଟଣା ଆମ ଅଞ୍ଚଳରେ ସତରେ ହୋଇଥିଲା । ସେଠାରେ କାଠ-ମାଟି ଦେଇ ଲୋକମାନେ ଦୋତାଲା କରନ୍ତି । ଜଣେ ଗୋସ୍ୱାମୀ ଶିଷ୍ୟ ଘରକୁ ଯାଇ ସେହିପରି ଦୋତାଲାଘରେ କୀର୍ତ୍ତନ ଆରମ୍ଭ କଲେ । କୀର୍ତ୍ତନ ଜମିବାରୁ ନାଚ ଆରମ୍ଭ ହେଲା । ସେ ଗୋଁସେଇ (ବିଜୟଙ୍କୁ ସମ୍ବୋଧନ କରି) ତୁମପରି ଟିକିଏ ହୃଷ୍ଟପୁଷ୍ଟ ଥିଲେ । କିଛିସମୟ ନାଚିବା ପରେ ହିଁ ଛାତଭାଙ୍ଗି ସେ

ଏକାଥରକେ ଏକତାଲାରେ ହାଜର ! ସେଥିପାଇଁ ଭୟ ହୁଏ, କାଳେ ତୁମର ନାଚରେ ସେପରି ହେବ ।'' (ସମସ୍ତଙ୍କର ହସ) । ଠାକୁର ବିଜୟକୃଷ୍ଣଙ୍କର ଗେରୁଆ ବସ୍ତ୍ରଧାରଣ ଲକ୍ଷ୍ୟ କରି ଏଥର କହିବାକୁ ଲାଗିଲେ, ''ଆଜିକାଲି ଏହାଙ୍କର (ବିଜୟଙ୍କର) ଗେରୁଆ ଉପରେ ଖୁବ୍ ଅନୁରାଗ । ଲୋକମାନେ କେବଳ ଲୁଗା-ଚାଦର ଗେରୁଆ କରନ୍ତି । ବିଜୟ ଲୁଗା, ଚାଦର, ଜାମା, ଏପରିକି ଜୋତା ହଳକ ପର୍ଯ୍ୟନ୍ତ ଗେରୁଆ କରିଛନ୍ତି । ଏହା ଭଲ, ଗୋଟିଏ ଅବସ୍ଥା ହୁଏ ଯେତେବେଳେ ସେମିତି କରିବାକୁ ଇଚ୍ଛାହୁଏ—ଗେରୁଆ ଛଡ଼ା ଅନ୍ୟ କିଛି ପିନ୍ଧିବାକୁ ଇଚ୍ଛା ହୁଏ ନାହିଁ । ଗେରୁଆ ତ୍ୟାଗର ଚିହ୍ନ, ତେଣୁ ସାଧକଙ୍କୁ ସ୍ମରଣ କରାଇଦିଏ ଯେ, ସେ ଈଶ୍ୱରଙ୍କ ପାଇଁ ସର୍ବସ୍ୱ ତ୍ୟାଗରେ ବ୍ରତୀ ହୋଇଛି ।'' ଗୋସ୍ୱାମୀ ବିଜୟକୃଷ୍ଣ ଏତିକିବେଳେ ଠାକୁରଙ୍କୁ ପ୍ରଣାମ କଲେ ଏବଂ ଠାକୁର ତାଙ୍କୁ ପ୍ରସନ୍ନ ମନରେ ଆଶୀର୍ବାଦ କଲେ, ''ଓଁ ଶାନ୍ତି, ଶାନ୍ତି, ତୁମର ପ୍ରଶାନ୍ତି ହେଉ ।''

### ଠାକୁରଙ୍କର ଭକ୍ତମାନଙ୍କୁ ଭଲପାଇବା :

ଠାକୁର ଯେତେବେଳେ ମା'ଙ୍କ ନାମ କରୁଥିଲେ, ସେତେବେଳେ ଆଉ ଗୋଟିଏ ଘଟଣା ଘଟିଥିଲା । ସେଥିରୁ ବୁଝାଯାଏ, ଅନ୍ତର୍ମୁଖରେ ସର୍ବଦା ଅବସ୍ଥାନ କଲେ ମଧ୍ୟ ତାଙ୍କର ବହିର୍ବିଷୟ ଲକ୍ଷ୍ୟ କରିବା ଶକ୍ତି କେତେ ତୀକ୍ଷ୍ଣ ଥିଲା । ଗୀତ ଗାଉ ଗାଉ ବାବୁରାମଙ୍କ ମୁହଁ ଦେଖି ସେ ବୁଝିଥିଲେ ଯେ ସେ କ୍ଷୁଧା ଓ ତୃଷ୍ଣାରେ କାତର ହୋଇଅଛନ୍ତି । ତାଙ୍କ ପୂର୍ବରୁ ସେ କଦାପି ଭୋଜନ କରିବେ ନାହିଁ ଜାଣି, ସେ ନିଜେ ଖାଇବେ ବୋଲି କେତେଗୁଡ଼ିଏ ସନ୍ଦେଶ ଓ ଏକ ଗ୍ଲାସ ଜଳ ଆନୟନ କଲେ ଏବଂ ଏଥିରୁ କାଣିଚାଏ ମାତ୍ର ସ୍ୱୟଂ ଗ୍ରହଣପୂର୍ବକ ଅଧିକାଂଶ ଶ୍ରୀଯୁକ୍ତ ବାବୁରାମଙ୍କୁ ପ୍ରଦାନ କରିଥିଲେ । ଅବଶିଷ୍ଟ ଉପସ୍ଥିତ ଭକ୍ତଗଣ ପ୍ରସାଦରୂପେ ଗ୍ରହଣ କରିଥିଲେ ।

ବିଜୟ ପ୍ରଣାମ କରି ସନ୍ଧ୍ୟା ଉପାସନା କରିବାକୁ ତଳକୁ ଆସିବାର କିଛି ସମୟ ପରେ ଠାକୁରଙ୍କୁ ଆହାର କରିବା ପାଇଁ ଘର ଭିତରକୁ ନିଆଗଲା । ସେତେବେଳେ ରାତି ନଅଟା ବାଜି ସାରିଛି । ଆମେ ଏହି ମଉକାରେ ଶ୍ରୀଯୁକ୍ତ ବିଜୟଙ୍କର ଉପାସନାରେ ଯୋଗଦାନ କରିବା ପାଇଁ ତଳକୁ ଆସିଲୁ । ଦେଖିଲୁ ଅଗଣାରେ ଏକତ୍ର ଉପାସନାର ଅଧିବେଶନ ହୋଇଅଛି ଏବଂ ତାହାର ଉତ୍ତରପଟ ବାରଣ୍ଡାରେ ବେଦୀ ଉପରେ ବସି ଆଚାର୍ଯ୍ୟ ବିଜୟକୃଷ୍ଣ ବ୍ରାହ୍ମଭକ୍ତମାନଙ୍କ ସହିତ ସମସ୍ୱରରେ 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଇତ୍ୟାଦି ବାକ୍ୟରେ ବ୍ରହ୍ମଙ୍କର ମହିମା ସ୍ମରଣପୂର୍ବକ ଉପାସନା ଆରମ୍ଭ କରୁଛନ୍ତି । ଉପାସନା କାର୍ଯ୍ୟ ସେହିପରି କିଛି ସମୟ ଚାଲିବା ପରେ ଠାକୁର ସଭାସ୍ଥଳରେ ପହଞ୍ଚିଲେ ଏବଂ ଅନ୍ୟମାନଙ୍କ ସହିତ ଗୋଟିଏ ଆସନରେ ଉପବିଷ୍ଟ ହୋଇ ଉପାସନାରେ ଯୋଗଦେଲେ । ପ୍ରାୟ ଦଶ-

ପନ୍ଦର ମିନିଟ୍ ସେ ସ୍ଥିର ହୋଇ ବସିରହିଲେ । ପରେ ଭୂମିଷ୍ଠ ହୋଇ ପ୍ରଣାମ କଲେ । ଏହାପରେ ରାତି ଦଶଟା ବାଜିଯାଇଥିବାରୁ ସେ ଦକ୍ଷିଣେଶ୍ୱର ଫେରିଯିବା ପାଇଁ ଗାଡ଼ି ଆଣିବାକୁ କହିଲେ । ପରେ କାକର ଲାଗିବା ଭୟରେଁ ଜାମା, ମୋଜା ଓ କାନଢଙ୍କା ଟୋପି ପିନ୍ଧି ବାବୁରାମ ପ୍ରଭୃତିଙ୍କୁ ସାଙ୍ଗରେ ଧରି ଧୀରେ ଧୀରେ ସଭାସ୍ଥଳ ପରିତ୍ୟାଗପୂର୍ବକ ଗାଡ଼ିରେ ବସିଲେ । ସେହି ସମୟରେ ଆଚାର୍ଯ୍ୟ ବିଜୟକୃଷ୍ଣ ବେଦୀ ଉପରୁ ବ୍ରାହ୍ମସଂଘଙ୍କୁ ସମ୍ବୋଧନ କରି ଯଥାରୀତି ଉପଦେଶ ପ୍ରଦାନ କରୁଥିଲେ । ଏହି ଅବସରରେ ଆମେ ସଭାସ୍ଥଳ ପରିତ୍ୟାଗ କରି ଘରକୁ ଫେରିଲୁ ।

**ମଣି ମଲ୍ଲିକଙ୍କର ଭକ୍ତ–ପରିବାର :**

ଏହିପରି ଭାବରେ ବ୍ରାହ୍ମଭକ୍ତଗଣଙ୍କ ସହିତ ମିଶି ଠାକୁର ଯେପରି ଆନନ୍ଦ କରୁଥିଲେ ତାହାର ପରିଚୟ ଆମେ ଏହି ଦିନରୁ ଜାଣିଲୁ । ମଣିବାବୁ ଆନୁଷ୍ଠାନିକ ବ୍ରାହ୍ମ ଥିଲେ କି ନାହିଁ ତାହା କହିହେବ ନାହିଁ । କିନ୍ତୁ ତାଙ୍କର ପରିବାରର ସମସ୍ତ ସ୍ତ୍ରୀ–ପୁରୁଷ ଯେ ସେତେବେଳେ ବ୍ରାହ୍ମମତାବଲମ୍ବୀ ଥିଲେ ଏବଂ ଉକ୍ତ ସମାଜର ପଦ୍ଧତି ଅନୁସାରେ ଦୈନିକ ଉପାସନା ଇତ୍ୟାଦି ସମ୍ପନ୍ନ କରୁଥିଲେ, ଏହା ଆମେ ବିଶେଷ ଭାବରେ ଅବଗତ ଥିଲୁ । ତାଙ୍କର ପରିବାରର ଜଣେ ରମଣୀ ଉପାସନା ସମୟରେ ମନ ସ୍ଥିର କରିପାରୁ ନାହାନ୍ତି ଜାଣିପାରି ଠାକୁର ତାଙ୍କୁ ପଚାରିଥିଲେ, ''କାହା କଥା ଏସମୟରେ ତୁମ ମନକୁ ଆସୁଛି କୁହତ ?'' ରମଣୀ ଅଳ୍ପବୟସ୍କ ଭ୍ରାତୁଷ୍ପୁତ୍ରକୁ ଲାଳନପାଳନ କରୁଛନ୍ତି ଏବଂ ତାର ହିଁ କଥା ତାଙ୍କର ଅନ୍ତର ମଧ୍ୟରେ ସର୍ବଦା ଉଦିତ ହେଉଥିବା ଜାଣିପାରି, ଠାକୁର ତାଙ୍କୁ ଉକ୍ତ ବାଳକକୁ ହିଁ ବାଳଶ୍ରୀକୃଷ୍ଣଙ୍କର ମୂର୍ତ୍ତି ଜ୍ଞାନ କରି ସେବା କରିବାକୁ କହିଥିଲେ । ରମଣୀ ଠାକୁରଙ୍କର ତଦ୍ରୂପ ଉପଦେଶ କାର୍ଯ୍ୟରେ ପରିଣତ କରୁ କରୁ କିଛି କାଳ ମଧ୍ୟରେ ହିଁ ଭାବସମାଧିସ୍ଥା ହୋଇଥିଲେ । ଏବିଷୟ ଆମେ 'ଲୀଳାପ୍ରସଙ୍ଗ'ରେ ଅନ୍ୟ ସ୍ଥାନରେ ଉଲ୍ଲେଖ କରିଅଛୁ ।[୧] ସେ ଯାହା ହେଉ, ଠାକୁରଙ୍କୁ ଆମେ ଅନ୍ୟ ଏକ ଦିନ କେତେଜଣ ବ୍ରାହ୍ମଭକ୍ତଙ୍କୁ ସଙ୍ଗରେ ନେଇ ଅନ୍ୟତ୍ର ଆନନ୍ଦ କରିଥିବାର ସ୍ୱଚକ୍ଷୁରେ ଦେଖିଥିଲୁ । ସେହି ଚିତ୍ର ହିଁ ଏବେ ଆମେ ପାଠକଙ୍କ ସମ୍ମୁଖରେ ଧାରଣ କରିବାକୁ ପ୍ରବୃତ୍ତ ହେବୁ ।

---

୧. ଗୁରୁଭାବ, ପୂର୍ବାର୍ଦ୍ଧ—ପ୍ରଥମ ଅଧ୍ୟାୟ ଦେଖ ।

# ପ୍ରଥମ ଅଧ୍ୟାୟ—ତୃତୀୟ ପାଦ

## ଜୟଗୋପାଳ ସେନଙ୍କ ଘରେ ଠାକୁର

ସିନ୍ଦୁରିଆପଟିର ମଣିମୋହନଙ୍କ ଘରେ ଠାକୁରଙ୍କର କୀର୍ତ୍ତନାନନ୍ଦ ଓ ଭାବାବେଶ ଦେଖି ଆମେ ଯେ କେବଳ ଆଧ୍ୟାତ୍ମିକ ରାଜ୍ୟରେ ଅଦୃଷ୍ଟପୂର୍ବ ନୂତନ ଆଲୋକ ଦେଖି ମୁଗ୍ଧ ହୋଇଥିଲୁ ତାହା ନୁହେଁ, ବନ୍ଧୁବର ବରଦାସୁନ୍ଦର ମଧ୍ୟ ସେହିପରି ଅନୁଭବ କରିଥିଲେ ଏବଂ ପୁଣି କେବେ କେଉଁଠାରେ ଠାକୁର ଆସି ସେହିପରି ଆନନ୍ଦ କରିବେ, ସେବିଷୟରେ ଅନୁସନ୍ଧାନରେ ପ୍ରବୃତ୍ତ ହୋଇଥିଲେ । ତାଙ୍କର ସେପରି ଚେଷ୍ଟା ଫଳବତୀ ହେବାରେ ବିଳମ୍ବ ହୋଇ ନ ଥିଲା । କାରଣ, ଏହାର ଦୁଇ ଦିନ ପରେ ମାର୍ଗଶୀର ୧୩, ଇଂରାଜୀ ୨୮ ନଭେମ୍ବର, ବୁଧବାର ସକାଳେ ତାଙ୍କ ସହିତ ସାକ୍ଷାତ୍ ହେବା ମାତ୍ରେ ସେ କହିଲେ, ‘‘ଆଜି ଅପରାହ୍ଣରେ ଶ୍ରୀରାମକୃଷ୍ଣଦେବ କମଳ-କୁଟୀରରେ କେଶବବାବୁଙ୍କୁ ଦେଖିବାକୁ ଆସିବେ ଏବଂ ପରେ ସନ୍ଧ୍ୟାବେଳେ ମଥାଘଷା ପଲ୍ଲୀସ୍ଥିତ ଜୟଗୋପାଳ ସେନ୍‌ଙ୍କ ଘରକୁ ଯିବେ; ଆମେ ଦେଖିବାକୁ ଯିବା କି ?’’ ଶ୍ରୀଯୁକ୍ତ କେଶବ ସେତେବେଳେ ବିଶେଷ ଅସୁସ୍ଥ ବୋଲି ଆମେ ଜାଣିଥିଲୁ । ସୁତରାଂ ଆମମାନଙ୍କ ପରି ଅପରିଚିତ ଲୋକ କମଳ-କୁଟୀରକୁ ଗଲେ ବିରକ୍ତିର କାରଣ ହେବା ସମ୍ଭାବନା ବୁଝି ଆମେ ସନ୍ଧ୍ୟାରେ ଶ୍ରୀଯୁକ୍ତ ଜୟଗୋପାଳଙ୍କ ଘରକୁ ହିଁ ଠାକୁରଙ୍କୁ ଦେଖିବାକୁ ଯିବା ପାଇଁ ସ୍ଥିର କଲୁ ।

### ଜୟଗୋପାଳ ସେନଙ୍କ ଘର :

ବଡ଼ବଜାରର କୌଣସି ଅଂଶର ନାମ ମଥାଘଷା ପଲ୍ଲୀ ହେବ ଭାବି ଆମେ ସେଠାରେ ହିଁ ପ୍ରଥମେ ପହଞ୍ଚିଲୁ ଏବଂ ଲୋକଙ୍କୁ ପଚାରି କ୍ରମେ ଶ୍ରୀଯୁକ୍ତ ଜୟଗୋପାଳ ସେନଙ୍କ ଘରେ ପହଞ୍ଚିଲୁ । ସେତେବେଳେ ସନ୍ଧ୍ୟା ହୋଇଯାଇଛି । ମଣିମୋହନଙ୍କ ଘରେ ଉତ୍ସବ ଦିନ ପରି ଆଜି ମଧ୍ୟ ଉପର ବେଳା ଅସରାଏ ବର୍ଷା ହୋଇଥିଲା । କାରଣ, ଭଲରେ ମନେ ଅଛି, କାଦୁଅ ରାସ୍ତାରେ ଚାଲି ଚାଲି ଆମେ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଥିଲୁ । ଏକଥା ମଧ୍ୟ ସ୍ମରଣ ହୁଏ ଯେ, ମଣିମୋହନଙ୍କ ଘର ପରି ଜୟଗୋପାଳ ସେନଙ୍କର ଭବନ ମଧ୍ୟ ପଶ୍ଚିମଦ୍ୱାରୀ ଥିଲା ଏବଂ ପୂର୍ବମୁହାଁ ହୋଇ ଆମେ ଉକ୍ତ ଘରେ ପ୍ରବେଶ କରିଥିଲୁ । ଘରେ ପ୍ରବେଶ କରିବା ମାତ୍ରେ ଜଣେ ଲୋକକୁ ଦେଖି ଠାକୁର ଆସିଛନ୍ତି କି ନାହିଁ ଆମେ ପଚାରିଥିଲୁ ଏବଂ ସେଥିରେ ସେ ଆମକୁ ସାଦର ଆହ୍ୱାନ କରି ଦକ୍ଷିଣ ପାଖର ସିଡ଼ି ଦେଇ ଉପରକୁ ଉଠି ପୂର୍ବପଟର ଉତ୍ତର-ଦକ୍ଷିଣରେ ବିସ୍ତୃତ ପ୍ରଶସ୍ତ ବୈଠକଖାନାକୁ ଯିବାକୁ କହିଥିଲେ । ଦୋତାଲାର ଉକ୍ତ ଘରେ ପ୍ରବେଶ କରି ଦେଖିଲୁ ଘରଟି ଅତ୍ୟନ୍ତ ପରିଷ୍କାର-ପରିଚ୍ଛନ୍ନ ଓ ସଜ୍ଜିତ; ବସିବା ପାଇଁ ଚଟାଣରେ

ବିଛଣା ପକାଯାଇଛି ଏବଂ ତାହାର ଏକାଂଶରେ ଠାକୁର କେତେଜଣ ବ୍ରାହ୍ମଭକ୍ତ ପରିବୃତ ହୋଇ ବସିଛନ୍ତି । ନବବିଧାନ ସମାଜର ଆଚାର୍ଯ୍ୟଦ୍ୱୟ ଶ୍ରୀଯୁକ୍ତ ଚିରଞ୍ଜୀବ ଶର୍ମା ଏବଂ ଶ୍ରୀଯୁକ୍ତ ଅମୃତଲାଲ ବସୁ ମଧ୍ୟ ସେମାନଙ୍କ ମଧ୍ୟରେ ଥିଲେ, ଏକଥା ସ୍ମରଣ ହୁଏ । ଏହାଛଡ଼ା ଗୃହସ୍ୱାମୀ ଶ୍ରୀଯୁକ୍ତ ଜୟଗୋପାଳ ଏବଂ ତାଙ୍କର ଭାଇ, ପଲ୍ଲୀବାସୀ ତାଙ୍କର ବନ୍ଧୁ ଦୁଇ ତିନି ଜଣ ଏବଂ ଠାକୁରଙ୍କ ସହିତ ଆସିଥିବା ଜଣେ-ଦୁଇଜଣ ଭକ୍ତ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ମନେ ହୁଏ, 'ହୁଟ୍‌କୋ' ବୋଲି ଠାକୁର ଯାହାକୁ ଡାକୁଥିଲେ, ସେହି 'ଛୋଟଗୋପାଳ' ନାମକ ଯୁବକ ଭକ୍ତଙ୍କୁ ମଧ୍ୟ ସେଦିନ ସେଠାରେ ଦେଖିଥିଲି । ସେହିପରି ଦଶ-ବାର ଜଣ ମାତ୍ର ବ୍ୟକ୍ତିଙ୍କୁ ଠାକୁରଙ୍କ ନିକଟରେ ସେଦିନ ଉପସ୍ଥିତ ଥିବାର ଦେଖି ଆମେ ବୁଝିଥିଲୁ, ଆଜିକାର ସମ୍ମିଳନ୍ ସାଧାରଣଙ୍କ ପାଇଁ ନୁହେଁ ଏବଂ ଏଠାକୁ ଆମର ଆସିବା ଠିକ୍ ହୋଇ ନାହିଁ । ସେଥିପାଇଁ ଆମେ ସ୍ଥିର କଲୁ ସମସ୍ତଙ୍କୁ ଭୋଜନ ପାଇଁ ଡାକିବା ଆଗରୁ ଆମେ ଚାଲିଯିବୁ ।

ଘରେ ପ୍ରବେଶ କରି ଆମେ ଠାକୁରଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କଲୁ ଏବଂ ଠାକୁରଙ୍କର "ତୁମେମାନେ ଏଠାକୁ କିପରି ଆସିଲ"—ଏହି ପ୍ରଶ୍ନର ଉତ୍ତରରେ ଆମେ କହିଲୁ, "ଆମେ ଖବର ପାଇଥିଲୁ ଯେ ଆପଣ ଏଠାକୁ ଆଜି ଆସିବେ, ସେଥିପାଇଁ ଆପଣଙ୍କୁ ଦେଖିବାକୁ ଆସିଛୁ ।" ସେ ସେପରି ଉତ୍ତରରେ ପ୍ରସନ୍ନ ହେଲେ ବୋଲି ବୋଧ ହେଲା ଏବଂ ସେ ଆମକୁ ବସିବାକୁ କହିଲେ । ସେତେବେଳେ ନିଶ୍ଚିନ୍ତ ମନରେ ବସି ସମସ୍ତଙ୍କୁ ଲକ୍ଷ୍ୟ କରିବାକୁ ଏବଂ ଠାକୁରଙ୍କ ଉପଦେଶପୂର୍ଣ୍ଣ କଥାବାର୍ତ୍ତା ଶୁଣିବାକୁ ଲାଗିଲୁ ।

**ଠାକୁରଙ୍କର ଉପଦେଶ ଦେବାର ପ୍ରଣାଳୀ :**

ଠାକୁରଙ୍କର ପୁଣ୍ୟଦର୍ଶନ ଅଳ୍ପ ଦିନ ପୂର୍ବରୁ ଆମର ହୋଇଥିଲେ ମଧ୍ୟ ଆମେ ତାଙ୍କର ଅମୃତମୟୀ ବାଣୀର ଅପୂର୍ବ ଆକର୍ଷଣ ପ୍ରଥମ ଦିନରୁ ହିଁ ଉପଲବ୍ଧି କରିଥିଲୁ । ତାହାର କାରଣ ସେତେବେଳେ ହୃଦୟଙ୍ଗମ କରି ନ ପାରିଥିଲେ ମଧ୍ୟ ଏବେ ବୁଝିପାରୁଛୁ, ତାଙ୍କର ଉପଦେଶ ଦେବାର ପ୍ରଣାଳୀ କେତେଦୂର ସ୍ୱତନ୍ତ୍ର ଥିଲା । ସେଥିରେ ଆଡ଼ମ୍ବର ନ ଥିଲା, ଯୁକ୍ତିତର୍କ ଅଥବା ବଛା ବଛା ବାକ୍ୟବିନ୍ୟାସ ନ ଥିଲା, ସ୍ୱଳ୍ପଭାବକୁ ଭାଷା ସାହାଯ୍ୟରେ ବିକୃତ କରି ଅଧିକ କରି ଦେଖାଇବାର ପ୍ରୟାସ ନ ଥିଲା, କିମ୍ବା ଦାର୍ଶନିକ ସୂତ୍ରକାରମାନଙ୍କ ପରି କମ୍ କଥାରେ ଯେତେଦୂର ସମ୍ଭବ ଅଧିକ ଭାବ ପ୍ରକାଶ କରିବାର ଚେଷ୍ଟା ମଧ୍ୟ ନ ଥିଲା । ଭାବମୟ ଠାକୁର ଭାଷା ଆଡ଼କୁ ଆଦୌ ଲକ୍ଷ୍ୟ ରଖୁଥିଲେ କି ନାହିଁ କହିପାରିବୁ ନାହିଁ, ମାତ୍ର ଯିଏ ତାଙ୍କ କଥା ଦିନେ ମଧ୍ୟ ଶୁଣିଛନ୍ତି, ସେ ଲକ୍ଷ୍ୟ କରିଛନ୍ତି ଅନ୍ତରର ଭାବ ଶ୍ରୋତୃବର୍ଗଙ୍କ ହୃଦୟରେ ପ୍ରବେଶ କରାଇବା ପାଇଁ ସେ କିପରି ସେମାନଙ୍କର ଜୀବନରେ ନିତ୍ୟ

ପରିଚିତ ପଦାର୍ଥ ଓ ଘଟଣାସମୂହକୁ ଉପମାସ୍ୱରୂପରେ ଅବଲମ୍ବନ କରି ଚିତ୍ର ପରେ ଚିତ୍ର ଆଣି ସେମାନଙ୍କର ସମ୍ମୁଖରେ ଧାରଣ କରୁଥିଲେ । ଶ୍ରୋତୃବର୍ଗ ମଧ୍ୟ ସେଥିରେ ସେ ଯାହା କହୁଛନ୍ତି, ତାହା ଯେପରି ସେମାନଙ୍କ ଚକ୍ଷୁ ସମ୍ମୁଖରେ ଅଭିନୀତ ପ୍ରତ୍ୟକ୍ଷ କରି ତାଙ୍କ କଥାର ସତ୍ୟତାରେ ଏକାବେଳକେ ନିଃସନ୍ଦେହ ଓ ପରିତୃପ୍ତ ହୋଇଯାଉଥିଲେ । ସେହି ସମସ୍ତ ଚିତ୍ର ତାଙ୍କ ମନରେ ତତ୍‌କ୍ଷଣାତ୍ କିପରି ଉଦିତ ହେଉଥିଲା, ଏହି ବିଷୟ ଅନୁଧାବନ କରିବାକୁ ଯାଇ ଆମେ ତାଙ୍କର ଅପୂର୍ବ ସ୍ମୃତିକୁ, ଅଦ୍ଭୁତ ମେଧାକୁ, ତୀକ୍ଷ୍ଣ ଦର୍ଶନଶକ୍ତିକୁ ଅଥବା ଅଦୃଷ୍ଟପୂର୍ବ ପ୍ରତ୍ୟୁତ୍ପନ୍ନମତିକୁ କାରଣସ୍ୱରୂପ ନିର୍ଦ୍ଦେଶ କରିଥାଉ । କିନ୍ତୁ ଠାକୁର ଏକମାତ୍ର ମା'ଙ୍କ (ଶ୍ରୀଶ୍ରୀଜଗଦମ୍ବାଙ୍କ) କୃପାକୁ ହିଁ ତାହାର କାରଣ ବୋଲି ସର୍ବଦା ନିର୍ଦ୍ଦେଶ କରୁଥିଲେ । ଠାକୁର କହୁଥିଲେ, ''ମା' ଉପରେ ଯେ ସମ୍ପୂର୍ଣ୍ଣ ନିର୍ଭର କରେ, ମା' ତାହାଙ୍କ ଅନ୍ତରରେ ବସି ଯାହା କହିବାକୁ ହେବ, ତାହା ଅଭ୍ରାନ୍ତ ଇଙ୍ଗିତରେ ଦେଖାଇ କୁହାଇଥାନ୍ତି; ଏବଂ ସ୍ୱୟଂ ସେ (ଶ୍ରୀଶ୍ରୀଜଗଦମ୍ବା) ଏପରି କରନ୍ତି ବୋଲି ହିଁ ତାଙ୍କର ଜ୍ଞାନଭଣ୍ଡାର କଦାପି ଶୂନ୍ୟ ହୋଇଯାଏ ନାହିଁ । ମା' ତାଙ୍କ ଅନ୍ତରରେ ଜ୍ଞାନରାଶି ଠେଲି ଦେଇ ସର୍ବଦା ପୂର୍ଣ୍ଣ କରି ରଖନ୍ତି; ସେ ଯେତେ ବ୍ୟୟ କରନ୍ତୁ ନା କାହିଁକି, ତାହା କଦାପି ଶୂନ୍ୟ ହୁଏ ନାହିଁ ।'' ଏହା ବୁଝାଇବାକୁ ଯାଇ ସେ ଦିନେ ନିମ୍ନଲିଖିତ ଘଟଣାଟି ଉଲ୍ଲେଖ କରିଥିଲେ—

ଦକ୍ଷିଣେଶ୍ୱର କାଳୀମନ୍ଦିରର ଉତ୍ତର ପାର୍ଶ୍ୱରେ ହିଁ ଇଂରେଜ–ରାଜାଙ୍କର ଏକ ବାରୁଦ–ଗୋଦାମ ରହିଅଛି । କେତେକ ସିପାହୀ ସେଠାରେ ସବୁବେଳେ ଜଗିବା ପାଇଁ ରହୁଥାନ୍ତି । ସେମାନେ ସମସ୍ତେ ଠାକୁରଙ୍କୁ ଅତିଶୟ ଭକ୍ତି କରୁଥିଲେ ଏବଂ କେବେ କେବେ ତାଙ୍କୁ ସେମାନଙ୍କ ଘରକୁ ଡାକି ନେଇ ଧର୍ମ ବିଷୟକ ନାନା ପ୍ରଶ୍ନର ମୀମାଂସା କରିନେଉଥିଲେ । ଠାକୁର କହୁଥିଲେ; ''ଦିନେ ସେମାନେ ପ୍ରଶ୍ନ କଲେ, 'ସଂସାରରେ ମନୁଷ୍ୟ କିପରି ରହିଲେ ତା'ର ଧର୍ମଲାଭ ହେବ ?' ତତ୍‌କ୍ଷଣାତ୍ ଦେଖିଲି, କେଉଁଠୁ ସହସା ଏକ ଢିଙ୍କିର ଚିତ୍ର ସମ୍ମୁଖରେ ଆସି ଉପସ୍ଥିତ ହେଲା । ଢିଙ୍କିରେ ଶସ୍ୟ କୁଟା ହେଉଛି ଏବଂ ଜଣେ ସନ୍ତର୍ପଣରେ ସେଥିରେ ଶସ୍ୟଗୁଡ଼ିକୁ ଠେଲି ଦେଉଛି, ଏହା ଦେଖି ବୁଝିଲି, 'ମା' ବୁଝାଇଦେଉଛନ୍ତି, ସେହିପରି ସତର୍କ ଭାବରେ ସଂସାରରେ ରହିବାକୁ ହେବ । ଢିଙ୍କିର ମୁଣ୍ଡ (ସମ୍ମୁଖଭାଗ) ସମ୍ମୁଖରେ ବସି ଯେ ଶସ୍ୟ ଠେଲି ଦେଉଛି, ତା'ର ଯେପରି ସର୍ବଦା ଦୃଷ୍ଟି ରହିଛି, ଯେପରିକି ତା' ହାତ ଉପରେ ଢିଙ୍କିର ମୂଷଳଟି ନ ପଡ଼େ, ସେହିପରି ସଂସାରର ପ୍ରତ୍ୟେକ କାର୍ଯ୍ୟ କରିବା ସମୟରେ ମନେ ରଖିବାକୁ ହେବ, ଏହା ମୋର ସଂସାର ବା ମୋର କାମ ନୁହେଁ, ତେବେ ହିଁ ବନ୍ଧନରେ ପଡ଼ି ଆହତ ଓ ବିନଷ୍ଟ ହେବ ନାହିଁ । ଢିଙ୍କିର ଛବି ଦେଖିବା ମାତ୍ରେ, ମା' ମନରେ ସେହି କଥାର ଉଦୟ କରାଇଦେଲେ ଏବଂ ସେମାନଙ୍କୁ ତାହା ହିଁ କହିଲି । ସେମାନେ ମଧ୍ୟ ତାହା ଶୁଣି ପରମ ପରିତୁଷ୍ଟ

ହେଲେ । ଲୋକଙ୍କ ସହିତ କଥା କହିବା ବେଳେ ଏହିପରି ଛବିସମୂହ ସମ୍ମୁଖରେ ଆସି ଉପସ୍ଥିତ ହୁଏ ।''

## ଠାକୁରଙ୍କର ଉପଦେଶ-ପ୍ରଣାଳୀର ବିଶେଷତ୍ୱ :

ଠାକୁରଙ୍କ ଉପଦେଶ ଦେବା ପ୍ରଣାଳୀରେ ବିଶେଷତ୍ୱ ଯେଉଁ ଲକ୍ଷିତ ହେଉଥିଲା, ତାହା ଏହି ଯେ—ସେ ବାଜେ କଥା କହି କେବେ ଶ୍ରୋତାଙ୍କର ମନ ବିଭ୍ରାନ୍ତ କରିଦେଉ ନ ଥିଲେ । ଜିଜ୍ଞାସୁ ବ୍ୟକ୍ତିଙ୍କର ପ୍ରଶ୍ନର ବିଷୟ ଏବଂ ଉଦ୍ଦେଶ୍ୟ ବୁଝି କେତେଗୋଟି ସିଦ୍ଧାନ୍ତ-ବାକ୍ୟରେ ତାହାର ଉତ୍ତର ପ୍ରଦାନ କରୁଥିଲେ ଏବଂ ସେକଥା ତାଙ୍କ ହୃଦୟଙ୍ଗମ କରାଇବା ପାଇଁ ପୂର୍ବୋକ୍ତଭାବରେ ହିଁ ଉପମାସ୍ୱରୂପ ଚିତ୍ରସକଳ ତାଙ୍କ ସମ୍ମୁଖରେ ଧାରଣ କରୁଥିଲେ । ଉପଦେଶ-ପ୍ରଣାଳୀର ଏହି ବିଶେଷତ୍ୱକୁ ଆମେ ସିଦ୍ଧାନ୍ତ ବାକ୍ୟର ପ୍ରୟୋଗ ବୋଲି କହୁଛୁ; କାରଣ ପଚରା ଯାଇଥିବା ବିଷୟ ସମ୍ବନ୍ଧରେ ସେ ଯାହା ମନରେ ଜ୍ଞାନରେ ସତ୍ୟ ବୋଲି ଉପଲବ୍ଧି କରୁଥିଲେ ତାହା ହିଁ କେବଳ କହୁଥିଲେ, ଏବଂ ଉକ୍ତ ବିଷୟର ଅନ୍ୟ ପ୍ରକାରର ମୀମାଂସା ଯେ ହୋଇପାରେ ନାହିଁ, ଏକଥା ସେ ମୁହଁରେ ନ କହିଲେ ମଧ୍ୟ ତାଙ୍କର ଅସଙ୍କୋଚ ବିଶ୍ୱାସରେ ତାହା ଶ୍ରୋତାଙ୍କ ମନରେ ଦୃଢ଼ ମୁଦ୍ରିତ ହୋଇଯାଉଥିଲା । ପୂର୍ବ ଶିକ୍ଷା ଓ ସଂସ୍କାରବଶତଃ ଯଦି କୌଣସି ଶ୍ରୋତା ତାଙ୍କର ସାଧନାଲବ୍ଧ ମୀମାଂସାଗୁଡ଼ିକୁ ଗ୍ରହଣ ନ କରି ବିରୁଦ୍ଧ ଯୁକ୍ତିତର୍କର ଅବତାରଣା କରେ, ତା'ହେଲେ ଅନେକ ଜାଗାରେ ସେ ''ମୁଁ ଯାହା ହୁଏ କହିଗଲି, ତୁମେମାନେ ଏହାର 'ଲାଞ୍ଜ-ମୁଣ୍ଡ' ବାଦ ଦେଇ ନିଅ'', ବୋଲି କହି ଚୁପ୍ ରହୁଥିଲେ । ଏହିପରି କେବେ ହେଲେ ସେ ଶ୍ରୋତାଙ୍କର ସ୍ୱାଧୀନତାରେ ହସ୍ତକ୍ଷେପପୂର୍ବକ କାହାର ଭାବଭଙ୍ଗ କରିବାକୁ ପ୍ରୟାସ କରୁ ନ ଥିଲେ । ଭଗବତ୍ ଇଚ୍ଛାରେ ଶ୍ରୋତା ଯେତେଦିନ ଉନ୍ନତ ଅବସ୍ଥାରେ ନ ପହଞ୍ଚିଛନ୍ତି, ସେତେଦିନ ପ୍ରଶ୍ନୋକ୍ତ ବିଷୟର ଯଥାର୍ଥ ସମାଧାନ ତାଙ୍କ ଦ୍ୱାରା ହୋଇପାରେ ନାହିଁ, ଏହିକଥା ଭାବି କ'ଣ ସେ ନିବୃତ୍ତ ହେଉଥିଲେ ? —ବୋଧହୁଏ ।

ପୁଣି ତାଙ୍କର ସିଦ୍ଧାନ୍ତ-ବାକ୍ୟଗୁଡ଼ିକ ହୃଦୟଙ୍ଗମ କରାଇବାକୁ ଠାକୁର ପୂର୍ବୋକ୍ତଭାବରେ କେବଳ ଉପମା ଓ ଚିତ୍ରସମୂହର ଉତ୍‌ଥାପନ କରି କ୍ଷାନ୍ତ ହେଉ ନ ଥିଲେ, କିନ୍ତୁ ପ୍ରଶ୍ନୋକ୍ତ ବିଷୟର ସେ ଯେଉଁ ମୀମାଂସା ପ୍ରଦାନ କରୁଛନ୍ତି, ଅନ୍ୟାନ୍ୟ ଲବ୍ଧପ୍ରତିଷ୍ଠିତ ସାଧକମାନେ ମଧ୍ୟ ସେସମ୍ବନ୍ଧରେ ସେହିପରି ମୀମାଂସା କରିଦେଇଛନ୍ତି, ଏବିଷୟ ସେମାନଙ୍କର ରଚିତ ସଙ୍ଗୀତ ଇତ୍ୟାଦି ଗାଇ ଏବଂ ବେଳେ ବେଳେ ଶାସ୍ତ୍ରୀୟ ଦୃଷ୍ଟାନ୍ତମାନ ଶ୍ରୋତାଙ୍କୁ ଶୁଣାଇଦେଉଥିଲେ । କହିବା ବାହୁଲ୍ୟ, ଏଥିରେ ଉକ୍ତ ମୀମାଂସା ସମ୍ବନ୍ଧରେ ତାଙ୍କର ମନରେ କିଛି ସନ୍ଦେହ

ରହୁ ନ ଥିଲା ଏବଂ ଏହି ଦୃଢ଼ୀଭୂତ ଧାରଣା ଅନୁଯାୟୀ ସେମାନେ ନିଜ ଜୀବନ ପରିଚାଳିତ କରିବାକୁ ପ୍ରବୃତ୍ତ ହେଉଥିଲେ ।

**ଉପଲବ୍ଧି–ରହିତ ବାକ୍ୟବିନ୍ୟାସରେ ଠାକୁରଙ୍କର ବିରକ୍ତି :**

ଆଉ ଗୋଟିଏ କଥା ଏଠାରେ କହିବା ଦରକାର । ଭକ୍ତି ଓ ଜ୍ଞାନ ଉଭୟ ମାର୍ଗର ଚରମରେ ହିଁ ସାଧକ ଉପାସ୍ୟ ସହିତ ନିଜର ଅଭେଦତ୍ୱ ଉପଲବ୍ଧି କରି ଅଦ୍ୱୈତ ବିଜ୍ଞାନରେ ପ୍ରତିଷ୍ଠିତ ହୁଅନ୍ତି, ଏହି କଥା ଠାକୁର ଆମକୁ ବାରମ୍ବାର କହିଯାଇଛନ୍ତି । ''ଶୁଦ୍ଧାଭକ୍ତି ଓ ଶୁଦ୍ଧଜ୍ଞାନ ଏକ (ପଦାର୍ଥ)''—''ସେଠାରେ (ଚରମ ଅବସ୍ଥାରେ) ସବୁ ଶିଆଳର 'ଗୋଟିଏ ଡାକ' (ଗୋଟିଏ ପ୍ରକାରର ଉପଲବ୍ଧି କଥା କହିବା)''—ଇତ୍ୟାଦି ତାଙ୍କର ଉକ୍ତିଗୁଡ଼ିକ ସେହି ବିଷୟରେ ପ୍ରମାଣ ସ୍ୱରୂପ ଉପସ୍ଥାପିତ ହୋଇପାରେ । ସେହିପରି ଅଦ୍ୱୈତବିଜ୍ଞାନକୁ ଚରମ ବୋଲି କହିଲେ ମଧ୍ୟ ସେ ରୂପରସାଦି ବିଷୟଭୋଗରେ ନିରନ୍ତର ବ୍ୟସ୍ତ ସଂସାରୀ ମାନବଙ୍କୁ ବିଶିଷ୍ଟାଦ୍ୱୈତ–ତତ୍ତ୍ୱର କଥା ହିଁ ସବୁବେଳେ ଉପଦେଶ ଦେଇଥାଆନ୍ତି ଏବଂ ବେଳେ ବେଳେ ଦ୍ୱୈତଭାବରେ ଈଶ୍ୱରଙ୍କଠାରେ ଭକ୍ତି କରିବା କଥା ମଧ୍ୟ କହିବାକୁ ଛାଡୁ ନ ଥିଲେ । ଭିତରେ ଈଶ୍ୱରଙ୍କଠାରେ ତାଦୃଶ ଅନୁରାଗ ଏବଂ ଉଚ୍ଚ ଆଧ୍ୟାତ୍ମିକ ଅବସ୍ଥା ସକଳର ଉପଲବ୍ଧି ନ ଥାଇ, ମୁହଁରେ ଅଦ୍ୱୈତ ବା ବିଶିଷ୍ଟାଦ୍ୱୈତର ଉଚ୍ଚ ଉଚ୍ଚ କଥାସବୁ ଉଚ୍ଚାରଣ କରି ଯୁକ୍ତିତର୍କ କରିବା ଲୋକମାନଙ୍କୁ ଦେଖିଲେ ତାଙ୍କର ଅତ୍ୟନ୍ତ ବିରକ୍ତି ଆସୁଥିଲା ଏବଂ ବେଳେ ବେଳେ ଅତି କଠୋର ବାକ୍ୟରେ ସେମାନଙ୍କର ସେହିପ୍ରକାର କାର୍ଯ୍ୟକୁ ନିନ୍ଦା କରିବାକୁ ସେ ସଙ୍କୁଚିତ ହେଉ ନ ଥିଲେ । ଆମମାନଙ୍କର ବନ୍ଧୁ ବୈକୁଣ୍ଠନାଥ ସାନ୍ୟାଲଙ୍କୁ ଦିନେ ସେ ପଚାରିଥିଲେ, ''ତୁମେ ପଞ୍ଚଦଶୀ ପଢ଼ିଛ ?'' ବୈକୁଣ୍ଠ କହିଲେ, ''ସେ କାହାର ନାମ ମହାଶୟ ମୁଁ ଜାଣେ ନାହିଁ ।'' ଏହା ଶୁଣି ସେ କହିଥିଲେ, ''ବଞ୍ଚିଗଲି, କେତେଜଣ ଆଧୁନିକ ପିଲା ଏସବୁ ପଢ଼ିଆସନ୍ତି; କିଛି କରିବେ ନାହିଁ, ଅଥଚ ମୋର ହାଡ଼ ଜଳାଇବେ ।''

ପୂର୍ବୋକ୍ତ କଥାଗୁଡ଼ିକ କହିବାର ପ୍ରୟୋଜନ ହେଉଛି, ଆଜି ଶ୍ରୀଯୁକ୍ତ ଜୟଗୋପାଳଙ୍କର ଘରେ ଠାକୁରଙ୍କୁ ଜଣେ ବ୍ୟକ୍ତି 'ସଂସାରରେ ଆମେ କିପରି ରହିଲେ ଈଶ୍ୱର–କୃପାର ଅଧିକାରୀ ହୋଇପାରିବୁ'—ଏହି ପ୍ରକାର ପ୍ରଶ୍ନ କରିଥିଲେ । ସେ ସେଥିରେ ବିଶିଷ୍ଟାଦ୍ୱୈତବାଦୀଙ୍କର ମତ ତାଙ୍କୁ ଉପଦେଶ କରିଥିଲେ ଏବଂ ତିନି ଚାରୋଟି ଶ୍ୟାମା ସଙ୍ଗୀତ ମଝିରେ ମଝିରେ ଗାଇ ସେହି କଥାର ଉତ୍ତର ଦେଇଥିଲେ । ଠାକୁରଙ୍କ କଥା ସଂକ୍ଷେପରେ ଆମେ ନିମ୍ନରେ ପ୍ରଦାନ କରୁଛୁ ।

## ସଂସାରରେ ରହି ଈଶ୍ୱରଙ୍କର ସାଧନା ସମ୍ବନ୍ଧରେ ଠାକୁରଙ୍କର ଉପଦେଶ :

ମଣିଷ ଯେତେଦିନ ସଂସାରକୁ 'ମୋର' ବୋଲି ଭାବି କାର୍ଯ୍ୟକରେ, ସେତେଦିନ ଏହା ଅନିତ୍ୟ ବୋଲି ବୋଧ କଲେ ମଧ୍ୟ ସେ ସେଥିରେ ଆବଦ୍ଧ ହୋଇ କଷ୍ଟ ଭୋଗ କରିଥାଏ ଏବଂ ଇଚ୍ଛା କଲେ ମଧ୍ୟ ଏଥିରୁ ନିଷ୍କୃତିର ବାଟ ଦେଖିପାରେ ନାହିଁ । ଏହା କହି ଠାକୁର ଗୀତ ଗାଇଲେ, ''ଏମନି ମହାମାୟାର ମାୟା ରେଖେଛେ କି କୁହକ କରେ; ବ୍ରହ୍ମା ବିଷ୍ଣୁ ଅଚୈତନ୍ୟ, ଜୀବେ କି ତା ଜାନ୍‌ତେ ପାରେ'' [ମହାମାୟା ମାୟାର କୁହୁକ ଜାଲ ଏପରି ବିସ୍ତାର କରି ରଖିଛନ୍ତି ଯେ, ସେଥିରେ ବ୍ରହ୍ମା, ବିଷ୍ଣୁଙ୍କ ଭଳି ଦେବତାମାନେ ମଧ୍ୟ ମୋହିତ ହୋଇଯାଆନ୍ତି; ସାଧାରଣ ଜୀବ କିପରି ତାହା ଜାଣିପାରିବ ?] ଇତ୍ୟାଦି । ଅତଏବ ଏହି ଅନିତ୍ୟ ସଂସାରକୁ ଭଗବାନଙ୍କ ସହିତ ଯୋଗକରି ନେଇ ପ୍ରତ୍ୟେକ କାର୍ଯ୍ୟ ଅନୁଷ୍ଠାନ କରିବାକୁ ହେବ ଗୋଟିଏ ହାତରେ ତାଙ୍କର ପାଦପଦ୍ମ ଧରି ଅନ୍ୟ ହାତରେ କାମ କରିବାକୁ ହେବ ଏବଂ ସର୍ବଦା ମନେ ରଖିବାକୁ ହେବ ଯେ, ସଂସାରର ସମସ୍ତ ବସ୍ତୁ ଓ ବ୍ୟକ୍ତି ତାଙ୍କର (ଈଶ୍ୱରଙ୍କର), ମୋର ନୁହେଁ । ସେହିପରି କଲେ ମାୟା-ମମତା ଇତ୍ୟାଦିରେ କଷ୍ଟ ପାଇବାକୁ ପଡ଼ିବ ନାହିଁ ଏବଂ ପୁଣି ଯାହା କିଛି କରୁଛି, ତାଙ୍କର କର୍ମ ହିଁ କରୁଛି, ଏପରି ଧାରଣାର ଉଦୟ ହୋଇ ମନ ତାଙ୍କ ଆଡ଼କୁ ହିଁ ଅଗ୍ରସର ହେବ । ପୂର୍ବୋକ୍ତ କଥାଗୁଡ଼ିକ ବୁଝାଇବା ପାଇଁ ଠାକୁର ଗାଇଲେ, ''ମନ ରେ କୃଷିକାଜ୍ ଜାନ ନା'' (ଏମନ ମାନବ ଜମିନ୍ ରଇଲୋ ପତିତ, ଆବାଦ କରଲେ ଫଲତୋ ସୋନା ।—ଅର୍ଥାତ୍ ରେ ମନ ତୁ ଚାଷ କରିବା ଜାଣି ନାହୁଁ । ଏପରି ମାନବଶରୀର ରୂପୀ ଜମି ପଡ଼ିଆ ପଡ଼ିଲା । ଯଦି ତୁ ଏହାକୁ ଚାଷ କରିଥାନ୍ତୁ, ତାହେଲେ ସୁନା ଫଳିଥାନ୍ତା ।) ଇତ୍ୟାଦି । ଗୀତ ସରିବାରୁ ପୁଣି କହିବାକୁ ଲାଗିଲେ, ''ସେହିପରି ଭାବରେ ଈଶ୍ୱରଙ୍କୁ ଆଶ୍ରୟ କରି ସଂସାର କଲେ କ୍ରମେ ଧାରଣା ହେବ, ସଂସାରର ସମସ୍ତ ବସ୍ତୁ ଓ ବ୍ୟକ୍ତି ତାଙ୍କର ହିଁ (ଈଶ୍ୱରଙ୍କର) ଅଂଶ । ସେତେବେଳେ ସାଧକ ପିତା-ମାତାଙ୍କୁ ଈଶ୍ୱର-ଈଶ୍ୱରୀଜ୍ଞାନରେ ସେବା କରିବେ, ପୁତ୍ର-କନ୍ୟାଙ୍କ ଭିତରେ ବାଳଗୋପାଳ ଓ ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରକାଶ ଦେଖିବେ, ଅନ୍ୟ ସମସ୍ତଙ୍କୁ ନାରାୟଣଙ୍କର ଅଂଶ ଜ୍ଞାନ କରି ଶ୍ରଦ୍ଧାଭକ୍ତିର ସହିତ ବ୍ୟବହାର କରିବେ । ସେହିପରି ଭାବ ନେଇ ଯିଏ ସଂସାର କରନ୍ତି, ସେ ହିଁ ଆଦର୍ଶ-ସଂସାରୀ ଏବଂ ତାଙ୍କ ମନରୁ ମୃତ୍ୟୁଭୟ ସମ୍ପୂର୍ଣ୍ଣ ଅପସରି ଯାଏ । ଏପରି ବ୍ୟକ୍ତି ବିରଳ ହେଲେ ମଧ୍ୟ ଯେ ଦେଖିବାକୁ ମିଳନ୍ତି ନାହିଁ, ତାହା ନୁହେଁ ।'' ପରେ, ସେହି ପ୍ରକାର ଆଦର୍ଶରେ ଉପନୀତ ହେବାର ଉପାୟ ନିର୍ଦ୍ଦେଶ କରି ଠାକୁର କହିଲେ, ''ବିବେକ-ବୁଦ୍ଧିକୁ ଆଶ୍ରୟ କରି ସମସ୍ତ କାର୍ଯ୍ୟ ଅନୁଷ୍ଠାନ କରିବାକୁ ହୁଏ ଏବଂ ମଝିରେ ମଝିରେ ସଂସାରର କୋଳାହଳରୁ ଦୂରକୁ

ଯାଇ ସଂଯତ ଚିତ୍ତରେ ସାଧନ-ଭଜନରେ ପ୍ରବୃତ୍ତ ହୋଇ ଈଶ୍ୱରଙ୍କୁ ଉପଲବ୍ଧି କରିବା ପାଇଁ ଚେଷ୍ଟା କରିବାକୁ ପଡ଼େ; ତେବେ ହିଁ ମାନବ ପୂର୍ବୋକ୍ତ ଆଦର୍ଶକୁ ଜୀବନରେ ପରିଣତ କରିପାରେ ।''[୧] ସେହି ପ୍ରକାରରେ ଉପାୟ ନିର୍ଦ୍ଦେଶ କରି ଠାକୁର ନିମ୍ନଲିଖିତ ରାମପ୍ରସାଦଙ୍କ ଗୀତଟି ଗାଇଥିଲେ, 'ଆୟ ମନ ବେଡ଼ାତେ ଯାବି, କାଲୀକଲ୍ପତରୁମୂଲେ ଚାରି ଫଲ କୁଡ଼ାୟେ ପାବି ।' (ରେ ମନ, ବୁଲିବାକୁ ଚାଲ, କାଳୀରୂପକ କଳ୍ପତରୁ ମୂଳରେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଚତୁର୍ବର୍ଗ ଫଳ ପାଇବୁ ।) ପୁଣି, 'ବିବେକ-ବୁଦ୍ଧି' କଥାଟି କହି ଠାକୁର ଏହା କାହାକୁ କୁହାଯାଏ ସେକଥା ବୁଝାଇ କହିଲେ ଯେ, ସେହି ପ୍ରକାର ବୁଦ୍ଧିର ସହାୟରେ ସାଧକ ଈଶ୍ୱରଙ୍କୁ ନିତ୍ୟ ଓ ସାରବସ୍ତୁ ବୋଲି ଗ୍ରହଣ କରନ୍ତି ଏବଂ ରୂପରସାଦିର ସମଷ୍ଟିଭୂତ ଜଗତକୁ ଅନିତ୍ୟ ଓ ଅସାର ବୋଲି ଜାଣି ପରିତ୍ୟାଗ କରନ୍ତି । ସେହି ପ୍ରକାରରେ ନିତ୍ୟବସ୍ତୁ ଈଶ୍ୱରଙ୍କୁ ଜାଣିବା ପରେ କିନ୍ତୁ ସେହି ବୁଦ୍ଧି ହିଁ ତାକୁ ବୁଝାଇଦିଏ ଯେ, ଯିଏ ନିତ୍ୟ ସେ ହିଁ ଲୀଳାରେ ଜୀବ ଓ ଜଗତରୂପକ ନାନା ମୂର୍ତ୍ତି ଧାରଣ କରିଛନ୍ତି ଏବଂ ସେହିପରି ବୁଝି ସାଧକ ଶେଷରେ ଈଶ୍ୱରଙ୍କୁ ନିତ୍ୟ ଓ ଲୀଳାମୟ ଉଭୟଭାବରେ ଦେଖିବାକୁ ସମର୍ଥ ହୁଏ ।

**କୀର୍ତ୍ତନାନନ୍ଦ :**

ଏହାପରେ ଆଚାର୍ଯ୍ୟ ଚିରଞ୍ଜୀବ ଏକତାରା ବଜାଇ ''ମୋତେ ଦେ ମା ପାଗଲ କରି'' ସଙ୍ଗୀତଟି ଗାଇବାକୁ ଲାଗିଲେ ଏବଂ ସମସ୍ତେ ତାଙ୍କୁ ଅନୁସରଣ କରି ତାହା ଆବୃତ୍ତି କରିବାକୁ ଲାଗିଲେ । କୀର୍ତ୍ତନ ଆରମ୍ଭ ହେବାରୁ ଠାକୁର ଭାବାବିଷ୍ଟ ହୋଇ ଦଣ୍ଡାୟମାନ ହେଲେ । ସଙ୍ଗେ ସଙ୍ଗେ ଅନ୍ୟମାନେ ମଧ୍ୟ ଠାକୁରଙ୍କୁ ଘେରି ଠିଆ ହୋଇ କୀର୍ତ୍ତନ ଓ ନୃତ୍ୟ କରିବାକୁ ଲାଗିଲେ । କ୍ରମେ ସେହି ଗୀତଟି ଗାଇ ସାରି ଶ୍ରୀଯୁକ୍ତ ଚିରଞ୍ଜୀବ ''ଚିଦାକାଶେ ହଲ ପୂର୍ଣ୍ଣ ପ୍ରେମଚନ୍ଦ୍ରୋଦୟ ରେ'' (ଚିଦାକାଶରେ ପ୍ରେମରୂପକ ପୂର୍ଣ୍ଣଚନ୍ଦ୍ରର ଉଦୟ ହେଲା) ଗୀତଟି ଆରମ୍ଭ କଲେ ଏବଂ ଅନେକ ସମୟ ପର୍ଯ୍ୟନ୍ତ ଉକ୍ତ ଗୀତଟି ଗାଇ ଗାଇ ନୃତ୍ୟ କରିବା ପରେ, ଈଶ୍ୱର ଓ ତାଙ୍କର ଭକ୍ତବୃନ୍ଦଙ୍କୁ ପ୍ରଣାମ କରି ସେଦିନର କୀର୍ତ୍ତନ ଶାନ୍ତ ହେଲା ଓ ପରେ ସମସ୍ତେ ଠାକୁରଙ୍କର ପଦଧୂଳି ଗ୍ରହଣ କରି ଉପବିଷ୍ଟ ହେଲେ । ସେହି ଦିନ ମଧ୍ୟ ଠାକୁର ମଧୁର ଭାବରେ ନୃତ୍ୟ କରିଥିଲେ, କିନ୍ତୁ ଶ୍ରୀଯୁକ୍ତ ମଣିମୋହନଙ୍କ ଘରେ ତାଙ୍କର ଯେଉଁ ପ୍ରକାର ଅନେକ ସମୟ ଗଭୀର ଭାବାବେଶ ଦେଖିଥିଲି, ଆଜି ଏଠାରେ ସେତେଟା ହୋଇ ନାହିଁ । କୀର୍ତ୍ତନ ପରେ ଉପବେଶନ କରି ଠାକୁର

---

୧. ଠାକୁରଙ୍କର ସେଦିନର କଥାର ସାରସଂକ୍ଷେପର କିୟଦଂଶ ପାଇଁ ଆମେ ଶ୍ରଦ୍ଧାସ୍ପଦ 'ଶ୍ରୀଶ୍ରୀରାମକୃଷ୍ଣ କଥାମୃତ'କାରଙ୍କ ନିକଟରେ ଋଣୀ ରହିଲୁ ।

ଶ୍ରୀଯୁକ୍ତ ଚିରଞ୍ଜୀବଙ୍କୁ କହିଥିଲେ, ''ତୁମର ଏହି ଗୀତଟା[୧] ('ଚିଦାକାଶେ' ହଲ ଇତ୍ୟାଦି) ଯେତେବେଳେ ପ୍ରଥମେ ଶୁଣିଥିଲି ସେତେବେଳେ କେହି ଏହା ଗାଇବା ମାତ୍ରେ (ଭାବାବିଷ୍ଟ ହୋଇ) ଦେଖୁଥିଲି, ଯେପରି ଏଡ଼େ ବଡ଼ ଜୀବନ୍ତ ପୂର୍ଣ୍ଣମୀର ଚନ୍ଦ୍ର ଉଦୟ ହେଉଅଛି !''

ଏହାପରେ ଶ୍ରୀଯୁକ୍ତ କେଶବଙ୍କର ରୋଗ ସମ୍ବନ୍ଧରେ ଶ୍ରୀଯୁକ୍ତ ଜୟଗୋପାଳ ଓ ଚିରଞ୍ଜୀବ ପରସ୍ପର କଥାବାର୍ତ୍ତା ହେବାକୁ ଲାଗିଲେ । ଆମର ସ୍ମରଣ ଅଛି, ଶ୍ରୀଯୁକ୍ତ ରାଖାଲଙ୍କର[୨] ଶରୀର ସମ୍ପ୍ରତି ଖରାପ ଅଛି, ଏହି କଥା ଠାକୁର ଏହି ସମୟରେ ଜଣେ ବ୍ୟକ୍ତିଙ୍କୁ କହିଥିଲେ । ଶ୍ରୀଯୁକ୍ତ ଜୟଗୋପାଳ ଆନୁଷ୍ଠାନିକ ବ୍ରାହ୍ମ

---

୧. ଚିଦାକାଶେ ହଲ ପୂର୍ଣ୍ଣ ପ୍ରେମ-ଚନ୍ଦ୍ରୋଦୟ ରେ
(ଜୟ ଦୟାମୟ ! ଜୟ ଦୟାମୟ ! ଜୟ ଦୟାମୟ !)
ଉଥଲିଲ ପ୍ରେମସିନ୍ଧୁ, କି ଆନନ୍ଦମୟ ।
(ଆହା) ଚାରିଦିକେ ଝଲମଲ, କରେ ଭକ୍ତ-ଗ୍ରହଦଲ,
ଭକ୍ତସଙ୍ଗେ ଭକ୍ତସଖା ଲୀଲାରସମୟ । (ହରି)
ସ୍ୱର୍ଗେର ଦୁୟାର ଖୁଲି, ଆନନ୍ଦ-ଲହରୀ ତୁଲି,
ନବ-ବିଧାନ ବସନ୍ତ-ସମୀରଣ ବୟ;
(କିବା) ଛୁଟେ ତାହେ ମନ୍ଦ ମନ୍ଦ, ଲୀଲାରସ ପ୍ରେମଗନ୍ଧ,
ଘ୍ରାଣେ ଯୋଗୀବୃନ୍ଦ ଯୋଗାନନ୍ଦେ ମତ୍ତ ହୟ ।
ଭବସିନ୍ଧୁ ଜଲେ, 'ବିଧାନ' କମଲେ ।
ଆନନ୍ଦମୟୀ ବିରାଜେ;
(କିବା) ଆବେଶେ ଆକୁଲ, ଭକ୍ତ-ଅଲିକୁଲ,
ପିୟେ ସୁଧା ତାର ମାଝେ ।
ଦେଖ ଦେଖ ମାୟେର ପ୍ରସନ୍ନ ବଦନ, ଭୁବନମୋହନ ଚିତ୍ତବିନୋଦନ,
ପଦତଲେ ଦଲେ ଦଲେ ସାଧୁଗଣ, ନାଚେ ଗାୟ ପ୍ରେମେ ହଇୟା ମଗନ;
(କିବା) ଅପରୂପ ଆହା ମରି ମରି, ଜୁଡ଼ାଇଲ ପ୍ରାଣ ଦରଶନ କରି,
ପ୍ରେମଦାସେ ବଲେ ସବେ ପାୟେ ଧରି, ଗାଓ ଭାଇ ମାୟେର ଜୟ (ରେ) ।

[ଅର୍ଥାତ୍ :— ଚିଦାକାଶରେ ପ୍ରେମରୂପୀ ପୂର୍ଣ୍ଣଚନ୍ଦ୍ରର ଉଦୟ ହେଲା । ଜୟ ଦୟାମୟ, ଜୟ ଦୟାମୟ, ଜୟ ଦୟାମୟ ! କିପରି ଆନନ୍ଦମୟ ପ୍ରେମସିନ୍ଧୁ ଉଦ୍‌ବେଳିତ ହେଲା ? ଚତୁର୍ଦ୍ଦିଗରେ ଭକ୍ତଗଣ ଚମକୁଛନ୍ତି । ଭକ୍ତଙ୍କ ସାଥିରେ ଲୀଳାରସମୟ ଭକ୍ତସଖା ହରି ବିରାଜମାନ କରୁଛନ୍ତି । ସ୍ୱର୍ଗର ଦ୍ୱାର ଖୋଲି ଆନନ୍ଦର ଲହରୀ ଉଠାଇ ନବବିଧାନରୂପକ ବସନ୍ତବାୟୁ ବହିବାକୁ ଲାଗିଲା । ସେଥିରୁ ଲୀଳାରସ ପ୍ରେମଗନ୍ଧ ଧୀରେ ଧୀରେ ସ୍ଫୁରିତ ହେଉଛି । ତାହା ଆଘ୍ରାଣ କରି ଯୋଗୀଗଣ ଯୋଗାନନ୍ଦରେ ମତ୍ତ ହୋଇଛନ୍ତି । ସଂସାର ସିନ୍ଧୁର ଜଳରେ 'ବିଧାନ' ରୂପକ କମଳରେ ଆନନ୍ଦମୟୀ ବିରାଜମାନ ଅଛନ୍ତି । ଭକ୍ତ ରୂପକ ଭ୍ରମରସମୂହ ଭାବାବେଶରେ ଆକୁଳ ହୋଇ ସେଥିରୁ ସୁଧା ପାନ କରୁଛନ୍ତି । ଦେଖ, ଦେଖ, ମା'ର କିପରି ଭୁବନମୋହନ ଚିତ୍ତବିନୋଦକାରୀ ପ୍ରସନ୍ନ ବଦନ ଶୋଭାପାଉଛି ! ତାଙ୍କ ଶ୍ରୀଚରଣ ତଳେ ସାଧୁଗଣ ପ୍ରେମରେ ମଗ୍ନ ହୋଇ ନାଚଗୀତ କରୁଛନ୍ତି । କିପରି ଅପୂର୍ବ ରୂପ; ତାହା ଦେଖି ଚିତ୍ତ ଶାନ୍ତ ହେଲା । ଭକ୍ତକବି ପ୍ରେମଦାସ ସମସ୍ତଙ୍କ ପାଦ ଧରି କହୁଛନ୍ତି —ଭାଇ, ମା'ଙ୍କର ଜୟଗାନ କର ।]

୨. ସ୍ୱାମୀ ବ୍ରହ୍ମାନନ୍ଦ ନାମରେ ଏବେ ଯିଏ ଶ୍ରୀରାମକୃଷ୍ଣଭକ୍ତମଣ୍ଡଳୀରେ ପରିଚିତ ଅଛନ୍ତି ।

ଥିଲେ କି ନାହିଁ କହିପାରିବି ନାହିଁ, କିନ୍ତୁ ବ୍ରାହ୍ମନେତା କେଶବଚନ୍ଦ୍ରଙ୍କୁ ସେ ବିଶେଷ ଶ୍ରଦ୍ଧା-ଭକ୍ତି କରୁଥିଲେ ଏବଂ ବ୍ରାହ୍ମସଂଘର ସମସ୍ତଙ୍କ ପ୍ରତି ବିଶେଷ ପ୍ରୀତିସମ୍ପନ୍ନ ଥିଲେ, ଏଥିରେ ସନ୍ଦେହ ନ ଥିଲା । କଲିକତାର ନିକଟବର୍ତ୍ତୀ ବେଲଘରିଆ ନାମକ ସ୍ଥାନରେ ତାଙ୍କର ବଗିଚାକୁ ଶ୍ରୀଯୁକ୍ତ କେଶବ ବେଳେ ବେଳେ ସଦଳବଳ ଯାଇ ସାଧନ-ଭଜନରେ କାଳାତିପାତ କରୁଥିଲେ ଏବଂ ସେହି ବଗିଚାରେ ଠାକୁରଙ୍କ ସହିତ ପ୍ରଥମ ମିଳିତ ହୋଇ ତାଙ୍କର ଜୀବନରେ ଆଧ୍ୟାତ୍ମିକତା ସମୟାନୁକ୍ରମେ ଗଭୀର ଭାବ ଧାରଣ କରି ସେଥିରେ ନବବିଧାନରୂପକ ସୁରଭି କୁସୁମ ପ୍ରସ୍ଫୁଟିତ ହୋଇଥିଲା । ଜୟଗୋପାଳ ମଧ୍ୟ ସେହି ଦିନଠାରୁ ଠାକୁରଙ୍କ ପ୍ରତି ବିଶେଷ ଶ୍ରଦ୍ଧାବାନ ହୋଇଉଠିଥିଲେ ଏବଂ କେତେବେଳେ ଦକ୍ଷିଣେଶ୍ୱରରେ ତାଙ୍କ ନିକଟକୁ ଯାଇ, କେତେବେଳେ ବା ତାଙ୍କୁ ନିଜ ଘରକୁ ଆଣି ଧର୍ମାଳାପରେ ପରମ ଆନନ୍ଦ ଅନୁଭବ କରୁଥିଲେ । ଆମେ ଶୁଣିଛୁ, ଠାକୁରଙ୍କର କଲିକତା ଆସିବାର ଗାଡ଼ି ଭଡ଼ାର ଅନେକାଂଶ ଏକ ସମୟରେ ଶ୍ରୀଯୁକ୍ତ ଜୟଗୋପାଳ ବହନ କରୁଥିଲେ । ତାଙ୍କ ପରିବାରସ୍ଥ ସମସ୍ତେ ଠାକୁରଙ୍କ ପ୍ରତି ବିଶେଷ ଶ୍ରଦ୍ଧାସମ୍ପନ୍ନ ଥିଲେ ।

ଏହାପରେ ରାତି ଅଧିକ ହୋଇଛି ଜାଣି ଆମେ ଠାକୁରଙ୍କ ନିକଟରୁ ବିଦାୟ ଗ୍ରହଣ କରି ସେଦିନ ଗୃହାଭିମୁଖେ ପ୍ରସ୍ଥାନ କରିଥିଲୁ ।

# ଦ୍ୱିତୀୟ ଅଧ୍ୟାୟ

## ପୂର୍ବ-ପରିଦୃଷ୍ଟ ଭକ୍ତଗଣଙ୍କର ଠାକୁରଙ୍କ ନିକଟକୁ ଆଗମନ

### ବ୍ରାହ୍ମସମାଜ ନିକଟରୁ ଠାକୁର ମଧ କିଛି ଶିଖିଥିଲେ :

ଭାରତବର୍ଷୀୟ ବ୍ରାହ୍ମସମାଜର ପ୍ରଧାନ ଆଚାର୍ଯ୍ୟ କେଶବଚନ୍ଦ୍ରଙ୍କଠାରୁ ଆରମ୍ଭ କରି ବିଜୟକୃଷ୍ଣ, ପ୍ରତାପଚନ୍ଦ୍ର, ଶିବନାଥ, ଚିରଞ୍ଜୀବ, ଅମୃତଲାଲ, ଗୌର-ଗୋବିନ୍ଦ ପ୍ରଭୃତି ନେତାମାନେ ଠାକୁରଙ୍କର ପୁଣ୍ୟଦର୍ଶନ ଓ ସଙ୍ଗଲାଭରେ ସ୍ୱଧର୍ମନିଷ୍ଠା ଓ ଈଶ୍ୱରାର୍ଥେ ସର୍ବସ୍ୱତ୍ୟାଗରୂପକ ଆଦର୍ଶର ମହତ୍ତ୍ୱ ବିଶେଷ ଭାବରେ ହୃଦୟଙ୍ଗମ କରି କେତେଦୂର ଉପକୃତ ହୋଇଥିଲେ, ତାହା ଆମେ ପାଠକଙ୍କୁ ଏହାପୂର୍ବରୁ ଅନେକ କହିଛୁ । ଏବେ ପ୍ରଶ୍ନ ଉଠେ, କେଶବ ପ୍ରଭୃତି ବ୍ରାହ୍ମଗଣଙ୍କର ସଂସର୍ଗରେ ଆସି ଅପରୋକ୍ଷ-ବିଜ୍ଞାନସମ୍ପନ୍ନ, ଭାବମୁଖରେ ଅବସ୍ଥିତ ଠାକୁର କ'ଣ କିଛି ଶିକ୍ଷା ଲାଭ କରିଥିଲେ ? ଶ୍ରୀରାମକୃଷ୍ଣଭକ୍ତବୃନ୍ଦଙ୍କ ମଧ୍ୟରୁ ଅନେକେ ଏହି କଥାର ନାସ୍ତିବାଚକ ଶବ୍ଦ ଉଚ୍ଚାରଣ କରିବାରେ କିଛିମାତ୍ର ଇତସ୍ତତଃ କରିବେ ନାହିଁ । କିନ୍ତୁ ଦେଖିବାକୁ ମିଳେ, ସଂସାରରେ ସର୍ବତ୍ର ଆଦାନପ୍ରଦାନର ନିୟମ ଚିର-ବିଦ୍ୟମାନ । ଏକାନ୍ତ ଅନଭିଜ୍ଞ ସରଳମତି ବାଳକକୁ ଶିକ୍ଷା ପ୍ରଦାନ କରିବାକୁ ଅଗ୍ରସର ହୋଇ କିପରି ଭାବରେ ଉପଦେଶ ଦେଲେ ତାର ବୁଦ୍ଧିବୃତ୍ତି ଉପଦିଷ୍ଟ ବିଷୟ ଶୀଘ୍ର ଧାରଣା କରିପାରିବ, ତା'ର ପୂର୍ବସଂସ୍କାରସମୂହ ସେହି ବିଷୟ ହୃଦୟଙ୍ଗମ କରିବା ପଥରେ କେତେଦୂର ସହାୟ ବା ଅନ୍ତରାୟ ହେବ, ଏବଂ ସେସମସ୍ତର ଦୂରୀକରଣ ବା କିପରି ଭାବରେ ସମ୍ଭବ ଇତ୍ୟାଦି ନାନା ବିଷୟ ଆମେ ଶିକ୍ଷା କରିଥାଉ । ଅତଏବ ପାଶ୍ଚାତ୍ୟଭାବ ଓ ଶିକ୍ଷାରୂପକ ମୂଳଦୁଆ ଉପରେ ପ୍ରତିଷ୍ଠିତ ବ୍ରାହ୍ମ ସମାଜର ସଂସ୍ପର୍ଶରେ ଆସି ଠାକୁର ଯେ କିଛି ଶିକ୍ଷା କରି ନ ଥିଲେ, ଏହା କହିବା ନିଃସଂଶୟ ଯୁକ୍ତିସଙ୍ଗତ ନୁହେଁ । ଆମମାନଙ୍କର ଧାରଣା ସେଥିପାଇଁ ସମ୍ପୂର୍ଣ୍ଣ ଅନ୍ୟ ପ୍ରକାର । ଆମେ କହୁ, ବ୍ରାହ୍ମସମାଜ ଓ ସଂଘକୁ ନିଜ ଅଲୌକିକ ସାଧନଲବ୍ଧ ଭାବ ଓ ଆଧ୍ୟାତ୍ମିକ ପ୍ରତ୍ୟକ୍ଷସମୂହ ପ୍ରଦାନ କରିବାକୁ ଯାଇ ଠାକୁର ଅନେକ କଥା ସ୍ୱୟଂ ଶିକ୍ଷା କରିଥିଲେ । ଅତଏବ ଏହା ଫଳରେ ସେ କେଉଁ କେଉଁ ବିଷୟରେ ଶିକ୍ଷା ଲାଭ କରିଥିଲେ, ସେବିଷୟରେ କିଞ୍ଚିତ୍ ଆଲୋଚନା କରିବା ଏଠାରେ କର୍ତ୍ତବ୍ୟ ।

### ପାଶ୍ଚାତ୍ୟ ଭାବ ସାହାଯ୍ୟରେ ଭାରତବାସୀଙ୍କର ଜୀବନ କେତେଦୂର ପରିବର୍ତ୍ତିତ ହେଉଅଛି ତା'ର ପରିଚୟପ୍ରାପ୍ତି :

ଆମେ ଏହାପୂର୍ବରୁ ଦେଖିଛୁ, କେଶବପ୍ରମୁଖ ବ୍ରାହ୍ମମାନଙ୍କର ସଂସର୍ଗରେ ଆସିବା ପୂର୍ବରୁ ଠାକୁର ପାଶ୍ଚାତ୍ୟଭାବ ଓ ଶିକ୍ଷାର ପ୍ରଭାବଠାରୁ ବହୁଦୂରରେ ନିଜର

ଜୀବନଯାପନ କରୁଥିଲେ । ପୁଣ୍ୟବତୀ ରାଣୀ ରାସମଣିଙ୍କର ଜ୍ୱାଇଁ ମଥୁରାନାଥଙ୍କ କଥା ଛାଡ଼ିଦେଲେ ତାଙ୍କ ନିକଟକୁ ଏପର୍ଯ୍ୟନ୍ତ ଯେତେ ଲୋକ ଆସିଥିଲେ, ସେମାନଙ୍କ ପ୍ରତ୍ୟେକଙ୍କୁ ହିଁ ସେ ସକାମ ପ୍ରବୃତ୍ତିମାର୍ଗରେ କିମ୍ବା ଭାରତର ସନାତନ 'ତ୍ୟାଗେନୈକେ ଅମୃତତ୍ୱମାନଶୁଃ'-ରୂପକ ଆଦର୍ଶ ଅବଲମ୍ବନରେ ଜୀବନ ପରିଚାଳିତ କରିବାକୁ ଯଥାସାଧ୍ୟ ସଚେଷ୍ଟ ଦେଖିଥିଲେ । ପାଶ୍ଚାତ୍ୟଭାବରେ ଶିକ୍ଷିତ ମଥୁରାନାଥଙ୍କୁ କିଛିଟା ଭିନ୍ନପ୍ରକୃତିସମ୍ପନ୍ନ ଦେଖିବାକୁ ପାଇଥିଲେ ମଧ୍ୟ ଉକ୍ତ ଭାବରେ ଶିକ୍ଷିତ ପ୍ରତ୍ୟେକ ଭାରତବାସୀଙ୍କ ଜୀବନ ହିଁ ଯେ ସେହିପ୍ରକାର ବିପରୀତ ବର୍ଣ୍ଣରେ ରଞ୍ଜିତ ହୋଇଅଛି, ଏକଥା ଧାରଣା କରିବାକୁ ତାଙ୍କର ଅବସର ହୋଇ ନ ଥିଲା । କାରଣ, ତାହାଙ୍କର ପୁଣ୍ୟ-ସଙ୍ଗଲାଭରେ ମଥୁରାନାଥଙ୍କର ପ୍ରକୃତି ସ୍ୱଳ୍ପକାଳ ମଧ୍ୟରେ ହିଁ ପରିବର୍ତ୍ତିତ ହେବାରୁ ସେହି ବିଷୟରେ ଚିନ୍ତା କରିବାକୁ ତାଙ୍କର ଆବଶ୍ୟକତା ହୋଇ ନ ଥିଲା । ଅତଏବ ବ୍ରାହ୍ମମାନଙ୍କର ସଂସର୍ଗରେ ଆସି ଏବଂ ଧର୍ମଲାଭରେ ସଚେଷ୍ଟ ହୋଇଥିଲେ ମଧ୍ୟ, ଭାରତର ପ୍ରାଚୀନ ତ୍ୟାଗ ଆଦର୍ଶରୁ ସେମାନଙ୍କୁ ବିଚ୍ୟୁତ ଦେଖି ହିଁ ତାଙ୍କ ମନ ତାହାର କାରଣ ଅନୁସନ୍ଧାନରେ ପ୍ରବୃତ୍ତ ହୋଇଥିଲା, ଏବଂ ପାଶ୍ଚାତ୍ୟର ଶିକ୍ଷା-ଦୀକ୍ଷା ତତ୍କାଳୀନ ଭାରତବାସୀଙ୍କ ଜୀବନରେ କିପରି ବିପରୀତ ଭାବରାଶି ଆନୟନ କରୁଅଛି, ସେବିଷୟରେ ପ୍ରଥମ ପରିଚୟ ପ୍ରାପ୍ତ ହୋଇଥିଲା ।

**ପାଶ୍ଚାତ୍ୟ ମନୀଷିଗଣଙ୍କ ଶିକ୍ଷା ସହିତ ନ ମିଳାଇ ଏମାନେ ଭାରତର ଋଷିମାନଙ୍କର ପ୍ରତ୍ୟକ୍ଷସମୂହ ଗ୍ରହଣ କରିବେ ନାହିଁ :**

ଠାକୁର ବୋଧହୁଏ ପ୍ରଥମେ ଭାବିଥିଲେ, ତାଙ୍କର ଜୀବନ୍ତ ଓ ସାକ୍ଷାତ-ଉପଲବ୍ଧ ଧର୍ମଭାବସମୂହର ପରିଚୟ ପାଇ କେଶବପ୍ରମୁଖ ବ୍ରାହ୍ମଗଣ ସ୍ୱଳ୍ପକାଳରେ ହିଁ ତାହା ସମ୍ପୂର୍ଣ୍ଣରୂପେ ଗ୍ରହଣ କରିବେ । କିନ୍ତୁ ଦିନ ପରେ ଦିନ ଯେତେ ଯିବାକୁ ଲାଗିଲା ଏବଂ ତାଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ହୋଇ ମଧ୍ୟ ଯେତେବେଳେ ସେମାନେ ତାଙ୍କର ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ ଅତିକ୍ରମ କରି ତାଙ୍କର ଆଧ୍ୟାତ୍ମିକ ପ୍ରତ୍ୟକ୍ଷମାନଙ୍କରେ ସମ୍ପୂର୍ଣ୍ଣ ବିଶ୍ୱାସୀ ହୋଇପାରିଲେ ନାହିଁ, ସେତେବେଳେ ତାଙ୍କର ହୃଦୟଙ୍ଗମ ହେଲା, ଉକ୍ତ ପ୍ରଭାବ ସେମାନଙ୍କ ମନରେ କେତେଦୂର ବଦ୍ଧମୂଳ ହୋଇଯାଇଛି । ସେତେବେଳେ ହିଁ ସେ ବୁଝିପାରିଲେ, ପାଶ୍ଚାତ୍ୟର ଚିନ୍ତାଶୀଳ ମନୀଷିଗଣ ଏମାନଙ୍କର ଅନ୍ତରରେ ଗୁରୁଙ୍କ ସ୍ଥାନ ଚିରକାଳ ପାଇଁ ଅଧିକାର କରିବସିଛନ୍ତି ଏବଂ ସେମାନଙ୍କର ଭାବ ଓ କଥା ସହିତ ନ ମିଳାଇ ଏମାନେ ଭାରତର ଆପ୍ତକାମ ଋଷିମାନଙ୍କର ପ୍ରତ୍ୟକ୍ଷସକଳ କେବେ ହେଲେ ଗ୍ରହଣ କରିପାରିବେ ନାହିଁ । ସେଥିପାଇଁ ହିଁ ଠାକୁର ସେମାନଙ୍କୁ ଉପଦେଶ ଦେବା ପରେ କହୁଥିଲେ, ‘‘ମୁଁ ଯାହା ହୁଏ କହିଗଲି, ତୁମେ ଏହାର ‘ଲାଞ୍ଜ-ମୁଣ୍ଡ’ ବାଦ ଦେଇ

ଗ୍ରହଣ କର ।'' ଏମାନଙ୍କର ଭାବ ବିରୁଦ୍ଧରେ ନ ଯାଇ ସେ ସେମାନଙ୍କୁ ଏପରି ସ୍ୱାଧୀନତା ପ୍ରଦାନ କରିବାରୁ ହିଁ ସେମାନେ ତାଙ୍କର ଭାବ ଓ ପ୍ରତ୍ୟକ୍ଷଗୁଡ଼ିକୁ ଯଥାସମ୍ଭବ ଗ୍ରହଣ କରିବାକୁ ସକ୍ଷମ ହୋଇଥିଲେ, ଏହା କହିବା ବାହୁଲ୍ୟ ମାତ୍ର ।

## ଜଗଦମ୍ବାଙ୍କର ଇଚ୍ଛାରେ ଏପରି ହୋଇଥିବା ଜାଣି ଠାକୁରଙ୍କର ନିଶ୍ଚିନ୍ତତା :

ଭାରତର ଋଷିମାନଙ୍କର ସମଷ୍ଟୀଭୂତ ଭାବଘନମୂର୍ତ୍ତି ଠାକୁର କିନ୍ତୁ ପୂର୍ବୋକ୍ତ ଘଟଣାରେ କିଛିମାତ୍ର ବିଚଳିତ ହୋଇ ନ ଥିଲେ । କାରଣ, ଶ୍ରୀଶ୍ରୀଜଗଦମ୍ବାଙ୍କର ଇଚ୍ଛାକୁ ହିଁ ଯିଏ ଜଗତର ସର୍ବବିଧ ଘଟଣାର ହେତୁ ବୋଲି ପ୍ରାଣେ ପ୍ରାଣେ ଅନୁଭବ କରିଛନ୍ତି ଏବଂ ସମସ୍ତ ବିଷୟରେ ତାଙ୍କର ଆଦେଶ ଗ୍ରହଣପୂର୍ବକ ଯିଏ ନିଜକୁ ସର୍ବାବସ୍ଥାରେ ପରିଚାଳିତ କରିବାକୁ ଅଭ୍ୟସ୍ତ ହୋଇଛନ୍ତି, ସଂସାରର କୌଣସି ଘଟଣା ତାଙ୍କୁ କେବେ ବିଚଳିତ କରିବାକୁ ସକ୍ଷମ ହୁଏ ନାହିଁ । ଅଘଟଣ-ଘଟଣ-ପଟୀୟସୀ ଐଶୀ ଶକ୍ତି ମାୟା ନିଜ ସ୍ୱରୂପ ଦେଖାଇ-ବୁଝାଇ ଚିରକାଳ ନିମିତ୍ତ ତାଙ୍କୁ ଅଚଳ ଅଟଳ ଶାନ୍ତିର ଅଧିକାରୀ କରାଇଥିଲେ । ଅତଏବ ଶ୍ରୀଶ୍ରୀଜଗଦମ୍ବାଙ୍କ ଇଚ୍ଛାରେ ହିଁ ଭାରତରେ ପାଶ୍ଚାତ୍ୟ ଭାବ ପ୍ରବେଶ ଏବଂ ତାଙ୍କ ଇଚ୍ଛାରେ ହିଁ ବ୍ରାହ୍ମପ୍ରମୁଖ ଶିକ୍ଷିତ ସମ୍ପ୍ରଦାୟର ପାଶ୍ଚାତ୍ୟଭାବର ହସ୍ତରେ କ୍ରୀଡ଼ା- ପୁତ୍ତଳିକାସ୍ୱରୂପ ହେବା କଥା ସମ୍ୟକ୍ ହୃଦୟଙ୍ଗମ କରି ଠାକୁର ସେମାନଙ୍କର ସେହି ପ୍ରକାର ଦୁର୍ବଳତାରେ ବିରକ୍ତିପ୍ରକାଶ କିମ୍ବା ସେମାନଙ୍କୁ ନିଜର ଅପାର ସ୍ନେହ ଭଲପାଇବାରୁ ବଞ୍ଚିତ କିପରି କରିଥାନ୍ତେ ? ସୁତରାଂ ଋଷିମାନଙ୍କର ପ୍ରତ୍ୟକ୍ଷ-ବିଜ୍ଞାନର ଏମାନେ ଯଥାସମ୍ଭବ ନିଅନ୍ତୁ, ସମୟ କ୍ରମେ ଶ୍ରୀଶ୍ରୀଜଗଦମ୍ବା ଏପରି ଲୋକ ଆଣିଦେବେ— ଯିଏ ଉକ୍ତ ବିଜ୍ଞାନ ସମ୍ପୂର୍ଣ୍ଣ ଗ୍ରହଣ କରିବେ, ଏକଥା ଭାବି ସେ ନିଶ୍ଚିନ୍ତ ମନରେ ରହିଥିଲେ ।

## ବ୍ରହ୍ମବିଜ୍ଞାନର ସମଗ୍ର ଗ୍ରହଣରେ ବ୍ରାହ୍ମଗଣ ଅପାରଗ ବୁଝି ଠାକୁର କ'ଣ କରିଥିଲେ :

ପୁଣି, ବ୍ରାହ୍ମଗଣ ତାଙ୍କର ସମସ୍ତ କଥା ଗ୍ରହଣ କରିପାରୁ ନ ଥିବା ଦେଖି ସେ ସେମାନଙ୍କୁ ନିଜର ଆଧ୍ୟାତ୍ମିକ ପ୍ରତ୍ୟକ୍ଷସମୂହର ଅଂଶମାତ୍ର କହି ନିରସ୍ତ ହୋଇ ନାହାନ୍ତି । ବରଂ ଈଶ୍ୱରଙ୍କ ପାଇଁ ସର୍ବସ୍ୱ ତ୍ୟାଗ ନ କଲେ ତାଙ୍କର ପୁଣ୍ୟଦର୍ଶନ କେବେ ମଧ୍ୟ ଲାଭ ହେବ ନାହିଁ— ଯେତେ ମତ ସେତେ ପଥ — ପ୍ରତ୍ୟେକ ପଥର ଚରମ ଅବସ୍ଥାରେ ଉପାସ୍ୟ ସହିତ ଉପାସକର ଅଭେଦତ୍ୱପ୍ରାପ୍ତି ହୁଏ — ମନ ମୁଖ ଏକ କରିବା ହିଁ ସାଧନା — ଏବଂ ଈଶ୍ୱରଙ୍କ ପ୍ରତି ଏକାନ୍ତ ବିଶ୍ୱାସ ଓ ନିର୍ଭର କରି ସଦସଦ୍ ବିଚାରପୂର୍ବକ ସର୍ବଥା ଫଳକାମନାରହିତ ହୋଇ ସଂସାରରେ କର୍ତ୍ତବ୍ୟକର୍ମର ଅନୁଷ୍ଠାନ କରିବା ହିଁ ତାଙ୍କ ଆଡ଼କୁ ଅଗ୍ରସର ହେବାର ପଥ, ଇତ୍ୟାଦି ଆଧ୍ୟାତ୍ମିକ

ଜଗତର ସମସ୍ତ ଗୂଢ଼ ତତ୍ତ୍ୱ ସେ ସେମାନଙ୍କ ନିକଟରେ ସର୍ବଦା ନିଃସଙ୍କୋଚରେ ପ୍ରକାଶ କରୁଥିଲେ । କାୟମନୋବାକ୍ୟରେ ବ୍ରହ୍ମଚର୍ଯ୍ୟ ପାଳନ ନ କଲେ ଦେହ ପ୍ରତି ସମ୍ପୂର୍ଣ୍ଣ ଅନାସକ୍ତ ହେବା ଏବଂ ଆଧ୍ୟାତ୍ମିକ ରାଜ୍ୟର ଉଚ୍ଚ ଉପଲବ୍ଧିସମୂହ ପ୍ରତ୍ୟକ୍ଷ କରିବା କଦାପି ସମ୍ଭବ ନୁହେଁ, ଏକଥା କେଶବପ୍ରମୁଖ କାହାକୁ କାହାକୁ ବୁଝାଇ ସେ ସେମାନଙ୍କୁ ତାହା କରିବା ପାଇଁ ପ୍ରେରିତ କରିଥିଲେ । ସେହିପରି ସମସ୍ତ କଥା ବାରମ୍ବାର କହି ବୁଝାଇ ମଧ୍ୟ ଅନେକଙ୍କର ସେ ସବୁ ଧାରଣା ହେଉ ନାହିଁ ଦେଖି ସେ ବୁଝିଥିଲେ, ସଂସ୍କାର ବଦ୍ଧମୂଳ ହୋଇଗଲେ ହୃଦୟରେ ନୂତନ ଭାବ ଗ୍ରହଣ କରିବା ଏକପ୍ରକାର ଅସମ୍ଭବ— ''କଣ୍ଠି ଉଠିବା ପରେ ଶୁଆକୁ 'ରାଧାକୃଷ୍ଣ' ନାମ ଶିଖାଇବାକୁ ପ୍ରୟାସ କଲେ ପ୍ରାୟ ତାହା ବ୍ୟର୍ଥ ହୋଇଥାଏ'' ଏବଂ ପାଶ୍ଚାତ୍ୟର ଇହକାଳସର୍ବସ୍ୱ ଜଡ଼ବାଦ ପ୍ରଭାବରେ ହେଉ ବା ଅନ୍ୟ କୌଣସି କାରଣରୁ ହେଉ, ରୂପରସାଦିଭୋଗର ଭାବ ଯେଉଁମାନଙ୍କ ମନରେ ଥରେ ବଦ୍ଧମୂଳ ହୋଇଯାଇଛି, ଭାରତର ସନାତନ ତ୍ୟାଗାଦର୍ଶ ଗ୍ରହଣପୂର୍ବକ ସେମାନେ କେବେ ମଧ୍ୟ ତାହା ଜୀବନରେ ସମ୍ୟକ୍ ପରିଣତ କରିପାରିବେ ନାହିଁ । ସେଥିପାଇଁ ହିଁ ତାଙ୍କ ପ୍ରାଣରେ ବ୍ୟାକୁଳ-ପ୍ରାର୍ଥନାର ଉଦୟ ହୋଇଥିଲା, 'ମା, ତୋର ତ୍ୟାଗୀ ଭକ୍ତଗଣଙ୍କୁ ଆଣି ଦେ, ଯାହାଙ୍କ ସହିତ ମୁଁ ପ୍ରାଣ ଖୋଲି ତୋ କଥା କହି ଆନନ୍ଦ କରିପାରିବି !' ଅତଏବ ଦୃଢ଼ସଂସ୍କାରବିହୀନ ବାଳକମାନଙ୍କର ମନ ହିଁ ତାଙ୍କର ଭାବ ଓ କଥା ସମ୍ପୂର୍ଣ୍ଣ ଗ୍ରହଣପୂର୍ବକ ଏସମସ୍ତର ସତ୍ୟତା ଉପଲବ୍ଧି କରିବାକୁ ନିଃସଙ୍କୋଚରେ ଅଗ୍ରସର ହେବେ, ଏହି କଥା ଠାକୁର ଏବେଠାରୁ ବିଶେଷଭାବରେ ହୃଦୟଙ୍ଗମ କରିଥିଲେ କହିଲେ ଯୁକ୍ତିବିରୁଦ୍ଧ ହେବ ନାହିଁ ।

### ବ୍ରାହ୍ମଗଣଙ୍କ ଦ୍ୱାରା କଲିକତାବାସୀଙ୍କର ମନ ଠାକୁରଙ୍କ ପ୍ରତି ଆକୃଷ୍ଟ ହେବା; ରାମ ଓ ମନମୋହନଙ୍କର ଆଗମନ ଏବଂ ଆଶ୍ରୟଲାଭ :

ସେ ଯାହାହେଉ, କେଶବପ୍ରମୁଖ ବ୍ରାହ୍ମନେତୃଗଣ ଠାକୁରଙ୍କର ଅଭିନବ ଆଧ୍ୟାତ୍ମିକ ଭାବ ଯେତେଦୂର ଗ୍ରହଣ କରିପାରିଥିଲେ ଏବଂ ତାହା ଫଳରେ ସେମାନଙ୍କ ଭିତରେ ଯେଉଁ ପରିବର୍ତ୍ତନ ଉପସ୍ଥିତ ହୋଇଥିଲା, ତାହା ଲକ୍ଷ୍ୟ କରିବାକୁ କଲିକତାର ଜନସାଧାରଣଙ୍କର ବିଳମ୍ବ ହୋଇ ନ ଥିଲା । ପୁଣି, କେଶବପ୍ରମୁଖ ବ୍ୟକ୍ତିମାନେ ଯେତେବେଳେ ବ୍ରାହ୍ମମଣ୍ଡଳୀ-ପରିଚାଳିତ ସମ୍ବାଦପତ୍ରମାନଙ୍କରେ ଠାକୁରଙ୍କର ଆଧ୍ୟାତ୍ମିକ ମତର ଅଲୌକିକତ୍ୱ ଏବଂ ତାଙ୍କର ଅମୃତମୟୀ ବାଣୀଗୁଡ଼ିକରୁ କିଛି କିଛି ପ୍ରକାଶ କରିବାକୁ ଲାଗିଲେ, ସେତେବେଳେ କଲିକତାର ଜନସାଧାରଣ ତାଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇ ତାଙ୍କର ପୁଣ୍ୟ-ଦର୍ଶନଲାଭ ନିମିତ୍ତ ଦକ୍ଷିଣେଶ୍ୱରରେ ପହଞ୍ଚିବାକୁ ଲାଗିଲେ । ଠାକୁରଙ୍କ ଚିହ୍ନିତ ଭକ୍ତମାନେ ସେହିପରି ଭାବରେ ହିଁ ଦକ୍ଷିଣେଶ୍ୱର କାଳୀମନ୍ଦିରରେ କ୍ରମେ କ୍ରମେ

ଉପସ୍ଥିତ ହୋଇଥିଲେ । ଆମେ ଶୁଣିଛୁ, ଶ୍ରୀଯୁକ୍ତ କେଶବଙ୍କ ସହିତ ଠାକୁରଙ୍କର ପ୍ରଥମ ସାକ୍ଷାତର ପ୍ରାୟ ଚାରି ବର୍ଷ ପରେ ୧୨୮୫ ବଙ୍ଗାବ୍ଦ, ଇଂରାଜୀ ୧୮୭୯ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ଶ୍ରୀଯୁକ୍ତ ରାମଚନ୍ଦ୍ର ଦତ୍ତ ଓ ଶ୍ରୀଯୁକ୍ତ ମନମୋହନ ମିତ୍ର ନାମକ ଠାକୁରଙ୍କର ଗୃହସ୍ଥ ଭକ୍ତଦ୍ୱୟ କେଶବଙ୍କ ଦ୍ୱାରା ପରିଚାଳିତ ସମ୍ବାଦପତ୍ରରେ ଠାକୁରଙ୍କର କଥା ପଢ଼ି ତାଙ୍କ ସମୀପକୁ ଆଗମନ କରିଥିଲେ । ଠାକୁରଙ୍କର ପୁଣ୍ୟଦର୍ଶନଲାଭରେ ସେମାନଙ୍କର ଜୀବନରେ କିପ୍ରକାର ଅଦ୍ଭୁତ ପରିବର୍ତ୍ତନ ଧୀରେ ଧୀରେ ଉପସ୍ଥିତ ହୋଇଥିଲା, ତାହା ଶ୍ରୀଯୁକ୍ତ ରାମଚନ୍ଦ୍ର ତାଙ୍କ ଲିଖିତ 'ଶ୍ରୀଶ୍ରୀରାମକୃଷ୍ଣ ପରମହଂସଦେବଙ୍କର ଜୀବନବୃତ୍ତାନ୍ତ' ଶୀର୍ଷକ ପୁସ୍ତକରେ ସ୍ୱୟଂ ପ୍ରକାଶ କରିଛନ୍ତି । ଅତଏବ ସେସମସ୍ତର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ । ଏଠାରେ ସଂକ୍ଷେପରେ ଏକଥା କହିଲେ ହିଁ ଚଳିବ ଯେ, ଈଶ୍ୱରଙ୍କ ପାଇଁ କାମ-କାଞ୍ଚନ-ତ୍ୟାଗରୂପକ ଠାକୁରଙ୍କର ଜୀବନ-ଆଦର୍ଶ ସମ୍ୟକ୍ ଗ୍ରହଣ କରି ନ ପାରିଲେ ମଧ୍ୟ ଏମାନେ ତାଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧା ପ୍ରଭାବରେ ତ୍ୟାଗର ମାର୍ଗରେ ଅନେକ ଦୂର ଅଗ୍ରସର ହୋଇ କୃତାର୍ଥ ହୋଇଥିଲେ । ସତ୍‌କର୍ମର ଅନୁଷ୍ଠାନରେ ଦୁଃଖୋପାର୍ଜିତ ଅର୍ଥର ଅକାତର ବ୍ୟୟ ଦେଖି ହିଁ ଗୃହୀ ବ୍ୟକ୍ତିଙ୍କର ଭକ୍ତି-ବିଶ୍ୱାସର ତାରତମ୍ୟ ଅନେକାଂଶରେ ନିରୂପଣ କରି ହୁଏ । ପ୍ରଥମେ ଗୁରୁ ଓ ପରେ ଇଷ୍ଟସ୍ଥାନରେ ଠାକୁରଙ୍କୁ ବସାଇ ଶ୍ରୀଯୁକ୍ତ ରାମଚନ୍ଦ୍ର ତାଙ୍କୁ ଓ ତାଙ୍କର ଭକ୍ତମାନଙ୍କୁ କଲିକତାର ସିମଲା ନାମକ ପଲ୍ଲୀସ୍ଥ ନିଜ ବାସଭବନରେ ପୁନଃପୁନଃ ଆନୟନପୂର୍ବକ ଉତ୍ସବ ଆଦିରେ ଯେପରି ଅକାତରରେ ବ୍ୟୟ କରୁଥିଲେ, ସେଥିରୁ ବୁଝାଯାଉଥିଲା, ତାଙ୍କର ବିଶ୍ୱାସ-ଭକ୍ତି କ୍ରମେ କେତେ ଗଭୀରଭାବ ପ୍ରାପ୍ତ ହୋଇଥିଲା । ଠାକୁର ତାଙ୍କ ସମ୍ବନ୍ଧରେ ବେଳେ ବେଳେ କହୁଥିଲେ, ''ରାମକୁ ଏବେ ଏତେ ମୁକ୍ତହସ୍ତ ଦେଖୁଛ, ଯେବେ ପ୍ରଥମ ଆସିଥିଲା ସେତେବେଳେ ଏତେ କୃପଣ ଥିଲା ଯେ, କହିବାର ନୁହେଁ; ଅଳେଇଚ ଆଣିବାକୁ କହିଥିଲି, ତେଣୁ ଦିନେ ଗୋଟିଏ ପଇସାର ଶୁଖିଲା ଅଳେଇଚ ଆଣି ସମ୍ମୁଖରେ ରଖି ପ୍ରଣାମ କରିଥିଲା ! ରାମର ସ୍ୱଭାବର କେତେଦୂର ପରିବର୍ତ୍ତନ ହୋଇଅଛି ଏହିଥିରୁ ବୁଝ ।''

**ଠାକୁରଙ୍କର ଅଦ୍ଭୁତ ଦର୍ଶନ ଓ ରାଖାଲଚନ୍ଦ୍ରଙ୍କର ଆଗମନ :**

ଠାକୁର ଯେତେବେଳେ ଆତ୍ମୀୟ ଜ୍ଞାନରେ ରାମ ଓ ମନମୋହନଙ୍କୁ ନିଜ ଅଭୟ ଆଶ୍ରୟରେ ଚିରକାଳ ନିମିତ୍ତ ଗ୍ରହଣ କରିଥିଲେ, ସେତେବେଳେ ତାଙ୍କର ଅହେତୁକୀ କରୁଣାର ଅଧିକାରୀ ହୋଇ ସେମାନେ ନିଜକୁ କେତେଦୂର କୃତାର୍ଥ ଜ୍ଞାନ କରିଥିଲେ ତାହା ବର୍ଣ୍ଣନାତୀତ । ସଂସାରରେ ସେହି ପ୍ରକାର ଆଶ୍ରୟ ଯେ କେବେ ପାଇବା ସମ୍ଭବ, ଏକଥା ସେମାନଙ୍କର ସ୍ୱପ୍ନର ମଧ୍ୟ ଅଗୋଚର ଥିଲା । ସୁତରାଂ ସେମାନେ ଏବେ ତାଙ୍କର ନିଜ ଆତ୍ମୀୟ-କୁଟୁମ୍ବ, ବନ୍ଧୁ-ବାନ୍ଧବ ସମସ୍ତଙ୍କୁ

ଉକ୍ତ ଆଶ୍ରୟ ଗ୍ରହଣ କରାଇବାକୁ ପ୍ରୟାସୀ ହେବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଦେଖିବାକୁ ମିଳେ, ଠାକୁରଙ୍କ ସହିତ ପ୍ରଥମ ସାକ୍ଷାତ୍‌ର ବର୍ଷକ ମଧ୍ୟରେ ହିଁ ସେମାନେ ନିଜ ନିଜ ଆତ୍ମୀୟ ପରିଜନବର୍ଗଙ୍କୁ କ୍ରମେ ଦକ୍ଷିଣେଶ୍ୱରକୁ ଆଣି ତାଙ୍କର ଶ୍ରୀପଦପ୍ରାନ୍ତରେ ପହଞ୍ଚାଇଥିଲେ । ଏହିପରି ୧୨୮୮ ବଙ୍ଗାବ୍ଦ ଶେଷଭାଗ, ଇଂରାଜୀ ୧୮୮୧ ଖ୍ରୀଷ୍ଟାବ୍ଦଠାରୁ ଠାକୁରଙ୍କର ଲୀଳାସହଚର ତ୍ୟାଗୀ ଭକ୍ତବୃନ୍ଦ ଜଣେ ଜଣେ କରି ତାଙ୍କ ନିକଟକୁ ଆସିଥିଲେ । ଆମେ ଶୁଣିଛୁ, ଶ୍ରୀରାମକୃଷ୍ଣ ସଂଘରେ ସୁପରିଚିତ ସ୍ୱାମୀ ବ୍ରହ୍ମାନନ୍ଦ ହିଁ ଠାକୁରଙ୍କ ନିକଟକୁ ପ୍ରଥମେ ଆସିଥିଲେ ।[୧] ପୂର୍ବ ଜୀବନରେ ଏହାଙ୍କର ନାମ ଶ୍ରୀରାଖାଲଚନ୍ଦ୍ର ଥିଲା । ଶ୍ରୀଯୁକ୍ତ ମନମୋହନଙ୍କ ଭଗିନୀଙ୍କ ସହିତ ସେ ପରିଣୟ ସୂତ୍ରରେ ଆବଦ୍ଧ ହୋଇଥିଲେ ଏବଂ ଉକ୍ତ ବିବାହର ସ୍ୱଳ୍ପକାଳ ପରେ ଠାକୁରଙ୍କ ନାମ ଶୁଣି ତାଙ୍କ ନିକଟକୁ ଆଗମନ କରିଥିଲେ । ଶ୍ରୀରାମକୃଷ୍ଣଦେବ କହୁଥିଲେ, ''ରାଖାଲଙ୍କର ଆସିବାର କେତେଦିନ ପୂର୍ବରୁ ଦେଖିଲି, ମା' (ଶ୍ରୀଶ୍ରୀଜଗଦମ୍ବା) ଗୋଟିଏ ବାଳକକୁ ଆଣି ହଠାତ୍ ମୋ କୋଳରେ ବସାଇ ଦେଇ କହୁଛନ୍ତି, 'ଏଇଟି ତୋର ପୁତ୍ର !'—ଏହା ଶୁଣି ଆତଙ୍କରେ ଶିହରି ଉଠି କହିଲି, 'ସେ କ'ଣ ? —ମୋର ପୁଣି ପୁତ୍ର କ'ଣ ?' ସେ ସେଥିରେ ହସି ବୁଝାଇ ଦେଲେ, 'ସାଧାରଣ ସାଂସାରିକ ଭାବରେ ପୁତ୍ର ନୁହେଁ, ତ୍ୟାଗୀ ମାନସପୁତ୍ର ।' ସେତେବେଳେ ଆଶ୍ୱସ୍ତ ହେଲି । ଏହି ଦର୍ଶନ ପରେ ହିଁ ରାଖାଲ ଆସି ଉପସ୍ଥିତ ହେଲା ଏବଂ ବୁଝିଲି ଇଏ ହିଁ ସେହି ବାଳକ !''

**ରାଖାଲଙ୍କର ବାଳକଭାବ :**

ଶ୍ରୀଯୁକ୍ତ ରାଖାଲଙ୍କ ସମ୍ବନ୍ଧରେ ଅନ୍ୟ ଏକ ସମୟରେ ଠାକୁର ଆମକୁ କହିଥିଲେ, ''ସେତେବେଳେ ରାଖାଲର ଏପରି ଭାବ ଥିଲା—ଠିକ୍ ଯେପରି ତିନି-ଚାରି ବର୍ଷର ପିଲା ! ମୋତେ ଠିକ୍ ମା' ପରି ଦେଖୁଥିଲା । ଥିବ, ଥିବ, ହଠାତ୍ ଦୌଡ଼ି ଆସି କୋଳରେ ବସିପଡ଼ିବ, ଏବଂ ମନ ଆନନ୍ଦରେ ନିଃସଙ୍କୋଚରେ ସ୍ତନ୍ୟପାନ କରିବ ! ଘରକୁ ଯିବା ତ ଦୂରର କଥା ଏଠାରୁ କେଉଁଠାକୁ ଗୋଟିଏ ପାଦ ହଲିବାକୁ ଚାହୁଁ ନ ଥିଲା । ତା'ର ବାପା କାଳେ ଏଠାକୁ ଆସିବାକୁ ନ ଦେବେ, ସେଥିପାଇଁ କେତେ କହି ବୁଝାଇ ତାକୁ ଥରେ ଥରେ ଘରକୁ ପଠାଉଥିଲି । ବାପା ଜମିଦାର, ଅନେକ ପଇସା, କିନ୍ତୁ ବଡ଼ କୃପଣ ଥିଲେ; ପ୍ରଥମେ ସେ ନାନାଭାବରେ ଚେଷ୍ଟା କରିଥିଲେ—ଯେପରି ପୁଅ ଏଠାକୁ ଆଉ ନ ଆସେ; ପରେ ଯେତେବେଳେ ଦେଖିଲେ, ଏଠାକୁ ଧନୀ, ବିଦ୍ୱାନ ଲୋକମାନେ ଆସୁଛନ୍ତି,

---

୧. ତ୍ୟାଗୀ ଭକ୍ତମାନଙ୍କ ମଧ୍ୟରୁ କେହି କେହି ପୂର୍ବରୁ ମଧ୍ୟ ଆସିଥିଲେ—'କଥାମୃତ' ୧ମ ଭାଗ, ୬ପୃଷ୍ଠା; 'ଲୀଳାପ୍ରସଙ୍ଗ—ସାଧକଭାବ', ପରିଶିଷ୍ଟ, ୨୨ ପୃଷ୍ଠା; ଗୁରୁଭାବ, ପୂର୍ବାର୍ଦ୍ଧ, ୨୯ ପୃଷ୍ଠା; 'ଭକ୍ତ-ମନମୋହନ', ୩୨ ପୃଷ୍ଠା; ସ୍ୱାମୀ ତୁରୀୟାନନ୍ଦଙ୍କ ପତ୍ର ୧୯/୯/୧୯୧୭ ଦ୍ରଷ୍ଟବ୍ୟ ।

ସେତେବେଳେ ଆଉ ପୁଅର ଆସିବାରେ ଆପତ୍ତି କରୁ ନ ଥିଲେ । ପୁଅପାଇଁ ବେଳେ ବେଳେ ସେ ନିଜେ ମଧ୍ୟ ଏଠାକୁ ଆସୁଥିଲେ । ସେତେବେଳେ ରାଖାଲ ପାଇଁ ତାଙ୍କୁ ବିଶେଷ ଆଦର-ଯତ୍ନ କରି ସନ୍ତୁଷ୍ଟ କରୁଥିଲି ।

**ରାଖାଲଙ୍କର ପତ୍ନୀ :**

''ଶ୍ୱଶୁରଘର ତରଫରୁ କିନ୍ତୁ ରାଖାଲଙ୍କର ଏଠାକୁ ଆସିବା ସମ୍ବନ୍ଧରେ କେବେ ମଧ୍ୟ ଆପତ୍ତି ଉଠି ନ ଥିଲା । କାରଣ, ମନମୋହନଙ୍କର ମା', ସ୍ତ୍ରୀ ଓ ଭଉଣୀମାନେ ସମସ୍ତଙ୍କର ଏଠାକୁ ଯିବା ଆସିବା ଥିଲା । ରାଖାଲ ଆସିବାର କିଛି ଦିନ ପରେ ଯେଉଁଦିନ ମନମୋହନଙ୍କ ମାତା ରାଖାଲଙ୍କର ବାଳିକା ବଧୂକୁ ସାଙ୍ଗରେ ନେଇ ଏଠାକୁ ଆସିଲେ, ସେଦିନ ମନେ ହେଲା ବୋହୂ ସଂସର୍ଗରେ ମୋ' ରାଖାଲର ଈଶ୍ୱରଭକ୍ତିର ହାନି ହେବ ନାହିଁ ତ ? ଏହା ଭାବି, ତାଙ୍କୁ ପାଖକୁ ଆଣି ଗୋଡ଼ଠାରୁ ମୁଣ୍ଡର କେଶ ପର୍ଯ୍ୟନ୍ତ ଶାରୀରିକ ଗଠନଭଙ୍ଗି ତନ୍ନ ତନ୍ନ କରି ଦେଖିଲି ଏବଂ ବୁଝିଲି ଯେ, ଭୟର କାରଣ ନାହିଁ, ଦେବୀଶକ୍ତି, ସ୍ୱାମୀର ଧର୍ମପଥର କେବେ ମଧ୍ୟ ଅନ୍ତରାୟ ହେବ ନାହିଁ । ସେତେବେଳେ ସନ୍ତୁଷ୍ଟ ହୋଇ, ଟଙ୍କା ଦେଇ ପୁତ୍ରବଧୂର ମୁଖ ଦେଖିବାକୁ ନହବତ୍‌କୁ (ଶ୍ରୀଶ୍ରୀମାତାଠାକୁରାଣୀଙ୍କ ପାଖକୁ) ପଠାଇଲି ।

**ରାଖାଲଙ୍କର ବାଳକଭାବର ହାନି :**

''ମୋତେ ଦେଖିଲେ ଆତ୍ମହରା ହୋଇ ରାଖାଲର ଭିତରେ ଯେ କିପ୍ରକାର ବାଳକଭାବର ଆବେଶ ହେଉଥିଲା, ତାହା କହି ବୁଝାଇ ହେବ ନାହିଁ । ସେତେବେଳେ ତାକୁ ଏମିତି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଉଥିଲେ ! ମୁଁ ମଧ୍ୟ ଭାବାବିଷ୍ଟ ହୋଇ ତାକୁ କ୍ଷୀର-ଲହୁଣୀ ଖୁଆଉଥିଲି, ଖେଳୁଥିଲି । କେତେଥର କାନ୍ଧରେ ମଧ୍ୟ ବସାଇଛି ! ସେଥିରେ ମଧ୍ୟ ତା' ମନରେ ବିନ୍ଦୁମାତ୍ର ସଙ୍କୋଚ ଭାବ ଆସୁ ନ ଥିଲା ! ସେତେବେଳେ କିନ୍ତୁ କହିଥିଲି ବଡ଼ ହୋଇ ସ୍ତ୍ରୀ ସହିତ ଏକତ୍ର ବାସ କଲେ ତାର ଏହି ବାଳକସୁଲଭ ଭାବ ଆଉ ରହିବ ନାହିଁ ।

**ରାଖାଲଙ୍କୁ ଶାସନ :**

''ଅନ୍ୟାୟ କଲେ ତାକୁ ଶାସନ ମଧ୍ୟ କରୁଥିଲି । ଦିନେ କାଳୀମନ୍ଦିରରୁ ପ୍ରସାଦୀ ଲହୁଣୀ ଆସିବା ମାତ୍ରେ ସେ କ୍ଷୁଧାର୍ତ୍ତ ଥିବାରୁ ନିଜେ ନିଜେ ତାହା ନେଇ ଖାଇ ଦେଇଥିଲା ! ସେଥିରେ କହିଥିଲି, 'ତୁ ତ ଭାରି ଲୋଭୀ, ଏଠାକୁ ଆସି ଲୋଭତ୍ୟାଗ ପାଇଁ ଯତ୍ନ ନ କରି ନିଜେ ଲହୁଣୀ ନେଇ ଖାଇଲୁ ?' ସେ ଭୟରେ ସଙ୍କୁଚିତ ହୋଇଉଠିଥିଲା ଏବଂ ଆଉ କେବେ ମଧ୍ୟ ସେପରି କରି ନାହିଁ ।

**ରାଖାଲଙ୍କ ମନରେ ହିଂସା ଓ ଠାକୁରଙ୍କର ଭୟ :**

''ରାଖାଲ ମନରେ ସେତେବେଳେ ବାଳକସଦୃଶ ହିଂସା ମଧ୍ୟ ଥିଲା । ମୁଁ ତାକୁ ଛାଡ଼ି ଅନ୍ୟ କାହାକୁ ଭଲ ପାଇଲେ ସେ ସହ୍ୟ କରିପାରୁ ନ ଥିଲା । ଅଭିମାନରେ ତାହାର ମନ ପୂର୍ଣ୍ଣ ହୋଇଉଠୁଥିଲା । ସେଥିପାଇଁ ମୋ ମନରେ ବେଳେ ବେଳେ ତା'ପାଇଁ ଭୟ ଆସୁଥିଲା । କାରଣ, ମା' (ଶ୍ରୀଶ୍ରୀ ଜଗଦମ୍ବା) ଯେଉଁମାନଙ୍କୁ ଏଠାକୁ ଆଣୁଛନ୍ତି, ତାଙ୍କ ଉପରେ ହିଂସା କରି କାଳେ ତା'ର ଅକଲ୍ୟାଣ ହେବ ।

**ରାଖାଲଙ୍କର ଶ୍ରୀବୃନ୍ଦାବନ ଗମନ :**

''ଏଠାକୁ ଆସିବାର ପ୍ରାୟ ତିନି ବର୍ଷ ପରେ ରାଖାଲର ଶରୀର ଅସୁସ୍ଥ ହେବାରୁ ସେ ବଳରାମଙ୍କ ସହିତ ଶ୍ରୀବୃନ୍ଦାବନ ଯାଇଥିଲା । ଏହାର କିଛି ଦିନ ପୂର୍ବରୁ ଦେଖିଥିଲି, ମା' ଯେପରି ତାକୁ ଏଠାରୁ ଘୁଞ୍ଚାଇ ଦେଉଛନ୍ତି । ସେତେବେଳେ ବ୍ୟାକୁଳ ହୋଇ ପ୍ରାର୍ଥନା କରିଥିଲି, 'ମା, ସେ (ରାଖାଲ) ଛୋଟପିଲା, କିଛି ବୁଝେ ନାହିଁ, ତେଣୁ ବେଳେ ବେଳେ ଅଭିମାନ କରେ, ଯଦି ତୋର କାମ ପାଇଁ ତାକୁ ଏଠାରୁ କିଛିଦିନ ପାଇ ନେଇଯାଉଛୁ, ତା'ହେଲେ ଭଲ ଜାଗାରେ ମନ ଆନନ୍ଦରେ ରଖିବୁ ।' ଏହାର ଅଳ୍ପ କାଳ ପରେ ହିଁ ତାର ବୃନ୍ଦାବନ ଯିବା ହେଲା ।

**ରାଖାଲଙ୍କର ଅସୁସ୍ଥତାରେ ଠାକୁରଙ୍କର ଭୟ :**

''ବୃନ୍ଦାବନରେ ଥିବା ସମୟରେ ରାଖାଲର ଅସୁସ୍ଥତା ଶୁଣି କେତେ ଚିନ୍ତା ହୋଇଥିଲା, ତାହା କହିହେବ ନାହିଁ । କାରଣ, ଏହାପୂର୍ବରୁ ମା' ଦେଖାଇ ଦେଇଥିଲେ, ରାଖାଲ ସତରେ ହିଁ ବ୍ରଜର ରାଖାଲ ! ଯେଉଁଠାରୁ ଯିଏ ଆସି ଶରୀର ଧାରଣ କରିଅଛି, ସେଠାକୁ ଗଲେ ପ୍ରାୟ ତା'ର ପୂର୍ବକଥା ସ୍ମରଣ ହୋଇ ସେ ଶରୀର ତ୍ୟାଗ କରେ । ସେଥିପାଇଁ ଭୟ ହୋଇଥିଲା, କାଳେ ଶ୍ରୀବୃନ୍ଦାବନରେ ରାଖାଲଙ୍କର ଶରୀର ଚାଲିଯିବ । ସେତେବେଳେ ମା' ନିକଟରେ କାତର ହୋଇ କେତେ ପ୍ରାର୍ଥନା କଲି ଏବଂ ମା' ଅଭୟଦାନରେ ଆଶ୍ୱସ୍ତ କଲେ । ସେହି ପ୍ରକାର ରାଖାଲ ସମ୍ବନ୍ଧରେ ମା' କେତେ କ'ଣ ଦେଖାଇଥିଲେ । ତାହାର ଅନେକ କଥା କହିବା ନିଷେଧ ଅଛି ।''[୧]

---

୧. ଶ୍ରୀଯୁକ୍ତ ରାଖାଲଙ୍କ ସମ୍ବନ୍ଧରେ ପୂର୍ବୋକ୍ତ କଥାଗୁଡ଼ିକ ଠାକୁର ଏକା ସମୟରେ ଆମମାନଙ୍କୁ କହି ନ ଥିଲେ ମଧ୍ୟ ପାଠକମାନଙ୍କ ସୁବିଧାଦୃଷ୍ଟିରୁ ଆମେ ସେସମସ୍ତ ଏଠାରେ ଧାରାବାହିକଭାବରେ ସଜାଇଦେଲୁ ।

## ରାଖାଲଙ୍କର ଭବିଷ୍ୟତ ଜୀବନ :

ଏହିପରି ଠାକୁର ତାଙ୍କର ପ୍ରଥମଲବ୍ଧ ବାଳକଭକ୍ତ-ସମ୍ବନ୍ଧରେ କେତେ କ'ଣ କହିଥିଲେ, ତାର ଇୟତ୍ତା ନାହିଁ । ମା' ତାଙ୍କୁ ତାହାଙ୍କ ସମ୍ବନ୍ଧରେ ଯାହା ଦେଖାଇଥିଲେ ତାହା ଅକ୍ଷରେ ଅକ୍ଷରେ ସଫଳ ହୋଇଥିଲା । ବୟସ ବୃଦ୍ଧି ସହିତ ବାଳକ ଧୀର ଗମ୍ଭୀର ସାଧକଶ୍ରେଣୀଭୁକ୍ତ ହୋଇ କ୍ରମେ ଈଶ୍ୱରଙ୍କ ପାଇଁ ସଂସାରର ସର୍ବସ୍ୱ ତ୍ୟାଗପୂର୍ବକ ଶ୍ରୀରାମକୃଷ୍ଣସଂଘର ଶୀର୍ଷସ୍ଥାନ ଅଧିକାର କରିଥିଲେ ।

## ନରେନ୍ଦ୍ରନାଥଙ୍କର ଆଗମନ :

ସ୍ୱାମୀ ବ୍ରହ୍ମାନନ୍ଦଙ୍କର ଦକ୍ଷିଣେଶ୍ୱରକୁ ପ୍ରଥମ ଆଗମନର ତିନି ଚାରି ମାସ ପରେ ହିଁ ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦ ଠାକୁରଙ୍କ ନିକଟକୁ ଆଗମନ କରିଥିଲେ । ତାଙ୍କ କଥା ହିଁ ଏବେ ଆମେ ପାଠକଙ୍କୁ କହିବୁ ।

# ତୃତୀୟ ଅଧ୍ୟାୟ

## ନରେନ୍ଦ୍ରନାଥଙ୍କର ପ୍ରଥମ ଆଗମନ ଓ ପରିଚୟ

### ଦିବ୍ୟଭାବାରୂଢ଼ ଠାକୁରଙ୍କର ମାନସିକ ଅବସ୍ଥାର ଆଲୋଚନା :

ବେଦପ୍ରମୁଖ ଶାସ୍ତ୍ର, ବ୍ରହ୍ମଜ୍ଞ ପୁରୁଷ ସର୍ବଜ୍ଞ ହୋଇଥାଆନ୍ତି ବୋଲି କହିଛନ୍ତି । ବ୍ରହ୍ମବିଜ୍ଞାନରେ ପ୍ରତିଷ୍ଠିତ ଠାକୁରଙ୍କର ଏହି କାଳର ଆଚରଣ ଦେଖି ପୂର୍ବୋକ୍ତ ଶାସ୍ତ୍ରବାକ୍ୟ ଧ୍ରୁବସତ୍ୟ ବୋଲି ବୁଝି ହୁଏ । କାରଣ, ଦେଖାଯାଏ, ସେ ଯେ ଏବେ କେବଳ ବ୍ରହ୍ମଙ୍କର ସଗୁଣ-ନିର୍ଗୁଣ ଉଭୟ ଭାବର ଏବଂ ବ୍ରହ୍ମଶକ୍ତି ମାୟା ସହିତ ସାକ୍ଷାତ-ସମ୍ବନ୍ଧରେ ପରିଚିତ ହୋଇ ସମସ୍ତ ପ୍ରକାର ସଂଶୟ ଓ ମଳିନତାର ପରପାରକୁ ଯାଇ ସ୍ୱୟଂ ସଦାନନ୍ଦରେ ଅବସ୍ଥାନ କରୁଥିଲେ ତାହା ନୁହେଁ; କିନ୍ତୁ ଭାବମୁଖରେ ସର୍ବଦା ଅବସ୍ଥାନପୂର୍ବକ ମାୟାର ରାଜ୍ୟର ଯେଉଁ ଗୂଢ଼ ରହସ୍ୟ ଯେତେବେଳେ ହିଁ ଜାଣିବାକୁ ଇଚ୍ଛା କରୁଥିଲେ ତତ୍‌କ୍ଷଣାତ୍ ତାହା ଜାଣିପାରୁଥିଲେ । ତାଙ୍କର ସୂକ୍ଷ୍ମଦୃଷ୍ଟିସମ୍ପନ୍ନ ମନ ସମ୍ମୁଖରେ ଏହା ଆଉ ତାର ନିଜସ୍ୱରୂପ ଗୋପନ ରଖିପାରୁ ନ ଥିଲା । ସେହିପରି ହେବା ସାଭାବିକ କଥା । କାରଣ, ଭାବମୁଖ ଓ ମାୟାଧୀଶ ଈଶ୍ୱରଙ୍କର ବିରାଟ ମନ—ଯେଉଁଥିରେ ବିଶ୍ୱରୂପ-କଳ୍ପନା କେତେବେଳେ ପ୍ରକାଶିତ ଏବଂ କେତେବେଳେ ବିଲୁପ୍ତ ଭାବରେ ଅବସ୍ଥାନ କରେ—ଉଭୟ ସମାନ ପଦାର୍ଥ; ଏବଂ ଯିଏ ନିଜର କ୍ଷୁଦ୍ର 'ମୁଁ'ତ୍ୱର ପରିସୀମା ଅତିକ୍ରମପୂର୍ବକ ତାହା ସହିତ ଏକୀଭୂତ ହୋଇ ଅବସ୍ଥାନ କରିବାକୁ ସକ୍ଷମ ହୋଇଛନ୍ତି, ବିରାଟ ମନରେ ଉଦିତ ସମୁଦାୟ କଳ୍ପନା ହିଁ ତାଙ୍କ ସମ୍ମୁଖରେ ପ୍ରତିଭାତ ହୁଏ । ଉକ୍ତ ଅବସ୍ଥାରେ ପହଞ୍ଚିପାରିଥିଲେ ବୋଲି ହିଁ ଠାକୁର ତାଙ୍କର ଭକ୍ତମାନଙ୍କର ଆଗମନ ପୂର୍ବରୁ ହିଁ ନିଜର ପୂର୍ବ ପୂର୍ବ ଜନ୍ମସମୂହର କଥା ଜାଣିଯାଇଥିଲେ । ବିରାଟ ମନର କେଉଁ ବିଶେଷ ଲୀଳାପ୍ରକାଶ ନିମିତ୍ତ ତାଙ୍କର ବର୍ତ୍ତମାନ ଶରୀରଧାରଣ ତାହା ମଧ୍ୟ ସେ ଜାଣିପାରିଥିଲେ । ଉକ୍ତ ଲୀଳାର ପୁଷ୍ଟି ନିମନ୍ତେ କେତେଗୁଡିଏ ଉଚ୍ଚ ଶ୍ରେଣୀର ସାଧକ ଈଶ୍ୱରଙ୍କର ଇଚ୍ଛାରେ ଜନ୍ମଗ୍ରହଣ କରିଛନ୍ତି, ଏକଥା ସେ ଜ୍ଞାତ ହୋଇଥିଲେ । ସେମାନଙ୍କ ମଧ୍ୟରେ କେଉଁ କେଉଁ ବ୍ୟକ୍ତି ସେହି ଲୀଳାପ୍ରକାଶରେ ତାଙ୍କୁ ଅଳ୍ପାଧିକ ସହାୟତା କରିବେ ଏବଂ କେଉଁମାନେ ବା ତାର ଫଳଭୋଗୀ ମାତ୍ର ହୋଇ କୃତାର୍ଥ ହେବେ ତାହା ବୁଝିବାକୁ ସମର୍ଥ ହୋଇଥିଲେ, ଏବଂ ସେହି ସମସ୍ତ ଭକ୍ତଙ୍କର ଆଗମନ-କାଳ ସନ୍ନିକଟ ଜାଣି ସେମାନଙ୍କ ପାଇଁ ଆଗ୍ରହର ସହିତ ପ୍ରତୀକ୍ଷା କରିଥିଲେ । ମାୟା ରାଜ୍ୟର ଅନ୍ତରରେ ରହି ପୂର୍ବୋକ୍ତ ଗୂଢ଼ ରହସ୍ୟସମୂହ ଯିଏ ଜାଣିବାକୁ ସକ୍ଷମ ହୋଇଥିଲେ, ତାଙ୍କୁ ସର୍ବଜ୍ଞ ବ୍ୟତୀତ ଆଉ କ'ଣ କୁହାଯିବ ?

## ସୁରେନ୍ଦ୍ରଙ୍କ ଘରେ ଠାକୁର ଓ ନରେନ୍ଦ୍ରନାଥଙ୍କର ପରସ୍ପରଙ୍କୁ ପ୍ରଥମ ଦର୍ଶନ :

ନିଜ ଚିହ୍ନିତ ଭକ୍ତମାନଙ୍କର ଆଗମନ-କାଳ ସନ୍ନିକଟ ଜାଣି ଦିବ୍ୟ-ଭାବାରୂଢ଼ ଠାକୁର ଏହି ସମୟରେ ସେମାନଙ୍କ ପାଇଁ କିପରି ଆଗ୍ରହରେ ପ୍ରତୀକ୍ଷା କରି ରହିଥିଲେ, ତାହା ସ୍ୱାମୀ ବିବେକାନନ୍ଦଙ୍କର ତାଙ୍କ ନିକଟକୁ ପ୍ରଥମ ଆଗମନର କଥା ଅନୁଧାବନ କରି ସ୍ପଷ୍ଟ ବୁଝି ହୁଏ । ସ୍ୱାମୀ ବ୍ରହ୍ମାନନ୍ଦ କହନ୍ତି, ଠାକୁରଙ୍କ ନିକଟରେ ତାଙ୍କ ଆଗମନର ପ୍ରାୟ ପାଖାପାଖି ସମୟରେ କଲିକତାର ସିମ୍‌ଲା ପଲ୍ଲୀନିବାସୀ ଶ୍ରୀସୁରେନ୍ଦ୍ରନାଥ ମିତ୍ର ଦକ୍ଷିଣେଶ୍ୱର ଆସି ଠାକୁରଙ୍କର ପୁଣ୍ୟଦର୍ଶନଲାଭରେ ଧନ୍ୟ ହୋଇଥିଲେ । ପ୍ରଥମ ଦର୍ଶନ ଦିନଠାରୁ ହିଁ ଶ୍ରୀଯୁକ୍ତ ସୁରେନ୍ଦ୍ର ଠାକୁରଙ୍କ ପ୍ରତି ବିଶେଷଭାବରେ ଆକୃଷ୍ଟ ହୋଇଥିଲେ ଏବଂ ଅଳ୍ପ ଦିନ ମଧ୍ୟରେ ତାହାଙ୍କ ସହିତ ଘନିଷ୍ଠ ସମ୍ବନ୍ଧରେ ଆବଦ୍ଧ ହୋଇ ତାଙ୍କୁ ନିଜର ବାସଭବନକୁ ନେଇ ଆନନ୍ଦ ଉତ୍ସବର ଅନୁଷ୍ଠାନ କରିଥିଲେ । ସୁକଣ୍ଠ ଗାୟକଙ୍କର ଅଭାବ ହେବାରୁ ସୁରେନ୍ଦ୍ରନାଥ ସେହି ଦିନ ନିଜର ପ୍ରତିବେଶୀ ଶ୍ରୀଯୁକ୍ତ ବିଶ୍ୱନାଥ ଦତ୍ତଙ୍କର ପୁତ୍ର ଶ୍ରୀମାନ ନରେନ୍ଦ୍ରନାଥଙ୍କୁ ଠାକୁରଙ୍କ ନିକଟରେ ଭଜନ ଗାଇବା ପାଇଁ ନିଜ ଘରକୁ ସାଦର ନିମନ୍ତ୍ରଣ କରିଥିଲେ । ଠାକୁର ଓ ତାଙ୍କର ପ୍ରଧାନ ଲୀଳାସହାୟକ ସ୍ୱାମୀ ବିବେକାନନ୍ଦଙ୍କର ପରସ୍ପର ପରସ୍ପରଙ୍କୁ ପ୍ରଥମ ଦର୍ଶନ କରିବା ଏହି ଭାବର ସଂଘଟିତ ହୋଇଥିଲା । ସେତେବେଳେ ସନ ୧୨୮୮ ବଙ୍ଗାବ୍ଦ ହେମନ୍ତ ଋତୁର ଶେଷ ଭାଗ—ଇଂରାଜୀ ୧୮୮୧ ମସିହା ନଭେମ୍ବର ହେବ । ଅଷ୍ଟାଦଶବର୍ଷ ବୟସ୍କ ନରେନ୍ଦ୍ରନାଥ ଏହି ବର୍ଷ କଲିକତା ବିଶ୍ୱବିଦ୍ୟାଳୟରେ ଏଫ୍. ଏ. ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ହେଉଥିଲେ ।

## ନରେନ୍ଦ୍ରଙ୍କୁ ଦକ୍ଷିଣେଶ୍ୱର ଯିବାପାଇଁ ଠାକୁରଙ୍କର ଆମନ୍ତ୍ରଣ :

ସ୍ୱାମୀ ବ୍ରହ୍ମାନନ୍ଦ କହିଥିଲେ, ନରେନ୍ଦ୍ରନାଥଙ୍କୁ ସେଦିନ ଦେଖିବାମାତ୍ରେ ଠାକୁର ତାଙ୍କ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ, ଏହା ବେଶ ବୁଝାଯାଉଥିଲା । କାରଣ, ପ୍ରଥମେ ସୁରେନ୍ଦ୍ରନାଥଙ୍କୁ ଓ ପରେ ରାମଚନ୍ଦ୍ରଙ୍କୁ ନିକଟକୁ ଡାକି ସୁଗାୟକ ଯୁବକଙ୍କର ପରିଚୟ ଯେତେଦୂର ସମ୍ଭବ ଜାଣିନେଲେ ଏବଂ ଦିନେ ତାଙ୍କୁ ଦକ୍ଷିଣେଶ୍ୱର ତାଙ୍କ ନିକଟକୁ ନେଇଯିବା ପାଇଁ ଅନୁରୋଧ କଲେ । ପୁଣି ଭଜନ ଶେଷ ହେବା ପରେ ସ୍ୱୟଂ ଯୁବକଙ୍କ ନିକଟକୁ ଆସି ତାଙ୍କ ଅଙ୍ଗଲକ୍ଷଣସକଳ ବିଶେଷଭାବରେ ନିରୀକ୍ଷଣ କରୁ କରୁ ତାଙ୍କ ସହିତ ଗୋଟିଏ ଦୁଇଟି କଥା କହି ଅବିଳମ୍ବେ ଦିନେ ତାଙ୍କୁ ଦକ୍ଷିଣେଶ୍ୱର ଯିବା ପାଇଁ ଆମନ୍ତ୍ରଣ କରିଥିଲେ ।

## ନରେନ୍ଦ୍ରଙ୍କର ବିବାହ କରିବାରେ ଅସମ୍ମତି ଓ ଦକ୍ଷିଣେଶ୍ୱରକୁ ପ୍ରଥମ ଆଗମନ :

ପୂର୍ବୋକ୍ତ ଘଟଣାର କିଛି ସପ୍ତାହ ପରେ ହିଁ କଲିକତା ବିଶ୍ୱବିଦ୍ୟାଳୟର ଏଫ୍. ଏ. ପରୀକ୍ଷା ସରିଗଲା ଏବଂ ନରେନ୍ଦ୍ରଙ୍କର ପିତା ସହରର କୌଣସି ଏକ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ତାଙ୍କର କନ୍ୟା ସହିତ ନିଜ ପୁତ୍ରଙ୍କର ବିବାହ ଦେବା ନିମିତ୍ତ ଚେଷ୍ଟା କରିବାକୁ ଲାଗିଲେ । ଶୁଣାଯାଏ, ପାତ୍ରୀ ଶ୍ୟାମଳ ବର୍ଣ୍ଣା ଥିଲେ ବୋଲି ତାଙ୍କର ପିତା ଉକ୍ତ ବିବାହରେ ଦଶ ସହସ୍ର ମୁଦ୍ରା ଦେବାକୁ ସମ୍ମତ ହୋଇଥିଲେ । ରାମଚନ୍ଦ୍ର ଦତ୍ତପ୍ରମୁଖ ନରେନ୍ଦ୍ରନାଥଙ୍କର ଆତ୍ମୀୟବର୍ଗ ତାଙ୍କର ପିତାଙ୍କର ପ୍ରେରଣାରେ ତାହାଙ୍କୁ ଉକ୍ତ ବିବାହରେ ସମ୍ମତ କରାଇବା ପାଇଁ ଅଶେଷ ଚେଷ୍ଟା କରିଥିଲେ । କିନ୍ତୁ ନରେନ୍ଦ୍ରନାଥଙ୍କର ବିଶେଷ ଆପତ୍ତି ଯୋଗୁଁ ଉକ୍ତ ବିବାହ ସମ୍ପନ୍ନ ହୋଇ ନ ଥିଲା । ରାମଚନ୍ଦ୍ର ନରେନ୍ଦ୍ରନାଥଙ୍କ ପିତାଙ୍କ ଘରେ ପ୍ରତିପାଳିତ ହୋଇ କ୍ରମେ ଚିକିତ୍ସକ ହୋଇଥିଲେ ଏବଂ ତାଙ୍କର ଦୂରସମ୍ପର୍କୀୟ ଆତ୍ମୀୟ ଥିଲେ । ଧର୍ମଭାବର ପ୍ରେରଣାରୁ ନରେନ୍ଦ୍ର ବିବାହ କଲେ ନାହିଁ, ଏକଥା ବୁଝିପାରି ସେ ତାଙ୍କୁ ଦିନେ କହିଥିଲେ, ''ଯଦି ଧର୍ମଲାଭ କରିବାକୁ ତୁମର ଯଥାର୍ଥ ବାସନା ହୋଇଅଛି, ତା'ହେଲେ ବ୍ରାହ୍ମସମାଜ ପ୍ରଭୃତି ସ୍ଥାନରେ ନ ଘୁରି ଦକ୍ଷିଣେଶ୍ୱରର ଠାକୁରଙ୍କ ନିକଟକୁ ଚାଲ ।'' ପ୍ରତିବେଶୀ ସୁରେନ୍ଦ୍ରନାଥ ମଧ୍ୟ ତାଙ୍କୁ ଏହି ସମୟରେ ଦିନେ ତାଙ୍କ ସହିତ ଗାଡ଼ିରେ ଦକ୍ଷିଣେଶ୍ୱରକୁ ଯିବା ପାଇଁ ନିମନ୍ତ୍ରଣ କରିଥିଲେ । ନରେନ୍ଦ୍ରନାଥ ଏଥିରେ ସମ୍ମତି ପ୍ରକାଶ କରି ଦୁଇ-ତିନି ଜଣ ସମବୟସ୍କ ବ୍ୟକ୍ତିଙ୍କ ସଙ୍ଗରେ ସୁରେନ୍ଦ୍ରନାଥଙ୍କ ସହିତ ଦକ୍ଷିଣେଶ୍ୱରରେ ଆସି ଉପସ୍ଥିତ ହେଲେ ।

ନରେନ୍ଦ୍ରନାଥଙ୍କୁ ଦେଖି ସେଦିନ ଠାକୁରଙ୍କ ଯାହା ମନେ ହୋଇଥିଲା, କଥାପ୍ରସଙ୍ଗରେ ସେକଥା ସେ ଦିନେ ସଂକ୍ଷେପରେ ଆମମାନଙ୍କୁ ଏହିପରି କହିଥିଲେ —

## ନରେନ୍ଦ୍ରଙ୍କୁ ଦେଖି ଠାକୁରଙ୍କର ଯାହା ମନେ ହୋଇଥିଲା :

''ପଶ୍ଚିମର (ଗଙ୍ଗା ପଟର) ଦ୍ୱାରା ଦେଇ ନରେନ୍ଦ୍ର ପଥମ ଦିନ ଏହିଘରେ ପ୍ରବେଶ କରିଥିଲା । ଦେଖିଲି, ନିଜର ଶରୀର ପ୍ରତି ଲକ୍ଷ୍ୟ ନାହିଁ, ମଥାର କେଶ ଓ ବେଶଭୂଷାର କୌଣସି ପ୍ରକାର ପାରିପାଟ୍ୟ ନାହିଁ, ବାହାରର କୌଣସି ପଦାର୍ଥରେ ହିଁ ସାଧାରଣ ବ୍ୟକ୍ତିଙ୍କ ପରି ବିଶେଷ ଆଣ୍ଟ ନାହିଁ, ତାର ସବୁକିଛି ଯେପରି ଅଲଗା ଏବଂ ଚକ୍ଷୁ ଦେଖି ମନେ ହେଲା ତା'ର ମନର ଅଧିକାଂଶ ଭିତର ଆଡ଼କୁ କିଏ ଯେପରି ସର୍ବଦା ଜୋର କରି ଟାଣିରଖିଛି ! ପୁଣି ଦେଖି ମନେହେଲା ବିଷୟୀ ଲୋକଙ୍କର ଆବାସ କଲିକତାରେ ଏତେ ବଡ଼ ସତ୍ତ୍ୱଗୁଣୀ ଆଧାର ରହିବା କ'ଣ ସମ୍ଭବ !

"ଚଟାଣରେ ସଊପ ପଡ଼ିଥିଲା, ବସିବାକୁ କହିଲି । ଯେଉଁଠାରେ ଗଙ୍ଗାଜଳର କଳସଟି ରହିଥିଲା ତା' ନିକଟରେ ବସିଲା । ତା'ସହିତ ସେଦିନ ଦୁଇ-ଚାରି ଜଣ ଆଳାପୀ ଯୁବକ ମଧ୍ୟ ଆସିଥିଲେ । ବୁଝିଲି, ସେମାନଙ୍କର ସ୍ୱଭାବ ସମ୍ପୂର୍ଣ୍ଣ ବିପରୀତ — ସାଧାରଣ ବିଷୟୀ ଲୋକଙ୍କର ଯେପରି ହୋଇଥାଏ; ଭୋଗ ଆଡ଼କୁ ନଜର ଅଛି ।

**ନରେନ୍ଦ୍ରଙ୍କର ଗୀତ ଗାଇବା :**

"ଗୀତ ଗାଇବା କଥା ପଚାରିବାରୁ ଜାଣିଲି, ସେତେବେଳେ ସେ ଦୁଇଚାରୋଟି ମାତ୍ର ବଙ୍ଗଳା ଗୀତ ଶିଖିଛନ୍ତି । ତାହା ହିଁ ଗାଇବାକୁ କହିଲି, ସେଥିରେ ସେ ବ୍ରାହ୍ମସମାଜର 'ମନ ଚାଲ ନିଜ ନିକେତନେ'[୧] ଗୀତଟି ଆରମ୍ଭ କଲା ଓ ଷୋଳଅଣା ମନ ପ୍ରାଣ ଦେଇ ଧ୍ୟାନସ୍ଥ ହୋଇ ଏପରି ତାହା ଗାଇବାକୁ ଲାଗିଲା ଯେ, ତାହା ଶୁଣି ମୁଁ ନିଜକୁ ସମ୍ଭାଳିପାରିଲି ନାହିଁ, ଭାବାବିଷ୍ଟ ହୋଇପଡ଼ିଲି ।

---

୧. ଗୀତ – ମନଚାଲ ନିଜ ନିକେତନେ ।
ସଂସାର ବିଦେଶେ, ବିଦେଶୀର ବେଶେ,
ଭ୍ରମ କିମ୍ପା ଅକାରଣେ ॥
ବିଷୟ ପଞ୍ଚକ ଅବା ଭୂତଗଣ,
ସବୁ ତୋର ପର କେ ନୁହେଁ ଆତ୍ମନଃ,
ପର ପ୍ରେମେ କିମ୍ପା ହୋଇ ଅଚେତନ
ଭୁଲିଛ ଆପଣା ଜନେ ॥
ସତ୍ୟ ପଥେ ମନ କର ଆରୋହଣ,
ପ୍ରେମ-ଦୀପ ଜାଳି ଚଳ ଅନୁକ୍ଷଣ,
ସାଥିରେ ସମ୍ବଳ ରଖ ପୁଣ୍ୟ ଧନ,
ଗୋପନେ ଅତି ଯତନେ ॥
ଲୋଭ ମୋହ ଆଦି ପଥେ ଦସ୍ୟୁଗଣ,
ପଥିକର କରେ ସର୍ବସ୍ୱ ହରଣ,
ପରମ ଯତନେ ରଖରେ ପ୍ରହରୀ
ଶମ ଦମ ଦୁଇ ଜନେ ॥
ସାଧୁସଙ୍ଗ ନାମେ ଅଛି ପାନ୍ଥ-ଧାମ
ଶ୍ରାନ୍ତ ହେଲେ ତହିଁ କରିବ ବିଶ୍ରାମ,
ପଥଭ୍ରାନ୍ତ ହେଲେ ପଚାରିବ ପଥ
ସେ ପାନ୍ଥନିବାସିଗଣେ ।
ଯଦି ଦେଖ ପଥେ ଭୟର ଆକାର
ପ୍ରାଣପଣେ ଦିଅ ଦୋହାଇ ରାଜାର ॥
ସେ ପଥେ ରାଜାର ପ୍ରବଳ ପ୍ରତାପ,
ଶମନ ଡରେ ଯାହା ଶାସନେ ॥

## ନରେନ୍ଦ୍ରଙ୍କୁ ଦେଖିବା ପାଇଁ ଠାକୁରଙ୍କର ବ୍ୟାକୁଳତା :

''ପରେ ସେ ଗଲାପରେ, ତାକୁ ଦେଖିବା ନିମିତ୍ତ ପ୍ରାଣ ଭିତରଟା ଚବିଶ ଘଣ୍ଟା ଏପରି ବ୍ୟାକୁଳ ହୋଇଉଠିଲା ଯେ, ତାହା କହିହେବ ନାହିଁ । ବେଳେ ବେଳେ ଏପରି ଯନ୍ତ୍ରଣା ହେଉଥିଲା ଯେ, ମନେ ହେଉଥିଲା ଛାତି ଭିତରଟା ଯେପରି କିଏ ଗାମୁଛା-ଚିପୁଡ଼ିବା ପରି ଜୋର୍ କରି ଚିପୁଡ଼ି ଦେଉଛି ! ସେତେବେଳେ ନିଜକୁ ଆଉ ସମ୍ଭାଳି ପାରୁ ନ ଥିଲି, ଦୌଡ଼ି ବଗିଚାର ଉତ୍ତର ଅଂଶର ଝାଉଁବଣକୁ, ଯେଉଁଠାକୁ କେହି ସେତେ ଯାଆନ୍ତି ନାହିଁ, ଯାଇ, 'ଆରେ, ତୁ ଆରେ, ତୋତେ ନ ଦେଖି ଆଉ ରହିପାରୁ ନାହିଁ' ବୋଲି ଡାକ ଛାଡ଼ି କାନ୍ଦିବାକୁ ଲାଗୁଥିଲି ! କିଛି ସମୟ ଏହିପରି କାନ୍ଦିବା ପରେ ନିଜକୁ ସମ୍ଭାଳି ପାରୁଥିଲି ! କ୍ରମାନ୍ୱୟରେ ଛଅମାସ ସେହି ପ୍ରକାର ହୋଇଥିଲା ! ଅନ୍ୟ ଯେଉଁ ପିଲାମାନେ ଏଠାକୁ ଆସୁଥିଲେ, ସେମାନଙ୍କ ମଧ୍ୟରୁ କେତେବେଳେ କାହାପାଇଁ ମନ ଖରାପ ହୁଏ, ମାତ୍ର ନରେନ୍ଦ୍ର ପାଇଁ ଯେପରି ହୋଇଥିଲା ତାହା ତୁଳନାରେ ସେସବୁ କିଛି ନୁହେଁ ବୋଲି କହିଲେ ଚଳେ ।''

ନରେନ୍ଦ୍ରନାଥଙ୍କୁ ପ୍ରଥମ ଦିନ ଦକ୍ଷିଣେଶ୍ୱରରେ ଦେଖି ଠାକୁରଙ୍କ ମନରେ ଯେଉଁ ଅପୂର୍ବ ଭାବର ଉଦୟ ହୋଇଥିଲା, ତାର ଅନେକ କଥା ଲୁଚାଇରଖି ଯେ ସେ ଆମକୁ ଏପରି କହିଥିଲେ, ତାହା ଆମେ ପରେ ବିଶ୍ୱସ୍ତ ସୂତ୍ରରୁ ଅବଗତ ହୋଇଥିଲୁ । ଶ୍ରୀଯୁକ୍ତ ନରେନ୍ଦ୍ରନାଥ ଦିନେ ଉକ୍ତଦିବସର କଥା ପ୍ରସଙ୍ଗରେ ଆମକୁ କହିଥିଲେ —

## ଠାକୁରଙ୍କର ସେଦିନର କଥା ଓ ବ୍ୟବହାର-ସମ୍ବନ୍ଧରେ ନରେନ୍ଦ୍ରଙ୍କର ବିବରଣୀ :

''ଗୀତ ତ ଗାଇଲି, ତା'ପରେ ଠାକୁର ହଠାତ୍ ଉଠି ମୋର ହାତ ଧରି ତାଙ୍କ ଘରର ଉତ୍ତରପଟ ବାରଣ୍ଡାକୁ ନେଇଗଲେ । ସେତେବେଳେ ଶୀତକାଳ, ଉତ୍ତରାପବନ ନିବାରଣ ପାଇଁ ଉକ୍ତ ବାରଣ୍ଡାରେ ଖୋଲା ଜାଗାଗୁଡ଼ିକ ପରଦା ଦେଇ ଘେରା ହୋଇଥିଲା; ସୁତରାଂ ଏହା ଭିତରକୁ ପଶି ଘରର ଦରଜାଟି ବନ୍ଦ କରିଦେଲେ ଘର ଭିତର ବା ବାହାରର କୌଣସି ଲୋକକୁ ଦେଖାଯାଏ ନାହିଁ । ବାରଣ୍ଡାରେ ପ୍ରବେଶ କରି ଠାକୁର ଘରର ଦରଜାଟି ବନ୍ଦ କରିଦେବାରୁ ଭାବିଲି, ମୋତେ ବୋଧହୁଏ ନିର୍ଜନରେ କିଛି ଉପଦେଶ ଦେବେ । କିନ୍ତୁ ସେ ଯାହା କହିଲେ ଏବଂ କଲେ ତାହା ସମ୍ପୂର୍ଣ୍ଣ କଳ୍ପନାତୀତ ଥିଲା । ହଠାତ୍ ମୋର ହାତଧରି ଦରଦରଧାରରେ ଆନନ୍ଦାଶ୍ରୁ ବିସର୍ଜନ କରିବାକୁ ଲାଗିଲେ ଏବଂ ପୂର୍ବପରିଚିତ ପରି ମୋତେ ପରମ ସ୍ନେହରେ ସମ୍ବୋଧନ କରି କହିବାକୁ ଲାଗିଲେ, 'ଏତେ ଦିନ ପରେ ଆସିବା ହେଲା ? ମୁଁ ତୋ ପାଇଁ କିପରି ଅପେକ୍ଷା କରି ରହିଛି

ତାହା ଥରେ ହେଲେ ଭାବିଲୁ ନାହିଁ ? ବିଷୟୀ ଲୋକମାନଙ୍କର ବାଜେ ପ୍ରସଙ୍ଗ ଶୁଣି ଶୁଣି ମୋର କାନ ପୋଡ଼ିଯାଉଛି; ପ୍ରାଣର କଥା କାହାକୁ କହି ନ ପାରି ମୋର ପେଟ ଫୁଲି ରହିଛି !' —ଇତ୍ୟାଦି କେତେ କ'ଣ କହି କାନ୍ଦିଲେ ! ପର ମୁହୂର୍ତ୍ତରେ ହିଁ ମୋ ସାମ୍ନାରେ କରଯୋଡ଼ି ଦଣ୍ଡାୟମାନ ହୋଇ ଦେବତାଙ୍କ ପରି ମୋ ପ୍ରତି ସମ୍ମାନ ପ୍ରଦର୍ଶନପୂର୍ବକ କହିବାକୁ ଲାଗିଲେ, 'ମୁଁ ଜାଣେ ପ୍ରଭୁ, ତୁମେ ସେହି ପୁରାତନ ଋଷି, ନରରୂପୀ ନାରାୟଣ, ଜୀବର ଦୁର୍ଗତି ନିବାରଣ କରିବାକୁ ପୁନରାୟ ଶରୀରଧାରଣ କରିଅଛ' ଇତ୍ୟାଦି !

## ନରେନ୍ଦ୍ରଙ୍କର ପୁନର୍ବାର ଆସିବାର ପ୍ରତିଶ୍ରୁତି :

''ମୁଁ ତ ତାଙ୍କର ଏପରି ଆଚରଣରେ ସମ୍ପୂର୍ଣ୍ଣ ନିର୍ବାକ—ସ୍ତମ୍ଭିତ ! ମନେ ମନେ ଭାବିବାକୁ ଲାଗିଲି ଏକାହାକୁ ଦେଖିବାକୁ ଆସିଛି, ଇଏ ତ ସମ୍ପୂର୍ଣ୍ଣ ଉନ୍ମାଦ—ନ ହେଲେ ମୁଁ ବିଶ୍ୱନାଥ ଦତ୍ତଙ୍କର ପୁତ୍ର, ମୋତେ ଏସବୁ କଥା କାହିଁକି କହିଥାନ୍ତେ ? ଯାହାହେଉ, ଚୁପ ରହିଲି, ଅଦ୍ଭୁତ ପାଗଳ ଯାହାଇଚ୍ଛା କହିଗଲେ । ପରମୂହୂର୍ତ୍ତରେ ମୋତେ ସେଠାରେ ରହିବାକୁ କହି ସେ ଘରମଧ୍ୟକୁ ଗଲେ ଏବଂ ଲହୁଣୀ ମିଶ୍ରି ଓ କେତେଗୁଡ଼ିଏ ସନ୍ଦେଶ ଆଣି ସ୍ୱହସ୍ତରେ ମୋତେ ଖୁଆଇବାକୁ ଲାଗିଲେ । ମୁଁ ଯେତେ କହିଲି, ମୋତେ ସେସବୁ ଖାଇବା ଜିନିଷ ଦିଅନ୍ତୁ ମୁଁ ସାଙ୍ଗମାନଙ୍କ ସହିତ ବାଣ୍ଟିକି ଖାଇବି, ସେ କିଛି ଶୁଣିଲେ ନାହିଁ । କହିଲେ, 'ସେମାନେ ପରେ ଖାଇବେ, ଏବେ ତୁମେ ଖାଅ ।'—ଏହା କହି ସବୁତକ ମୋତେ ଖୁଆଇ ସାରିଲା ପରେ ସେ ନିରସ୍ତ ହେଲେ । ପରେ ହାତ ଧରି କହିଲେ, 'କୁହ, ତୁମେ ଶୀଘ୍ର ଦିନେ ଏଠାରେ ମୋ ନିକଟକୁ ଏକୁଟିଆ ଆସିବ ?' ତାଙ୍କର ସେହିପ୍ରକାର ଏକାନ୍ତ ଅନୁରୋଧ ଏଡ଼ାଇ ନ ପାରି ଅଗତ୍ୟା 'ଆସିବି' କହିଲି ଏବଂ ତାଙ୍କ ସହିତ ଘର ଭିତରକୁ ଆସି ସାଙ୍ଗମାନଙ୍କ ନିକଟରେ ବସିଲି ।

## ପ୍ରଥମ ଦର୍ଶନରେ ଠାକୁରଙ୍କ ସମ୍ବନ୍ଧରେ ନରେନ୍ଦ୍ରଙ୍କର ଧାରଣା—ଇଏ ଅର୍ଦ୍ଧୋନ୍ମାଦ, କିନ୍ତୁ ଈଶ୍ୱରଙ୍କ ପାଇଁ ଯଥାର୍ଥ ସର୍ବସ୍ୱତ୍ୟାଗୀ :

''ସାଙ୍ଗମାନଙ୍କ ସହିତ ବସି ତାଙ୍କୁ ଲକ୍ଷ୍ୟ କରିବାକୁ ଲାଗିଲି ଓ ଭାବିବାକୁ ଲାଗିଲି । ଦେଖିଲି, ତାଙ୍କର ଚାଲିଚଳନ, କଥାବାର୍ତ୍ତା, ଅନ୍ୟମାନଙ୍କ ସହିତ ଆଚରଣରେ ଉନ୍ମାଦ ପରି କିଛି ନାହିଁ । ତାଙ୍କର ସଦାଳାପ ଓ ଭାବସମାଧି ଦେଖି ମନେହେଲା ସତ୍ୟ ସତ୍ୟ ହିଁ ସେ ଈଶ୍ୱରଙ୍କ ପାଇଁ ସର୍ବତ୍ୟାଗୀ ଏବଂ ଯାହା କହୁଛନ୍ତି ତାହା ସ୍ୱୟଂ ଅନୁଷ୍ଠାନ କରିଛନ୍ତି । 'ତୁମମାନଙ୍କୁ ଯେପରି ଦେଖୁଛି, ତୁମମାନଙ୍କ ସହିତ ଯେପରି କଥା କହୁଛି, ଏହିପରି ଈଶ୍ୱରଙ୍କୁ ଦେଖାଯାଏ ଏବଂ ତାଙ୍କ ସହିତ କଥା କହି ହୁଏ, ମାତ୍ର ଏପରି କରିବାକୁ କିଏ ଚାହେଁ ? ଲୋକମାନେ ସ୍ତ୍ରୀ ପୁତ୍ରଙ୍କର ଶୋକରେ ଢାଳ ଢାଳ ଅଶ୍ରୁ ବିସର୍ଜନ କରନ୍ତି, ବିଷୟ ବା ଟଙ୍କା ପଇସା ପାଇଁ

ସେପରି କରନ୍ତି, କିନ୍ତୁ ଈଶ୍ୱରଙ୍କୁ ପାଇଲି ନାହିଁ ବୋଲି ସେପରି କିଏ କରେ କୁହ ? ତାଙ୍କୁ ପାଇଲି ନାହିଁ ବୋଲି ଯଦି ସେହିପରି ବ୍ୟାକୁଳ ହୋଇ କେହି ତାଙ୍କୁ ଡାକେ ତା'ହେଲେ ସେ ତାକୁ ନିଶ୍ଚୟ ଦେଖାଦିଅନ୍ତି'—ତାଙ୍କ ମୁହଁରୁ ଏସମସ୍ତ କଥା ଶୁଣି ମନେହେଲା ସେ ଅନ୍ୟ ଧର୍ମପ୍ରଚାରକମାନଙ୍କ ସଦୃଶ କଳ୍ପନା ବା ରୂପକର ସହାୟତା ନେଇ ସେପରି କହୁ ନାହାନ୍ତି, ସତକୁ ସତ ସର୍ବସ୍ୱ ତ୍ୟାଗ କରି ଏବଂ ସମ୍ପୂର୍ଣ୍ଣ ମନରେ ଈଶ୍ୱରଙ୍କୁ ଡାକି ଯାହା ପ୍ରତ୍ୟକ୍ଷ ଦେଖିଛନ୍ତି, ତାହା ହିଁ କହୁଛନ୍ତି । ସେତେବେଳେ ତାଙ୍କର ଏହାପୂର୍ବର ଆଚରଣ ସହିତ ଏସମସ୍ତ କଥାର ସାମଞ୍ଜସ୍ୟ କରିବାକୁ ଯାଇ 'ଏବାରକ୍ରାମ୍ବି'ପ୍ରମୁଖ ଇଂରେଜ ଦାର୍ଶନିକଗଣ ସେମାନଙ୍କର ଗ୍ରନ୍ଥରେ ଯେଉଁ ସମସ୍ତ ଅର୍ଦ୍ଧୋନ୍ମାଦର (monomaniac) ଉଲ୍ଲେଖ କରିଛନ୍ତି, ସେହି ସମସ୍ତ ଦୃଷ୍ଟାନ୍ତ ମନରେ ଉଦିତ ହେଲା, ଏବଂ ଦୃଢ଼ ନିଶ୍ଚୟ କଲି, ଇଏ ମଧ୍ୟ ସେହିପରି ହୋଇଅଛନ୍ତି । ଏପରି ନିଶ୍ଚୟ କରି ମଧ୍ୟ ତାଙ୍କର ଈଶ୍ୱରାର୍ଥେ ଅଦ୍ଭୁତ ତ୍ୟାଗର ମହିମା ଭୁଲିପାରିଲି ନାହିଁ । ନିର୍ବାକ ହୋଇ ଭାବିବାକୁ ଲାଗିଲି, ଉନ୍ମାଦ ହେଲେ ମଧ୍ୟ ଈଶ୍ୱରଙ୍କ ପାଇଁ ଏପରି ତ୍ୟାଗ ଜଗତରେ ବିରଳ ବ୍ୟକ୍ତି ହିଁ କରିବାକୁ ସକ୍ଷମ; ଉନ୍ମାଦ ହେଲେ ମଧ୍ୟ ଏହି ବ୍ୟକ୍ତି ମହାପବିତ୍ର, ମହାତ୍ୟାଗୀ ଏବଂ ଏଥିପାଇଁ ମାନବ ହୃଦୟର ଶ୍ରଦ୍ଧା, ପୂଜା ଓ ସମ୍ମାନ ପାଇବାର ଯଥାର୍ଥ ଅଧିକାରୀ ! ଏପରି ଭାବି ଭାବି ସେଦିନ ତାଙ୍କର ଚରଣ ବନ୍ଦନା କରି ତାଙ୍କ ନିକଟରୁ ବିଦାୟ ଗ୍ରହଣ ପୂର୍ବକ କଲିକତା ଫେରିଲି ।''

ଯାହାଙ୍କୁ ଦେଖି ଠାକୁରଙ୍କ ମନରେ ଏପରି ଅଦୃଷ୍ଟପୂର୍ବ ଭାବର ଉଦୟ ହୋଇଥିଲା, ତାଙ୍କର ପୂର୍ବକଥା ପାଠକ ଜାଣିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିବେ, ତେଣୁ ଏବେ ସଂକ୍ଷେପରେ ଆମେ ସେହି ଆଲୋଚନାରେ ପ୍ରବୃତ୍ତ ହେଉଛୁ ।

### ନରେନ୍ଦ୍ରଙ୍କର ଏହି ସମୟର ଧର୍ମାନୁଷ୍ଠାନ :

ଶ୍ରୀଯୁକ୍ତ ନରେନ୍ଦ୍ର ସେତେବେଳେ କେବଳ ବିଦ୍ୟାର୍ଜନରେ ଏବଂ ସଙ୍ଗୀତ ଶିକ୍ଷାରେ କାଳଯାପନ କରୁ ନ ଥିଲେ—କିନ୍ତୁ ଧର୍ମଭାବର ତୀବ୍ର ପ୍ରେରଣାରେ ଅଖଣ୍ଡ ବ୍ରହ୍ମଚର୍ଯ୍ୟପାଳନରେ ଓ କଠୋର ତପସ୍ୟାରେ ନିଯୁକ୍ତ ହୋଇଥିଲେ । ସେ ନିରାମିଷଭୋଜୀ ହୋଇ ଭୂମି ଅଥବା କମ୍ବଳଶଯ୍ୟାରେ ଶୟନ କରୁଥିଲେ । ତାଙ୍କର ପିତ୍ରାଳୟ ନିକଟରେ ତାଙ୍କ ମାତାମହୀଙ୍କର ଖଣ୍ଡିଏ ଭଡ଼ା ଘର ଥିଲା; ପ୍ରବେଶିକା ପରୀକ୍ଷା ପରଠାରୁ ସେହି ଘରର ବହିର୍ଭାଗର ଦୋତାଲାରେ ଗୋଟିଏ କୋଠାରୀରେ ସେ ପ୍ରଧାନତଃ ରହୁଥିଲେ । ଯେତେବେଳେ ସେଠାରେ କୌଣସି କାରଣରୁ ରହିବାର ଅସୁବିଧା ହେଉଥିଲା ସେତେବେଳେ ଉକ୍ତ ଘର ନିକଟରେ ଗୋଟିଏ ଘର ଭଡ଼ାନେଇ ଆତ୍ମୀୟସ୍ୱଜନ ଓ ପରିବାରବର୍ଗଙ୍କଠାରୁ ଦୂରରେ ପୃଥକ

ଭାବରେ ଅବସ୍ଥାନପୂର୍ବକ ସେ ନିଜ ଉଦ୍ଦେଶ୍ୟସାଧନରେ ନିଯୁକ୍ତ ରହୁଥିଲେ । ତାଙ୍କର ପିତା ଓ ଘରେ ଅନ୍ୟମାନେ ଜାଣିଥିଲେ, ଘରେ ବହୁପରିବାର ହେତୁ ନାନା ପ୍ରକାର ଗଣ୍ଡଗୋଳ ଯୋଗୁଁ ପାଠ ପଢ଼ିବାରେ ସୁବିଧା ହେଉ ନାହିଁ ବୋଲି ହିଁ ସେ ପୃଥକ ଅବସ୍ଥାନ କରୁଛନ୍ତି ।

### ବ୍ରାହ୍ମସମାଜକୁ ଯିବା ଆସିବା :

ଶ୍ରୀଯୁକ୍ତ ନରେନ୍ଦ୍ରନାଥ ସେତେବେଳେ ବ୍ରାହ୍ମସମାଜକୁ ମଧ୍ୟ ଯିବା ଆସିବା କରୁଥିଲେ ଏବଂ ନିରାକାର ସଗୁଣ-ବ୍ରହ୍ମଙ୍କର ଅସ୍ତିତ୍ୱରେ ବିଶ୍ୱାସୀ ହୋଇ ତାହାଙ୍କ ଧ୍ୟାନରେ ଅନେକ ସମୟ କଟାଉଥିଲେ । ଯୁକ୍ତିତର୍କ ସାହାଯ୍ୟରେ ନିରାକାର ଈଶ୍ୱରଙ୍କର ପ୍ରତିଷ୍ଠାମାତ୍ର କରି ସେ ସାଧାରଣ ମଣିଷ ପରି ସନ୍ତୁଷ୍ଟ ରହି ପାରୁ ନ ଥିଲେ । ପୂର୍ବର ପୁଣ୍ୟସଂସ୍କାରସମୂହର ପ୍ରେରଣାରେ ତାଙ୍କର ପ୍ରାଣ ତାଙ୍କୁ ନିରନ୍ତର କହୁଥିଲା—ଯଦି ଶ୍ରୀଭଗବାନ ସତରେ ଥାନ୍ତି, ତା ହେଲେ ମାନବ-ହୃଦୟର ବ୍ୟାକୁଳ ଆହ୍ୱାନରେ ସେ କେବେ ହେଲେ ନିଜର ସ୍ୱରୂପ ଗୋପନ ରଖିବେ ନାହିଁ, ତାଙ୍କୁ ଲାଭ କରିବାର ପଥ ସେ ନିଶ୍ଚିତ କରି ରଖିଛନ୍ତି, ଏଣୁ ତାଙ୍କୁ ଲାଭ କରିବା ବ୍ୟତୀତ ଅନ୍ୟ ଉଦ୍ଦେଶ୍ୟରେ ଜୀବନଧାରଣ କରିବା ବିଡ଼ମ୍ବନା ମାତ୍ର । ଆମମାନଙ୍କର ସ୍ମରଣ ଅଛି ଥରେ ସେ ଆମମାନଙ୍କୁ କହିଥିଲେ—

### ନରେନ୍ଦ୍ରଙ୍କର ଅଦ୍ଭୁତ କଳ୍ପନାଦ୍ୱୟ :

‘‘ଯୌବନରେ ପଦାର୍ପଣ କରିବା ପର୍ଯ୍ୟନ୍ତ ପ୍ରତିଦିନ ରାତିରେ ଶୋଇବା ସଙ୍ଗେ ସଙ୍ଗେ ଦୁଇଟି କଳ୍ପନା ମୋର ଚକ୍ଷୁ ସମ୍ମୁଖରେ ଭାସି ଉଠୁଥିଲା । ଗୋଟିଏ ହେଲା ଯେପରି ମୋର ଅଶେଷ ଧନ-ଜନ-ସମ୍ପଦ ଐଶ୍ୱର୍ଯ୍ୟ ଆଦି ଲାଭ ହୋଇଅଛି, ସଂସାରରେ ଯାହାକୁ ବଡ଼ଲୋକ ବୋଲି କହନ୍ତି ସେମାନଙ୍କର ଶୀର୍ଷସ୍ଥାନରେ ଯେପରି ଆରୂଢ଼ ହୋଇରହିଛି, ମନେ ହେଉଥିଲା ସେହିପରି ହେବାର ଶକ୍ତି ମୋ ଭିତରେ ସତରେ ହିଁ ରହିଅଛି । ପୁଣି ପରକ୍ଷଣରେ ଦେଖୁଥିଲି, ମୁଁ ଯେପରି ପୃଥିବୀର ସର୍ବସ୍ୱ ତ୍ୟାଗ କରି ଏକମାତ୍ର ଈଶ୍ୱରଙ୍କ ଇଚ୍ଛା ଉପରେ ନିର୍ଭରପୂର୍ବକ କୌପୀନଧାରଣ, ଯଦୃଚ୍ଛାଲବ୍ଧ ଭୋଜନ ଏବଂ ବୃକ୍ଷତଳେ ରାତ୍ରିଯାପନ କରି କାଳ କଟାଉଛି । ମନେ ହେଉଥିଲା ଇଚ୍ଛା କଲେ ମୁଁ ସେହି ଭାବରେ ଋଷିମୁନିଙ୍କ ସଦୃଶ ଜୀବନଯାପନରେ ସମର୍ଥ । ଏପରି ଦୁଇ ପ୍ରକାରରେ ଜୀବନ ନିୟମିତ କରିବାର ଛବି କଳ୍ପନାରେ ଉଦିତ ହୋଇ ପରିଶେଷରେ ଦ୍ୱିତୀୟଟି ହିଁ ହୃଦୟ ଅଧିକାର କରି ବସୁଥିଲା । ଭାବୁଥିଲି ସେହି ପ୍ରକାରରେ ହିଁ ମାନବ ପରମାନନ୍ଦ ଲାଭ କରିପାରେ, ତେଣୁ ମୁଁ ସେହିପରି ହିଁ କରିବି । ସେତେବେଳେ ସେହି ପ୍ରକାର ଜୀବନର ସୁଖ ଭାବୁ ଭାବୁ ଈଶ୍ୱରଚିନ୍ତାରେ ମନ ନିମଗ୍ନ ହେଉଥିଲା ଏବଂ ଶୋଇପଡୁଥିଲି । ଆଶ୍ଚର୍ଯ୍ୟର ବିଷୟ ଯେ ପ୍ରତ୍ୟହ ଅନେକ ଦିନ ପର୍ଯ୍ୟନ୍ତ ସେହି ପ୍ରକାର ହୋଇଥିଲା !’’

## ନରେନ୍ଦ୍ରଙ୍କର ସ୍ୱାଭାବିକ ଧ୍ୟାନାନୁରାଗ :

ଧ୍ୟାନକୁ ହିଁ ନରେନ୍ଦ୍ରନାଥ ଈଶ୍ୱରଲାଭର ଏକମାତ୍ର ପ୍ରଶସ୍ତ ପଥରୂପେ ଏହି ବୟସରେ ସ୍ୱତଃ ଧାରଣା କରିଥିଲେ । ତାହା ତାଙ୍କର ପୂର୍ବସଂସ୍କାରଜାତ ଜ୍ଞାନ ବୋଲି ବେଶ୍ ବୁଝାଯାଏ । ତାଙ୍କର ବୟସ ଯେତେବେଳେ ଚାରି ପାଞ୍ଚ ବର୍ଷ ହେବ ସେତେବେଳେ ସୀତାରାମ, ମହାଦେବ ପ୍ରଭୃତି ଦେବଦେବୀଙ୍କର ଛୋଟ ଛୋଟ ମୃଣ୍ମୟ ମୂର୍ତ୍ତିସବୁ ବଜାରରୁ କ୍ରୟ କରି ଫୁଲରେ ସଜାଇ ତାଙ୍କ ସମ୍ମୁଖରେ ଧ୍ୟାନ କଲା ପରି ଚକ୍ଷୁ ମୁଦ୍ରିତ କରି ନିଷ୍ପନ୍ଦ ଭାବରେ ବସି ରହୁଥିଲେ ଏବଂ ବେଳେ ବେଳେ ଚାହିଁ ଦେଖୁଥିଲେ, ଏହା ମଧ୍ୟରେ ତାଙ୍କର ମଥାରେ ସୁଦୀର୍ଘ ଜଟା ଲମ୍ବିଯାଇ ବୃକ୍ଷର ମୂଳ ପରି ମାଟି ଭିତରେ ପଶିଲା କି ନାହିଁ—କାରଣ ଘରର ବୃଦ୍ଧା ସ୍ତ୍ରୀଲୋକମାନଙ୍କ ନିକଟରୁ ସେ ଶୁଣିଥିଲେ, ଧ୍ୟାନ କରୁ କରୁ ମୁନିଋଷିମାନଙ୍କର ଜଟା ହୋଇଯାଏ ଏବଂ ତାହା ବୃକ୍ଷମୂଳ ପରି ମାଟି ଭିତରକୁ ଲମ୍ବିଯାଏ । ତାଙ୍କର ପୂଜନୀୟା ମାତା କହୁଥିଲେ, ସେହି ସମୟରେ ଦିନେ ନରେନ୍ଦ୍ରନାଥ ହରି ନାମକ ଏକ ପ୍ରତିବେଶୀ ବାଳକ ସହିତ ସମସ୍ତଙ୍କର ଅଜାଣତରେ ଘରର ଏକ ନିଭୃତ ସ୍ଥାନକୁ ଯାଇ ଏତେ ଅଧିକ ସମୟ ଧ୍ୟାନ କଲା ପରି ବସିଥିଲେ ଯେ, ସମସ୍ତେ ବାଳକକୁ ନ ପାଇ ଭାବିଥିଲେ ପଥ ହରାଇ ବାଳକ କେଉଁଆଡ଼େ ଘୁରିବୁଲୁଛି । ଚତୁର୍ଦ୍ଦିଗ ଅନ୍ୱେଷଣ କରି ପରେ ଘରର କବାଟ ଭିତରୁ ବନ୍ଦ ଦେଖି ଜଣେ ସେ କବାଟକୁ ଭାଙ୍ଗି ପ୍ରବେଶ କରି ଦେଖିଲେ—ବାଳକ ସେପର୍ଯ୍ୟନ୍ତ ନିଷ୍ପନ୍ଦ ଭାବରେ ବସିରହିଛି । ବାଲ୍ୟ-କଳ୍ପନା ହେଲେ ମଧ୍ୟ ଏଥିରୁ ବୁଝାଯାଏ ଶ୍ରୀଯୁକ୍ତ ନରେନ୍ଦ୍ର କିପରି ଅଦ୍ଭୁତ ସଂସ୍କାର ନେଇ ସଂସାରରେ ଜନ୍ମଗ୍ରହଣ କରିଥିଲେ । ସେ ଯାହାହେଉ, ଆମେ ଯେଉଁ ସମୟର କଥା କହୁଛୁ, ସେହି ସମୟରେ ତାଙ୍କର ଆତ୍ମୀୟବର୍ଗ ପ୍ରାୟ କେହି ଜାଣି ନ ଥିଲେ ଯେ, ସେ ପ୍ରତିଦିନ ଧ୍ୟାନ ଅଭ୍ୟାସ କରନ୍ତି । କାରଣ ରାତିରେ ସମସ୍ତେ ଶୋଇଗଲା ପରେ ଘରର କବାଟ ବନ୍ଦ କରି ସେ ଧ୍ୟାନ କରିବାକୁ ବସୁଥିଲେ ଏବଂ ବେଳେ ବେଳେ ଏଥିରେ ଏତେଦୂର ନିମଗ୍ନ ହେଉଥିଲେ ଯେ, ସମସ୍ତ ରାତ୍ରି ଅତିବାହିତ ହେବା ପରେ ତାଙ୍କର ସେବିଷୟର ଜ୍ଞାନ ହେଉଥିଲା ।

## ମହର୍ଷି ଦେବେନ୍ଦ୍ରନାଥଙ୍କର ଉପଦେଶରେ ସେହି ଅନୁରାଗ ବୃଦ୍ଧି :

ଏସମୟର କିଛି ଦିନ ପୂର୍ବର ଏକ ଘଟଣାରେ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କର ଧ୍ୟାନ କରିବାର ପ୍ରବୃତ୍ତି ବିଶେଷ ଉତ୍ସାହ ଲାଭ କରିଥିଲା । କେତେକ ସମବୟସ୍କଙ୍କ ସହିତ ସେ ଦିନେ ଆଦି ବ୍ରାହ୍ମସମାଜର ପୂଜ୍ୟପାଦ ଆଚାର୍ଯ୍ୟ ମହର୍ଷି ଦେବେନ୍ଦ୍ରନାଥଙ୍କ ସହିତ ସାକ୍ଷାତ କରିବାକୁ ଯାଇଥିଲେ । ମହର୍ଷି ସେଦିନ ଯୁବକମାନଙ୍କୁ ସାଦର ପାଖରେ ବସାଇ ଅନେକ ସଦୁପଦେଶ ପ୍ରଦାନପୂର୍ବକ ପ୍ରତିଦିନ ଈଶ୍ୱରଙ୍କର ଧ୍ୟାନାଭ୍ୟାସ କରିବାକୁ ଅନୁରୋଧ କରିଥିଲେ । ନରେନ୍ଦ୍ରନାଥଙ୍କୁ ଲକ୍ଷ୍ୟ କରି ସେ

ସେଦିନ କହିଥିଲେ, ତୁମଠାରେ ଯୋଗୀର ଲକ୍ଷଣସମୂହ ପ୍ରକାଶିତ ରହିଛି, ତୁମେ ଧ୍ୟାନାଭ୍ୟାସ କଲେ ଯୋଗଶାସ୍ତ୍ର-ନିର୍ଦ୍ଦିଷ୍ଟ ଫଳଗୁଡ଼ିକ ଅତିଶୀଘ୍ର ପ୍ରତ୍ୟକ୍ଷ କରିବ । ମହର୍ଷିଙ୍କର ପୁଣ୍ୟ ଚରିତ୍ର ପାଇଁ ନରେନ୍ଦ୍ରନାଥ ତାଙ୍କ ପ୍ରତି ପୂର୍ବରୁ ଶ୍ରଦ୍ଧାବାନ ଥିଲେ, ସୁତରାଂ ତାଙ୍କର ସେହିପରି କଥାରେ ସେ ଯେ ସେହି ଦିନଠାରୁ ଧ୍ୟାନାଭ୍ୟାସରେ ଅଧିକତର ମନୋନିବେଶ କରିଥିଲେ ଏବିଷୟରେ ସନ୍ଦେହ ନାହିଁ ।

**ନରେନ୍ଦ୍ରଙ୍କର ବହୁମୁଖୀ ପ୍ରତିଭା :**

ବାଲ୍ୟକାଳରୁ ହିଁ ନାନାପ୍ରକାର ବିଷୟରେ ନରେନ୍ଦ୍ରନାଥଙ୍କର ବହୁମୁଖୀ ପ୍ରତିଭାର ପରିଚୟ ମିଳୁଥିଲା । ପାଞ୍ଚବର୍ଷ ଅତିକ୍ରମ କରିବା ପୂର୍ବରୁ ସେ ମୁଗ୍ଧବୋଧ ବ୍ୟାକରଣର ସମସ୍ତ ସୂତ୍ରଗୁଡ଼ିକ ଆବୃତ୍ତି କରିପାରୁଥିଲେ । ଜଣେ ବୃଦ୍ଧ ଆତ୍ମୀୟ ପ୍ରତିଦିନ ସନ୍ଧ୍ୟା ସମୟରେ ତାଙ୍କୁ କୋଳରେ ବସାଇ ପିତୃପୁରୁଷଙ୍କର ନାମାବଳୀ, ଦେବଦେବୀସ୍ତୋତ୍ରସମୂହ ଏବଂ ଉକ୍ତ ବ୍ୟାକରଣର ସୂତ୍ର ସବୁ ଶିଖାଇଥିଲେ । ଛଅବର୍ଷ ବୟସରେ ସେ ରାମାୟଣର ସମଗ୍ର ପାଲା କଣ୍ଠସ୍ଥ କରିବାକୁ ସମର୍ଥ ହୋଇଥିଲେ ଏବଂ ପଲ୍ଲୀର କୌଣସି ସ୍ଥାନରେ ରାମାୟଣ ଗାନ ହେଉଥିବା ଶୁଣିଲେ ହିଁ ସେଠାରେ ଉପସ୍ଥିତ ହେଉଥିଲେ । ଶୁଣାଯାଏ ତାଙ୍କ ଘର ନିକଟରେ ଗୋଟିଏ ଜାଗାରେ ଜଣେ ରାମାୟଣ-ଗାୟକ ଦିନେ ଗୋଟିଏ ପାଲା ଗାଉ ଗାଉ ତାହାର କିଛି ଅଂଶ ସ୍ମରଣ କରିପାରିଲେ ନାହିଁ, ନରେନ୍ଦ୍ର ତାଙ୍କୁ ତାହା ତତ୍‌କ୍ଷଣାତ୍ କହି ଦେଇ ତାଙ୍କଠାରୁ ବିଶେଷ ସମାଦର ଓ କିଛି ମିଷ୍ଟାନ୍ନ ଲାଭ କରିଥିଲେ । ରାମାୟଣ ଶୁଣିବାକୁ ଯାଇ ନରେନ୍ଦ୍ରନାଥ ବେଳେ ବେଳେ ଚାରିଆଡ଼କୁ ଅନାଇ ଦେଖୁଥିଲେ, ଶ୍ରୀରାମଚନ୍ଦ୍ରଙ୍କର ଦାସ ମହାବୀର ହନୁମାନ ତାଙ୍କର ପ୍ରତିଶ୍ରୁତି ଅନୁସାରେ ସେଠାରେ ରାମାୟଣ ଶୁଣିବା ପାଇଁ ଉପସ୍ଥିତ ଅଛନ୍ତି କି ନାହିଁ ! ଶ୍ରୁତିଧରସଦୃଶ ନରେନ୍ଦ୍ରନାଥଙ୍କର ପ୍ରବଳ ସ୍ମରଣ ଶକ୍ତି ଥିଲା । କୌଣସି ବିଷୟ ଥରେ ଶୁଣିଲେ ହିଁ ତାହା ତାଙ୍କର ଆୟତ୍ତ ହୋଇଯାଉଥିଲା । ଆହୁରି ମଧ୍ୟ ଥରେ କୌଣସି ବିଷୟ ଆୟତ୍ତ ହେଲେ ତାଙ୍କ ସ୍ମୃତିରୁ ତାହା କଦାପି ଅପସାରିତ ହେଉ ନ ଥିଲା । ସେଥିପାଇଁ ଶୈଶବରୁ ହିଁ ତାଙ୍କର ପାଠାଭ୍ୟାସର ରୀତି ସାଧାରଣ ବାଳକଙ୍କ ପରି ନ ଥିଲା । ବାଲ୍ୟକାଳରେ ବିଦ୍ୟାଳୟରେ ଭର୍ତ୍ତି ହେବା ପରେ ଦୈନିକ ପାଠ ଅଭ୍ୟାସ କରାଇ ଦେବା ନିମିତ୍ତ ତାଙ୍କ ପାଇଁ ଜଣେ ଶିକ୍ଷକ ନିଯୁକ୍ତ ହୋଇଥିଲେ । ନରେନ୍ଦ୍ରନାଥ କହୁଥିଲେ, ''ସେ ଘରକୁ ଆସିଲେ ମୁଁ ଇଂରାଜୀ, ବଙ୍ଗଳା ପାଠ୍ୟପୁସ୍ତକଗୁଡ଼ିକୁ ତାଙ୍କ ନିକଟକୁ ଆଣି କେଉଁ ପୁସ୍ତକର କେଉଁଠାରୁ କେତେ ପର୍ଯ୍ୟନ୍ତ ସେଦିନ ଆୟତ୍ତ କରିବାକୁ ହେବ ତାହା ତାଙ୍କୁ ଦେଖାଇ ଦେଇ ଯଦୃଚ୍ଛା ଶୟନ ବା ଉପବେଶନ କରେ । ମାଷ୍ଟର ମହାଶୟ ଯେପରି ନିଜେ ପାଠ ପଢୁଛନ୍ତି ସେପରି ଭାବରେ ପୁସ୍ତକଗୁଡ଼ିକର ସେହି ସବୁ ସ୍ଥାନର ବନାନ, ଉଚ୍ଚାରଣ

ଓ ତାର ଅର୍ଥ ଦୁଇ-ତିନିଥର ଆବୃତ୍ତି କରି ଚାଲିଯାଉଥିଲେ । ସେଥିରେ ହିଁ ମୋର ଆୟତ୍ତ ହୋଇଯାଉଥିଲା ।'' ବଡ଼ ହେଲାପରେ ସେ ପରୀକ୍ଷାର ଦୁଇ ତିନିମାସ ପୂର୍ବରୁ ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକଗୁଡ଼ିକୁ ଆୟତ୍ତ କରିବାକୁ ଆରମ୍ଭ କରୁଥିଲେ; ଅନ୍ୟ ସମୟରେ ନିଜ ଅଭିରଚି ଅନୁସାରେ ଅନ୍ୟାନ୍ୟ ପୁସ୍ତକ ପଢ଼ି ସମୟ କଟାଉଥିଲେ । ସେହିପ୍ରକାରରେ ପ୍ରବେଶିକା ପରୀକ୍ଷା ଦେବା ପୂର୍ବରୁ ସେ ଇଂରାଜୀ ଓ ବଙ୍ଗଳାର ସମଗ୍ର ସାହିତ୍ୟ ଓ ଅନେକ ଐତିହାସିକ ଗ୍ରନ୍ଥ ପାଠ କରିଥିଲେ । ସେହିପରି କରିବା ଫଳରେ ପରୀକ୍ଷାର ଅବ୍ୟବହିତ ପୂର୍ବରୁ ତାଙ୍କୁ ବେଳେ ବେଳେ ଅତ୍ୟଧିକ ପରିଶ୍ରମ କରିବାକୁ ପଡୁଥିଲା । ଆମର ସ୍ମରଣ ଅଛି, ଦିନେ ସେ ପୂର୍ବୋକ୍ତ କଥାପ୍ରସଙ୍ଗରେ ଆମକୁ କହିଥିଲେ, ''ପ୍ରବେଶିକା ପରୀକ୍ଷା ଆରମ୍ଭ ହେବାର ଦୁଇ-ତିନି ଦିନ ମାତ୍ର ବାକି ଅଛି ଦେଖିଲି ଜ୍ୟାମିତି କିଛି ମାତ୍ର ଆୟତ୍ତ ହୋଇ ନାହିଁ; ସେତେବେଳେ ସମସ୍ତ ରାତି ଅନିଦ୍ରା ରହି ତାହା ପାଠ କରିବାକୁ ଲାଗିଲି ଏବଂ ଚବିଶ୍ ଘଣ୍ଟା ଭିତରେ ତାହାର ଚାରିଖଣ୍ଡ ପୁସ୍ତକ ଆୟତ୍ତ କରି ପରୀକ୍ଷା ଦେଲି !'' ଈଶ୍ୱରଙ୍କ ଇଚ୍ଛାରେ ସେ ଦୃଢ଼ ଶରୀର ଏବଂ ଅପୂର୍ବ ମେଧା ପ୍ରାପ୍ତ ହୋଇଥିଲେ ବୋଲି ହିଁ ସେପରି କରିପାରିଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ ।

### ନରେନ୍ଦ୍ରଙ୍କର ପଢ଼ିବା ପାଇଁ ଆଗ୍ରହ :

ଅନ୍ୟାନ୍ୟ ପୁସ୍ତକ ସବୁ ପଢ଼ି ନରେନ୍ଦ୍ରନାଥ ସମୟ କଟାଉଥିବା ଶୁଣି କେହି ଯେପରି ନ ଭାବନ୍ତି ଯେ ସେ ନଭେଲ୍-ନାଟକ ଇତ୍ୟାଦି ପଢ଼ି ସମୟ ନଷ୍ଟ କରୁଥିଲେ । ଗୋଟିଏ ଗୋଟିଏ ସମୟରେ ତାଙ୍କର ଗୋଟିଏ ଗୋଟିଏ ବିଷୟର ପୁସ୍ତକ ପଢ଼ିବାରେ ପ୍ରବଳ ଆଗ୍ରହ ହେଉଥିଲା । ସେତେବେଳେ ସେହି ବିଷୟକ ଯେତେ ଗ୍ରନ୍ଥ ସଂଗ୍ରହ କରିପାରୁଥିଲେ ସବୁକିଛି ଆୟତ୍ତ କରିନେଉଥିଲେ । ଯେପରି ୧୮୭୯ ମସିହାରେ ପ୍ରବେଶିକା ପରୀକ୍ଷା ଦେବା ବର୍ଷ ଆରମ୍ଭରୁ ଭାରତବର୍ଷର ଇତିହାସସମୂହ ପଢ଼ିବାକୁ ତାଙ୍କର ବିଶେଷ ଆଗ୍ରହ ହୋଇଥିଲା ଏବଂ ମାର୍ଶମ୍ୟାନ୍, ଏଲ୍‌ଫିନ୍‌ଷ୍ଟୋନ୍-ପ୍ରମୁଖ ଐତିହାସିକମାନଙ୍କର ଗ୍ରନ୍ଥସକଳ ପଢ଼ି ଶେଷକରିଥିଲେ — ଏଫ୍. ଏ.ପଢ଼ିବା ସମୟରେ ନ୍ୟାୟଶାସ୍ତ୍ରର ଯେତେ ପ୍ରକାର ଇଂରାଜୀ ଗ୍ରନ୍ଥ ଥିଲା, ଯଥା — ହୋୟେଟଲି, ଜେଭନ୍‌ସ୍, ମିଲ୍‌ପ୍ରମୁଖ ଗ୍ରନ୍ଥକାରମାନଙ୍କର ପୁସ୍ତକ ସବୁ ଗୋଟି ଗୋଟି କରି ଆୟତ୍ତ କରିନେଇଥିଲେ । ବି.ଏ. ପଢ଼ିବା ସମୟରେ ଇଂଲଣ୍ଡ ଓ ଇଉରୋପର ସମସ୍ତ ପ୍ରଦେଶର ପ୍ରାଚୀନ ଓ ବର୍ତ୍ତମାନ ଇତିହାସ ଓ ଇଂରାଜୀ ଦର୍ଶନଶାସ୍ତ୍ରସମୂହ ଆୟତ୍ତ କରିବାକୁ ତାଙ୍କର ଏକାନ୍ତ ବାସନା ହୋଇଥିଲା — ଏହି ପ୍ରକାର ଅନ୍ୟ ସବୁଥିରେ ବୁଝିବାକୁ ହେବ ।

## ଦ୍ରୁତ ପାଠ କରିବାର ଶକ୍ତି :

ଏହିପରି ବହୁ ଗ୍ରନ୍ଥପାଠ ଫଳରେ ପ୍ରବେଶିକା ପରୀକ୍ଷା ସମୟରୁ ଶ୍ରୀଯୁକ୍ତ ନରେନ୍ଦ୍ରନାଥଙ୍କର ଦ୍ରୁତ ପାଠ କରିବାର ଶକ୍ତି ବିଶେଷ ଭାବରେ ବିକଶିତ ହୋଇଥିଲା । ସେ କହୁଥିଲେ, ‘‘ଏବେଠାରୁ କୌଣସି ପୁସ୍ତକ ପାଠ କରିବାକୁ ବସିଲେ ତାର ପ୍ରତିଟି ଧାଡ଼ି ପରକୁ ପର ପଢ଼ି ଗ୍ରନ୍ଥକାରଙ୍କର ବକ୍ତବ୍ୟ ବୁଝିବାକୁ ମୋର ଆବଶ୍ୟକ ହେଉ ନ ଥିଲା । ପ୍ରତି ପାରାର ପ୍ରଥମ ଓ ଶେଷଧାଡ଼ି ପଢ଼ିଲେ ହିଁ ତା ମଧ୍ୟରେ କ’ଣ କୁହାଯାଇଛି ତାହା ବୁଝିପାରୁଥିଲି । କ୍ରମେ ଏହି ଶକ୍ତି ବୃଦ୍ଧି ପାଇ ପ୍ରତି ପାରା ପଢ଼ିବା ମଧ୍ୟ ଆବଶ୍ୟକ ହେଉ ନ ଥିଲା । ପ୍ରତି ପୃଷ୍ଠାର ପ୍ରଥମ ଓ ଶେଷ ଚରଣ ପଢ଼ି ହିଁ ବୁଝିପାରୁଥିଲି । ପୁଣି ପୁସ୍ତକର ଯେଉଁ ସ୍ଥାନରେ ଗ୍ରନ୍ଥକାର କୌଣସି ବିଷୟ ଯୁକ୍ତିତର୍କ ଦ୍ୱାରା ବୁଝାଇଥାଆନ୍ତି ସେଠାରେ ପ୍ରମାଣ-ପ୍ରୟୋଗ ଦ୍ୱାରା ଯୁକ୍ତିବିଶେଷ ବୁଝାଇବାକୁ ଯଦି ଚାରି ପାଞ୍ଚ ବା ତା’ଠାରୁ ଅଧିକ ପୃଷ୍ଠା ଲାଗିଥାଏ, ତା’ହେଲେ ଉକ୍ତ ଯୁକ୍ତିର ପ୍ରାରମ୍ଭ ମାତ୍ର ପଢ଼ି ସବୁକଥା ବୁଝିପାରୁଥିଲି ।

## ନରେନ୍ଦ୍ରଙ୍କର ତର୍କଶକ୍ତି :

ବହୁ ପାଠ ଓ ଗଭୀର ଚିନ୍ତା ଫଳରେ ଶ୍ରୀଯୁକ୍ତ ନରେନ୍ଦ୍ର ଏହି ସମୟରେ ଅତ୍ୟନ୍ତ ତର୍କପ୍ରିୟ ହୋଇଉଠିଥିଲେ । କିନ୍ତୁ ସେ କେବେହେଲେ ମିଥ୍ୟା ତର୍କ କରୁ ନ ଥିଲେ; ମନରେ ଓ ଜ୍ଞାନରେ ଯାହା ସତ୍ୟ ବୋଲି ବୁଝୁଥିଲେ ତର୍କଦ୍ୱାରା ସର୍ବତ୍ର ତାହାର ହିଁ ସମର୍ଥନ କରୁଥିଲେ । କିନ୍ତୁ ସେ ଯାହା ସତ୍ୟ ବୋଲି ବୁଝିଥାଆନ୍ତି ତାହାର ବିପରୀତ କୌଣସି ପ୍ରକାର ଭାବ ବା ମତ କେହି ତାଙ୍କ ନିକଟରେ ପ୍ରକାଶ କଲେ ସେ ଚୁପ୍ ରହି ତାହା ଶୁଣିଯାଇପାରୁ ନ ଥିଲେ । କଠୋର ଯୁକ୍ତି ଓ ପ୍ରମାଣ-ପ୍ରୟୋଗ ଦ୍ୱାରା ବିରୁଦ୍ଧ ପକ୍ଷର ମତ ଖଣ୍ଡନ କରି ବାଦୀକୁ ନିରସ୍ତ କରୁଥିଲେ । ବିରଳ ବ୍ୟକ୍ତି ହିଁ ତାଙ୍କର ଯୁକ୍ତିଗୁଡ଼ିକ ନିକଟରେ ମସ୍ତକ ଅବନତ କରୁ ନ ଥିଲା ! ପୁଣି ତର୍କରେ ପରାଜିତ ହୋଇ ଅନେକେ ଯେ ତାଙ୍କୁ ସୁଦୃଷ୍ଟିରେ ଦେଖୁ ନ ଥିଲେ, ଏକଥା କହିବାର ଆବଶ୍ୟକତା ନାହିଁ । ତର୍କ ସମୟରେ ବାଦୀଙ୍କର ଦୁଇ-ଚାରୋଟି କଥା ଶୁଣି ହିଁ ସେ ବୁଝି ପାରୁଥିଲେ, ସେ କି ପ୍ରକାର ଯୁକ୍ତି ଦ୍ୱାରା ନିଜ ପକ୍ଷ ସମର୍ଥନ କରିବେ ଏବଂ ତାହାର ଉତ୍ତର ତାଙ୍କ ମନରେ ପୂର୍ବରୁ ହିଁ ପ୍ରସ୍ତୁତ ରହୁଥିଲା । ତର୍କ ସମୟରେ ବାଦୀଙ୍କୁ ନିରସ୍ତ କରିବାକୁ ସେହି ପ୍ରକାର ତୀକ୍ଷ୍ଣ ଯୁକ୍ତି ପ୍ରୟୋଗ ତାଙ୍କ ମନରେ କିପରି ଉଦିତ ହେଉଥିଲା, ଏପ୍ରଶ୍ନର ଉତ୍ତରରେ ସେ ଦିନେ କହିଥିଲେ, ‘‘ପୃଥିବୀରେ କେତେଟା ଅବା ନୂତନ ଚିନ୍ତା ଅଛି ! ସେହି କେତୋଟି ଜଣାଥିଲେ ଏବଂ ସେଗୁଡ଼ିକର ସପକ୍ଷରେ ଓ ବିପକ୍ଷରେ ଯେଉଁ କେତେଟା ଯୁକ୍ତି ଏପର୍ଯ୍ୟନ୍ତ ପ୍ରଯୁକ୍ତ ହୋଇଅଛି, ସେତିକି ଆୟତ୍ତ ଥିଲେ ବାଦୀକୁ ଭାବି ଚିନ୍ତି ଉତ୍ତର ଦେବାର ପ୍ରୟୋଜନ ନ ଥାଏ । କାରଣ ବାଦୀ ଯେଉଁ କଥା ଯେଉଁ ଭାବରେ ହିଁ ସମର୍ଥନ

କରୁ ନା କାହିଁକି, ତାହା ସେସବୁ ମଧ୍ୟରେ ରହିବ ହିଁ ରହିବ । ଜଗତକୁ କୌଣସି ବିଷୟରେ ନୂତନ ଭାବ ଓ ଚିନ୍ତା ପ୍ରଦାନ କରିବାକୁ ସମର୍ଥ ବ୍ୟକ୍ତି କ୍ୱଚିତ୍ ଜନ୍ମଗ୍ରହଣ କରିଥାଆନ୍ତି ।''

ସୁତୀକ୍ଷ୍ଣ ବୁଦ୍ଧି, ଅଦୃଷ୍ଟପୂର୍ବ ମେଧା ଓ ଗଭୀର ଚିନ୍ତାଶକ୍ତି ନେଇ ଜନ୍ମଗ୍ରହଣ କରିଥିଲେ ବୋଲି ଶ୍ରୀଯୁକ୍ତ ନରେନ୍ଦ୍ରନାଥ ସମସ୍ତ ବିଷୟ ଅଳ୍ପ ସମୟ ମଧ୍ୟରେ ଆୟତ୍ତ କରିପାରୁଥିଲେ । ସେଥିପାଇଁ ପଢ଼ିବା ଅବସ୍ଥାରେ ତାଙ୍କର ସ୍ୱଚ୍ଛନ୍ଦ ବିହାର ଓ ସମବୟସ୍କଙ୍କ ସହିତ ଆମୋଦ-ପ୍ରମୋଦ କରିବାର ଅବକାଶର ଅଭାବ ହେଉ ନ ଥିଲା । ଲୋକମାନେ ତାଙ୍କୁ ଏପରି ଅନେକ ସମୟ କଟାଇବା ଦେଖି ଭାବୁଥିଲେ, ତାଙ୍କର ଲେଖାପଢ଼ାରେ ଆଦୌ ମନ ନାହିଁ । ଅନେକ ସାଧାରଣ ବାଳକ ତାଙ୍କ ଦେଖାଦେଖି ଆମୋଦ-ପ୍ରମୋଦରେ ସମୟ କଟାଇବାକୁ ଯାଇ କେବେକେବେ ନିଜର ପାଠପଢ଼ାର କ୍ଷତି କରିବସୁଥିଲେ ।

## ନରେନ୍ଦ୍ରଙ୍କର ବ୍ୟାୟାମ ଅଭ୍ୟାସରେ ଅନୁରାଗ :

ଜ୍ଞାନାର୍ଜନ ପରି ବ୍ୟାୟାମ-ଅଭ୍ୟାସରେ ମଧ୍ୟ ନରେନ୍ଦ୍ରନାଥଙ୍କର ବାଲ୍ୟକାଳରୁ ଅଶେଷ ଅନୁରାଗ ଥିଲା । ତାଙ୍କର ପିତା ଶୈଶବରେ ତାଙ୍କ ପାଇଁ ଗୋଟିଏ ଘୋଡ଼ା କିଣି ଦେଇଥିଲେ । ଫଳରେ ବୟସ ବୃଦ୍ଧି ସହିତ ସେ ଅଶ୍ୱଚାଳନାରେ ସୁଦକ୍ଷ ହୋଇଉଠିଥିଲେ । ଏହାଛଡ଼ା ଜିମ୍ନାଷ୍ଟିକ୍, କୁସ୍ତି, ମୁଦ୍‌ଗର ଚଳାଇବା, ବାଡ଼ିଖେଳ, ଅସିଚାଳନା, ସନ୍ତରଣ ପ୍ରଭୃତି ଯେଉଁ ସମସ୍ତ ବିଦ୍ୟା ଶାରୀରିକ ବଳର ଓ ଶକ୍ତିପ୍ରୟୋଗ କୌଶଳର ଉତ୍କର୍ଷସାଧନ କରେ, ପ୍ରାୟ ସେଗୁଡ଼ିକରେ ସେ ଅଳ୍ପ ବହୁତ ପାରଦର୍ଶୀ ହୋଇଥିଲେ । ଶ୍ରୀଯୁକ୍ତ ନବଗୋପାଳ ମିତ୍ର-ପ୍ରତିଷ୍ଠିତ ହିନ୍ଦୁମେଳାରେ ସେତେବେଳେ ପୂର୍ବୋକ୍ତ ବିଦ୍ୟାସକଳର ପ୍ରତିଦ୍ୱନ୍ଦ୍ୱୀମାନଙ୍କର ପାରଦର୍ଶିତାର ପରୀକ୍ଷା ଗ୍ରହଣପୂର୍ବକ ପାରିତୋଷିକ ପ୍ରଦାନ କରାହେଉଥିଲା । ଆମେ ଶୁଣିଛୁ, ନରେନ୍ଦ୍ରନାଥ ବେଳେ ବେଳେ ସେଠାକୁ ପରୀକ୍ଷା ଦେବାକୁ ଯାଉଥିଲେ ।

## ବନ୍ଧୁ-ପ୍ରୀତି ଓ ସାହସ :

ବାଲ୍ୟକାଳରୁ ନରେନ୍ଦ୍ରନାଥଙ୍କର ଜୀବନରେ ବନ୍ଧୁ-ପ୍ରୀତି ଓ ଅସୀମ ସାହସର ପରିଚୟ ମିଳୁଥିଲା । ଛାତ୍ରଜୀବନରେ ଏବଂ ପରେ ତାଙ୍କୁ ଦଳପତି ଓ ନେତୃତ୍ୱପଦରେ ଆରୂଢ଼ କରାଇବାକୁ ଏହି ଗୁଣ ଦୁଇଟି ବିଶେଷ ସହାୟତା କରିଥିଲା । ସାତ-ଆଠବର୍ଷ ବୟସରେ ଦିନେ ସେ ବନ୍ଧୁବର୍ଗଙ୍କ ସହିତ ମିଳିତ ହୋଇ କଲିକତାର ଦକ୍ଷିଣରେ ମାଟିଆବୁରୁଜ ନାମକ ସ୍ଥାନରେ ଲକ୍ଷ୍ନୌ ପ୍ରଦେଶର ଭୂତପୂର୍ବ ନବାବ ୱାଜିଦ୍ ଅଲ୍ଲିସାହେବଙ୍କର ପଶୁଶାଳା ଦେଖିବାକୁ ଯାଇଥିଲେ ।

ବାଳକଗଣ ନିଜ ମଧ୍ୟରେ ଚାନ୍ଦା କରି ଚାନ୍ଦପାଲ ଘାଟରୁ ଗୋଟିଏ ଛୋଟ ଡଙ୍ଗା ଯିବା ଆସିବା ପାଇଁ ଭଡ଼ା କରିଥିଲେ । ଫେରିବା ସମୟରେ ସେମାନଙ୍କ ମଧ୍ୟରୁ ଜଣେ ଅସୁସ୍ଥ ହୋଇ ନୌକାରେ ବାନ୍ତି କରିପକାଇଲା । ମୁସଲମାନ ନାଉରୀଆ ସେଥିରେ ବିଶେଷ ଅସନ୍ତୁଷ୍ଟ ହୋଇ ଚାନ୍ଦପାଲ ଘାଟରେ ନୌକା ଲଗାଇବା ପରେ ସେମାନଙ୍କୁ କହିଲା, ନୌକା ପରିଷ୍କାର ନ କଲେ ସେମାନଙ୍କୁ ନୌକାରୁ ଓହ୍ଲାଇବାକୁ ଦେବ ନାହିଁ । ବାଳକମାନେ ତାକୁ ଅନ୍ୟ କାହା ଦ୍ୱାରା ସଫା କରାଇବାକୁ କହି ଏହାପାଇଁ ପାରିଶ୍ରମିକ ଦେବାକୁ ଚାହିଁଲେ ମଧ୍ୟ ସେ ସେଥିରେ ରାଜି ହେଲା ନାହିଁ । ତେଣୁ ପାଟିତୁଣ୍ଡ ହୋଇ ହାତାହାତି ହେବାର ଉପକ୍ରମ ହେବାରୁ, ଘାଟରେ ଯେତେ ନୌକାର ନାଉରିଆ ଥିଲେ, ସମସ୍ତେ ମିଶି ବାଳକମାନଙ୍କୁ ପ୍ରହାର କରିବାକୁ ଉଦ୍ୟତ ହେଲେ । ଏଥିରେ ବାଳକଗଣ କିଂକର୍ତ୍ତବ୍ୟବିମୁଢ଼ ହୋଇପଡ଼ିଲେ । ନରେନ୍ଦ୍ରନାଥ ସେମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଳ୍ପ ବୟସ୍କ ଥିଲେ । ନାଉରୀଆମାନଙ୍କ ସହିତ ପାଟିତୁଣ୍ଡ ବେଳେ ସେ କୌଶଳରେ ନୌକାରୁ ଓହ୍ଲାଇ ପଡ଼ିଲେ । ଛୋଟ ପିଲା ଦେଖି ମାଝିମାନେ ତାଙ୍କୁ ଏଥିରେ ବାଧା ଦେଲେ ନାହିଁ । କୂଳରେ ଛିଡ଼ା ହୋଇ ଅବସ୍ଥା କ୍ରମେ ଗୁରୁତର ହେବାର ଦେଖି ସେ ଏବେ ସାଙ୍ଗମାନଙ୍କୁ ରକ୍ଷା କରିବା ଉପାୟ ଚିନ୍ତା କରୁ କରୁ ଦେଖିବାକୁ ପାଇଲେ, ଦୁଇଜଣ ଇଂରେଜ ସୈନିକ ପଡ଼ିଆରେ ବାୟୁସେବନ ପାଇଁ ଅନତିଦୂରର ରାସ୍ତାରେ ଯାଉଛନ୍ତି । ନରେନ୍ଦ୍ରନାଥ ଦ୍ରୁତପଦରେ ତାଙ୍କ ନିକଟକୁ ଯାଇ ତାଙ୍କୁ ଅଭିବାଦନପୂର୍ବକ ତାଙ୍କର ହାତ ଧରି ପକାଇଲେ ଏବଂ ଇଂରାଜୀ ଭାଷାରେ ନିତାନ୍ତ ଅନଭିଜ୍ଞ ହେଲେ ମଧ୍ୟ, ଦୁଇ-ଚାରି ପଦ କହି ଓ ଇଙ୍ଗିତରେ ସେମାନଙ୍କୁ ଏହା ଯଥାସମ୍ଭବ ବୁଝାଇ ଘଟଣାସ୍ଥଳକୁ ଯିବା ପାଇଁ ଆକର୍ଷଣ କରିବାକୁ ଲାଗିଲେ । ପ୍ରିୟଦର୍ଶନ ଅଳ୍ପବୟସ୍କ ବାଳକଙ୍କର ଏପରି କାର୍ଯ୍ୟରେ ସଦାଶୟ ସୈନିକଦ୍ୱୟଙ୍କର ହୃଦୟ ମୁଗ୍ଧ ହେଲା । ସେମାନେ ତୁରନ୍ତ ନୌକା ନିକଟରେ ପହଞ୍ଚି ସମସ୍ତ କଥା ବୁଝିପାରିଲେ ଏବଂ ହାତରେ ଧରିଥିବା ବେତ ଉଠାଇ ବାଳକମାନଙ୍କୁ ଛାଡ଼ିଦେବାକୁ ନାଉରିଆମାନଙ୍କୁ ଆଦେଶ ଦେଲେ । ଗୋରା ସୈନିକ ଦେଖି ମାଝିମାନେ ଭୟରେ ଯେ ଯାହାର ନୌକା ନେଇ ପଳାଇଲେ ଏବଂ ନରେନ୍ଦ୍ରନାଥଙ୍କ ସାଙ୍ଗମାନେ ଅବ୍ୟାହତି ପାଇଲେ । ନରେନ୍ଦ୍ରନାଥଙ୍କର ବ୍ୟବହାରରେ ସୈନିକଦ୍ୱୟ ସେଦିନ ତାଙ୍କ ଉପରେ ଅତ୍ୟନ୍ତ ଖୁସି ହୋଇଥିଲେ ଏବଂ ସେମାନଙ୍କ ସହିତ ତାଙ୍କୁ ଥିଏଟର ଦେଖିଯିବା ପାଇଁ ଆମନ୍ତ୍ରଣ କରିଥିଲେ । ନରେନ୍ଦ୍ରନାଥ ସେଥିରେ ସମ୍ମତ ନ ହୋଇ କୃତଜ୍ଞତାପୂର୍ଣ୍ଣହୃଦୟରେ ଧନ୍ୟବାଦ ପ୍ରଦାନପୂର୍ବକ ତାଙ୍କ ନିକଟରୁ ବିଦାୟ ଗ୍ରହଣ କରିଥିଲେ ।

## କୌଶଳ କରି 'ସିରାପିସ୍' ନାମକ ଯୁଦ୍ଧ ଜାହାଜ ଦର୍ଶନର ଅନୁଜ୍ଞାଲାଭ :

ବାଲ୍ୟଜୀବନର ଅନ୍ୟାନ୍ୟ ଘଟଣା ମଧ୍ୟ ନରେନ୍ଦ୍ରନାଥଙ୍କର ଅଶେଷ ସାହସର ପରିଚୟ ପ୍ରଦାନ କରେ । ଏପରି ଗୋଟିଏ-ଦୁଇଟି ପ୍ରସଙ୍ଗ ଏଠାରେ ଉଲ୍ଲେଖ କରୁଛୁ । ଭୂତପୂର୍ବ ଭାରତ-ସମ୍ରାଟ ସପ୍ତମ ଏଡଓ୍ୱାର୍ଡ ଯେଉଁ ବର୍ଷ 'ପ୍ରିନ୍ସ ଅଫ ଓ୍ୱେଲସ୍' ରୂପରେ ଭାରତ ପରିଭ୍ରମଣରେ ଆସିଥିଲେ, ସେହିବର୍ଷ ନରେନ୍ଦ୍ରଙ୍କର ବୟସ ଦଶ-ବାରବର୍ଷ ଥିଲା । ବ୍ରିଟିଶ ରାଜାଙ୍କର 'ସିରାପିସ୍' ନାମକ ଏକ ବୃହତ୍ ରଣତରୀ ସେସମୟରେ କଲିକତା ଆସିଥିଲା ଏବଂ ଆଦେଶ ପତ୍ର ଗ୍ରହଣପୂର୍ବକ କଲିକତାର ବହୁ ବ୍ୟକ୍ତି ସେହି ତରୀର ଅଭ୍ୟନ୍ତର ଦେଖିବାକୁ ଯାଇଥିଲେ । ବାଳକ ନରେନ୍ଦ୍ରନାଥ ବନ୍ଧୁବର୍ଗଙ୍କ ସହିତ ଏହା ଦେଖିବାକୁ ଇଚ୍ଛାକରି ଅନୁମତି ପତ୍ର ପାଇବା ଆଶାରେ ଗୋଟିଏ ଆବେଦନ ପତ୍ର ଲେଖି ଅଫିସରେ ପହଞ୍ଚି ଦେଖିଲେ, ଦ୍ୱାରରକ୍ଷକ ବିଶେଷ ଗଣ୍ୟମାନ୍ୟ ବ୍ୟକ୍ତି ବ୍ୟତୀତ ଅନ୍ୟ କୌଣସି ଆବେଦନକାରୀଙ୍କୁ ଅଫିସ୍ ଭିତରକୁ ପ୍ରବେଶ କରିବାକୁ ଦେଉ ନାହିଁ । ତେଣୁ ସେ ଟିକିଏ ଦୂରରେ ଠିଆହୋଇ ସାହେବଙ୍କ ସହିତ ଦେଖା କରିବାର ଉପାୟ ଚିନ୍ତା କରୁ କରୁ ଯେଉଁମାନେ ଅନୁମତି ପତ୍ର ନେଇ ଫେରୁଥିଲେ ସେମାନଙ୍କୁ ଲକ୍ଷ୍ୟ କରିବାକୁ ଲାଗିଲେ । ଦେଖିଲେ, ସେମାନେ ସମସ୍ତେ ଅଫିସର ତିନିତାଲାର ଏକ ବାରଣ୍ଡାକୁ ଯାଉଛନ୍ତି । ନରେନ୍ଦ୍ରନାଥ ବୁଝିଲେ, ସାହେବ ସେହିଠାରେ ହିଁ ଆବେଦନ ପତ୍ର ଗ୍ରହଣପୂର୍ବକ ଅନୁମତି ପତ୍ର ଦେଉଛନ୍ତି । ତେଣୁ ଉକ୍ତ ସ୍ଥାନକୁ ଯିବାପାଇଁ ଅନ୍ୟ କୌଣସି ବାଟ ଅଛି କି ନାହିଁ ତାହା ଅନୁସନ୍ଧାନ କରି ସେ ଦେଖିବାକୁ ପାଇଲେ, ଉକ୍ତ ବାରଣ୍ଡାର ପଛ ପଟ ଘରେ ସାହେବଙ୍କର ପରିଚାରକମାନଙ୍କର ଯିବା ଆସିବା ପାଇଁ ଘରର ଏକ ପାର୍ଶ୍ୱରେ ଗୋଟିଏ ଅପ୍ରଶସ୍ତ ଲୁହା ସିଡ଼ି ଅଛି । କେହି ଦେଖି ଦେଲେ ଲାଞ୍ଛିତ ହେବାର ସମ୍ଭାବନା ବୁଝି ମଧ୍ୟ ସେ ସାହସର ସହିତ ସେହିବାଟ ଦେଇ ତିନିତାଲାକୁ ଉଠିଗଲେ ଏବଂ ସାହେବଙ୍କର ଘର ଭିତର ଦେଇ ବାରଣ୍ଡାରେ ପହଞ୍ଚି ଦେଖିଲେ, ସାହେବଙ୍କ ଟେବୁଲ ଚାରିପାଖରେ ଆବେଦନକାରୀମାନେ ଭିଡ଼ ଜମାଇଛନ୍ତି, ଏବଂ ସାହେବ ସମ୍ମୁଖସ୍ଥ ଟେବୁଲ ଉପରେ ମୁଣ୍ଡ ନୁଆଁଇ କ୍ରମାଗତ ଭାବରେ ଆଦେଶପତ୍ର ସବୁ ଦସ୍ତଖତ କରିଚାଲିଛନ୍ତି । ସେ ସେତେବେଳେ ସମସ୍ତଙ୍କ ପଛରେ ଠିଆହୋଇ ରହିଲେ ଏବଂ ଯଥା ସମୟରେ ଆଦେଶ ପତ୍ର ପାଇ ସାହେବଙ୍କୁ ଅଭିବାଦନ କରି ଅନ୍ୟମାନଙ୍କ ସହିତ ସାମନା ସିଡ଼ି ଦେଇ ଅଫିସ୍ ବାହାରକୁ ଚାଲିଆସିଲେ ।

## ଆଖଡ଼ାର ଟ୍ରାପିଜ୍ (Trapeze) ବାନ୍ଧିବା ସମୟରେ ବିଭ୍ରାଟ :

ସିମଳା-ପଲ୍ଲୀର ବାଳକମାନଙ୍କୁ ବ୍ୟାୟାମଶିକ୍ଷା ଦେବା ପାଇଁ ସେତେବେଳେ କର୍ଣ୍ଣୱାଲିସ୍ ଷ୍ଟ୍ରିଟ୍‌ରେ ଗୋଟିଏ ଆଖଡ଼ା ଥିଲା । ହିନ୍ଦୁ ମେଳା-ପ୍ରବର୍ତ୍ତକ ଶ୍ରୀଯୁକ୍ତ ନବଗୋପାଳ ମିତ୍ର ହିଁ ଏହା ପ୍ରତିଷ୍ଠା କରିଥିଲେ । ଘରର ଅତି ନିକଟରେ ଥିବାରୁ ନରେନ୍ଦ୍ରନାଥ ସାଙ୍ଗମାନଙ୍କ ସହିତ ଏହି ସ୍ଥାନକୁ ପ୍ରତିଦିନ ଆସି ବ୍ୟାୟାମ ଅଭ୍ୟାସ କରୁଥିଲେ । ପଡ଼ାର ଲୋକ ନବଗୋପାଳବାବୁଙ୍କ ସହିତ ପୂର୍ବରୁ ପରିଚିତ ଥିବାରୁ ସେମାନଙ୍କ ଉପରେ ହିଁ ସେ ଆଖଡ଼ାର କାର୍ଯ୍ୟଭାର ପ୍ରଦାନ କରିଥିଲେ । ଆଖଡ଼ାରେ ଦିନେ ଟ୍ରାପିଜ୍ (ଝୁଲା) ଟାଙ୍ଗିବା ପାଇଁ ପିଲାମାନେ ଅନେକ ଚେଷ୍ଟାକରି ମଧ୍ୟ ଏହାର ଓଜନିଆ କାଠର ଫ୍ରେମ୍‌ଟିକୁ ସିଧା ରଖିପାରୁ ନ ଥିଲେ । ପିଲାମାନଙ୍କର ଏହି କାର୍ଯ୍ୟ ଦେଖିବାକୁ ରାସ୍ତାରେ ଭିଡ଼ ଜମିଯାଇଥିଲା; ମାତ୍ର ସେମାନଙ୍କ ମଧ୍ୟରୁ କେହି ସେମାନଙ୍କୁ ସାହାଯ୍ୟ କରିବାକୁ ଆସୁ ନ ଥିଲେ । ସେହି ଭିଡ଼ ମଧ୍ୟରେ ଜଣେ ବଳିଷ୍ଠ ଇଂରେଜ 'ସେଲର'(Sailor)କୁ ଦେଖି ନରେନ୍ଦ୍ରନାଥ ସାହାଯ୍ୟ କରିବାକୁ ତାଙ୍କୁ ଅନୁରୋଧ କଲେ । ସେ ଏଥିରେ ଆନନ୍ଦରେ ସମ୍ମତ ହୋଇ ବାଳକମାନଙ୍କ ସହିତ ଯୋଗଦାନ କଲେ । ସେତେବେଳେ ଦଉଡ଼ି ବାନ୍ଧି ପିଲାମାନେ ଟ୍ରାପିଜର ଅଗ୍ରଭାଗକୁ ଟାଣି ଉଠାଇବାକୁ ଲାଗିଲେ ଏବଂ ସାହେବ ଟ୍ରାପିଜର ଦୁଇଗୋଡ଼କୁ ଗାତରେ ଧିରେ ଧିରେ ପୁରାଇବାକୁ ସହାୟତା କରିବାକୁ ଲାଗିଲେ । ଏପରି ଭାବରେ ଟ୍ରାପିଜ୍ ଠିକ୍ ଉଠୁଥିବା ବେଳେ ଦଉଡ଼ିଟି ଛିଣ୍ଡିଯାଇ ପୁନରାୟ ତାହା ତଳେ ପଡ଼ିଗଲା ଏବଂ ଏହାର ଗୋଟିଏ ଗୋଡ଼ ସହସା ଉଠିପଡ଼ିବାରୁ ସାହେବଙ୍କ କପାଳରେ ଭୀଷଣ ଆଘାତ ଲାଗି ସାହେବ ପ୍ରାୟ ସଂଜ୍ଞାଶୂନ୍ୟ ହୋଇ ପଡ଼ିଗଲେ । ସାହେବଙ୍କୁ ଅଚୈତନ୍ୟ ଏବଂ ତାଙ୍କ ମୁଣ୍ଡରୁ ପ୍ରଚୁର ରକ୍ତ ବୋହିବା ଦେଖି ସମସ୍ତେ ସାହେବଙ୍କୁ ମୃତ ଭାବି ପୁଲିସ ଭୟରେ ଯିଏ ଯୁଆଡ଼େ ପାରିଲେ ପଳାଇଗଲେ । କେବଳ ନରେନ୍ଦ୍ରନାଥ ଓ ତାଙ୍କର ଜଣେ ଦୁଇଜଣ ବିଶେଷ ଘନିଷ୍ଠ ସାଙ୍ଗ ଘଟଣାସ୍ଥଳରେ ରହି ଏହି ବିପଦରୁ ଉଦ୍ଧାର ପାଇଁ ଉପାୟ ଚିନ୍ତା କଲେ । ନରେନ୍ଦ୍ରନାଥ ନିଜର ବସ୍ତ୍ର ଛିଣ୍ଡାଇ ତାକୁ ପାଣିରେ ଭିଜାଇ ସାହେବଙ୍କର କ୍ଷତସ୍ଥାନ ବାନ୍ଧିଦେଲେ ଏବଂ ତାଙ୍କ ମୁହଁରେ ପାଣି ଛିଞ୍ଚିଲେ ଓ ପଙ୍ଖାରେ ବିଞ୍ଚି ତାଙ୍କର ହୋସ ଆଣିବା ଚେଷ୍ଟାରେ ଲାଗିଲେ । ଅନନ୍ତର ତାଙ୍କର ଚେତା ଫେରିବାରୁ ତାଙ୍କୁ ଧରାଧରି କରି, ସମ୍ମୁଖସ୍ଥ 'ଟ୍ରେନିଂ ଏକାଡେମୀ' ନାମକ ଏକ ସ୍କୁଲ ଘର ମଧ୍ୟକୁ ନେଇ ଶୁଆଇଦେଲେ ଏବଂ ନବଗୋପାଳବାବୁଙ୍କୁ ଜଣେ ଡାକ୍ତର ଯଥାଶୀଘ୍ର ପଠାଇବା ପାଇଁ ଖବର ଦେଲେ । ଡାକ୍ତର ଆସି ପରୀକ୍ଷା କରି କହିଲେ ଆଘାତ ସାଙ୍ଘାତିକ ନୁହେଁ, ଏବଂ ସାହେବ ଗୋଟିଏ ସପ୍ତାହ ମଧ୍ୟରେ ଆରୋଗ୍ୟ ହୋଇଯିବେ । ନରେନ୍ଦ୍ରନାଥଙ୍କ ସେବାରେ ଏବଂ ଔଷଧ ଓ ପଥ୍ୟାଦି ସହାୟତାରେ ସାହେବ ଏହି ସମୟ ମଧ୍ୟରେ ସୁସ୍ଥ ହେଲେ । ସେତେବେଳେ ଉକ୍ତ

ପଲ୍ଲୀର କେତେଜଣ ସମ୍ଭ୍ରାନ୍ତ ବ୍ୟକ୍ତି ନିକଟରୁ ଚାନ୍ଦା ସଂଗ୍ରହ କରି ସାହେବଙ୍କୁ କିଞ୍ଚିତ୍ ପାଥେୟ ଦେଇ ନରେନ୍ଦ୍ର ତାଙ୍କୁ ବିଦାୟ ଦେଲେ । ସେହିପରି ବିପଦରେ ପଡ଼ି ଅବିଚଳିତ ରହିବା ସମ୍ବନ୍ଧରେ ଅନେକଗୁଡ଼ିଏ ଘଟଣା ଆମେ ନରେନ୍ଦ୍ରନାଥଙ୍କର ବାଲ୍ୟଜୀବନରେ ଶୁଣିଅଛୁ ।

### ନରେନ୍ଦ୍ରଙ୍କର ସତ୍ୟନିଷ୍ଠା :

ବାଲ୍ୟକାଳରୁ ଶ୍ରୀଯୁକ୍ତ ନରେନ୍ଦ୍ର ସତ୍ୟନିଷ୍ଠ ଥିଲେ । ଯୌବନରେ ପଦାର୍ପଣ କରି ତାଙ୍କର ଉକ୍ତ ନିଷ୍ଠା ବିଶେଷ ଭାବରେ ବର୍ଦ୍ଧିତ ହୋଇଥିଲା । ସେ କହୁଥିଲେ, "ମିଥ୍ୟା କଥା ହେବ ବୋଲି ଛୋଟ ପିଲାମାନଙ୍କୁ କେବେ ବି ଭୂତର ଭୟ ଦେଖାଇ ନାହିଁ, ଏବଂ ଘରେ କେହି ଏପରି କରିବାର ଦେଖିଲେ ତାକୁ ବହୁତ ତିରସ୍କାର କରୁଥିଲି । ଇଂରାଜୀ ପଢ଼ି ଏବଂ ବ୍ରାହ୍ମସମାଜକୁ ଯିବା ଆସିବା କରିବା ଫଳରେ ବାଚିକ ସତ୍ୟନିଷ୍ଠା ସେତେବେଳେ ଏପରି ବଢ଼ିଯାଇଥିଲା ।"

### ନିର୍ଦ୍ଦୋଷ ଆନନ୍ଦପ୍ରିୟତା :

ବଳିଷ୍ଠ ଶରୀର, ସୁତୀକ୍ଷ୍ଣ ବୁଦ୍ଧି ଏବଂ ଅଦ୍ଭୁତ ମେଧା ଓ ପବିତ୍ରତା ନେଇ ଜନ୍ମଗ୍ରହଣ କରିଥିଲେ ବୋଲି ନରେନ୍ଦ୍ରନାଥ ସର୍ବଦା ସଦାନନ୍ଦ ରହିବା ଦେଖାଯାଉଥିଲା । ବ୍ୟାୟାମ, ସଙ୍ଗୀତ, ବାଦ୍ୟ ଓ ନୃତ୍ୟଶିକ୍ଷା, ବନ୍ଧୁମାନଙ୍କ ସହିତ ନିର୍ଦ୍ଦୋଷ ଥଟ୍ଟା-ପରିହାସ ପ୍ରଭୃତି ସମସ୍ତ ବିଷୟରେ ସେ ନିଃସଙ୍କୋଚ ଥିଲେ । ବାହାର ଲୋକମାନେ ତାଙ୍କର ଏପରି ଆନନ୍ଦର କାରଣ ବୁଝି ନ ପାରି ଅନେକ ସମୟରେ ତାଙ୍କର ଚରିତ୍ରରେ ଦୋଷ ଥିବାର କଳ୍ପନା କରୁଥିଲେ । ତେଜସ୍ୱୀ ନରେନ୍ଦ୍ରନାଥ କିନ୍ତୁ ଲୋକଙ୍କର ପ୍ରଶଂସା ବା ନିନ୍ଦାରେ ଭ୍ରୂକ୍ଷେପ କରୁ ନ ଥିଲେ । ଲୋକଙ୍କର ଅଯଥା ନିନ୍ଦାବାଦକୁ ଅପ୍ରମାଣିତ କରିବାକୁ ତାଙ୍କର ଗର୍ବିତ ହୃଦୟ କେବେ ମଧ୍ୟ ନିଜ ମସ୍ତକ ନତ କରୁ ନ ଥିଲା ।

### ଦରିଦ୍ରମାନଙ୍କ ପ୍ରତି ନରେନ୍ଦ୍ରନାଥଙ୍କର ଦୟା :

ଦରିଦ୍ରମାନଙ୍କ ପ୍ରତି ଦୟାଭାବ ନରେନ୍ଦ୍ରନାଥଙ୍କର ଆଜୀବନ ସ୍ୱଭାବସିଦ୍ଧ ଥିଲା । ତାଙ୍କର ଶୈଶବ କାଳରେ ଘରକୁ ଭିକ୍ଷୁକ ଆସି ବସ୍ତ୍ର ଇତ୍ୟାଦି ଯାହା ମାଗୁଥିଲେ, ସେ ତାକୁ ତାହା ଦେଇଦେଉଥିଲେ । ଘରର ଲୋକମାନେ ଏହା ଜାଣି ପାରି ବାଳକକୁ ତିରସ୍କାର କରୁଥିଲେ ଏବଂ ଭିକାରୀକୁ ପଇସା ଦେଇ ସେହି ସବୁ ଜିନିଷ ତାଙ୍କଠାରୁ ଛଡ଼ାଇ ଆଣୁଥିଲେ । କେତେଥର ଏପରି କରିବାରୁ ତାଙ୍କର ମା' ତାଙ୍କୁ ଦିନେ ଘରର ଦୋତାଲାରେ ଗୋଟିଏ ଘରେ ଆବଦ୍ଧ କରି ରଖିଥିଲେ । ଜଣେ ଭିକାରୀ ସେହି ସମୟରେ ଆସି ଭିକ୍ଷା ନିମିତ୍ତ ଉଚ୍ଚସ୍ୱରରେ

ପ୍ରାର୍ଥନା ଜଣାଇବାରୁ ବାଳକ ଝରକା ଦେଇ ତାଙ୍କ ମାତାଙ୍କର କେତେଖଣ୍ଡ ଉତ୍ତମ ବସ୍ତ୍ର ତାକୁ ପ୍ରଦାନ କରିଦେଲେ ।

### ନରେନ୍ଦ୍ରଙ୍କର କ୍ରୋଧ :

ତାଙ୍କର ମା' କହୁଥିଲେ, ''ଶୈଶବରୁ ନରେନ୍ଦ୍ରର ଗୋଟିଏ ବଡ଼ ଦୋଷ ଥିଲା । କୌଣସି କାରଣରୁ ରାଗିଗଲେ ସେ ଯେପରି ଆତ୍ମହରା ହୋଇଯାଉଥିଲେ ଏବଂ ଘରର ଜିନିଷ ପତ୍ର ଭାଙ୍ଗି ଚୂର୍‌ମାର କରିଦେଉଥିଲେ । ପୁତ୍ରକାମନା ନିମନ୍ତେ କାଶୀଧାମରେ ବୀରେଶ୍ୱରଙ୍କ ନିକଟରେ ବିଶେଷ ମାନସିକ କରିଥିଲି । ୰ବୀରେଶ୍ୱର ବୋଧହୁଏ ତାଙ୍କର ଗୋଟିଏ ଭୂତକୁ ପଠାଇଦେଇଛନ୍ତି ! ନ ହେଲେ କ୍ରୋଧ ହେଲେ ସେ ଏପରି ଭୂତପରି ଅଶାନ୍ତ ବ୍ୟବହାର କାହିଁକି କରେ ?'' ବାଳକର ଏପରି କ୍ରୋଧ ପାଇଁ ସେ ଚମତ୍କାର ଔଷଧ ବାହାର କରିଥିଲେ । ଯେତେବେଳେ ଦେଖନ୍ତି, ତାଙ୍କୁ କୌଣସି ପ୍ରକାରରେ ଶାନ୍ତ କରି ହେଉ ନାହିଁ, ସେତେବେଳେ ସେ ୰ବୀରେଶ୍ୱରଙ୍କୁ ସ୍ମରଣ କରି କିଛି ଥଣ୍ଡାପାଣି ତାଙ୍କ ମୁଣ୍ଡରେ ଢାଳି ଦେଉଥିଲେ । ବାଳକର କ୍ରୋଧ ଏଥିରେ ସମ୍ପୂର୍ଣ୍ଣ ପ୍ରଶମିତ ହେଉଥିଲା ! ଦକ୍ଷିଣେଶ୍ୱରରେ ଠାକୁରଙ୍କ ସହିତ ମିଳିତ ହେବାର କିଛିଦିନ ପରେ ନରେନ୍ଦ୍ରନାଥ ଦିନେ ଆମକୁ କହିଥିଲେ, ''ଧର୍ମ-କର୍ମ କରିବାକୁ ଆସି ଆଉ କିଛି ନ ହେଉ ପଛେ କ୍ରୋଧଟା ଈଶ୍ୱରଙ୍କ କୃପାରୁ ଆୟତ୍ତ କରିପାରିଛି । ପୂର୍ବେ କ୍ରୋଧ ହେଲେ ସମ୍ପୂର୍ଣ୍ଣ ଆତ୍ମହରା ହୋଇଯାଉଥିଲି ଏବଂ ପରେ ସେଥିପାଇଁ ଅନୁତପ୍ତ ହେଉଥିଲି । ଏବେ କେହି ବିନା କାରଣରେ ପ୍ରହାର କଲେ ବା ନିତାନ୍ତ ଅପକାର କଲେ ମଧ୍ୟ ତା'ଉପରେ ପୂର୍ବପରି ଅତ୍ୟନ୍ତ କ୍ରୋଧ ଆସେ ନାହିଁ ।''

### ନରେନ୍ଦ୍ରଙ୍କର ମସ୍ତିଷ୍କ ଓ ହୃଦୟର ସମାନ ଉତ୍କର୍ଷ :

ମସ୍ତିଷ୍କ ଓ ହୃଦୟ ଉଭୟର ସମାନ ଉତ୍କର୍ଷପ୍ରାପ୍ତି ସଂସାରରେ ବିରଳ ଲୋକଙ୍କଠାରେ ଦୃଷ୍ଟ ହୁଏ । ଯାହାଙ୍କର ଏପରି ହୁଏ ସେମାନେ ହିଁ ମନୁଷ୍ୟସମାଜରେ କୌଣସି ନା କୌଣସି ବିଷୟରେ ନିଜର ମହତ୍ତ୍ୱ ପ୍ରତିଷ୍ଠା କରିଥାଆନ୍ତି । ଏହା ଛଡ଼ା ଆଧ୍ୟାତ୍ମିକ ଜଗତରେ ଯେଉଁମାନେ ନିଜର ଅସାଧାରଣତ୍ୱ ପ୍ରମାଣିତ କରିଥାଆନ୍ତି, ମସ୍ତିଷ୍କ ଓ ହୃଦୟର ସହିତ କଳ୍ପନାଶକ୍ତିର ବୃଦ୍ଧି ମଧ୍ୟ ବାଲ୍ୟକାଳରୁ ସେମାନଙ୍କ ଜୀବନରେ ଦେଖିବାକୁ ମିଳିଥାଏ । ନରେନ୍ଦ୍ରନାଥଙ୍କର ଜୀବନାଲୋଚନାରେ ପୂର୍ବୋକ୍ତ କଥା ସତ୍ୟ ବୋଲି ହୃଦୟଙ୍ଗମ ହୁଏ । ଏହି ବିଷୟରେ ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କଲେ ପାଠକମାନେ ବୁଝିପାରିବେ ।

## ନରେନ୍ଦ୍ରନାଥଙ୍କର ପ୍ରଥମ ଧ୍ୟାନତନ୍ମୟତା— ରାୟପୁର ଯିବା ରାସ୍ତାରେ :

ନରେନ୍ଦ୍ରନାଥଙ୍କର ପିତା କୌଣସି ଗୋଟିଏ ସମୟରେ କର୍ମ ଉପଲକ୍ଷରେ ମଧ୍ୟପ୍ରଦେଶର ରାୟପୁରଠାରେ କିଛିଦିନ ଅବସ୍ଥାନ କରିଥିଲେ । ଅନେକ ଦିନ ସେଠାରେ ରହିବାକୁ ହେବ ବୁଝି ନିଜର ପରିବାରବର୍ଗଙ୍କୁ ସେ କିଛିଦିନ ପରେ ସେଠାକୁ ନେଇଯାଇଥିଲେ । ସେମାନଙ୍କୁ ସେଠାକୁ ନେଇଯିବାର ଦାୟିତ୍ୱ ସେତେବେଳେ ନରେନ୍ଦ୍ରଙ୍କୁ ଦିଆଯାଇଥିଲା । ନରେନ୍ଦ୍ରଙ୍କର ବୟସ ସେତେବେଳେ ଚଉଦ ବା ପନ୍ଦରବର୍ଷ ହେବ । ଭାରତର ମଧ୍ୟପ୍ରଦେଶକୁ ସେତେବେଳେ ରେଳଗାଡି ଚାଲୁ ନ ଥିଲା, ସୁତରାଂ ରାୟପୁରକୁ ଯିବାକୁ ହେଲେ ହିଂସ୍ରଜନ୍ତୁପୂର୍ଣ୍ଣ ନିବିଡ଼ ଅରଣ୍ୟ ମଧ୍ୟଦେଇ ପନ୍ଦର ଦିନରୁ ଅଧିକ ସମୟ ଗୋରୁଗାଡ଼ିରେ ଯିବାକୁ ପଡୁଥିଲା । ଏପରି ଅଶେଷ ଶାରୀରିକ କଷ୍ଟଭୋଗ ହେଲେ ମଧ୍ୟ ନରେନ୍ଦ୍ରନାଥ କହୁଥିଲେ, ବନସ୍ଥଳୀର ଅପୂର୍ବ ସୌନ୍ଦର୍ଯ୍ୟ-ଦର୍ଶନରେ ଉକ୍ତ କଷ୍ଟକୁ କଷ୍ଟ ବୋଲି ତାଙ୍କର ମନେ ହୋଇ ନାହିଁ ଏବଂ ଅଯାଚିତ ହୋଇ ଯିଏ ଧରିତ୍ରୀକୁ ଏପରି ଅନୁପମ ବେଶଭୂଷାରେ ସଜାଇ ରଖିଛନ୍ତି, ତାଙ୍କର ଅସୀମ ଶକ୍ତି ଓ ଅନନ୍ତ ପ୍ରେମର ସାକ୍ଷାତ ପରିଚୟ ପ୍ରଥମେ ପ୍ରାପ୍ତ ହୋଇ ତାଙ୍କର ହୃଦୟ ମୁଗ୍ଧ ହୋଇଥିଲା । ସେ କହୁଥିଲେ, ‘‘ବନମଧ୍ୟଗତ ପଥ ଦେଇ ଯାଉ ଯାଉ ସେସମୟରେ ଯାହା ଦେଖିଥିଲି ଓ ଅନୁଭବ କରିଥିଲି, ତାହା ସ୍ମୃତି-ପଟ୍ଟରେ ଚିରକାଳ ପାଇଁ ଦୃଢ଼ ମୁଦ୍ରିତ ହୋଇଯାଇଥିଲା, ବିଶେଷତଃ ଦିନକର କଥା । ଉନ୍ନତଶୀର୍ଷ ବିନ୍ଧ୍ୟଗିରିର ପାଦଦେଶ ଦେଇ ସେଦିନ ଆମକୁ ଯିବାକୁ ପଡ଼ିଥିଲା । ରାସ୍ତାର ଉଭୟ ପାର୍ଶ୍ୱରେ ହିଁ ଗିରିଶୃଙ୍ଗଶ୍ରେଣୀ ଗଗନ ସ୍ପର୍ଶ କରି ଦଣ୍ଡାୟମାନ ଥିଲେ ଓ ନାନା ଜାତିର ବୃକ୍ଷ-ଲତା ଫଳ-ପୁଷ୍ପ-ସମ୍ଭାରରେ ଅବନତ ହୋଇ ପର୍ବତ-ପୃଷ୍ଠର ଅପୂର୍ବ ଶୋଭାବର୍ଦ୍ଧନ କରୁଥିଲେ । ମଧୁର କଳରବରେ ଦିଗ ପୂର୍ଣ୍ଣ କରି ନାନାବର୍ଣ୍ଣର ବିହଗକୁଳ ଗୋଟିଏ କୁଞ୍ଜରୁ ଅନ୍ୟ କୁଞ୍ଜକୁ ଉଡ଼ିଯାଉଥିଲେ ଅଥବା ଆହାର-ଅନ୍ୱେଷଣରେ ବେଳେ ବେଳେ ଭୂମିପୃଷ୍ଠରେ ଅବତରଣ କରୁଥିଲେ— ଏହି ସମସ୍ତ ବିଷୟ ଦେଖୁ ଦେଖୁ ମନରେ ଏକ ଅପୂର୍ବ ଶାନ୍ତି ଅନୁଭବ କରୁଥିଲି । ଧୀର-ମନ୍ଥର ଗତିରେ ଚାଲି ଗୋରୁ-ଗାଡ଼ିଗୁଡ଼ିକ କ୍ରମେ ଏପରି ଗୋଟିଏ ସ୍ଥାନରେ ପହଞ୍ଚିଲା, ଯେଉଁଠାରେ ପର୍ବତ ଶୃଙ୍ଗଦ୍ୱୟ ଯେପରି ପ୍ରେମରେ ଅଗ୍ରସର ହୋଇ ବନପଥକୁ ଏକାବେଳକେ ସ୍ପର୍ଶ କରି ରହିଅଛି । ସେତେବେଳେ ସେମାନଙ୍କର ପୃଷ୍ଠ ଦେଶ ବିଶେଷଭାବରେ ନିରୀକ୍ଷଣ କରି ଦେଖିଲି, ଗୋଟିଏ ପାର୍ଶ୍ୱର ପର୍ବତ ଗାତ୍ରରେ ମସ୍ତକରୁ ପାଦଦେଶ ପର୍ଯ୍ୟନ୍ତ ବିସ୍ତୃତ ଗୋଟିଏ ବୃହତ୍ ଫାଟ ରହିଅଛି ଏବଂ ସେହି ଅନ୍ତରାଳ ପୂର୍ଣ୍ଣ କରି ମଧୁମକ୍ଷିକାମାନଙ୍କର ଯୁଗଯୁଗର ପରିଶ୍ରମର ନିଦର୍ଶନ-ସ୍ୱରୂପ ଗୋଟିଏ ପ୍ରକାଣ୍ଡ ମହୁଫେଣା ଲମ୍ବିତ ରହିଅଛି ! ସେତେବେଳେ ବିସ୍ମୟରେ ମଗ୍ନ ହୋଇ

ସେହି ମଧୁମକ୍ଷିକା-ରାଜ୍ୟର ଆଦି-ଅନ୍ତ କଥା ଭାବି ଭାବି ମନ ଜଗତ୍-ନିୟନ୍ତା ଈଶ୍ୱରଙ୍କର ଅନନ୍ତ ଶକ୍ତିର ଉପଲବ୍ଧିରେ ଏପରି ଭାବରେ ନିମଗ୍ନ ହୋଇଗଲା ଯେ, କିଛି ସମୟ ପାଇଁ ବାହ୍ୟଚେତନା ସମ୍ପୂର୍ଣ୍ଣ ଲୋପ ପାଇଗଲା । କେତେ ସମୟ ଏପରି ଭାବରେ ଗୋରୁ-ଗାଡ଼ିରେ ପଡ଼ି ରହିଥିଲି, ସ୍ମରଣ ନାହିଁ । ଯେତେବେଳେ ପୁନରାୟ ଚେତା ଫେରିଲା ସେତେବେଳେ ଦେଖିଲି, ସେହି ସ୍ଥାନ ଅତିକ୍ରମ କରି ଅନେକ ଦୂର ଚାଲିଆସିଛୁ । ଗୋରୁ-ଗାଡ଼ିରେ ଏକୁଟିଆ ଥିଲି ବୋଲି ଏକଥା କେହି ଜାଣିପାରି ନ ଥିଲେ ।'' ପ୍ରବଳ କଳ୍ପନା ସହାୟରେ ଧ୍ୟାନ ରାଜ୍ୟରେ ଆରୂଢ଼ ହୋଇ ଏକାବେଳକେ ତନ୍ମୟ ହୋଇଯିବା ନରେନ୍ଦ୍ରଙ୍କର ଜୀବନରେ ବୋଧହୁଏ ଏହା ପ୍ରଥମ ଘଟଣା ଥିଲା ।

**ନରେନ୍ଦ୍ରଙ୍କର ସନ୍ନ୍ୟାସୀ ପିତାମହ :**

ନରେନ୍ଦ୍ରନାଥଙ୍କର ପିତୃପରିଚୟ ସଂକ୍ଷେପରେ ପ୍ରଦାନପୂର୍ବକ ଆମେ ବର୍ତ୍ତମାନ ପ୍ରବନ୍ଧର ଉପସଂହାର କରିବୁ । ବହୁ ଶାଖାରେ ବିଭକ୍ତ ସିମଳାର ଦତ୍ତ ପରିବାର କଲିକତାର ପ୍ରାଚୀନ ବଂଶଧରମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ । ଧନରେ, ମାନରେ ଏବଂ ବିଦ୍ୟାଗୌରବରେ ଏହି ବଂଶ ମଧ୍ୟବିତ୍ତ କାୟସ୍ଥ-ଗୃହସ୍ଥମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ । ନରେନ୍ଦ୍ରନାଥଙ୍କର ପ୍ରପିତାମହ ଶ୍ରୀଯୁକ୍ତ ରାମମୋହନ ଦତ୍ତ ଓକିଲାତି କରି ବେଶ୍ ଉପାର୍ଜନକ୍ଷମ ହୋଇଥିଲେ ଏବଂ ବହୁଗୋଷ୍ଠୀ-ପରିବୃତ ହୋଇ ସିମଳାର ଗୌରମୋହନ ମୁଖାର୍ଜୀ ଲେନ୍‌ସ୍ଥ ନିଜ ଭବନରେ ସସମ୍ମାନରେ ବାସ କରୁଥିଲେ । ତାଙ୍କର ପୁତ୍ର ଦୁର୍ଗାଚରଣ ପିତାଙ୍କର ବିପୁଳ ସମ୍ପତ୍ତିର ଅଧିକାରୀ ହୋଇ ମଧ୍ୟ ସ୍ୱଳ୍ପବୟସରେ ସଂସାର ପ୍ରତି ବୀତରାଗ ହୋଇ ପ୍ରବ୍ରଜ୍ୟା ଅବଲମ୍ବନ କରିଥିଲେ । ଶୁଣାଯାଏ, ଶ୍ରୀଯୁକ୍ତ ଦୁର୍ଗାଚରଣ ବାଲ୍ୟକାଳରୁ ସାଧୁ-ସନ୍ନ୍ୟାସୀଙ୍କ ଭକ୍ତ ଥିଲେ । ଯୌବନରେ ପଦାର୍ପଣ କରି ପୂର୍ବୋକ୍ତ ପ୍ରବୃତ୍ତି ତାଙ୍କୁ ଶାସ୍ତ୍ରଅଧ୍ୟୟନରେ ନିଯୁକ୍ତ ରଖି ସ୍ୱଳ୍ପକାଳରେ ସୁପଣ୍ଡିତ କରିଥିଲା । ବିବାହ କଲେ ମଧ୍ୟ ଦୁର୍ଗାଚରଣଙ୍କର ସଂସାରରେ ଆସକ୍ତି ନ ଥିଲା । ନିଜ ଉଦ୍ୟାନରେ ସାଧୁସଙ୍ଗରେ ହିଁ ତାଙ୍କର ଅନେକ ସମୟ ଅତିବାହିତ ହେଉଥିଲା । ସ୍ୱାମୀ ବିବେକାନନ୍ଦ କହୁଥିଲେ, ତାଙ୍କର ପିତାମହ ଶାସ୍ତ୍ରମର୍ଯ୍ୟାଦା ରକ୍ଷାପୂର୍ବକ ପୁତ୍ରମୁଖ ଦର୍ଶନ କରିବାର ଅଳ୍ପଦିନ ପରେ ହିଁ ଚିରଦିନ ପାଇଁ ଗୃହତ୍ୟାଗ କରିଥିଲେ । ସଂସାରତ୍ୟାଗ କଲେ ମଧ୍ୟ ଈଶ୍ୱରଙ୍କ ଇଚ୍ଛାରେ ଶ୍ରୀଯୁକ୍ତ ଦୁର୍ଗାଚରଣ ନିଜର ସହଧର୍ମିଣୀ ଓ ଆତ୍ମୀୟବର୍ଗଙ୍କ ସହିତ ଦୁଇଥର ସ୍ୱଳ୍ପକାଳ ପାଇଁ ମିଳିତ ହୋଇଥିଲେ । ତାଙ୍କ ପୁତ୍ର ବିଶ୍ୱନାଥଙ୍କୁ ଯେତେବେଳେ ଦୁଇ-ତିନିବର୍ଷ ବୟସ ହେବ, ସେତେବେଳେ ତାଙ୍କର ସହଧର୍ମିଣୀ ଓ ଆତ୍ମୀୟବର୍ଗ ବୋଧହୁଏ ତାଙ୍କରି ଅନ୍ୱେଷଣରେ କାଶୀଧାମ ଗମନପୂର୍ବକ କିଛିକାଳ ଅବସ୍ଥାନ କରିଥିଲେ । ରେଳପଥ ନ ଥିବାରୁ ସମ୍ଭ୍ରାନ୍ତ ବଂଶୀୟମାନେ ସେତେବେଳେ

ନୌକା ଦ୍ୱାରା କାଶୀ ଆସୁଥିଲେ । ଦୁର୍ଗାଚରଣଙ୍କର ସହଧର୍ମିଣୀ ମଧ୍ୟ ସେପରି କରିଥିଲେ । ପଥ ମଧ୍ୟରେ ଶିଶୁ ବିଶ୍ୱନାଥ ଗୋଟିଏ ସ୍ଥାନରେ ନୌକାରୁ ପାଣି ମଝିରେ ପଡ଼ିଯାଇଥିଲେ । ତାଙ୍କର ମା' ଏହା ସର୍ବାଗ୍ରେ ଲକ୍ଷ୍ୟକରି ପିଲାଟିକୁ ରକ୍ଷା କରିବା ପାଇଁ ପାଣିକୁ ଡେଇଁ ପଡ଼ିଥିଲେ । ଅନେକ ଚେଷ୍ଟାରେ ଚେତାଶୂନ୍ୟ ମା'ଙ୍କୁ ପାଣିରୁ ନୌକାକୁ ଉଠାଇ ଆଣି ଦେଖାଗଲା, ସେ ନିଜ ସନ୍ତାନର ହସ୍ତ ସେବେମଧ୍ୟ ଦୃଢ଼ଭାବରେ ଧାରଣ କରିରହିଛନ୍ତି । ଏହିପରି ଭାବରେ ମାତାଙ୍କର ଅପାର ସ୍ନେହ ହିଁ ବିଶ୍ୱନାଥଙ୍କର ପ୍ରାଣ-ରକ୍ଷାର ହେତୁ ହୋଇଥିଲା ।

କାଶୀ ପହଞ୍ଚିବା ପରେ ଶ୍ରୀଯୁକ୍ତ ଦୁର୍ଗାଚରଣଙ୍କର ସହଧର୍ମିଣୀ ପ୍ରତିଦିନ ବିଶ୍ୱନାଥଙ୍କୁ ଦର୍ଶନ କରୁଥିଲେ । ଦିନେ ବର୍ଷା ହୋଇ ରାସ୍ତା ଖସଡ଼ା ଥିବାରୁ ସେ ମନ୍ଦିର ସାମନାରେ ହଠାତ୍ ପଡ଼ିଗଲେ । ସେହି ସ୍ଥାନ ଦେଇ ଯାଉଥିବା ଜଣେ ସନ୍ୟାସୀ ତାହା ଦେଖି ଦ୍ରୁତପଦରେ ତାଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ସଯତ୍ନରେ ଉତ୍ତୋଳନକରି ତାଙ୍କୁ ମନ୍ଦିରର ସୋପାନରେ ବସାଇ, ଦେହରେ କେଉଁଠି ଗୁରୁତର ଆଘାତ ଲାଗିଛି କି ନାହିଁ ପରୀକ୍ଷା କରିବାକୁ ଅଗ୍ରସର ହେଲେ । କିନ୍ତୁ ଚାରିଚକ୍ଷୁର ମିଳନ ହେବା ମାତ୍ରେ ଦୁର୍ଗାଚରଣ ଓ ତାହାଙ୍କ ସହଧର୍ମିଣୀ ପରସ୍ପରଙ୍କୁ ଚିହ୍ନିପାରିଲେ ଏବଂ ସନ୍ନ୍ୟାସୀ ଦୁର୍ଗାଚରଣ ଦ୍ୱିତୀୟବାର ତାଙ୍କ ଆଡ଼କୁ ନ ଦେଖି ଦ୍ରୁତପଦରେ ସେଠାରୁ ଅନ୍ତର୍ହିତ ହେଲେ ।

ଶାସ୍ତ୍ର ନିୟମ ଅନୁସାରେ, ପରିବ୍ରାଜକ ହେବାର ଦ୍ୱାଦଶ ବର୍ଷ ପରେ ଥରେ ସନ୍ନ୍ୟାସୀ ବ୍ୟକ୍ତି 'ସ୍ୱର୍ଗାଦପି ଗରୀୟସୀ' ନିଜର ଜନ୍ମଭୂମି ଦର୍ଶନ କରିବେ । ଶ୍ରୀଯୁକ୍ତ ଦୁର୍ଗାଚରଣ ସେଥିପାଇଁ ଦ୍ୱାଦଶ ବର୍ଷ ପରେ ଥରେ କଲିକତା ଆଗମନପୂର୍ବକ ଜନୈକ ପୂର୍ବବନ୍ଧୁଙ୍କ ଘରେ ରହିଥିଲେ ଏବଂ ତାଙ୍କୁ ବିଶେଷ ଭାବରେ ଅନୁରୋଧ କରିଥିଲେ — ଯେପରି ତାଙ୍କର ଆଗମନ-ବାର୍ତ୍ତା ତାଙ୍କର ଆତ୍ମୀୟବର୍ଗଙ୍କ ମଧ୍ୟରେ ପ୍ରଚାରିତ ନ ହୁଏ । ସଂସାରୀ ବନ୍ଧୁ ସନ୍ନ୍ୟାସୀ ଦୁର୍ଗାଚରଣଙ୍କର ଏହି ଅନୁରୋଧ ଅଗ୍ରାହ୍ୟ କରି ଗୋପନରେ ତାଙ୍କ ଆତ୍ମୀୟମାନଙ୍କୁ ତାଙ୍କର ଆସିବାର ସମ୍ବାଦ ଜଣାଇଲେ ଏବଂ ତାଙ୍କର ପରିବାରବର୍ଗ ସଦଳବଳ ଆସି ଜୋର କରି ସନ୍ନ୍ୟାସୀ ଦୁର୍ଗାଚରଣଙ୍କୁ ଘରକୁ ନେଇଯାଇଥିଲେ । ଦୁର୍ଗାଚରଣ ଏପରି ଭାବରେ ଗୃହକୁ ଆସିଲେ ମଧ୍ୟ କାହାସହିତ ବାକ୍ୟାଳାପ ନ କରି ମୌନ ଅବଲମ୍ବନପୂର୍ବକ ସ୍ଥାଣୁ ପରି ନିଶ୍ଚେଷ୍ଟ ହୋଇ ଚକ୍ଷୁ ନିମୀଳିତ କରି ଗୃହର ଗୋଟିଏ କୋଣରେ ବସିରହିଲେ । ଶୁଣାଯାଏ, ଏକାଦିକ୍ରମରେ ତିନି ଦିନ ତିନିରାତି ସେ ଏହିପରି ଗୋଟିଏ ଆସନରେ ଅନଶନରେ ବସିଥିଲେ । ସେ ଅନଶନରେ ପ୍ରାଣତ୍ୟାଗ କରିବେ ଭାବି ତାଙ୍କର ଆତ୍ମୀୟସ୍ୱଜନ ଶଙ୍କିତ ହୋଇପଡ଼ିଲେ ଏବଂ ଘରଦ୍ୱାର ପୂର୍ବ ପରି ବନ୍ଦ ନ କରି ଉନ୍ମୁକ୍ତ ରଖିଦେଲେ । ପରଦିନ ଦେଖାଗଲା, ସନ୍ନ୍ୟାସୀ ଦୁର୍ଗାଚରଣ ସମସ୍ତଙ୍କର ଅଲକ୍ଷ୍ୟରେ ଗୃହତ୍ୟାଗ କରି କେଉଁଆଡ଼େ ଚାଲିଯାଇଛନ୍ତି ।

## ନରେନ୍ଦ୍ରଙ୍କର ପିତା ବିଶ୍ୱନାଥ :

ଶ୍ରୀଯୁକ୍ତ ଦୁର୍ଗାଚରଣଙ୍କର ପୁତ୍ର ବିଶ୍ୱନାଥ ବୟୋବୃଦ୍ଧି ସହିତ ପାର୍ସି ଓ ଇଂରାଜୀରେ ବିଶେଷ ଦକ୍ଷତା ଲାଭପୂର୍ବକ କଲିକତା ହାଇକୋର୍ଟରେ ଆର୍ଟର୍ଣ୍ଣି ହୋଇଥିଲେ । ସେ ଦାନଶୀଳ ତଥା ବନ୍ଧୁବତ୍ସଳ ଥିଲେ ଏବଂ ଭଲ ଉପାର୍ଜନ କରିଥିଲେ ମଧ୍ୟ କିଛି ସଞ୍ଚୟ କରିପାରି ନ ଥିଲେ । ପିତୃଧର୍ମ ପୁତ୍ରଠାରେ ବିଦ୍ୟମାନ ଥିବାରୁ ତଦ୍ୱାରା ଚାଳିତ ହୋଇ ବୋଧହୁଏ ତାଙ୍କୁ ସଞ୍ଚୟୀ ଏବଂ ମିତବ୍ୟୟୀ ହେବାକୁ ଦେଇ ନ ଥିଲା । ବାସ୍ତବିକ୍, ଅନେକ ବିଷୟରେ ବିଶ୍ୱନାଥଙ୍କ ସ୍ୱଭାବ ସାଧାରଣ ଗୃହସ୍ଥଙ୍କ ପରି ନ ଥିଲା । ସେ ଆସନ୍ତା କାଲିର ଭାବନାରେ କେବେ ବ୍ୟସ୍ତ ହେଉ ନ ଥିଲେ, ପାତ୍ର ଅପାତ୍ର ବିଚାର ନ କରି ସାହାଯ୍ୟ କରିବାକୁ ଅଗ୍ରସର ହେଉଥିଲେ, ସ୍ନେହପରାୟଣ ହେଲେ ମଧ୍ୟ ବିଦେଶରେ ଦୂରରେ ଥିବାବେଳେ ଅନେକଦିନ ପର୍ଯ୍ୟନ୍ତ ଆତ୍ମୀୟ-ସ୍ୱଜନଙ୍କର କିଛିମାତ୍ର ସମ୍ବାଦ ନ ନେଇ ନିଶ୍ଚିନ୍ତରେ ରହି ପାରୁଥିଲେ — ଏପରି ଅନେକ ବିଷୟ ତାଙ୍କ ସମ୍ବନ୍ଧରେ କୁହାଯାଇପାରେ ।

## ବିଶ୍ୱନାଥଙ୍କର ସଙ୍ଗୀତ-ପ୍ରିୟତା :

ଶ୍ରୀଯୁକ୍ତ ବିଶ୍ୱନାଥ ବୁଦ୍ଧିମାନ ଓ ମେଧାବୀ ଥିଲେ । ସଙ୍ଗୀତ ଇତ୍ୟାଦି କଳା ବିଦ୍ୟାରେ ତାଙ୍କର ବିଶେଷ ଅନୁରାଗ ଥିଲା । ସ୍ୱାମୀ ବିବେକାନନ୍ଦ କହୁଥିଲେ, ତାଙ୍କର ପିତା ସୁକଣ୍ଠ ଥିଲେ ଏବଂ କୌଣସି ପ୍ରଶିକ୍ଷଣ ନ ଥାଇ ମଧ୍ୟ ନିଧୁବାବୁଙ୍କର 'ଟପ୍ପା' ପ୍ରଭୃତି ସୁନ୍ଦର ଗାଇପାରୁଥିଲେ । ସଙ୍ଗୀତଚର୍ଚ୍ଚାକୁ ନିର୍ଦ୍ଦୋଷ ଆମୋଦ ବୋଲି ଧାରଣା ଥିଲା ବୋଲି ହିଁ ସେ ତାଙ୍କର ଜ୍ୟେଷ୍ଠପୁତ୍ର ନରେନ୍ଦ୍ରନାଥଙ୍କୁ ବିଦ୍ୟାର୍ଜନ ସହିତ ସଙ୍ଗୀତ ଶିଖିବାରେ ନିଯୁକ୍ତ କରିଥିଲେ । ତାଙ୍କର ସହଧର୍ମିଣୀ ଶ୍ରୀମତୀ ଭୁବନେଶ୍ୱରୀ ମଧ୍ୟ ବୈଷ୍ଣବ ଭିକ୍ଷୁକ ଓ ଭିକାରୀମାନଙ୍କର ଭଜନଗାନ ଥରେ ମାତ୍ର ଶୁଣି ସୁର-ତାଳ-ଲୟ ସହିତ ସମ୍ୟକ୍ ଆୟତ୍ତ କରିପାରୁଥିଲେ ।

## ବିଶ୍ୱନାଥଙ୍କର ମୁସଲମାନୀ ଆଚାର-ବ୍ୟବହାର :

ଖ୍ରୀଷ୍ଟିୟାନଙ୍କର ବାଇବେଲ ପାଠରେ ଏବଂ ପାର୍ସି କବି ହାଫେଜଙ୍କର ବୟେତ୍‌ସକଳ ଆବୃତ୍ତି କରିବାରେ ଶ୍ରୀଯୁକ୍ତ ବିଶ୍ୱନାଥଙ୍କର ବିଶେଷ ଶ୍ରଦ୍ଧା ଥିଲା । ମହାମହିମ ଈଶାଙ୍କର ପୁଣ୍ୟ ଚରିତ୍ରର ଗୋଟିଏ ଦୁଇଟି ଅଧ୍ୟାୟ ତାଙ୍କର ନିତ୍ୟପାଠ୍ୟ ଥିଲା, ଏବଂ ଏହାଙ୍କର ଓ ହାଫେଜଙ୍କର ପ୍ରେମପୂର୍ଣ୍ଣ କବିତାସମୂହ କିଛି କିଛି ସେ ନିଜର ସ୍ତ୍ରୀ-ପୁତ୍ରମାନଙ୍କୁ ବେଳେ ବେଳେ ଶୁଣାଉଥିଲେ । ଭାରତର ଉତ୍ତର-ପଶ୍ଚିମାଞ୍ଚଳର ଲକ୍ଷ୍ନୌ, ଲାହୋର ପ୍ରଭୃତି ମୁସଲମାନପ୍ରଧାନ ସ୍ଥାନମାନଙ୍କରେ କିଛି କାଳ ବାସ କରିବା ଯୋଗୁଁ ମୁସଲମାନମାନଙ୍କର ଆଚାର ବ୍ୟବହାରର କିଛି କିଛି

ବିଷୟ ପ୍ରତି ସେ ଅନୁରାଗୀ ହୋଇଉଠିଥିଲେ । ପ୍ରତିଦିନ ପଲାଉ ଭୋଜନ କରିବାର ପ୍ରଥା ବୋଧହୁଏ ସେହି ପ୍ରକାରରେ ହିଁ ତାଙ୍କ ପରିବାରରେ ଚାଲୁ ହୋଇଥିଲା ।

**ବିଶ୍ୱନାଥଙ୍କର ରଙ୍ଗରସ–ପ୍ରିୟତା :**

ଶ୍ରୀଯୁକ୍ତ ବିଶ୍ୱନାଥ ଗୋଟିଏ ଦିଗରେ ଯେପରି ଧୀର ଓ ଗମ୍ଭୀର ଥିଲେ, ସେପରି ରସିକ ମଧ ଥିଲେ । ପୁତ୍ର କନ୍ୟାମାନେ କେହି କିଛି ଅନ୍ୟାୟ ଆଚରଣ କଲେ ସେ ତାଙ୍କୁ କଠୋର ବାକ୍ୟରେ ଶାସନ ନ କରି ତାଙ୍କର ଏପରି ଆଚରଣର କଥା ତାଙ୍କର ବନ୍ଧୁ–ବାନ୍ଧବମାନଙ୍କଠାରେ ଏପରି ଭାବରେ ପ୍ରଚାର କରିଦେଉଥିଲେ, ଯେଉଁଥିରେ ସେମାନେ ନିଜେ ଲଜ୍ଜିତ ହୋଇ ସେପରି ଆଉ କରୁ ନ ଥିଲେ । ଦୃଷ୍ଟାନ୍ତସ୍ୱରୂପ ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କଲେ ହିଁ ପାଠକ ବୁଝିପାରିବେ । ତାଙ୍କର ଜ୍ୟେଷ୍ଠପୁତ୍ର ନରେନ୍ଦ୍ରନାଥ ଦିନେ କୌଣସି ବିଷୟ ନେଇ ତାଙ୍କର ମା'ଙ୍କ ସହିତ ଯୁକ୍ତିତର୍କ କରି ଗୋଟିଏ–ଦୁଇଟି କଟୁ କଥା କହିଥିଲେ । ଶ୍ରୀଯୁକ୍ତ ବିଶ୍ୱନାଥ ଏଥିପାଇଁ ତାଙ୍କୁ ଆଦୌ ତିରସ୍କାର ନ କରି ଯେଉଁ ଘରେ ନରେନ୍ଦ୍ର ତାଙ୍କର ସମବୟସ୍କ ବନ୍ଧୁମାନଙ୍କ ସହିତ ଉଠାବସା କରନ୍ତି, ସେହି ଘରର ଦ୍ୱାର ଉପରେ ଖଣ୍ଡେ କୋଇଲାରେ ବଡ଼ ବଡ଼ ଅକ୍ଷରରେ ଲେଖିଦେଲେ— 'ନରେନ୍‌ବାବୁ ତାଙ୍କର ମାତାଙ୍କୁ ଆଜି ଏହି ସମସ୍ତ କଥା କହିଛନ୍ତି ।' ନରେନ୍ଦ୍ରନାଥ ଓ ତାଙ୍କର ସାଙ୍ଗମାନେ ସେହି ଘରକୁ ପଶିଲେ ହିଁ ସେହି କଥାଗୁଡ଼ିକ ଦେଖି ପାରୁଥିଲେ ଏବଂ ନରେନ୍ଦ୍ର ଏଥିରେ ଅନେକ ଦିନ ପର୍ଯ୍ୟନ୍ତ ନିଜର ଅପରାଧ ନିମିତ୍ତ ଅତ୍ୟନ୍ତ ସଙ୍କୋଚ ଅନୁଭବ କରିଥିଲେ ।

**ବିଶ୍ୱନାଥଙ୍କର ଦାନଶୀଳତା :**

ଶ୍ରୀଯୁକ୍ତ ବିଶ୍ୱନାଥ ବହୁ ଆତ୍ମୀୟଙ୍କୁ ପ୍ରତିପାଳନ କରୁଥିଲେ । ଅନ୍ନଦାନରେ ସେ ସର୍ବଦା ମୁକ୍ତହସ୍ତ ଥିଲେ । ଦୂର ସମ୍ପର୍କୀୟ। କେହି କେହି ତାଙ୍କ ଅନ୍ନରେ ଜୀବନ ଧାରଣ କରି ଆଳସ୍ୟରେ ଦିନ କଟାଉଥିଲେ, କେହି କେହି ପୁଣି ନିଶାଭାଙ୍ଗ କରି ଜୀବନର ଅବସାଦ ନିବାରଣ କରୁଥିଲେ । ନରେନ୍ଦ୍ର ବଡ଼ ହେଲା ପରେ, ଏସମସ୍ତ ଅଯୋଗ୍ୟ ବ୍ୟକ୍ତିଙ୍କୁ ଦାନ କରୁଥିବାରୁ ପିତାଙ୍କୁ ଅନେକ ସମୟରେ ଅନୁଯୋଗ କରୁଥିଲେ । ଶ୍ରୀଯୁକ୍ତ ବିଶ୍ୱନାଥ ତାଙ୍କୁ କହୁଥିଲେ, "ମନୁଷ୍ୟଜୀବନ ଯେ କେତେ ଦୁଃଖମୟ, ତାହା ତୁ ଏବେ କିପରି ବୁଝିବୁ ? ଯେତେବେଳେ ବୁଝିପାରିବୁ, ସେତେବେଳେ ସେହି ଦୁଃଖ ହସ୍ତରୁ କ୍ଷଣିକ ମୁକ୍ତି ପାଇଁ ଯେଉଁମାନେ ନିଶାଭାଙ୍ଗ କରନ୍ତି, ସେମାନଙ୍କୁ ମଧ ଦୟାଚକ୍ଷୁରେ ଦେଖିପାରିବୁ !"

## ବିଶ୍ୱନାଥଙ୍କର ଦେହାନ୍ତ :

ଶ୍ରୀଯୁକ୍ତ ବିଶ୍ୱନାଥଙ୍କର ଅନେକ ଗୁଡ଼ିଏ ପୁତ୍ର-କନ୍ୟା ହୋଇଥିଲେ । ସେମାନେ ସମସ୍ତେ ଅଶେଷ ସଦ୍‌ଗୁଣସମ୍ପନ୍ନ ଥିଲେ । କିନ୍ତୁ କନ୍ୟାମାନଙ୍କ ମଧ୍ୟରୁ ଅନେକେ ହିଁ ଦୀର୍ଘଜୀବନ ଲାଭ କରି ନାହାନ୍ତି । ତିନି-ଚାରି କନ୍ୟାଙ୍କ ପରେ ନରେନ୍ଦ୍ରନାଥଙ୍କ ଜନ୍ମ ହେବାରୁ ସେ ପିତାମାତାଙ୍କର ବିଶେଷ ପ୍ରିୟ ଥିଲେ । ୧୮୮୩ ମସିହା ଶୀତ କାଳରେ ନରେନ୍ଦ୍ରନାଥ ଯେତେବେଳେ ବି.ଏ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଥିଲେ, ସେତେବେଳେ ତାଙ୍କର ପିତା ହଠାତ୍ ହୃଦ୍‌ଘାତରେ ପ୍ରାଣତ୍ୟାଗ କଲେ ।[୧] ତାଙ୍କର ମୃତ୍ୟୁରେ ସ୍ତ୍ରୀ-ପୁତ୍ରମାନେ ସମ୍ପୂର୍ଣ୍ଣ ନିଃସ୍ୱ ହୋଇପଡ଼ିଲେ ।

## ନରେନ୍ଦ୍ରଙ୍କର ମାତା :

ନରେନ୍ଦ୍ରନାଥଙ୍କର ମାତା ଶ୍ରୀମତୀ ଭୁବନେଶ୍ୱରୀ ଦେବୀଙ୍କ ମହତ୍ତ୍ୱ ସମ୍ବନ୍ଧରେ ଅନେକ କଥା ଶୁଣିବାକୁ ମିଳେ । ସେ କେବଳ ସୁରୂପା ଓ ଦେବଭକ୍ତିପରାୟଣା ନ ଥିଲେ, ବରଂ ବିଶେଷ ବୁଦ୍ଧିମତୀ ଓ କାର୍ଯ୍ୟକୁଶଳା ଥିଲେ । ତାଙ୍କର ସ୍ୱାମୀଙ୍କର ଏତେ ବଡ଼ ସଂସାରର ସମସ୍ତ କାର୍ଯ୍ୟଭାର ତାଙ୍କ ଉପରେ ହିଁ ନ୍ୟସ୍ତ ଥିଲା । ଶୁଣାଯାଏ, ସେ ସହଜଭାବରେ ଏସମସ୍ତ କାର୍ଯ୍ୟ ସୁବନ୍ଦୋବସ୍ତ କରି ସିଲାଇ ଆଦି ଶିଳ୍ପକାର୍ଯ୍ୟ କରିବା ପାଇଁ ସମୟ କରି ନେଇପାରୁଥିଲେ । ରାମାୟଣ-ମହାଭାରତ ଆଦି ଧର୍ମଗ୍ରନ୍ଥପାଠ ବ୍ୟତୀତ ତାଙ୍କର ବିଦ୍ୟାଶିକ୍ଷା ଅଧିକ ନ ହୋଇଥିଲେ ମଧ୍ୟ ସେ ନିଜ ସ୍ୱାମୀ ଓ ପୁତ୍ରାଦିଙ୍କ ନିକଟରୁ ଅନେକ ବିଷୟ କଥାବାର୍ତ୍ତା ଦ୍ୱାରା ଏପରି ଶିଖିଯାଇଥିଲେ ଯେ, ତାହାଙ୍କ ସହିତ କଥା କହିଲେ ତାଙ୍କୁ ଶିକ୍ଷିତା ବୋଲି ମନେ ହେଉଥିଲା । ତାଙ୍କର ସ୍ମୃତି ଓ ଧାରଣାଶକ୍ତି ଅତ୍ୟନ୍ତ ପ୍ରଖର ଥିଲା । ଥରେ ମାତ୍ର ଶୁଣି ହିଁ ସେ ଯେକୌଣସି ବିଷୟ ଆବୃତ୍ତି କରିପାରୁଥିଲେ ଏବଂ ବହୁପୂର୍ବର କଥା ଓ ବିଷୟଗୁଡ଼ିକ ତାଙ୍କର ଗତକାଲି ଘଟିଥିବା ଘଟଣାଗୁଡ଼ିକ ପରି ମନେ ରହୁଥିଲା । ସ୍ୱାମୀଙ୍କର ମୃତ୍ୟୁପରେ ଦାରିଦ୍ର୍ୟତାରେ ପଡ଼ି ତାଙ୍କର ଧୈର୍ଯ୍ୟ, ସହିଷ୍ଣୁତା ଓ ତେଜସ୍ୱୀତା ପ୍ରଭୃତି ଗୁଣମାନ ବିଶେଷ ଭାବରେ ବିକଶିତ ହୋଇଉଠିଥିଲା । ସହସ୍ର ମୁଦ୍ରା ବ୍ୟୟ କରି ଯିଏ ପ୍ରତିମାସ ସଂସାର ପରିଚାଳନା କରୁଥିଲେ, ତାହାଙ୍କୁ ସେତେବେଳେ ମାସିକ ତିରିଶ ଟଙ୍କାରେ ନିଜର ଓ ନିଜ ପୁତ୍ରଗଣଙ୍କର ଭରଣପୋଷଣ କରିବାକୁ ପଡୁଥିଲା । କିନ୍ତୁ ସେଥିରେ ତାଙ୍କୁ ଦିନକ ପାଇଁ ମଧ୍ୟ ବିଷଣ୍ଣ ଦେଖାଯାଉ ନ ଥିଲା । ଏହି ସାମାନ୍ୟ ଅର୍ଥରେ ସେ ସଂସାରର ସମସ୍ତ ବନ୍ଦୋବସ୍ତ ଏପରି ଭାବରେ ଚଳାଉଥିଲେ ଯେ, ଲୋକମାନେ ତାଙ୍କର ମାସିକ ଖର୍ଚ୍ଚ ଅନେକ ଅଧିକ ବୋଲି ମନେ କରୁଥିଲେ । ବାସ୍ତବିକ୍, ପତିଙ୍କର ସହସା

---

୧. ପିତାଙ୍କ ମୃତ୍ୟୁ ନରେନ୍ଦ୍ରଙ୍କର ବି.ଏ. ପରୀକ୍ଷା ପରେ ହୁଏ । ଅଷ୍ଟମ ଅଧ୍ୟାୟର ସପ୍ତମ ପାଦ୍ୱା ଦ୍ରଷ୍ଟବ୍ୟ ।

ଦେହାନ୍ତରେ ଶ୍ରୀମତୀ ଭୁବନେଶ୍ୱରୀ କି ପ୍ରକାର ଦୁର୍ଦ୍ଦଶାରେ ପଡ଼ିଥିଲେ, ତାହା ଭାବିଲେ ହୃଦୟ ତରଳିଯାଏ । ସଂସାର ଚଳାଇବା ପାଇଁ କୌଣସି ନିଶ୍ଚିତ ଆୟ ନ ଥିଲା—ଅଥଚ ତାଙ୍କର ସୁଖପାଳିତା ବୃଦ୍ଧାମାତା ଓ ପୁତ୍ରମାନଙ୍କର ଭରଣପୋଷଣ ଏବଂ ପାଠପଢ଼ାର ବନ୍ଦୋବସ୍ତ କୌଣସି ମତେ କରିବାକୁ ହେବ—ତାଙ୍କର ପତିଙ୍କ ସାହାଯ୍ୟରେ ଯେଉଁ ସମସ୍ତ ଆତ୍ମୀୟସ୍ୱଜନ ବେଶ୍ କିଛି ଉପାର୍ଜନ କରୁଥିଲେ ସେମାନେ ସାହାଯ୍ୟ କରିବା ଦୂରରେ ଥାଉ, ମଉକା ପାଇ ସେମାନେ ତାଙ୍କର ନ୍ୟାଯ୍ୟ ଅଧିକାରସମୂହର ଲୋପସାଧନରେ କୃତସଂକଳ୍ପ ହେଲେ—ତାଙ୍କର ଅଶେଷ ସଦ୍‌ଗୁଣସମ୍ପନ୍ନ ଜ୍ୟେଷ୍ଠପୁତ୍ର ନରେନ୍ଦ୍ରନାଥ ନାନାପ୍ରକାର ଚେଷ୍ଟା କରି ମଧ୍ୟ ଅର୍ଥକର କୌଣସି କାର୍ଯ୍ୟର ସନ୍ଧାନ ପାଉ ନ ଥିଲେ ଏବଂ ସଂସାର ପ୍ରତି ବୀତରାଗ ହୋଇ ଚିରକାଳ ପାଇଁ ତାହା ତ୍ୟାଗ କରିବାକୁ ଅଗ୍ରସର ହୋଇଥିଲେ—ସେହିପ୍ରକାର ଭୀଷଣ ଅବସ୍ଥାରେ ପଡ଼ି ମଧ୍ୟ ଶ୍ରୀମତୀ ଭୁବନେଶ୍ୱରୀ ଯେପରି ଧୀରସ୍ଥିର ଭାବରେ ନିଜର କର୍ତ୍ତବ୍ୟ ପାଳନ କରୁଥିଲେ, ସେକଥା ଭାବିଲେ ତାଙ୍କ ପ୍ରତି ଭକ୍ତି-ଶ୍ରଦ୍ଧା ସ୍ୱତଃ ଉଦୟ ହୋଇଥାଏ । ଠାକୁରଙ୍କ ସହିତ ନରେନ୍ଦ୍ରନାଥଙ୍କର ଘନିଷ୍ଠ ସମ୍ବନ୍ଧର ଆଲୋଚନା ବେଳେ ଆମମାନଙ୍କୁ ପରେ ପାଠକଙ୍କ ସମ୍ମୁଖରେ ତାଙ୍କର ଏସମୟର ପାରିବାରିକ ଅଭାବ ପ୍ରଭୃତିର କଥା ଉତ୍‌ଥାପନ କରିବାକୁ ହେବ । ତେଣୁ ଏଠାରେ ସେହି ବିଷୟ ବିବୃତ କରିବାକୁ ଆଉ ଅଧିକ ଅଗ୍ରସର ନ ହୋଇ, ଆମେ ତାଙ୍କର ଦକ୍ଷିଣେଶ୍ୱରକୁ ଦ୍ୱିତୀୟ ଥର ଆଗମନର କଥା ଏବେ ପାଠକଙ୍କୁ କହିବୁ ।

# ଚତୁର୍ଥ ଅଧ୍ୟାୟ

## ନରେନ୍ଦ୍ରନାଥଙ୍କର ଦ୍ୱିତୀୟ ଓ ତୃତୀୟଥର ଆଗମନ

### ଯଥାର୍ଥ ଈଶ୍ୱରପ୍ରେମିକ ବୋଲି ଧାରଣା କରି ମଧ୍ୟ ଦ୍ୱିତୀୟଥର ନରେନ୍ଦ୍ରଙ୍କର ଠାକୁରଙ୍କ ନିକଟକୁ ଆସିବାରେ ବିଳମ୍ବ ହେବାର କାରଣ :

ଯଥାର୍ଥ ପୁରୁଷକାରସମ୍ପନ୍ନ ସ୍ଥିରଲକ୍ଷ୍ୟବିଶିଷ୍ଟ ବ୍ୟକ୍ତିମାନେ ଅନ୍ୟର ମହତ୍ତ୍ୱର ପରିଚୟ ପାଇଲେ ମୁକ୍ତକଣ୍ଠରେ ତାହା ସ୍ୱୀକାର କରି ପ୍ରାଣରେ ଅପୂର୍ବ ଆନନ୍ଦ ଅନୁଭବ କରିଥାଆନ୍ତି । ପୁଣି ସେହି ମହତ୍ତ୍ୱ ଯଦି କେତେବେଳେ କାହା ମଧ୍ୟରେ ଅଦୃଷ୍ଟପୂର୍ବ ଅଭାବନୀୟରୂପେ ପ୍ରକାଶିତ ହେବାର ଦେଖନ୍ତି ତେବେ ସେହି ଚିନ୍ତାରେ ମଗ୍ନ ହୋଇ ସେମାନଙ୍କର ମନ କିଛି ସମୟ ପାଇଁ ମୁଗ୍ଧ ଓ ସ୍ତମ୍ଭିତ ହୋଇଯାଏ । ଏପରି ହେଲେ ମଧ୍ୟ ସେହି ଘଟଣା ସେମାନଙ୍କୁ ନିଜ ଗନ୍ତବ୍ୟପଥରୁ ବିଚଳିତ କରି ଉକ୍ତ ପୁରୁଷଙ୍କର ଅନୁକରଣରେ କଦାପି ପ୍ରବୃତ୍ତ କରେ ନାହିଁ । କିମ୍ବା ବହୁ କାଳବ୍ୟାପୀ ସଙ୍ଗ, ସାହଚର୍ଯ୍ୟ ଓ ପ୍ରେମବନ୍ଧନ ବ୍ୟତୀତ ସେମାନଙ୍କର ଜୀବନର କାର୍ଯ୍ୟକଳାପ ସେହି ପୁରୁଷଙ୍କର ରଙ୍ଗରେ ସହସା ରଞ୍ଜିତ ହୋଇଉଠେ ନାହିଁ । ଦକ୍ଷିଣେଶ୍ୱରରେ ଠାକୁରଙ୍କର ପ୍ରଥମ ଦର୍ଶନଲାଭ କରି ନରେନ୍ଦ୍ରନାଥଙ୍କର ଠିକ୍ ସେହିପରି ଅବସ୍ଥା ହୋଇଥିଲା । ଠାକୁରଙ୍କର ଅପୂର୍ବ ତ୍ୟାଗ ଏବଂ ମନ ଓ ମୁଖର ଏକାନ୍ତ ଐକ୍ୟଦର୍ଶନରେ ମୁଗ୍ଧ ଏବଂ ଆକୃଷ୍ଟ ହୋଇଥିଲେ ମଧ୍ୟ ନରେନ୍ଦ୍ରଙ୍କର ହୃଦୟ ଜୀବନର ଆଦର୍ଶ ରୂପରେ ତାଙ୍କୁ ଗ୍ରହଣ କରିବାକୁ ସହସା ସମ୍ମତ ହୋଇ ନ ଥିଲା । ତେଣୁ ଘରକୁ ଫେରିବା ପରେ ତାଙ୍କ ମନରେ ଠାକୁରଙ୍କର ଅଦୃଷ୍ଟପୂର୍ବ ଚରିତ୍ର ଓ ଆଚରଣ କେତେ ଦିନ ଧରି ପୁନଃ ପୁନଃ ଉଦିତ ହେଉଥିଲେ ମଧ୍ୟ ନିଜର ପ୍ରତିଶ୍ରୁତି ପୂର୍ଣ୍ଣ କରିବାକୁ ତାଙ୍କ ନିକଟକୁ ପୁନର୍ବାର ଯିବା କଥା ସେ ଦୂର ଭବିଷ୍ୟତ ଗର୍ଭକୁ ଠେଲି ଦେଇ ନିଜର କର୍ତ୍ତବ୍ୟରେ ମନୋନିବେଶ କରିଥିଲେ । ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରେ ଠାକୁରଙ୍କୁ ଅର୍ଦ୍ଧ ଉନ୍ମାଦ ବୋଲି ଧାରଣା କରିବା ହିଁ ଯେ ତାଙ୍କୁ ସେହି ବିଷୟରେ ଅନେକ ସହାୟତା କରିଥିଲା, ଏକଥା ବୁଝାଯାଏ । ପୁଣି, ଧ୍ୟାନାଭ୍ୟାସ ଓ କଲେଜର ପାଠ ବ୍ୟତୀତ ନରେନ୍ଦ୍ର ସେତେବେଳେ ପ୍ରତିଦିନ ସଙ୍ଗୀତ ଓ ବ୍ୟାୟାମ ଅଭ୍ୟାସରେ ନିଯୁକ୍ତ ରହୁଥିଲେ — ତଦୁପରି ସମବୟସ୍କମାନଙ୍କର ମାନସିକ ଓ ଆଧ୍ୟାତ୍ମିକ ଉନ୍ନତିସାଧନ ନିମନ୍ତେ ସେମାନଙ୍କୁ ନେଇ ବ୍ରାହ୍ମସମାଜର ଅନୁସରଣରେ କଲିକତାର ବିଭିନ୍ନ ସ୍ଥାନରେ ପ୍ରାର୍ଥନା ଓ ଆଲୋଚନା-ସମିତି ସବୁ ଗଠନ କରୁଥିଲେ । ସୁତରାଂ ସହସ୍ର କର୍ମରେ ବ୍ୟସ୍ତ ନରେନ୍ଦ୍ରଙ୍କ ମନରେ ଦକ୍ଷିଣେଶ୍ୱର ଯିବା କିଛିଦିନ ଅଟକି ରହିବା ବିଚିତ୍ର ନୁହେଁ । ମାତ୍ର ପାଶ୍ଚାତ୍ୟ ଶିକ୍ଷା ଓ ଦୈନନ୍ଦିନ କର୍ମ ତାଙ୍କୁ ଏପରି ଭୁଲାଇ ରଖିଥିଲେ ମଧ୍ୟ ତାଙ୍କର ସ୍ମୃତି ଓ ସତ୍ୟନିଷ୍ଠା

ସମୟ ପାଇଲେ ହିଁ ତାଙ୍କୁ ଏକାକୀ ଦକ୍ଷିଣେଶ୍ୱର ଗମନପୂର୍ବକ ନିଜର ପ୍ରତିଶ୍ରୁତି ରକ୍ଷା କରିବାକୁ ଉତ୍ତେଜିତ କରୁଥିଲା । ସେଥିପାଇଁ ପ୍ରଥମ ଦର୍ଶନର ପ୍ରାୟ ଏକ ମାସରୁ ଅଧିକ ସମୟ ପରେ ଏକାକୀ ପଦବ୍ରଜରେ ସେ ପୁନର୍ବାର ଦକ୍ଷିଣେଶ୍ୱର ଆସିବାର ଆମେ ଦେଖିବାକୁ ପାଉ । ଏହି ଦିନର କଥା ପରେ ସେ ଆମମାନଙ୍କୁ ଯେପରି କହିଥିଲେ, ଆମେ ସେହିପରି ହିଁ ପାଠକଙ୍କୁ କହୁଛୁ—

## ନରେନ୍ଦ୍ରଙ୍କର ଦ୍ୱିତୀୟଥର ଆଗମନ ଓ ଠାକୁରଙ୍କର ପ୍ରଭାବରେ ସହସା ଅଦ୍ଭୁତ ପ୍ରତ୍ୟକ୍ଷ ଅନୁଭୂତି :

‘‘ଦକ୍ଷିଣେଶ୍ୱର କାଳୀମନ୍ଦିର କଲିକତାରୁ ଏତେ ଦୂର ବୋଲି ପ୍ରଥମ ଥର ଗାଡ଼ିରେ ଯାଇ ଥିବାରୁ ଜାଣିପାରି ନଥିଲି । ବରାହନଗରର ଦାଶରଥି ସାନ୍ୟାଲ, ସାତକଡ଼ି ଲାହିଡ଼ୀ ପ୍ରଭୃତି ବନ୍ଧୁମାନଙ୍କ ନିକଟକୁ ପୂର୍ବରୁ ଯିବା ଆସିବା ଥିଲା । ଭାବିଥିଲି ରାସମଣିଙ୍କର ବଗିଚା ସେମାନଙ୍କ ଘର ନିକଟରେ ହିଁ ହେବ, ମାତ୍ର ଯେତେ ଚାଲିଲେ ବି ବାଟ ଯେପରି ସରୁ ନ ଥାଏ ! ଯାହେଉ, ପଚାରି ପଚାରି କୌଣସି ମତେ ଦକ୍ଷିଣେଶ୍ୱରରେ ପହଞ୍ଚିଲି ଏବଂ ଏକାଥରକେ ଠାକୁରଙ୍କର ଘରେ ପହଞ୍ଚିଗଲି । ଦେଖିଲି, ସେ ପୂର୍ବପରି ତାଙ୍କର ଶଯ୍ୟା ପାଖରେ ଥିବା ଛୋଟ ତକ୍ତପୋଷ ଉପରେ ଏକୁଟିଆ ବସିଅଛନ୍ତି—ନିକଟରେ କେହି ନାହାନ୍ତି । ମୋତେ ଦେଖିବାମାତ୍ରେ ଆହ୍ଲାଦିତ ହୋଇ ଡାକି ତାହାର ଗୋଟିଏ ପ୍ରାନ୍ତରେ ବସାଇଲେ । ବସିବା ପରେ କିନ୍ତୁ ଦେଖିବାକୁ ପାଇଲି, ସେ ଯେପରି କୌଣସି ପ୍ରକାର ଭାବରେ ଆବିଷ୍ଟ ହୋଇପଡ଼ିଛନ୍ତି ଏବଂ ଅସ୍ପଷ୍ଟ ସ୍ୱରରେ ନିଜକୁ ନିଜେ କ’ଣ ସବୁକଥା କହୁ କହୁ ସ୍ଥିର ଦୃଷ୍ଟିରେ ମୋତେ ଲକ୍ଷ୍ୟ କରି ଧୀରେ ଧୀରେ, ମୋ ପାଖକୁ ଘୁଞ୍ଚି ଆସୁଛନ୍ତି । ଭାବିଲି, ପାଗଳ ବୋଧହୁଏ ପୂର୍ବଦିନ ପରି କୌଣସି ପାଗଳାମି କରିବେ । ସେହିପରି ଭାବିଛି କି ନାହିଁ ସେ ହଠାତ୍ ପାଖକୁ ଆସି ତାଙ୍କର ଦକ୍ଷିଣ ପାଦକୁ ମୋ ଅଙ୍ଗରେ ରଖିଦେଲେ ଏବଂ ତାହାର ସ୍ପର୍ଶରେ ମୁହୂର୍ତ୍ତକ ମଧ୍ୟରେ ମୋର ଏକ ଅପୂର୍ବ ଉପଲବ୍ଧି ହେଲା । ଖୋଲା ଚକ୍ଷୁରେ ଦେଖିବାକୁ ଲାଗିଲି, କାନ୍ଥଗୁଡ଼ିକ ସହିତ ଘରର ସମସ୍ତ ବସ୍ତୁ ଖୁବ୍ ଜୋରରେ ଘୁରି ଘୁରି କେଉଁଆଡେ ଲୀନ ହୋଇଯାଉଛି ଏବଂ ସମଗ୍ର ବିଶ୍ୱ ସହିତ ମୋର ‘ମୁଁ’ତ୍ୱ ଯେପରି ଏକ ସର୍ବଗ୍ରାସୀ ମହାଶୂନ୍ୟରେ ଏକାକାର ହେବାକୁ ଛୁଟି ଚାଲିଛି ! ସେତେବେଳେ ଭୟଙ୍କର ଆତଙ୍କରେ ଅଭିଭୂତ ହୋଇପଡ଼ିଲି, ମନେହେଲା—‘ମୁଁ’ତ୍ୱର ନାଶରେ ହିଁ ମରଣ, ସେହି ମରଣ ସମ୍ମୁଖରେ—ଅତି ନିକଟରେ ! ସମ୍ଭାଳି ନ ପାରି ଚିତ୍କାର କରି କହିଉଠିଲି, ‘ଆହେ, ତୁମେ ମୋର ଏପରି କ’ଣ କରିଦେଲ, ମୋର ଯେ ବାପା ମା ଅଛନ୍ତି !’ ଅଦ୍ଭୁତ ପାଗଳ ମୋର ଏହି କଥା ଶୁଣି ଖିଲିଖିଲି କରି ହସି ଉଠିଲେ, ଏବଂ ହସ୍ତଦ୍ୱାରା ମୋର ବକ୍ଷ ସ୍ପର୍ଶ କରୁ କରୁ କହିବାକୁ ଲାଗିଲେ,

'ତେବେ ଏବେ ଥାଉ, ଥରକରେ ଦରକାର ନାହିଁ, ସମୟ ଆସିଲେ ହେବ !' ଆଶ୍ଚର୍ଯ୍ୟର ବିଷୟ, ସେ ଏହିପରି ସ୍ପର୍ଶ କରି ଏକଥା କହିବାମାତ୍ରେ ମୋର ସେହି ଅପୂର୍ବ ପ୍ରତ୍ୟକ୍ଷ ସମ୍ପୂର୍ଣ୍ଣ ଅପନୀତ ହେଲା; ପ୍ରକୃତିସ୍ଥ ହେଲି, ଏବଂ ଘରର ଭିତର ଓ ବାହାରର ପଦାର୍ଥଗୁଡ଼ିକ ପୂର୍ବପରି ଅବସ୍ଥିତ ଦେଖିବାକୁ ପାଇଲି ।

## ସେହିପରି ପ୍ରତ୍ୟକ୍ଷର କାରଣ ଅନ୍ୱେଷଣ ଓ ଭବିଷ୍ୟତରେ ପୁନର୍ବାର ସେହିପ୍ରକାର ଅଭିଭୂତ ନ ହେବା ପାଇଁ ନରେନ୍ଦ୍ରଙ୍କର ଚେଷ୍ଟା :

''ଏହା କହିବାକୁ ଏତେ ବିଳମ୍ବ ହେଲେ ମଧ୍ୟ ଘଟଣାଟି ଅତି କମ୍ ସମୟ ମଧ୍ୟରେ ଘଟିଯାଇଥିଲା ଏବଂ ତାହାଦ୍ୱାରା ମନରେ ଗୋଟିଏ ଯୁଗାନ୍ତର ଉପସ୍ଥିତ ହେଲା । ସ୍ତବ୍ଧ ହୋଇ ଭାବିବାକୁ ଲାଗିଲି, ଏପରି କ'ଣ ହେଲା ? ଦେଖିଲି ତ' ଏହା ଏହି ଅଦ୍ଭୁତ ପୁରୁଷଙ୍କର ପ୍ରଭାବରେ ସହସା ଉପସ୍ଥିତ ହୋଇ ସହସା ଲୟ ହୋଇଗଲା । ପୁସ୍ତକରେ Mesmerism (ମୋହିନୀ ଇଚ୍ଛାଶକ୍ତିସଞ୍ଚାରଣ) ଓ Hypnotism (ସମ୍ମୋହନ ବିଦ୍ୟା) ସମ୍ବନ୍ଧରେ ପଢ଼ିଥିଲି । ଭାବିବାକୁ ଲାଗିଲି ଏହା କ'ଣ ସେପରି କିଛି ଗୋଟେ ? କିନ୍ତୁ ଏପରି ସିଦ୍ଧାନ୍ତରେ ପ୍ରାଣ ସନ୍ତୁଷ୍ଟ ହେଲା ନାହିଁ । କାରଣ, ଦୁର୍ବଳ ମନ ଉପରେ ହିଁ ପ୍ରଭାବ ବିସ୍ତାର କରି ପ୍ରବଳ ଇଚ୍ଛାଶକ୍ତିସମ୍ପନ୍ନ ବ୍ୟକ୍ତିମାନେ ସେହି ସମସ୍ତ ଅବସ୍ଥା ଆଣିଥାଆନ୍ତି; କିନ୍ତୁ ମୁଁ ତ ଏପରି ନୁହେଁ, ବରଂ ଏପର୍ଯ୍ୟନ୍ତ ବିଶେଷ ବୁଦ୍ଧିମାନ ଓ ମାନସିକଶକ୍ତିସମ୍ପନ୍ନ ବୋଲି ଅହଙ୍କାର କରିଆସୁଥିଲି । ବିଶିଷ୍ଟ ଗୁଣଶାଳୀ ପୁରୁଷଙ୍କର ସଙ୍ଗଲାଭରେ ଇତରସାଧାରଣ ଯେପରି ମୋହିତ ଏବଂ ତାଙ୍କ ହସ୍ତର କ୍ରୀଡ଼ାପୁତ୍ତଳିକାସ୍ୱରୂପ ହୋଇଯାଆନ୍ତି, ମୁଁ ତ ତାଙ୍କୁ ଦେଖି ସେପରି ହୋଇ ନ ଥିଲି; ବରଂ ପ୍ରଥମରୁ ହିଁ ଏହାଙ୍କୁ ଅର୍ଦ୍ଧପାଗଳ ବୋଲି ନିଶ୍ଚୟ କରିଥିଲି । ତେବେ ମୋର ସହସା ସେପରି ହେବାର କାରଣ କ'ଣ ? ଭାବିଚିନ୍ତି କିଛି ସ୍ଥିର କରିପାରିଲି ନାହିଁ; ପ୍ରାଣ ମଧ୍ୟରେ ଗୋଟିଏ ବିଷମ ଗଣ୍ଡଗୋଳ ଚାଲିଲା । ମହାକବିଙ୍କ କଥା ମନେ ପଡ଼ିଲା — 'ପୃଥିବୀରେ ଓ ସ୍ୱର୍ଗରେ ଏପରି ଅନେକ ତତ୍ତ୍ୱ ଅଛି, ମାନବ-ବୁଦ୍ଧି-ପ୍ରସୂତ ଦର୍ଶନଶାସ୍ତ୍ର ଯେଉଁ ଗୁଡ଼ିକର ରହସ୍ୟ ଭେଦ କରିବା ପାଇଁ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରେ ନାହିଁ ।' ମନେକଲି, ଏହା ମଧ୍ୟ ସେପରି କିଛି ଗୋଟେ ହେବ; ଭାବିଚିନ୍ତି ସ୍ଥିର କଲି, ସେହି କଥା ବୁଝିହେବ ନାହିଁ । ସୁତରାଂ, ଅଦ୍ଭୁତ ପାଗଳ ନିଜର ପ୍ରଭାବ ବିସ୍ତାର କରି ଭବିଷ୍ୟତରେ କେବେ ହେଲେ ଯେପରି ମୋର ମନ ଉପରେ ଆଧିପତ୍ୟ ଲାଭପୂର୍ବକ ସେହିପ୍ରକାର ଭାବାନ୍ତର ଉପସ୍ଥିତ କରି ନ ପାରନ୍ତି ସେଥିପାଇଁ ଦୃଢ଼ ସଂକଳ୍ପ କଲି ।

**ଠାକୁରଙ୍କ ସମ୍ବନ୍ଧରେ ନରେନ୍ଦ୍ରନାଥଙ୍କର ନାନାପ୍ରକାର କଳ୍ପନା ଓ ତାଙ୍କୁ ବୁଝିବାର ସଂକଳ୍ପ :**

''ପୁଣି ଭାବିବାକୁ ଲାଗିଲି, ଇଚ୍ଛାମାତ୍ରେ ହିଁ ଏହି ପୁରୁଷ ଯଦି ମୋ ପରି ପ୍ରବଳ ଇଚ୍ଛାଶକ୍ତିସମ୍ପନ୍ନ ମନର ଦୃଢ଼ସଂସ୍କାରପୂର୍ଣ୍ଣ ଗଠନକୁ ଏପରି ଭାଙ୍ଗି-ଚୂରି କାଦୁଅ ପରି କରି ତାକୁ ନିଜ ଭାବରେ ଭାବିତ କରିପାରନ୍ତି, ତେବେ ତାଙ୍କୁ ପାଗଳ କହିବି କିପରି ? କିନ୍ତୁ ପ୍ରଥମ ଦର୍ଶନ ସମୟରେ ମୋତେ ଏକାନ୍ତରେ ନେଇଯାଇ ଯେପରି ସମ୍ବୋଧନ କରିଥିଲେ ଏବଂ ଯେଉଁ ସମସ୍ତ କଥା କହିଥିଲେ ସେସବୁକୁ ଏହାଙ୍କର ପାଗଳାମୀ ବ୍ୟତୀତ ସତ୍ୟ ବୋଲି କିପରି ଭାବିପାରିବି ? ସୁତରାଂ ପୂର୍ବୋକ୍ତ ଅଦ୍ଭୁତ ଉପଲବ୍ଧିର କାରଣ ଯେପରି ଖୋଜି ପାଇଲି ନାହିଁ, ଶିଶୁସଦୃଶ ସରଳ ତଥା ପବିତ୍ର ଏହି ପୁରୁଷଙ୍କ ସମ୍ବନ୍ଧରେ ମଧ୍ୟ କିଛି ଗୋଟେ ସ୍ଥିର ନିଶ୍ଚୟ କରିପାରିଲି ନାହିଁ । ବୁଦ୍ଧିର ଉନ୍ମେଷ ହେବାଠାରୁ ଦର୍ଶନ, ଅନୁସନ୍ଧାନ ଓ ଯୁକ୍ତିତର୍କ ସାହାଯ୍ୟରେ ପ୍ରତ୍ୟେକ ବସ୍ତୁ ଓ ବ୍ୟକ୍ତି ସମ୍ବନ୍ଧରେ ଗୋଟିଏ ମତାମତ ସ୍ଥିର ନ କରି କେବେ ମଧ୍ୟ ନିଶ୍ଚିନ୍ତ ହୋଇପାରି ନାହିଁ, ମାତ୍ର ଆଜି ସେହି ସ୍ୱଭାବରେ ପ୍ରଚଣ୍ଡ ଆଘାତ ପ୍ରାପ୍ତ ହୋଇ ପ୍ରାଣରେ ଏକ ଯନ୍ତ୍ରଣା ଉପସ୍ଥିତ ହେଲା । ଫଳରେ, ମନରେ ପୁନର୍ବାର ପ୍ରବଳ ସଂକଳ୍ପ ଉଦୟ ହେଲା, ଯେତେଦୂର ପାରେ ଏହି ଅଦ୍ଭୁତ ପୁରୁଷଙ୍କର ସ୍ୱଭାବ ଓ ଶକ୍ତିର କଥା ଯଥାଯଥ ଭାବରେ ବୁଝିବାକୁ ହେବ ହିଁ ହେବ ।

**ନରେନ୍ଦ୍ରଙ୍କ ସହିତ ଠାକୁରଙ୍କର ପରିଚିତ ଲୋକଙ୍କ ପରି ବ୍ୟବହାର :**

''ଏପରି ନାନା ଚିନ୍ତା ଓ ସଂକଳ୍ପରେ ସେଦିନ ମୋର ସମୟ କଟିବାକୁ ଲାଗିଲା । ଠାକୁର କିନ୍ତୁ ପୂର୍ବୋକ୍ତ ଘଟଣା ପରେ ଯେପରି ଜଣେ ଭିନ୍ନ ବ୍ୟକ୍ତି ହୋଇଗଲେ ଏବଂ ପୂର୍ବ ଦିନ ପରି ନାନାଭାବରେ ମୋତେ ଆଦର-ଯତ୍ନ କରି ଖୁଆଇବାକୁ ଓ ସମସ୍ତ ବିଷୟରେ ବହୁକାଳର ପରିଚିତଙ୍କ ପରି ବ୍ୟବହାର କରିବାକୁ ଲାଗିଲେ । ଅତି ପ୍ରିୟ ଆତ୍ମୀୟ ବା ସଖାଙ୍କୁ ବହୁଦିନ ପରେ ନିକଟରେ ପାଇଲେ ଲୋକଙ୍କର ଯେପରି ହୋଇଥାଏ, ମୋ ସହିତ ସେ ଠିକ୍ ସେହିପରି ବ୍ୟବହାର କରିଥିଲେ । ଖୁଆଇ, କଥା କହି, ଆଦର ଏବଂ ରଙ୍ଗ-ପରିହାସ କରି ଯେପରି ତାଙ୍କର ଆଶା ପୂରୁ ନ ଥିଲା । ତାଙ୍କର ସେହିପ୍ରକାର ଭଲପାଇବା ଏବଂ ବ୍ୟବହାର ମୋର ମଧ୍ୟ ସ୍ୱଳ୍ପ ଚିନ୍ତାର କାରଣ ହୋଇ ନ ଥିଲା । କ୍ରମେ ଅପରାହ୍ଣ ଗତ ହେବା ଦେଖି ମୁଁ ତାଙ୍କ ନିକଟରୁ ସେଦିନ ବିଦାୟ ନେବା ପାଇଁ କହିଲି । ସେ ଯେପରି ଏଥିରେ ବିଶେଷ କ୍ଷୁଣ୍ଣ ହୋଇ 'ପୁଣି ଶୀଘ୍ର ଆସିବ, କୁହ' କହି ପୂର୍ବପରି ଅଡ଼ି ବସିଲେ । ସୁତରାଂ ସେଦିନ ମଧ୍ୟ ମୋତେ ପୂର୍ବପରି ଆସିବାକୁ ପ୍ରତିଜ୍ଞାବଦ୍ଧ ହୋଇ ଦକ୍ଷିଣେଶ୍ୱରରୁ ଘରକୁ ଫେରିବାକୁ ହୋଇଥିଲା ।''

## ନରେନ୍ଦ୍ରନାଥଙ୍କର ତୃତୀୟଥର ଆଗମନ :

ଏହାର କେତେଦିନ ପରେ ନରେନ୍ଦ୍ରନାଥ ଠାକୁରଙ୍କ ନିକଟକୁ ପୁନରାୟ ଆସିଥିଲେ ତାହା ଆମକୁ ଜଣା ନାହିଁ। ତେବେ ଠାକୁରଙ୍କ ଭିତରେ ପୂର୍ବୋକ୍ତପ୍ରକାର ଅଦ୍ଭୁତ ଶକ୍ତିର ପରିଚୟ ପାଇବା ପରେ, ତାଙ୍କୁ ଜାଣିବା ଓ ବୁଝିବା ପାଇଁ ତାଙ୍କ ମନରେ ପ୍ରବଳ ବାସନାର ଉଦୟ ଦେଖି ମନେ ହୁଏ, ଏଥର ଦକ୍ଷିଣେଶ୍ୱର ଆସିବାକୁ ତାଙ୍କର ବିଳମ୍ବ ହୋଇ ନ ଥିଲା । ଉକ୍ତ ଆଗ୍ରହ ହିଁ ତାଙ୍କୁ ଯେତେଶୀଘ୍ର ସମ୍ଭବ ଠାକୁରଙ୍କର ଶ୍ରୀପଦପ୍ରାନ୍ତରେ ପହଞ୍ଚାଇ ଥିଲା, ତେବେ କଲେଜର ବ୍ୟସ୍ତତାରେ ପ୍ରାୟ ଗୋଟିଏ ସପ୍ତାହ ସମ୍ଭବତଃ ବିଳମ୍ବ ହୋଇଥିଲା ବୋଲି ମନେ ହୁଏ । କୌଣସି ବିଷୟରେ ଅନୁସନ୍ଧାନ କରିବାର ପ୍ରବୃତ୍ତି ମନରେ ଥରେ ଜାଗିଲେ ନରେନ୍ଦ୍ରନାଥଙ୍କର ଆହାର-ବିହାର ତଥା ବିଶ୍ରାମ ଆଦିରେ ଲକ୍ଷ୍ୟ ରହୁ ନ ଥିଲା ଏବଂ ଯେପର୍ଯ୍ୟନ୍ତ ସେହି ବିଷୟ ସେ ଆୟତ୍ତ କରି ନ ଥାଆନ୍ତି ସେପର୍ଯ୍ୟନ୍ତ ତାଙ୍କ ମନରେ ଶାନ୍ତି ନ ଥାଏ । ତେଣୁ ଠାକୁରଙ୍କୁ ଜାଣିବା ପାଇଁ ତାଙ୍କ ମନ ଯେ ସେପରି ହୋଇଥିଲା, ତାହା ବୁଝାଯାଏ । ପୁଣି ଯଦି ତାଙ୍କର ପୂର୍ବପରି ଭାବାନ୍ତର ଉପସ୍ଥିତ ହୁଏ, ଏହି ଆଶଙ୍କାରେ ଶ୍ରୀଯୁକ୍ତ ନରେନ୍ଦ୍ର ଯେ ନିଜ ମନକୁ ବିଶେଷ ଭାବରେ ଦୃଢ଼ ସତର୍କ କରି ତୃତୀୟ ଦିବସରେ ଠାକୁରଙ୍କ ନିକଟକୁ ଆଗମନ କରିଥିଲେ ଏହା ମଧ୍ୟ ବୁଝିବାକୁ ବିଳମ୍ବ ହୁଏ ନାହିଁ । କିନ୍ତୁ ଘଟଣା ତଥାପି ଅଭାବନୀୟ ହୋଇଥିଲା । ଠାକୁର ଓ ଶ୍ରୀଯୁକ୍ତ ନରେନ୍ଦ୍ରନାଥଙ୍କ ନିକଟରୁ ସେବିଷୟରେ ଆମେ ଯାହା ଶୁଣିଛୁ ତାହା ହିଁ ଏବେ ପାଠକଙ୍କୁ କହୁଅଛୁ ।

## ସମାଧିସ୍ଥ ଠାକୁରଙ୍କର ସ୍ପର୍ଶରେ ନରେନ୍ଦ୍ରଙ୍କର ବାହ୍ୟଜ୍ଞାନ ଲୋପ :

ଦକ୍ଷିଣେଶ୍ୱରରେ ସେଦିନ ବେଶୀ ଲୋକ ଥିଲେ ବୋଲି ହେଉ ବା ଅନ୍ୟ କୌଣସି କାରଣରୁ ହେଉ, ଠାକୁର ଶ୍ରୀଯୁକ୍ତ ନରେନ୍ଦ୍ରନାଥଙ୍କୁ ତାଙ୍କ ସହିତ ସେଦିନ ନିକଟରେ ଥିବା ଯଦୁଲାଲ ମଲ୍ଲିକଙ୍କର ବଗିଚାକୁ ବୁଲି ଯିବା ପାଇଁ ଡାକି ନେଇଥିଲେ । ଯଦୁଲାଲ ଓ ତାଙ୍କ ମାତା, ଠାକୁରଙ୍କ ପ୍ରତି ବିଶେଷ ଶ୍ରଦ୍ଧା-ଭକ୍ତିସମ୍ପନ୍ନ ଥିଲେ ଏବଂ ଉଦ୍ୟାନର ପ୍ରଧାନ କର୍ମଚାରୀଙ୍କ ପ୍ରତି ସେମାନଙ୍କର ଆଦେଶ ଥିଲା ଯେ, ସେମାନେ ନ ଥିଲେ ମଧ୍ୟ ଠାକୁର ଯେତେବେଳେ ବି ବଗିଚାକୁ ବୁଲିବାକୁ ଆସିବେ ସେତେବେଳେ ହିଁ ଗଙ୍ଗାକୂଳର ବୈଠକଖାନା-ଘର ତାଙ୍କ ବସିବା ନିମିତ୍ତ ଖୋଲିଦେବେ । ସେହି ଦିନ ମଧ୍ୟ ଠାକୁର ନରେନ୍ଦ୍ରଙ୍କ ସହିତ ଉଦ୍ୟାନରେ ଓ ଗଙ୍ଗାକୂଳରେ କିଛି ସମୟ ପରିଭ୍ରମଣ କରି ନାନା କଥା କହୁ କହୁ ସେହି ଘରେ ଆସି ଉପବେଶନ କଲେ ଏବଂ କିଛିକ୍ଷଣ ପରେ ସମାଧିସ୍ଥ ହୋଇପଡ଼ିଲେ । ନରେନ୍ଦ୍ର ଅନତିଦୂରରେ ବସି ଠାକୁରଙ୍କର ଉକ୍ତ ଅବସ୍ଥା ସ୍ଥିରଭାବରେ ଲକ୍ଷ୍ୟ କରୁଥିଲେ, ଏପରି ସମୟରେ ଠାକୁର ପୂର୍ବଦିନ ପରି ହଠାତ୍ ଆସି ତାଙ୍କୁ ସ୍ପର୍ଶ କଲେ ।

ନରେନ୍ଦ୍ର ପୂର୍ବରୁ ସତର୍କ ଥିଲେ ମଧ୍ୟ ସେହି ଶକ୍ତିପୂର୍ଣ୍ଣ ସ୍ପର୍ଶରେ ସମ୍ପୂର୍ଣ୍ଣ ଅଭିଭୂତ ହୋଇପଡ଼ିଲେ । ପୂର୍ବଦିନ ପରି ନ ହୋଇ ଏଥିରେ ତାଙ୍କର ବାହ୍ୟସଂଜ୍ଞା ସମ୍ପୂର୍ଣ୍ଣ ଲୁପ୍ତ ହେଲା ! କିଛିକ୍ଷଣ ପରେ ପୁନରାୟ ଯେତେବେଳେ ତାଙ୍କର ଚୈତନ୍ୟ ହେଲା ସେତେବେଳେ ଦେଖିଲେ, ଠାକୁର ତାଙ୍କର ଛାତିରେ ହାତ ମାରି ଆଉଁସି ଦେଉଛନ୍ତି ଓ ତାଙ୍କୁ ପ୍ରକୃତିସ୍ଥ ହେବା ଦେଖି ମୃଦୁମଧୁର ହାସ୍ୟ କରୁଛନ୍ତି !

ବାହ୍ୟଜ୍ଞାନ ଲୁପ୍ତ ହେବାପରେ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କ ଭିତରେ ସେଦିନ କିପରି ଅନୁଭବ ହୋଇଥିଲା, ସେସମ୍ବନ୍ଧରେ ସେ ଆମମାନଙ୍କୁ କିଛି କଥା କହି ନାହାନ୍ତି । ଆମେ ଭାବିଥିଲୁ, ବିଶେଷ ଗୋପନୀୟ କଥା ହୋଇଥିବାରୁ ସେ ତାହା ଆମ ନିକଟରେ ପ୍ରକାଶ କରି ନ ଥିଲେ । କିନ୍ତୁ କଥା ପ୍ରସଙ୍ଗରେ ଠାକୁର ଦିନେ ଏହି ଘଟଣା ଉଲ୍ଲେଖ କରି ଆମକୁ ଯାହା କହିଥିଲେ ସେଥିରୁ ଆମେ ବୁଝିପାରିଥିଲୁ, ନରେନ୍ଦ୍ରଙ୍କର ତାହା ସ୍ମରଣ ନ ରହିବା ହିଁ ସ୍ୱାଭାବିକ । ଠାକୁର କହିଥିଲେ—

**ସେହିପରି ଅବସ୍ଥାପ୍ରାପ୍ତ ନରେନ୍ଦ୍ରଙ୍କୁ ଠାକୁରଙ୍କର ନାନା ପ୍ରଶ୍ନ :**

''ବାହ୍ୟଜ୍ଞାନ ଲୋପ ହେଲା ପରେ ନରେନ୍ଦ୍ରକୁ ସେଦିନ ନାନାକଥା ପଚାରିଥିଲି— ସେ କିଏ, କେଉଁଠୁ ଆସିଛି, କାହିଁକି ଆସିଛି (ଜନ୍ମଗ୍ରହଣ କରିଛି), କେତେଦିନ ଏଠାରେ (ପୃଥିବୀରେ) ରହିବ, ଇତ୍ୟାଦି ଇତ୍ୟାଦି । ସେ ମଧ୍ୟ ସେହି ଅବସ୍ଥାରେ ନିଜର ଅନ୍ତରରେ ପ୍ରବିଷ୍ଟ ହୋଇ ସେହି ସମସ୍ତ ପ୍ରଶ୍ନର ଯଥାଯଥ ଉତ୍ତର ଦେଇଥିଲା । ତା ସମ୍ବନ୍ଧରେ ଯାହାକିଛି ଦେଖିଥିଲି ଓ ଭାବିଥିଲି ତା'ର ସେହି ସମୟର ଉତ୍ତର ତାହା ହିଁ ପ୍ରମାଣିତ କରିଥିଲା । ସେହି ସବୁକଥା କହିବା ନିଷେଧ ଅଛି । କିନ୍ତୁ ଏଥିରୁ ଜାଣିଛି, ସେ (ନରେନ୍ଦ୍ର) ଯେଉଁଦିନ ଜାଣିପାରିବ ସେ କିଏ, ସେଦିନ ଆଉ ଇହଲୋକରେ ରହିବ ନାହିଁ, ଦୃଢ଼ସଂକଳ୍ପ ସହାୟରେ ଯୋଗମାର୍ଗରେ ତତ୍‌କ୍ଷଣାତ୍ ଶରୀର ପରିତ୍ୟାଗ କରିବ ! ନରେନ୍ଦ୍ର ଧ୍ୟାନସିଦ୍ଧ ମହାପୁରୁଷ ।''

ନରେନ୍ଦ୍ରନାଥଙ୍କ ସମ୍ବନ୍ଧରେ ଠାକୁରଙ୍କର ଏହାପୂର୍ବରୁ ଯେଉଁ ସମସ୍ତ ଦର୍ଶନ ଉପସ୍ଥିତ ହୋଇଥିଲା ତାହାର କିଛି କିଛି ସେ ପରେ ଆମକୁ କହିଥିଲେ । ପାଠକଙ୍କର ସୁବିଧା ନିମିତ୍ତ ତାହା ଆମେ ଏଠାରେ ହିଁ ଉଲ୍ଲେଖ କରୁଛୁ । କାରଣ, ଠାକୁରଙ୍କ ନିକଟରୁ ଉକ୍ତ ଦର୍ଶନ କଥା ଶୁଣି ମନେ ହୋଇଥିଲା, ନରେନ୍ଦ୍ରନାଥଙ୍କର ଦକ୍ଷିଣେଶ୍ୱର ଆଗମନ ପୂର୍ବରୁ ହିଁ ତାଙ୍କର ସେହି ଦର୍ଶନ ହୋଇଥିଲା ! ଠାକୁର କହିଥିଲେ—

**ନରେନ୍ଦ୍ରନାଥଙ୍କ ସମ୍ବନ୍ଧରେ ଠାକୁରଙ୍କର ଅଦ୍ଭୁତ ଦର୍ଶନ :**

''ଦିନେ ଦେଖିଲି—ମନ ସମାଧିପଥରେ ଜ୍ୟୋତିର୍ମୟ ମାର୍ଗରେ ଉଚ୍ଚକୁ ଉଠିଯାଉଅଛି; ଚନ୍ଦ୍ର-ସୂର୍ଯ୍ୟ-ତାରକାମଣ୍ଡିତ ସ୍ଥୂଳଜଗତ ସହଜରେ ଅତିକ୍ରମ କରି

ଏହା ପ୍ରଥମେ ସୂକ୍ଷ୍ମ ଭାବଜଗତରେ ପ୍ରବିଷ୍ଟ ହେଲା । ସେହି ରାଜ୍ୟର ଉଚ୍ଚରୁ ଉଚ୍ଚତର ସ୍ତରସମୂହରେ ଏହା ଯେତେ ଆରୋହଣ କରିବାକୁ ଲାଗିଲା, ସେତେହିଁ ନାନା ଦେବଦେବୀଙ୍କର ଭାବଘନ ବିଚିତ୍ର ମୂର୍ତ୍ତିସମୂହ ମାର୍ଗର ଦୁଇ ପାର୍ଶ୍ୱରେ ଅବସ୍ଥିତ ଦେଖିବାକୁ ପାଇଲି । କ୍ରମେ ଉକ୍ତ ରାଜ୍ୟର ଚରମସୀମାରେ ତାହା ଆସି ଉପସ୍ଥିତ ହେଲା । ସେଠାରେ ଦେଖିଲି ଏକ ଜ୍ୟୋତିର୍ମୟ ବ୍ୟବଧାନ ପରଦା ପ୍ରସାରିତ ରହି ଖଣ୍ଡ ଓ ଅଖଣ୍ଡ ରାଜ୍ୟକୁ ପୃଥକ କରି ରଖିଛି । ଉକ୍ତ ବ୍ୟବଧାନ ଲଂଘନ କରି ମନ କ୍ରମେ ଅଖଣ୍ଡ ରାଜ୍ୟରେ ପ୍ରବେଶ କଲା, ଦେଖିଲି — ସେଠାରେ ମୂର୍ତ୍ତିବିଶିଷ୍ଟ କେହି ବା କିଛି ଆଉ ନାହିଁ, ଦିବ୍ୟଦେହଧାରୀ ଦେବଦେବୀଗଣ ପର୍ଯ୍ୟନ୍ତ ଯେପରି ଏଠାରେ ପ୍ରବେଶ କରିବାକୁ ଶଙ୍କିତ ହୋଇ ବହୁଦୂର ନିମ୍ନରେ ନିଜ ନିଜ ଅଧିକାର ବିସ୍ତୃତ କରି ରହିଅଛନ୍ତି । କିନ୍ତୁ ପର ମୁହୂର୍ତ୍ତରେ ଦେଖିବାକୁ ପାଇଲି ଦିବ୍ୟଜ୍ୟୋତିର୍ଘନତନୁ ସାତଜଣ ପ୍ରବୀଣ ଋଷି ସେଠାରେ ସମାଧିସ୍ଥ ହୋଇ ବସିଅଛନ୍ତି । ବୁଝିଲି, ଜ୍ଞାନ ଓ ପୁଣ୍ୟରେ, ତ୍ୟାଗ ଓ ପ୍ରେମରେ ଏମାନେ ମାନବ ତ ଦୂରର କଥା ଦେବଦେବୀମାନଙ୍କୁ ମଧ୍ୟ ଅତିକ୍ରମ କରିଅଛନ୍ତି । ବିସ୍ମିତ ହୋଇ ଏମାନଙ୍କର କଥା ଓ ମହତ୍ତ୍ୱର ବିଷୟ ଚିନ୍ତା କରୁଛି, ଏପରି ସମୟରେ ଦେଖିଲି, ସମ୍ମୁଖରେ ଅବସ୍ଥିତ ଅଖଣ୍ଡର ଘରର ଭେଦମାତ୍ରବିରହିତ, ସମରସ ଜ୍ୟୋତିର୍ମଣ୍ଡଳର ଗୋଟିଏ ଅଂଶ ଘନୀଭୂତ ହୋଇ ଦିବ୍ୟ ଶିଶୁରେ ପରିଣତ ହେଲା । ସେହି ଦେବ-ଶିଶୁ ଏମାନଙ୍କ ମଧ୍ୟରୁ ଜଣଙ୍କ ନିକଟରେ ଅବତରଣପୂର୍ବକ ନିଜର ଅପୂର୍ବ ସୁକୋମଳ ବାହୁଯୁଗଳ ଦ୍ୱାରା ତାଙ୍କ କଣ୍ଠଦେଶ ପ୍ରେମରେ ଧାରଣ କଲା; ପରେ ବୀଣାବିନିନ୍ଦିତ ନିଜ ଅମୃତମୟୀ ବାଣୀ ଦ୍ୱାରା ସାଦର ଆହ୍ୱାନପୂର୍ବକ ସମାଧିରୁ ତାଙ୍କୁ ପ୍ରବୁଦ୍ଧ କରିବାକୁ ଅଶେଷ ପ୍ରଯତ୍ନ କରିବାକୁ ଲାଗିଲା । ସୁକୋମଳ ପ୍ରେମସ୍ପର୍ଶରେ ଋଷି ସମାଧିରୁ ବ୍ୟୁତ୍‌ଥିତ ହେଲେ ଏବଂ ଅର୍ଦ୍ଧସ୍ତିମିତ ନିର୍ନିମେଷ ଲୋଚନରେ ସେହି ଅପୂର୍ବ ବାଳକକୁ ନିରୀକ୍ଷଣ କରିବାକୁ ଲାଗିଲେ । ତାଙ୍କର ମୁଖର ପ୍ରସନ୍ନୋଜ୍ଜ୍ୱଳ ଭାବ ଦେଖି ମନେ ହେଲା, ବାଳକ ଯେପରି ତାଙ୍କର ବହୁକାଳର ପୂର୍ବପରିଚିତ ହୃଦୟର ଧନ । ଅଦ୍ଭୁତ ଦେବଶିଶୁ ସେତେବେଳେ ଅସୀମ ଆନନ୍ଦ ପ୍ରକାଶପୂର୍ବକ ତାଙ୍କୁ କହିବାକୁ ଲାଗିଲେ, 'ମୁଁ ଯାଉଛି, ତୁମକୁ ମୋ ସହିତ ଯିବାକୁ ହେବ ।' ଋଷି ତାଙ୍କର ଏପରି ଅନୁରୋଧରେ କୌଣସି କଥା ନ କହିଲେ ମଧ୍ୟ ତାଙ୍କର ପ୍ରେମପୂର୍ଣ୍ଣ ନୟନ ତାଙ୍କର ଅନ୍ତରର ସମ୍ମତି ବ୍ୟକ୍ତ କଲା । ପରେ ସେହିପ୍ରକାର ସପ୍ରେମ ଦୃଷ୍ଟିରେ ବାଳକକୁ କିଛିକ୍ଷଣ ଦେଖୁ ଦେଖୁ ସେ ପୁନରାୟ ସମାଧିସ୍ଥ ହେଲେ । ସେତେବେଳେ ବିସ୍ମିତ ହୋଇ ଦେଖିଲି, ତାଙ୍କର ହିଁ ଶରୀର ମନର ଏକାଂଶ ଉଜ୍ଜ୍ୱଳ ଜ୍ୟୋତିଃ ଆକାରରେ ପରିଣତ ହୋଇ ବିଲୋମମାର୍ଗରେ

ଧରାଧାମରେ ଅବତରଣ କରୁଅଛି ! ନରେନ୍ଦ୍ରଙ୍କୁ ଦେଖିବାମାତ୍ରେ ବୁଝିଥିଲି, ଇଏ ସେହି ବ୍ୟକ୍ତି !''[୧]

## ଅଦ୍ଭୁତ ପ୍ରତ୍ୟକ୍ଷର ଫଳସ୍ୱରୂପ ନରେନ୍ଦ୍ରଙ୍କର ଠାକୁରଙ୍କ ସମ୍ବନ୍ଧରେ ଧାରଣା :

ସେ ଯାହାହେଉ, ଠାକୁରଙ୍କର ଅଲୌକିକ ଶକ୍ତି ପ୍ରଭାବରେ ନରେନ୍ଦ୍ରଙ୍କର ମନରେ ଦ୍ୱିତୀୟଥର ସେପରି ଭାବାନ୍ତର ଉପସ୍ଥିତ ହେବାରୁ ସେ ଯେ ସମ୍ପୂର୍ଣ୍ଣ ସ୍ତମ୍ଭିତ ହୋଇଥିଲେ ଏକଥା କହିବାର ଆବଶ୍ୟକତା ନାହିଁ । ସେ ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ, ଏହି ଦୂରତିକ୍ରମଣୀୟ ଦୈବଶକ୍ତି ନିକଟରେ ତାଙ୍କର ମନ ଓ ବୁଦ୍ଧିର ଶକ୍ତି କେତେଦୂର ଅକିଞ୍ଚିତ୍କର ! ଠାକୁରଙ୍କ ସମ୍ବନ୍ଧରେ ତାଙ୍କର ପୂର୍ବର ଅର୍ଦ୍ଧ ଉନ୍ମାଦ ଧାରଣା ପରିବର୍ତ୍ତିତ ହେଲା, କିନ୍ତୁ ଦକ୍ଷିଣେଶ୍ୱରରେ ଠାକୁରଙ୍କ ଶ୍ରୀପଦପ୍ରାନ୍ତରେ ପ୍ରଥମଥର ଉପସ୍ଥିତ ହେବା ଦିନ ସେ ତାଙ୍କୁ ଏକାନ୍ତରେ ଯେଉଁ ସମସ୍ତ କଥା କହିଥିଲେ, ସେସମସ୍ତର ଅର୍ଥ ଓ ଉଦ୍ଦେଶ୍ୟ ଯେ ଏହି ଘଟଣାରେ ତାଙ୍କର ହୃଦୟଙ୍ଗମ ହୋଇଥିଲା, ତାହା କୁହାଯାଇପାରେ ନାହିଁ । ସେ ବୁଝିଥିଲେ, ଠାକୁର ଦୈବଶକ୍ତିସମ୍ପନ୍ନ ଅଲୌକିକ ମହାପୁରୁଷ । ଇଚ୍ଛାମାତ୍ରେ ହିଁ ତାଙ୍କ ପରି ମାନବର ମନକୁ ଫେରାଇ ଉଚ୍ଚ ପଥରେ ଚାଳିତ କରିପାରନ୍ତି; ତେବେ ବୋଧହୁଏ, ଭଗବତ୍ ଇଚ୍ଛା ସହିତ ତାଙ୍କର ଇଚ୍ଛା ସମ୍ପୂର୍ଣ୍ଣ ଏକୀଭୂତ ହେବାରୁ ହିଁ ସମସ୍ତଙ୍କର ସମ୍ବନ୍ଧରେ ତାଙ୍କ ମନରେ ଏପରି ଇଚ୍ଛାର ଉଦୟ ହୁଏ ନାହିଁ; ଏବଂ ଏହି ଅଲୌକିକ ପୁରୁଷଙ୍କର ସେହିପ୍ରକାର ଅଯାଚିତ କୃପାଲାଭ ତାଙ୍କ ପକ୍ଷରେ କିଛି କମ୍ ଭାଗ୍ୟର କଥା ନୁହେଁ ।

## ଏହାଫଳରେ ନରେନ୍ଦ୍ରଙ୍କର ଗୁରୁବିଷୟକ ଧାରଣାର ପରିବର୍ତ୍ତନ :

ନରେନ୍ଦ୍ରନାଥଙ୍କୁ ବାଧ୍ୟ ହୋଇ ପୂର୍ବୋକ୍ତ ମୀମାଂସା କରିବାକୁ ହୋଇଥିଲା ଏବଂ ଏହାପୂର୍ବର ଅନେକଗୁଡ଼ିଏ ଧାରଣା ମଧ୍ୟ ତାଙ୍କୁ ତାହାର ଅନୁସରଣରେ ପରିବର୍ତ୍ତିତ କରିବାକୁ ପଡ଼ିଥିଲା । ନିଜ ପରି ଦୁର୍ବଳ, ସ୍ୱଳ୍ପ ଦୃଷ୍ଟିଶକ୍ତିସମ୍ପନ୍ନ ମାନବକୁ ଅଧ୍ୟାତ୍ମଜଗତର ପଥପ୍ରଦର୍ଶକ ବା ଶ୍ରୀଗୁରୁରୂପରେ ଗ୍ରହଣ କରିବାକୁ ଏବଂ ନିର୍ବିଚାରରେ ତାଙ୍କର ସମସ୍ତ କଥା-ଅନୁଷ୍ଠାନରେ ପ୍ରବୃତ୍ତ ହେବାକୁ ଏହାପୂର୍ବରୁ ତାଙ୍କର ଏକାନ୍ତ ଆପତ୍ତି ଥିଲା । ବ୍ରାହ୍ମସମାଜରେ ଯୋଗଦାନ କରି ସେହି ଧାରଣା ସମଧିକ ପୁଷ୍ଟିଲାଭ କରିଥିଲା, ଏକଥା କହିବାର ଆବଶ୍ୟକତା ନାହିଁ ।

୧. ଠାକୁର ତାଙ୍କର ଅପୂର୍ବ ସରଳ ଭାଷାରେ ଉକ୍ତ ଦର୍ଶନର କଥା ଆମମାନଙ୍କୁ କହିଥିଲେ । ସେହି ଭାଷାର ଯଥାଯଥ ପ୍ରୟୋଗ ଆମମାନଙ୍କ ପକ୍ଷରେ ଅସମ୍ଭବ । ସୁତରାଂ ତାଙ୍କର ଭାଷା ଯଥାସାଧ୍ୟ ରଖି ଆମେ ତାହା ଏଠାରେ ସଂକ୍ଷେପରେ ବ୍ୟକ୍ତ କଲୁ । ଦର୍ଶନୋକ୍ତ ଦେବଶିଶୁ-ସମ୍ବନ୍ଧରେ ଜିଜ୍ଞାସା କରି ଆମେମାନେ ଅନ୍ୟ ସମୟରେ ଜାଣିପାରିଥିଲୁ, ଠାକୁର ସ୍ୱୟଂ ସେହି ଶିଶୁର ଆକାର ଧାରଣ କରିଥିଲେ ।

ପୂର୍ବୋକ୍ତ ଦୁଇ ଦିନର ଘଟଣା ଫଳରେ ତାଙ୍କର ଉକ୍ତ ଧାରଣା ବିଶେଷ ଭାବରେ ଆଘାତପ୍ରାପ୍ତ ହୋଇଥିଲା । ସେ ବୁଝିଲେ, ବିରଳ ହେଲେ ମଧ୍ୟ ସତରେ ହିଁ ଏପରି ମହାପୁରୁଷମାନେ ସଂସାରରେ ଜନ୍ମଗ୍ରହଣ କରନ୍ତି, ଯେଉଁମାନଙ୍କର ଅଲୌକିକ ତ୍ୟାଗ, ତପସ୍ୟା, ପ୍ରେମ ଓ ପବିତ୍ରତା ସାଧାରଣ ମାନବର କ୍ଷୁଦ୍ର ମନବୁଦ୍ଧିପ୍ରସୂତ ଈଶ୍ୱରସମ୍ବନ୍ଧୀୟ ଧାରଣାକୁ ବହୁଦୂର ଅତିକ୍ରମ କରିଥାଏ, ସୁତରାଂ ଏମାନଙ୍କୁ ଗୁରୁରୂପରେ ଗ୍ରହଣ କଲେ ସେମାନଙ୍କର ମଙ୍ଗଳ ସାଧିତ ହୁଏ । ଫଳତଃ, ଠାକୁରଙ୍କୁ ଗୁରୁରୂପରେ ଗ୍ରହଣ କରିବାକୁ ସମ୍ମତ ହେଲେ ମଧ୍ୟ ସେ ନିର୍ବିଚାରରେ ତାଙ୍କର ସମସ୍ତ କଥା ଗ୍ରହଣ କରିବାକୁ ଏବେ ମଧ୍ୟ ସମ୍ମତ ହୋଇ ନ ଥିଲେ ।

**ଠାକୁରଙ୍କର ସଂସର୍ଗରେ ନରେନ୍ଦ୍ରଙ୍କର ତ୍ୟାଗ-ବୈରାଗ୍ୟର ଭାବବୃଦ୍ଧି :**

ତ୍ୟାଗ ବ୍ୟତୀତ ଈଶ୍ୱରଲାଭ ହୁଏ ନାହିଁ, ପୂର୍ବସଂସ୍କାରବଶତଃ ଏହି ଧାରଣା ନରେନ୍ଦ୍ରନାଥଙ୍କର ମନରେ ବାଲ୍ୟକାଳରୁ ହିଁ ପ୍ରବଳ ଥିଲା । ସେଥିପାଇଁ ବ୍ରାହ୍ମସମାଜରେ ପ୍ରବିଷ୍ଟ ହୋଇ ମଧ୍ୟ ସେଥିରେ ଥିବା ଦାମ୍ପତ୍ୟ-ଜୀବନସଂସ୍କାର ସମ୍ବନ୍ଧୀୟ ସଭାସମିତିରେ ଯୋଗଦାନ କରିବାକୁ ତାଙ୍କର ପ୍ରବୃତ୍ତି ହୋଇ ନ ଥିଲା । ସର୍ବସ୍ୱତ୍ୟାଗୀ ଠାକୁରଙ୍କର ପୁଣ୍ୟଦର୍ଶନ ଓ ଅପୂର୍ବ ଶକ୍ତିର ପରିଚୟଲାଭରେ ତାଙ୍କଠାରେ ଉକ୍ତ ତ୍ୟାଗର ଭାବ ଏବେଠାରୁ ବିଶେଷ ଭାବରେ ବଢ଼ିଯାଇଥିଲା ।

**ପରୀକ୍ଷା ନ କରି ଠାକୁରଙ୍କର କୌଣସି କଥା ଗ୍ରହଣ ନ କରିବାକୁ ନରେନ୍ଦ୍ରଙ୍କର ସଂକଳ୍ପ :**

କିନ୍ତୁ ସର୍ବାପେକ୍ଷା ଗୋଟିଏ ବିଷୟ ଏବେଠାରୁ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କର ଚିନ୍ତାର ବିଷୟ ହେଲା । ସେ ବୁଝିଥିଲେ, ଏପରି ଶକ୍ତିଶାଳୀ ମହାପୁରୁଷଙ୍କର ସଂସର୍ଗରେ ଆସି ମାନବ-ମନ ଅର୍ଦ୍ଧ ପରୀକ୍ଷା, ଅଥବା ପରୀକ୍ଷା ନ କରି ହିଁ ତାଙ୍କର ସମସ୍ତ କଥାରେ ବିଶ୍ୱାସ ସ୍ଥାପନ କରିଥାଏ । ସେଥିରୁ ନିଜକୁ ବଞ୍ଚାଇବାକୁ ପଡ଼ିବ । ସେଥିପାଇଁ ପୂର୍ବୋକ୍ତ ଦୁଇ ଦିନର ଘଟଣାରେ ଠାକୁରଙ୍କ ପ୍ରତି ତାଙ୍କ ମନରେ ବିଶେଷ ଭକ୍ତି-ଶ୍ରଦ୍ଧାର ଉଦୟ ହେଲେ ମଧ୍ୟ ସେ ଏବେଠାରୁ ଦୃଢ଼ ସଂକଳ୍ପ କଲେ ଯେ, ବିଶେଷ ପରୀକ୍ଷାପୂର୍ବକ ସ୍ୱୟଂ ଅନୁଭବ ବା ପ୍ରତ୍ୟକ୍ଷ ନ କରି ତାଙ୍କର ଅଦ୍ଭୁତ ଦର୍ଶନ-ସମ୍ବନ୍ଧୀୟ କୌଣସି କଥା କଦାପି ଗ୍ରହଣ କରିବେ ନାହିଁ; ଯଦି ଏଥିରେ ତାଙ୍କର ଅପ୍ରିୟଭାଜନ ହେବାକୁ ପଡ଼େ ତାହା ମଧ୍ୟ ସ୍ୱୀକାର କରିବେ । ତେଣୁ ଆଧ୍ୟାତ୍ମିକ ଜଗତର ଅଭିନବ ଅଦୃଷ୍ଟପୂର୍ବ ତତ୍ତ୍ୱସମୂହ ଗ୍ରହଣ କରିବା ପାଇଁ ମନକୁ ସର୍ବଦା ପ୍ରସ୍ତୁତ ରଖିବାକୁ ଗୋଟିଏ ଦିଗରେ ସେ ଯେପରି ଯତ୍ନଶୀଳ ହୋଇଥିଲେ, ଅନ୍ୟ ଦିଗରେ ସେପରି ଠାକୁରଙ୍କର ପ୍ରତ୍ୟେକ ଅଦ୍ଭୁତ ଦର୍ଶନ ଓ ବ୍ୟବହାରର କଠୋର ବିଚାରରେ ନିଜକୁ ଏବେଠାରୁ ନିୟୋଜିତ କରିଥିଲେ ।

### ନରେନ୍ଦ୍ରଙ୍କର ଏହାପରେ କର୍ମାନୁଷ୍ଠାନ :

ନରେନ୍ଦ୍ରନାଥଙ୍କର ସୁତୀକ୍ଷ୍ଣ ବୁଦ୍ଧିରେ ଏହା ସହଜରେ ପ୍ରତିଭାତ ହୋଇଥିଲା ଯେ, ପ୍ରଥମ ଦିନର ଯେଉଁ ସମସ୍ତ କଥା ପାଇଁ ସେ ଠାକୁରଙ୍କୁ ଅର୍ଦ୍ଧ ପାଗଳ ବୋଲି ଧାରଣା କରିଥିଲେ, ତାଙ୍କୁ ଅବତାର ବୋଲି ସ୍ୱୀକାର କଲେ ହିଁ କେବଳ ସେହି-ସମସ୍ତ କଥାର ଅର୍ଥ ବୋଧ ହୁଏ । କିନ୍ତୁ ତାଙ୍କର ସତ୍ୟାନୁସନ୍ଧିତ୍ସୁ ଯୁକ୍ତିପରାୟଣ ମନ ସେହିକଥା ସହସା କିପରି ସ୍ୱୀକାର କରିବ ? ତେଣୁ ଈଶ୍ୱର ଯଦି କେବେ ତାଙ୍କୁ ଏସବୁକଥା ବୁଝିବାର ସାମର୍ଥ୍ୟ ପ୍ରଦାନ କରନ୍ତି ତା'ହେଲେ ଏବିଷୟ ସମ୍ବନ୍ଧରେ ଆଲୋଚନା କରିବେ, ଏପରି ସ୍ଥିର କରି ସେ ଏସବୁ ବିଷୟରେ ଏକ ମତାମତ ସ୍ଥିର କରିବାକୁ ଅଗ୍ରସର ନ ହୋଇ, କିପରି ଈଶ୍ୱର-ଦର୍ଶନ କରି ସ୍ୱୟଂ କୃତାର୍ଥ ହେବେ, ଏହାପରଠାରୁ ଠାକୁରଙ୍କ ନିକଟକୁ ଆସି ସେବିଷୟରେ ଶିକ୍ଷା ଓ ଆଲୋଚନା କରିବାକୁ ମନସ୍ଥ କରିଥିଲେ ।

### ନରେନ୍ଦ୍ରଙ୍କର ବର୍ତ୍ତମାନ ମାନସିକ ଅବସ୍ଥା :

ତେଜସ୍ୱୀ ମନ କୌଣସି ପ୍ରକାର ନୂତନତ୍ୱ-ଗ୍ରହଣ କରିବା ସମୟରେ ନିଜର ପୂର୍ବମତ ପରିବର୍ତ୍ତନ କରିବାକୁ ନିଜ ଭିତରେ ଏକ ପ୍ରବଳ ବାଧା ଅନୁଭବ କରିଥାଏ । ବର୍ତ୍ତମାନ ନରେନ୍ଦ୍ରନାଥଙ୍କର ଠିକ୍ ଏହିପରି ଅବସ୍ଥା ଉପସ୍ଥିତ ହୋଇଥିଲା । ସେ ଠାକୁରଙ୍କର ଅଦ୍ଭୁତ ଶକ୍ତିର ପରିଚୟ ପାଇ ମଧ୍ୟ ତାଙ୍କୁ ସମ୍ୟକ୍ ଗ୍ରହଣ କରିପାରୁ ନ ଥିଲେ ଏବଂ ଆକର୍ଷଣ ଅନୁଭବ କରି ମଧ୍ୟ ତାଙ୍କଠାରୁ ଦୂରରେ ରହିବାକୁ ଚେଷ୍ଟା କରୁଥିଲେ । ତାଙ୍କର ସେହିପ୍ରକାର ଚେଷ୍ଟାର ଫଳ କେତେଦୂର କ'ଣ ହୋଇଥିଲା, ତାହା ଆମେ ପରେ ଦେଖିବାକୁ ପାଇବା ।

# ପଞ୍ଚମ ଅଧ୍ୟାୟ

## ଠାକୁରଙ୍କର ଅହେତୁକ ଭଲପାଇବା ଓ ନରେନ୍ଦ୍ରନାଥ

### ନରେନ୍ଦ୍ରଙ୍କର ପୂର୍ବ ଜୀବନର ଅସାଧାରଣ ପ୍ରତ୍ୟକ୍ଷସମୂହ— ଶୋଇବା ପୂର୍ବରୁ ଜ୍ୟୋତିଃଦର୍ଶନ :

ଆମେ କହିଛୁ, ଅଦ୍ଭୁତ ପୁଣ୍ୟସଂସ୍କାରସମୂହ ନେଇ ଶ୍ରୀଯୁକ୍ତ ନରେନ୍ଦ୍ର ଜନ୍ମଗ୍ରହଣ କରିଥିଲେ । ସେଥିପାଇଁ ଅନ୍ୟାନ୍ୟ ସାଧାରଣ ଲୋକଙ୍କଠାରୁ ଭିନ୍ନ ଭାବର ପ୍ରତ୍ୟକ୍ଷସକଳ ତାଙ୍କ ଜୀବନରେ ନାନା ବିଷୟରେ ଏହା ପୂର୍ବରୁ ହିଁ ଉପସ୍ଥିତ ହୋଇଥିଲା । ଦୃଷ୍ଟାନ୍ତସ୍ୱରୂପ ଏପରି କେତେକ ଘଟଣା ଉଲ୍ଲେଖ କଲେ ତାହା ପାଠକ ବୁଝିପାରିବେ । ନରେନ୍ଦ୍ର କହୁଥିଲେ— ‘‘ଆଜୀବନ, ଶୋଇବାକୁ ଯାଇ ଚକ୍ଷୁ ମୁଦ୍ରିତ କଲେ ହିଁ ଭ୍ରୂମଧ୍ୟ ଭାଗରେ ଏକ ଅପୂର୍ବ ଜ୍ୟୋତିର୍ବିନ୍ଦୁ ଦେଖିବାକୁ ପାଉଥିଲି ଏବଂ ଏକ ମନରେ ଏହାର ନାନାପ୍ରକାର ପରିବର୍ତ୍ତନ ଲକ୍ଷ୍ୟ କରୁଥିଲି । ତାହା ଦେଖିବାକୁ ସୁବିଧା ହେବ ବୋଲି ଲୋକମାନେ ଯେପରି ଭୂମିରେ ମସ୍ତକ ସ୍ପର୍ଶ କରି ପ୍ରଣାମ କରନ୍ତି, ମୁଁ ସେହିପରି ଭାବରେ ଶଯ୍ୟାରେ ଶୟନ କରୁଥିଲି । ଏହି ଅପୂର୍ବ ବିନ୍ଦୁ ନାନା ବର୍ଣ୍ଣରେ ପରିବର୍ତ୍ତିତ ଓ ବର୍ଦ୍ଧିତ ହୋଇ କ୍ରମେ ବିମ୍ବ ଆକାରରେ ପରିଣତ ହେଉଥିଲା ଏବଂ ପରିଶେଷରେ ଫାଟିଯାଇ ଆପାଦମସ୍ତକ ଶୁଭ୍ର-ତରଳ ଜ୍ୟୋତିରେ ଆବୃତ କରିପକାଉଥିଲା ! —ସେହିପରି ହେବାମାତ୍ରେ ଚେତନାଲୁପ୍ତ ହୋଇ ନିଦ୍ରିତ ହେଉଥିଲି ! ମୁଁ ଭାବୁଥିଲି, ଏହିପରି ହିଁ ସମସ୍ତେ ନିଦ୍ରା ଯାଇଥାଆନ୍ତି । ବହୁଦିନ ପର୍ଯ୍ୟନ୍ତ ଏପରି ଧାରଣା ଥିଲା । ବଡ଼ ହୋଇ ଯେତେବେଳେ ଧ୍ୟାନାଭ୍ୟାସ କରିବାକୁ ଆରମ୍ଭ କଲି ସେତେବେଳେ ଚକ୍ଷୁ ମୁଦ୍ରିତ କରିବା ମାତ୍ରେ ହିଁ ସେହି ଜ୍ୟୋତିର୍ବିନ୍ଦୁ ପ୍ରଥମେ ସମ୍ମୁଖରେ ଆସି ଉପସ୍ଥିତ ହେଉଥିଲା ଏବଂ ଏଥିରେ ହିଁ ମୁଁ ଚିତ୍ତ ଏକାଗ୍ର କରୁଥିଲି । ମହର୍ଷି ଦେବେନ୍ଦ୍ରନାଥଙ୍କ ଉପଦେଶରେ କେତେଜଣ ସମବୟସ୍କଙ୍କ ସହିତ ଯେତେବେଳେ ପ୍ରତିଦିନ ଧ୍ୟାନ ଅଭ୍ୟାସ କଲି, ସେତେବେଳେ ଧ୍ୟାନ କରିବାବେଳେ କାହାର କିପରି ଦର୍ଶନ ଓ ଉପଲବ୍ଧି ହେଲା ସେବିଷୟରେ ପରସ୍ପର ମଧ୍ୟରେ ଆଲୋଚନା କରୁଥିଲୁ । ସେହି ସମୟରେ ସେମାନଙ୍କର କଥାରୁ ବୁଝିଲି, ଏପରି ଜ୍ୟୋତିଃଦର୍ଶନ ସେମାନଙ୍କର କେବେ ମଧ୍ୟ ହୋଇ ନାହିଁ ଏବଂ ସେମାନେ କେହି ବି ମୋ ପରି ପୂର୍ବୋକ୍ତ ଭାବରେ ନିଦ୍ରାଯାଇ ନ ଥାନ୍ତି !

### ଦେଶ-କାଳ-ପାତ୍ରବିଶେଷ ଦର୍ଶନରେ ପୂର୍ବସ୍ମୃତିର ଉଦୟ :

‘‘ପୁଣି ବାଲ୍ୟକାଳରୁ ବେଳେ ବେଳେ କୌଣସି ବସ୍ତୁ, ବ୍ୟକ୍ତି ବା ସ୍ଥାନ ବିଶେଷ ଦେଖିବା ମାତ୍ରେ ମନେ ହେଉଥିଲା ଏମାନଙ୍କ ସହିତ ମୁଁ ବିଶେଷ ପରିଚିତ, ଏହାପୂର୍ବରୁ ମୁଁ ଏମାନଙ୍କୁ କେଉଁଠି ଦେଖିଛି ! ଏହା ମୁଁ ସ୍ମରଣ କରିବାକୁ

ଚେଷ୍ଟାକରୁଥିଲି, କିନ୍ତୁ ମନେ ପଡୁ ନ ଥିଲା—କିନ୍ତୁ ଏକଥା ମଧ୍ୟ ନିଶ୍ଚିତ ଧାରଣା ହେଉ ନ ଥିଲା ଯେ, ଏହାପୂର୍ବରୁ ଏମାନଙ୍କୁ ଦେଖି ନାହିଁ ! ପ୍ରାୟତଃ ବେଳେ ବେଳେ ଏପରି ହେଉଥିଲା ! ହୁଏତ, ସମବୟସ୍କଙ୍କ ସହିତ ମିଶି କୌଣସି ସ୍ଥାନରେ ନାନା ବିଷୟରେ ଆଲୋଚନା ଚାଲୁଛି, ଏତିକି ବେଳେ ସେମାନଙ୍କ ମଧ୍ୟରୁ ଜଣେ ଗୋଟିଏ କଥା କହିଲା, ସହସା ମନେ ହେଲା—ହଁ ତ ଏହି ଘରେ, ଏହି ସମସ୍ତ ଲୋକଙ୍କ ସହିତ, ଏହି ବିଷୟ ସମ୍ବନ୍ଧରେ ଏହା ପୂର୍ବରୁ ଆଳାପ କରିଥିଲି ଏବଂ ସେତେବେଳେ ମଧ୍ୟ ଏହି ବ୍ୟକ୍ତି ଏହି ପ୍ରକାର କଥା କହିଥିଲେ ! ମାତ୍ର ଭାବିଚିନ୍ତି କିଛି ସ୍ଥିର କରିପାରୁ ନ ଥିଲି ଯେ, କେଉଁଠି, କେବେ ଏମାନଙ୍କ ସହିତ ଏହା ପୂର୍ବରୁ ଏପରି ଆଳାପ ହୋଇଥିଲା ! ପୁନର୍ଜନ୍ମବାଦ ବିଷୟରେ ଯେତେବେଳେ ଅବଗତ ହେଲି ସେତେବେଳେ ଭାବିଥିଲି, ତେବେ ବୋଧହୁଏ ଜନ୍ମାନ୍ତରରେ ଏସମସ୍ତ ଦେଶ ଓ ପାତ୍ରଙ୍କ ସହିତ ପରିଚିତ ହୋଇଥିଲି, ଏବଂ ତାହାର ହିଁ ଆଂଶିକ ସ୍ମୃତି ବେଳେ ବେଳେ ମୋର ଅନ୍ତରରେ ସେହିପ୍ରକାର ଉପସ୍ଥିତ ହୋଇଥାଏ । ପରେ ବୁଝିଲି, ସେହି ବିଷୟର ସେପ୍ରକାର ମୀମାଂସା ଯୁକ୍ତିଯୁକ୍ତ ନୁହେଁ । ଏବେ ମନେ ହୁଏ, ଇହଜନ୍ମରେ ଯେଉଁ ସମସ୍ତ ବିଷୟ ଓ ବ୍ୟକ୍ତିଙ୍କ ସହିତ ମୋତେ ପରିଚିତ ହେବାକୁ ପଡ଼ିବ, ଜନ୍ମ ହେବା ପୂର୍ବରୁ ସେଇ ସମସ୍ତଙ୍କୁ ଚିତ୍ରପରମ୍ପରାରେ ମୁଁ କୌଣସି ପ୍ରକାରରେ ଦେଖିବାକୁ ପାଇଥିଲି ଏବଂ ତାହାର ହିଁ ସ୍ମୃତି, ଜନ୍ମ ହେବାପରେ, ମୋ ଅନ୍ତରରେ ଆଜୀବନ ବେଳେ ବେଳେ ଉଦିତ ହୋଇଥାଏ ।''

## ଠାକୁରଙ୍କର ଦୈବୀଶକ୍ତି ପ୍ରତ୍ୟକ୍ଷ କରି ନରେନ୍ଦ୍ରଙ୍କର ବିଚାର ଓ ବିସ୍ମୟ :

ଠାକୁରଙ୍କର ପବିତ୍ର ଜୀବନ ଏବଂ ସମାଧିସ୍ଥ ହେବାର କଥା ଅନେକ ପ୍ରକାର ଲୋକଙ୍କଠାରୁ[2] ଶୁଣି ଶ୍ରୀଯୁକ୍ତ ନରେନ୍ଦ୍ରନାଥ ତାଙ୍କୁ ଦର୍ଶନ କରିବାକୁ

---

୧. ଏହି ଅଦ୍ଭୁତ ପ୍ରତ୍ୟକ୍ଷ କଥା ଶ୍ରୀଯୁକ୍ତ ନରେନ୍ଦ୍ର ତାଙ୍କ ସହିତ ପରିଚିତ ହେବାର କିଛିକାଳ ପରେ ହିଁ ଆମମାନଙ୍କୁ କହିଥିଲେ, ଏବଂ ଶେଷ ଜୀବନରେ ସେ ତାହା ସମ୍ବନ୍ଧରେ ଏହି ପ୍ରକାର କାରଣ ନିର୍ଦ୍ଦେଶ କରିଥିଲେ ।

୨. ଆମେ ଏହାପୂର୍ବରୁ କହିଅଛୁ ଦକ୍ଷିଣେଶ୍ୱର ଆସିବାବେଳେ ଶ୍ରୀଯୁକ୍ତ ନରେନ୍ଦ୍ର କଲିକତାର ଜେନେରାଲ୍ ଏସେମ୍ବଲିସ୍ ଇନଷ୍ଟିଚ୍ୟୁସନ୍ ନାମକ ବିଦ୍ୟାଳୟରୁ ଏଫ୍. ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ । ଉଦାରଚେତା ସୁପଣ୍ଡିତ ହେଷ୍ଟି ସାହେବ ସେତେବେଳେ ଉକ୍ତ ବିଦ୍ୟାଳୟର ଅଧ୍ୟକ୍ଷ ଥିଲେ । ସାହେବଙ୍କ ବହୁମୁଖୀ ପ୍ରତିଭା, ପବିତ୍ର ଜୀବନ ଏବଂ ଛାତ୍ରମାନଙ୍କ ସହିତ ସରଳ ସପ୍ରେମ ଆଚରଣ ପାଇଁ ନରେନ୍ଦ୍ରନାଥ ତାହାଙ୍କୁ ବିଶେଷ ଶ୍ରଦ୍ଧା-ଭକ୍ତି କରୁଥିଲେ । ସାହିତ୍ୟର ଅଧ୍ୟାପକ ସହସା ଅସୁସ୍ଥ ହୋଇ ପଡ଼ିବାରୁ ହେଷ୍ଟି ସାହେବ ଦିନେ ଏଫ. ଏ. ଶ୍ରେଣୀର ଛାତ୍ରବୃନ୍ଦଙ୍କୁ ସାହିତ୍ୟ ଅଧ୍ୟୟନ କରାଇବାକୁ ପ୍ରବୃତ୍ତ ହୋଇଥିଲେ ଏବଂ ଓ୍ୱର୍ଡସ୍‌ଓ୍ୱର୍ଥଙ୍କ କବିତାବଳୀର ଆଲୋଚନା ପ୍ରସଙ୍ଗରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଅନୁଭବ କରି ଉକ୍ତ କବିଙ୍କ ଭାବସମାଧି ହେବା କଥା ଉଲ୍ଲେଖ କରିଥିଲେ । ଛାତ୍ରଗଣ ସମାଧି କଥା ବୁଝି ନ ପାରିବାରୁ ସେ ସେମାନଙ୍କୁ ଉକ୍ତ ଅବସ୍ଥା କଥା ଯଥାବିଧି ବୁଝାଇ ପରିଶେଷରେ କହିଥିଲେ, ''ଚିତ୍ତର ପବିତ୍ରତା ଓ ବିଶେଷ ବିଷୟରେ ଏକାଗ୍ରତାଠାରୁ ଉକ୍ତ ଅବସ୍ଥାର ଉଦୟ ହୋଇଥାଏ; ସେହିପ୍ରକାର

ଆସିଥିଲେ । ତାଙ୍କୁ ଦେଖି ତାଙ୍କର କୌଣସି ପ୍ରକାର ଅବସ୍ଥାନ୍ତର ବା ଅଦ୍ଭୁତ ପ୍ରତ୍ୟକ୍ଷ ଉପସ୍ଥିତ ହେବ, ଏବିଷୟ ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲେ । କିନ୍ତୁ ଘଟଣାଟି ଅନ୍ୟ ପ୍ରକାରର ହେଲା । ଦକ୍ଷିଣେଶ୍ୱରରେ, ଠାକୁରଙ୍କର ଶ୍ରୀପଦପ୍ରାନ୍ତରେ ଆଗମନ କରି ପରକୁ ପର ଦୁଇ ଦିନ ତାଙ୍କର ଯେପରି ଅଲୌକିକ ପ୍ରତ୍ୟକ୍ଷ ହେଲା ତାହା ତୁଳନାରେ ତାଙ୍କର ପୂର୍ବପରିଦୃଷ୍ଟ ପ୍ରତ୍ୟକ୍ଷସମୂହ ନିତାନ୍ତ ମ୍ଳାନ ଓ ଅକିଞ୍ଚିତ୍କର ବୋଲି ବୋଧ ହେବାକୁ ଲାଗିଲା ଏବଂ ତାହାର ଧାରଣା କରିବାକୁ ତାଙ୍କର ଅସାଧାରଣ ବୁଦ୍ଧି ପରାଭବ ସ୍ୱୀକାର କଲା । ସୁତରାଂ ଠାକୁରଙ୍କ ବିଷୟ ଅନୁଧାବନ କରିବାକୁ ଯାଇ ସେ ଏବେ ବିଷମ ସମସ୍ୟାରେ ପଡ଼ିଲେ । କାରଣ, ଠାକୁରଙ୍କର ଅଚିନ୍ତ୍ୟ ଦୈବୀଶକ୍ତି-ସହାୟରେ ହିଁ ଯେ ତାଙ୍କର ସେହିପ୍ରକାର ଅଦୃଷ୍ଟପୂର୍ବ ପ୍ରତ୍ୟକ୍ଷ ଉପସ୍ଥିତ ହୋଇଥିଲା ଏବିଷୟରେ ସଂଶୟ କରିବାକୁ ସେ ବିନ୍ଦୁମାତ୍ର କାରଣ ମଧ୍ୟ ଅନୁସନ୍ଧାନ କରି ପ୍ରାପ୍ତ ହୋଇ ନ ଥିଲେ, ଏବଂ ମନେ ମନେ ଏହି ବିଷୟରେ ଯେତେ ଆଲୋଚନା କରୁଥିଲେ ସେତେ ହିଁ ବିସ୍ମୟସାଗରରେ ନିମଗ୍ନ ହୋଇଥିଲେ ।

**ନରେନ୍ଦ୍ର କେତେଦୂର ଉଚ୍ଚ ଅଧିକାରୀ ଥିଲେ :**

ବାସ୍ତବିକ୍ ଠାକୁରଙ୍କ ନିକଟରେ ପହଞ୍ଚି ନରେନ୍ଦ୍ରନାଥଙ୍କର ହଠାତ୍ ଯେପରି ଅଦ୍ଭୁତ ପ୍ରତ୍ୟକ୍ଷ ଉପସ୍ଥିତ ହୋଇଥିଲା, ତାହା ଭାବିଲେ ବିସ୍ମିତ ନ ହୋଇ ରହି ହୁଏ ନାହିଁ । ଶାସ୍ତ୍ର କହନ୍ତି, ସ୍ୱଳ୍ପଶକ୍ତିସମ୍ପନ୍ନ ସାମାନ୍ୟ-ଅଧିକାରୀ ମାନବର ଜୀବନରେ ସେହିପ୍ରକାର ପ୍ରତ୍ୟକ୍ଷ ବହୁକାଳର ତ୍ୟାଗ ଓ ତପସ୍ୟା ଫଳରେ କ୍ୱଚିତ୍ ଉପସ୍ଥିତ ହୋଇଥାଏ ଏବଂ କୌଣସି ପ୍ରକାରରେ ଥରେ ଉପସ୍ଥିତ ହେଲେ ଶ୍ରୀଗୁରୁଙ୍କ ଭିତରେ ଈଶ୍ୱରଙ୍କର ପ୍ରକାଶ ଉପଲବ୍ଧି କରି ମୋହିତ ହୋଇ ସେ ଏକାବେଳକେ ତାଙ୍କର ବଶ୍ୟତା ସ୍ୱୀକାର କରେ । ନରେନ୍ଦ୍ର ଯେ ସେପରି କରି ନ ଥିଲେ— ଏହା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ; ତେଣୁ ଏଥିରୁ ବୁଝାଯାଏ ସେ ଆଧ୍ୟାତ୍ମିକ ଜଗତରେ କେତେ ଉଚ୍ଚ ଅଧିକାରୀ ଥିଲେ । ଅତି ଉଚ୍ଚ ଆଧାର ଥିଲେ ବୋଲି ସେହି ଘଟଣାରେ ସେ ସମ୍ପୂର୍ଣ୍ଣ ଆତ୍ମହରା ହୋଇ ନ ଥିଲେ, ଏବଂ ସଂଯତ ରହି ଠାକୁରଙ୍କର ଅଲୌକିକ ଚରିତ୍ର ଓ ଆଚରଣର ପରୀକ୍ଷା ଓ କାରଣ ନିର୍ଣ୍ଣୟରେ ନିଜକୁ ବହୁକାଳ ପର୍ଯ୍ୟନ୍ତ ନିଯୁକ୍ତ ରଖିବାକୁ ସମର୍ଥ ହୋଇଥିଲେ । କିନ୍ତୁ ଅଭିଭୂତ

---

ଅବସ୍ଥାର ଅଧିକାରୀ ବ୍ୟକ୍ତି ବିରଳ ଦେଖିବାକୁ ମିଳନ୍ତି—ଏକମାତ୍ର ଦକ୍ଷିଣେଶ୍ୱରର ରାମକୃଷ୍ଣ ପରମହଂସଦେବଙ୍କର ଆଜିକାଲି ସେହିପରି ଅବସ୍ଥା ହେବାର ଦେଖିଛି—ତାହାଙ୍କର ସେହି ଅବସ୍ଥା ଦିନେ ଦର୍ଶନ କରି ଆସିଲେ ତୁମେମାନେ ଏହି ବିଷୟ ହୃଦୟଙ୍ଗମ କରିପାରିବ ।'' ହେଷ୍ଟି ସାହେବଙ୍କଠାରୁ ଶ୍ରୀଯୁକ୍ତ ନରେନ୍ଦ୍ର ଠାକୁରଙ୍କ କଥା ପ୍ରଥମେ ଶ୍ରବଣ କରିବା ପରେ ସୁରେନ୍ଦ୍ରନାଥଙ୍କ ଗୃହରେ ତାଙ୍କର ପ୍ରଥମ ଦର୍ଶନଲାଭ କରିଥିଲେ । ପୁଣି ବ୍ରାହ୍ମସମାଜକୁ ଏହାପୂର୍ବରୁ ଯିବା ଆସିବା ଥିବାରୁ ସେ ଠାକୁରଙ୍କ କଥା ସେଠାରେ ମଧ୍ୟ ଶ୍ରବଣ କରିଥିଲେ ବୋଲି ମନେ ହୁଏ ।

ହୋଇ ନ ଥିଲେ ମଧ ଏବଂ ସମ୍ପୂର୍ଣ୍ଣ ବଶ୍ୟତା ସ୍ୱୀକାର କରି ନ ଥିଲେ ମଧ, ସେ ଏବେଠାରୁ ଠାକୁରଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ ।

### ନରେନ୍ଦ୍ରଙ୍କ ପ୍ରତି ଠାକୁର କେତେଦୂର ଆକୃଷ୍ଟ ହୋଇଥିଲେ :

ପ୍ରଥମ ସାକ୍ଷାତର ଦିନଠାରୁ ଠାକୁର ମଧ ଅନ୍ୟପକ୍ଷରେ ନରେନ୍ଦ୍ରଙ୍କ ପ୍ରତି ଏକ ପ୍ରବଳ ଆକର୍ଷଣ ଅନୁଭବ କରିଥିଲେ । ଅପରୋକ୍ଷବିଜ୍ଞାନସମ୍ପନ୍ନ ମହାନୁଭବ ଗୁରୁ ସୁଯୋଗ୍ୟ ଶିଷ୍ୟଙ୍କୁ ଦେଖିବାମାତ୍ରେ ନିଜର ସମୁଦାୟ ଜୀବନର ପ୍ରତ୍ୟକ୍ଷ ଅନୁଭୂତି ତାଙ୍କ ଅନ୍ତରରେ ଢାଳି ଦେବାର ଆକୁଳ ଆଗ୍ରହରେ ଯେପରି ସମ୍ପୂର୍ଣ୍ଣ ଅଧୀର ହୋଇଉଠିଥିଲେ । ସେହି ଗଭୀର ଆଗ୍ରହର ପରିମାଣ ହୁଏ ନାହିଁ, ସେହି ସ୍ୱାର୍ଥଗନ୍ଧଶୂନ୍ୟ ଅହେତୁକ ଅଧୈର୍ଯ୍ୟ, ପୂର୍ଣ୍ଣସଂଯତ-ଆତ୍ମାରାମ ଗୁରୁମାନଙ୍କର ହୃଦୟରେ କେବଳ ଦୈବ ପ୍ରେରଣାରେ ହିଁ ଉପସ୍ଥିତ ହୋଇଥାଏ । ସେହିପ୍ରକାର ପ୍ରେରଣା ବଶରେ ହିଁ ଜଗଦ୍‌ଗୁରୁ ମହାପୁରୁଷଗଣ ଉତ୍ତମ ଅଧିକାରୀ ଶିଷ୍ୟକୁ ଦେଖିବାମାତ୍ରେ ଅଭୟ ବ୍ରହ୍ମଜ୍ଞପଦବୀରେ ଆରୂଢ଼ କରାଇ ତାହାକୁ ଆପ୍ତକାମ ତଥା ଜୀବନ୍ମୁକ୍ତ କରିଥାଆନ୍ତି ।[୧]

### ପ୍ରଥମ ଦିନରେ ନରେନ୍ଦ୍ରଙ୍କୁ ବ୍ରହ୍ମଜ୍ଞ ପଦବୀରେ ଆରୂଢ଼ କରାଇବାକୁ ଠାକୁରଙ୍କର ଚେଷ୍ଟା :

ନରେନ୍ଦ୍ରନାଥ ଯେଉଁଦିନ ଦକ୍ଷିଣେଶ୍ୱରକୁ ଏକାକୀ ଆସିଥିଲେ, ଠାକୁର ଯେ ସେହିଦିନ ତାଙ୍କୁ ପୂର୍ଣ୍ଣ ସମାଧିସ୍ଥ କରି ବ୍ରହ୍ମପଦବୀରେ ଆରୂଢ଼ କରାଇବାକୁ ପ୍ରବଳଭାବରେ ଆକୃଷ୍ଟ ହୋଇଥିଲେ, ଏବିଷୟରେ ସନ୍ଦେହ ନାହିଁ । କାରଣ, ଏହାର ତିନି ଚାରିବର୍ଷ ପରେ ଶ୍ରୀଯୁକ୍ତ ନରେନ୍ଦ୍ର ଯେତେବେଳେ ସମ୍ପୂର୍ଣ୍ଣରୂପରେ ଠାକୁରଙ୍କର ବଶ୍ୟତା ସ୍ୱୀକାର କରିଥିଲେ ଏବଂ ନିର୍ବିକଳ୍ପ ସମାଧିଲାଭ ନିମିତ୍ତ ଠାକୁରଙ୍କ ନିକଟରେ ବାରମ୍ବାର ପ୍ରାର୍ଥନା କରୁଥିଲେ, ସେତେବେଳେ ଏହି ଘଟଣାର ଉଲ୍ଲେଖ କରି ଠାକୁର ତାଙ୍କୁ ଆମମାନଙ୍କ ସମ୍ମୁଖରେ ଅନେକଥର କହୁଥିଲେ, ''କାହିଁକି ? ତୁ ଯେ ସେତେବେଳେ କହିଥିଲୁ ତୋ'ର ବାପା-ମା' ଅଛନ୍ତି, ସେମାନଙ୍କର ସେବା କରିବାକୁ ହେବ ?'' ପୁଣି କେତେବେଳେ କହୁଥିଲେ, ''ଦେଖ, ଜଣେ ମରି ଭୂତ ହୋଇଥିଲା । ଅନେକ କାଳ ଏକାକୀ ଥିବାରୁ ସାଙ୍ଗର ଅଭାବ ଅନୁଭବ କରି ସେ ଚାରିଆଡ଼େ ଖୋଜିବାକୁ ଆରମ୍ଭ କଲା । କେହି କୌଣସି ସ୍ଥାନରେ ମରିଯାଇଛି ଶୁଣିଲେ ହିଁ ସେ ସେଠାକୁ ଧାଇଁ ଯାଉଥିଲା । ଭାବୁଥିଲା, ଏଥର ବୋଧହୁଏ ତା'ର ଜଣେ ସଙ୍ଗୀ ମିଳିଯିବ । କିନ୍ତୁ ଦେଖେ, ମୃତ ବ୍ୟକ୍ତି ଗଙ୍ଗାଜଳ-ସ୍ପର୍ଶରେ

---

୧. ଶାସ୍ତ୍ରରେ ଏହା ଶାମ୍ଭବୀ ଦୀକ୍ଷା ନାମରେ କୁହାଯାଇଛି । ଶାମ୍ଭବୀ ଦୀକ୍ଷାର ବିସ୍ତାରିତ ବିବରଣୀ ପାଇଁ 'ଗୁରୁଭାବ, ଉତ୍ତରାର୍ଦ୍ଧ—୪ର୍ଥ ଅଧାୟ ଦ୍ରଷ୍ଟବ୍ୟ ।

ବା ଅନ୍ୟ କୌଣସି ଉପାୟରେ ମୁକ୍ତ ହୋଇଯାଇଛି । ସୁତରାଂ କ୍ଷୁଣ୍ଣମନରେ ଫେରିଆସି ସେ ପୁନରାୟ ପୂର୍ବପରି ଏକାକୀ କାଳଯାପନ କରୁଥିଲା । ଏହିପରି ସେହି ଭୂତର ସଙ୍ଗୀର ଅଭାବ କୌଣସି ମତେ ଘୁଞ୍ଚୁ ନ ଥିଲା । ମୋର ମଧ୍ୟ ଠିକ୍ ସେହିପ୍ରକାର ଦଶା ହୋଇଅଛି । ତୋତେ ଦେଖି ଭାବିଥିଲି ଏହିଥର ବୋଧହୁଏ ମୋତେ ସଙ୍ଗୀଟିଏ ମିଳିଲା—କିନ୍ତୁ ତୁ ମଧ୍ୟ କହିଲୁ, ତୋର ବାପା-ମା ଅଛନ୍ତି । ଫଳରେ ମୋର ସାଙ୍ଗଟିଏ ମିଳିଲା ନାହିଁ !'' ଏହିପରି ସେଦିନର ଘଟଣା ଉଲ୍ଲେଖ କରି ଠାକୁର ପରବର୍ତ୍ତୀ ସମୟରେ ନରେନ୍ଦ୍ରନାଥଙ୍କ ସହିତ ଅନେକ ସମୟ ଥଟ୍ଟା-ପରିହାସ କରୁଥିଲେ ।

## ନରେନ୍ଦ୍ରଙ୍କର ପ୍ରଥମ ଓ ଦ୍ୱିତୀୟ ଦିବସର ଅଦ୍ଭୁତ ଅନୁଭବ ମଧ୍ୟରେ ପ୍ରଭେଦ :

ସେ ଯାହାହେଉ, ସମାଧିସ୍ଥ ହେବାର ଉପକ୍ରମରେ ନରେନ୍ଦ୍ରନାଥଙ୍କର ହୃଦୟରେ ଦାରୁଣ ଭୟର ସଞ୍ଚାର ହେବା ଦେଖି ଠାକୁର ସେଦିନ ଯେପରି ନିରସ୍ତ ହୋଇଥିଲେ, ସେକଥା ଆମେ ଏହା ପୂର୍ବରୁ କହିଅଛୁ । ଘଟଣାଟି ଏପରି ହେବାରୁ ନରେନ୍ଦ୍ରଙ୍କ ସମ୍ବନ୍ଧରେ ପୂର୍ବରୁ ସେ (ଠାକୁର) ଯାହା ଦର୍ଶନ ଏବଂ ଉପଲବ୍ଧି କରିଥିଲେ, ସେବିଷୟରେ ଠାକୁର ସନ୍ଦିହାନ ହେବା ବିଚିତ୍ର ନୁହେଁ । ଆମମାନଙ୍କର ଅନୁମାନ, ସେଥିପାଇଁ ହିଁ ନରେନ୍ଦ୍ର ତୃତୀୟ ଦିବସ ଦକ୍ଷିଣେଶ୍ୱର ଆସିଲେ ଶକ୍ତିବଳରେ ତାଙ୍କୁ ଅଭିଭୂତ କରି ଠାକୁର ତାଙ୍କର ଜୀବନ ସମ୍ବନ୍ଧରେ ନାନା ରହସ୍ୟ କଥା ତାଙ୍କ ନିକଟରୁ ଜାଣିନେଇଥିଲେ ଏବଂ ନିଜର ପ୍ରତ୍ୟକ୍ଷଗୁଡ଼ିକ ସହିତ ଏସବୁର ସାମଞ୍ଜସ୍ୟ ଦେଖି ନିଶ୍ଚିନ୍ତ ହୋଇଥିଲେ । ଏହି ଅନୁମାନ ସତ୍ୟ ହେଲେ ଏହା ବୁଝିବାକୁ ହୁଏ ଯେ, ନରେନ୍ଦ୍ରନାଥ ଦକ୍ଷିଣେଶ୍ୱର ଆସି ପୂର୍ବୋକ୍ତ ଦୁଇ ଦିନରେ ଗୋଟିଏ ପ୍ରକାରର ସମାଧି-ଅବସ୍ଥା ଲାଭ କରି ନ ଥିଲେ । ଏହାର ଫଳସ୍ୱରୂପ ଦେଖିବାକୁ ମିଳେ, ଉକ୍ତ ଦୁଇଦିନ ତାଙ୍କର ଦୁଇ ପ୍ରକାରର ଭିନ୍ନ ଭିନ୍ନ ଉପଲବ୍ଧି ହୋଇଥିଲା ।

## ନରେନ୍ଦ୍ରଙ୍କ ସମ୍ବନ୍ଧରେ ଠାକୁରଙ୍କର ଭୟ :

ନରେନ୍ଦ୍ରନାଥଙ୍କୁ ପୂର୍ବୋକ୍ତ ଭାବରେ ପରୀକ୍ଷା କରି ଠାକୁର ଏକ ପ୍ରକାର ନିଶ୍ଚିନ୍ତ ହେଲେ ମଧ୍ୟ, ତାଙ୍କ ବିଷୟରେ ସମ୍ପୂର୍ଣ୍ଣଭାବରେ ନିଶ୍ଚିନ୍ତ ହୋଇଥିଲେ ବୋଲି କୁହାଯାଇପାରେ ନାହିଁ । କାରଣ, ସେ ଦେଖିଥିଲେ, ଯେଉଁ ସମସ୍ତ ଗୁଣ ବା ଶକ୍ତିପ୍ରକାଶ ମଧ୍ୟରେ ଗୋଟିଏ ବା ଦୁଇଟିର ମାତ୍ର ଅଧିକାରୀ ହୋଇ ମାନବ ସଂସାରରେ ଜନସାଧାରଣଙ୍କ ମଧ୍ୟରେ ବିପୁଳ ପ୍ରତିପତ୍ତି ଲାଭ କରିଥାଏ, ନରେନ୍ଦ୍ରନାଥଙ୍କ ଅନ୍ତରରେ ସେହିପ୍ରକାର ଅଠରଟି ଶକ୍ତିପ୍ରକାଶ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଏବଂ ଈଶ୍ୱର, ଜଗତ୍ ଓ ମାନବ-ଜୀବନର ଉଦ୍ଦେଶ୍ୟ ସମ୍ବନ୍ଧରେ ଚରମ-

ସତ୍ୟ ଉପଲବ୍ଧି କରି ଶ୍ରୀଯୁକ୍ତ ନରେନ୍ଦ୍ରନାଥ ଏଗୁଡ଼ିକୁ ସମ୍ୟକ୍‌ରୂପରେ ଆଧ୍ୟାତ୍ମିକ ପଥରେ ନିଯୁକ୍ତ କରି ନ ପାରିଲେ ଫଳ ବିପରୀତ ହୋଇଯିବ । ଠାକୁର କହୁଥିଲେ, ସେପରି ହେଲେ ନରେନ୍ଦ୍ର ଅନ୍ୟ ନେତାମାନଙ୍କ ସଦୃଶ ଗୋଟିଏ ନୂତନ ମତ ଓ ଦଳ ସୃଷ୍ଟି କରି ଜଗତରେ ଖ୍ୟାତିଲାଭ କରିବ; କିନ୍ତୁ ବର୍ତ୍ତମାନ ଯୁଗ-ପ୍ରୟୋଜନ ପୂର୍ଣ୍ଣ କରିବା ନିମିତ୍ତ ଯେଉଁ ଉଦାର ଆଧ୍ୟାତ୍ମିକ ତତ୍ତ୍ୱର ଉପଲବ୍ଧି ଓ ପ୍ରଚାରର ଆବଶ୍ୟକ, ତାହା ପ୍ରତ୍ୟକ୍ଷ କରିବା ଏବଂ ଏହାର ପ୍ରତିଷ୍ଠା ପାଇଁ ସହାୟତା କରି ଜଗତର ଯଥାର୍ଥ କଲ୍ୟାଣସାଧନ କରିବା ତାଙ୍କ ଦ୍ୱାରା ସମ୍ଭବପର ହେବ ନାହିଁ । ସୁତରାଂ ନରେନ୍ଦ୍ର ଯେମିତି ସ୍ୱେଚ୍ଛାରେ ସମ୍ପୂର୍ଣ୍ଣ ଭାବରେ ତାଙ୍କର ଅନୁସରଣ କରି ତାଙ୍କ ସଦୃଶ ଆଧ୍ୟାତ୍ମିକ ତତ୍ତ୍ୱସମୂହର ସାକ୍ଷାତ୍ ଉପଲବ୍ଧି କରିପାରନ୍ତି, ସେଥିପାଇଁ ଏବେଠାରୁ ଠାକୁରଙ୍କର ପ୍ରାଣରେ ଅସୀମ ଆଗ୍ରହ ସୃଷ୍ଟି ହୋଇଥିଲା । ଠାକୁର ସବୁବେଳେ କହୁଥିଲେ — ଗଡ଼ିଆ, ପୋଖରୀ ପ୍ରଭୃତି ଯେଉଁ ସକଳ ଜଳାଧାରାରେ ସ୍ରୋତ ନାହିଁ ଏବଂ ସେଠାରେ ଯେପରି ଦଳ ବା ନାନାପ୍ରକାର ଉଦ୍ଭିଦ ଓ ଶିଉଳି ସବୁ ଦେଖିବାକୁ ମିଳିଥାଏ, ସେହିପରି ଆଧ୍ୟାତ୍ମିକ ଜଗତରେ ଯେଉଁଠି ଆଂଶିକ ସତ୍ୟକୁ ମନୁଷ୍ୟ ପୂର୍ଣ୍ଣ ସତ୍ୟ ବୋଲି ଧାରଣା କରି ନିଶ୍ଚିନ୍ତ ହୋଇଥାଏ, ସେହିଠାରେ ହିଁ ଦଳ ବା କ୍ଷୁଦ୍ର କ୍ଷୁଦ୍ର ସଂଘମାନଙ୍କର ଉଦୟ ହୋଇଥାଏ । ଅସାଧାରଣ ମେଧା ଓ ମାନସିକ-ଗୁଣସମ୍ପନ୍ନ ନରେନ୍ଦ୍ରନାଥ କାଳେ ବିପଥରେ ଗମନ କରି ସେହିପରି କରିବେ, ସେହି ଭୟରେ ଠାକୁର କେତେ ପ୍ରକାରରେ ତାଙ୍କୁ ପୂର୍ଣ୍ଣସତ୍ୟର ଅଧିକାରୀ କରିବାକୁ ଚେଷ୍ଟା କରିଥିଲେ, ଏହି କଥା ଭାବିଲେ ବିସ୍ମିତ ହେବାକୁ ପଡ଼ିଥାଏ ।

**ଠାକୁରଙ୍କ ନରେନ୍ଦ୍ରଙ୍କ ପ୍ରତି ଅସାଧାରଣ ଆକର୍ଷଣର କାରଣ :**

ଅତଏବ ଦେଖାଯାଉଛି, ନରେନ୍ଦ୍ରନାଥଙ୍କ ସହିତ ମିଳିତ ହେବା ଆରମ୍ଭରୁ ହିଁ ଠାକୁର ନାନା କାରଣରୁ ତାଙ୍କ ପ୍ରତି ପ୍ରବଳ ଆକର୍ଷଣ ଅନୁଭବ କରିଥିଲେ ଏବଂ ଯେତେଦିନ ପର୍ଯ୍ୟନ୍ତ ସେ ବୁଝିପାରି ନ ଥିଲେ ଯେ, ନରେନ୍ଦ୍ରଙ୍କର ଆଉ ପୂର୍ବୋକ୍ତଭାବରେ ବିପଥରେ ଯିବାର ସମ୍ଭାବନା ନାହିଁ, ସେତେଦିନ ପର୍ଯ୍ୟନ୍ତ ଉକ୍ତ ଆକର୍ଷଣ ତାଙ୍କଠାରେ ସହଜ ଓ ସ୍ୱାଭାବିକ ଭାବ ଧାରଣ କରି ନ ଥିଲା । ଏହି ସମସ୍ତ କାରଣ ଅନୁଧାବନରେ ସ୍ପଷ୍ଟ ହୃଦୟଙ୍ଗମ ହୁଏ ଯେ, ଏଥିରୁ କେତେଗୁଡ଼ିଏ ନରେନ୍ଦ୍ରନାଥଙ୍କ ସମ୍ବନ୍ଧରେ ଠାକୁରଙ୍କର ନିଜର ଅଦ୍ଭୁତ ଦର୍ଶନସମୂହରୁ ସମ୍ଭୂତ ହୋଇଥିଲା ଏବଂ ଅବଶିଷ୍ଟଗୁଡ଼ିକ, ଯଦି ନରେନ୍ଦ୍ର କାଳଧର୍ମ ପ୍ରଭାବରେ ଦାରୈଷଣା, ବିତ୍ତୈଷଣା, ଲୋକୈଷଣା ପ୍ରଭୃତି କୌଣସି ପ୍ରକାର ବନ୍ଧନକୁ ସ୍ୱେଚ୍ଛାରେ ସ୍ୱୀକାର କରି ନେଇ ତାଙ୍କର ମହତ୍ ଜୀବନର ପରମ ଲକ୍ଷ୍ୟସାଧନରେ ଆଂଶିକ ଭାବରେ ଅସମର୍ଥ ହୁଅନ୍ତି, ଏହି ଭୟରୁ ଉତ୍‌ଥିତ ହୋଇଥିଲା ।

## ଉକ୍ତ ଆକର୍ଷଣ ଉପସ୍ଥିତ ହେବା ଯେପରି ସ୍ୱାଭାବିକ ଓ ଅବଶ୍ୟମ୍ଭାବୀ :

ବହୁକାଳବ୍ୟାପୀ ତ୍ୟାଗ ଓ ତପସ୍ୟା ଫଳରେ କ୍ଷୁଦ୍ର 'ଅହଂ-ମମ'ବୁଦ୍ଧି ସମ୍ପୂର୍ଣ୍ଣରୂପରେ ତିରୋହିତ ହେବାରୁ ଜଗତ୍-କାରଣ ସହିତ ନିତ୍ୟ ଅଦ୍ୱୈତ ଭାବରେ ଅବସ୍ଥିତ ଠାକୁର ଈଶ୍ୱରଙ୍କ ଜନକଲ୍ୟାଣ-ସାଧନରୂପକ କର୍ମକୁ ନିଜର ବୋଲି ଅନୁକ୍ଷଣ ଉପଲବ୍ଧି କରୁଥିଲେ । ଏହାର ପ୍ରଭାବରେ ତାଙ୍କର ହୃଦୟଙ୍ଗମ ହୋଇଥିଲା ଯେ, ବର୍ତ୍ତମାନ ଯୁଗର ଧର୍ମଗ୍ଲାନି-ନାଶ-ରୂପକ ସୁମହତ୍ କାର୍ଯ୍ୟ ତାଙ୍କର ଶରୀର-ମନକୁ ଯନ୍ତ୍ରସ୍ୱରୂପ କରି ସାଧିତ ହେଉ, ବିରାଟ ଇଚ୍ଛାର ଏହା ହିଁ ଅଭିପ୍ରେତ । ପୁଣି ଏହାର ପ୍ରଭାବରେ ସେ ବୁଝିପାରିଥିଲେ, କ୍ଷୁଦ୍ରସ୍ୱାର୍ଥସୁଖସାଧନ ପାଇଁ ଶ୍ରୀଯୁକ୍ତ ନରେନ୍ଦ୍ର ଜନ୍ମଗ୍ରହଣ କରି ନାହାନ୍ତି, ମାତ୍ର ଈଶ୍ୱରଙ୍କ ପ୍ରତି ଏକାନ୍ତ ଅନୁରାଗରେ ପୂର୍ବୋକ୍ତ ଜନକଲ୍ୟାଣ-ସାଧନରୂପକ କର୍ମରେ ତାଙ୍କୁ ସହାୟତା କରିବାକୁ ହିଁ ଆସିଛନ୍ତି । ସୁତରାଂ ସ୍ୱାର୍ଥଶୂନ୍ୟ ନିତ୍ୟମୁକ୍ତ ନରେନ୍ଦ୍ରନାଥଙ୍କୁ ତାଙ୍କର ପରମ ଆତ୍ମୀୟ ବୋଲି ବୋଧହେବ ଏବଂ ତାଙ୍କ ପ୍ରତି ସେ ପ୍ରବଳ ଭାବରେ ଆକୃଷ୍ଟ ହେବେ, ଏଥିରେ ବିଚିତ୍ର କ'ଣ ? ଅତଏବ ଆପାତଦୃଷ୍ଟିରେ ନରେନ୍ଦ୍ରନାଥଙ୍କ ପ୍ରତି ଠାକୁରଙ୍କର ଆକର୍ଷଣ ଦେଖି ବିସ୍ମୟ ବୋଧ ହେଲେ ମଧ୍ୟ, ଏହା ଯେ ସ୍ୱାଭାବିକ ଏବଂ ଅବଶ୍ୟମ୍ଭାବୀ ତାହା ସାମାନ୍ୟ ଚିନ୍ତା କଲେ ହିଁ ବୁଝାଯାଏ ।

## ନରେନ୍ଦ୍ରଙ୍କ ପ୍ରତି ଠାକୁରଙ୍କର ଭଲ ପାଇବା ସାଂସାରିକ ଭାବର ନୁହେଁ :

ପ୍ରଥମ ଦର୍ଶନ ଦିନରୁ ହିଁ ଠାକୁର ନରେନ୍ଦ୍ରନାଥଙ୍କୁ କେତେଦୂର ନିକଟ ଆତ୍ମୀୟ ଜ୍ଞାନ କରିଥିଲେ ଏବଂ କିପରି ତନ୍ମୟଭାବରେ ଭଲ ପାଇଥିଲେ ତାହାର ଆଭାସ ପ୍ରଦାନ କରିବା ଆମ ପକ୍ଷରେ ସାଧ୍ୟାତୀତ ବୋଲି ମନେ ହୋଇଥାଏ । ସଂସାରୀ ମଣିଷ ଯେଉଁସବୁ କାରଣରୁ ଅନ୍ୟକୁ ନିଜର ବୋଲି ଜ୍ଞାନ କରି ହୃଦୟର ଭଲ ପାଇବା ଅର୍ପଣ କରିଥାଏ, ତାହାର କିଛି ମାତ୍ର ଠାକୁରଙ୍କର ଭଲ ପାଇବାରେ ନ ଥିଲା; ମାତ୍ର ନରେନ୍ଦ୍ରଙ୍କର ଅନୁପସ୍ଥିତିରେ ଓ ମିଳନରେ ଠାକୁରଙ୍କର ଯେଉଁପ୍ରକାର ବ୍ୟାକୁଳତା ଏବଂ ଉଲ୍ଲାସ ଦର୍ଶନ କରିଅଛୁ ତାହାର ବିନ୍ଦୁମାତ୍ର ଦର୍ଶନ ଅନ୍ୟ କେଉଁଠାରେ ଦେଖିବା ଆମ ଭାଗ୍ୟରେ ଘଟି ନାହିଁ । ବିନା କାରଣରେ ଜଣେ ଅନ୍ୟ ଜଣଙ୍କୁ ଯେ ଏତେଦୂର ଭଲପାଇପାରେ, ଏକଥା ଏହା ପୂର୍ବରୁ ଆମେ ଜାଣି ନ ଥିଲୁ ! ନରେନ୍ଦ୍ରଙ୍କ ପ୍ରତି ଠାକୁରଙ୍କର ଅଦ୍ଭୁତ ପ୍ରେମ ଦର୍ଶନ କରି ହିଁ ବୁଝିପାରିଛୁ, ସମୟାନୁକ୍ରମେ ସଂସାରରେ ଏପରି ଦିନ ଆସିବ ଯେତେବେଳେ ମଣିଷ ମଣିଷଙ୍କ

ମଧ୍ୟରେ ଈଶ୍ୱରଙ୍କର ପ୍ରକାଶ ଉପଲବ୍ଧି କରି ସତକୁ ସତ ହିଁ ଏପରି ବିନାକାରଣରେ ଭଲ ପାଇ କୃତକୃତାର୍ଥ ହେବେ ।

**ଏପରି ଭଲ ପାଇବା ସମ୍ବନ୍ଧରେ ସ୍ୱାମୀ ପ୍ରେମାନନ୍ଦଙ୍କର ଉକ୍ତି :**

ଠାକୁରଙ୍କ ନିକଟକୁ ନରେନ୍ଦ୍ରଙ୍କର ଆସିବାର କିଛିକାଳ ପରେ ସ୍ୱାମୀ ପ୍ରେମାନନ୍ଦ ଦକ୍ଷିଣେଶ୍ୱରକୁ ପ୍ରଥମେ ଆସିଥିଲେ । ନରେନ୍ଦ୍ରନାଥ ଏହାପୂର୍ବରୁ ଏକ ସପ୍ତାହରୁ ବା ଆଉ କିଛି ଅଧିକ ସମୟ ଦକ୍ଷିଣେଶ୍ୱର ଆସି ନ ପାରିବାରୁ ଠାକୁର ତାଙ୍କ ପାଇଁ କିପରି ଉତ୍କଣ୍ଠିତଚିତ୍ତରେ ସେତେବେଳେ ରହୁଥିଲେ ତାହା ଦେଖି ସ୍ୱାମୀ ପ୍ରେମାନନ୍ଦ ମୋହିତ ହୋଇ ସେହି ବିଷୟ ଆମମାନଙ୍କ ନିକଟରେ ଅନେକ ଥର ବର୍ଣ୍ଣନା କରିଥିଲେ । ସେ କହିଥିଲେ—

**ସ୍ୱାମୀ ପ୍ରେମାନନ୍ଦଙ୍କ ଦକ୍ଷିଣେଶ୍ୱରକୁ ପ୍ରଥମ ଆଗମନ ଓ ଠାକୁରଙ୍କୁ ନରେନ୍ଦ୍ରଙ୍କ ପାଇଁ ଉତ୍କଣ୍ଠିତ ଦେଖିବା :**

"ସ୍ୱାମୀ ବ୍ରହ୍ମାନନ୍ଦଙ୍କ ସହିତ ହାଟଖୋଲା ଘାଟରେ ନୌକାରେ ଚଢ଼ିବାକୁ ଯିବାବେଳେ ସେଦିନ ରାମଦୟାଲବାବୁଙ୍କୁ ସେଠାରେ ଦେଖିବାକୁ ପାଇଲି । ସେ ମଧ୍ୟ ଦକ୍ଷିଣେଶ୍ୱର ଯାଉଛନ୍ତି ଜାଣି ଆମେ ଏକତ୍ର ଗୋଟିଏ ନୌକାରେ ଉଠିଲୁ ଏବଂ ପ୍ରାୟ ସନ୍ଧ୍ୟା ସମୟରେ ରାଣୀ ରାସମଣିଙ୍କର କାଳୀବାଡ଼ୀରେ ପହଞ୍ଚିଲୁ । ଠାକୁରଙ୍କ କୋଠରୀକୁ ଆସି ଶୁଣିଲୁ, ସେ ମନ୍ଦିରକୁ ଜଗଦମ୍ବାଙ୍କୁ ଦର୍ଶନ କରିବାକୁ ଯାଇଛନ୍ତି । ସ୍ୱାମୀ ବ୍ରହ୍ମାନନ୍ଦ ଆମମାନଙ୍କୁ ଉକ୍ତ ସ୍ଥାନରେ ଅପେକ୍ଷା କରିବାକୁ କହି ତାଙ୍କୁ ଡାକି ଆଣିବାକୁ ମନ୍ଦିର ଆଡ଼କୁ ଗଲେ ଏବଂ କିଛି କ୍ଷଣ ପରେ ହିଁ ଦେଖିବାକୁ ପାଇଲୁ, ତାଙ୍କୁ ଅତି ସନ୍ତର୍ପଣରେ ଧାରଣ କରି 'ଏଠି ସିଡ଼ି, ଚଢ଼ିବାକୁ ହେବ, ଏଠାରେ ଓହ୍ଲାଇବାକୁ ହେବ' ଇତ୍ୟାଦି କହି କହି ନେଇଆସୁଛନ୍ତି । ଏହା ପୂର୍ବରୁ ସେ ଭାବବିଭୋର ହୋଇ ବାହ୍ୟଚେତନା ହରାଇବା କଥା ଆମେ ଶୁଣିଥିଲୁ । ଏଥିପାଇଁ ଠାକୁରଙ୍କୁ ସେହିପରି ମାତାଲ ସଦୃଶ ଢଳି ଢଳି ଆସିବା ଦେଖି ବୁଝିଲୁ ସେ ଭାବାବେଶରେ ରହିଛନ୍ତି । ସେହିପରି ଭାବରେ ଘରେ ପ୍ରବେଶ କରି ସେ ଛୋଟ ତକ୍ତପୋଷ ଉପରେ ବସିଲେ ଏବଂ ଅଳ୍ପ ସମୟ ପରେ ପ୍ରକୃତିସ୍ଥ ହୋଇ ମୋର ପରିଚୟ ଜାଣିବା ପରେ ମୋର ମୁହଁ ଓ ହାତ–ପାଦାଦିର ଲକ୍ଷଣପରୀକ୍ଷା କରିବାକୁ ପ୍ରବୃତ୍ତ ହେଲେ । କହୁଣୀଠାରୁ ଅଙ୍ଗୁଳି ପର୍ଯ୍ୟନ୍ତ ମୋର ହାତର ଓଜନ ପରୀକ୍ଷା କରିବା ପାଇଁ କିଛି ସମୟ ନିଜ ହାତରେ ଧାରଣ କରି କହିଲେ, 'ବେଶ୍' । ସେଥିରୁ କ'ଣ ବୁଝିଲେ, ସେ ହିଁ ଜାଣନ୍ତି । ଏହାପରେ ରାମଦୟାଲବାବୁଙ୍କୁ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କର ଶାରୀରିକ କୁଶଳ ବିଷୟ ପଚାରିଲେ ଏବଂ ସେ ଭଲ ଅଛନ୍ତି ଜାଣି

କହିଲେ, 'ସେ ଅନେକ ଦିନ ଏଠାକୁ ଆସି ନାହିଁ, ତାକୁ ଦେଖିବାକୁ ଭାରି ଇଚ୍ଛା ହେଉଅଛି, ଥରେ ତାକୁ ଆସିବାକୁ କହିବ ।'

**ଠାକୁରଙ୍କର ସାରାରାତି ତୀବ୍ର ଉତ୍କଣ୍ଠା**
**ଦେଖି ପ୍ରେମାନନ୍ଦଙ୍କର ଚିନ୍ତା :**

''ଧର୍ମବିଷୟକ ନାନା କଥାବାର୍ତ୍ତାରେ କେତେଘଣ୍ଟା ବିଶେଷ ଆନନ୍ଦରେ କଟିଗଲା । ରାତି ଦଶଟା ହେବା ପରେ ଆମେ ଭୋଜନ କଲୁ ଏବଂ ଠାକୁରଙ୍କ ଘରର ପୂର୍ବଦିଗରେ—ଅଗଣାର ଉତ୍ତରରେ ଯେଉଁ ବାରଣ୍ଡା ସେଠାରେ ଶୟନ କଲୁ । ଠାକୁର ଏବଂ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ନିମନ୍ତେ ଘର ଭିତରେ ହିଁ ଶଯ୍ୟା ପ୍ରସ୍ତୁତ ହେଲା । ଶୋଇବାର ଘଣ୍ଟାଏ ହୋଇଛି କି ନାହିଁ ଠାକୁର ପିନ୍ଧିଥିବା ଲୁଗାଟିକୁ ପିଲାଙ୍କ ପରି କାଖରେ ଜାକି ଘର ବାହାରକୁ ଆସି ଆମର ବିଛଣା ନିକଟରେ ପହଞ୍ଚି ରାମଦୟାଲବାବୁଙ୍କୁ ସମ୍ବୋଧନ କରି କହିଲେ, 'ଆହେ, ଶୋଇପଡ଼ିଲଣି ନା କ'ଣ ?' ଆମେ ଉଭୟ ଅସ୍ତବ୍ୟସ୍ତ ହୋଇ ବିଛଣାରେ ଉଠି ବସି କହିଲୁ, 'ଆଜ୍ଞା ନା ।' ଏହାଶୁଣି ଠାକୁର କହିଲେ, 'ଦେଖ, ନରେନ୍ଦ୍ର ପାଇଁ ପ୍ରାଣ ଭିତରଟା ଯେପରି ଗାମୁଛା ଚିପୁଡ଼ିବା ପରି ଅତି ଜୋର୍‌ରେ ମୋଡ଼ି ହୋଇଯାଉଛି; ତାକୁ ଥରେ ଦେଖା କରିବାକୁ କହିବ; ସେ ଶୁଦ୍ଧ ସତ୍ତ୍ୱଗୁଣର ଆଧାର, ସାକ୍ଷାତ୍ ନାରାୟଣ; ତାକୁ ମଝିରେ ମଝିରେ ନ ଦେଖିଲେ ରହିପାରେ ନାହିଁ ।' ରାମଦୟାଲବାବୁ କିଛିଦିନ ଆଗରୁ ଦକ୍ଷିଣେଶ୍ୱର ଯିବା ଆସିବା କରୁଥିଲେ, ସେଥିପାଇଁ ଠାକୁରଙ୍କର ବାଳକ ପରି ସ୍ୱଭାବ କଥା ତାଙ୍କୁ ଅବିଦିତ ନ ଥିଲା । ସେ ଠାକୁରଙ୍କର ଏପରି ବାଳକ ସଦୃଶ ଆଚରଣ ଦେଖି ବୁଝିପାରିଲେ, ଠାକୁର ଭାବାବିଷ୍ଟ ହୋଇଛନ୍ତି, ଏବଂ ରାତି ପାହିଲେ ନରେନ୍ଦ୍ରଙ୍କ ସହିତ ଦେଖା କରି ତାକୁ ଆସିବାକୁ କହିବି ଇତ୍ୟାଦି ନାନା କଥା କହି ଠାକୁରଙ୍କୁ ଶାନ୍ତ କରିବାକୁ ଲାଗିଲେ । କିନ୍ତୁ ସେହି ରାତିରେ ଠାକୁରଙ୍କର ସେହି ଭାବ ଆଦୌ ପ୍ରଶମିତ ହେଲା ନାହିଁ । ଆମମାନଙ୍କର ବିଶ୍ରାମରେ ଅସୁବିଧା ହେଉଛି ବୁଝି ମଝିରେ ମଝିରେ କିଛି ସମୟ ପାଇଁ ନିଜ ଶଯ୍ୟାରେ ଶୋଇଲେ ମଧ୍ୟ, ପରକ୍ଷଣରେ ହିଁ ସେକଥା ଭୁଲି ପୁଣି ଆମ ନିକଟକୁ ଆସି ନରେନ୍ଦ୍ରଙ୍କର ଗୁଣର କଥା ଏବଂ ତାଙ୍କୁ ନ ଦେଖି ତାଙ୍କର ପ୍ରାଣରେ ଯେଉଁ ପ୍ରଚଣ୍ଡ ଯନ୍ତ୍ରଣା ହେଉଛି, ତାହା କରୁଣ ଭାବରେ ବ୍ୟକ୍ତ କରିବାକୁ ଲାଗିଲେ । ତାଙ୍କର ସେହି ପ୍ରକାର କାତରତା ଦେଖି ବିସ୍ମିତ ହୋଇ ମୁଁ ଭାବିବାକୁ ଲାଗିଲି, ଏହାଙ୍କର କି ଅଦ୍ଭୁତ ଭଲ ପାଇବା ଏବଂ ଯାହା ପାଇଁ ସେ ଏପରି ହେଉଛନ୍ତି ସେ ବ୍ୟକ୍ତି କେତେ କଠୋର ! ସେହି ରାତିଟି ସେହିପରି ଆମର ଅତିବାହିତ

ହୋଇଥିଲା । ପରେ ସକାଳ ହେବାରୁ ମନ୍ଦିରକୁ ଯାଇ ୵ଜଗଦମ୍ବାଙ୍କର ଦର୍ଶନ କରି ଠାକୁରଙ୍କ ଚରଣରେ ପ୍ରଣତ ହୋଇ ବିଦାୟଗ୍ରହଣପୂର୍ବକ ଆମେ କଲିକତା ଫେରି ଆସିଲୁ ।''

**ନରେନ୍ଦ୍ରଙ୍କ ପ୍ରତି ଠାକୁରଙ୍କ ଭଲ ପାଇବା ସମ୍ବନ୍ଧରେ ବୈକୁଣ୍ଠନାଥଙ୍କର ବକ୍ତବ୍ୟ :**

୧୮୮୩ ମସିହାର କୌଣସି ସମୟରେ ଥରେ ଆମର ଜନୈକ ବନ୍ଧୁ[୧] ଦକ୍ଷିଣେଶ୍ୱରରେ ପହଞ୍ଚି ଦେଖିଲେ, ନରେନ୍ଦ୍ରନାଥ ଅନେକ ଦିନ ଆସି ନାହାନ୍ତି ବୋଲି ଠାକୁର ବିଶେଷ ଉତ୍କଣ୍ଠିତ ହୋଇ ରହିଛନ୍ତି । ସେ କହିଥିଲେ, ''ସେଦିନ ଠାକୁରଙ୍କର ମନ ଯେପରି ନରେନ୍ଦ୍ରମୟ ହୋଇରହିଛି, ମୁହଁରେ ନରେନ୍ଦ୍ରଙ୍କର ଗୁଣଗାନ ବ୍ୟତୀତ ଅନ୍ୟ କଥା ନାହିଁ ! ମୋତେ ସମ୍ବୋଧନ କରି କହିଲେ, 'ଦେଖ, ନରେନ୍ଦ୍ର ଶୁଦ୍ଧସତ୍ତ୍ୱଗୁଣୀ; ମୁଁ ଦେଖିଛି ସେ ଅଖଣ୍ଡର ଘରର ଚାରିଜଣଙ୍କ ମଧ୍ୟରୁ ଜଣେ ଏବଂ ସପ୍ତଋଷିଙ୍କ ମଧ୍ୟରୁ ଜଣେ; ତାର କେତେଗୁଣ, ତାହାର ଗୁଣର ଶେଷ ନାହିଁ !' —କହୁ କହୁ ଠାକୁର ନରେନ୍ଦ୍ରନାଥଙ୍କୁ ଦେଖିବା ପାଇ ଅସ୍ଥିର ହୋଇଉଠିଲେ, ଏବଂ ପୁତ୍ରବିରହରେ ମାତା ଯେପରି କାତର ହୁଅନ୍ତି ସେହିପରି ଅଜସ୍ର ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ପରେ କୌଣସି ପ୍ରକାରରେ ନିଜକୁ ସଂଯତ କରିପାରୁ ନାହାନ୍ତି ଦେଖି ଏବଂ ଆମେ ତାଙ୍କର ଏପ୍ରକାର ବ୍ୟବହାରରେ କ'ଣ ଭାବିବୁ ମନେ କରି ଘରର ଉତ୍ତର ପଟ ବାରଣ୍ଡାକୁ ଦ୍ରୁତପଦରେ ଚାଲିଗଲେ ଏବଂ 'ମା'ଗୋ, ମୁଁ ତାକୁ ନ ଦେଖି ଆଉ ରହିପାରୁ ନାହିଁ,' ଇତ୍ୟାଦି ରୁଦ୍ଧସ୍ୱରରେ କହି କହି ଖୁବ୍ କ୍ରନ୍ଦନ କରଥିବାର ଆମେ ଶୁଣିବାକୁ ପାଇଲୁ । କିଛି ସମୟ ପରେ ନିଜକୁ କିଛିଟା ସଂଯତ କରି ସେ ଗୃହ ଭିତରେ ଆମ ନିକଟକୁ ଆସି ବସି କାତର-କରୁଣସ୍ୱରରେ କହିବାକୁ ଲାଗିଲେ, 'ଏତେ କାନ୍ଦିଲି, କିନ୍ତୁ ନରେନ୍ଦ୍ର ତ ଆସିଲା ନାହିଁ; ତାକୁ ଥରେ ଦେଖିବା ପାଇଁ ପ୍ରାଣରେ ଅସହ୍ୟ ଯନ୍ତ୍ରଣା ହେଉଅଛି, ଛାତି ଭିତରଟା ଯେପରି ମୋଡ଼ି ହୋଇଯାଉଛି; କିନ୍ତୁ ମୋର ଏହି ଅବସ୍ଥା କଥା ସେ କିଛି ବୁଝୁ ନାହିଁ' —ଏହିପରି କହୁ କହୁ ପୁଣି ଅସ୍ଥିର ହୋଇ ସେ ଘର ବାହାରକୁ ଚାଲିଗଲେ । କିଛି ସମୟ ପରେ ପୁଣି ଘରକୁ ଫେରି ଆସି କହିବାକୁ ଲାଗିଲେ, 'ବୁଢ଼ାଲୋକ, ତା' ପାଇଁ ଏପରି ଅସ୍ଥିର ହେଉଛି ଓ କାନ୍ଦୁଛି ଦେଖି ଲୋକମାନେ କ'ଣ କହିବେ, କହିଲ ? ତୁମେମାନେ ନିଜର ଲୋକ, ତୁମମାନଙ୍କ ପାଖରେ ଲାଜ ଲାଗେ ନାହିଁ, କିନ୍ତୁ ଅନ୍ୟମାନେ ଦେଖି କ'ଣ ଭାବିବେ କୁହତ ? ମାତ୍ର କୌଣସି

---

୧. ଶ୍ରୀଯୁକ୍ତ ବୈକୁଣ୍ଠନାଥ ସାନ୍ୟାଲ ।

ପ୍ରକାରରେ ସମ୍ଭାଳିପାରୁ ନାହିଁ !' ନରେନ୍ଦ୍ରଙ୍କ ପ୍ରତି ଠାକୁରଙ୍କର ଭଲ ପାଇବା ଦେଖି ଆମେ ଅବାକ ହୋଇରହିଲୁ ଏବଂ ଭାବିବାକୁ ଲାଗିଲୁ ନିଶ୍ଚୟ ନରେନ୍ଦ୍ର ଦେବତୁଲ୍ୟ ପୁରୁଷ ହୋଇଥିବେ, ନ ହେଲେ ତାଙ୍କ ପ୍ରତି ଠାକୁରଙ୍କର ଏତେ ଆକର୍ଷଣ କାହିଁକି ? ପରେ ଠାକୁରଙ୍କୁ ଶାନ୍ତ କରିବା ପାଇଁ କହିଲି, 'ଠିକ୍ ତ ମହାଶୟ, ତାଙ୍କର ଅତି ଅନ୍ୟାୟ ହୋଇଛି, ତାଙ୍କୁ ନ ଦେଖି ଆପଣଙ୍କର ଏତେ କଷ୍ଟ ହୁଏ — ଏକଥା ଜାଣି ମଧ୍ୟ ସେ ଆସୁ ନାହାନ୍ତି !' ଏହି ଘଟଣାର କିଛିଦିନ ପରେ ଅନ୍ୟ ଗୋଟିଏ ଦିନ ଠାକୁର ନରେନ୍ଦ୍ରଙ୍କ ସହିତ ମୋତେ ପରିଚୟ କରାଇ ଦେଇଥିଲେ । ନରେନ୍ଦ୍ରଙ୍କର ବିରହରେ ଠାକୁରଙ୍କୁ ଯେପରି ଅଧୀର ହେବାର ଦେଖିଛି ତାଙ୍କ ସହିତ ମିଳିତ ହୋଇ ସେପରି ଉଲ୍ଲସିତ ହେବାର ମଧ୍ୟ ଦେଖିଛି । ପୂର୍ବୋକ୍ତ ଘଟଣାର କିଛିକାଳ ପରେ ଠାକୁରଙ୍କର ଜନ୍ମତିଥି ଦିବସରେ ଦକ୍ଷିଣେଶ୍ୱର ଯାଇଥିଲି । ଭକ୍ତମାନେ ସେଦିନ ତାଙ୍କୁ ନୂତନ ବସ୍ତ୍ର, ସଚନ୍ଦନ-ପୁଷ୍ପ-ମାଲ୍ୟ ଇତ୍ୟାଦି ପିନ୍ଧାଇ ମନୋହର ବେଶରେ ସଜାଇଥିଲେ । ତାଙ୍କ ଘରର ପୂର୍ବରେ, ବଗିଚା ଆଡ଼କୁ ଥିବା ବାରଣ୍ଡାରେ କୀର୍ତ୍ତନ ହେଉଥିଲା । ଠାକୁର ଭକ୍ତଗଣପରିବୃତ ହୋଇ କୀର୍ତ୍ତନ ଶୁଣୁ ଶୁଣୁ ବେଳେ ବେଳେ କିଛି ସମୟ ପାଇଁ ଭାବାବିଷ୍ଟ ହେଉଥିଲେ, କେତେବେଳେ ବା ଗୋଟିଏ ଗୋଟିଏ ମଧୁର ସ୍ୱରରେ ପାଳିଧରି କୀର୍ତ୍ତନକୁ ଜମେଇ ଦେଉଥିଲେ; ମାତ୍ର ନରେନ୍ଦ୍ର ଆସି ନ ଥିବାରୁ ତାଙ୍କର ଆନନ୍ଦରେ ବ୍ୟାଘାତ ହେଉଥିଲା । ମଝିରେ ମଝିରେ ଚାରିଆଡ଼କୁ ଅନାଉଥିଲେ ଏବଂ ଆମମାନଙ୍କୁ କହୁଥିଲେ, 'କାହିଁ ନରେନ୍ଦ୍ର ତ' ଆସିଲା ନାହିଁ !' ପ୍ରାୟ ଦୁଇ ପ୍ରହର ବେଳ ହେବ, ଏପରି ସମୟରେ ନରେନ୍ଦ୍ର ଆସି ସଭାମଧ୍ୟରେ ତାଙ୍କର ପଦପ୍ରାନ୍ତରେ ପ୍ରଣତ ହେଲେ । ତାଙ୍କୁ ଦେଖିବା ମାତ୍ରେ ଠାକୁର ଏକାଥରକେ ଡେଇଁ ତାଙ୍କର କାନ୍ଧରେ ବସି ଗଭୀର ଭାବାବିଷ୍ଟ ହେଲେ । ପରେ ସହଜ ଅବସ୍ଥା ପ୍ରାପ୍ତ ହୋଇ ଠାକୁର ନରେନ୍ଦ୍ରଙ୍କ ସହିତ କଥାରେ ଏବଂ ତାଙ୍କୁ ଭୋଜନ କରାଇବାରେ ବ୍ୟସ୍ତ ରହିଲେ । ସେଦିନ ତାଙ୍କର ଆଉ କୀର୍ତ୍ତନ ଶୁଣିବା ହେଲା ନାହିଁ ।''

**ଠାକୁରଙ୍କର ବିଶେଷ ଭଲ ପାଇବାର ପାତ୍ର ହୋଇ ମଧ୍ୟ ନରେନ୍ଦ୍ରଙ୍କର ଅଟଳ ରହିବା ତାଙ୍କର ଉଚ୍ଚାଧିକାରିତ୍ୱର ପରିଚୟ :**

ଠାକୁରଙ୍କ ନିକଟକୁ ଆସି ଶ୍ରୀଯୁକ୍ତ ନରେନ୍ଦ୍ର ଯେଉଁ ଦେବଦୁର୍ଲ୍ଲଭ ପ୍ରେମର ଅଧିକାରୀ ହୋଇଥିଲେ, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ଏଥିରେ ଅବିଚଳିତ ରହି ସେ ଯେ ଯଥାର୍ଥ ସତ୍ୟଲାଭ ଆଶାରେ ଠାକୁରଙ୍କୁ ପରୀକ୍ଷା କରିବାକୁ ଅଗ୍ରସର ହୋଇଥିଲେ — ଏଥିରୁ ବୁଝାଯାଏ, ସତ୍ୟାନୁରାଗ ତାଙ୍କ ମଧ୍ୟରେ

କେତେଦୂର ପ୍ରବଳ ଥିଲା । ଅନ୍ୟପକ୍ଷରେ ଠାକୁର ଯେ ନରେନ୍ଦ୍ରଙ୍କର ସେହି ପ୍ରକାର ବ୍ୟବହାରରେ କ୍ଷୁଣ୍ଣ ନ ହୋଇ ଶିଷ୍ୟର କଲ୍ୟାଣ ନିମିତ୍ତ ପରୀକ୍ଷା ପ୍ରଦାନପୂର୍ବକ ତାଙ୍କୁ ଆଧ୍ୟାତ୍ମିକ ସମସ୍ତ ବିଷୟ ଉପଲବ୍ଧି କରାଇଦେବାକୁ ପରମ ଆନନ୍ଦରେ ଅଗ୍ରସର ହୋଇଥିଲେ, ଏଥିରେ ତାଙ୍କର ନିରଭିମାନିତ୍ୱ ଏବଂ ମହାନୁଭବତ୍ୱର କଥା ଅନୁଧାବନ କଲେ ବିସ୍ମୟର ସୀମା ରହେ ନାହିଁ । ସେହିପରି ନରେନ୍ଦ୍ରଙ୍କ ସହିତ ଠାକୁରଙ୍କର ସମ୍ବନ୍ଧ କଥା ଆମେ ଯେତେ ଆଲୋଚନା କରିବା ସେତେ ହିଁ ଏକପକ୍ଷରେ ପରୀକ୍ଷା କରିନେବାର ଏବଂ ଅନ୍ୟ ପକ୍ଷରେ ପରୀକ୍ଷା ପ୍ରଦାନପୂର୍ବକ ଉଚ୍ଚ ଆଧ୍ୟାତ୍ମିକ ତତ୍ତ୍ୱସକଳ ଉପଲବ୍ଧି କରାଇଦେବାର ଆଗ୍ରହ ଦେଖି ମୁଗ୍ଧ ହେବା, ଏବଂ ବୁଝିପାରିବା, ଯଥାର୍ଥ ଗୁରୁ ଉଚ୍ଚ ଅଧିକାରୀ ବ୍ୟକ୍ତିଙ୍କ ଭାବ ରକ୍ଷା କରି କିପରି ଭାବରେ ଶିକ୍ଷାଦାନ ନିମନ୍ତେ ଅଗ୍ରସର ହୁଅନ୍ତି ଏବଂ ପରିଣାମରେ କିପରି ତାଙ୍କର ହୃଦୟରେ ଚିରକାଳ ପାଇଁ ଶ୍ରଦ୍ଧା ଓ ପୂଜାର ସ୍ଥାନ ଅଧିକାର କରି ବସନ୍ତି ।

# ଷଷ୍ଠ ଅଧ୍ୟାୟ–ପ୍ରଥମ ପାଦ

## ଠାକୁର ଓ ନରେନ୍ଦ୍ରନାଥଙ୍କର ଅଲୌକିକ ସମ୍ବନ୍ଧ

### ନରେନ୍ଦ୍ର ଠାକୁରଙ୍କର ପବିତ୍ର ସଙ୍ଗଲାଭ କେତେଦିନ କରିଥିଲେ :

ଦୀର୍ଘ ପାଞ୍ଚବର୍ଷ କାଳ ନରେନ୍ଦ୍ର ଠାକୁରଙ୍କର ପୂତ ସଙ୍ଗଲାଭରେ ଧନ୍ୟ ହୋଇଥିଲେ । ପାଠକ ହୁଏତ ଏଥିରୁ ବୁଝିବେ ଯେ, ଆମେ କହୁଅଛୁ ସେ ସେହି କେତେବର୍ଷ ନିରନ୍ତର ଦକ୍ଷିଣେଶ୍ୱରରେ ଠାକୁରଙ୍କର ଶ୍ରୀପଦପ୍ରାନ୍ତରେ ଅତିବାହିତ କରିଥିଲେ । ତାହା ନୁହେଁ । କଲିକତାବାସୀ ଅନ୍ୟ ସମସ୍ତ ଭକ୍ତଗଣଙ୍କ ପରି ସେ ମଧ୍ୟ ଏହି କେତେବର୍ଷ ଘରୁ ଠାକୁରଙ୍କ ନିକଟକୁ ଯିବାଆସିବା କରୁଥିଲେ । ତେବେ ଏକଥା ନିଶ୍ଚିତ ଯେ, ପ୍ରଥମରୁ ଠାକୁରଙ୍କର ଅଶେଷ ଭଲ ପାଇବାର ଅଧିକାରୀ ହୋଇଥିବାରୁ ଏହି କେତେବର୍ଷ ସେ ଘନ ଘନ ଦକ୍ଷିଣେଶ୍ୱରକୁ ଯାତାୟାତ କରୁଥିଲେ । ପ୍ରତି ସପ୍ତାହରେ ଥରେ ବା ଦୁଇଥର ସେଠାକୁ ଯିବା ଏବଂ ଅବସର ପାଇଲେ ହିଁ ଦୁଇଚାରିଦିନ ବା ତତୋଧିକ ସମୟ ସେଠାରେ ଅବସ୍ଥାନ କରିବା ନରେନ୍ଦ୍ରନାଥଙ୍କ ଜୀବନରେ କ୍ରମେ ଏକ ପ୍ରଧାନ କାର୍ଯ୍ୟ ହୋଇଉଠିଥିଲା । ବେଳେ ବେଳେ ଏହି ନିୟମର ଯେ ବ୍ୟତିକ୍ରମ ହେଉ ନ ଥିଲା, ତା ନୁହେଁ । କିନ୍ତୁ ଠାକୁର ତାଙ୍କ ପ୍ରତି ପ୍ରଥମରୁ ବିଶେଷ ଭାବରେ ଆକୃଷ୍ଟ ହୋଇ ତାହାଙ୍କୁ ଏହି ନିୟମ ବିଶେଷ ଭାଙ୍ଗିବାକୁ ଦେଇ ନ ଥିଲେ । କୌଣସି କାରଣରୁ ନରେନ୍ଦ୍ରନାଥ ଗୋଟିଏ ସପ୍ତାହ ଦକ୍ଷିଣେଶ୍ୱରକୁ ଆସି ନ ପାରିଲେ ଠାକୁର ତାଙ୍କୁ ଦେଖିବା ପାଇଁ ଏକାବେଳକେ ଅଧୀର ହୋଇଉଠୁଥିଲେ ଏବଂ ବାରମ୍ବାର ସମ୍ବାଦ ପଠାଇ ତାଙ୍କୁ ନିଜ ନିକଟକୁ ଡାକି ଆଣୁଥିଲେ, କିମ୍ବା ସ୍ୱୟଂ କଲିକତା ଆସି ତାଙ୍କ ସହିତ କେତେଘଣ୍ଟା ଅତିବାହିତ କରି ଫେରୁଥିଲେ । ଆମକୁ ଯେତେଦୂର ଜଣାଅଛି, ଠାକୁରଙ୍କ ସହିତ ପରିଚିତ ହେବାପରେ ପ୍ରଥମ ଦୁଇବର୍ଷ ନରେନ୍ଦ୍ରଙ୍କର ଦକ୍ଷିଣେଶ୍ୱରକୁ ନିୟମିତ ଭାବରେ ଯିବା ଆସିବାର ବେଶୀ କିଛି ବ୍ୟତିକ୍ରମ ହୋଇ ନ ଥିଲା । କିନ୍ତୁ ବି. ଏ. ପରୀକ୍ଷା ଦେବା ପରେ ୧୮୮୪ ମସିହାର ପ୍ରଥମ ଭାଗରେ ତାଙ୍କର ପିତାଙ୍କର ହଠାତ୍ ମୃତ୍ୟୁ ହେବାରୁ ସଂସାରର ସମସ୍ତ ଭାର ଯେତେବେଳେ ତାଙ୍କ ଉପରେ ପଡ଼ିଲା, ସେତେବେଳେ ନାନା କାରଣରୁ କିଛିଦିନ ପାଇଁ ସେ ପୂର୍ବୋକ୍ତ ନିୟମ ଭଙ୍ଗ କରିବାକୁ ବାଧ୍ୟ ହୋଇଥିଲେ ।

## ନରେନ୍ଦ୍ରଙ୍କ ସହିତ ଠାକୁରଙ୍କର ଉକ୍ତ ସମୟର ଆଚରଣର ପାଞ୍ଚଟି ବିଭାଗ :

ସେ ଯାହାହେଉ, ଉକ୍ତ ପାଞ୍ଚବର୍ଷ କାଳ ଠାକୁର ଯେଉଁଭାବରେ ନରେନ୍ଦ୍ରନାଥଙ୍କ ସହିତ ମିଳିତ ହୋଇଥିଲେ, ସେବିଷୟରେ ଆଲୋଚନା କରିବାକୁ ବସିଲେ ସେଥିରେ ପାଞ୍ଚଟି ପ୍ରଧାନ ବିଭାଗ ଦୃଷ୍ଟିଗୋଚର ହୁଏ —

୧ମ — ଦେଖାଯାଏ, ଠାକୁର ତାଙ୍କର ଅଲୌକିକ ଅନ୍ତର୍ଦୃଷ୍ଟି-ସହାୟରେ ପ୍ରଥମ ସାକ୍ଷାତରୁ ହିଁ ବୁଝିପାରିଥିଲେ ନରେନ୍ଦ୍ରଙ୍କ ସଦୃଶ ଉଚ୍ଚ ଅଧିକାରୀ ଆଧ୍ୟାତ୍ମିକ ରାଜ୍ୟରେ ବିରଳ ଏବଂ ବହୁକାଳସଞ୍ଚିତ ଗ୍ଲାନି ଦୂରପୂର୍ବକ ସନାତନଧର୍ମକୁ ଯୁଗୋପଯୋଗୀ କରି ସଂସ୍ଥାପନରୂପକ ଯେଉଁ କାର୍ଯ୍ୟରେ ଶ୍ରୀଶ୍ରୀଜଗଦମ୍ବା ତାଙ୍କୁ ନିଯୁକ୍ତ କରିଛନ୍ତି, ସେଥିରେ ବିଶେଷ ସହାୟତା କରିବା ପାଇଁ ହିଁ ଶ୍ରୀଯୁକ୍ତ ନରେନ୍ଦ୍ର ଜନ୍ମଗ୍ରହଣ କରିଛନ୍ତି ।

୨ୟ — ଅସୀମ ବିଶ୍ୱାସ ଓ ଭଲ ପାଇବାରେ ସେ ନରେନ୍ଦ୍ରନାଥଙ୍କୁ ଚିରକାଳ ପାଇଁ ଆବଦ୍ଧ କରିଥିଲେ ।

୩ୟ — ନାନା ଭାବରେ ପରୀକ୍ଷା କରି ସେ ବୁଝିଥିଲେ ଯେ, ତାଙ୍କର ଅନ୍ତର୍ଦୃଷ୍ଟି ନରେନ୍ଦ୍ରନାଥଙ୍କର ମହତ୍ତ୍ୱ ଏବଂ ଜୀବନର ଉଦ୍ଦେଶ୍ୟ ସମ୍ବନ୍ଧରେ ତାଙ୍କ ନିକଟରେ ମିଥ୍ୟା ସାକ୍ଷ୍ୟ ପ୍ରଦାନ କରି ନାହିଁ ।

୪ର୍ଥ — ନାନାଭାବରେ ଶିକ୍ଷା ପ୍ରଦାନପୂର୍ବକ ସେ ନରେନ୍ଦ୍ରନାଥଙ୍କୁ ଉକ୍ତ ସୁମହାନ ଜୀବନ-ଉଦ୍ଦେଶ୍ୟ-ସାଧନର ଉପଯୋଗୀ ଯନ୍ତ୍ରଭାବରେ ଗଢ଼ିଥିଲେ ।

୫ମ — ଶିକ୍ଷାର ପରିସମାପ୍ତି ହେଲେ ଅପରୋକ୍ଷ-ବିଜ୍ଞାନ-ସମ୍ପନ୍ନ ନରେନ୍ଦ୍ରନାଥଙ୍କୁ ସେ କିପରି ଭାବରେ ଧର୍ମସଂସ୍ଥାପନକାର୍ଯ୍ୟରେ ଅଗ୍ରସର ହେବାକୁ ହେବ, ସେବିଷୟରେ ଉପଦେଶ ପ୍ରଦାନପୂର୍ବକ ପରିଶେଷରେ ଉକ୍ତ କାର୍ଯ୍ୟର ଏବଂ ନିଜ ସଂଘର ଭାର ତାଙ୍କ ହସ୍ତରେ ନିଶ୍ଚିନ୍ତମନରେ ଅର୍ପଣ କରିଥିଲେ ।

## ଅଦ୍ଭୁତ ଦର୍ଶନଯୋଗୁଁ ଠାକୁରଙ୍କର ନରେନ୍ଦ୍ରନାଥଙ୍କ ଉପରେ ବିଶ୍ୱାସ ଓ ଭଲ ପାଇବା :

ଆମେ ଏହାପୂର୍ବରୁ କହିଛୁ, ନରେନ୍ଦ୍ରନାଥଙ୍କର ଦକ୍ଷିଣେଶ୍ୱର ଆଗମନର ସ୍ୱଳ୍ପକାଳ ପୂର୍ବରୁ ତାଙ୍କର ମହତ୍ତ୍ୱର ପରିଚାୟକ କେତୋଟି ଅଦ୍ଭୁତ ଦର୍ଶନ ଠାକୁରଙ୍କର ଅନ୍ତର୍ଦୃଷ୍ଟି-ସମ୍ମୁଖରେ ପ୍ରତିଭାତ ହୋଇଥିଲା । ସେଗୁଡ଼ିକ ପ୍ରଭାବରେ ହିଁ ଠାକୁର ନରେନ୍ଦ୍ରଙ୍କୁ ପ୍ରଥମରୁ ଅସୀମ ବିଶ୍ୱାସ ଓ ସ୍ନେହପୂର୍ଣ୍ଣ ନୟନରେ ନିରୀକ୍ଷଣ କରିଥିଲେ । ସେହି ବିଶ୍ୱାସ ଓ ସ୍ନେହ ତାଙ୍କ ହୃଦୟରେ ଆଜୀବନ ସମଭାବରେ ପ୍ରବାହିତ ଥାଇ ନରେନ୍ଦ୍ରନାଥଙ୍କୁ ତାଙ୍କ ପ୍ରେମପାଶରେ ଆବଦ୍ଧ କରିପକାଇଥିଲା । ତେଣୁ ବୁଝାଯାଉଛି, ବିଶ୍ୱାସ ଓ ଭଲପାଇବାର ମୂଳଦୂଆ ଉପରେ ସର୍ବଦା

ଦଣ୍ଡାୟମାନ ରହି ଠାକୁର ନରେନ୍ଦ୍ରଙ୍କୁ ଶିକ୍ଷାପ୍ରଦାନ ଓ ବେଳେ ବେଳେ ପରୀକ୍ଷା କରିବାକୁ ଅଗ୍ରସର ହୋଇଥିଲେ ।

**ନରେନ୍ଦ୍ରଙ୍କୁ ପରୀକ୍ଷା କରିବାର କାରଣ :**

ପ୍ରଶ୍ନ ଉଠିପାରେ, ଯୋଗଦୃଷ୍ଟି–ସହାୟରେ ନରେନ୍ଦ୍ରନାଥଙ୍କର ମହତ୍ତ୍ୱ ଏବଂ ଜୀବନର ଉଦ୍ଦେଶ୍ୟ ଜାଣିପାରି ମଧ୍ୟ ଠାକୁର ତାଙ୍କୁ ପରୀକ୍ଷା କରିବାକୁ କାହିଁକି ଅଗ୍ରସର ହୋଇଥିଲେ ? ଉତ୍ତରରେ କୁହାଯାଇପାରେ, ମାୟାର ଅଧିକାରରେ ପ୍ରବିଷ୍ଟ ହୋଇ ଦେହଧାରଣ କଲେ ସାଧାରଣ ମାନବର କଥା କ'ଣ — ଠାକୁରଙ୍କ ପରି ଦେବ–ମାନବମାନଙ୍କ ଦୃଷ୍ଟି ମଧ୍ୟ ଅଳ୍ପ ବହୁତ ପରିଚ୍ଛିନ୍ନ ହୋଇ ଦୃଷ୍ଟ–ବିଷୟରେ ଭ୍ରମ–ସମ୍ଭାବନା ଆଣି ଦେଇଥାଏ । ସେଥିପାଇଁ ବେଳେ ବେଳେ ଏପରି ପରୀକ୍ଷାର ଆବଶ୍ୟକ ହୋଇଥାଏ । ଠାକୁର ଏବିଷୟରେ ଆମମାନଙ୍କୁ ବୁଝାଇବାକୁ ଯାଇ କହୁଥିଲେ, "ଖାଦ ନ ରହିଲେ ଅଳଙ୍କାର ତିଆରି ହୁଏ ନାହିଁ", ଅର୍ଥାତ୍ ବିଶୁଦ୍ଧ ସ୍ୱର୍ଣ୍ଣ ସହିତ ଅନ୍ୟ ଧାତୁ ନ ମିଶାଇଲେ ଯେପରି ସେଥିରେ ଅଳଙ୍କାର ଗଠନ କରି ହୁଏ ନାହିଁ, ସେହିପରି ଜ୍ଞାନପ୍ରକାଶକ ଶୁଦ୍ଧସତ୍ତ୍ୱଗୁଣ ସହିତ ରଜଃ ଓ ତମୋଗୁଣ କିଞ୍ଚିତ୍ ମାତ୍ର ମିଳିତ ନ ହେଲେ ସେଥିରୁ ଅବତାରପୁରୁଷମାନଙ୍କ ସଦୃଶ ଦେହ–ମନ ମଧ୍ୟ ଉତ୍ପନ୍ନ ହୋଇପାରେ ନାହିଁ । ଠାକୁରଙ୍କର ସାଧନକାଳର ଆଲୋଚନା କରିବାକୁ ଯାଇ ଆମେ ଏହାପୂର୍ବରୁ ଦେଖିଛୁ, ଶ୍ରୀଶ୍ରୀଜଗଦମ୍ବାଙ୍କର କୃପାରେ ଅଦ୍ଭୁତ ଜ୍ଞାନପ୍ରକାଶ ଉପସ୍ଥିତ ହୋଇ ଅଲୌକିକ ଦର୍ଶନସମୂହ ତାଙ୍କ ଜୀବନରେ ଆସିଥିଲେ ମଧ୍ୟ, ସେ ଅନେକ ସମୟରେ ଏହି ସମସ୍ତ ଦର୍ଶନ ସମ୍ବନ୍ଧରେ ସନ୍ଦିହାନ ହୋଇ ପୁନରାୟ ପରୀକ୍ଷା କରି ତେବେ ସେଗୁଡ଼ିକୁ ନିଶ୍ଚିନ୍ତମନରେ ଗ୍ରହଣ କରିବାକୁ ସମର୍ଥ ହୋଇଥିଲେ । ତେଣୁ ନରେନ୍ଦ୍ରନାଥଙ୍କ ସମ୍ବନ୍ଧରେ ମଧ୍ୟ ତାଙ୍କର ଯେଉଁ ସମସ୍ତ ଅଦ୍ଭୁତ ଦର୍ଶନ ହୋଇଥିଲା ସେସବୁକୁ ମଧ୍ୟ ସେ ଯେ ପରୀକ୍ଷାପୂର୍ବକ ଗ୍ରହଣ କରିବେ ଏଥିରେ ବିଚିତ୍ର କ'ଣ ଅଛି ?

**ଠାକୁର ନରେନ୍ଦ୍ରନାଥଙ୍କୁ ଯେଉଁ ଭାବରେ ଦେଖୁଥିଲେ :**

ନରେନ୍ଦ୍ରନାଥଙ୍କ ପ୍ରତି ଠାକୁରଙ୍କର ଆଚରଣର ପାଞ୍ଚଟି ବିଭିନ୍ନ ବିଭାଗ ପୂର୍ବୋକ୍ତରୂପରେ ନିର୍ଦ୍ଦିଷ୍ଟ ହୋଇଥିଲେ ମଧ୍ୟ, ସେଗୁଡ଼ିକ ଭିତରେ ବିଶ୍ୱାସ ଓ ଭଲପାଇବା, ପରୀକ୍ଷା ଏବଂ ଶିକ୍ଷାପ୍ରଦାନରୂପକ ତିନୋଟି ବିଭାଗର କାର୍ଯ୍ୟ ଯେ ପ୍ରାୟ ଯୁଗପତ୍ ଆରମ୍ଭ ହୋଇଥିଲା, ଏହା ସ୍ୱୀକାର କରିବାକୁ ହୁଏ । ଉକ୍ତ ତିନୋଟି ବିଭାଗ ମଧ୍ୟରେ ପ୍ରଥମ ବିଭାଗର କାର୍ଯ୍ୟର, କିମ୍ବା ନରେନ୍ଦ୍ରନାଥଙ୍କ ପ୍ରତି ଠାକୁରଙ୍କର ଅସୀମ ବିଶ୍ୱାସ ଓ ଭଲ ପାଇବାର ପରିଚୟ ଆମେ ପାଠକଙ୍କୁ ଏହାପୂର୍ବରୁ ସଂକ୍ଷେପରେ ପ୍ରଦାନ କରିଅଛୁ । ସେହି ବିଷୟର ଆହୁରି ଅନେକ କଥା ଆମକୁ ପରେ କହିବାକୁ ହେବ । କାରଣ, ଏବେଠାରୁ ଠାକୁରଙ୍କର ଜୀବନ

ନରେନ୍ଦ୍ରଙ୍କର ଜୀବନ ସହିତ ଯେଉଁ ପ୍ରକାର ବିଶେଷ ଭାବରେ ଜଡ଼ିତ ହୋଇଥିଲା, ତାଙ୍କର ଶ୍ରୀଚରଣାଶ୍ରିତ ଅନ୍ୟ କୌଣସି ଭକ୍ତଙ୍କର ଜୀବନ ସହିତ ତାହା ଏହାପୂର୍ବରୁ ଆଉ କେବେ ସେହି ପ୍ରକାର ମିଳିତ ହୋଇ ନ ଥିଲା । କଥିତ ଅଛି, ଭଗବାନ ଈଶା ତାଙ୍କର କୌଣସି ଶିଷ୍ୟପ୍ରବରଙ୍କ ସହିତ ମିଳିତ ହେବା ମାତ୍ରେ କହିଥିଲେ, ''ପର୍ବତ ସଦୃଶ ଅଚଳ ଅଟଳ ଶ୍ରଦ୍ଧାସମ୍ପନ୍ନ ଏହି ପୁରୁଷଙ୍କର ଜୀବନକୁ ମୂଳଦୂଆ ସ୍ୱରୂପ ଅବଲମ୍ବନ କରି ମୁଁ ମୋର ଆଧ୍ୟାତ୍ମିକ ମନ୍ଦିର ଗଢ଼ିବି !'' ନରେନ୍ଦ୍ରଙ୍କ ସହିତ ମିଳିତ ହୋଇ ଠାକୁରଙ୍କ ମନରେ ମଧ୍ୟ ସେହିପ୍ରକାର ଭାବ ଦୈବପ୍ରେରଣାରେ ପ୍ରଥମରୁ ହିଁ ଉପସ୍ଥିତ ହୋଇଥିଲା । ଠାକୁର ଦେଖିଥିଲେ, ନରେନ୍ଦ୍ର ତାଙ୍କର ବାଳକ, ତାଙ୍କର ସଖା, ତାଙ୍କର ଆଦେଶ ପାଳନ କରିବାକୁ ହିଁ ସଂସାରରେ ଜନ୍ମଗ୍ରହଣ କରିଛନ୍ତି, ଏବଂ ସେ ଦୁଇଜଣଙ୍କର ଜୀବନ ପୂର୍ବରୁ ଚିରକାଳ ପାଇଁ ପ୍ରଣୟୀଯୁଗଳ ସଦୃଶ ଅବିଚ୍ଛିନ୍ନ ପ୍ରେମବନ୍ଧନରେ ସମ୍ବନ୍ଧ ହୋଇରହିଅଛି !—ତେବେ, ସେହି ପ୍ରେମ ଉଚ୍ଚ ଆଧ୍ୟାତ୍ମିକ ପ୍ରେମ—ଯାହା ପ୍ରେମାସ୍ପଦକୁ ସର୍ବପ୍ରକାର ସ୍ୱାଧୀନତା ପ୍ରଦାନ କରି ମଧ୍ୟ ଯୁଗଯୁଗ ନିଜର କରି ରଖିଥାଏ, ଯେଉଁଥିରେ ନିଜ ପାଇଁ କିଛି ନ ମାଗି ପରସ୍ପର ପରସ୍ପରକୁ ଯଥାସର୍ବସ୍ୱଦାନରେ ହିଁ କେବଳ ପରିତୃପ୍ତି ଲାଭ କରିଥାଏ । ବାସ୍ତବରେ ଠାକୁର ଓ ନରେନ୍ଦ୍ରନାଥଙ୍କ ମଧ୍ୟରେ ଆମେ ଅହେତୁକ ପ୍ରେମର ଯେଉଁପ୍ରକାର ଅଭିନୟ ଦେଖିଛୁ, ସଂସାର ଏହାପୂର୍ବରୁ ସେହିପ୍ରକାର କେବେ ଦେଖିଛି କି ନାହିଁ ସନ୍ଦେହ । ସେହି ଅଲୌକିକ ପ୍ରେମ ଅଭିନୟର କଥା ପାଠକଙ୍କୁ ଯଥାଯଥଭାବରେ ବୁଝାଇବାକୁ ଆମର ସାମର୍ଥ୍ୟ କେଉଁଠି ? ତଥାପି ସତ୍ୟ ପ୍ରକଟ କରିବା ପାଇଁ ଏହାର ଆଭାସ ପ୍ରଦାନର ଚେଷ୍ଟା ମାତ୍ର କରି ଆମେ ନରେନ୍ଦ୍ରନାଥଙ୍କ ସହିତ ଠାକୁରଙ୍କର ସର୍ବପ୍ରକାର ଆଚରଣର ଆଲୋଚନାରେ ପ୍ରବୃତ୍ତ ହେଉଛୁ ।

**ନରେନ୍ଦ୍ରଙ୍କ ସମ୍ବନ୍ଧରେ ସାଧାରଣ ଲୋକଙ୍କର ଭ୍ରମଧାରଣା :**

ଠାକୁରଙ୍କର ଏକନିଷ୍ଠା ତ୍ୟାଗ ଏବଂ ପବିତତ୍ରା ଦେଖି ନରେନ୍ଦ୍ରନାଥ ଯେପରି ତାଙ୍କ ପ୍ରତି ପ୍ରଥମ ଦିନରୁ ଆକୃଷ୍ଟ ହୋଇଥିଲେ, ସେପରି ଠାକୁର ମଧ୍ୟ ବୋଧହୁଏ ଯୁବକ ନରେନ୍ଦ୍ରଙ୍କର ଅସୀମ ଆତ୍ମବିଶ୍ୱାସ, ତେଜସ୍ୱୀତା ଏବଂ ସତ୍ୟପ୍ରିୟତା-ଦର୍ଶନରେ ମୁଗ୍ଧ ହୋଇ ପ୍ରଥମ ଦର୍ଶନରୁ ତାଙ୍କୁ ଆପଣାର କରିନେଇଥିଲେ । ଯୋଗଦୃଷ୍ଟି-ସହାୟରେ ନରେନ୍ଦ୍ରଙ୍କର ମହତ୍ତ୍ୱ ଓ ଉଜ୍ଜ୍ୱଳ ଭବିଷ୍ୟତ ସମ୍ବନ୍ଧରେ ଠାକୁର ଯାହା ଦର୍ଶନ କରିଥିଲେ, ତାହା ଗଣନାରେ ନ ଆଣି ଯଦି ଆମେ ଏହି ଦୁଇ ମହାପୁରୁଷଙ୍କର ପରସ୍ପର ପ୍ରତି ଅଦ୍ଭୁତ ଆକର୍ଷଣର କାରଣ-ଅନ୍ୱେଷଣରେ ପ୍ରବୃତ୍ତ ହେଉ ତା'ହେଲେ ପୂର୍ବୋକ୍ତ କଥାଗୁଡ଼ିକ ହିଁ ପ୍ରତୀୟମାନ ହୁଏ । ଅନ୍ତର୍ଦୃଷ୍ଟିଶୂନ୍ୟ ଜନସାଧାରଣ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କର ଅଦ୍ଭୁତ ଆତ୍ମବିଶ୍ୱାସକୁ ଦମ୍ଭ ବୋଲି, ଅସୀମ ତେଜସ୍ୱୀତାକୁ ଔଦ୍ଧତ୍ୟ ବୋଲି ଏବଂ କଠୋର

ସତ୍ୟପ୍ରିୟତାକୁ ମିଥ୍ୟାଛଳନା ଅଥବା ଅପରିଣତ ବୁଦ୍ଧିର ନିଦର୍ଶନ ବୋଲି ଧାରଣା କରିଥିଲେ । ଲୋକପ୍ରଶଂସାଲାଭରେ ତାଙ୍କର ଏକାନ୍ତ ଉଦାସୀନତା, ସ୍ପଷ୍ଟବାଦିତା, ସର୍ବବିଷୟରେ ନିଃସଙ୍କୋଚ ସ୍ୱାଧୀନ ବ୍ୟବହାର ଏବଂ ସର୍ବୋପରି କୌଣସି କାର୍ଯ୍ୟ କାହା ଭୟରେ ଗୋପନ ନ କରିବା ଇତ୍ୟାଦିରୁ ହିଁ ସେମାନେ ଯେ ସେହି ପ୍ରକାର ମୀମାଂସାରେ ଉପନୀତ ହୋଇଥିଲେ, ଏକଥା ନିଃସନ୍ଦେହ । ଆମର ମନେ ଅଛି, ଶ୍ରୀଯୁକ୍ତ ନରେନ୍ଦ୍ରଙ୍କ ସହିତ ପରିଚିତ ହେବା ପୂର୍ବରୁ ତାଙ୍କର ଜନୈକ ପ୍ରତିବେଶୀ ତାଙ୍କ କଥା ଉଲ୍ଲେଖ କରି ଦିନେ ଆମମାନଙ୍କୁ କହିଥିଲେ, ''ସେହି ଘରେ ଗୋଟିଏ ଯୁବକ ଅଛି, ତା ପରି ଉଦଣ୍ଡ ପିଲା କେଉଁଠି ଦେଖି ନାହିଁ; ବି.ଏ. ପାଶ୍ କରିଛି ବୋଲି ଧରାକୁ ସରା ମନେକରେ, ବାପା-ଦାଦାଙ୍କ ସାମନାରେ ହିଁ ତବଲା ବଜାଇ ଗୀତ ଗାଇବା ଆରମ୍ଭ କରେ, ପଡ଼ାର ବୟୋଜ୍ୟେଷ୍ଠମାନଙ୍କର ସାମନାରେ ହିଁ ଚୁରଟ (ସିଗାରେଟ ପରି ଏକ ଧୂମପାନ) ଟାଣି ଚାଲେ—ସବୁ ବିଷୟରେ ତା'ର ଏପରି ବ୍ୟବହାର !'' ଏହାର ସ୍ୱଳ୍ପକାଳ ପରେ ଠାକୁରଙ୍କର ଶ୍ରୀପଦପ୍ରାନ୍ତରେ ଉପସ୍ଥିତ ହୋଇ ଦିନେ—ବୋଧହୁଏ ସେଦିନ ଆମେ ଦ୍ୱିତୀୟ ବା ତୃତୀୟ ଥର ଦକ୍ଷିଣେଶ୍ୱର ଆସି ତାଙ୍କର ପୁଣ୍ୟ-ଦର୍ଶନଲାଭରେ ଧନ୍ୟ ହୋଇଥିଲୁ—ଆମେ ଠାକୁରଙ୍କ ମୁହଁରୁ ନରେନ୍ଦ୍ରନାଥଙ୍କର ଗୁଣାନୁବାଦ ଏହିପରି ଶୁଣିବାକୁ ପାଇଥିଲୁ—

## ଶ୍ରୀରାମକୃଷ୍ଣଙ୍କଠାରୁ ଗ୍ରନ୍ଥକାରଙ୍କ ନରେନ୍ଦ୍ରନାଥଙ୍କ ବିଷୟରେ ପ୍ରଶଂସା-ଶ୍ରବଣ :

ରତନ ନାମକ ଯଦୁଲାଲ ମଲ୍ଲିକଙ୍କର ଉଦ୍ୟାନ-ଗୃହର ପ୍ରଧାନ କର୍ମଚାରୀ ସହିତ କଥା କହୁ କହୁ ଆମକୁ ଦେଖାଇ ଠାକୁର କହିଥିଲେ, ''ଏସବୁ ପିଲାମାନେ ମନ୍ଦ ନୁହନ୍ତି, ଦେଢ଼ଟା ପାଶ୍ କରିଛନ୍ତି (ଏଫ୍. ଏ. ପାଶ କରିବା ପାଇଁ ସେବର୍ଷ ଆମେ ପ୍ରସ୍ତୁତ ହେଉଥିଲୁ), ଶାନ୍ତ, ଶିଷ୍ଟ; କିନ୍ତୁ ନରେନ୍ଦ୍ରପରି ଆଉ ଗୋଟିଏ ପିଲା ଦେଖିବାକୁ ପାଇଲି ନାହିଁ ! —ଯେପରି ଗାଇବାରେ-ବଜାଇବାରେ, ସେପରି ପାଠପଢ଼ାରେ, ସେପରି କହିବା-ବୋଲିବାରେ, ପୁଣି ସେପରି ଧର୍ମବିଷୟରେ ! ସେ ସାରା ରାତି ଧ୍ୟାନ କରେ, ଧ୍ୟାନ କରୁ କରୁ ସକାଳ ହୋଇଯାଏ, ହୋସ୍ ନ ଥାଏ ! —ମୋ ନରେନ୍ଦ୍ର ଭିତରେ ଟିକିଏ ବି ଭେଜାଲ ନାହିଁ । ବଜାଇ ଦେଖ, ଟଂ ଟଂ କରୁଛି ! ଆଉ ସବୁ ପିଲାମାନଙ୍କୁ ଦେଖେ, ଯେପରି ପ୍ରାଣାନ୍ତକ ଚେଷ୍ଟା କରି କୌଣସି ପ୍ରକାରେ ଦୁଇ ତିନୋଟି ପାଶ୍ କରିଛନ୍ତି, ବାସ୍, ସେହି ପର୍ଯ୍ୟନ୍ତ—ସେତିକି କରିବାକୁ ହିଁ ଯେପରି ସେମାନଙ୍କର ସମସ୍ତ ଶକ୍ତି ବାହାରି ଯାଇଛି । ନରେନ୍ଦ୍ରର କିନ୍ତୁ ସେପରି ନୁହେଁ, ହସି-ଖେଳି ସବୁ କାମ କରେ, ପାଶ୍ କରିବାଟା ଯେପରି ତା ପାଖରେ କିଛି ନୁହେଁ ! ସେ ବ୍ରାହ୍ମ ସମାଜକୁ ଯାଏ, ସେଠାରେ ଭଜନ ଗାଏ, କିନ୍ତୁ ଅନ୍ୟ ସମସ୍ତ ବ୍ରାହ୍ମଙ୍କ ପରି ନୁହେଁ—ସେ ଯଥାର୍ଥ ବ୍ରହ୍ମଜ୍ଞାନୀ । ଧ୍ୟାନ

କରିବାକୁ ବସିଲେ ତା'ର ଜ୍ୟୋତିଃଦର୍ଶନ ହୁଏ । ଏମିତି କ'ଣ ନରେନ୍ଦ୍ରକୁ ଏତେ ଭଲ ପାଏ ?'' ସେହିପରି ଶୁଣି ମୁଗ୍ଧ ହୋଇ ନରେନ୍ଦ୍ରନାଥଙ୍କ ସହିତ ପରିଚିତ ହେବା ଇଚ୍ଛାରେ ଆମେ ତାଙ୍କୁ ପଚାରିଥିଲୁ, ''ମହାଶୟ, ନରେନ୍ଦ୍ର କେଉଁଠି ରହନ୍ତି ?'' ଏହାର ଉତ୍ତରରେ ଠାକୁର କହିଥିଲେ, ''ନରେନ୍ଦ୍ର ବିଶ୍ୱନାଥ ଦତ୍ତଙ୍କର ପୁତ୍ର, ଘର ସିମଳାରେ ।'' ପରେ କଲିକତା ଫେରି ଅନୁସନ୍ଧାନ କରି ଜାଣିଲୁ, ଆମେ ଏହାପୂର୍ବରୁ ପ୍ରତିବେଶୀମାନଙ୍କ ନିକଟରୁ ଯାହାଙ୍କ ବିଷୟରେ ପୂର୍ବୋକ୍ତ ନିନ୍ଦାକଥା ଶୁଣିଥିଲୁ ସେହି ଯୁବକ ହିଁ ଠାକୁରଙ୍କର ବହୁ ପ୍ରଶଂସିତ ନରେନ୍ଦ୍ରନାଥ ! ବିସ୍ମିତ ହୋଇ ଆମେ ସେଦିନ ଭାବିଥିଲୁ, ବାହାରର କେତେଗୁଡ଼ିଏ କାର୍ଯ୍ୟମାତ୍ର ଅବଲମ୍ବନ କରି ଆମେ ବେଳେ ବେଳେ ଅନ୍ୟମାନଙ୍କ ସମ୍ବନ୍ଧରେ କେତେ ଅନ୍ୟାୟ ସିଦ୍ଧାନ୍ତ କରିଥାଉ !

### ପ୍ରଥମ ଦର୍ଶନ ଦିନରେ ନରେନ୍ଦ୍ରନାଥଙ୍କ ସମ୍ବନ୍ଧରେ ଗ୍ରନ୍ଥକାରଙ୍କର ଭ୍ରମଧାରଣା :

ପୂର୍ବୋକ୍ତ ପ୍ରସଙ୍ଗରେ ଆଉ ଗୋଟିଏ କଥା ଏଠାରେ କହିଲେ ମନ୍ଦ ହେବ ନାହିଁ । ଠାକୁରଙ୍କର ଶ୍ରୀମୁଖରୁ ନରେନ୍ଦ୍ରନାଥଙ୍କର ସେପ୍ରକାର ଗୁଣାନୁବାଦ ଶୁଣିବାର କେତେ ମାସ ପୂର୍ବରୁ ଜନୈକ ବନ୍ଧୁଙ୍କ ଘରେ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କର ଦର୍ଶନଲାଭ ଦିନେ ଆମମାନଙ୍କ ଭାଗ୍ୟରେ ହୋଇଥିଲା । ସେଦିନ ତାଙ୍କୁ କେବଳ ଦର୍ଶନ ହିଁ କରିଥିଲୁ, ଭ୍ରମଧାରଣାବଶତଃ ତାଙ୍କ ସହିତ ଆଳାପ କରିବାକୁ ଅଗ୍ରସର ହେଲୁ ନାହିଁ । କିନ୍ତୁ ତାଙ୍କର ସେହି ଦିନର କଥାଗୁଡ଼ିକ ଆମମାନଙ୍କ ସ୍ମୃତିରେ ଏପରି ଗଭୀର ଭାବରେ ରହିଯାଇଛି ଯେ, ଏତେକାଳ ପରେ ମଧ୍ୟ ସେହି ସବୁକଥା ଯେପରି ଗତକାଲି ଶୁଣିବା ପରି ମନେହୁଏ । କଥାଗୁଡ଼ିକ କହିବା ପୂର୍ବରୁ ଯେଉଁ ଅବସ୍ଥାରେ ଆମେ ଏସବୁ ଶୁଣିଥିଲୁ, ସେବିଷୟରେ କିଛି ଆଭାସ ପାଠକଙ୍କୁ ଦେବା କର୍ତ୍ତବ୍ୟ; ନ ହେଲେ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କ ସମ୍ବନ୍ଧରେ ସେଦିନ କାହିଁକି ଆମମାନଙ୍କ ମନରେ ଭ୍ରମଧାରଣା ହୋଇଥିଲା, ସେକଥା ବୁଝିହେବ ନାହିଁ ।

### ଜନୈକ ବନ୍ଧୁଙ୍କ ଘରେ ନରେନ୍ଦ୍ରଙ୍କ ସହିତ ପ୍ରଥମ ସାକ୍ଷାତ :

ଯେଉଁ ବନ୍ଧୁଙ୍କ ଘରେ ଆମେ ସେଦିନ ଶ୍ରୀଯୁକ୍ତ ନରେନ୍ଦ୍ରନାଥଙ୍କୁ ଦେଖିଥିଲୁ, ସେ ସେତେବେଳେ କଲିକତାର ସିମଳାପଲ୍ଲୀସ୍ଥିତ ଗୌରମୋହନ ମୁଖାର୍ଜୀ ଲେନ୍‌ରେ ନରେନ୍ଦ୍ରଙ୍କର ବାସଭବନ ସମ୍ମୁଖରେ ଗୋଟିଏ ଦୁଇତାଲା ଘର ଭଡ଼ାନେଇ ରହୁଥିଲେ । ସ୍କୁଲରେ ପଢ଼ିବା ସମୟରେ ଆମେ ଚାରି–ପାଞ୍ଚ ବର୍ଷ ସହପାଠୀ ଥିଲୁ । ପ୍ରବେଶିକା ପରୀକ୍ଷା ଦେବାର ଦୁଇବର୍ଷ ପୂର୍ବରୁ ସେ ବିଲାତ ଯିବେ ବୋଲି ମୁମ୍ବାଇ ପର୍ଯ୍ୟନ୍ତ ଯାଇଥିଲେ । କିନ୍ତୁ ନାନା କାରଣରୁ ଦରିଆ ପାରି ଯିବାରେ ଅସମର୍ଥ ହୋଇ ଗୋଟିଏ ସମ୍ବାଦପତ୍ରର ସମ୍ପାଦକ ହୋଇଥିଲେ ଏବଂ

ବେଳେ ବେଳେ ବଙ୍ଗଳାରେ ପ୍ରବନ୍ଧ ଓ କବିତା ଲେଖି ପୁସ୍ତକ ପ୍ରଣୟନ କରୁଥିଲେ । କିଛିଦିନ ତଳେ ସେ ବିବାହ କରିଥିଲେ ଏବଂ ଏହି ଘଟଣା ପରେ ନାନା ଲୋକଙ୍କ ମୁହଁରୁ ଶୁଣିବାକୁ ପାଇଥିଲୁ, ତାଙ୍କର ସ୍ୱଭାବ ଉଚ୍ଛୃଙ୍ଖଳ ହୋଇଯାଇଛି ଏବଂ ନାନା ଅସଦୁପାୟରେ ଅର୍ଥ ଉପାର୍ଜନ କରିବାକୁ ସେ କୁଣ୍ଠିତ ହେଉ ନାହାନ୍ତି । ଏଘଟଣା ସତ୍ୟ କି ମିଥ୍ୟା ତାହା ଜାଣିବା ପାଇଁ ହିଁ ଆମେ ସେଦିନ ହଠାତ୍ ତାଙ୍କ ଘରେ ପହଞ୍ଚିଥିଲୁ ।

## ଏହି ସମୟରେ ନରେନ୍ଦ୍ରଙ୍କର ବାହ୍ୟିକ ଆଚରଣ :

ଭୃତ୍ୟ ଦ୍ୱାରା ଖବର ପଠାଇ ଆମେ ବାହାର ଘରେ ବସିଅଛୁ, ଏହି ସମୟରେ ଜଣେ ଯୁବକ ହଠାତ୍ ସେଇ ଘରେ ପ୍ରବେଶ କଲେ ଏବଂ ଗୃହସ୍ୱାମୀଙ୍କର ପୂର୍ବ ପରିଚିତ ପରି ନିଃସଙ୍କୋଚରେ ନିକଟସ୍ଥ ଗୋଟିଏ ତକିଆରେ ଅର୍ଦ୍ଧଶାୟିତ ହୋଇ ଗୋଟିଏ ହିନ୍ଦୀ ଗୀତର କିଛି ଅଂଶ ଗୁଣୁ ଗୁଣୁ କରି ଗାଇବାକୁ ଲାଗିଲେ । ଯେତେଦୂର ମନେଅଛି, ଗୀତଟି ଶ୍ରୀକୃଷ୍ଣଙ୍କ ବିଷୟରେ, କାରଣ, 'କାହ୍ନାଇ' ଓ 'ବାଂଶରୀ' (ବଂଶୀ) ଏହି ଦୁଇଟି ଶବ୍ଦ ସ୍ପଷ୍ଟ ଶୁଣାଯାଉଥିଲା । ସୌଖୀନ ନ ହେଲେ ମଧ୍ୟ, ଯୁବକଙ୍କର ପରିଷ୍କାର ପରିଚ୍ଛଦ, କେଶର ପାରିପାଟ୍ୟ ଏବଂ ଉନ୍ମନା ଦୃଷ୍ଟି ସହିତ 'କୃଷ୍ଣଙ୍କ ବଂଶୀ'ର ଗୀତ ଓ ଆମମାନଙ୍କର ଉଚ୍ଛୃଙ୍ଖଳ ବନ୍ଧୁଙ୍କ ସହ ଘନିଷ୍ଠତାର ସଂଯୋଗ କରିନେଇ ଆମେ ତାଙ୍କୁ ବିଶେଷ ସୁନୟନରେ ଦେଖିପାରିଲୁ ନାହିଁ । ଘର ମଧ୍ୟରେ ଆମେମାନେ ଯେ ବସିଅଛୁ ସେବିଷୟରେ କିଛି ମାତ୍ର ଭ୍ରୂକ୍ଷେପ ନ କରି, ତାଙ୍କୁ ସେହିପ୍ରକାର ନିଃସଙ୍କୋଚ ବ୍ୟବହାର ଓ ପରେ ତମାଖୁ ସେବନ କରିବା ଦେଖି ଆମେ ଧାରଣା କରିବସିଲୁ, ଆମମାନଙ୍କର ଉଚ୍ଛୃଙ୍ଖଳ ବନ୍ଧୁଙ୍କର ଇଏ ଜଣେ ବିଶ୍ୱସ୍ତ ଅନୁଚର ଏବଂ ଏପରି ଲୋକ ସହିତ ମିଶି ହିଁ ତାଙ୍କର ଅଧଃପତନ ହୋଇଅଛି । ସେ ଯାହାହେଉ, ଘର ଭିତରେ ଆମମାନଙ୍କର ଅସ୍ତିତ୍ୱ ଦେଖି ମଧ୍ୟ ସେ ସେହି ପ୍ରକାର ବିଶେଷ ଉଦାସୀନତା ଅବଲମ୍ବନ କରି ନିଜ ଭାବରେ ରହିବାରୁ, ଆମେ ମଧ୍ୟ ତାଙ୍କ ସହିତ ପରିଚିତ ହେବାକୁ ଅଗ୍ରସର ହେଲୁ ନାହିଁ ।

## ବନ୍ଧୁଙ୍କ ସହିତ ନରେନ୍ଦ୍ରଙ୍କର ସାହିତ୍ୟ–ସମ୍ବନ୍ଧୀୟ ଆଲୋଚନା :

କିଛି ସମୟ ପରେ ଆମମାନଙ୍କର ବାଲ୍ୟବନ୍ଧୁ ବାହାରକୁ ଆସିଲେ ଏବଂ ବହୁଦିନ ପରେ ପରସ୍ପର ସାକ୍ଷାତ୍‌ଲାଭ କଲେ ମଧ୍ୟ, ଆମକୁ ଗୋଟିଏ ଦୁଇଟି କଥା ପଚାରି ପୂର୍ବୋକ୍ତ ଯୁବକଙ୍କ ସହିତ ଆନନ୍ଦରେ ନାନାପ୍ରକାର ଆଳାପରେ ପ୍ରବୃତ୍ତ ହେଲେ । ତାଙ୍କର ସେପରି ଉଦାସୀନତା ଆମକୁ ଭଲ ଲାଗିଲା ନାହିଁ । ତଥାପି ହଠାତ୍ ବିଦାୟଗ୍ରହଣ କରିବା ଭଦ୍ରୋଚିତ ନୁହେଁ ଭାବି, ସାହିତ୍ୟସେବୀ ବନ୍ଧୁ ଯୁବକଙ୍କ ସହିତ ଇଂରାଜୀ ଏବଂ ବଙ୍ଗ ସାହିତ୍ୟ ସମ୍ବନ୍ଧରେ ଯେଉଁ ବାକ୍ୟାଳାପରେ

ନିଯୁକ୍ତ ହୋଇଥିଲେ, ଆମେ ତାହା ଶୁଣିବାକୁ ଲାଗିଲୁ । ଉନ୍ନତ ଶ୍ରେଣୀର ସାହିତ୍ୟ ଯଥାଯଥ ଭାବପ୍ରକାଶକ ହେବ, ଏହି ବିଷୟରେ ଉଭୟେ ଅନେକାଂଶରେ ଏକମତ ହୋଇ କଥା ଆରମ୍ଭ କଲେ ମଧ୍ୟ, ମନୁଷ୍ୟଜୀବନର ଯେକୌଣସି ପ୍ରକାର ଭାବପ୍ରକାଶକ ରଚନାକୁ ହିଁ ସାହିତ୍ୟ କହିବା ଉଚିତ୍ କି ନୁହେଁ, ସେବିଷୟରେ ସେମାନଙ୍କର ମତଭେଦ ଉପସ୍ଥିତ ହୋଇଥିଲା । ଯେତେଦୂର ମନେଅଛି, ସବୁପ୍ରକାରର ଭାବପ୍ରକାଶକ ରଚନାକୁ ହିଁ ସାହିତ୍ୟଶ୍ରେଣୀଭୁକ୍ତ କରିବା ପକ୍ଷରେ ଆମର ବନ୍ଧୁ ମତ ଦେଇଥିଲେ, ଏବଂ ଯୁବକ ସେହି ମତ ଖଣ୍ଡନପୂର୍ବକ ତାଙ୍କୁ ବୁଝାଇବାକୁ ଚେଷ୍ଟା କରି କହିଥଲେ ଯେ, 'ସୁ' ବା 'କୁ' ଯେକୌଣସି ପ୍ରକାର ଭାବ ଯଥାଯଥ ପ୍ରକାଶ କଲେ ମଧ୍ୟ ରଚନାବିଶେଷ ଯଦି ସୁରୁଚିସମ୍ପନ୍ନ ଏବଂ କୌଣସି ପ୍ରକାର ଉଚ୍ଚ ଆଦର୍ଶର ପ୍ରତିଷ୍ଠାପକ ନ ହୁଏ, ତାହାହେଲେ ତାହାକୁ ଆଦୌ ଉନ୍ନତ ଶ୍ରେଣୀର ସାହିତ୍ୟରେ ପରିଗଣିତ କରାଯାଇପାରିବ ନାହିଁ । ନିଜ ପକ୍ଷ ସମର୍ଥନ ପାଇଁ ଯୁବକ ସେତେବେଳେ 'ଚସର୍' (Chaucer)ଙ୍କଠାରୁ ଆରମ୍ଭ କରି ଯେତେ ଖ୍ୟାତନାମା ଇଂରାଜୀ ଓ ବଙ୍ଗଳା ସାହିତ୍ୟିକଙ୍କ ପୁସ୍ତକଗୁଡ଼ିକୁ ଉଲ୍ଲେଖ କରି ଗୋଟି ଗୋଟି କରି ଦେଖାଇବାକୁ ଲାଗିଲେ ସେମାନେ ସମସ୍ତେ ସେପରି କରି ହିଁ ସାହିତ୍ୟଜଗତରେ ଅମରତ୍ୱ ଲାଭ କରିଛନ୍ତି । ଉପସଂହାରରେ ଯୁବକ କହିଥିଲେ, '' 'ସୁ' ଏବଂ 'କୁ' ସମସ୍ତ ପ୍ରକାର ଭାବ ଉପଲବ୍ଧି କଲେ ମଧ୍ୟ, ମନୁଷ୍ୟ ତାହାର ଅନ୍ତରର ଆଦର୍ଶବିଶେଷକୁ ପ୍ରକାଶ କରିବାକୁ ହିଁ ସର୍ବଦା ସଚେଷ୍ଟ ରହିଥାଏ । ବିଶେଷ ଆଦର୍ଶର ଉପଲବ୍ଧି ଓ ପ୍ରକାଶ ନେଇ ମନୁଷ୍ୟମାନଙ୍କ ମଧ୍ୟରେ ଯେତେ ପ୍ରକାରର ତାରତମ୍ୟ ବିଦ୍ୟମାନ ଥାଏ । ଦେଖାଯାଏ, ସାଧାରଣ ମାନବ ରୂପରସାଦି ଭୋଗସମୂହକୁ ନିତ୍ୟ ଓ ସତ୍ୟ ବୋଲି ଭାବି ତାହା ଲାଭ କରିବା ହିଁ ସର୍ବଦା ଜୀବନର ଉଦ୍ଦେଶ୍ୟ କରି ନିଶ୍ଚିନ୍ତ ହୋଇ ବସିଅଛି—They idealise what is apparently real. ପଶୁମାନଙ୍କ ସହିତ ସେମାନଙ୍କର ପ୍ରଭେଦ ଖୁବ୍ କମ୍ । ସେମାନଙ୍କ ଦ୍ୱାରା ଉନ୍ନତଶ୍ରେଣୀର ସାହିତ୍ୟ ସୃଷ୍ଟି କଦାପି ହୋଇପାରେ ନାହିଁ । ଆଉ ଗୋଟିଏ ଶ୍ରେଣୀର ମନୁଷ୍ୟ ଅଛନ୍ତି, ଯେଉଁମାନେ ଆପାତନିତ୍ୟ ଭୋଗ ସୁଖାଦିଲାଭରେ ସନ୍ତୁଷ୍ଟ ରହି ନ ପାରି ଉଚ୍ଚରୁ ଉଚ୍ଚତର ସମସ୍ତ ଆଦର୍ଶ ଅନ୍ତରରେ ଅନୁଭବ କରି ବାହାରର ସମସ୍ତ ବିଷୟ ସେହି ଛାଞ୍ଚରେ ଗଢ଼ିବା ଚେଷ୍ଟାରେ ବ୍ୟସ୍ତ ରହିଛନ୍ତି—They want to realise the ideal. —ଏହିପରି ମନୁଷ୍ୟ ହିଁ ଯଥାର୍ଥ ସାହିତ୍ୟ ସୃଷ୍ଟି କରିଥାଏ । ଏମାନଙ୍କ ମଧ୍ୟରେ ପୁଣି ଯେଉଁମାନେ ସର୍ବୋଚ୍ଚ ଆଦର୍ଶ ଅବଲମ୍ବନ କରି ତାହାକୁ ଜୀବନରେ ପରିଣତ କରିବାକୁ ଚାହାଁନ୍ତି, ସେମାନଙ୍କୁ ପ୍ରାୟତଃ ସଂସାର ବାହାରକୁ ଯିବାକୁ ପଡ଼ିଥାଏ । ଏହିପରି ଆଦର୍ଶକୁ ଜୀବନରେ ପୂର୍ଣ୍ଣଭାବରେ ପରିଣତ କରିଥିବାର

ଦକ୍ଷିଣେଶ୍ୱରର ପରମହଂସଦେବଙ୍କୁ ହିଁ କେବଳ ଦେଖିଅଛି — ସେଥିପାଇଁ ହିଁ ତାଙ୍କୁ ଶ୍ରଦ୍ଧା କରିଥାଏ ।''

## ଏହାପରେ ଠାକୁରଙ୍କ ନିକଟରେ ନରେନ୍ଦ୍ରଙ୍କର ମହତ୍ତ୍ୱର ପରିଚୟ ଲାଭ :

ଯୁବକଙ୍କର ସେହିପରି ଗଭୀର ଭାବପୂର୍ଣ୍ଣ ବାକ୍ୟ ଏବଂ ପାଣ୍ଡିତ୍ୟରେ ସେଦିନ ଚମତ୍କୃତ ହେଲେ ମଧ୍ୟ, ଆମମାନଙ୍କର ବନ୍ଧୁଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ବନ୍ଧ ଦେଖି ତାଙ୍କ କଥାରେ ଓ କାର୍ଯ୍ୟରେ ମେଳ ନାହିଁ ଭାବି ଆମେ କ୍ଷୁଣ୍ଣ ହୋଇଥିଲୁ । ଏହାପରେ ବିଦାୟଗ୍ରହଣପୂର୍ବକ ଆମେ ସେହି ସ୍ଥାନରୁ ଚାଲି ଆସିଥିଲୁ । ସେହି ଘଟଣାର କେତେ ମାସ ପରେ ଆମେ ଠାକୁରଙ୍କ ନିକଟରୁ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କର ସଦ୍‌ଗୁଣଶ୍ରବଣରେ ମୁଗ୍ଧ ହୋଇ ତାଙ୍କ ସହିତ ପରିଚିତ ହେବାପାଇଁ ତାଙ୍କ ଘରେ ପହଞ୍ଚିଥିଲୁ ଏବଂ ପୂର୍ବରୁ ଦେଖିଥିବା ଯୁବକଙ୍କୁ ଠାକୁରଙ୍କର ବହୁପ୍ରଶଂସିତ ନରେନ୍ଦ୍ରନାଥ ବୋଲି ଜାଣିପାରି ବିସ୍ମୟସାଗରରେ ନିମଗ୍ନ ହୋଇଥିଲୁ ।

## ପ୍ରଥମ ଦେଖାରୁ ଠାକୁର ନରେନ୍ଦ୍ରଙ୍କୁ ବୁଝିପାରିବା :

ଗତାନୁଗତିକ ସ୍ୱଭାବସମ୍ପନ୍ନ ସାଧାରଣ ମାନବ ନରେନ୍ଦ୍ରନାଥଙ୍କର ସେହି ପ୍ରକାର ବାହ୍ୟ ଆଚରଣ ସବୁ ଦେଖି ତାଙ୍କୁ ଦାମ୍ଭିକ, ଉଦ୍ଧତ ଏବଂ ଅନାଚାରୀ ପ୍ରଭୃତି ଧାରଣା କଲେ ମଧ୍ୟ ଠାକୁର କିନ୍ତୁ ତାଙ୍କ ସମ୍ବନ୍ଧରେ କଦାପି ସେପରି ଭ୍ରମରେ ପଡ଼ି ନ ଥିଲେ । ପ୍ରଥମ ଦର୍ଶନ ସମୟରୁ ସେ ବୁଝିପାରିଥିଲେ, ନରେନ୍ଦ୍ରର ଦମ୍ଭ ଓ ଔଦ୍ଧତ୍ୟ ତାଙ୍କର ଅନ୍ତର୍ନିହିତ ଅସାଧାରଣ ମାନସିକ ଶକ୍ତିସମୂହର ଫଳସ୍ୱରୂପ ବିଶାଳ ଆତ୍ମବିଶ୍ୱାସରୁ ଜାତ, ତାଙ୍କର ନିରଙ୍କୁଶ ସ୍ୱାଧୀନ ଆଚରଣ ତାଙ୍କର ସ୍ୱାଭାବିକ ଆତ୍ମସଂଯମର ପରିଚାୟକ ବ୍ୟତୀତ ଅନ୍ୟ କିଛି ନୁହେଁ, ତାଙ୍କର ଲୋକମାନ୍ୟରେ ଉଦାସୀନତା ତାଙ୍କର ପୂତ ସ୍ୱଭାବର ଆତ୍ମପ୍ରସାଦରୁ ହିଁ ସମୁତ୍ଥିତ ହୋଇଥାଏ । ସେ ବୁଝିଥିଲେ, ଯଥା ସମୟରେ ନରେନ୍ଦ୍ରଙ୍କର ଅସାଧାରଣ ସ୍ୱଭାବ ସହସ୍ରଦଳ କମଳ ସଦୃଶ ପୂର୍ଣ୍ଣବିକଶିତ ହୋଇ ନିଜ ଅନୁପମ ଗୌରବ ଓ ମହିମାରେ ପ୍ରତିଷ୍ଠିତ ହେବ । ସେତେବେଳେ ତାପଦଗ୍ଧ ସଂସାରର ସଂଘର୍ଷରେ ଆସି ତାଙ୍କର ସେହି ଦମ୍ଭ ଓ ଔଦ୍ଧତ୍ୟ ଅସୀମ କରୁଣାରୂପରେ ପରିଣତ ହେବ, ତାଙ୍କର ଅଦୃଷ୍ଟପୂର୍ବ ଆତ୍ମବିଶ୍ୱାସ ହତାଶ ପ୍ରାଣରେ ବିଶ୍ୱାସର ପୁନଃପ୍ରତିଷ୍ଠା କରିବ, ତାଙ୍କର ସ୍ୱାଧୀନ ଆଚରଣ ସଂଯମରୂପକ ସୀମାରେ ସର୍ବଦା ଅବସ୍ଥିତ ରହି ଯଥାର୍ଥ ସ୍ୱାଧୀନତାଲାଭର ତାହା ହିଁ ଏକମାତ୍ର ପଥ ବୋଲି ଅନ୍ୟମାନଙ୍କୁ ନିର୍ଦ୍ଦେଶ କରିବ ।

**ଉଚ୍ଚ ଆଧାର ବୁଝି ନରେନ୍ଦ୍ରଙ୍କୁ ପ୍ରକାଶ୍ୟରେ ପ୍ରଶଂସା :**

ସେଥିପାଇଁ ଦେଖିବାକୁ ମିଳେ, ପ୍ରଥମ ପରିଚୟ ଦିନରୁ ହିଁ ଠାକୁର ସମସ୍ତଙ୍କ ନିକଟରେ ଶତମୁଖରେ ନରେନ୍ଦ୍ରଙ୍କର ପ୍ରଶଂସା କରୁଥିଲେ ! ପ୍ରକାଶ୍ୟଭାବରେ ସର୍ବଦା ପ୍ରଶଂସାଲାଭ କଲେ ଦୁର୍ବଳ ମନରେ ଅହଂକାର ବୃଦ୍ଧି ପାଇ ତାକୁ ବିନାଶ ପଥକୁ ଟାଣି ନେଇଥାଏ, ଏକଥା ବିଶେଷ ଭାବରେ ଜାଣି ମଧ୍ୟ ସେ ନରେନ୍ଦ୍ରନାଥଙ୍କ ସମ୍ବନ୍ଧରେ ଏହି ନିୟମର ବ୍ୟତିକ୍ରମ କରିଥିଲେ, ତା'ର କାରଣ — ସେ ନିଶ୍ଚିତରୂପରେ ବୁଝିଥିଲେ ନରେନ୍ଦ୍ରର ହୃଦୟ-ମନ ସେପରି ଦୁର୍ବଳତାର ଅନେକ ଊର୍ଦ୍ଧ୍ୱରେ ଅବସ୍ଥାନ କରୁଅଛି । ସେହି ବିଷୟରେ କେତୋଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କଲେ ପାଠକ ତାହା ବୁଝିପାରିବେ —

**ନରେନ୍ଦ୍ରଙ୍କର ଅନ୍ତର୍ନିହିତ ଶକ୍ତି ସମ୍ବନ୍ଧରେ ଠାକୁରଙ୍କର କଥା :**

ମହାମନସ୍ୱୀ ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ୍, ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ପ୍ରଭୃତି ଲବ୍ଧପ୍ରତିଷ୍ଠିତ ବ୍ରାହ୍ମନେତୃବର୍ଗ ଠାକୁରଙ୍କ ସହିତ ମିଳିତ ହୋଇ ଦିନେ ଏକାଠି ବସିଥିଲେ । ଯୁବକ ନରେନ୍ଦ୍ର ମଧ୍ୟ ସେଠାରେ ଉପବିଷ୍ଟ ଥିଲେ । ଠାକୁର ଭାବମୁଖରେ ଅବସ୍ଥିତ ହୋଇ ପ୍ରସନ୍ନ ମନରେ କେଶବ ଓ ବିଜୟଙ୍କ ପ୍ରତି ଦୃଷ୍ଟିପାତ କରିବାକୁ ଲାଗିଲେ । ପରେ ନରେନ୍ଦ୍ରନାଥଙ୍କ ପ୍ରତି ଦୃଷ୍ଟି ଆକୃଷ୍ଟ ହେବା ମାତ୍ରେ ତାଙ୍କର ଭାବୀ ଜୀବନର ଉଜ୍ଜ୍ୱଳ ଚିତ୍ର ତାଙ୍କର ମାନସପଟରେ ସହସା ଅଙ୍କିତ ହୋଇଉଠିଲା ଏବଂ ଏହା ସହିତ କେଶବପ୍ରମୁଖ ବ୍ୟକ୍ତିମାନଙ୍କର ପରିଣତ ଜୀବନର ତୁଳନା କରି ସେ ପରମସ୍ନେହରେ ନରେନ୍ଦ୍ରନାଥଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । ପରେ ସଭାଭଙ୍ଗ ହେବାରୁ କହିଲେ, ‘‘ଦେଖିଲି, କେଶବ ଯେପରି ଗୋଟିଏ ଶକ୍ତିର ବିଶେଷ ଉତ୍କର୍ଷରେ ଜଗତ ବିଖ୍ୟାତ ହୋଇଅଛି, ନରେନ୍ଦ୍ରେ ଭିତରେ ସେହିପରି ଅଠରଟି ଶକ୍ତି ପୂର୍ଣ୍ଣ ମାତ୍ରାରେ ବିଦ୍ୟମାନ ! ପୁଣି ଦେଖିଲି, କେଶବ ଓ ବିଜୟଙ୍କର ଅନ୍ତର ଦୀପଶିଖା ସଦୃଶ ଜ୍ଞାନାଲୋକରେ ଉଜ୍ଜ୍ୱଳ ରହିଅଛି; ପରେ ନରେନ୍ଦ୍ର ଆଡ଼କୁ ଚାହିଁ ଦେଖିଲି, ତାହା ଭିତରେ ଜ୍ଞାନ-ସୂର୍ଯ୍ୟ ଉଦିତ ହୋଇ ମାୟା-ମୋହର ଲେଶ ପର୍ଯ୍ୟନ୍ତ ସେଠାରୁ ଦୂରୀଭୂତ କରିଛି !'' ଅନ୍ତର୍ଦୃଷ୍ଟିଶୂନ୍ୟ ଦୁର୍ବଳଚେତା ମାନବ ଠାକୁରଙ୍କର ଶ୍ରୀମୁଖରୁ ଏପରି ପ୍ରଶଂସା ଲାଭ କଲେ, ଅହଂକାରରେ ସ୍ଫୀତ ହୋଇ ଆତ୍ମହରା ହୋଇପଡ଼ିଥାଆନ୍ତେ । କିନ୍ତୁ ନରେନ୍ଦ୍ରଙ୍କ ମନରେ ଏଥିରେ ସମ୍ପୂର୍ଣ୍ଣ ବିପରୀତ ଫଳ ଦେଖାଗଲା । ତାଙ୍କର ଅଲୌକିକ ଅନ୍ତର୍ଦୃଷ୍ଟିସମ୍ପନ୍ନ ମନ ସେଥିରେ ନିଜ ଭିତରେ ବୁଡ଼ି ଯାଇ, ଶ୍ରୀଯୁକ୍ତ କେଶବ ଓ ଶ୍ରୀଯୁକ୍ତ ବିଜୟଙ୍କର ଅଶେଷ ଗୁଣରାଜି ସହିତ ନିଜର ତତ୍କାଳିକ ମାନସିକ ଅବସ୍ଥାର ନିରପେକ୍ଷ ତୁଳନାରେ ପ୍ରବୃତ୍ତ ହେଲା, ଏବଂ ନିଜକୁ ଏପରି ପ୍ରଶଂସାଲାଭର ଅଯୋଗ୍ୟ ଦେଖି ଠାକୁରଙ୍କ କଥାର ତୀବ୍ର ପ୍ରତିବାଦ କରି କହି ଉଠିଲେ — ‘‘ମହାଶୟ, କ'ଣ କରୁଛନ୍ତି ? ଲୋକେ ଆପଣଙ୍କର ଏପରି

କଥା ଶୁଣି ଆପଣଙ୍କୁ ଉନ୍ମାଦ ବୋଲି ମନେ କରିବେ । କେଉଁଠି ଜଗତ୍ ବିଖ୍ୟାତ ଶ୍ରୀଯୁକ୍ତ କେଶବ ଏବଂ ମହାମନା ଶ୍ରୀଯୁକ୍ତ ବିଜୟ ଏବଂ କେଉଁଠି ମୋ ପରି ଜଣେ ନଗଣ୍ୟ ସ୍କୁଲ ପିଲା ! —ଆପଣ ସେମାନଙ୍କ ସହିତ ମୋର ତୁଳନା କରି ଆଉ ଏପରି କଥା କେବେ କହିବେ ନାହିଁ ।'' ଠାକୁର ଏଥିରେ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ କହିଥିଲେ, ''କ'ଣ କରିବି ରେ, ତୁ କ'ଣ ଭାବୁଛୁ ମୁଁ ଏପରି କହିଛି, ମା' (ଶ୍ରୀଶ୍ରୀଜଗଦମ୍ବା) ସେହିପରି ମୋତେ ଦେଖାଇଲେ, ସେଥିପାଇଁ କହିଲି; ମା'ତ ମୋତେ ସତ୍ୟ ଛଡ଼ା ମିଥ୍ୟା କେବେ ଦେଖାଇ ନାହାନ୍ତି, ତେଣୁ କହିଲି ।''

## ନରେନ୍ଦ୍ରଙ୍କର ଏହି କଥାର ପ୍ରତିବାଦ :

'ମା' ଦେଖାଇଲେ, ଓ କୁହାଇଲେ' କହିଲେ ମଧ୍ୟ ଠାକୁର ସେପରି ସ୍ଥଳରେ ନରେନ୍ଦ୍ରଙ୍କ ହାତରୁ ସର୍ବଦା ନିଷ୍କୃତି ପାଉଥିଲେ, ତାହା ନୁହେଁ । ତାଙ୍କର ସେପରି ଦର୍ଶନଗୁଡ଼ିକର ସତ୍ୟତା ସମ୍ବନ୍ଧରେ ସନ୍ଦିଗ୍ଧ ହୋଇ ସ୍ପଷ୍ଟବାଦୀ ନିର୍ଭୀକ ନରେନ୍ଦ୍ର ଅନେକ ସମୟରେ କହୁଥିଲେ, ''ମା ଦେଖାଇଥାନ୍ତି, ନା ଆପଣଙ୍କ ମସ୍ତିଷ୍କ-ପ୍ରସୂତ ଭାବନାରେ ଏପରି କଥା ଉପସ୍ଥିତ ହୁଏ, ତାହା କିଏ କହିପାରିବ ? ମୋର ଏପରି ହେଲେ ମୁଁ ନିଶ୍ଚୟ ବୁଝିଥାଆନ୍ତି, ମୋର ମଥାର ଖିଆଲରୁ ସେପରି ଦେଖୁଛି । ପାଶ୍ଚାତ୍ୟ ବିଜ୍ଞାନ ଓ ଦର୍ଶନ ଏକଥା ନିଃସନ୍ଦେହରେ ପ୍ରମାଣିତ କରିଅଛି ଯେ, ଚକ୍ଷୁ-କର୍ଣ୍ଣ ଇତ୍ୟାଦି ଇନ୍ଦ୍ରିୟମାନେ ଆମମାନଙ୍କୁ ଅନେକ ସ୍ଥଳରେ ପ୍ରତାରିତ କରିଥାନ୍ତି । ତଦୁପରି କୌଣସି ବିଶେଷ ବିଷୟ ଦେଖିବା ପାଇଁ ବାସନା ଯଦି ଆମମାନଙ୍କ ମନରେ ସତତ ଜାଗରିତ ଥାଏ, ତା'ହେଲେ ତ କଥା ସରିଲା, ସେମାନେ (ଇନ୍ଦ୍ରିୟମାନେ) ଆମମାନଙ୍କୁ ପ୍ରତିପଦରେ ପ୍ରତାରିତ କରିଥାନ୍ତି । ଆପଣ ମୋତେ ସ୍ନେହ କରନ୍ତି ଏବଂ ସବୁ ବିଷୟରେ ମୋତେ ବଡ଼ ଦେଖିବାକୁ ଇଚ୍ଛା କରନ୍ତି—ସେଥିପାଇଁ ହୁଏତ ଆପଣଙ୍କର ସେହିପ୍ରକାର ଦର୍ଶନଗୁଡ଼ିକ ଆସି ଉପସ୍ଥିତ ହୁଏ ।''

## ନରେନ୍ଦ୍ରଙ୍କର ତର୍କଶକ୍ତିରେ ମୁଗ୍ଧ ହୋଇ ଠାକୁରଙ୍କର ଜଗନ୍ମାତାଙ୍କୁ ପ୍ରଶ୍ନ :

ଏପରି କହି ନରେନ୍ଦ୍ର ପାଶ୍ଚାତ୍ୟ ଶାରୀର-ବିଜ୍ଞାନରେ ସ୍ୱସଂବେଦ୍ୟ ଦର୍ଶନସମୂହ ସମ୍ବନ୍ଧରେ ଯେଉଁ ସମସ୍ତ ଅନୁସନ୍ଧାନ ଓ ଗବେଷଣା ଅଛି ଏବଂ ଯେଉଁ ଭାବରେ ସେଗୁଡ଼ିକୁ ଭ୍ରମସଙ୍କୁଳ ବୋଲି ପ୍ରମାଣିତ କରାଯାଇଛି, ସେହି ସମସ୍ତ ବିଷୟ ନାନା ଦୃଷ୍ଟାନ୍ତ ସାହାଯ୍ୟରେ ଠାକୁରଙ୍କୁ ବେଳେ ବେଳେ ବୁଝାଇବାକୁ ଅଗ୍ରସର ହେଉଥିଲେ । ଠାକୁରଙ୍କର ମନ ଯେତେବେଳେ ଉଚ୍ଚ ଭାବଭୂମିରେ ଅବସ୍ଥାନ କରୁଥିଲା, ସେତେବେଳେ ନରେନ୍ଦ୍ରଙ୍କର ଏପରି ବାଳ-ସୁଲଭ ଚେଷ୍ଟାକୁ ସତ୍ୟନିଷ୍ଠାର ପରିଚାୟକ ମାତ୍ର ଭାବି ସେ ତାଙ୍କ ଉପରେ ଅଧିକତର ପ୍ରସନ୍ନ

ହେଉଥିଲେ । କିନ୍ତୁ ସାଧାରଣ ଭାବଭୂମିରେ ଅବସ୍ଥାନ କାଳରେ ନରେନ୍ଦ୍ରଙ୍କର ତୀକ୍ଷ୍ଣ ଯୁକ୍ତିଗୁଡ଼ିକ ଠାକୁରଙ୍କର ବାଳକସଦୃଶ ସ୍ୱଭାବସମ୍ପନ୍ନ ସରଳ ମନକୁ ଅଭିଭୂତ କରି ବେଳେ ବେଳେ ଅତ୍ୟନ୍ତ ଚିନ୍ତିତ କରିଦେଉଥିଲା । ସେତେବେଳେ ମୁଗ୍ଧ ହୋଇ ସେ ଭାବୁଥିଲେ, 'ଠିକ୍ ତ, କାୟମନୋବାକ୍ୟରେ ସତ୍ୟପରାୟଣ ନରେନ୍ଦ୍ର ତ ମିଥ୍ୟା କହିବାର ପିଲା ନୁହେଁ; ତା'ପରି ଦୃଢ଼ ସତ୍ୟନିଷ୍ଠ ବ୍ୟକ୍ତିମାନଙ୍କ ମନରେ ସତ୍ୟ ବ୍ୟତୀତ ମିଥ୍ୟା ସଂକଳ୍ପର ଉଦୟ ହୁଏ ନାହିଁ, ଏକଥା ଶାସ୍ତ୍ରରେ ମଧ୍ୟ ଅଛି; ତେବେ କ'ଣ ମୋର ଦର୍ଶନସମୂହରେ ଭ୍ରମର ସମ୍ଭାବନା ଅଛି ?' ପୁଣି ଭାବନ୍ତି, 'କିନ୍ତୁ ମୁଁ ତ' ଏହାପୂର୍ବରୁ ନାନାପ୍ରକାର ପରୀକ୍ଷା କରି ଦେଖିଛି, ମା' (ଶ୍ରୀଶ୍ରୀଜଗଦମ୍ବା) ମୋତେ ସତ୍ୟ ବ୍ୟତିତ ମିଥ୍ୟା କେବେହେଲେ ଦେଖାଇ ନାହାନ୍ତି ଏବଂ ତାଙ୍କର ଶ୍ରୀମୁଖରୁ ବାରମ୍ବାର ଆଶ୍ୱାସ ମଧ୍ୟ ପାଇଛି, ତେବେ ସତ୍ୟପ୍ରାଣ ନରେନ୍ଦ୍ର ମୋର ଦର୍ଶନଗୁଡ଼ିକୁ ମଥାର ଖିଆଲରେ ଉପସ୍ଥିତ ହେଉଛି, ଏକଥା କାହିଁକି କହୁଛି ?—କାହିଁକି କହିବା ମାତ୍ରକେ ତା'ର ମନ ସେସମସ୍ତ ସତ୍ୟବୋଲି ଉପଲବ୍ଧି କରୁ ନାହିଁ ?'

ଏପରି ଭାବନାରେ ପଡ଼ି ଏହାର ମୀମାଂସା ନିମିତ୍ତ ଠାକୁର ଅବଶେଷରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ସେହି କଥା ପଚାରିଲେ ଏବଂ ତାଙ୍କ ଶ୍ରୀମୁଖରୁ ଏପରି ଆଶ୍ୱାସନା-ବାଣୀ ଶୁଣି ତେବେ ନିଶ୍ଚିନ୍ତ ହେଲେ ଯେ, ''ତା'ର (ନରେନ୍ଦ୍ରର) କଥା ଶୁଣୁଛୁ କାହିଁକି ? କିଛିଦିନ ପରେ ସେ ଏସମସ୍ତ କଥା ସତ୍ୟ ବୋଲି ମାନିବ'' । ଦୃଷ୍ଟାନ୍ତସ୍ୱରୂପ ଏଠାରେ ଦିନକର ଘଟଣା ଉଲ୍ଲେଖ କଲେ ହିଁ ପାଠକଙ୍କର ପୂର୍ବୋକ୍ତ ବିଷୟ ହୃଦୟଙ୍ଗମ ହେବ ।

### ଏହି ବିଷୟକ ଦୃଷ୍ଟାନ୍ତ—ସାଧାରଣ ସମାଜକୁ ଠାକୁର ନରେନ୍ଦ୍ରଙ୍କୁ ଦେଖିବା ପାଇଁ ଆସିବା :

ସେତେବେଳେ କୁଚ୍‌ବିହାର-ବିବାହରେ ମତଭେଦ ନେଇ ବ୍ରାହ୍ମଗଣ ଦୁଇ ଦଳରେ ବିଭକ୍ତ ହୋଇଥାନ୍ତି ଏବଂ ସାଧାରଣ ବ୍ରାହ୍ମ ସମାଜର ପ୍ରତିଷ୍ଠା କେତେବର୍ଷ ହେଲା ହୋଇଛି । ନରେନ୍ଦ୍ରନାଥ ଶ୍ରୀଯୁକ୍ତ କେଶବଙ୍କ ନିକଟକୁ ବେଳେ ବେଳେ ଯିବା ଆସିବା କଲେ ମଧ୍ୟ ସାଧାରଣ ସମାଜରେ ହିଁ ନିୟମିତ ଭାବରେ ଯୋଗଦାନପୂର୍ବକ ରବିବାରେ ଉପାସନା ସମୟରେ ସେଠାରେ ଭଜନ ଇତ୍ୟାଦି କରୁଥାଆନ୍ତି । କୌଣସି କାରଣବଶତଃ ନରେନ୍ଦ୍ର ଏହି ସମୟରେ ଗୋଟିଏ-ଦୁଇଟି ସପ୍ତାହ ଦକ୍ଷିଣେଶ୍ୱରରେ ଠାକୁରଙ୍କ ପାଖକୁ ଯାଇପାରି ନ ଥିଲେ । ଠାକୁର ପ୍ରତିଦିନ ତାଙ୍କର ଆଗମନକୁ ପ୍ରତୀକ୍ଷା କରି ନିରାଶ ହୋଇ ସ୍ଥିର କଲେ, ସ୍ୱୟଂ କଲିକତା ଯାଇ ନରେନ୍ଦ୍ରଙ୍କୁ ଦେଖି ଆସିବେ । ପରେ ମନେ ପଡ଼ିଲା, ସେଦିନ ରବିବାର—ନରେନ୍ଦ୍ର ଯଦି କାହା ସହିତ ଦେଖାକରିବାକୁ କେଉଁଠାକୁ ଯାଇଥିବେ ଏବଂ କଲିକତା ଯାଇ ମଧ୍ୟ ତାର

ଦେଖା ନ ମିଳେ ? ସେତେବେଳେ ସ୍ଥିର କଲେ, ସାଧାରଣବ୍ରାହ୍ମସମାଜର ସନ୍ଧ୍ୟା ଉପାସନା ସମୟରେ ସେ ଭଜନ ଗାଇବାକୁ ନିଶ୍ଚିତ ଯାଇଥିବେ, ସେଠାକୁ ଗଲେ ହିଁ ତାକୁ ଦେଖିବାକୁ ପାଇବି । ପୁଣି ଭାବିଲେ, ହଠାତ୍ ସମାଜରେ ଯାଇ ପହଞ୍ଚିଲେ ବ୍ରାହ୍ମ ଭକ୍ତମାନଙ୍କର ଅସନ୍ତୋଷର କାରଣ ହେବି ନାହିଁ ତ ? ପରମୁହୂର୍ତ୍ତରେ ମନେ ହେଲା —କାହିଁକି, କେଶବଙ୍କର ସମାଜରେ ସେହିପରି ଉପସ୍ଥିତ ହୋଇ ମଧ୍ୟ ସେମାନଙ୍କ ସନ୍ତୋଷ ଭିନ୍ନ ଅସନ୍ତୋଷ ତ ଦେଖି ନାହଁ ଏବଂ ବିଜୟ, ଶିବନାଥ ପ୍ରଭୃତି ସାଧାରଣ ସମାଜର ନେତୃବୃନ୍ଦ ତ' ଦକ୍ଷିଣେଶ୍ୱର ସେହିପରି ଅନେକ ଥର ଆସିଛନ୍ତି ? ଠାକୁରଙ୍କର ସରଳ ମନ ସେହି ପ୍ରକାର ସରଳ ଭାବରେ ସେହି କଥା ମୀମାଂସା କରିବା ସମୟରେ ଗୋଟିଏ ବିଷୟ ସ୍ମରଣ କରିବାକୁ ବିସ୍ମୃତ ହେଲା । ତାଙ୍କର ସଂସ୍ପର୍ଶରେ ଆସି ଶ୍ରୀଯୁକ୍ତ କେଶବ ଓ ବିଜୟଙ୍କର ଧର୍ମ-ସମ୍ବନ୍ଧୀୟ ମତର ପରିବର୍ତ୍ତନ ଲକ୍ଷ୍ୟପୂର୍ବକ ଶିବନାଥପ୍ରମୁଖ ସାଧାରଣ ସମାଜଭୁକ୍ତ ବ୍ରାହ୍ମଗଣ ଅନେକେ ଯେ ତାଙ୍କ ନିକଟକୁ ପୂର୍ବପରି ଯିବା ଆସିବା କ୍ରମଶଃ ଛାଡ଼ି ଦେଇଛନ୍ତି, ଏବିଷୟ ଠାକୁରଙ୍କ ମନରେ କ୍ଷଣକାଳ ପାଇଁ ମଧ୍ୟ ଉଦିତ ହେଲା ନାହିଁ । ଏହା ନ ହେବାର ହିଁ କଥା—କାରଣ, ଈଶ୍ୱରଙ୍କ ପ୍ରତି ତୀବ୍ର ଅନୁରାଗରେ ମାନବ-ମନ ଉଚ୍ଚ ଭାବ-ଭୂମିରେ ଆରୋହଣପୂର୍ବକ ତାଙ୍କର ପୂର୍ଣ୍ଣ କୃପାସୌଭାଗ୍ୟଲାଭରେ ଯେତେ ଅଗ୍ରସର ହେବ, ସେତେ ହିଁ ତାଙ୍କର ଏହାପୂର୍ବର ଧର୍ମମତଗୁଡ଼ିକ କ୍ରମଶଃ ପରିବର୍ତ୍ତିତ ହେବ, ଏହି ବିଷୟର ସତ୍ୟତା ସେ ଆଜୀବନ ପ୍ରାଣେ ପ୍ରାଣେ ଉପଲବ୍ଧି କରିଥିଲେ । ସତ୍ୟପ୍ରିୟ ବ୍ରାହ୍ମଗଣ ସତ୍ୟର ପ୍ରତିଷ୍ଠା ପାଇଁ ହିଁ ଏତେକାଳ ସଂଗ୍ରାମ କରିଆସୁଛନ୍ତି, ଅତଏବ ଆଧ୍ୟାତ୍ମିକ ଉପଲବ୍ଧିର ଇତି ନିର୍ଦ୍ଦେଶ କରିବାକୁ ସେମାନେ ଯେ ଏବେ ଭିନ୍ନ ପଥରେ ଅଗ୍ରସର ହେବେ, ଏକଥା ସେ କିପରି ବୁଝିବେ ?

## ତାଙ୍କର ସେଠାକୁ ଯିବାର ଫଳ :

ସନ୍ଧ୍ୟା ସମାଗତା । ଶତ ବ୍ରାହ୍ମଭକ୍ତଙ୍କର ପୂତ ହୃଦୟୋଚ୍ଛ୍ୱାସ 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ' ଇତ୍ୟାଦି ମନ୍ତ୍ରସହାୟରେ ଊର୍ଦ୍ଧ୍ୱରେ ଉତ୍ଥିତ ହୋଇ ଶ୍ରୀଭଗବାନଙ୍କର ଶ୍ରୀପାଦପଦ୍ମରେ ମିଳିତ ହେବାକୁ ଲାଗିଲା । କ୍ରମେ ଉପାସନା ଓ ଧ୍ୟାନ ପରିସମାପ୍ତ କରି ଈଶ୍ୱରାନୁରାଗ ଓ ଆଧ୍ୟାତ୍ମିକ ଐକାନ୍ତିକତା-ବୃଦ୍ଧି ନିମନ୍ତେ ଆଚାର୍ଯ୍ୟ ବେଦୀ ଉପରୁ ବ୍ରାହ୍ମସଂଘକୁ ସମ୍ବୋଧନପୂର୍ବକ ଉପଦେଶ ପ୍ରଦାନ କରିବାକୁ ଆରମ୍ଭ କଲେ । ଏପରି ସମୟରେ ଅର୍ଦ୍ଧବାହ୍ୟ-ଅବସ୍ଥାରେ ଠାକୁର ବ୍ରାହ୍ମମନ୍ଦିରରେ ପ୍ରବିଷ୍ଟ ହୋଇ ବେଦିରେ ଉପବିଷ୍ଟ ଆଚାର୍ଯ୍ୟଙ୍କ ଆଡ଼କୁ ଅଗ୍ରସର ହେବାକୁ ଲାଗିଲେ । ସମାଗତ ବ୍ୟକ୍ତିମାନଙ୍କ ମଧ୍ୟରେ ଅନେକେ ତାଙ୍କୁ ଏହା ପୂର୍ବରୁ ଦେଖିଥିଲେ । ସୁତରାଂ ତାଙ୍କର ସହସା ଆଗମନର ବାର୍ତ୍ତା ସଂଘ ମଧ୍ୟରେ ପ୍ରଚାରିତ ହେବାକୁ ବିଳମ୍ବ ହେଲା ନାହିଁ ଏବଂ ଏହାପୂର୍ବରୁ ଯେଉଁମାନେ ତାଙ୍କୁ କେବେ ଦର୍ଶନ

କରି ନ ଥିଲେ, ସେମାନଙ୍କ ମଧ୍ୟରୁ କେହି ଠିଆହୋଇ, କେହି ବା ବେଞ୍ଚ ଉପରେ ଉଠି ତାଙ୍କୁ ଦେଖିବାକୁ ଲାଗିଲେ । ତେଣୁ ସଂଘ ମଧ୍ୟରେ ବିଶୃଙ୍ଖଳା ଉପସ୍ଥିତ ହେବା ଦେଖି ଆଚାର୍ଯ୍ୟ ନିଜର କାର୍ଯ୍ୟରୁ ବିରତ ହେଲେ ଏବଂ ଭଜନମଣ୍ଡଳୀ ମଧ୍ୟରେ ଉପବିଷ୍ଟ ନରେନ୍ଦ୍ରନାଥ, ଠାକୁର ତାଙ୍କ ପାଇଁ ହଠାତ୍ ସେଠାରେ ଉପସ୍ଥିତ ହୋଇଛନ୍ତି ବୁଝିପାରି ତାଙ୍କ ପାଖରେ ପହଞ୍ଚିଲେ । କିନ୍ତୁ ବେଦୀସ୍ଥ ଆଚାର୍ଯ୍ୟ କିମ୍ବା ସମାଜସ୍ଥ ଅନ୍ୟ କୌଣସି ବିଶିଷ୍ଟ ବ୍ୟକ୍ତି ଆସି ଠାକୁରଙ୍କୁ ସାଦର ଆହ୍ୱାନ କରିବା ଦୂରରେ ଥାଉ, ତାଙ୍କୁ ବିଜୟକୃଷ୍ଣପ୍ରମୁଖ ବ୍ରାହ୍ମଗଣଙ୍କ ମଧ୍ୟରେ ପୂର୍ବୋକ୍ତ ମତଭେଦ ଆନୟନର କାରଣ ରୂପରେ ନିଶ୍ଚୟ କରି ତାଙ୍କ ପ୍ରତି ସାଧାରଣ ଶିଷ୍ଟାଚାର ପ୍ରଦର୍ଶନରେ ମଧ୍ୟ ସେଦିନ ଉଦାସୀନ ହୋଇରହିଲେ ।

### ଜନତାଙ୍କୁ ହଟାଇବା ପାଇଁ ଗ୍ୟାସ ଆଲୋକ ନିର୍ବାପିତ କରିବା :

ଠାକୁର କୌଣସି ଆଡ଼େ ଲକ୍ଷ୍ୟ ନ କରି ବେଦୀ ନିକଟରେ ପହଞ୍ଚିଲେ ଏବଂ ସମାଧିସ୍ଥ ହୋଇପଡ଼ିଲେ । ସେତେବେଳେ ତାଙ୍କର ଉକ୍ତ ଅବସ୍ଥା ଦେଖିବା ପାଇଁ ଉପସ୍ଥିତ ଜନସାଧାରଣଙ୍କର ଆଗ୍ରହବୃଦ୍ଧି ହେବାରୁ ପୂର୍ବ-ବିଶୃଙ୍ଖଳତାର ବୃଦ୍ଧି ହେଲା ସିନା ହ୍ରାସ ହେଲା ନାହିଁ; ଏବଂ ଏହାକୁ ବନ୍ଦ କରିବା ଅସମ୍ଭବ ଦେଖି ଜନତାଙ୍କୁ ହଟାଇବା ଉଦ୍ଦେଶ୍ୟରେ ସମାଜ-ଗୃହର ପ୍ରାୟ ସମସ୍ତ ଗ୍ୟାସ ଆଲୋକ ନିର୍ବାପିତ କରାହେଲା । ଫଳରେ ମନ୍ଦିର ବାହାରକୁ ଆସିବା ପାଇଁ ଅନ୍ଧକାରରେ ଜନତାଙ୍କ ମଧ୍ୟରେ ପ୍ରବଳ ଗଣ୍ଡଗୋଳ ଆରମ୍ଭ ହେଲା ।

### ନରେନ୍ଦ୍ରଙ୍କର ଠାକୁରଙ୍କୁ କୌଣସି ପ୍ରକାରରେ ବାହାରକୁ ଆଣିବା ଓ ଦକ୍ଷିଣେଶ୍ୱରରେ ପହଞ୍ଚାଇ ଦେବା :

ସମାଜସ୍ଥ କେହି ଠାକୁରଙ୍କୁ ସାଦରେ ଗ୍ରହଣ ନ କରିବା ଦେଖି ଶ୍ରୀଯୁକ୍ତ ନରେନ୍ଦ୍ର ଏହାପୂର୍ବରୁ ମର୍ମାହତ ହୋଇଥିଲେ । ଅନ୍ଧକାରରୁ କିପରି ତାଙ୍କୁ ମନ୍ଦିର ବାହାରକୁ ଆଣିବେ, ସେଥିପାଇଁ ସେ ଏବେ ଅତ୍ୟନ୍ତ ଚିନ୍ତିତ ହୋଇପଡ଼ିଲେ । ଅତଃପର ଠାକୁରଙ୍କର ସମାଧିଭଙ୍ଗ ହେବାମାତ୍ରେ ମନ୍ଦିରର ପଶ୍ଚାତ ଦ୍ୱାର ଦେଇ ସେ ତାଙ୍କୁ କୌଣସି ମତେ ବାହାରକୁ ଆଣି ତାଙ୍କ ସହିତ ଗାଡ଼ିରେ ବସି ତାଙ୍କୁ ଦକ୍ଷିଣେଶ୍ୱର ପହଞ୍ଚାଇ ଦେଲେ । ନରେନ୍ଦ୍ର କହିଥିଲେ, ''ମୋ ପାଇଁ ଠାକୁରଙ୍କୁ ସେଦିନ ଏପରି ଲାଞ୍ଛିତ ହେବାର ଦେଖି ମୋ ମନରେ କେତେ ଯେ ଦୁଃଖ-କଷ୍ଟ ହୋଇଥିଲା, ତାହା କହିବା ଅସମ୍ଭବ । ଏହି କାର୍ଯ୍ୟ ପାଇଁ ସେଦିନ ତାଙ୍କୁ କେତେ ଯେ ତିରସ୍କାର କରିଥିଲି । କିନ୍ତୁ ସେ ପୂର୍ବୋକ୍ତ ଘଟଣାରେ କ୍ଷୁଣ୍ଣ ହେଲେ ନାହିଁ କିମ୍ବା ମୋ କଥାରେ କର୍ଣ୍ଣପାତ ମଧ୍ୟ କଲେ ନାହିଁ ।

**ତାଙ୍କୁ ଭଲ ପାଇବାରୁ ନରେନ୍ଦ୍ରଙ୍କର ଠାକୁରଙ୍କୁ ତିରସ୍କାର ଓ ଜଗନ୍ମାତାଙ୍କ ବାଣୀ ଶ୍ରବଣ କରି ଠାକୁର ଆଶ୍ୱସ୍ତ ହେବା :**

''ମୋ ପ୍ରତି ଭଲ ପାଇବା ଯୋଗୁଁ ସେ ନିଜ ଆଡ଼କୁ କିଛିମାତ୍ର ଧ୍ୟାନ ଦେଇ ନ ଥାନ୍ତି ଦେଖି ତାଙ୍କ ଉପରେ ଅତ୍ୟନ୍ତ କଠୋର ବାକ୍ୟ ପ୍ରୟୋଗ କରିବାକୁ ମଧ୍ୟ କେବେ କୁଣ୍ଠିତ ହୋଇ ନାହିଁ । କହୁଥିଲି — ପୁରାଣରେ ଅଛି, ଭରତ ରାଜା 'ହରିଣ' ଭାବି ଭାବି ମୃତ୍ୟୁପରେ ହରିଣ ହୋଇଥିଲେ, ଏକଥା ଯଦି ସତ୍ୟ ହୋଇଥାଏ, ତା'ହେଲେ ଆପଣଙ୍କର ମୋ ବିଷୟରେ ଏତେ ଚିନ୍ତା କରିବାର ପରିଣାମ ଭାବି ସତର୍କ ହେବା ଉଚିତ୍ ! ବାଳକ ସଦୃଶ ସରଳ ଠାକୁର ମୋର ଏହି ସବୁ କଥା ଶୁଣି ଅତ୍ୟନ୍ତ ଚିନ୍ତିତ ହୋଇଥିଲେ । କହିଥିଲେ, 'ଠିକ୍ କହିଛୁ; ତା'ହେଲେ କ'ଣ ହେବ, ମୁଁ ଯେ ତୋତେ ନ ଦେଖି ରହିପାରୁ ନାହିଁ ।' ଅତ୍ୟନ୍ତ ଦୁଃଖିତ ହୋଇ ଠାକୁର ମା'ଙ୍କୁ (ଶ୍ରୀଶ୍ରୀଜଗଦମ୍ବାଙ୍କୁ) ସେହି କଥା ଜଣାଇବାକୁ ଗଲେ ଏବଂ କିଛିକ୍ଷଣ ପରେ ହସି ହସି ଫେରି ଆସି କହିଲେ, 'ଯା' ଶଳା, ମୁଁ ତୋ କଥା ଶୁଣିବି ନାହିଁ; ମା' କହିଲେ — ତୁ ତାକୁ (ନରେନ୍ଦ୍ରଙ୍କୁ) ସାକ୍ଷାତ୍ ନାରାୟଣ ବୋଲି ଜାଣିଛୁ, ତେଣୁ ଭଲପାଉଛୁ, ଯେଉଁଦିନ ତା'(ନରେନ୍ଦ୍ର) ଭିତରେ ନାରାୟଣଙ୍କୁ ଦେଖିବାକୁ ନ ପାଇବୁ, ସେଦିନ ତା'ର ମୁହଁ ଦେଖିପାରିବୁ ନାହିଁ ।' ସେହିଭାବରେ ମୁଁ ଏହାପୂର୍ବରୁ ଯେତେ କଥା ବୁଝାଇଥିଲି, ଠାକୁର ସେସବୁକୁ ଗୋଟିଏ କଥାରେ ସେହି ଦିନ ଉଡ଼ାଇ ଦେଇଥିଲେ ।''

# ଷଷ୍ଠ ଅଧ୍ୟାୟ– ଦ୍ୱିତୀୟ ପାଦ

## ଠାକୁର ଓ ନରେନ୍ଦ୍ରନାଥଙ୍କ ଅଲୌକିକ ସମ୍ବନ୍ଧ

### ନରେନ୍ଦ୍ରନାଥଙ୍କର ମହତ୍ତ୍ୱ ସମ୍ବନ୍ଧରେ ଠାକୁରଙ୍କର ବାଣୀ :

ନରେନ୍ଦ୍ରନାଥଙ୍କର ପବିତ୍ର ହୃଦୟ–ମନ ଉଚ୍ଚଭାବସମୂହକୁ ଆଶ୍ରୟ କରି ସର୍ବଦା କାର୍ଯ୍ୟରେ ଅଗ୍ରସର ହୁଏ, ଠାକୁରଙ୍କର ତୀକ୍ଷ୍ଣଦୃଷ୍ଟି ଏହି ବିଷୟ ପ୍ରଥମ ଦିନରୁ ଧାରଣା କରିବାକୁ ସକ୍ଷମ ହୋଇଥିଲା । ନରେନ୍ଦ୍ରଙ୍କ ସହିତ ଠାକୁରଙ୍କର ଦୈନନ୍ଦିନ ଆଚରଣଗୁଡ଼ିକ ସେଥିପାଇଁ ଅନ୍ୟ ଭାବରେ ହେବା ସର୍ବଦା ଦେଖାଯାଉଥିଲା । ଭଗବଦ୍‌ଭକ୍ତିର ହାନି ହେବ ବୋଲି ଆହାର, ବିହାର, ଶୟନ, ନିଦ୍ରା, ଜପ, ଧ୍ୟାନ ଇତ୍ୟାଦି ସର୍ବବିଧ ବିଷୟରେ ଠାକୁର ଯେଉଁ ନାନା ପ୍ରକାର ନିୟମ ସ୍ୱୟଂ ପାଳନପୂର୍ବକ ନିଜର ଭକ୍ତମାନଙ୍କୁ ସେପରି କରିବାକୁ ସର୍ବଦା ଉତ୍ସାହିତ କରୁଥିଲେ, ସେ ହିଁ ପୁଣି ନିଃସଙ୍କୋଚରେ ସମସ୍ତଙ୍କ ଆଗରେ ବାରମ୍ବାର ସ୍ପଷ୍ଟ କହୁଥିଲେ, ନରେନ୍ଦ୍ର ଏହି ନିୟମର ବ୍ୟତିକ୍ରମ କଲେ ମଧ୍ୟ ତା'ର କୌଣସି ଦୋଷ ହେବ ନାହିଁ ! 'ନରେନ୍ଦ୍ର ନିତ୍ୟସିଦ୍ଧ'—'ନରେନ୍ଦ୍ର ଧ୍ୟାନସିଦ୍ଧ'— 'ନରେନ୍ଦ୍ର ଭିତରେ ଜ୍ଞାନାଗ୍ନି ସର୍ବଦା ପ୍ରଜ୍ୱଳିତ ରହି ସର୍ବପ୍ରକାର ଆହାର୍ଯ୍ୟଦୋଷକୁ ଭସ୍ମୀଭୂତ କରି ଦେଉଛି, ସେଥିପାଇଁ ଯେଉଁଠି–ସେଇଠି, ଯାହା–ତାହା ଭୋଜନ କଲେ ମଧ୍ୟ ତାର ମନ କଳୁଷିତ ବା ବିକ୍ଷିପ୍ତ ହେବ ନାହିଁ '—'ଜ୍ଞାନଖଡ୍‌ଗ–ସହାୟରେ ସେ ମାୟାମୟ ସମସ୍ତ ବନ୍ଧନକୁ ନିତ୍ୟ ଖଣ୍ଡବିଖଣ୍ଡ କରିପକାଉଛି, ମହାମାୟା ସେଥିପାଇଁ ତାକୁ କୌଣସି ପ୍ରକାରେ ନିଜ ଆୟତ୍ତକୁ ଆଣିପାରୁ ନାହାନ୍ତି'— ନରେନ୍ଦ୍ରଙ୍କ ସମ୍ବନ୍ଧରେ ସେହିପରି କେତେ କଥା ଆମେ ଠାକୁରଙ୍କ ଶ୍ରୀମୁଖରୁ ପ୍ରତିଦିନ ଶୁଣି ସେତେବେଳେ ବିସ୍ମୟସାଗରରେ ନିମଗ୍ନ ହେଉଥିଲୁ ।

### ମାରୱାଡ଼ି ଭକ୍ତମାନଙ୍କ ଦ୍ୱାରା ଅଣାଯାଇଥିବା ଖାଦ୍ୟ ପଦାର୍ଥ ନରେନ୍ଦ୍ରଙ୍କୁ ଦେବା :

ଥରେ ମାରୱାଡ଼ି ଭକ୍ତମାନେ ଠାକୁରଙ୍କୁ ଦେଖିବାକୁ ଆସି ମିଶ୍ରି, ପେସ୍ତା, ବାଦାମ, କିସ୍‌ମିସ୍ ପ୍ରଭୃତି ନାନାପ୍ରକାର ଖାଦ୍ୟଦ୍ରବ୍ୟ ତାଙ୍କୁ ଉପହାର ପ୍ରଦାନ କଲେ । ଠାକୁର ସେସବୁ କିଞ୍ଚିତ୍ ମଧ୍ୟ ସ୍ୱୟଂ ଗ୍ରହଣ କଲେ ନାହିଁ, ପାଖରେ ଥିବା କୌଣସି ଭକ୍ତଙ୍କୁ ମଧ୍ୟ ଦେଲେ ନାହିଁ, କହିଲେ, ''ଏମାନେ (ମାରୱାଡ଼ିମାନେ) ନିଷ୍କାମ ଭାବରେ ଦାନ କରିବା ଆଦୌ ଜାଣନ୍ତି ନାହିଁ, ସାଧୁଙ୍କୁ ଗୋଟିଏ ଖିଲିପାନ ଦେବା ସମୟରେ ମଧ୍ୟ ଷୋଳଟା କାମନା ତା ସହିତ ଯୋଡ଼ି ଦେଇଥାଆନ୍ତି, ଏପରି ସକାମ ଦାତାଙ୍କର ଅନ୍ନ–ଭୋଜନ କଲେ ଭକ୍ତିର ହାନି ହୋଇଥାଏ !'' ସୁତରାଂ ପ୍ରଶ୍ନ ଉଠିଲା—ସେମାନଙ୍କର ପ୍ରଦତ୍ତ ଦ୍ରବ୍ୟଗୁଡ଼ିକ କ'ଣ କରାଯିବ ?

ଠାକୁର କହିଲେ, ''ଯା, ନରେନ୍ଦ୍ରକୁ ଏସବୁ ଦେଇ ଦେବୁ, ସେ ଏସବୁ ଖାଇଲେ ମଧ୍ୟ ତା'ର କିଛି ହାନି ହେବ ନାହିଁ !''

**ନିଷିଦ୍ଧ ଦ୍ରବ୍ୟ ଭୋଜନରେ ନରେନ୍ଦ୍ରଙ୍କର ଭକ୍ତିହାନି ହେବ ନାହିଁ :**

ନରେନ୍ଦ୍ର ହୋଟେଲରେ ଖାଇଆସି ଠାକୁରଙ୍କୁ କହିଲେ, ''ମହାଶୟ, ଆଜି ହୋଟେଲରେ ସାଧାରଣ ଲୋକେ ଯାହାକୁ ଅଖାଦ୍ୟ କହନ୍ତି, ମୁଁ ତାହା ଖାଇ ଆସିଛି ।'' ଠାକୁର ବୁଝିଲେ, ନରେନ୍ଦ୍ର ବାହାଦୁରୀ ପ୍ରକାଶ କରିବା ପାଇଁ ଏକଥା କହୁ ନାହିଁ, କିନ୍ତୁ ସେ ଏପରି କରିଛି ବୋଲି ତାଙ୍କୁ ସ୍ପର୍ଶ କରିବାକୁ ବା ତାଙ୍କ ଘରେ ଥିବା ବାସନ-କୁସନ ପ୍ରଭୃତି ପାତ୍ର ବ୍ୟବହାର କରିବାକୁ ଦେବା ପାଇଁ ଯଦି ତାଙ୍କର ଆପତ୍ତି ଥାଏ, ତା'ହେଲେ ପୂର୍ବରୁ ସାବଧାନ ହୋଇପାରିବେ, ସେଥିପାଇଁ ସେପରି କହୁଛନ୍ତି । ଏହାଶୁଣି ଠାକୁର କହିଲେ, ''ତୋର ସେଥିରେ ଦୋଷ ଲାଗିବ ନାହିଁ; ଅଖାଦ୍ୟ (ଘୁଷୁରି, ଗୋରୁ) ଖାଇ ଯଦି କେହି ଭଗବାନଙ୍କଠାରେ ମନ ରଖେ, ତା'ହେଲେ ଏହା ହବିଷ୍ୟାନ୍ନ ତୁଲ୍ୟ, ଆଉ ଶାଗପତର ଖାଇ ଯଦି ବିଷୟ-ବାସନାରେ ବୁଡି ରହେ, ତାହାହେଲେ ଏହା ଘୁଷୁରି, ଗୋରୁ ଖାଇବାଠାରୁ କୌଣସି ପ୍ରକାରେ କମ୍ ନୁହେଁ । ତୁ ଅଖାଦ୍ୟ ଖାଇ ଆସିଛୁ ସେଥିରେ ମୋର କିଛି ମନେ ହେଉ ନାହିଁ, କିନ୍ତୁ (ଅନ୍ୟମାନଙ୍କୁ ଦେଖାଇ) ଏମାନଙ୍କ ମଧ୍ୟରୁ କେହି ଯଦି ସେକଥା କହିଥାଆନ୍ତେ, ତା'ହେଲେ ତାକୁ ସ୍ପର୍ଶ କରିପାରି ନ ଥାନ୍ତି !''

**ଠାକୁରଙ୍କର ଭଲ ପାଇବାରେ ନରେନ୍ଦ୍ରଙ୍କର ଉନ୍ନତି ଓ ଆତ୍ମସମର୍ପଣ :**

ଏହିପରି ପ୍ରଥମ ଦର୍ଶନରୁ ଶ୍ରୀଯୁକ୍ତ ନରେନ୍ଦ୍ର ଠାକୁରଙ୍କ ନିକଟରେ ଯେପରି ଭଲ ପାଇବା, ପ୍ରଶଂସା ଏବଂ ଅନ୍ୟ ସମସ୍ତ ବିଷୟରେ ସ୍ୱାଧୀନତା ଲାଭ କରିଥିଲେ, ତାହା ପାଠକଙ୍କୁ ଯଥାର୍ଥ ଭାବରେ ବୁଝାଇବା ଏକ ପ୍ରକାର ସାଧ୍ୟାତୀତ ବୋଲି ବୋଧହୁଏ । ମହାନୁଭବ ଶିଷ୍ୟଙ୍କର ଆନ୍ତରିକ ଶକ୍ତିର ଏତେଦୂର ସମ୍ମାନ ରଖି ତାଙ୍କ ସହିତ ସମସ୍ତ ବିଷୟରେ ଆଚରଣ କରିବା ଜଗଦ୍‌ଗୁରୁମାନଙ୍କର ଜୀବନ ଇତିହାସରେ ଅନ୍ୟତ୍ର କୁତ୍ରାପି ଦେଖିବାକୁ ମିଳେ କି ନାହିଁ ସନ୍ଦେହ । ଠାକୁର ଅନ୍ତରର ସବୁ କଥା ନରେନ୍ଦ୍ରନାଥଙ୍କୁ ନ କହି ନିଶ୍ଚିନ୍ତ ରହିପାରୁ ନ ଥିଲେ, ସମସ୍ତ ବିଷୟରେ ତାଙ୍କର ମତାମତ ଗ୍ରହଣ କରିବାକୁ ଅଗ୍ରସର ହେଉଥିଲେ, ତାଙ୍କ ସହିତ ତର୍କ କରାଇ ତାଙ୍କ ନିକଟକୁ ଆସୁଥିବା ଲୋକମାନଙ୍କର ବୁଦ୍ଧି ଓ ବିଶ୍ୱାସର ଶକ୍ତି ପରୀକ୍ଷା କରି ନେଉଥିଲେ, ଏବଂ ସମ୍ୟକ୍‌ରୂପରେ ପରୀକ୍ଷା ନ କରି କୌଣସି ବିଷୟ ସତ୍ୟ ବୋଲି ଗ୍ରହଣ କରିବାକୁ ତାଙ୍କୁ କେବେ ଅନୁରୋଧ କରୁ ନ ଥିଲେ । ଠାକୁରଙ୍କର ଏପରି ଆଚରଣ ଶ୍ରୀଯୁକ୍ତ ନରେନ୍ଦ୍ରଙ୍କର ଆତ୍ମବିଶ୍ୱାସ, ପୁରୁଷକାର, ସତ୍ୟପ୍ରିୟତା ଓ ଶ୍ରଦ୍ଧାଭକ୍ତିକୁ ସ୍ୱଳ୍ପକାଳ ମଧ୍ୟରେ ଶତଗୁଣରେ ବର୍ଦ୍ଧିତ କରିଥିଲା ଏବଂ ତାଙ୍କର ଅସୀମ ବିଶ୍ୱାସ ଓ ଭଲ ପାଇବା ଦୁର୍ଭେଦ୍ୟ ପ୍ରାଚୀର

ସଦୃଶ ଚତୁର୍ଦ୍ଦିଗରେ ଅବସ୍ଥାନପୂର୍ବକ ଅସୀମ ସ୍ୱାଧୀନତାପ୍ରିୟ ନରେନ୍ଦ୍ରଙ୍କୁ ତାଙ୍କର ଅଜ୍ଞାତସାରରେ ସର୍ବତ୍ର ସମସ୍ତ ପ୍ରକାର ପ୍ରଲୋଭନ ଓ ହୀନ ଆଚରଣହସ୍ତରୁ ପ୍ରତିନିୟତ ରକ୍ଷା କରିଥିଲା । ସେହିଭାବରେ ପ୍ରଥମ ଦର୍ଶନ-ଦିନଠାରୁ ବର୍ଷଟିଏ ନ ପୂରୁଣୁ ଶ୍ରୀଯୁକ୍ତ ନରେନ୍ଦ୍ର ଠାକୁରଙ୍କ ପ୍ରେମରେ ଚିରକାଳ ପାଇଁ ଆତ୍ମବିକ୍ରୟ କରିଥିଲେ । କିନ୍ତୁ ଠାକୁରଙ୍କର ଅହେତୁକ ପ୍ରେମପ୍ରବାହ ତାଙ୍କୁ ଧୀରେ ଧୀରେ ସେହି ପଥରେ କେତେଦୂର ଅଗ୍ରସର କରାଇଛି, ତାହା କ'ଣ ସେତେବେଳେ ସେ ସମ୍ପୂର୍ଣ୍ଣ ଭାବରେ ବୁଝିପାରିଥିଲେ ? —ବୋଧହୁଏ ନୁହେଁ । ବୋଧହୁଏ, ଠାକୁରଙ୍କର ଅପାର୍ଥିବ ପ୍ରେମଲାଭରେ ଅନନୁଭୂତ ବିଶୁଦ୍ଧ ଆନନ୍ଦରେ ତାଙ୍କର ହୃଦୟ ନିରନ୍ତର ପୂର୍ଣ୍ଣ ଏବଂ ପରିତୃପ୍ତ ରହୁଥିଲା ବୋଲି ତାହା ଯେ କେତେଦୂର ଦୁର୍ଲ୍ଲଭ ଦେବବାଞ୍ଛିତ ପଦାର୍ଥ, ତାହା ସ୍ୱାର୍ଥପର କଠୋର ସଂସାରର ସଂଘର୍ଷରେ ଆସି ତୁଳନାରେ ବିଶେଷ ଭାବରେ ବୁଝିବାକୁ ସେତେବେଳେ ମଧ୍ୟ ତାଙ୍କର କିଞ୍ଚିତ୍ ଅବଶିଷ୍ଟ ରହିଥିଲା । ପୂର୍ବୋକ୍ତ କଥାଗୁଡ଼ିକ ପାଠକଙ୍କୁ ହୃଦୟଙ୍ଗମ କରାଇବାକୁ କେତୋଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାହେଲା :

**ଶ୍ରୀଯୁକ୍ତ 'ମ'ଙ୍କ ସହିତ ନରେନ୍ଦ୍ରଙ୍କୁ ତର୍କରେ ଲଗାଇଦେବା :**

ଠାକୁରଙ୍କ ନିକଟକୁ ନରେନ୍ଦ୍ରଙ୍କର ଆଗମନର କେତେମାସ ପରେ ୧୮୮୨ ମସିହା ଫେବୃୟାରୀ ମାସରେ, 'ଶ୍ରୀଶ୍ରୀରାମକୃଷ୍ଣକଥାମୃତ'-ପ୍ରଣେତା ଶ୍ରୀଯୁକ୍ତ 'ମ' ଦକ୍ଷିଣେଶ୍ୱର ଆସି ଠାକୁରଙ୍କର ପୁଣ୍ୟଦର୍ଶନଲାଭ କରି ଧନ୍ୟ ହୋଇଥିଲେ । ବରାହନଗରରେ ଅବସ୍ଥାନ କରିବାରୁ ସେତେବେଳେ ତାଙ୍କର ବାରମ୍ବାର ଠାକୁରଙ୍କ ନିକଟକୁ ଆସିବାର ସୁବିଧା ହୋଇଥିଲା, ଠାକୁରଙ୍କର ଦୁଇଚାରୋଟି ଜ୍ଞାନଗର୍ଭକ ଶ୍ଳେଷପୂର୍ଣ୍ଣ ବାକ୍ୟ ତାଙ୍କର ଜ୍ଞାନାଭିମାନ ବିଦୂରିତ କରି କିପରି ତାଙ୍କୁ ଚିରକାଳ ପାଇଁ ବିନୀତ ଶିକ୍ଷାର୍ଥୀ ପଦରେ ପ୍ରତିଷ୍ଠିତ କରିଥିଲା, ସେହି ସକଳ କଥା ସେ ସ୍ୱପ୍ରଣୀତ ଗ୍ରନ୍ଥରେ ସ୍ୱୟଂ ଲିପିବଦ୍ଧ କରିଛନ୍ତି । ନରେନ୍ଦ୍ରନାଥ କହୁଥିଲେ, ''ସେହି ସମୟରେ ଦିନେ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ରାତ୍ରିଯାପନ କରିଥିଲି । ପଞ୍ଚବଟୀତଳେ କିଛିକ୍ଷଣ ସ୍ଥିର ହୋଇ ବସିଛି, ଏପରି ସମୟରେ ଠାକୁର ସହସା ସେଠାରେ ଆସି ପହଞ୍ଚିଲେ ଏବଂ ମୋର ହାତଧରି ହସି ହସି କହିବାକୁ ଲାଗିଲେ, 'ଆଜି ତୋର ବିଦ୍ୟା-ବୁଦ୍ଧି ବୁଝାଯିବ; ତୁ ତ ମାତ୍ର ଅଢ଼େଇଟା ପାଶ୍ କରିଛୁ, ଆଜି ସାଢ଼େ ତିନିଟା ପାସ୍[୧] ମାଷ୍ଟର ଆସିଛି; ଚାଲ୍ ତା ସହିତ କଥା ହେବୁ ।' ଅଗତ୍ୟା ଠାକୁରଙ୍କ ସହିତ ଯିବାକୁ ପଡ଼ିଲା ଏବଂ ଠାକୁରଙ୍କ ଘରକୁ ଯାଇ ଶ୍ରୀଯୁକ୍ତ 'ମ'ଙ୍କ ସହିତ ପରିଚିତ ହେବାପରେ ନାନା ବିଷୟରେ ଆଲୋଚନାରେ ପ୍ରବୃତ୍ତ ହେଲି ।

---

୧. ନରେନ୍ଦ୍ର ସେତେବେଳେ ବି.ଏ. ପଢ଼ିବାକୁ ଆରମ୍ଭ କରିଛନ୍ତି ଏବଂ ଶ୍ରୀଯୁକ୍ତ ମ' ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆଇନ (ବି. ଏଲ.) ପଢୁଥିଲେ—ଠାକୁର ସେହିକଥା ଏପରି ନିର୍ଦ୍ଦେଶ କରିଛନ୍ତି ।

ସେହିଭାବରେ ଆମ ଦୁଇଜଣଙ୍କୁ କଥାବାର୍ତ୍ତାରେ ଲଗାଇ ଦେଇ ଠାକୁର ଚୁପ୍ କରି ବସି ଆମର ଆଳାପ-ଆଲୋଚନା ଶୁଣିବାକୁ ଏବଂ ଆମମାନଙ୍କୁ ଲକ୍ଷ୍ୟ କରିବାକୁ ଲାଗିଲେ । ପରେ ଶ୍ରୀଯୁକ୍ତ ମ' ସେଦିନ ବିଦାୟଗ୍ରହଣ କରି ଚାଲିଗଲା ପରେ ଠାକୁର କହିଲେ, 'ପାସ୍ କଲେ କ'ଣ ହେବ, ମାଷ୍ଟରର କୋମଳଭାବ,[୧] କଥା କହିପାରେ ନାହିଁ !' ଏହିପରି ଠାକୁର ମୋତେ ସମସ୍ତଙ୍କ ସହିତ ତର୍କରେ ଲଗାଇଦେଇ ମଜା ଦେଖୁଥିଲେ ।''

**ଭକ୍ତ ଶ୍ରୀଯୁକ୍ତ କେଦାରନାଥ ଚଟ୍ଟୋପାଧ୍ୟାୟ :**

ଶ୍ରୀଯୁକ୍ତ କେଦାରନାଥ ଚଟ୍ଟୋପାଧ୍ୟାୟ ଠାକୁରଙ୍କର ଗୃହସ୍ଥ ଭକ୍ତମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ବୋଧହୁଏ, ନରେନ୍ଦ୍ରନାଥଙ୍କର ଦକ୍ଷିଣେଶ୍ୱର ଆସିବାର କିଛିକାଳ ପୂର୍ବରୁ ସେ ଠାକୁରଙ୍କ ନିକଟକୁ ଗମନାଗମନ କରୁଥିଲେ । ମାତ୍ର ତାଙ୍କର କର୍ମସ୍ଥଳ ପୂର୍ବବଙ୍ଗର ଢାକା ସହରରେ ଥିବାରୁ ପୂଜା ଛୁଟି ପ୍ରଭୃତି ଛଡ଼ା ଅନ୍ୟ ସମୟରେ ସେ ଠାକୁରଙ୍କ ନିକଟକୁ ପ୍ରାୟ ଆସିପାରୁ ନ ଥିଲେ । କେଦାରନାଥ ଭକ୍ତ ସାଧକ ଥିଲେ ଏବଂ ବୈଷ୍ଣବ-ତନ୍ତ୍ରୋକ୍ତ ଭାବ ଅବଲମ୍ବନ କରି ସାଧନ-ମାର୍ଗରେ ଅଗ୍ରସର ହେଉଥିଲେ । ଭଜନ କୀର୍ତ୍ତନାଦି ଶ୍ରବଣରେ ତାଙ୍କର ଦୁଇ ଚକ୍ଷୁରୁ ଅଶ୍ରୁଧାରା ପ୍ରବାହିତ ହେଉଥିଲା । ଠାକୁର ସେଥିପାଇଁ ସମସ୍ତଙ୍କ ନିକଟରେ ତାଙ୍କର ବିଶେଷ ପ୍ରଶଂସା କରୁଥିଲେ । କେଦାରନାଥଙ୍କର ଭଗବତ୍‌ପ୍ରେମ ଦେଖି ଢାକାର ବହୁ ଲୋକ ତାଙ୍କୁ ଶ୍ରଦ୍ଧା-ଭକ୍ତି ପ୍ରଦର୍ଶନ କରୁଥିଲେ । ଅନେକେ ପୁଣି ତାଙ୍କର ଉପଦେଶ ଅନୁସାରେ ଧର୍ମଜୀବନ-ଗଠନରେ ଅଗ୍ରସର ହେଉଥିଲେ । ଶୁଣାଯାଏ, ଯେତେବେଳେ ଠାକୁରଙ୍କ ନିକଟରେ ବହୁଲୋକଙ୍କର ସମାଗମ ହେଉଥିଲା, ସେତେବେଳେ ଧର୍ମ-ସମ୍ବନ୍ଧୀୟ ଆଲୋଚନା କରି କରି ପରିଶ୍ରାନ୍ତ ଓ ଭାବାବିଷ୍ଟ ହୋଇ ଠାକୁର ଥରେ ଶ୍ରୀଶ୍ରୀଜଗନ୍ମାତାଙ୍କୁ କହିଥିଲେ, 'ମା', ମୁଁ ଆଉ ଏତେ ବକି (କଥା କହି) ପାରୁ ନାହିଁ; ତୁ କେଦାର, ରାମ, ଗିରିଶ୍ ଓ ବିଜୟଙ୍କୁ[୨] ଟିକିଏ ଟିକିଏ ଶକ୍ତି ଦେ, ଯେଉଁଥିରେ ଲୋକମାନେ ସେମାନଙ୍କ ନିକଟକୁ ଯାଇ କିଛି ଶିଖିବା ପରେ ଏଠାକୁ (ମୋ ନିକଟକୁ) ଆସିବେ ଏବଂ ଗୋଟିଏ-ଦୁଇଟି କଥାରେ ହିଁ ଚୈତନ୍ୟଲାଭ କରିବେ !'—କିନ୍ତୁ ତାହା ଅନେକ ପରର କଥା ।

**କେଦାରଙ୍କର ତର୍କଶକ୍ତି ଓ ନରେନ୍ଦ୍ରଙ୍କ ସହିତ ପ୍ରଥମ ପରିଚୟ :**

କିଛି କାଳ ପାଇଁ ଅବସର ଗ୍ରହଣ କରି ଶ୍ରୀଯୁକ୍ତ କେଦାର ସେହି ସମୟରେ କଲିକତା ଆସି ଠାକୁରଙ୍କ ନିକଟକୁ ବେଳେ ବେଳେ ଆସିବାର ସୁଯୋଗଲାଭ

---

୧. ଠାକୁର ଏହି ସ୍ଥାନରେ ଅନ୍ୟ ଶବ୍ଦ ବ୍ୟବହାର କରିଥିଲେ ।

୨. ଶ୍ରୀଯୁକ୍ତ କେଦାରନାଥ ଚଟ୍ଟୋପାଧ୍ୟାୟ, ରାମଚନ୍ଦ୍ର ଦତ୍ତ, ଗିରିଶ ଚନ୍ଦ୍ର ଘୋଷ ଓ ବିଜୟକୃଷ୍ଣ ଗୋସ୍ୱାମୀ ।

କରିଥିଲେ । ଠାକୁର ମଧ୍ୟ ସାଧକ ଭକ୍ତଙ୍କୁ ନିକଟରେ ପାଇ ପରମ ଉତ୍ସାହରେ ତାଙ୍କ ସହିତ ଧର୍ମାଲୋଚନା କରୁଥିଲେ ଏବଂ ନିକଟକୁ ଆସିଥିବା ଅନ୍ୟାନ୍ୟ ଭକ୍ତମାନଙ୍କୁ ତାଙ୍କ ସହିତ ପରିଚୟ କରାଇଦେଉଥିଲେ । ଶ୍ରୀଯୁକ୍ତ ନରେନ୍ଦ୍ର ଏହି ସମୟରେ ଦିନେ ଠାକୁରଙ୍କ ନିକଟକୁ ଆସି କେଦାରନାଥଙ୍କୁ ଦେଖିଥିଲେ ଏବଂ ଭଜନ ଗାଇବା ସମୟରେ ତାଙ୍କର ଭାବାବେଶ ଲକ୍ଷ୍ୟ କରିଥିଲେ । ପରେ କେଦାରଙ୍କ ସହିତ ମଧ୍ୟ ଠାକୁର କିଛିକ୍ଷଣ ପାଇଁ ନରେନ୍ଦ୍ରନାଥଙ୍କ ତର୍କ ଲଗାଇ ଦେଇଥିଲେ । କେଦାର ନିଜ ଭାବରେ କିଛି କମ୍ ତର୍କ କରୁ ନ ଥିଲେ ଏବଂ ପ୍ରତିଦ୍ୱନ୍ଦୀଙ୍କର ବାକ୍ୟର ଅଯୌକ୍ତିକତା ବେଳେ ବେଳେ ତୀକ୍ଷ୍ଣ ଶ୍ଳେଷବାକ୍ୟ ପ୍ରୟୋଗରେ ନିର୍ଦ୍ଦେଶ କରିଦେଉଥିଲେ । ବାଦୀଙ୍କୁ ଦିନେ ସେ ଯେଉଁ କଥାଗୁଡ଼ିକ କହି ନିରସ୍ତ କରିଥିଲେ, ତାହା ଠାକୁରଙ୍କ ବିଶେଷ ମନୋନୀତ ହେବାରୁ ସେହିପ୍ରକାର ପ୍ରଶ୍ନ କେହି ପୁନରାୟ ତାଙ୍କ ନିକଟରେ ଉତ୍‌ଥାପିତ କଲେ ଠାକୁର ପ୍ରାୟତଃ କହୁଥିଲେ, କେଦାର ସେହି ପ୍ରକାର ପ୍ରଶ୍ନର ଏହିପରି ଉତ୍ତର ଦେଇଥାଏ । ବାଦୀ ସେଦିନ ପ୍ରଶ୍ନ ଉଠାଇଥିଲେ, ଭଗବାନ ଯଦି ସତରେ ଦୟାମୟ ହୁଅନ୍ତି, ତେବେ ତାଙ୍କର ସୃଷ୍ଟିରେ ଏତେ ଦୁଃଖକଷ୍ଟ, ଅନ୍ୟାୟ, ଅତ୍ୟାଚାର ଇତ୍ୟାଦି ସୃଷ୍ଟି କଲେ କାହିଁକି ? ଯଥେଷ୍ଟ ଅନ୍ନ ଉତ୍ପନ୍ନ ନ ହେବାରୁ ବେଳେ ବେଳେ ହଜାର ହଜାର ସଂଖ୍ୟାରେ ଲୋକ ଦୁର୍ଭିକ୍ଷ ଅନାହାରରେ ମୃତ୍ୟୁ ମୁଖରେ ପଡ଼ନ୍ତି କାହିଁକି ? କେଦାର ସେଥିରେ ଉତ୍ତର ଦେଇଥିଲେ, ‘‘ଦୟାମୟ ହୋଇ ମଧ୍ୟ ଈଶ୍ୱର ତାଙ୍କ ସୃଷ୍ଟିରେ ଦୁଃଖକଷ୍ଟ, ଅପମୃତ୍ୟୁ ଇତ୍ୟାଦି ରଖିବାର କଥା ଯେଉଁଦିନ ସ୍ଥିର କରିଥିଲେ, ସେଦିନର ସଭାରେ ମୋତେ ଡାକି ନ ଥିଲେ; ସୁତରାଂ କିପରି ଏକଥା ବୁଝିପାରିବି ?’’ କିନ୍ତୁ ନରେନ୍ଦ୍ରନାଥଙ୍କର ତୀକ୍ଷ୍ଣ ଯୁକ୍ତିରେ ସମସ୍ତଙ୍କ ସମ୍ମୁଖରେ କେଦାରଙ୍କୁ ସେଦିନ ନିରସ୍ତ ହେବାକୁ ପଡ଼ିଥିଲା ।

### ଠାକୁରଙ୍କ ପ୍ରଶ୍ନରେ କେଦାରଙ୍କ ସମ୍ବନ୍ଧରେ ନରେନ୍ଦ୍ରଙ୍କର ନିଜମତ ପ୍ରକାଶ :

କେଦାର ବିଦାୟଗ୍ରହଣ କରିବା ପରେ ଠାକୁର ନରେନ୍ଦ୍ରନାଥଙ୍କୁ ପଚାରିଲେ, ‘‘କ’ଣ ରେ, କିପରି ଦେଖିଲୁ ? କେମିତି ଭକ୍ତି କହ ତ, ଭଗବାନଙ୍କ ନାମରେ କାନ୍ଦି ପକାଏ ! ହରି କହୁ କହୁ ଯାହାର ଚକ୍ଷୁରୁ ଧାରା ବହେ, ସେ ଜୀବନ୍ମୁକ୍ତ; କେଦାର ଖୁବ୍ ଭଲ—ନୁହେଁ ?’’ ପବିତ୍ର-ହୃଦୟ ତେଜୀୟାନ ନରେନ୍ଦ୍ରନାଥ ଧର୍ମଲାଭ ଅଥବା ଅନ୍ୟ ଯେକୌଣସି କାରଣରୁ ହେଉ, ଯେଉଁମାନେ ପୁରୁଷ ଶରୀର ଧାରଣପୂର୍ବକ ନାରୀସୁଲଭ ଭାବ ଅବଲମ୍ବନ କରନ୍ତି, ସେମାନଙ୍କୁ ଅନ୍ତରର ସହିତ ଘୃଣା କରୁଥିଲେ । ଦୃଢ଼ ସଂକଳ୍ପ ଓ ଉଦ୍ୟମର ସହାୟ ନ ନେଇ ପୁରୁଷ ରୋଦନ-ମାତ୍ର ଆଶ୍ରୟ-ପୂର୍ବକ ଈଶ୍ୱରଙ୍କ ନିକଟରେ ଉପସ୍ଥିତ ହେବେ, ଏକଥା ତାଙ୍କ ନିକଟରେ ପୁରୁଷତ୍ୱର ଅବମାନନା ବୋଲି ସର୍ବଦା ପ୍ରତୀତ ହେଉଥିଲା ।

ଈଶ୍ୱରଙ୍କ ଉପରେ ଏକାନ୍ତ ଭାବେ ନିର୍ଭର କଲେ ମଧ୍ୟ ପୁରୁଷ ଚିରକାଳ ପୁରୁଷ ହୋଇ ରହିବ ଏବଂ ପୁରୁଷ ପରି ତାଙ୍କଠାରେ ଆତ୍ମସମର୍ପଣ କରିବ, ତାଙ୍କର ସେହି ପ୍ରକାର ମତ ଥିଲା । ତେଣୁ ଠାକୁରଙ୍କର ପୂର୍ବୋକ୍ତ କଥା ସମ୍ପୂର୍ଣ୍ଣ ହୃଦୟରେ ଅନୁମୋଦନ କରି ନ ପାରି ସେ କହିଲେ, ''ସେ କଥା ମହାଶୟ, ମୁଁ କିପରି ଜାଣିବି ? ଆପଣ (ଲୋକ-ଚରିତ୍ର) ବୁଝନ୍ତି, ଆପଣ କହିପାରିବେ । ନତୁବା କନ୍ଦାକଟା ଦେଖି ଭଲମନ୍ଦ କିଛି ବୁଝାଯାଏ ନାହିଁ । ଏକ ଦୃଷ୍ଟିରେ ଅନାଇ ରହିଲେ ଚକ୍ଷୁରୁ ସେମିତି ବହୁତ ପାଣି ନିର୍ଗତ ହୋଇଥାଏ ! ପୁଣି ଶ୍ରୀମତୀଙ୍କର ବିରହସୂଚକ କୀର୍ତ୍ତନ ଇତ୍ୟାଦି ଶୁଣି ଯେଉଁମାନେ କାନ୍ଦନ୍ତି, ସେମାନେ ଅଧିକାଂଶ ନିଜ ନିଜର ସ୍ତ୍ରୀ ସହିତ ବିରହର କଥା ସ୍ମରଣ କରି ବା ନିଜ ଉପରେ ଉକ୍ତ ଅବସ୍ଥା ଆରୋପ କରି କାନ୍ଦିଥାଆନ୍ତି, ଏଥିରେ କୌଣସି ସନ୍ଦେହ ନାହିଁ ! ସେପରି ଅବସ୍ଥା ସହିତ ସମ୍ପୂର୍ଣ୍ଣ ଅପରିଚିତ ମୋ ପରି ବ୍ୟକ୍ତିମାନଙ୍କର ମଥୁର-କୀର୍ତ୍ତନ ଶୁଣିଲେ ମଧ୍ୟ ଅନ୍ୟମାନଙ୍କ ପରି ସହଜରେ କାନ୍ଦିବାର ପ୍ରବୃତ୍ତି କଦାପି ଆସିବ ନାହିଁ ।'' ଏହିପରି ଶ୍ରୀଯୁକ୍ତ ନରେନ୍ଦ୍ର ଯାହା ସତ୍ୟ ବୋଲି ବୁଝି ଥାଆନ୍ତି, ଠାକୁରଙ୍କ ପ୍ରଶ୍ନରେ ତାହା ନିର୍ଭୀକ ଭାବରେ ପ୍ରକାଶ କରିଥାଆନ୍ତି । ଠାକୁର ମଧ୍ୟ ଏଥିରେ ତାଙ୍କ ଉପରେ ପ୍ରସନ୍ନ ଭିନ୍ନ କେତେବେଳେ ରୁଷ୍ଟ ହେଉ ନ ଥିଲେ । କାରଣ, ଅନ୍ତର୍ଦୃଷ୍ଟିସମ୍ପନ୍ନ ଠାକୁର ନିଶ୍ଚୟ ବୁଝିଥିଲେ, ସତ୍ୟପ୍ରାଣ ନରେନ୍ଦ୍ରଙ୍କ ଭାବର ଘରେ କିଛିମାତ୍ର ଚୋରି ନାହିଁ ।

**ସାକାର ଉପାସନା ପାଇଁ ନରେନ୍ଦ୍ରଙ୍କର ତିରସ୍କାର, ରାଖାଲଙ୍କର ଭୟ ଏବଂ ଠାକୁରଙ୍କ କଥାରେ ଉଭୟଙ୍କ ମଧ୍ୟରେ ପୁନରାୟ ବନ୍ଧୁତା :**

ଠାକୁରଙ୍କର ଦର୍ଶନଲାଭର ଅଳ୍ପ ଦିନ ପୂର୍ବରୁ ନରେନ୍ଦ୍ରନାଥ ବ୍ରାହ୍ମସମାଜରେ ଯୋଗଦାନ କରିଥିଲେ । ନିରାକାର ଅଦ୍ୱିତୀୟ ଈଶ୍ୱରଙ୍କଠାରେ ବିଶ୍ୱାସବାନ ହୋଇ କେବଳ ତାଙ୍କର ହିଁ ଉପାସନା ଓ ଧ୍ୟାନଧାରଣା କରିବେ, ଏହି ମର୍ମରେ ବ୍ରାହ୍ମସମାଜର ଅଙ୍ଗୀକାରପତ୍ରରେ ଏହି ସମୟରେ ସେ ଦସ୍ତଖତ କରିଥିଲେ । କିନ୍ତୁ ଆନୁଷ୍ଠାନିକ ଭାବରେ ବ୍ରାହ୍ମ ହୋଇ ଉକ୍ତ ସମାଜ-ପ୍ରଚଳିତ ସାମାଜିକ ଆଚାରବ୍ୟବହାର ଆଦି ଅବଲମ୍ବନ କରିବା ସଂକଳ୍ପ ତାଙ୍କର ମନରେ କଦାପି ଉଦିତ ହୋଇ ନ ଥିଲା । ଶ୍ରୀଯୁକ୍ତ ରାଖାଲ ଏଥିପୂର୍ବରୁ ହିଁ ନରେନ୍ଦ୍ରନାଥଙ୍କ ସହିତ ପରିଚିତ ଥିଲେ ଏବଂ ଅନେକ ସମୟ ତାଙ୍କ ସହିତ ଅତିବାହିତ କରୁଥିଲେ । ଶିଶୁ ସଦୃଶ କୋମଳ-ପ୍ରକୃତିସମ୍ପନ୍ନ ନିର୍ଭରଶୀଳ ରାଖାଲଚନ୍ଦ୍ର ଯେ ନରେନ୍ଦ୍ରନାଥଙ୍କ ସପ୍ରେମ ବ୍ୟବହାରରେ ମୁଗ୍ଧ ହୋଇ ତାଙ୍କର ପ୍ରବଳ ଇଚ୍ଛାଶକ୍ତି ଦ୍ୱାରା ସବୁ ବିଷୟରେ ନିୟନ୍ତ୍ରିତ ହେବେ, ଏହା ଆଶ୍ଚର୍ଯ୍ୟର ବିଷୟ ନୁହେଁ । ସୁତରାଂ ନରେନ୍ଦ୍ରନାଥଙ୍କ ପରାମର୍ଶରେ ସେ ମଧ୍ୟ ସେହି ସମୟରେ ବ୍ରାହ୍ମସମାଜରେ ପୂର୍ବୋକ୍ତ ପ୍ରକାର ଅଙ୍ଗୀକାର ପତ୍ରରେ ଦସ୍ତଖତ କରିଥିଲେ । ଏହି ଘଟଣାର ଅଳ୍ପଦିନ ପରେ ରାଖାଲଚନ୍ଦ୍ର ଠାକୁରଙ୍କର

ପୁଣ୍ୟଦର୍ଶନ ଲାଭରେ କୃତାର୍ଥ ହୋଇଥିଲେ ଏବଂ ତାଙ୍କର ଉପଦେଶରେ ରାଖାଲଙ୍କ ଅନ୍ତରରେ ସାକାର ଉପାସନାର ସୁପ୍ତ ପ୍ରୀତି ପୁନର୍ବାର ଜାଗରିତ ହୋଇଉଠିଥିଲା । ଏହାର କେତେ ମାସ ପରେ ନରେନ୍ଦ୍ରନାଥ ଠାକୁରଙ୍କ ନିକଟକୁ ଆସିବାକୁ ଆରମ୍ଭ କଲେ ଏବଂ ରାଖାଲଚନ୍ଦ୍ରଙ୍କୁ ସେଠାରେ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । କିଛିଦିନ ପରେ ନରେନ୍ଦ୍ରନାଥ ଦେଖିବାକୁ ପାଇଲେ, ରାଖାଲଚନ୍ଦ୍ର ଠାକୁରଙ୍କ ସହିତ ମନ୍ଦିରକୁ ଯାଇ ଦେବବିଗ୍ରହମାନଙ୍କୁ ପ୍ରଣାମ କରୁଛନ୍ତି । ସତ୍ୟପରାୟଣ ନରେନ୍ଦ୍ର ଏଥିରେ କ୍ଷୁଣ୍ଣ ହୋଇ ରାଖାଲଚନ୍ଦ୍ରଙ୍କୁ ପୂର୍ବକଥା ସ୍ମରଣ କରାଇ ତୀବ୍ର ଭର୍ତ୍ସନା କରିବାକୁ ଲାଗିଲେ । କହିଲେ, ''ବ୍ରାହ୍ମସମାଜର ଅଙ୍ଗୀକାରପତ୍ରରେ ଦସ୍ତଖତ କରି ପୁନରାୟ ମନ୍ଦିରକୁ ଯାଇ ପ୍ରଣାମ କରିବାରୁ ତୁମକୁ ମିଥ୍ୟାଚାରରେ ଦୂଷିତ ହେବାକୁ ପଡ଼ିଛି ।'' କୋମଳ-ପ୍ରକୃତି ରାଖାଲ ବନ୍ଧୁଙ୍କର ସେପରି କଥାରେ ନୀରବ ରହିଲେ ଏବଂ ସେହି ଦିନରୁ କିଛିଦିନ ପର୍ଯ୍ୟନ୍ତ ତାଙ୍କୁ ଦେଖା କରିବାକୁ ଭୀତ ଓ ସଙ୍କୁଚିତ ହେବାକୁ ଲାଗିଲେ । ପରିଶେଷରେ ଠାକୁର ରାଖାଲଚନ୍ଦ୍ରଙ୍କର ଏପରି ହେବାର କାରଣ ଜାଣିପାରି ନରେନ୍ଦ୍ରନାଥଙ୍କୁ ମିଷ୍ଟବାକ୍ୟରେ ନାନା ପ୍ରକାରରେ ବୁଝାଇ କହିଲେ, ''ଦେଖ୍, ରାଖାଲକୁ ଆଉ କିଛି କହିବୁ ନାହିଁ, ସେ ତୋତେ ଦେଖିଲେ ଭୟରେ ସଙ୍କୁଚିତ ହୋଇଯାଏ; ତାର ଏବେ ସାକାରରେ ବିଶ୍ୱାସ ହୋଇଅଛି, ତେଣୁ ସେ କ'ଣ କରିବ କହ; ସମସ୍ତେ କ'ଣ ପ୍ରଥମରୁ ନିରାକାର ଧାରଣା କରିପାରନ୍ତି ?'' ଶ୍ରୀଯୁକ୍ତ ନରେନ୍ଦ୍ର ମଧ୍ୟ ସେହିଦିନଠାରୁ ରାଖାଲଙ୍କ ପ୍ରତି ଦୋଷାରୋପ କରିବାରୁ କ୍ଷାନ୍ତ ହେଲେ ।

### ଅଦ୍ୱୈତବାଦରେ ବିଶ୍ୱାସୀ କରିବାକୁ ଠାକୁରଙ୍କର ଚେଷ୍ଟା ଓ ନରେନ୍ଦ୍ରଙ୍କର ପ୍ରତିବାଦ :

ନରେନ୍ଦ୍ରନାଥ ଉତ୍ତମ ଅଧିକାରୀ ଜାଣି ପ୍ରଥମ ଦିନରୁ ଠାକୁର ତାଙ୍କୁ ଅଦ୍ୱୈତ ତତ୍ତ୍ୱରେ ବିଶ୍ୱାସବାନ କରିବାକୁ ପ୍ରଯତ୍ନ କରୁଥିଲେ । ଦକ୍ଷିଣେଶ୍ୱରକୁ ଆସିଲେ ହିଁ ସେ ତାଙ୍କୁ ଅଷ୍ଟାବକ୍ରସଂହିତା ଇତ୍ୟାଦି ଗ୍ରନ୍ଥ ପାଠ କରିବାକୁ ଦେଉଥିଲେ । ନିରାକାର ସଗୁଣ ବ୍ରହ୍ମଙ୍କର ଦ୍ୱୈତଭାବରେ ଉପାସନାରେ ନିଯୁକ୍ତ ନରେନ୍ଦ୍ରନାଥଙ୍କର ଚକ୍ଷୁରେ ଏସମସ୍ତ ଗ୍ରନ୍ଥ ସେତେବେଳେ ନାସ୍ତିକ୍ୟ-ଦୋଷଦୁଷ୍ଟ ବୋଲି ମନେ ହେଉଥିଲା । ଠାକୁରଙ୍କ ଅନୁରୋଧରେ ଟିକିଏ ଅଧେ ପାଠ କରିବା ପରେ ହିଁ ସେ ସ୍ପଷ୍ଟ କହୁଥିଲେ, ''ଏଥିରେ ଏବଂ ନାସ୍ତିକତା ମଧ୍ୟରେ ପ୍ରଭେଦ କ'ଣ ? ସୃଷ୍ଟ ଜୀବ ନିଜକୁ ସ୍ରଷ୍ଟା ବୋଲି ଭାବିବ ? ଏହା ଅପେକ୍ଷା ଅଧିକ ପାପ ଆଉ କ'ଣ ହୋଇପାରେ ? ମୁଁ ଈଶ୍ୱର, ତୁମେ ଈଶ୍ୱର, ଜନ୍ମ-ମରଣଶୀଳ ଯାବତୀୟ ପଦାର୍ଥ ସବୁ ହିଁ ଈଶ୍ୱର — ଏହା ଅପେକ୍ଷା ଅଯୁକ୍ତିକର କଥା ଅନ୍ୟ କ'ଣ ହେବ ? ଗ୍ରନ୍ଥକର୍ତ୍ତା ଋଷିମୁନିମାନଙ୍କର ନିଶ୍ଚୟ ମୁଣ୍ଡ ଖରାପ ହୋଇଯାଇଥିଲା, ନ ହେଲେ ଏପରି ସବୁ କଥା ଲେଖିଲେ

କିପରି ?'' ଠାକୁର ସ୍ପଷ୍ଟବାଦୀ ନରେନ୍ଦ୍ରନାଥଙ୍କର ସେପ୍ରକାର କଥା ଶୁଣି ହସୁଥିଲେ ଏବଂ ସହସା ତାଙ୍କର ସେହି ଭାବରେ ଆଘାତ ନ କରି କହୁଥିଲେ, ''ତୁ ଏସବୁ କଥା ଏବେ ନ ମାନିଲୁ ନାହିଁ, ତା ବୋଲି ମୁନିଋଷିମାନଙ୍କର ନିନ୍ଦା ଓ ଈଶ୍ୱରୀୟ ସ୍ୱରୂପର ଇତି କରୁଛୁ କାହିଁକି ? ତୁ ସତ୍ୟସ୍ୱରୂପ ଭଗବାନଙ୍କୁ ଡାକି ଯା, ତା ପରେ ସେ ତୋ ନିକଟରେ ଯେଉଁ ଭାବରେ ପ୍ରକାଶିତ ହେବେ, ତାହା ହିଁ ବିଶ୍ୱାସ କରିବୁ ।'' କିନ୍ତୁ ଠାକୁରଙ୍କର ଏହି କଥା ନରେନ୍ଦ୍ର ବିଶେଷ ଶୁଣୁ ନ ଥିଲେ । କାରଣ, ଯୁକ୍ତି ଦ୍ୱାରା ଯାହାର ପ୍ରତିଷ୍ଠା ହୁଏ ନାହିଁ, ତାହା ହିଁ ତାଙ୍କ ନିକଟରେ ସେସମୟରେ ମିଥ୍ୟା ବୋଲି ମନେ ହେଉଥିଲା ଏବଂ ସର୍ବପ୍ରକାର ମିଥ୍ୟା ବିରୁଦ୍ଧରେ ଦଣ୍ଡାୟମାନ ହେବା ତାଙ୍କର ସ୍ୱଭାବସିଦ୍ଧ ଥିଲା । ତେଣୁ ଠାକୁରଙ୍କ ବ୍ୟତୀତ ଅନ୍ୟ ଅନେକଙ୍କ ନିକଟରେ ମଧ୍ୟ କଥାପ୍ରସଙ୍ଗରେ ଅଦ୍ୱୈତବାଦ ବିରୁଦ୍ଧରେ ନାନା ପ୍ରକାର ଯୁକ୍ତି ପ୍ରଦର୍ଶନ କରିବାକୁ ଏବଂ ବେଳେ ବେଳେ ଶ୍ଳେଷବାକ୍ୟ ପ୍ରୟୋଗ କରିବାକୁ ମଧ୍ୟ ସେ କୁଣ୍ଠିତ ହେଉ ନ ଥିଲେ ।

### ପ୍ରତାପଚନ୍ଦ୍ର ହାଜରା :

ପ୍ରତାପଚନ୍ଦ୍ର ହାଜରା ନାମକ ଜଣେ ବ୍ୟକ୍ତି ସେତେବେଳେ ଦକ୍ଷିଣେଶ୍ୱର-ଉଦ୍ୟାନରେ ରହୁଥିଲେ । ପ୍ରତାପଙ୍କର ସାଂସାରିକ ଅବସ୍ଥା ପୂର୍ବପରି ସ୍ୱଚ୍ଛଳ ନ ଥିଲା । ସେଥିପାଇଁ ଧର୍ମ ଲାଭରେ ପ୍ରଯତ୍ନ କରୁଥିଲେ ମଧ୍ୟ ଅର୍ଥକାମନା ତାଙ୍କ ମନରେ ଅନେକ ସମୟରେ ଆଧିପତ୍ୟ ଲାଭ କରୁଥିଲା । ତେଣୁ ତାଙ୍କର ଧର୍ମାଚରଣ ମୂଳରେ ପ୍ରାୟତଃ ସକାମ ଭାବ ରହୁଥିଲା । କିନ୍ତୁ ବାହାରେ ଏକଥା କାହାକୁ ଜଣେଇବା ଦୂରରେ ଥାଉ, ସେ ସର୍ବଦା ନିଷ୍କାମଭାବରେ ଉପାସନାର ଉଚ୍ଚ ଉଚ୍ଚ କଥାସବୁ ଲୋକଙ୍କ ନିକଟରେ କହି ପ୍ରଶଂସାଲାଭ ନିମିତ୍ତ ଉଦ୍ୟତ ହେଉଥିଲେ । କେବଳ ସେତିକି ନୁହେଁ, ଧର୍ମ-କର୍ମ କରିବା ସମୟରେ ପ୍ରତିପଦରେ ନିଜର ଲାଭ-କ୍ଷତି ପରଖି ଦେଖିବା ତାଙ୍କର ସ୍ୱଭାବସିଦ୍ଧ ଥିଲା ଏବଂ ବୋଧହୁଏ, ଜପ-ତପ ଆଦି ଦ୍ୱାରା କୌଣସି ପ୍ରକାର ସିଦ୍ଧି ଲାଭ କରି ନିଜର ଅର୍ଥକାମନା ପୂରଣ କରିବେ, ଏକଥା ମଧ୍ୟ ତାଙ୍କ ମନରେ ବେଳେ ବେଳେ ଉଙ୍କି ମାରୁଥିଲା । ଠାକୁର ପ୍ରଥମ ଦିନରୁ ତାଙ୍କ ଅନ୍ତରର ସେହି ପ୍ରକାର ଭାବ ବୁଝିପାରିଥିଲେ ଏବଂ ତାହା ତ୍ୟାଗ କରି ଯଥାର୍ଥ ନିଷ୍କାମଭାବରେ ଈଶ୍ୱରଙ୍କୁ ଡାକିବାକୁ ତାଙ୍କୁ ଉପଦେଶ ଦେଇଥିଲେ । ଦୁର୍ବଳମନା ହାଜରା ଠାକୁରଙ୍କର ଏହି କଥା କେବଳ ଯେ ଗ୍ରହଣ କରିପାରି ନ ଥିଲେ ତାହା ନୁହେଁ, ତାଙ୍କର ଭ୍ରମଧାରଣା, ଅହଂକାର ଏବଂ ସ୍ୱାର୍ଥସିଦ୍ଧିର ପ୍ରେରଣାରେ ଠାକୁରଙ୍କର ଦର୍ଶନକାମନାରେ ଆଗତ ବ୍ୟକ୍ତିମାନଙ୍କ ନିକଟରେ ସୁଯୋଗ ପାଇଲେ ହିଁ କହୁଥିଲେ ଯେ, ସେ ସ୍ୱୟଂ ଜଣେ କମ୍ ସାଧୁ ନୁହନ୍ତି ! ସେହି ପ୍ରକାର କରୁଥିଲେ ମଧ୍ୟ ବୋଧହୁଏ ତାଙ୍କର ମନରେ ସତ୍ ହେବାର

ଯଥାର୍ଥ ଇଚ୍ଛା ଟିକିଏ-ଅଧେ ଥିଲା । କାରଣ, ଠାକୁର ତାଙ୍କର ଏହି ପ୍ରକାର କାର୍ଯ୍ୟକଳାପର କଥା ଜାଣିପାରିଲେ ମଧ୍ୟ ଏବଂ ସେଥିପାଇଁ ତାଙ୍କୁ କେବେକେବେ ତୀବ୍ର ତିରସ୍କାର କଲେ ମଧ୍ୟ ତାଙ୍କୁ ସେଠାରୁ ସମ୍ପୂର୍ଣ୍ଣ ତଡ଼ି ଦେଇ ନ ଥିଲେ । ତେବେ ସେ ଆମମାନଙ୍କ ମଧ୍ୟରୁ କାହା କାହାକୁ ତାଙ୍କ ସହିତ ଅଧିକ ମିଳାମିଶା କରିବାକୁ ସତର୍କ କରାଇ ଦେଉଥିଲେ; କହୁଥିଲେ, ''ହାଜରା ଶଳାର ଭାରି ବ୍ୟବସାୟୀ ବୁଦ୍ଧି, ତା କଥା ଶୁଣିବୁ ନାହିଁ ।''

**ହାଜରା ମହାଶୟଙ୍କର ବୁଦ୍ଧିମତ୍ତାରେ ନରେନ୍ଦ୍ରଙ୍କର ପ୍ରସନ୍ନତା :**

ଅନ୍ୟାନ୍ୟ ଦୋଷ-ଗୁଣ ସହିତ ହାଜରା ମହାଶୟଙ୍କର ଅନ୍ତରରେ ସହସା କୌଣସି ବିଷୟରେ ବିଶ୍ୱାସ ନ କରିବାର ଭାବ ମଧ୍ୟ ଥିଲା । ତାଙ୍କ ପରି ସ୍ୱଳ୍ପଶିକ୍ଷିତ ବ୍ୟକ୍ତିଗଣଙ୍କ ତୁଳନାରେ ତାଙ୍କର ବୁଦ୍ଧି ମଧ୍ୟ କମ୍ ନ ଥିଲା । ସେଥିପାଇଁ ନରେନ୍ଦ୍ରନାଥଙ୍କ ପରି ଇଂରାଜୀ ଶିକ୍ଷିତ ବ୍ୟକ୍ତିମାନେ ଯେତେବେଳେ ପାଶ୍ଚାତ୍ୟ ସନ୍ଦେହବାଦୀ ଦାର୍ଶନିକମାନଙ୍କର ମତାମତ ଆଲୋଚନା କରୁଥିଲେ, ସେତେବେଳେ ସେ ସେଥିରୁ କିଛି କିଛି ବୁଝିପାରୁଥିଲେ । ବୁଦ୍ଧିମାନ ନରେନ୍ଦ୍ର ସେଥିପାଇଁ ତାଙ୍କ ଉପରେ ପ୍ରସନ୍ନ ଥିଲେ ଏବଂ ଦକ୍ଷିଣେଶ୍ୱରକୁ ଆସିଲେ ହିଁ ଅବକାଶ ଅନୁଯାୟୀ ଘଣ୍ଟେ, ଦିଘଣ୍ଟା ହାଜରା ମହାଶୟଙ୍କ ସହିତ ଆଳାପ କରି କଟାଉଥିଲେ । ନରେନ୍ଦ୍ରନାଥଙ୍କର ପ୍ରଖର ବୁଦ୍ଧି ପାଖରେ ହାଜରାଙ୍କର ମସ୍ତକ ସର୍ବଦା ଅବନତ ହେଉଥିଲା । ସେ ବିଶେଷ ମନୋଯୋଗ ସହିତ ନରେନ୍ଦ୍ରଙ୍କର ସବୁକଥା ଶୁଣୁଥିଲେ ଏବଂ ବେଳେ ବେଳେ ତାଙ୍କୁ ତମାଖୁ ସଜାଇ ଖାଇବାକୁ ଦେଉଥିଲେ । ହାଜରାଙ୍କ ପ୍ରତି ନରେନ୍ଦ୍ରଙ୍କର ଏପରି ସଦୟ ଭାବ ଦେଖି ଆମେ ଅନେକ ଥଟ୍ଟା କରି କହୁ, ''ହାଜରା ମହାଶୟ ହେଉଛନ୍ତି ନରେନ୍ଦ୍ରଙ୍କର 'ଫେରଣ୍ଡ' (Friend) ।''

**ନରେନ୍ଦ୍ର ଦକ୍ଷିଣେଶ୍ୱର ଆସିଲେ ଠାକୁରଙ୍କର ଆଚରଣ :**

ନରେନ୍ଦ୍ର ଦକ୍ଷିଣେଶ୍ୱର ଆସିଲେ ଠାକୁର ଅନେକ ସମୟରେ ତାଙ୍କୁ ଦେଖିବା ମାତ୍ରେ ଭାବାବିଷ୍ଟ ହୋଇପଡୁଥିଲେ ! ପରେ ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇ ଅନେକ ସମୟ ପର୍ଯ୍ୟନ୍ତ ପରମାନନ୍ଦରେ ତାଙ୍କ ସହିତ ଧର୍ମାଳାପରେ ନିଯୁକ୍ତ ରହୁଥିଲେ । ସେହି ସମୟ ସେ ଯେପରି ନାନାପ୍ରକାର କଥାରେ ଓ ଚେଷ୍ଟାରେ ଉଚ୍ଚ ଆଧ୍ୟାତ୍ମିକ ପ୍ରତ୍ୟକ୍ଷସମୂହ ତାଙ୍କ ଅନ୍ତରରେ ପ୍ରବିଷ୍ଟ କରାଇଦେବାକୁ ପ୍ରଯତ୍ନ କରୁଥିଲେ । ବେଳେ ବେଳେ ଏପରି ସମୟରେ ତାଙ୍କର ଭଜନ ଶୁଣିବାକୁ ଇଚ୍ଛା ହେଉଥିଲା ଏବଂ ନରେନ୍ଦ୍ରଙ୍କର ସୁମଧୁର କଣ୍ଠ ଶୁଣିବା ମାତ୍ରେ ପୁନରାୟ ସମାଧିସ୍ଥ ହୋଇପଡୁଥିଲେ । କିନ୍ତୁ ନରେନ୍ଦ୍ରଙ୍କର ଗୀତ ଏଥିପାଇଁ ବନ୍ଦ ହେଉ ନ ଥିଲା, ତନ୍ମୟ ହୋଇ ସେ କେତେଘଣ୍ଟା ପର୍ଯ୍ୟନ୍ତ ଗୋଟିକ ପରେ ଗୋଟିଏ ଗୀତ ଗାଇ ଚାଲୁଥିଲେ । ଠାକୁର

ପୁଣି ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇ ହୁଏତ ନରେନ୍ଦ୍ରନାଥଙ୍କୁ କୌଣସି ଏକ ବିଶେଷ ସଙ୍ଗୀତ ଗାଇବାକୁ ଅନୁରୋଧ କରୁଥିଲେ । କିନ୍ତୁ ସର୍ବଶେଷରେ ନରେନ୍ଦ୍ରନାଥଙ୍କ ମୁହଁରୁ 'ଯୋ କୁଛ ହୈ ସୋ ତୁ ହି ହୈ' ଗୀତଟି ନ ଶୁଣିଲେ ତାଙ୍କର ପୂର୍ଣ୍ଣ ପରିତୃପ୍ତି ହେଉ ନ ଥିଲା । ପରେ ଅଦ୍ୱୈତବାଦର ନାନା ରହସ୍ୟ, ଯଥା— ଜୀବ ଓ ଈଶ୍ୱରଙ୍କ ମଧ୍ୟରେ ପ୍ରଭେଦ, ଜୀବ ଏବଂ ବ୍ରହ୍ମର ସ୍ୱରୂପ ଇତ୍ୟାଦି କଥାରେ କେତେ ସମୟ ଅତିବାହିତ ହେଉଥିଲା । ଏହିପରି ନରେନ୍ଦ୍ରନାଥଙ୍କ ଉପସ୍ଥିତିରେ ଦକ୍ଷିଣେଶ୍ୱରରେ ଆନନ୍ଦର ସୁଅ ଛୁଟୁଥିଲା ।

### ଅଦ୍ୱୈତ ତତ୍ତ୍ୱ ସମ୍ବନ୍ଧରେ ହାଜରାଙ୍କ ନିକଟରେ ନରେନ୍ଦ୍ରଙ୍କର ପରିହାସ ଓ ଠାକୁରଙ୍କର ତାଙ୍କୁ ଭାବାବେଶରେ ସ୍ପର୍ଶ କରିବା :

ଠାକୁର ଏହିପରି ନରେନ୍ଦ୍ରନାଥଙ୍କୁ ଦିନେ ଅଦ୍ୱୈତବିଜ୍ଞାନର ଜୀବବ୍ରହ୍ମର ଐକ୍ୟସୂଚକ ଅନେକ କଥା କହିଥିଲେ । ନରେନ୍ଦ୍ର ସେସମସ୍ତ କଥା ମନୋନିବେଶପୂର୍ବକ ଶୁଣି ମଧ୍ୟ ହୃଦୟଙ୍ଗମ କରିପାରିଲେ ନାହିଁ ଏବଂ ଠାକୁରଙ୍କ କଥା ସରିଲା ପରେ ହାଜରା ମହାଶୟଙ୍କ ନିକଟରେ ବସି ତମାଖୁ ସେବନ କରୁ କରୁ ପୁନରାୟ ଏସମସ୍ତ ଆଲୋଚନାପୂର୍ବକ କହିବାକୁ ଲାଗିଲେ, ''ତାହା କ'ଣ କେବେ ହୋଇପାରେ ? ଲୋଟା ଈଶ୍ୱର , ତାଟିଆ ଈଶ୍ୱର, ଯାହାକିଛି ଦେଖୁଛି ଏବଂ ଆମେ ସମସ୍ତେ ଈଶ୍ୱର ?'' ହାଜରା ମହାଶୟ ମଧ୍ୟ ନରେନ୍ଦ୍ରଙ୍କ ସହିତ ମିଶି ଏପରି ଥଟ୍ଟା କରିବାରୁ ଉଭୟଙ୍କ ମଧ୍ୟରେ ହାସ୍ୟରୋଳ ଉଠିଲା । ଠାକୁର ସେତେବେଳେ ଅର୍ଦ୍ଧବାହ୍ୟଦଶାରେ ଥିଲେ । ନରେନ୍ଦ୍ରଙ୍କ ହସ ଶୁଣି ସେ ବାଳକ ପରି ପିନ୍ଧିଥିବା ଲୁଗାଖଣ୍ଡିକ କାଖତଳେ ନେଇ ବାହାରି ଆସିଲେ ଏବଂ 'ତୁମେ କ'ଣ କହୁଛ ହେ' କହି ହସି ହସି ପାଖକୁ ଆସି ନରେନ୍ଦ୍ରଙ୍କୁ ସ୍ପର୍ଶ କରି ସମାଧିସ୍ଥ ହୋଇପଡ଼ିଲେ ।

### ଏହା ଫଳରେ ନରେନ୍ଦ୍ରଙ୍କର ଅଦ୍ଭୁତ ଦର୍ଶନ :

ନରେନ୍ଦ୍ର କହୁଥିଲେ, ''ଠାକୁରଙ୍କର ସେହି ଦିନର ଅଦ୍ଭୁତ ସ୍ପର୍ଶରେ ମୁହୂର୍ତ୍ତକ ମଧ୍ୟରେ ଭାବାନ୍ତର ଉପସ୍ଥିତ ହେଲା । ସ୍ତମ୍ଭିତ ହୋଇ ସତ ସତ ଦେଖିବାକୁ ଲାଗିଲି, ଈଶ୍ୱର ବ୍ୟତୀତ ବିଶ୍ୱ ବ୍ରହ୍ମାଣ୍ଡରେ ଅନ୍ୟ କିଛି ନାହିଁ ! ତାହା ଦେଖି କିନ୍ତୁ ନୀରବ ରହିଲି, ଭାବିଲି— ଦେଖେ କେତେ ସମୟ ପର୍ଯ୍ୟନ୍ତ ଏହି ଭାବ ରହୁଛି । କିନ୍ତୁ ସେହି ଭାବ ସେଦିନ ଆଦୌ କମିଲା ନାହିଁ । ଘରକୁ ଫେରିଲି, ସେଠାରେ ମଧ୍ୟ ତାହା ହିଁ— ଯାହାକିଛି ଦେଖିବାକୁ ଲାଗିଲି, ତାହା ସବୁ ହିଁ ସେ, ଏପରି ବୋଧ ହେବାକୁ ଲାଗିଲା । ଖାଇବାକୁ ବସିଲି, ଦେଖୁଛି ଅନ୍ନ, ଥାଳି, ଯିଏ ପରସୁଛନ୍ତି, ସେସମସ୍ତ ଏବଂ ମୁଁ ନିଜେ ମଧ୍ୟ ସେ (ଈଶ୍ୱର) ବ୍ୟତୀତ ଅନ୍ୟ କେହି ନୁହନ୍ତି ! ଏକ-ଦୁଇ ଗୁଣ୍ଡା ଖାଇ ସ୍ଥିର ହୋଇ ବସି ରହିଲି । 'ବସି ରହିଲୁ କାହିଁକି ରେ, ଖା'

ନା'—ମା'ଙ୍କର ଏପରି କଥାରେ ହୋସ୍ ହେବାରୁ ପୁଣି ଖାଇବାକୁ ଆରମ୍ଭ କଲି । ସେହି ପ୍ରକାର ଖାଇବାରେ, ଶୋଇବା ସମୟରେ, କଲେଜ ଯିବା ସମୟରେ, ସବୁ ସମୟରେ ହିଁ ସେପରି ଦେଖିବାକୁ ଲାଗିଲି ଏବଂ ସର୍ବକ୍ଷଣ କିପରି ଏକ ଅଜଣା ଅନୁଭବରେ ଆଚ୍ଛନ୍ନ ହୋଇ ରହିଲି । ରାସ୍ତାରେ ଚାଲୁଛି, ଗାଡ଼ି ଆସୁଛି ଦେଖୁଛି, କିନ୍ତୁ ଅନ୍ୟ ସମୟ ପରି ଏହା ମୋତେ ଆଘାତ କରିବା ଭୟରେ ଘୁଞ୍ଚିଯିବାର ପ୍ରବୃତ୍ତି ହେଉ ନ ଥିଲା ! —ମନେ ହେଉଥିଲା, ଏସବୁ ଯାହା ମୁଁ ମଧ୍ୟ ତାହା ହିଁ ! ହାତଗୋଡ଼ ଏସମୟରେ ସର୍ବଦା ଅବଶ ହୋଇ ରହୁଥିଲା ଏବଂ ଆହାର କରି କୌଣସି ପ୍ରକାର ତୃପ୍ତି ହେଉ ନ ଥିଲା । ମନେ ହେଉଥିଲା ଯେପରି ଆଉ ଜଣେ କିଏ ଖାଉଛି । ଖାଉ ଖାଉ ବେଳେ ବେଳେ ଶୋଇ ପଡ଼େ ଏବଂ କିଛିସମୟ ପରେ ଉଠି ପୁଣି ଖାଏ । ଦିନେ ଦିନେ ଏପରି ଅନେକ ବେଶୀ ଖାଇଦେଉଥିଲି । କିନ୍ତୁ ସେଥିପାଇଁ କୌଣସି ପ୍ରକାର ଦେହ ଖରାପ ମଧ୍ୟ ହେଉ ନ ଥିଲା ! —ମା' ଡରିଯାଇ କହୁଥିଲେ, 'ତୋର ଦେଖୁଛି ଭିତରେ ଭିତରେ କିଛି ବଡ଼ ବେମାର ହୋଇଛି'—କେବେ କେବେ ପୁଣି କହୁଥିଲେ, 'ସେ ଆଉ ବଞ୍ଚିବ ନାହିଁ' । ଯେତେବେଳେ ପୂର୍ବୋକ୍ତ ଆଚ୍ଛନ୍ନ ଭାବଟି ଟିକିଏ କମିଯାଉଥିଲା, ସେତେବେଳେ ଜଗତକୁ ସ୍ୱପ୍ନ ବୋଲି ମନେ ହେଉଥିଲା ! ହେଦୁୟା ପୋଖରୀ କୂଳକୁ ବୁଲିବାକୁ ଯାଇ ତା'ର ଚତୁଃପାର୍ଶ୍ୱରେ ଲୌହ ରେଲିଂରେ ମୁଣ୍ଡ ବାଡ଼େଇ ଦେଖୁଥିଲି, ଯାହା ଦେଖୁଛି ସେସବୁ ସ୍ୱପ୍ନର ରେଲିଂ, ଅଥବା ସତ୍ୟ ! ହାତ-ଗୋଡ଼ ଅବଶ ହେଉଥିବାରୁ, ମନେ ହେଉଥିଲା, ପକ୍ଷାଘାତ ହେବ ନାହିଁ ତ ? ଏହିପରି କିଛିଦିନ ପର୍ଯ୍ୟନ୍ତ ଏହି ବିଷମ ଭାବର ଅବସ୍ଥା ଓ ଆଚ୍ଛନ୍ନତା ହାତରୁ ପରିତ୍ରାଣ ପାଇଲି ନାହିଁ । ଯେତେବେଳେ ପ୍ରକୃତିସ୍ଥ ହେଲି, ସେତେବେଳେ ଭାବିଲି ଏହା ହିଁ ଅଦ୍ୱୈତଜ୍ଞାନର ଆଭାସ ! ତେବେ ତ ଶାସ୍ତ୍ରରେ ଏବିଷୟରେ ଯାହା ଲେଖା ଅଛି, ତାହା ମିଥ୍ୟା ନୁହେଁ ! ସେହିଦିନଠାରୁ ଅଦ୍ୱୈତତତ୍ତ୍ୱ ଉପରେ ଆଉ କେବେ ସନ୍ଦିହାନ ହୋଇପାରି ନାହିଁ ।''

**ନରେନ୍ଦ୍ରଙ୍କ ସହିତ ଗ୍ରନ୍ଥକାରଙ୍କର ଗୋଟିଏ ଦିନ ଆଳାପର ଫଳ :**

ଅନ୍ୟ ଗୋଟିଏ ଆଶ୍ଚର୍ଯ୍ୟ ଘଟଣା ମଧ୍ୟ ଆମେ ନରେନ୍ଦ୍ରନାଥଙ୍କ ନିକଟରୁ ପରେ ଶୁଣିବାକୁ ପାଇଥିଲୁ । ୧୮୮୪ ମସିହା ଶୀତକାଳରେ, ଯେତେବେଳେ ଆମେ ତାଙ୍କ ସହିତ ବିଶେଷ ଭାବରେ ପରିଚିତ ହୋଇଥିଲୁ, ସେତେବେଳେ ସେ ଆମ ପାଖରେ ଏହି ଘଟଣା ବିଷୟରେ ଉଲ୍ଲେଖ କରିଥିଲେ । କିନ୍ତୁ ଆମର ଅନୁମାନ ସେହି ଘଟଣାଟି ଏହି ସମୟରେ ହୋଇଥିଲା । ସେଥିପାଇଁ ଏଠାରେ ହିଁ ସେବିଷୟରେ ପାଠକଙ୍କୁ କହୁଛି । ଆମର ମନେ ଅଛି, ସେଦିନ ଦୁଇ ପ୍ରହର ବେଳାର କିଛି ସମୟ ପୂର୍ବରୁ ଆମେ ସିମଳାର ଗୌରମୋହନ ମୁଖାର୍ଜୀ ଷ୍ଟ୍ରୀଟ୍‌ରେ

ଥିବା ନରେନ୍ଦ୍ରନାଥଙ୍କ ଘରେ ଉପସ୍ଥିତ ହୋଇଥିଲୁ ଏବଂ ରାତି ପ୍ରାୟ ୧୧ଟା ପର୍ଯ୍ୟନ୍ତ ତାଙ୍କ ସହିତ କଟାଇଥିଲୁ । ଶ୍ରୀଯୁକ୍ତ ରାମକୃଷ୍ଣାନନ୍ଦ ସ୍ୱାମୀଜୀ ମଧ୍ୟ ସେଦିନ ଆମ ସଙ୍ଗରେ ଥିଲେ । ପ୍ରଥମ ଦର୍ଶନ-ଦିନରୁ ଆମେ ନରେନ୍ଦ୍ରଙ୍କ ପ୍ରତି ଯେଉଁ ଦିବ୍ୟ ଆକର୍ଷଣରେ ଆକୃଷ୍ଟ ହୋଇଥିଲୁ, ବିଧାତାଙ୍କର ବିଧାନରେ ତାହା ସେଦିନ ସହସ୍ରଗୁଣରେ ଘନୀଭୂତ ହୋଇଉଠିଥିଲା । ଏହା ପୂର୍ବରୁ ଆମେ ଠାକୁରଙ୍କୁ ଜଣେ ଈଶ୍ୱରଙ୍କୁ ଜାଣିଥିବା ବ୍ୟକ୍ତି ବା ସିଦ୍ଧପୁରୁଷ ବୋଲି ଧାରଣା କରିଥିଲୁ । କିନ୍ତୁ ଠାକୁରଙ୍କ ସମ୍ବନ୍ଧରେ ନରେନ୍ଦ୍ରନାଥଙ୍କର ଆଜିର ପ୍ରାଣସ୍ପର୍ଶୀ କଥାସମୂହ ଆମମାନଙ୍କ ଅନ୍ତରରେ ନୂତନ ଆଲୋକ ଆଣିଥିଲା । ଆମେ ବୁଝିଥିଲୁ, ମହାମହିମ ଶ୍ରୀଚୈତନ୍ୟ ଓ ଈଶା ପ୍ରଭୃତି ଜଗଦ୍‌ଗୁରୁ ମହାପୁରୁଷଗଣଙ୍କର ଜୀବନ ଇତିହାସରେ ଲିପିବଦ୍ଧ ଯେଉଁ ସମସ୍ତ ଅଲୌକିକ ଘଟଣା ବିଷୟ ପାଠକରି ଆମେ ଏତେଦିନ ଅବିଶ୍ୱାସ କରି ଆସିଅଛୁ, ସେହିପରି ଘଟଣାସକଳ ଠାକୁରଙ୍କ ଜୀବନରେ ପ୍ରତିଦିନ ଘଟୁଅଛି— ଇଚ୍ଛା ବା ସ୍ପର୍ଶମାତ୍ରେ ହିଁ ସେ ଶରଣାଗତ ବ୍ୟକ୍ତିର ସଂସ୍କାରବନ୍ଧନ ମୋଚନପୂର୍ବକ ତାକୁ ଭକ୍ତିପ୍ରଦାନ କରୁଛନ୍ତି, ସମାଧିସ୍ଥ କରି ଦିବ୍ୟାନନ୍ଦର ଅଧିକାରୀ କରାଉଛନ୍ତି, କିମ୍ବା ତାଙ୍କର ଜୀବନଗତି ଆଧ୍ୟାତ୍ମିକ ପଥରେ ଏପରି ଭାବରେ ପ୍ରବର୍ତ୍ତିତ କରୁଅଛନ୍ତି ଯେ, ସେ ଖୁବ୍ ଶୀଘ୍ର ହିଁ ଈଶ୍ୱରଦର୍ଶନ ଲାଭ କରି ଚିରକାଳ ପାଇଁ ସେ କୃତାର୍ଥ ହେଉଛନ୍ତି ! ଆମର ମନେ ଅଛି, ଠାକୁରଙ୍କର କୃପାଲାଭ କରି ନିଜ ଜୀବନରେ ଯେଉଁ ଦିବ୍ୟ ଅନୁଭବସମୂହ ଉପସ୍ଥିତ ହୋଇଅଛି, ସେହି ସମସ୍ତ କଥା କହୁ କହୁ ନରେନ୍ଦ୍ରନାଥ ସେଦିନ ଆମକୁ ସନ୍ଧ୍ୟା ସମୟରେ ହେଦୁଆ ପୋଖରୀ କୂଳକୁ ବୁଲାଇବାକୁ ନେଇଥିଲେ ଏବଂ କିଛି ସମୟ ପାଇଁ ନିଜ ଭିତରେ ମଗ୍ନ ରହି ଅନ୍ତରର ଅଦ୍ଭୁତ ଆନନ୍ଦ ପରିଶେଷରେ କିନ୍ନର କଣ୍ଠରେ ପ୍ରକାଶ କରିଥିଲେ—

"ପ୍ରେମଧନ ବିଲାୟ ଗୋରା ରାୟ !
ଚାନ୍ଦ ନିତାଇ ଡାକେ ଆୟ ଆୟ !
(ତୋରା କେ ନିବି ରେ ଆୟ !)
ପ୍ରେମ କଲସେ କଲସେ ଢାଲେ ତବୁ ନା ଫୁରାୟ !
ପ୍ରେମେ ଶାନ୍ତିପୁର ଡୁବୁ ଡୁବୁ
ନଦେ ଭେସେ ଯାୟ !
(ଗୌର-ପ୍ରେମେର ହିଲ୍ଲୋଲେତେ)
ନଦେ ଭେସେ ଯାୟ !"

[ଅର୍ଥାତ୍—ଚୈତନ୍ୟ ମହାପ୍ରଭୁ ପ୍ରେମଧନ ବାଣ୍ଟୁଛନ୍ତି । ନିତାଇ ସମସ୍ତଙ୍କୁ ଆସ ଆସ କହି ଡାକୁଛନ୍ତି । ତୁମମାନଙ୍କ ମଧ୍ୟରୁ ଯାହାର ନେବାପାଇଁ ଇଚ୍ଛା ଅଛି, ଯାଅ । ମାଠିଆରେ ପ୍ରେମଧନ ଢାଳୁଛନ୍ତି କିନ୍ତୁ ତାହା ଶେଷ ହେଉ ନାହିଁ । ପ୍ରେମରେ

ଶାନ୍ତିପୁର ବୁଡ଼ିବାକୁ ବସିଲାଣି ଏବଂ ନଦିଆ ପ୍ଲାବିତ ହେଲାଣି । ଚୈତନ୍ୟ ମହାପ୍ରଭୁଙ୍କ ପ୍ରେମଲହରୀରେ ନଦିଆନଗର ପ୍ଲାବିତ ହେଉଛି ।]

**ନରେନ୍ଦ୍ରଙ୍କର ଅଦ୍ଭୁତ ଘଟଣାର ଉଲ୍ଲେଖ :**

ଗୀତ ସରିଲା ପରେ ନରେନ୍ଦ୍ରନାଥ ଯେପରି ନିଜକୁ ନିଜେ ସମ୍ବୋଧନପୂର୍ବକ ଧୀରେ ଧୀରେ କହୁଥିଲେ, ''ସତ ସତ ହିଁ ବାଣ୍ଟି ଦେଉଛନ୍ତି ! ପ୍ରେମ କୁହ, ଭକ୍ତି କୁହ, ଜ୍ଞାନ କୁହ, ମୁକ୍ତି କୁହ, ଗୋରା ରାୟ ଯାହାକୁ ଯାହା ଇଚ୍ଛା ତାହାକୁ ତାହା ହିଁ ବାଣ୍ଟୁଛନ୍ତି ! କି ଅଦ୍ଭୁତ ଶକ୍ତି ! (କିଛିକ୍ଷଣ ସ୍ଥିର ରହିବା ପରେ କହୁଛନ୍ତି) ରାତିରେ ଘରେ କବାଟ କିଳି ବିଛଣାରେ ଶୋଇଅଛି, ହଠାତ୍ ଶରୀର ଭିତରେ ଯିଏ ଅଛି ତାକୁ ଆକର୍ଷଣ କରି ଦକ୍ଷିଣେଶ୍ୱରରେ ହାଜର କରାଇଲେ, ପରେ କେତେ କଥା କେତେ ଉପଦେଶ ଦେବାପରେ ପୁନରାୟ ଫେରିବାକୁ ଦେଲେ ! ସବୁ କରିପାରନ୍ତି — ଦକ୍ଷିଣେଶ୍ୱରର ଗୋରାରାୟ ସବୁ କରିପାରନ୍ତି !''

**ଗ୍ରନ୍ଥକାରଙ୍କର ବାସସ୍ଥାନକୁ ଆସି ନରେନ୍ଦ୍ରଙ୍କର ଅପୂର୍ବ ଉପଲବ୍ଧି :**

ସନ୍ଧ୍ୟାର ଅନ୍ଧକାର ଘନୀଭୂତ ହୋଇ ତାମସୀ ରାତ୍ରିରେ ପରିଣତ ହୋଇଅଛି । ପରସ୍ପର ପରସ୍ପରକୁ ଦେଖିପାରୁ ନାହୁଁ, ପ୍ରୟୋଜନ ମଧ୍ୟ ହେଉ ନାହିଁ । କାରଣ, ନରେନ୍ଦ୍ରଙ୍କର ଜ୍ୱଳନ୍ତ ଭାବରାଶି ମର୍ମରେ ରହି ଅନ୍ତର ମଧ୍ୟରେ ଏପରି ଏକ ଦିବ୍ୟ ମାଦକତା ଆଣି ଦେଇଛି, ଯେଉଁଥିରେ ଶରୀର ଦୋହଲି ଯାଉଛି ଏବଂ ଏତେକାଳର ବାସ୍ତବ ଜଗତ ଯେପରି ଦୂରର ସ୍ୱପ୍ନରାଜ୍ୟରେ ଅପସୃତ ହୋଇଅଛି, ଆଉ ଅହେତୁକୀ କୃପାର ପ୍ରେରଣାରେ ଅନାଦି ଅନନ୍ତ ଈଶ୍ୱରଙ୍କର ସାନ୍ତ ହୋଇ ଉଦୟ ହେବା ଏବଂ ଜୀବର ସଂସ୍କାର-ବନ୍ଧନ ବିନଷ୍ଟ କରି ଧର୍ମଚକ୍ର ପ୍ରବର୍ତ୍ତନ କରିବାରୂପକ ସତ୍ୟ — ଯାହା ଜଗତର ଅଧିକାଂଶଙ୍କର ମତରେ ଅବାସ୍ତବ କଳ୍ପନାସମ୍ଭୂତ — ତାହା ସେତେବେଳେ ଜୀବନ୍ତ ସତ୍ୟ ଭାବରେ ସମ୍ମୁଖରେ ଦଣ୍ଡାୟମାନ ହୋଇଅଛି ! — ସମୟ କେତେବେଳେ କିପରି ବିତିଗଲା, ତାହା ବୁଝି ପାରିଲୁ ନାହିଁ, କିନ୍ତୁ ସହସା ଶୁଣିବାକୁ ପାଇଲୁ ରାତି ନଅଟା ବାଜିଗଲା । ନିତାନ୍ତ ଅନିଚ୍ଛାସତ୍ତ୍ୱେ ବିଦାୟ ଗ୍ରହଣ କରିବାର ସଂକଳ୍ପ କରୁଛୁ, ଏହି ସମୟରେ ନରେନ୍ଦ୍ର କହିଲେ, ''ଚାଲ, ତୁମମାନଙ୍କୁ କିଛି ଦୂର ଆଗେଇ ଦେଇ ଆସେ ।'' ଯାଉ ଯାଉ ପୁଣି ପୂର୍ବ ପରି କଥା ଆଲୋଚନା ଆରମ୍ଭ ହେବାରୁ ଆମେ ଏତେ ଦୂର ତନ୍ମୟ ହୋଇପଡ଼ିଲୁ ଯେ, ଚାଁପାତଲା ନିକଟରେ ଘରେ ପହଞ୍ଚିବା ପରେ ମନେହେଲା, ଶ୍ରୀଯୁକ୍ତ ନରେନ୍ଦ୍ରଙ୍କୁ ଏତେଦୂର ଆସିବାକୁ ଦେବା ଠିକ୍ ହୋଇ ନାହିଁ । ତେଣୁ ଘରକୁ

ଡାକି କିଛି ଜଳଯୋଗ କରାଇବା ପରେ ବୁଲୁବୁଲୁ ତାଙ୍କୁ ତାଙ୍କ ଘର ପର୍ଯ୍ୟନ୍ତ ଯାଇ ପହଞ୍ଚାଇ ଦେଇ ଆସିଲୁ । ସେଦିନର ଆଉ ଗୋଟିଏ କଥା ମଧ୍ୟ ଭଲଭାବରେ ସ୍ମରଣ ଅଛି । ଆମଘରେ ପ୍ରବେଶ କରିବା ମାତ୍ରେ ଶ୍ରୀଯୁକ୍ତ ନରେନ୍ଦ୍ର ହଠାତ୍ ସ୍ଥିର ଭାବରେ ଠିଆ ହୋଇପଡ଼ି କହିଥିଲେ, ''ଏ ଘରଟିକୁ ମୁଁ ଏହାପୂର୍ବରୁ ଦେଖିଛି ! ଏଘରର କେଉଁବାଟେ କେଉଁଠି ଯିବାକୁ ହେବ, କେଉଁଠାରେ କେଉଁଘର ଅଛି, ସବୁକିଛି ମୋତେ ଜଣା ଅଛି, ଆଶ୍ଚର୍ଯ୍ୟ !'' ନରେନ୍ଦ୍ରନାଥଙ୍କ ଜୀବନରେ ବେଳେ ବେଳେ ଏପରି ଅନୁଭବ ଆସିବାର କଥା ଏବଂ ତାହାର କାରଣ ସମ୍ବନ୍ଧରେ ସେ ଯାହା କହିଥିଲେ, ତାହା ଆମେ ପାଠକଙ୍କୁ ଅନ୍ୟତ୍ର କହିଛୁ । ସେଥିପାଇଁ ଏଠାରେ ସେବିଷୟରେ ପୁନରୁଲ୍ଲେଖର ଆବଶ୍ୟକତା ନାହିଁ ।

# ସପ୍ତମ ଅଧ୍ୟାୟ

## ଠାକୁରଙ୍କର ପରୀକ୍ଷାପ୍ରଣାଳୀ ଓ ନରେନ୍ଦ୍ରନାଥ

ଅସାଧାରଣ ଲକ୍ଷଣସମୂହ ଦର୍ଶନରେ ଉତ୍ତମ ଅଧିକାରୀ ସ୍ଥିର କରି ପ୍ରଥମ ମିଳନ ଦିନରୁ ଠାକୁର ନରେନ୍ଦ୍ରନାଥଙ୍କୁ ନିଜ ଅଦୃଷ୍ଟପୂର୍ବ ଅହେତୁକ ଭଲ ପାଇବାରେ ଆବଦ୍ଧ କରିଥିଲେ ଏବଂ ପରେ ସମୟ ସମୟରେ ପରୀକ୍ଷାପୂର୍ବକ ଆଧ୍ୟାତ୍ମିକ ସର୍ବବିଷୟରେ ଶିକ୍ଷାଦାନ କରିବାକୁ ଅଗ୍ରସର ହୋଇଥିଲେ, ଏବିଷୟ ଆମେ ପାଠକଙ୍କୁ କହିଛୁ । ଅତଏବ କେଉଁ ଭାବରେ କେତେପ୍ରକାରରେ ଠାକୁର ନରେନ୍ଦ୍ରଙ୍କୁ ପରୀକ୍ଷା କରିଥିଲେ, ସେବିଷୟରେ କିଞ୍ଚିତ୍ ଆଭାସ ଏଠାରେ ଲିପିବଦ୍ଧ କରିବା ପ୍ରୟୋଜନ ।

### ଠାକୁରଙ୍କର ଅଦ୍ଭୁତ ଲୋକ-ପରୀକ୍ଷା :

କୁଚ୍‌ବିହାର-ବିବାହରେ ମତଭେଦ ନେଇ ଦଳଭଙ୍ଗ ହେବାର ଉପକ୍ରମରେ ଠାକୁର କେଶବଚନ୍ଦ୍ରଙ୍କୁ କହିଥିଲେ, ''ତୁମେ ପରୀକ୍ଷା ନ କରି ଯାହାକୁ ତାହାକୁ ନେଇ ଦଳ ବୃଦ୍ଧିକର, ତେଣୁ ତୁମର ଦଳ ଭାଙ୍ଗିଯିବ ଏଥିରେ ଆଶ୍ଚର୍ଯ୍ୟ କ'ଣ ? ପରୀକ୍ଷା ନ କରି ମୁଁ କେବେ କାହାକୁ ଗ୍ରହଣ କରେ ନାହିଁ ।'' ବାସ୍ତବିକ୍, ତାଙ୍କ ନିକଟକୁ ଆସୁଥିବା ଭକ୍ତଗଣଙ୍କୁ ସେମାନଙ୍କର ଜ୍ଞାତ ଓ ଅଜ୍ଞାତସାରରେ ଠାକୁର କେତେ ପ୍ରକାରରେ ପରୀକ୍ଷା କରିନେଉଥିଲେ, ତାହା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ମନେହୁଏ, ନିରକ୍ଷର ବୋଲି ଯିଏ ଜନସମାଜରେ ନିଜକୁ ପରିଚିତ କରିଅଛନ୍ତି, ଲୋକଚରିତ୍ର ବୁଝିବାର ଏସମସ୍ତ ଅଦୃଷ୍ଟ ଏବଂ ଅଶ୍ରୁତପୂର୍ବ ଉପାୟ ସେ କେଉଁଠୁ କିପରି ଆୟତ୍ତ କରିଥିଲେ ! ମନେହୁଏ, ତାହା କ'ଣ ତାଙ୍କର ପୂର୍ବଜନ୍ମାର୍ଜିତ ବିଦ୍ୟାର ଇହଜନ୍ମରେ ସ୍ୱୟଂପ୍ରକାଶ—କିମ୍ବା, ସାଧନ-ପ୍ରଭାବରେ ଋଷିମାନଙ୍କ ସଦୃଶ ଅତୀନ୍ଦ୍ରିୟଦର୍ଶିତ୍ୱ ଓ ସର୍ବଜ୍ଞତ୍ୱଲାଭର ଫଳ—ଅଥବା, ଅନ୍ତରଙ୍ଗ ଭକ୍ତମାନଙ୍କ ନିକଟରେ ସେ ଈଶ୍ୱରାବତାର ବୋଲି ଯେ ନିଜ ପରିଚୟ ପ୍ରଦାନ କରୁଥିଲେ, ସେହି ବିଶେଷତ୍ୱର କାରଣରେ ହିଁ ତାଙ୍କର ସେହିପ୍ରକାର ଜ୍ଞାନପ୍ରକାଶ ଉପସ୍ଥିତ ହୋଇଥିଲା ? ଏପରି ବିଭିନ୍ନ କଥା ମନରେ ଉଦୟ ହେଲେ ମଧ୍ୟ ସେବିଷୟରେ ମୀମାଂସା କରିବାକୁ ଆମେ ସମ୍ପ୍ରତି ଅଗ୍ରସର ହେଉ ନାହୁଁ, କିନ୍ତୁ ଘଟଣାବଳୀର ଯଥାଯଥ ବିବରଣ ଯେତେଦୂର ସମ୍ଭବ ପ୍ରଦାନପୂର୍ବକ ପାଠକଙ୍କ ଉପରେ ସେବିଷୟର ମୀମାଂସା ଭାର ଅର୍ପଣ କରୁଛୁ ।

## ପରୀକ୍ଷା–ପ୍ରଣାଳୀର ସାଧାରଣ ବିଧି :

ଲୋକଚରିତ୍ର ଅବଗତ ହେବାପାଇଁ ଠାକୁର ଯେଉଁସବୁ ଉପାୟ ଅବଲମ୍ବନ କରିବାର ଦେଖିଛୁ, ସେବିଷୟର କେତୋଟି ଘଟଣା ଉଲ୍ଲେଖ କଲେ ହିଁ ଏହାର ଅଦ୍ଭୁତ ଅଲୌକିକତ୍ୱ ପାଠକଙ୍କର ହୃଦୟଙ୍ଗମ ହେବ । କିନ୍ତୁ ତାହା କରିବା ପୂର୍ବରୁ ସେହି ସମସ୍ତ ବିଷୟ ସମ୍ବନ୍ଧରେ କେତୋଟି କଥା ଜାଣିବା ବିଶେଷ ପ୍ରୟୋଜନ । ଆମେ ଦେଖିଛୁ— କୌଣସି ବ୍ୟକ୍ତି ଠାକୁରଙ୍କ ନିକଟରେ ଉପସ୍ଥିତ ହେବା ମାତ୍ରେ ସେ ତାଙ୍କୁ ଏକ ପ୍ରକାର ବିଶେଷଭାବରେ ନିରୀକ୍ଷଣ କରୁଥିଲେ । ସେହିପରି କରି ଯଦି ଆଗନ୍ତୁକ ପ୍ରତି ତାଙ୍କର ଚିତ୍ତ କିଛି ମାତ୍ରାରେ ଆକୃଷ୍ଟ ହେଉଥିଲା, ତେବେ ସେ ତାଙ୍କ ସହିତ ସାଧାରଣ ଭାବରେ ଧର୍ମାଳାପରେ ପ୍ରବୃତ୍ତ ହେଉଥିଲେ ଏବଂ ତାଙ୍କ ନିକଟକୁ ଯିବା ଆସିବା କରିବାକୁ କହୁଥିଲେ । ଯେତେ ଦିନ ଅତିକ୍ରାନ୍ତ ହୁଏ ଏବଂ ଉକ୍ତ ବ୍ୟକ୍ତି ତାଙ୍କ ନିକଟକୁ ଯେତେ ଯିବା ଆସିବା କରୁଥାଆନ୍ତି ସେତେ ହିଁ ସେ ଉକ୍ତ ବ୍ୟକ୍ତିଙ୍କର ଅଜ୍ଞାତସାରରେ ତାହାର ଶାରୀରିକ ଅଙ୍ଗପ୍ରତ୍ୟଙ୍ଗ ଆଦିର ଗଠନଭଙ୍ଗି, ମାନସିକ ଭାବସମୂହ, କାମ–କାଞ୍ଚନରେ ଆସକ୍ତି ଓ ଭୋଗତୃଷ୍ଣାର ପରିମାଣ ଏବଂ ଠାକୁରଙ୍କ ପ୍ରତି ତାଙ୍କର ମନ କିପରି ଭାବରେ କେତେଦୂର ଆକୃଷ୍ଟ ହୋଇଛି ଏବଂ ହେଉଅଛି, ଚାଲିଚଳନ ଓ କଥାବାର୍ତ୍ତାରେ ପ୍ରକାଶିତ ଏହି ସମସ୍ତ ବିଷୟର ତନ୍ନ ତନ୍ନ ଲକ୍ଷ୍ୟ ରଖି ତାହାର ଅନ୍ତର୍ନିହିତ ସୁପ୍ତ ଆଧ୍ୟାତ୍ମିକତା ପ୍ରଭୃତି ସମ୍ବନ୍ଧରେ ଗୋଟିଏ ନିଶ୍ଚିତ ଧାରଣାରେ ଉପସ୍ଥିତ ହେବାକୁ ପ୍ରବୃତ୍ତ ହେଉଥିଲେ । ଏହିପରି ଦୁଇଚାରିଦିନ ଦର୍ଶନ ଫଳରେ ହିଁ ସେ ଉକ୍ତ ବ୍ୟକ୍ତିର ଚରିତ୍ର ସମ୍ବନ୍ଧରେ ସମ୍ପୂର୍ଣ୍ଣ ରୂପେ ନିଃସନ୍ଦେହ ହେଉଥିଲେ । ପରେ ସେହି ବ୍ୟକ୍ତିଙ୍କର ଅନ୍ତରର ନିଗୁଢ଼ କୌଣସି କଥା ଜାଣିବା ଦରକାର ହେଲେ ସେ ତାଙ୍କର ଯୋଗପ୍ରସୂତ ସୂକ୍ଷ୍ମଦୃଷ୍ଟିସହାୟରେ ତାହା ଜାଣି ନେଉଥିଲେ । ସେସମ୍ବନ୍ଧରେ ସେ ଦିନେ ଆମମାନଙ୍କୁ କହିଥିଲେ, ''ରାତ୍ରିଶେଷରେ ଏକାକୀ ବସିଥିବା ବେଳେ ଯେତେବେଳେ ତୁମମାନଙ୍କର କଲ୍ୟାଣ ଚିନ୍ତା କରୁଥାଏ, ସେତେବେଳେ ମା' (ଜଗଦମ୍ବା) ସବୁକଥା ଜଣାଇ ଓ ଦେଖାଇ ଦିଅନ୍ତି— କିଏ କେତେଦୂର ଉନ୍ନତିଲାଭ କଲା, କାହାର କ'ଣ ପାଇଁ (ଧର୍ମବିଷୟରେ) ଉନ୍ନତି ହେଉ ନାହିଁ, ଇତ୍ୟାଦି !'' ଠାକୁରଙ୍କର ଉକ୍ତ କଥାରେ ପାଠକ ଯେପରି ନ ଭାବନ୍ତି ଯେ, ତାଙ୍କର ଯୋଗଦୃଷ୍ଟି କେବଳ ସେହି ସମୟରେ ହିଁ ଉନ୍ମୀଳିତ ହେଉଥିଲା । ତାଙ୍କର ଅନ୍ୟାନ୍ୟ କଥାରୁ ବୁଝି ହେଉଥିଲା, ଇଚ୍ଛାମାତ୍ରେ ସେ ଉଚ୍ଚ ଭାବଭୂମିରେ ଆରୋହଣପୂର୍ବକ ସବୁ ସମୟରେ ହିଁ ସେପରି ଦୃଷ୍ଟିଲାଭରେ ସମର୍ଥ ହେଉଥିଲେ; ଯଥା— ''କାଚର ଆଲମାରିକୁ ଦେଖିଲେ ଯେପରି ତାହା ଭିତରର ପଦାର୍ଥସମୂହ ଦୃଷ୍ଟିଗୋଚର ହୁଏ, ସେପରି ମନୁଷ୍ୟଙ୍କୁ ଚାହିଁଲେ ହିଁ ସେମାନଙ୍କର ଅନ୍ତରର ଚିନ୍ତା, ସଂସ୍କାରାଦି ସମସ୍ତ ବିଷୟ ଦେଖିପାରେ !''— ଇତ୍ୟାଦି ।

## ଉଚ୍ଚ ଅଧିକାରୀଙ୍କ ସହିତ ପ୍ରଥମ ସାକ୍ଷାତ ସମୟରେ ଠାକୁରଙ୍କର ଅନୁରୂପ ଭାବାବେଶ :

ଠାକୁର ପୂର୍ବୋକ୍ତ ଭାବରେ ଲୋକଚରିତ୍ର ଅବଗତ ହେବାକୁ ସାଧାରଣତଃ ଅଗ୍ରସର ହେଲେ ମଧ୍ୟ ବିଶେଷ ବିଶେଷ ଅନ୍ତରଙ୍ଗ ଭକ୍ତମାନଙ୍କ ସମ୍ବନ୍ଧରେ ଏହି ନିୟମର ଅଳ୍ପ ବହୁତ ବ୍ୟତିକ୍ରମ ହେବାର ଦେଖାଯାଏ । ଦେଖାଯାଏ, ସେମାନଙ୍କ ସହିତ ପ୍ରଥମ ସାକ୍ଷାତ୍ ସେ ଦୈବପ୍ରେରଣାରେ ଉଚ୍ଚରୁ ଉଚ୍ଚତର ଭାବଭୂମିରେ ଅବସ୍ଥିତ ହୋଇ ହିଁ କରିଥିଲେ । 'ଲୀଳାପ୍ରସଙ୍ଗ'ରେ ଗୋଟିଏ ଜାଗାରେ ଆମେ ପାଠକଙ୍କୁ କହିଛୁ, ଅଦୃଷ୍ଟପୂର୍ବ ସାଧନାବଳରେ ଠାକୁରଙ୍କର ଶରୀର ମନ, ସୂକ୍ଷ୍ମ ଆଧ୍ୟାତ୍ମିକଶକ୍ତି ଧାରଣ ଓ ଜ୍ଞାପନର ବିଚିତ୍ର ଯନ୍ତ୍ରସ୍ୱରୂପ ହୋଇଉଠିଥିଲା । ଏହି କଥା ଅକ୍ଷରେ ଅକ୍ଷରେ ସତ୍ୟ । ଆମେମାନେ ନିୟତ ଦେଖିବାକୁ ପାଉଥିଲୁ, ଯାହା ଭିତରେ ଯେଉଁ ପ୍ରକାର ଆଧ୍ୟାତ୍ମିକ ଭାବ ରହୁଥିଲା ତାକୁ ଦେଖିବାମାତ୍ରେ ତାଙ୍କର ଅନ୍ତର କୌଣସି ଏକ ଦିବ୍ୟ ପ୍ରେରଣାରେ ସହସା ଅନୁରୂପଭାବରେ ରଞ୍ଜିତ ହୋଇଉଠୁଥିଲା; ଏବଂ ପୂର୍ବ କର୍ମ ଓ ସଂସ୍କାରବଶରେ ଆଧ୍ୟାତ୍ମିକ ରାଜ୍ୟରେ ଯିଏ ଯେତେ ଦୂର ଆରୂଢ଼ ହୋଇଛି, ତାହାର ଆଗମନମାତ୍ରେ ହିଁ ତାଙ୍କର ଅନ୍ତର ସ୍ୱଭାବତଃ ସେହି ଭୂମିରେ ଆରୋହଣ କରି ଆଗନ୍ତୁକଙ୍କର ଅନ୍ତରର କଥା ତାଙ୍କୁ ଜଣାଇ ଦେଉଥିଲା । ନରେନ୍ଦ୍ରଙ୍କର ପ୍ରଥମ ଆଗମନକାଳରେ ଠାକୁରଙ୍କର ଯେଉଁ ସମସ୍ତ ଉପଲବ୍ଧି ଆମେ ଏହାପୂର୍ବରୁ ଲିପିବଦ୍ଧ କରିଅଛୁ, ସେଗୁଡ଼ିକ ସାହାଯ୍ୟରେ ହିଁ ପାଠକ ଆମର ଏହିକଥା ବୁଝିପାରିବେ ।

## ପରୀକ୍ଷା ପ୍ରଣାଳୀର ଚାରୋଟି ବିଭାଗ :

ସେପରି ହେଲେ ମଧ୍ୟ ଲୋକଚରିତ୍ର-ପରିଜ୍ଞାନ ନିମିତ୍ତ ଠାକୁର ଯେଉଁ ସାଧାରଣ ନିୟମ ସର୍ବଦା ଅବଲମ୍ବନ କରୁଥିଲେ, ତାହା ସେ ତାଙ୍କର ଅନ୍ତରଙ୍ଗ ଭକ୍ତମାନଙ୍କ ସମ୍ବନ୍ଧରେ ଯେ ପ୍ରୟୋଗ କରୁ ନ ଥିଲେ, ତାହା ନୁହେଁ । ସାଧାରଣ ଭାବଭୂମିରେ ଅବସ୍ଥାନ କାଳରେ ସେମାନଙ୍କର ଚାଲିଚଳନ, କଥାବାର୍ତ୍ତାଦି, ସେ ସମଭାବରେ ଲକ୍ଷ୍ୟ କରୁଥିଲେ ଏବଂ ଅନ୍ୟମାନଙ୍କ କଥା କ'ଣ କୁହାଯିବ, ଶ୍ରୀଯୁକ୍ତ ନରେନ୍ଦ୍ରନାଥଙ୍କୁ ମଧ୍ୟ ସେ ସେହି ଭାବରେ ପରୀକ୍ଷା ନ କରି ନିଶ୍ଚିନ୍ତ ହୋଇ ନ ଥିଲେ । ଅତଏବ ସେହି ବିଷୟ ପାଠକଙ୍କୁ ଜଣାଇବା ଏକାନ୍ତ ପ୍ରୟୋଜନ । ଭକ୍ତମାନଙ୍କୁ ପରୀକ୍ଷା କରିବା ପାଇଁ ଠାକୁର ଯେଉଁ ସବୁ ଉପାୟ ଅବଲମ୍ବନ କରୁଥିଲେ, ସେଥିରେ ଚାରୋଟି ପ୍ରଧାନ ବିଭାଗ ଦେଖାଯାଏ । ଆମେ ଏହାପୂର୍ବରୁ ସେହି ବିଷୟର ଇଙ୍ଗିତ କରିସାରିଛୁ । ଅତଏବ ଉକ୍ତ ବିଭାଗ-ଚତୁଷ୍ଟୟର ପ୍ରତ୍ୟେକଟିର ଉଲ୍ଲେଖପୂର୍ବକ ଦୃଷ୍ଟାନ୍ତ ଦ୍ୱାରା ତାହା ପାଠକଙ୍କୁ ହୃଦୟଙ୍ଗମ କରାଇବାକୁ ଏବେ ପ୍ରବୃତ୍ତ ହେଉଛୁ :

୧ମ—ଶାରୀରିକ ଲକ୍ଷଣଗୁଡ଼ିକୁ ଦେଖି ଠାକୁର ସମୀପାଗତ ବ୍ୟକ୍ତିମାନଙ୍କର ଅନ୍ତରର ପ୍ରବଳ ପୂର୍ବସଂସ୍କାରସମୂହ ନିର୍ଣ୍ଣୟ କରୁଥିଲେ ।

**(୧) ଶାରୀରିକ ଲକ୍ଷଣସମୂହ ଦର୍ଶନରେ ଅନ୍ତରର ସଂସ୍କାର ନିର୍ଣ୍ଣୟ :**

ମନର ପ୍ରତ୍ୟେକ ବ୍ୟକ୍ତ ଚିନ୍ତା, କ୍ରିୟାରୂପରେ ପରିଣତ ହେବା ସହିତ ଆମମାନଙ୍କର ମସ୍ତିଷ୍କରେ ଏବଂ ଶରୀରର ବିଶେଷ ବିଶେଷ ସ୍ଥାନରେ ଗୋଟିଏ ଗୋଟିଏ ଦାଗ ଅଙ୍କିତ କରିଦିଏ—ବର୍ତ୍ତମାନ ଯୁଗର ଶରୀର ଓ ମନୋବିଜ୍ଞାନ ଏବିଷୟ ଅନେକାଂଶରେ ପ୍ରମାଣିତ କରି ଆମମାନଙ୍କୁ ଏବେ ଏହି କଥାରେ ଶ୍ରଦ୍ଧାବାନ କରୁଅଛି । ବେଦପ୍ରମୁଖ ଶାସ୍ତ୍ରସକଳ କିନ୍ତୁ ସେକଥା ଚିରକାଳ ଧରି କହିଆସିଛନ୍ତି । ହିନ୍ଦୁର ଶ୍ରୁତି, ସ୍ମୃତି, ପୁରାଣ, ଦର୍ଶନ ଇତ୍ୟାଦି ସମସ୍ତ ଶାସ୍ତ୍ର ସମସ୍ୱରରେ ଘୋଷଣା କରିଛନ୍ତି, 'ମନ ଏହି ଶରୀର ସୃଷ୍ଟି କରିଥାଏ'—ବ୍ୟକ୍ତିବିଶେଷର ଅନ୍ତରର ଚିନ୍ତାପ୍ରବାହ କୁ ବା ସୁ ପଥରେ ଚାଲିବା ସଙ୍ଗେ ସଙ୍ଗେ ତାର ଶରୀର ମଧ୍ୟ ପରିବର୍ତ୍ତିତ ହୋଇ ଅନୁରୂପ ଆକାର ଧାରଣ କରୁଥାଏ । ସେଥିପାଇଁ ଶରୀର ଓ ଅଙ୍ଗପ୍ରତ୍ୟଙ୍ଗାଦିର ଗଠନ ଦେଖି ଲୋକଙ୍କର ଚରିତ୍ରନିର୍ଣ୍ଣୟ କରିବା ସମ୍ବନ୍ଧରେ ଅନେକ ପ୍ରବାଦ କଥା ଆମମାନଙ୍କ ମଧ୍ୟରେ ପ୍ରଚଳିତ ଅଛି ଏବଂ ବିବାହ, ଦୀକ୍ଷାଦାନ ପ୍ରଭୃତି ସ୍ଥଳରେ କନ୍ୟା ଓ ଶିଷ୍ୟର ହସ୍ତ-ପଦରୁ ଆରମ୍ଭ କରି ସମସ୍ତ ଅବୟବର ଏବଂ ସର୍ବଶରୀରର ଗଠନପ୍ରକାର ଦେଖିବା ଏକାନ୍ତ ଆବଶ୍ୟକ ବୋଲି ଏପର୍ଯ୍ୟନ୍ତ ପରିଗଣିତ ହୋଇରହିଛି ।

**ସେହି ବିଷୟରେ ଠାକୁରଙ୍କର ଅଦ୍ଭୁତ ଜ୍ଞାନ :**

ସର୍ବଶାସ୍ତ୍ରରେ ବିଶ୍ୱାସବାନ ଠାକୁର ଯେ ନିଜ ଶିଷ୍ୟବର୍ଗଙ୍କର ଶରୀର ଓ ଅବୟବଆଦିର ଗଠନପ୍ରକାର ଲକ୍ଷ୍ୟ କରିବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ କଥା ଛଳରେ ବେଳେ ବେଳେ ସେ ଏବିଷୟରେ ଏତେ କଥା ଆମମାନଙ୍କୁ କହୁଥିଲେ ଯେ, ନିର୍ବାକ ହୋଇ ଆମେମାନେ ଚିନ୍ତା କରୁଥିଲୁ—ଏସମ୍ବନ୍ଧରେ ଏତେ ଅଭିଜ୍ଞତା ସେ କେଉଁଠୁ ପାଇଲେ ! ଭାବୁଥିଲୁ ପ୍ରାଚୀନକାଳରେ ଏହି ବିଷୟରେ କୌଣସି ବୃହତ ଗ୍ରନ୍ଥ କ'ଣ ଥିଲା—ଯାହା ପାଠ ବା ଶ୍ରବଣ କରି ସେ ଏସବୁ କଥା ଜାଣିପାରିଛନ୍ତି ? କିନ୍ତୁ ଏପର୍ଯ୍ୟନ୍ତ ସେପରି କୌଣସି ପ୍ରକାର ଗ୍ରନ୍ଥ ଦୃଷ୍ଟିଗୋଚର ହେବା ଦୂରରେ ଥାଉ, ତାହାର ନାମ ପର୍ଯ୍ୟନ୍ତ ଶୁଣିବାକୁ ନ ମିଳିବାରୁ ସେପରି ଚିନ୍ତାର କୌଣସି ସ୍ଥାନ ନାହିଁ । ତେଣୁ ବିସ୍ମିତ ହୋଇ ଶୁଣୁଥିଲୁ ଯେ, ଠାକୁର ସ୍ତ୍ରୀ ବା ପୁରୁଷ-ଶରୀରର ପ୍ରତ୍ୟେକ ଅବୟବ ଓ ଇନ୍ଦ୍ରିୟର ଗଠନପ୍ରକାର ପ୍ରତିଦିନ ପରିଦୃଷ୍ଟ ବିଶେଷ ବିଶେଷ ପଦାର୍ଥର ଗଠନ ସଦୃଶ ହୁଏ ବୋଲି ଉଲ୍ଲେଖ କରି ସେପରି ହେବାର ଫଳାଫଳ କହିଯାଉଛନ୍ତି । ଯଥା, ମନୁଷ୍ୟର ଚକ୍ଷୁର ବିଷୟ ଉଠାଇ ଏହା କାହାର ପଦ୍ମପତ୍ର ସଦୃଶ, କାହାର ବୃଷଭ ସଦୃଶ, କାହାର ଯୋଗୀ

ବା ଦେବତା ସଦୃଶ ଇତ୍ୟାଦି ଦୃଷ୍ଟାନ୍ତ ଦେଇ କହୁଥିଲେ—"ପଦ୍ମପତ୍ର ସଦୃଶ ଚକ୍ଷୁବିଶିଷ୍ଟ ବ୍ୟକ୍ତିର ଅନ୍ତରରେ ସଦ୍‌ଭାବ ଓ ସାଧୁଭାବ ଥାଏ; ବୃଷଭ ସଦୃଶ ଚକ୍ଷୁ ଥିବା ବ୍ୟକ୍ତିର ଅନ୍ତରରେ କାମବାସନା ପ୍ରବଳ ଥାଏ, ଯୋଗୀ ଚକ୍ଷୁ ଊର୍ଦ୍ଧ୍ୱଦୃଷ୍ଟିସମ୍ପନ୍ନ ରକ୍ତିମ ଆଭାଯୁକ୍ତ ହୋଇଥାଏ; ଦେବଚକ୍ଷୁ ଅଧିକ ବଡ଼ ହୋଇ ନ ଥାଏ, କିନ୍ତୁ ଟଣା ବା ଆକର୍ଣ୍ଣବିସ୍ତୃତ ହୋଇଥାଏ । କାହା ସହିତ ବାକ୍ୟାଳାପ କରିବା ସମୟରେ ବେଳେ ବେଳେ ତାଙ୍କୁ କଣେଇ ଚାହିଁବା ଅଥବା ଚକ୍ଷୁର କୋଣ ଦେଇ ଦେଖିବା ଯାହାର ସ୍ୱଭାବ, ସେମାନେ ସାଧାରଣ ମାନବ ଅପେକ୍ଷା ଅଧିକ ବୁଦ୍ଧିମାନ ।" ଅଥବା ଶରୀରର ସାଧାରଣ ଗଠନ-ପ୍ରକାରର କଥା ଉଠାଇ ସେ କହୁଥିଲେ, "ଭକ୍ତିମାନ ବ୍ୟକ୍ତିଙ୍କର ଶରୀର ସ୍ୱଭାବତଃ କୋମଳ ଏବଂ ତାର ହସ୍ତପଦାଦିର ଗ୍ରନ୍ଥିସକଳ ଶିଥିଳ ହୋଇଥାଏ (ଅର୍ଥାତ୍ ସହଜରେ ହଲା ହଲି କରି ହୁଏ); କୃଶ ହେଲେ ମଧ୍ୟ ତା'ର ଶରୀରରେ ଅସ୍ଥି, ପେଶୀ ପ୍ରଭୃତି ଏପରି ଭାବରେ ବିନ୍ୟସ୍ତ ଥାଏ ଯେଉଁଥିରେ ଅଧିକ କୋଣ ଦେଖାଯାଏ ନାହିଁ ।" ବୁଦ୍ଧିମାନ ବୋଲି କାହାକୁ ସ୍ଥିର କରି ତାର ବୁଦ୍ଧିର ସ୍ୱାଭାବିକ ପ୍ରବଣତା ସତ୍ କିମ୍ବା ଅସତ୍ ବିଷୟରେ—ଏକଥା ସ୍ଥିର କରିବାକୁ ଠାକୁର କହୁଣୀରୁ ଅଙ୍ଗୁଳି ପର୍ଯ୍ୟନ୍ତ ହାତଟିକୁ ନିଜ ହାତରେ ଧାରଣପୂର୍ବକ ଏହାକୁ ଢିଲା ଭାବରେ ରଖିବାକୁ କହି ଏହାର ଓଜନ ଉପଲବ୍ଧି କରୁଥିଲେ ଏବଂ ସାଧାରଣ ମନୁଷ୍ୟର ହସ୍ତର ସେହି ଅଂଶର ଗୁରୁତ୍ୱ ଅପେକ୍ଷା ଯଦି ଏହାର ଭାର ଅଳ୍ପ ବୋଧ ହୁଏ, ତାହା ହେଲେ ତାଙ୍କୁ ସୁବୁଦ୍ଧିବିଶିଷ୍ଟ ବୋଲି ସ୍ଥିର କରୁଥିଲେ । ସ୍ୱାମୀ ପ୍ରେମାନନ୍ଦ[୧] ଦକ୍ଷିଣେଶ୍ୱରକୁ ପ୍ରଥମ ଆସିବା ଦିନ ଠାକୁର ତାଙ୍କର ହସ୍ତଧାରଣ ପୂର୍ବକ ସେହି ପ୍ରକାରରେ ଓଜନ କରିଥିଲେ, ଏକଥା ଆମେ ଏହାପୂର୍ବରୁ କହିଛୁ । କିନ୍ତୁ କ'ଣ ପାଇଁ ଏପରି କରିଥିଲେ ତାହା ସେ ସେଦିନ କହି ନ ଥିବାରୁ ଆମେ ମଧ୍ୟ ସେହି ସ୍ଥାନରେ ସେହି ବିଷୟରେ କିଛି କହି ନାହୁଁ । ବ୍ୟକ୍ତି ବିଶେଷଙ୍କର ବୁଦ୍ଧି ସତ୍ ବା ଅସତ୍ ଏକଥା ଜାଣିବା ପାଇଁ ଠାକୁର ଯେ ସେପରି କରୁଥିଲେ, ଏବିଷୟର ପରିଚୟ ଆମେ ନିମ୍ନଲିଖିତ ଭାବରେ ଦିନେ ଜାଣିପାରିଥିଲୁ ।

**ହାତର ଓଜନର ତାରତମ୍ୟରେ ସଦସଦ୍ ବୁଦ୍ଧି–ନିର୍ଣ୍ଣୟ :**

ଗଳରୋଗରେ ଆକ୍ରାନ୍ତ ହୋଇ ଠାକୁର ଯେତେବେଳେ କାଶୀପୁର ବଗିଚାରେ ଅବସ୍ଥାନ କରୁଥିଲେ ସେହି ସମୟରେ ଲେଖକଙ୍କର ପରଲୋକଗତ କନିଷ୍ଠ ସହୋଦର[୨] ଦିନେ ତାଙ୍କୁ ଦର୍ଶନ କରିବାକୁ ସେଠାରେ ଉପସ୍ଥିତ ହୋଇଥିଲେ । ଠାକୁର ତାଙ୍କୁ ଦେଖି ସେଦିନ ବିଶେଷ ପ୍ରସନ୍ନ ହୋଇଥିଲେ ଏବଂ ପାଖରେ ବସାଇ ତାଙ୍କୁ ନାନା କଥା ପଚାରି ଧର୍ମ ବିଷୟରେ ନାନା ଉପଦେଶ ପ୍ରଦାନ କରିଥିଲେ ।

---

୧. ପୂର୍ବନାମ—ବାବୁରାମ ।

୨. ଶ୍ରୀ ଚାରୁଚନ୍ଦ୍ର ଚକ୍ରବର୍ତ୍ତୀ ।

ଏହି ସମୟରେ ଲେଖକ ସେଠାରେ ଉପସ୍ଥିତ ହେବାରୁ ଠାକୁର ପଚାରିଥିଲେ, ''ପିଲାଟି ତୋର ଭାଇ ?'' ଲେଖକ ତାହା ସ୍ୱୀକାର କରିବାରୁ ସେ ପୁଣି କହିଥିଲେ, ''ଭଲ ପିଲା, ତୋ'ଠାରୁ ଏହାର ବୁଦ୍ଧି ବେଶୀ । ଦେଖି ସଦ୍‌ବୁଦ୍ଧି କି ଅସଦ୍‌ବୁଦ୍ଧି''—କହି ତା'ର ଦକ୍ଷିଣ ହସ୍ତର ପୂର୍ବୋକ୍ତ ଅଂଶ ଧାରଣପୂର୍ବକ ଓଜନ କରୁ କରୁ କହିଲେ, ''ସଦ୍‌ବୁଦ୍ଧି'' । ପରେ ଲେଖକଙ୍କୁ ପୁନରାୟ ପ୍ରଶ୍ନ କଲେ, (କନିଷ୍ଠକୁ ଦେଖାଇ) ''ଏହାକୁ ମଧ୍ୟ ଟାଣିବି ନା କ'ଣରେ ? (ଏହାର ମନକୁ ସଂସାର ପ୍ରତି ଉଦାସୀନ କରି ଈଶ୍ୱରମୁଖୀ କରି ଦେବି କି ?) କ'ଣ କହୁଛୁ ?'' ଲେଖକ କହିଥିଲେ, ''ବେଶ୍ ତ ମହାଶୟ, ତାହା ହିଁ କରନ୍ତୁ ।'' ଠାକୁର ସେଥିରେ କ୍ଷଣକାଳ ଚିନ୍ତାକରି କହିଲେ, ନା—ଥାଉ; ଜଣକୁ ନେଇଛି, ପୁଣି ଏହାକୁ ମଧ୍ୟ ନେଲେ ତୋର ବାପା-ମା'ର ଖୁବ୍ କଷ୍ଟ ହେବ—ବିଶେଷତଃ ତୋ'ର ମା'ର; ଜୀବନରେ ଅନେକ ଶକ୍ତିଙ୍କୁ[୩] ରୁଷ୍ଟା କରିଛି, ଏବେ ଆଉ ଦରକାର ନାହିଁ ।'' ଏହା କହି ଠାକୁରେ ତାଙ୍କୁ ସଦୁପଦେଶ ପ୍ରଦାନ ଓ କିଞ୍ଚିତ୍ ଜଳଯୋଗ କରାଇ ସେଦିନ ବିଦାୟ ଦେଇଥିଲେ ।

### ଶାରୀରିକ ନିତ୍ୟକ୍ରିୟାଗୁଡ଼ିକର ବିଭିନ୍ନତାରେ ସଂସ୍କାରଭିନ୍ନତାର ସୂଚନା :

ଠାକୁର କହୁଥିଲେ, ଶରୀରର ଅବୟବ ଆଦିର ଗଠନ ସଦୃଶ ନିଦ୍ରା ଶୌଚାଦି ଶାରୀରିକ ସାମାନ୍ୟ କ୍ରିୟାଗୁଡ଼ିକ ମଧ୍ୟ ଭିନ୍ନ ଭିନ୍ନ ସଂସ୍କାରସମ୍ପନ୍ନ ବ୍ୟକ୍ତିମାନଙ୍କର ବିଭିନ୍ନ ପ୍ରକାରର ହୋଇଥାଏ । ସେଥିପାଇଁ ବହୁଦର୍ଶୀ ବ୍ୟକ୍ତିମାନେ ଏସବୁରୁ ମଧ୍ୟ ବ୍ୟକ୍ତିବିଶେଷଙ୍କ ଚରିତ୍ର ନିର୍ଣ୍ଣୟର ଇଙ୍ଗିତ ପାଇଥାଆନ୍ତି । ଯଥା ନିଦ୍ରା ଯିବା ସମୟରେ ସମସ୍ତଙ୍କର ନିଃଶ୍ୱାସ ସମଭାବରେ ପଡ଼ି ନ ଥାଏ, ଭୋଗୀର ଗୋଟିଏ ପ୍ରକାର ଏବଂ ତ୍ୟାଗୀର ଅନ୍ୟପ୍ରକାର ହୋଇଥାଏ; ଶୌଚାଦି ସମୟରେ ଭୋଗୀର ମୁତ୍ରଧାର ବାମପଟକୁ ପଡ଼ିଯାଏ ଏବଂ ତ୍ୟାଗୀର ଦକ୍ଷିଣ ପଟକୁ ଯାଇଥାଏ । ଯୋଗୀର ମଳ ଘୁଷୁରି ସ୍ପର୍ଶ କରେ ନାହିଁ । —ଇତ୍ୟାଦି

### ଦରୱାନ ହନୁମାନ ସିଂ :

ପୂର୍ବୋକ୍ତ ବିଷୟରେ ଠାକୁର ଗୋଟିଏ ଘଟଣା ଆମକୁ କହିଥିଲେ । ହନୁମାନ ସିଂ ନାମକ ଜଣେ ବ୍ୟକ୍ତି ମଥୁରବାବୁଙ୍କର ଅମଳରେ ଦକ୍ଷିଣେଶ୍ୱର ମନ୍ଦିରର ରକ୍ଷା କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ଦରୱାନମାନଙ୍କ ମଧ୍ୟରୁ ଜଣେ ହେଲେ ମଧ୍ୟ ହନୁମାନ ସିଂର ମର୍ଯ୍ୟାଦା ଅଧିକ ଥିଲା । କାରଣ, ସେ କେବଳ ଜଣେ ପ୍ରସିଦ୍ଧ ପହିଲ୍‌ମାନ୍ ମାତ୍ର ନ ଥଲେ, କିନ୍ତୁ ଜଣେ ନିଷ୍ଠାବାନ ଭକ୍ତସାଧକ ଥିଲେ । ମହାବୀରମନ୍ତ୍ରର ଉପାସକ ହନୁମାନ ସିଂଙ୍କୁ ମଲ୍ଲଯୁଦ୍ଧରେ ପରାସ୍ତ କରି

---

୩. ଜଗଦମ୍ବାଙ୍କ ସୃଜନୀ ଓ ପାଳନୀ ଶକ୍ତିର ମୂର୍ତ୍ତିମତୀସ୍ୱରୂପା ନାରୀଗଣଙ୍କୁ ।

ତା'ର ପଦ ଗ୍ରହଣ କରିବା ପାଇଁ ଅନ୍ୟ ଜଣେ ପହିଲ୍‌ମାନ୍ ଥରେ ଦକ୍ଷିଣେଶ୍ୱରରେ ଉପସ୍ଥିତ ହୋଇଥିଲେ । ତାର ପ୍ରକାଣ୍ଡ ଶରୀର ଓ ଶାରୀରିକ ବଳ ପ୍ରଭୃତି ଦେଖି ମଧ୍ୟ ହନୁମାନ ତା'ର ପ୍ରତିଦ୍ୱନ୍ଦ୍ୱୀ ରୂପେ ଠିଆ ହେବାକୁ ପଛାଇ ନ ଥିଲେ । ଦିନ ସ୍ଥିର ହେଲା ଏବଂ ମଥୁରବାବୁପ୍ରମୁଖ ବ୍ୟକ୍ତିଗଣ ଉଭୟଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ସେବିଷୟ ବିଚାର କରିବାକୁ ଭାର ପ୍ରାପ୍ତ ହେଲେ ।

ପ୍ରତିଯୋଗିତାର ଏକ ସପ୍ତାହ ପୂର୍ବରୁ ନବାଗତ ମଲ୍ଲ ବହୁତ ପୁଷ୍ଟିକର ଖାଦ୍ୟ ଭୋଜନରେ ଓ ବ୍ୟାୟାମ ଆଦିର ଅଭ୍ୟାସରେ ଲାଗି ରହିଲା । କିନ୍ତୁ ହନୁମାନ ସିଂ ସେପରି ନ କରି ପ୍ରତିଦିନ ଯେପରି କରିଥାଏ ସେପରି ପ୍ରାତଃସ୍ନାନ ସାରି ସାରା ଦିନ ଇଷ୍ଟମନ୍ତ୍ରଜପରେ ଏବଂ ଦିନାନ୍ତରେ ଥରେ ମାତ୍ର ଭୋଜନ କରି କାଳ କଟାଇବାକୁ ଲାଗିଲା । ସମସ୍ତେ ଭାବିଲେ, ହନୁମାନ ଭୀତ ହୋଇଅଛି ଏବଂ ପ୍ରତିଦ୍ୱନ୍ଦ୍ୱୀତାରେ ଜୟର ଆଶା ପରିତ୍ୟାଗ କରିଅଛି । ଠାକୁର ତାକୁ ଭଲ ପାଉଥିଲେ, ସେଥିପାଇଁ ପ୍ରତିଯୋଗିତାର ପୂର୍ବଦିନ ତାକୁ ପଚାରିଲେ, ''ତୁମେ ବ୍ୟାୟାମ ଓ ପୁଷ୍ଟିକର ଖାଦ୍ୟ ଦ୍ୱାରା ନିଜର ଶରୀରକୁ ପ୍ରସ୍ତୁତ କରିନେଲ ନାହିଁ, ତେଣୁ ନୂତନ ମଲ୍ଲ ସହିତ ପ୍ରତଯୋଗିତାରେ କ'ଣ ଜିତିପାରିବ ?'' ହନୁମାନ ଭକ୍ତିପୂର୍ଣ୍ଣ ହୃଦୟରେ ପ୍ରଣାମ କରି କହିଲା, ''ଆପଣଙ୍କର କୃପା ଥିଲେ ମୁଁ ନିଶ୍ଚୟ ଜୟଲାଭ କରିବି; ଗୁଡ଼ାଏ ଆହାର କଲେ ହିଁ ଶରୀର ବଳବାନ ହୁଏ ନାହିଁ, ତାହା ହଜମ ହେବା ଦରକାର; ମୁଁ ଗୋପନରେ ନବାଗତ ମଲ୍ଲର ମଳ ଦେଖି ବୁଝିଛି, ସେ ହଜମଶକ୍ତିଠାରୁ ଅତିରିକ୍ତ ଭୋଜନ କରୁଛି ।'' ଠାକୁର କହୁଥିଲେ ପ୍ରତିଯୋଗିତା ଦିନ ହନୁମାନ ସିଂ ସତକୁ ସତ ସେହି ବ୍ୟକ୍ତିଙ୍କୁ ମଲ୍ଲଯୁଦ୍ଧରେ ପରାସ୍ତ କରିଥିଲା !

## ଶାରିରୀକ ଅବୟବ ଗଠନ ଓ କ୍ରିୟା ଦେଖି ବିଦ୍ୟା ଓ ଅବିଦ୍ୟା ଶକ୍ତିର ନିରୂପଣ :

ପୁରୁଷଶରୀର ସଦୃଶ ସ୍ତ୍ରୀ-ଶରୀରର ଅବୟବଗୁଡ଼ିକର ଗଠନ ସମ୍ବନ୍ଧରେ ମଧ୍ୟ ଠାକୁର ଅନେକ କଥା କହୁଥିଲେ ଏବଂ ତାହା ଲକ୍ଷ୍ୟ କରି ରମଣୀଗଣଙ୍କର କେତେକଙ୍କୁ ଦେବୀଭାବସମ୍ପନ୍ନା ବା ବିଦ୍ୟାଶକ୍ତି ଏବଂ କେତେକଙ୍କୁ ଆସୁରୀଭାବସମ୍ପନ୍ନା ବା ଅବିଦ୍ୟାଶକ୍ତି ବୋଲି କହୁଥିଲେ । ସେ କହୁଥିଲେ—''ଭୋଜନ, ନିଦ୍ରା ଓ ଇନ୍ଦ୍ରିୟାସକ୍ତି ବିଦ୍ୟାଶକ୍ତିମାନଙ୍କର ସ୍ୱଭାବତଃ କମ୍ ହୋଇଥାଏ । ସ୍ୱାମୀ ସହିତ ଈଶ୍ୱରୀୟ କଥା ଶ୍ରବଣ ଓ ଆଳାପ କରିବାକୁ ସେମାନଙ୍କର ବିଶେଷ ଆନନ୍ଦ ହୋଇଥାଏ । ଉଚ୍ଚ ଆଧ୍ୟାତ୍ମିକ ପ୍ରେରଣା ପ୍ରଦାନପୂର୍ବକ ଏମାନେ ନୀଚ ପ୍ରବୃତ୍ତି ଓ ହୀନକର୍ମଠାରୁ ପତିଙ୍କୁ ସର୍ବଦା ରକ୍ଷା କରିଥାଆନ୍ତି ଏବଂ ପରିଣାମରେ ଈଶ୍ୱର ଲାଭ କରି ଯେଉଁଥିରେ ସେ ନିଜ ଜୀବନ ଧନ୍ୟ କରିପାରିବେ, ସେବିଷୟରେ

ତାଙ୍କୁ ସବୁ ପ୍ରକାରର ସହାୟତା ପ୍ରଦାନ କରନ୍ତି । ଅବିଦ୍ୟାଶକ୍ତିମାନଙ୍କର ସ୍ୱଭାବ ଓ କାର୍ଯ୍ୟ ସମ୍ପୂର୍ଣ୍ଣ ବିପରୀତ ହୋଇଥାଏ । ଆହାର, ନିଦ୍ରା ଇତ୍ୟାଦି ଶାରୀରିକ ସମସ୍ତ ବିଷୟ ସେମାନଙ୍କର ଅଧିକ ହେବାର ଦେଖାଯାଏ ଏବଂ ତାଙ୍କର ସୁଖସମ୍ପାଦନ ବ୍ୟତୀତ ଅନ୍ୟ କୌଣସି ବିଷୟରେ ପତି ଯେପରି ମନୋନିବେଶ ନ କରନ୍ତି, ତାହା ହିଁ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ହୁଏ । ପତି ଏମାନଙ୍କ ସହିତ ପାରମାର୍ଥିକ ବିଷୟରେ ଆଳାପ କଲେ ଏମାନେ ଖୁସି ନ ହୋଇ ଅପ୍ରସନ୍ନା ହୋଇଥାନ୍ତି ।'' ଯେଉଁ ଇନ୍ଦ୍ରିୟବିଶେଷର ସହାୟରେ ରମଣୀମାନେ ମାତୃତ୍ୱପଦ ଲାଭ କରିଥାଆନ୍ତି, ତାହାର ବାହ୍ୟିକ ଆକାରରୁ ଅନ୍ତରର ଭୋଗାସକ୍ତିର ପରିଚୟ ମିଳିଥାଏ ବୋଲି ଠାକୁର ବେଳେ ବେଳେ କହୁଥିଲେ । କହୁଥିଲେ, ''ଏହା ନାନା ଆକାରର ହୋଇଥାଏ । ତନ୍ମଧ୍ୟରେ କୌଣସି କୌଣସି ଆକାର ପାଶବ ପ୍ରବୃତ୍ତିର ସ୍ୱଳ୍ପତାର ବିଶେଷ ପରିଚାୟକ ।'' ପୁଣି କହୁଥିଲେ, ''ଯେଉଁମାନଙ୍କର ପଶ୍ଚାତ୍‌ଭାଗ ପିପୀଲିକା ସଦୃଶ ଉଚ୍ଚ ସେମାନଙ୍କ ଅନ୍ତରରେ ଉକ୍ତ ପ୍ରବୃତ୍ତି ପ୍ରବଳ ଥାଏ ।''

**ନରେନ୍ଦ୍ରଙ୍କର ଶାରୀରିକ ଲକ୍ଷଣ ସମ୍ବନ୍ଧରେ ଠାକୁରଙ୍କ କଥା :**

ଏହିପରି ଶରୀରର ଗଠନ ଦେଖି ମାନବର ପ୍ରକୃତି ନିରୂପଣ କରିବା ସମ୍ବନ୍ଧରେ କେତେ କଥା ଯେ ଠାକୁର ଆମକୁ କହିଥିଲେ, ତାର ଇୟତ୍ତା ହୁଏ ନାହିଁ । ଲୋକଚରିତ୍ର-ପରିଜ୍ଞାନର ଉପାୟଗୁଡ଼ିକ ମଧ୍ୟରେ ଅନ୍ୟତମ ବୋଲି ତାହା ତାଙ୍କ ପାଖରେ ସର୍ବଦା ପରିଗଣିତ ହେଉଥିଲା ଏବଂ ନରେନ୍ଦ୍ରନାଥପ୍ରମୁଖ ସମସ୍ତ ଭକ୍ତଙ୍କୁ ହିଁ ତାହା ସହାୟରେ ସେ ଅଳ୍ପ ବହୁତ ପରୀକ୍ଷା କରିନେଇଥିଲେ । ଏପରି ପରୀକ୍ଷା କରି ସନ୍ତୁଷ୍ଟ ହୋଇ ସେ ନରେନ୍ଦ୍ରନାଥଙ୍କୁ ଦିନେ କହିଥିଲେ, ''ତୋର ଶରୀରର ସମସ୍ତ ଅଙ୍ଗ ସୁଲକ୍ଷଣବିଶିଷ୍ଟ, କେବଳ ଦୋଷ ମଧ୍ୟରେ ନିଦ୍ରା ଯିବାବେଳେ ନିଃଶ୍ୱାସ କିଛି ଜୋର୍‌ରେ ପଡ଼େ । ଯୋଗୀମାନେ କହନ୍ତି, ଏତେ ଜୋର୍‌ରେ ନିଃଶ୍ୱାସ ପଡ଼ିଲେ ଅଳ୍ପାୟୁ ହୁଅନ୍ତି ।''

**(୨) ସାମାନ୍ୟ କାର୍ଯ୍ୟରେ ପ୍ରକାଶିତ ମାନସିକ ଭାବ ଦ୍ୱାରା ଏବଂ (୩) ଏପରି କାର୍ଯ୍ୟ ଦ୍ୱାରା ପ୍ରକାଶିତ କାମକାଞ୍ଚନାସକ୍ତିର ତାରତମ୍ୟ ବୁଝି ଅନ୍ତରର ସଂସ୍କାର ନିରୂପଣ :**

୨ୟ ଏବଂ ୩ୟ—ସାମାନ୍ୟ ସାମାନ୍ୟ କାର୍ଯ୍ୟରେ ପ୍ରକାଶିତ ମାନସିକ ଭାବ ଏବଂ କାମକାଞ୍ଚନ ଆସକ୍ତି ପ୍ରତି ଲକ୍ଷ୍ୟରଖିବା ହିଁ ବ୍ୟକ୍ତିବିଶେଷଙ୍କର ସ୍ୱାଭାବିକ ପ୍ରକୃତି-ପରିଜ୍ଞାନର ଦ୍ୱିତୀୟ ଓ ତୃତୀୟ ଉପାୟ ବୋଲି ଠାକୁରଙ୍କ ନିକଟରେ ପରିଗଣିତ ହେଉଥିଲା । ବ୍ୟକ୍ତିବିଶେଷଙ୍କର ଦକ୍ଷିଣେଶ୍ୱରକୁ ପ୍ରଥମ ଆଗମନରୁ ଠାକୁର ତାଙ୍କ ସମ୍ବନ୍ଧରେ ପୂର୍ବୋକ୍ତ ବିଷୟଗୁଡ଼ିକ କିଛି କାଳ ପର୍ଯ୍ୟନ୍ତ ନୀରବରେ କେବଳ ଲକ୍ଷ୍ୟ କରୁଥିଲେ । ପରେ ନିଜ ମଣ୍ଡଳୀମଧ୍ୟରେ ତାଙ୍କୁ ଗ୍ରହଣ କରିବେ

ବୋଲି ଯେଉଁ ଦିନ ସ୍ଥିର କରନ୍ତି, ସେହି ଦିନଠାରୁ ନାନାଭାବରେ ଉପଦେଶ ପ୍ରଦାନ କରି ଏବଂ ଆବଶ୍ୟକ ହେଲେ ବେଳେ ବେଳେ ମଧୁର ତିରସ୍କାର ସହାୟରେ ତାଙ୍କର ଉକ୍ତ ଦୋଷଗୁଡ଼ିକ ତ୍ୟାଗ କରାଇବାକୁ ସଚେଷ୍ଟ ହେଉଥିଲେ । ପୁଣି ମଣ୍ଡଳୀମଧରେ ଗ୍ରହଣପୂର୍ବକ ସନ୍ନ୍ୟାସୀ କିମ୍ବା ଗୃହସ୍ଥ କେଉଁ ଭାବରେ ଜୀବନ ଗଠନ କରିବାକୁ ତାକୁ ଶିକ୍ଷା ଦେବେ ସେବିଷୟ ମଧ୍ୟ ସେ ପୂର୍ବରୁ ସ୍ଥିର କରିନେଉଥିଲେ । ସେଥିପାଇଁ ତାଙ୍କ ନିକଟକୁ ଆସୁଥିବା ବ୍ୟକ୍ତିଙ୍କୁ ସେ ପ୍ରଥମରୁ ହିଁ ପ୍ରଶ୍ନ କରୁଥିଲେ — ସେ ବିବାହିତ କି ନୁହେଁ, ତାଙ୍କ ଘରେ ଅନ୍ନ-ବସ୍ତ୍ରର ଅଭାବ ଅଛି କି ନାହିଁ, ଅଥବା ସେ ସଂସାର ତ୍ୟାଗ କଲେ ତାଙ୍କ ଜାଗାରେ ପରିବାରବର୍ଗଙ୍କ ଭରଣପୋଷଣ ଭାର ନେବାକୁ ସକ୍ଷମ ଏପରି କେହି ନିକଟ ଆତ୍ମୀୟ ଅଛନ୍ତି କି ନାହିଁ ।

**ବାଳକମାନଙ୍କ ସମ୍ବନ୍ଧରେ ଠାକୁରଙ୍କର ଧାରଣା :**

ବିଦ୍ୟାଳୟର ଛାତ୍ରମାନଙ୍କ ଉପରେ ଠାକୁରଙ୍କର ବିଶେଷ କୃପା ସର୍ବଦା ଲକ୍ଷିତ ହେଉଥିଲା । ଠାକୁର କହୁଥିଲେ, ‘‘ଏମାନଙ୍କର ମନ ଏବେ ମଧ୍ୟ ସ୍ତ୍ରୀ-ପୁତ୍ର, ମାନ-ଯଶାଦିରେ ବିଛାଡ଼ି ହୋଇ ନାହିଁ, (ଉପଯୁକ୍ତ ଶିକ୍ଷା ପାଇଲେ) ଏମାନେ ସହଜରେ ଷୋଳଅଣା ମନ ଈଶ୍ୱରଙ୍କୁ ଦେଇପାରିବେ ।’’ ସେଥିପାଇଁ ସେମାନଙ୍କ ଭିତରେ ଧର୍ମଭାବ ପ୍ରବେଶ କରାଇବା ପାଇଁ ସେ ବିଶେଷ ଯତ୍ନବାନ ଥିଲେ । ନାନା ଦୃଷ୍ଟାନ୍ତସହାୟରେ ସେ ତାଙ୍କର ପୂର୍ବୋକ୍ତ ମତ ପ୍ରକାଶ କରୁଥିଲେ । କହୁଥିଲେ, ‘‘ମନ ସୋରିଷ ପୁଟୁଳି ପରି, ଥରେ ବୁଣି ହେଲେ ଏହାର ସମସ୍ତ ଦାନାଗୁଡ଼ିକୁ ଏକତ୍ର କରିବା ପ୍ରାୟ ଅସମ୍ଭବ,’’ — ‘‘କଣ୍ଠି ଉଠିଲେ ପକ୍ଷୀକୁ ‘ରାଧାକୃଷ୍ଣ’ ନାମ କୁହାଇବା ଦୁଃସାଧ୍ୟ’’ — ‘‘କଞ୍ଚା ଟାଇଲ୍ ଉପରେ ଗୋରୁର ଖୁରା ଛାପ ପଡ଼ିଲେ ସହଜରେ ପୋଛି ଦେଇ ହୁଏ, କିନ୍ତୁ ଟାଇଲ୍ ପୋଡ଼ି ଦେବାପରେ ସେହି ଛାପ ଆଉ ପୋଛି ହୁଏ ନାହିଁ ’’ଇତ୍ୟାଦି । ଏହି କାରଣରୁ ସଂସାର ବିଷୟରେ ଅନଭିଜ୍ଞ ବିଦ୍ୟାଳୟର ଛାତ୍ରମାନଙ୍କୁ ହିଁ ସେ ବିଶେଷଭାବରେ ପ୍ରଶ୍ନ କରି ସେମାନଙ୍କ ମନର ସ୍ୱାଭାବିକ ଗତି, ପ୍ରବୃତ୍ତି ଅଥବା ନିବୃତ୍ତି ଆଡ଼କୁ ତାହା ବୁଝି ନେଉଥିଲେ ଏବଂ ଉପଯୁକ୍ତ ମନେ କଲେ ସେମାନଙ୍କୁ ଶେଷୋକ୍ତ ପଥରେ ପରିଚାଳିତ କରୁଥିଲେ ।

**ତାଙ୍କ ନିକଟକୁ ଆସୁଥିବା ଭକ୍ତମାନଙ୍କ ପ୍ରତିକାର୍ଯ୍ୟ ଲକ୍ଷ୍ୟ କରିବା :**

ଏହିପରି କଥାପ୍ରସଙ୍ଗରେ ନାନା ପ୍ରକାରରେ ପ୍ରଶ୍ନ ପଚାରି ବ୍ୟକ୍ତିବିଶେଷଙ୍କର ମନର ଭାବ ଅବଗତ ହୋଇ ସେ କ୍ଷାନ୍ତ ରହୁ ନ ଥିଲେ, କିନ୍ତୁ ସେ ବ୍ୟକ୍ତି କେତେଦୂର ସରଳ ଓ ସତ୍ୟନିଷ୍ଠ, ମୁହଁରେ ଯାହା କହେ କାର୍ଯ୍ୟରେ ସେ ତାହା କେତେଦୂର ପାଳନ କରେ, ବିଚାରପୂର୍ବକ ସେ ପ୍ରତିକାର୍ଯ୍ୟର ଅନୁଷ୍ଠାନ କରେ କି ନାହିଁ ଏବଂ ଉପଦିଷ୍ଟ ବିଷୟର ଧାରଣା ସେ କିପରି କରିଥାଏ ପ୍ରଭୃତି ନାନାବିଷୟ ତାହାର

ପ୍ରତିକାର୍ଯ୍ୟରେ ସେ ତନ୍ନ ତନ୍ନ କରି ଅନୁସନ୍ଧାନ କରୁଥିଲେ । କେତୋଟି ଦୃଷ୍ଟାନ୍ତ ଉଲ୍ଲେଖ କଲେ ପାଠକ ପୂର୍ବୋକ୍ତ ବିଷୟ ବୁଝିପାରିବେ ।

**ଏହି ବିଷୟକ ଦୃଷ୍ଟାନ୍ତନିଚୟ :**

କେତେଦିନ ଦକ୍ଷିଣେଶ୍ୱର ଯିବା ଆସିବା ପରେ ଜନୈକ ବାଳକକୁ ସେ ଦିନେ ହଠାତ୍ କହିଲେ, ''ତୁ ବିବାହ କରୁ ନାହୁଁ କାହିଁକି ?'' ସେ ଉତ୍ତର ଦେଲେ, ''ମହାଶୟ, ମନ ବଶୀଭୂତ ହୋଇ ନାହିଁ, ଏବେ ବିବାହ କଲେ ସ୍ତ୍ରୀ ପ୍ରତି ଆସକ୍ତିରେ ହିତାହିତ-ବିବେଚନାଶୂନ୍ୟ ହେବାକୁ ପଡ଼ିବ, ଯଦି କେବେ କାମଜିତ୍ ହୋଇପାରେ ତେବେଯାଇ ବିବାହ କରିବି ।'' ଠାକୁର ବୁଝିଲେ, ଅନ୍ତରରେ ପ୍ରବଳ ଆସକ୍ତି ଥିଲେ ମଧ ବାଳକର ମନ ନିବୃତ୍ତିମାର୍ଗ ପ୍ରତି ଆକୃଷ୍ଟ ହୋଇଅଛି — ଏକଥା ବୁଝି ହସିହସି କହିଲେ, ''ଯେତେବେଳେ କାମଜିତ୍ ହେବୁ ସେତେବେଳେ ଆଉ ବିବାହ କରିବାର ଆବଶ୍ୟକତା ରହିବ ନାହିଁ ।''

ଜନୈକ ବାଳକ ସହିତ ଦିନେ ଦକ୍ଷିଣେଶ୍ୱରରେ ନାନାବିଷୟରେ କଥା କହୁ କହୁ କହିଲେ, ''ଏହା କ'ଣ କହତ ? ଅଣ୍ଟାରେ କୌଣସି ପ୍ରକାରରେ (ସର୍ବଦା) ଲୁଗା ରଖିପାରୁ ନାହିଁ — ରହେ ନାହିଁ, କେତେବେଳେ ଖୋଲି ପଡ଼ିଯାଏ ଜାଣିପାରେ ନାହିଁ ! ବୁଢ଼ାମଣିଷଟା ଉଲଗ୍ନ ହୋଇ ବୁଲେ ! କିନ୍ତୁ ଲାଜ ମଧ ମାଡ଼େ ନାହିଁ ! ପୂର୍ବେ କିଏ ଦେଖୁଛି କି ନାହିଁ ତାହା ଆଦୌ ହୋସ୍ ରହୁ ନ ଥିଲା — ଏବେ କିଏ ଦେଖିଦେଲେ ସେମାନଙ୍କର କାହାର କାହାର ଲଜ୍ଜା ହେବ ବୁଝି କୋଳ ଉପରେ ଲୁଗାଟିକୁ ପକାଇରଖେ । ତୁ ଲୋକଙ୍କ ସାମନାରେ ମୋ ପରି (ଉଲଗ୍ନ) ହୋଇ ବୁଲିପାରିବୁ ?'' ସେ କହିଲା, ''ମହାଶୟ, ଠିକ୍ କହିପାରିବି ନାହିଁ, ଆପଣ ଆଦେଶ କଲେ ବସ୍ତ୍ର ତ୍ୟାଗ କରିପାରେ ।'' ସେ କହିଲେ, ''ଯା' ଦେଖି, ମୁଣ୍ଡରେ ଲୁଗାଟା ଗୁଡ଼ାଇ ମନ୍ଦିରର ଅଗଣାରେ ଥରେ ଘୁରି ଆସ୍ ତ' ଦେଖେ ।'' ବାଳକ କହିଲା, ''ତାହା କରିପାରିବି ନାହିଁ, କିନ୍ତୁ କେବଳ ଆପଣଙ୍କ ସାମନାରେ ସେପରି କରିପାରିବି ।'' ଠାକୁର ତା' କଥା ଶୁଣି କହିଲେ, ''ସେ କଥା ଅନେକେ କହନ୍ତି — କହନ୍ତି, ''ତୁମ ସାମନାରେ ପିନ୍ଧିଥିବା ଲୁଗା ଫୋପାଡ଼ିବାକୁ ଲଜ୍ଜା ହୁଏ ନାହିଁ, କିନ୍ତୁ ଅନ୍ୟମାନଙ୍କ ସାମନାରେ ହୁଏ !''

**ଗଙ୍ଗାରେ ଜୁଆର :**

ଠାକୁରଙ୍କର ବସନତ୍ୟାଗ କଥାପ୍ରସଙ୍ଗରେ ଅନ୍ୟ ଗୋଟିଏ ଦିନର ଘଟଣା ଆମମାନଙ୍କର ମନେ ଅଛି । ଚାନ୍ଦିନୀ ରାତ୍ରି, ବୋଧହୁଏ ସେଦିନ କୃଷ୍ଣ ପକ୍ଷର ଦ୍ୱିତୀୟା ବା ତୃତୀୟା ହେବ । ରାତିରେ ଶୋଇବାର ଅଳ୍ପକ୍ଷଣ ପରେ ହିଁ ଗଙ୍ଗାରେ ଜୁଆର ଆସିଲା । ଠାକୁର ଶଯ୍ୟାତ୍ୟାଗପୂର୍ବକ 'ଆରେ, ଜୁଆର ଦେଖିବୁ ଆ' କହି ସମସ୍ତଙ୍କୁ ଡାକି ଡାକି ବନ୍ଧ ଆଡ଼କୁ ଧାଇଁଲେ ଏବଂ ନଦୀର ଶାନ୍ତ ଶୁଭ୍ର ଜଳରାଶି

ଫେଣଶୀର୍ଷ ଉତ୍ତାଳ ତରଙ୍ଗ ଆକାରରେ ପରିଣତ ହୋଇ ଉନ୍ମତ୍ତ ସଦୃଶ ବିପରୀତ ଦିଗରେ ପ୍ରଚଣ୍ଡ ବେଗରେ ଆଗମନପୂର୍ବକ କୂଳ ଉପରକୁ ଡେଇଁ ଉଠିବା ଦେଖି ବାଳକ ସଦୃଶ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ । ଠାକୁର ଯେତେବେଳେ ଆମମାନଙ୍କୁ ଡାକିଥିଲେ ସେତେବେଳେ ଆମମାନଙ୍କର ତନ୍ଦ୍ରା ଆସିଯାଇଥିଲା, ତନ୍ଦ୍ରାଚ୍ଛନ୍ନ ଅବସ୍ଥାରେ ଉଠି ପିନ୍ଧିଥିବା ବସ୍ତ୍ରକୁ ସମ୍ଭାଳି ତାଙ୍କୁ ଅନୁସରଣ କରିବାରେ ସାମାନ୍ୟ ବିଳମ୍ବ ହେଲା । ସୁତରାଂ ଆମେ ବନ୍ଧକୁ ଆସି ଉପସ୍ଥିତ ହେଉ ହେଉ ଜୁଆର ଚାଲିଗଲା, କେହି ତାହା ସାମାନ୍ୟ ଦେଖିଲେ, କେହି ବା ତାହା ମଧ୍ୟ ଦେଖିପାରିଲେ ନାହିଁ । ଠାକୁର ଏପର୍ଯ୍ୟନ୍ତ ଆନନ୍ଦରେ ବିଭୋର ଥିଲେ, ଜୁଆର ଚାଲିଗଲା ପରେ ଆମ ଆଡ଼କୁ ଫେରି କହିଲେ, ''କିରେ କିପରି ଜୁଆର ଦେଖିଲ ?'' ଆମର ଲୁଗା ପିନ୍ଧି ଆସୁ ଆସୁ ଜୁଆର ଚାଲିଯାଇଛି ଶୁଣି କହିଲେ, ''ହଇରେ ଶଳା, ତୁମମାନଙ୍କର ଲୁଗା ପିନ୍ଧିବା ପାଇଁ କ'ଣ ଜୁଆର ଅପେକ୍ଷା କରିବ ? ମୋ ପରି ଲୁଗା ଫୋପାଡ଼ି ଦେଇ ଚାଲି ଆସିଲ ନାହିଁ କାହିଁକି ?''

**ଈଶ୍ୱରଲାଭ ହିଁ ଜୀବନର ଉଦ୍ଦେଶ୍ୟ ବୁଝି ସମସ୍ତ କର୍ମର ଅନୁଷ୍ଠାନ :**

'ବିବାହ କରିବାର ଇଚ୍ଛା ଅଛି କି ନାହିଁ', 'ଚାକିରୀ କରିବୁ କି ନାହିଁ'— ଠାକୁରଙ୍କର ଏସମସ୍ତ ପ୍ରଶ୍ନର ଉତ୍ତରରେ ଆମମାନଙ୍କ ମଧ୍ୟରୁ କେହି କେହି କହୁଥିଲେ, ''ବିବାହ କରିବାକୁ ଇଚ୍ଛା ନାହିଁ, ମହାଶୟ, କିନ୍ତୁ ଚାକିରୀ କରିବାକୁ ହେବ ।'' ଅଶେଷ ସ୍ୱାଧୀନତାପ୍ରିୟ ଠାକୁରଙ୍କ ନିକଟରେ କିନ୍ତୁ ଏହି କଥା ବିସଦୃଶ ଲାଗୁଥିଲା । ସେ କହୁଥିଲେ, ''ଯଦି ବିବାହ କରି ସଂସାରଧର୍ମ ପାଳନ କରିବୁ ନାହିଁ, ତେବେ ଆଜୀବନ ଅପରର ଚାକର ହୋଇ ରହିବୁ କାହିଁକି ?'' ଷୋଳଅଣା ମନପ୍ରାଣ ଈଶ୍ୱରଙ୍କଠାରେ ସମର୍ପଣ କରି ତାଙ୍କର ଉପାସନା କର— ସଂସାରରେ ଜନ୍ମଗ୍ରହଣ କରି ମନୁଷ୍ୟର ତା' ଅପେକ୍ଷା ମହତ୍ କାର୍ଯ୍ୟ ଅନ୍ୟ କିଛି ହୋଇପାରେ ନାହିଁ ଏବଂ ସେପରି କରିବା ଏକାନ୍ତ ଅସମ୍ଭବ ମନେ ହେଲେ ବିବାହ କରି ଈଶ୍ୱରଲାଭକୁ ହିଁ ଜୀବନର ଚରମ ଉଦ୍ଦେଶ୍ୟ ସ୍ଥିରପୂର୍ବକ ସତ୍‌ପଥରେ ଥାଇ ସଂସାରଯାତ୍ରା ନିର୍ବାହ କର—ଏହା ହିଁ ତାଙ୍କର ମତ ଥିଲା । ସେଥିପାଇଁ ଆଧ୍ୟାତ୍ମିକ ରାଜ୍ୟରେ ଉତ୍ତମ ବା ମଧ୍ୟମ ଅଧିକାରୀ ବୋଲି ଯେଉଁ ସମସ୍ତ ବ୍ୟକ୍ତିଙ୍କୁ ସେ ବୁଝିପାରୁଥିଲେ ସେମାନଙ୍କ ମଧ୍ୟରୁ କେହି ବିବାହ କରିଛନ୍ତି ବା ବିଶେଷ କାରଣ ବ୍ୟତୀତ ସାଧାରଣ ଲୋକଙ୍କ ପରି ଅର୍ଥୋପାର୍ଜନ ନିମିତ୍ତ ଚାକିରୀ କରି ବା ନାମ-ଯଶର ପ୍ରତ୍ୟାଶୀ ହୋଇ ସଂସାରର ଅନ୍ୟ କୌଣସି ପ୍ରକାରର କାର୍ଯ୍ୟରେ ନିଯୁକ୍ତ ରହି ନିଜର ଶକ୍ତି କ୍ଷୟ କରୁଛନ୍ତି ଶୁଣିଲେ ସେ ଅନ୍ତରରେ ପ୍ରଚଣ୍ଡ ଆଘାତ ପ୍ରାପ୍ତ

ହେଉଥିଲେ । ତାଙ୍କର ବାଳକଭକ୍ତମାନଙ୍କ ମଧ୍ୟରେ ଅନ୍ୟତମ ଜଣେ[୧] ଚାକିରୀ କରୁଅଛି ଶୁଣି ସେ ତାକୁ ଦିନେ କହିଥିଲେ, ''ତୁ ତୋର ବୃଦ୍ଧା ମାତାଙ୍କର ଭରଣ ପୋଷଣ ପାଇଁ କରୁଛୁ ସେଥିପାଇଁ, ନ ହେଲେ ଚାକିରୀ ଗ୍ରହଣ କରିଛୁ ଶୁଣି ତୋ ମୁହଁ ଚାହିଁପାରି ନ ଥାନ୍ତି ।'' ଅନ୍ୟ ଜଣେ[୨] ବିବାହ କରି କାଶୀପୁର ବଗିଚାରେ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଥିବାରୁ, ତାଙ୍କର ଯେପରି ପୁତ୍ରଶୋକ ହୋଇଅଛି ସେହିପରି ଭାବରେ ତାର ଗ୍ରୀବା ଧାରଣପୂର୍ବକ ଅଜସ୍ର ରୋଦନ କରୁ କରୁ କହିଥିଲେ, ''ଈଶ୍ୱରଙ୍କୁ ଭୁଲି ଯେପରି ସମ୍ପୂର୍ଣ୍ଣ ଭାବରେ ସଂସାରରେ ବୁଡ଼ି ନ ଯାଉ !''

### ସରଳ ଈଶ୍ୱର-ବିଶ୍ୱାସ ଓ ନିର୍ବୁଦ୍ଧିତା ଭିନ୍ନ ପଦାର୍ଥ; ସଦସଦ୍-ବିଚାରସମ୍ପନ୍ନ ହେବାକୁ ପଡ଼ିବ :

ବିଶ୍ୱାସ ବ୍ୟତୀତ ଧର୍ମ ପଥରେ ଅଗ୍ରସର ହେବା ସମ୍ଭବ ହୁଏ ନାହିଁ, ନବାନୁରାଗର ପ୍ରେରଣାରେ ଏହି କଥାର ବିପରୀତ ଅର୍ଥ ଗ୍ରହଣପୂର୍ବକ ଆମମାନଙ୍କ ମଧ୍ୟରେ କେହି କେହି ସେତେବେଳେ ଯାହାକୁ ତାହାକୁ ଏବଂ ଯାହା ତାହା ବିଶ୍ୱାସ କରିବାକୁ ଅଗ୍ରସର ହେଉଥିଲେ । ଠାକୁରଙ୍କର ତୀକ୍ଷ୍ଣଦୃଷ୍ଟି ଏପରି ବ୍ୟକ୍ତିଙ୍କ ଉପରେ ପଡ଼ିବାମାତ୍ରେ ସେ ଏବିଷୟ ବୁଝି ତାଙ୍କୁ ସାବଧାନ କରି ଦେଉଥିଲେ । ବାସ୍ତବିକ୍, ବିଶ୍ୱାସ-ଅବଲମ୍ବନରେ ଧର୍ମପଥରେ ଅଗ୍ରସର ହେବାକୁ କହିଲେ ମଧ୍ୟ ସେ କାହାକୁ କେବେ ମଧ୍ୟ ସଦସଦ୍-ବିଚାର ତ୍ୟାଗ କରିବାକୁ କହି ନାହାନ୍ତି । ସଦସଦ୍-ବିଚାରସମ୍ପନ୍ନ ହୋଇ ଧର୍ମପଥରେ ଚାଲିବାକୁ ହେବ ଏବଂ ଇଷ୍ଟ ଅନିଷ୍ଟ ବିଚାର ନ କରି ସଂସାରର କୌଣସି କର୍ମ କରିବାକୁ ଉଦ୍ୟତ ହେବ ନାହିଁ, ଏହା ହିଁ ତାଙ୍କର ମତ ଥିଲା ବୋଲି ଆମର ଧାରଣା । ତାଙ୍କର ଆଶ୍ରିତମାନଙ୍କ ମଧ୍ୟରୁ ଜଣେ[୩] ଦିନେ ଦୋକାନୀକୁ ଧର୍ମଭୟ ଦେଖାଇ ବଜାରରୁ ଖଣ୍ଡିଏ ଲୁହା କଡ଼େଇ କିଣି ଘରକୁ ଆସି ଦେଖିଲେ, ଦୋକାନୀ ତାଙ୍କୁ ଫଟା କଡ଼େଇଟିଏ ଦେଇଛି ! ଠାକୁର ଏହି କଥା ଜାଣିପାରି ତାଙ୍କୁ ତିରସ୍କାର କରି କହିଥିଲେ, ''(ଈଶ୍ୱର)ଭକ୍ତ ହେବୁ ବୋଲି କ'ଣ ନିର୍ବୋଧ ହେବାକୁ ହେବ ? ଦୋକାନୀ କ'ଣ ଦୋକାନ ଖୋଲି ଧର୍ମ କରିବାକୁ ବସିଛି ଯେ, ତୁ ତା'କଥାରେ ବିଶ୍ୱାସ କରି କଡ଼େଇଟାକୁ ଥରେ ନ ଦେଖି ନେଇଆସିଲୁ ? ଆଉ କେବେ ଏପରି କରିବୁ ନାହିଁ । କୌଣସି ଜିନିଷ କିଣିବାକୁ ହେଲେ ପାଞ୍ଚଟା ଦୋକାନ ବୁଲି ତା'ର ଉଚିତ୍ ମୂଲ୍ୟ ଜାଣିବୁ, ଜିନିଷଟା

୧. ସ୍ୱାମୀ ନିରଞ୍ଜନାନନ୍ଦ

୨. ଛୋଟ ନରେନ୍

୧. ସ୍ୱାମୀ ଯୋଗାନନ୍ଦ, ପୂର୍ବ ନାମ ଯୋଗେନ୍ଦ୍ରନାଥ ରାୟଚୌଧୁରୀ

ନେଲାବେଳେ ଭଲ କରି ପରୀକ୍ଷା କରିବୁ ଏବଂ ଯେଉଁ ସମସ୍ତ ଦ୍ରବ୍ୟରେ ଲାଭ ମିଳିଥାଏ ତାର ଲାଭ ପର୍ଯ୍ୟନ୍ତ ଗ୍ରହଣ ନ କରି ଚାଲିଆସିବୁ ନାହିଁ ।''

## ଅଧିକାରୀଭେଦରେ ଠାକୁରଙ୍କର ଦୟାବାନ ଓ ନିର୍ମମ ହେବାର ଉପଦେଶ :

ଧର୍ମଲାଭ କରିବାକୁ ଆସି କୌଣସି କୌଣସି ଲୋକଙ୍କ ପ୍ରକୃତିରେ ଦୟା ଭାବ ଏତେ ଅଧିକ ବଢ଼ିଯାଏ ଯେ, ପରିଣାମରେ ଏହା ତାହାର ବନ୍ଧନର ଏବଂ ବେଳେ ବେଳେ ଧର୍ମପଥରୁ ଭ୍ରଷ୍ଟ ହେବାର କାରଣ ହୋଇଥାଏ । କୋମଳ-ହୃଦୟ ନରନାରୀଙ୍କର ହିଁ ଏପରି ହୋଇଥାଏ । ଠାକୁର ସେଥିପାଇଁ ଏପରି ନରନାରୀଙ୍କୁ କଠୋର ହେବା ପାଇଁ ଏବଂ ଏହାର ବିପରୀତ ପ୍ରକୃତିବିଶିଷ୍ଟ ବ୍ୟକ୍ତିଗଣଙ୍କୁ କୋମଳ ହେବା ପାଇଁ ସର୍ବଦା ଉପଦେଶ ପ୍ରଦାନ କରୁଥିଲେ । ଆମମାନଙ୍କ ମଧ୍ୟରେ ଜଣଙ୍କର[୨] ହୃଦୟ ଅତି କୋମଳ ଥିଲା । ବିଶିଷ୍ଟ କାରଣ ଥାଇ ମଧ୍ୟ ତାଙ୍କର କ୍ରୋଧର ଉଦୟ ହେବା ଅଥବା ରୁଢ଼ ବାକ୍ୟ ପ୍ରୟୋଗ କରିବାର ଆମେ କେବେ ଦେଖିଛୁ କି ନାହିଁ ସନ୍ଦେହ । ସମ୍ପୂର୍ଣ୍ଣ ପ୍ରକୃତିବିରୁଦ୍ଧ ହେଲେ ମଧ୍ୟ ଏବଂ ବିନ୍ଦୁମାତ୍ର ଇଚ୍ଛା ନ ଥିଲେ ବି ସେ ମା'ଙ୍କର ଚକ୍ଷୁରେ ଅଶ୍ରୁ ଦେଖି ନ ପାରି ହଠାତ୍ ଦିନେ ନିଜକୁ ବିବାହବନ୍ଧନରେ ଆବଦ୍ଧ କରିଥିଲେ । ଠାକୁରଙ୍କର ଆଶ୍ରୟ ଏବଂ ଆଶ୍ୱାସବାକ୍ୟ ହିଁ ତାଙ୍କୁ ଉକ୍ତ କର୍ମଯୋଗୁଁ ପ୍ରାଣରେ ପ୍ରଚଣ୍ଡ ଅନୁତାପ ଓ ହତାଶ ଭାବର ଉଦୟ ହେବାରୁ ରକ୍ଷା କରିଥିଲା । ସେପରି ଅଯଥା କୋମଳତା ଓ ଦୟାର ଭାବ ସଂଯତ କରି ସେ ଯେପରି ପ୍ରତିକାର୍ଯ୍ୟ ବିଚାରପୂର୍ବକ ସମ୍ପାଦନ କରିବେ ସେବିଷୟରେ ଠାକୁରଙ୍କର ବିଶେଷ ଦୃଷ୍ଟି ଥିଲା । ସାମାନ୍ୟ ସାମାନ୍ୟ ବିଷୟ ସହାୟରେ ଠାକୁର କିପରି ତାଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ, ଗୋଟିଏ-ଦୁଇଟି ଦୃଷ୍ଟାନ୍ତ ଉଲ୍ଲେଖ କଲେ ହିଁ ତାହା ବୁଝିହେବ । ଠାକୁରଙ୍କ ବସ୍ତ୍ରାଦି ରଖିବା ଜାଗାରେ ଗୋଟିଏ ଅସରପା ରହିଥିଲା, ଦିନେ ତାହା ଦେଖି ଠାକୁର କହିଲେ, ''ଅସରପାଟିକୁ ଧରି ବାହାରେ ନେଇ ମାରିଦିଅ ।'' ସେ ଏପରି ଆଦେଶ ପାଇ ଅସରପାଟିକୁ ଧରି ବାହାରକୁ ନେଇଗଲେ, ମାତ୍ର ନ ମାରି ଛାଡ଼ିଦେଇ ଆସିଲେ । ଆସିବା ମାତ୍ରେ ଠାକୁର ପଚାରିଲେ, ''ଆରେ ଅସରପାଟିକୁ ମାରିଦେଲୁ ତ ?'' ସେ ଅପ୍ରତିଭ ହୋଇ କହିଲେ, ''ନା ମହାଶୟ, ଛାଡ଼ିଦେଇଛି ।'' ଠାକୁର ସେଥିରେ ତାଙ୍କୁ ଭର୍ତ୍ସନା କରି କହିଲେ, ''ମୁଁ ତୋତେ ସେଇଟି ମାରିଦେବାକୁ କହିଥିଲି, ତୁ କ'ଣ ନା ସେଇଟି ଛାଡ଼ିଦେଇ ଆସିଲୁ ! ଯେମିତି କହିବି ଠିକ୍ ସେମିତି କରିବୁ, ନ ହେଲେ ଭବିଷ୍ୟତରେ ଗୁରୁତର ବିଷୟଗୁଡ଼ିକରେ ମଧ୍ୟ ନିଜ ମତରେ ଚାଲିଲେ ପଶ୍ଚାତ୍ତାପ କରିବାକୁ ପଡ଼ିବ ।''

---

୨. ସ୍ୱାମୀ ଯୋଗାନନ୍ଦ

## ସ୍ୱାମୀ ଯୋଗାନନ୍ଦଙ୍କୁ ଏବିଷୟରେ ଶିକ୍ଷା :

କଲିକତାରୁ ଯାତ୍ରୀ ନୌକା କରି ଦକ୍ଷିଣେଶ୍ୱର ଆସିବା ସମୟରେ ଶ୍ରୀଯୁକ୍ତ ଯୋଗେନ୍ ଦିନେ ଅନ୍ୟ ଏକ ଆରୋହୀଙ୍କ ପ୍ରଶ୍ନର ଉତ୍ତରରେ କହିଲେ, ସେ ରାଣୀ ରାସମଣିଙ୍କର କାଳୀବାଡ଼ୀରେ ଠାକୁରଙ୍କ ନିକଟକୁ ଯାଉଛନ୍ତି । ଏକଥା ଶୁଣି ହିଁ ସେହି ବ୍ୟକ୍ତି ଜଣକ ଅକାରଣରେ ଠାକୁରଙ୍କର ନିନ୍ଦା କରି କହିବାକୁ ଲାଗିଲେ, ''ଏହା ଏକ ଢଙ୍ଗ ଛଡ଼ା ଆଉ କ'ଣ ହୋଇପାରେ; ଭଲ ଖାଉଛନ୍ତି, ଗଦିରେ ଶୋଉଛନ୍ତି, ଆଉ ଧର୍ମ ଆଳରେ ଯେତେ ସବୁ ସ୍କୁଲ୍ ପିଲାଙ୍କର ମଥା ବିଗାଡୁଛନ୍ତି'' ଇତ୍ୟାଦି । ଏପରି କଥାସବୁ ଶୁଣି ଯୋଗେନ ଅତ୍ୟନ୍ତ ମର୍ମାହତ ହୋଇ ଭାବିଲେ, ତାଙ୍କୁ ଦୁଇ ଚାରିକଥା ଶୁଣେଇ ଦେବେ । ପରକ୍ଷଣରେ ନିଜ ଶାନ୍ତ ପ୍ରକୃତିର ପ୍ରେରଣାରେ ତାଙ୍କର ମନେ ହେଲା, ଠାକୁରଙ୍କର ପ୍ରକୃତ ପରିଚୟ ପାଇବା ପାଇଁ ଆଦୌ ଚେଷ୍ଟା ନ କରି କେତେଲୋକ କେତେ ପ୍ରକାରର ବିପରୀତ ଧାରଣା ଓ ନିନ୍ଦାବାଦ କରୁଛନ୍ତି, ସେ ତାଙ୍କର କ'ଣ କରିପାରିବେ । ଏପରି ଭାବି ସେ ଉକ୍ତ ବ୍ୟକ୍ତିଙ୍କର କଥାରେ କିଛି ପ୍ରତିବାଦ ନ କରି ମୌନ ଅବଲମ୍ବନ କରି ରହିଲେ ଏବଂ ପରେ ଠାକୁରଙ୍କ ନିକଟରେ ପହଞ୍ଚି କଥାପ୍ରସଙ୍ଗରେ ଏହି ଘଟଣାର ଆଦ୍ୟୋପାନ୍ତ ବର୍ଣ୍ଣନା କଲେ । ଯୋଗେନ୍ ଭାବିଥିଲେ, ନିରଭିମାନ ଠାକୁର— ଯାହାଙ୍କୁ ସ୍ତୁତି ବା ନିନ୍ଦାରେ କେହି କେବେ ବିଚଳିତ ହେବାର ଦେଖି ନାହାନ୍ତି— ସେକଥା ଶୁଣି ହସି ଉଡ଼ାଇଦେବେ । କିନ୍ତୁ ଏହାର ଫଳ ଅନ୍ୟ ପ୍ରକାର ହେଲା । ଠାକୁର ଏହି ଘଟଣା ଭିନ୍ନ ଆଲୋକରେ ଦେଖି ଯୋଗେନଙ୍କର ଏବିଷୟରେ ଆଚରଣ ସମ୍ବନ୍ଧରେ କହିଲେ, ''ମୋର ଅଯଥା ନିନ୍ଦା କଲା, ତାହା ତୁ ଚୁପ୍ କରି ଶୁଣି ଆସିଲୁ ! ଶାସ୍ତ୍ରରେ କ'ଣ ଅଛି ଜାଣିଛୁ ? —ଗୁରୁନିନ୍ଦାକାରୀର ମୁଣ୍ଡ କାଟିଦେବ, ଅଥବା ସେହି ସ୍ଥାନ ପରିତ୍ୟାଗ କରିବ । ତୁ ତା'ର ମିଥ୍ୟା ରଚନାର ଟିକିଏ ହେଲେ ପ୍ରତିବାଦ ମଧ୍ୟ କଲୁ ନାହିଁ !''

## ଏପରି ଘଟଣାରେ ନିରଞ୍ଜନଙ୍କୁ ଠାକୁରଙ୍କର ଅନ୍ୟ ପ୍ରକାରର ଉପଦେଶ :

ସେହିପରି ଅନ୍ୟ ଏକ ଘଟଣା ଏଠାରେ ଉଲ୍ଲେଖ କଲେ ହିଁ ପାଠକ ବୁଝିପାରିବେ ଠାକୁରଙ୍କ ଶିକ୍ଷା ବ୍ୟକ୍ତିବିଶେଷଙ୍କର ପ୍ରକୃତିର କେତେଦୂର ଅନୁଗାମୀ ହେଉଥିଲା । ଶ୍ରୀଯୁକ୍ତ ନିରଞ୍ଜନଙ୍କର ପ୍ରକୃତି ସ୍ୱଭାବତଃ ଉଗ୍ର ଥିଲା । ଯାତ୍ରୀ ନୌକା କରି ଦିନେ ଦକ୍ଷିଣେଶ୍ୱର ଆସିବା ସମୟରେ ଆରୋହୀମାନଙ୍କୁ ପୂର୍ବୋକ୍ତରୂପରେ ଠାକୁରଙ୍କର ଅଯଥା ନିନ୍ଦାବାଦ କରିବା ଶୁଣି ସେ ପ୍ରଥମେ ଏହାର ତୀବ୍ର ପ୍ରତିବାଦରେ ନିଯୁକ୍ତ ହେଲେ ଏବଂ ସେଥିରେ ସେମାନେ ନିରସ୍ତ ନ ହେବାରୁ ସେ ଅତ୍ୟନ୍ତ କ୍ରୋଧିତ ହୋଇ ନୌକାକୁ ବୁଡ଼ାଇ ଦେଇ ତାହାର ପ୍ରତିଶୋଧ ନେବାକୁ ବାହାରିଲେ ।

ନିରଞ୍ଜନଙ୍କ ଶରୀର ବିଶେଷ ଦୃଢ଼ ଓ ବଳିଷ୍ଠ ଥିଲା ଏବଂ ସେ ସନ୍ତରଣପଟୁ ଥିଲେ । ତାଙ୍କର ଉଗ୍ରମୂର୍ତ୍ତି ସାମନାରେ ସମସ୍ତେ ଭୟଭୀତ ହୋଇପଡ଼ିଲେ ଏବଂ ଅଶେଷ ଅନୁନୟ ବିନୟ ଓ କ୍ଷମାପ୍ରାର୍ଥନା କରି ନିନ୍ଦାକାରୀମାନେ ନିରଞ୍ଜନଙ୍କୁ ଉକ୍ତ କର୍ମରୁ ନିବୃତ୍ତ କଲେ । ଠାକୁର ଏହି କଥା ପରେ ଜାଣିପାରି ତାଙ୍କୁ ତିରସ୍କାର କରି କହିଲେ, ''କ୍ରୋଧ ଚଣ୍ଡାଳ, ତୁ କ୍ରୋଧର ବଶୀଭୂତ ହୋଇଅଛୁ ? ସତ୍‌ବ୍ୟକ୍ତିଙ୍କର କ୍ରୋଧ ପାଣିର ଗାର ସଦୃଶ, ଆରମ୍ଭ ହେଉ ହେଉ ମିଳାଇଯାଏ । ହୀନବୁଦ୍ଧି ଲୋକ କେତେ କଣ ଅନ୍ୟାୟ କଥା କହିଥାଆନ୍ତି, ସେହି କଥାକୁ ନେଇ ବାଦ-ବିବାଦ କରିବାକୁ ଗଲେ ସେହିଥିରେ ହିଁ ଜୀବନଟା କଟାଇବାକୁ ପଡ଼ିଥାଏ ! ଏପରି ସ୍ଥଳରେ ଭାବିବୁ ଲୋକ ନା ପୋକ ଏବଂ ସେମାନଙ୍କର କଥା ଉପେକ୍ଷା କରିବୁ । କ୍ରୋଧ ବଶରେ କି ଅନ୍ୟାୟ କରିବାକୁ ବସିଥିଲୁ ଭାବି ଦେଖ୍ ! ନାଉରୀଆମାନେ ତୋର କ'ଣ ଅପରାଧ କରିଥିଲେ ଯେ, ସେହି ଗରିବମାନଙ୍କ ଉପରେ ଅତ୍ୟାଚାର କରିବାକୁ ଆଗେଇଥିଲୁ !''

**ସ୍ତ୍ରୀଭକ୍ତମାନଙ୍କୁ ମଧ୍ୟ ଠାକୁରଙ୍କର ଏହିଭାବରେ ଶିକ୍ଷାଦାନର ଦୃଷ୍ଟାନ୍ତ :**

ପୁରୁଷମାନଙ୍କ ପରି ସ୍ତ୍ରୀ-ଭକ୍ତମାନଙ୍କୁ ମଧ୍ୟ ଠାକୁର ସ୍ୱାଭାବିକ ପ୍ରକୃତି ବୁଝି ଉପଦେଶ ପ୍ରଦାନ କରୁଥିଲେ । ଆମମାନଙ୍କର ସ୍ମରଣ ହୁଏ, ବିଶେଷ କୋମଳସ୍ୱଭାବା କୌଣସି ରମଣୀଙ୍କୁ ସେ ଦିନେ ନିମ୍ନଲିଖିତ କଥାଗୁଡ଼ିକ କହି ସତର୍କ କରି ଦେଇଥିଲେ— ''ଯଦି ବୁଝ ତୁମର ପରିଚିତ କୌଣସି ବ୍ୟକ୍ତି ଅଶେଷ କଷ୍ଟ ସ୍ୱୀକାରପୂର୍ବକ ତୁମକୁ ସମସ୍ତ ବିଷୟରେ ସହାୟତା କଲେ ମଧ୍ୟ ନିଜର ଦୁର୍ବଳ ଚିତ୍ତକୁ ରୂପଜ ମୋହରୁ ସଂଯତ କରି ନ ପାରି ତୁମ ପାଇଁ କଷ୍ଟ ଭୋଗ କରୁଛି, ସେ ସ୍ଥଳରେ ତୁମର କ'ଣ ତା' ପ୍ରତି ଦୟା ପ୍ରକାଶ କରିବାକୁ ହେବ, କିମ୍ବା କଠୋରଭାବରେ ତା' ଛାତିରେ ପଦାଘାତପୂର୍ବକ ଚିରକାଳ ପାଇଁ ତା' ନିକଟରୁ ଦୂରରେ ରହିବାକୁ ହେବ ? ଅତଏବ ବୁଝ, ଯେତେବେଳେ-ସେତେବେଳେ ଯେଉଁଠି -ସେଇଠି ଯାହାକୁ-ତାହାକୁ ଦୟା କରିବା ଚଳେ ନାହିଁ । ଦୟାପ୍ରକାଶର ଏକ ସୀମା ଅଛି, ଦେଶ-କାଳ-ପାତ୍ରଭେଦରେ ଏହା କର୍ତ୍ତବ୍ୟ ।''

**ହରିଶଙ୍କ କଥା :**

ପୂର୍ବୋକ୍ତ ପ୍ରସଙ୍ଗରେ ଅନ୍ୟ ଗୋଟିଏ କଥା ଆମମାନଙ୍କର ମନରେ ଆସୁଅଛି । ହରିଶ୍ ଜଣେ ବଳିଷ୍ଠ ଯୁବାପୁରୁଷ ଥିଲେ । ଘରେ ସୁନ୍ଦରୀ ସ୍ତ୍ରୀ, ଶିଶୁପୁତ୍ର ଏବଂ ମୋଟା ଅନ୍ନ-ବସ୍ତ୍ରର ସଂସ୍ଥାନ ଥିଲା । ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟକୁ କେତେଥର ଆସୁ ନ ଆସୁଣୁ ତାଙ୍କର ମନ ବିଶେଷ ଭାବରେ ବୈରାଗ୍ୟପ୍ରବଣ ହୋଇଉଠିଲା ! ତାଙ୍କର ସରଳ ସ୍ୱଭାବ, ଏକନିଷ୍ଠା ଏବଂ ଶାନ୍ତଭାବ ଦେଖି ଠାକୁର ତା ପ୍ରତି ପ୍ରସନ୍ନ ହୋଇ ତାକୁ ଆଶ୍ରୟ ଦାନ କଲେ । ସେହି ସମୟରୁ ଠାକୁରଙ୍କର

ସେବା, ଧ୍ୟାନଜପପରାୟଣ ହୋଇ ହରିଶ ଦକ୍ଷିଣେଶ୍ୱରରେ ହିଁ ଅଧିକାଂଶ ସମୟ କଟାଇବାକୁ ଲାଗିଲେ । ଅଭିଭାବକମାନଙ୍କର ତାଡ଼ନା, ଶ୍ୱଶୁରାଳୟର ସାଦର ଆହ୍ୱାନ, ସ୍ତ୍ରୀଙ୍କର କ୍ରନ୍ଦନ କିଛି ହିଁ ତାଙ୍କୁ କୌଣସି ପ୍ରକାରରେ ବିଚଳିତ କରିପାରିଲା ନାହିଁ । ସେ କାହାର କଥାକୁ ଭ୍ରୂକ୍ଷେପ ନ କରି ଏକ ପ୍ରକାର ମୌନ ଅବଲମ୍ବନପୂର୍ବକ ନିଜ ଗନ୍ତବ୍ୟ ପଥରେ ଅଗ୍ରସର ହେବାକୁ ଲାଗିଲେ । ଠାକୁର ତାଙ୍କ ଶାନ୍ତ ଏକନିଷ୍ଠ ପ୍ରକୃତି ଆଡ଼କୁ ଆମମାନଙ୍କର ଚିତ୍ତ ଆକର୍ଷଣ ନିମିତ୍ତ ବେଳେ ବେଳେ କହୁଥିଲେ, ''ଯିଏ ଯଥାର୍ଥ ମଣିଷ, ସେ ଜୀବିତ ଥାଇ ବି ମୃତସଦୃଶ — ଯେପରି ହରିଶ !''

### 'ଦୟା ଦେଖାଇବାର ସ୍ଥାନ ଏହା ନୁହେଁ' :

ଦିନେ ଖବର ଆସିଲା, ସଂସାରର ସମସ୍ତ କର୍ମ ପରିତ୍ୟାଗପୂର୍ବକ ସାଧନ ଭଜନ ନେଇ ରହିବାରୁ ହରିଶଙ୍କ ଘରେ ସମସ୍ତେ ବିଶେଷ ସନ୍ତପ୍ତ ହୋଇଛନ୍ତି ଏବଂ ତାଙ୍କ ସ୍ତ୍ରୀ ତାଙ୍କୁ ବହୁଦିନ ଧରି ଦେଖିବାକୁ ନ ପାଇ ଶୋକରେ ଅଧୀରା ହୋଇ ପ୍ରାୟ ଅନ୍ନଜଳ ତ୍ୟାଗ କରିଛି । ହରିଶ ଏକଥା ଶୁଣି ପୂର୍ବପରି ନୀରବ ରହିଲେ । କିନ୍ତୁ ଠାକୁର ତାଙ୍କ ମନ ଜାଣିବା ପାଇଁ ତାଙ୍କୁ ନିରୋଳାରେ ଡାକି କହିଲେ, ''ତୋର ସ୍ତ୍ରୀ ଏତେ କାତର ହୋଇ ପଡ଼ିଛି, ତେଣୁ ତୁ ଥରେ ଘରକୁ ଯାଇ ତାକୁ ଦେଖି ଆସୁ ନାହୁଁ କାହିଁକି ?'' ତାକୁ ଦେଖିବାକୁ କେହି ନାହିଁ କହିଲେ ଚଳେ,[୧] ତା'ଉପରେ ଟିକିଏ ଦୟା କଲେ କ୍ଷତି କ'ଣ ?'' ହରିଶ ଅତ୍ୟନ୍ତ କରୁଣ ସ୍ୱରରେ କହିଲେ, ''ମହାଶୟ, ଦୟାପ୍ରକାଶ କରିବାର ସ୍ଥାନ ଏହା ନୁହେଁ । ଏସ୍ଥଳରେ ଦୟା ପ୍ରକାଶ କରିବାକୁ ଗଲେ ମାୟାମୋହରେ ଅଭିଭୂତ ହୋଇ ଜୀବନର ପ୍ରଧାନ କର୍ତ୍ତବ୍ୟ ଭୁଲି ଯିବାର ସମ୍ଭାବନା ଅଛି । ଆପଣ ଏପରି ଆଦେଶ କରନ୍ତୁ ନାହିଁ ।'' ଠାକୁର ତାଙ୍କର ଏହି କଥାରେ ଅତ୍ୟନ୍ତ ପ୍ରସନ୍ନ ହୋଇଥିଲେ ଏବଂ ସେହି ସମୟରୁ ହରିଶଙ୍କ ସେକଥାଗୁଡ଼ିକ ବେଳେ ବେଳେ ଆମ ନିକଟରେ କହି ତାଙ୍କର ବୈରାଗ୍ୟର ପ୍ରଶଂସା କରୁଥିଲେ ।

### ଦୈନିକ ସାମାନ୍ୟ କାର୍ଯ୍ୟଗୁଡ଼ିକୁ ଲକ୍ଷ୍ୟ କରି ବିଭିନ୍ନ ବ୍ୟକ୍ତିଙ୍କୁ ଉପଦେଶ ପ୍ରଦାନ :

ଏହିପରି ଦୈନିକ ଛୋଟ ଛୋଟ କାର୍ଯ୍ୟଗୁଡ଼ିକ ଉପରେ ଲକ୍ଷ୍ୟ ରଖି ଆମମାନଙ୍କ ଅନ୍ତରର ଦୋଷ-ଗୁଣ ପରିଜ୍ଞାତ ହେବା ବିଷୟରେ ଠାକୁରଙ୍କ ସମ୍ବନ୍ଧରେ ବହୁ ଦୃଷ୍ଟାନ୍ତ ଉଲ୍ଲେଖ କରାଯାଇପାରେ । ନିରଞ୍ଜନଙ୍କୁ ଅଧିକ ପରିମାଣରେ ଘୃତ ଭୋଜନ କରିବା ଦେଖି କହିଥିଲେ, ''ଏତେ ଘିଅ କାହିଁକି ଖାଉଛୁ ! — ଶେଷରେ କ'ଣ ଲୋକଙ୍କର ଝିଅ-ବୋହୂଙ୍କୁ ଟାଣିବୁ ?'' ''ଜଣେ ଅଧିକ ନିଦ୍ରା ଯାଉଥିଲେ

---

୧. ହରିଶର ମାତା ଜୀବିତା ନ ଥିଲେ, ବୋଧହୁଏ ସେଥିପାଇଁ ଠାକୁର ଏପରି କହିଥିଲେ ।

ବୋଲି କିଛିକାଳ ଠାକୁରଙ୍କର ଅସନ୍ତୋଷଭାଜନ ହୋଇଥିଲେ । ଚିକିତ୍ସାଶାସ୍ତ୍ର-ଅଧ୍ୟୟନର ଝୁଙ୍କରେ ପଡ଼ି ଜନୈକ ବ୍ୟକ୍ତି ତାଙ୍କର ବାରଣ ଅବହେଳା କରିଥିବାରୁ ସେ କହିଥିଲେ, ''କେମିତି ଗୋଟିଏ ଗୋଟିଏ ବାସନା ତ୍ୟାଗ କରିବୁ ତାହା ନ କରି, ବାସନା-ଜାଲର ବୃଦ୍ଧି କରୁଛୁ, ତାହା ହେଲେ ଆଧ୍ୟାତ୍ମିକ ଉନ୍ନତି ଲାଭ କିପରି ହେବ ?'' ପ୍ରସଙ୍ଗକ୍ରମେ ଏପରି ଅନେକ ଦୃଷ୍ଟାନ୍ତ ଏହା ପୂର୍ବରୁ ପାଠକଙ୍କର ଦୃଷ୍ଟିକୁ ଆଣିଛୁ, ତେଣୁ ଏବିଷୟରେ ଅଧିକ କହିବା ଏଠାରେ ନିଷ୍ପ୍ରୟୋଜନ ।

ଆଶ୍ରିତ ବ୍ୟକ୍ତିମାନଙ୍କର ସ୍ୱାଭାବିକ ପ୍ରକୃତି ପୂର୍ବୋକ୍ତ ଉପାୟଗୁଡ଼ିକ ସହାୟରେ ପରିଜ୍ଞାତ ହୋଇ ସେସବୁର ଦୋଷଗୁଡ଼ିକୁ ଧୀରେ ଧୀରେ ପରିବର୍ତ୍ତନର ଚେଷ୍ଟା ମାତ୍ର କରି ଠାକୁର କ୍ଷାନ୍ତ ହେଉ ନ ଥିଲେ — କିନ୍ତୁ ଏହି ଉଦ୍ଦେଶ୍ୟ କେତେଦୂର ସିଦ୍ଧ ହେଲା ସେବିଷୟରେ ସେ ବାରମ୍ବାର ଅନୁସନ୍ଧାନ କରୁଥିଲେ । ତାଛଡ଼ା ସେପରି କୌଣସି ବ୍ୟକ୍ତିର ଆଧ୍ୟାତ୍ମିକ ଉନ୍ନତିର ପରିମାଣ ନିର୍ଣ୍ଣୟ କରିବା ପାଇଁ ସେ ଏକ ବିଶେଷ ଉପାୟ ସର୍ବଦା ଅବଲମ୍ବନ କରୁଥିବାର ଦେଖାଯାଉଥିଲା । ଉପାୟଟି ହେଲା —

### (୪) ତାଙ୍କଠାରେ ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ପ୍ରକାଶ ଉପଲବ୍ଧି କରିବା ଦିଗରେ ବ୍ୟକ୍ତିବିଶେଷ କେତେଦୂର ଅଗ୍ରସର ହେଉଛି ତାହା ଠାକୁରଙ୍କର ଲକ୍ଷ୍ୟ କରିବା :

୪ର୍ଥ — ବ୍ୟକ୍ତି ବିଶେଷ ତାଙ୍କ ନିକଟକୁ ପ୍ରଥମେ ଆସିବା ସମୟରେ ଯେଉଁ ଶ୍ରଦ୍ଧା ବା ଭକ୍ତିଭାବର ପ୍ରେରଣାରେ ଉପସ୍ଥିତ ହେଉଥିଲେ, ସେହି ଭାବ ଦିନକୁ ଦିନ ବଢ଼ୁଛି ନା ନାହିଁ ସେବିଷୟରେ ଅନୁସନ୍ଧାନ କରିବା ଠାକୁରଙ୍କର ରୀତି ଥିଲା । ଏବିଷୟ ଜାଣିବା ପାଇଁ ସେ କେବେ କେବେ ନିଜର ଆଧ୍ୟାତ୍ମିକ ଅବସ୍ଥା ବା ଆଚରଣବିଶେଷ ସମ୍ବନ୍ଧରେ ସେହି ବ୍ୟକ୍ତି କେତେଦୂର କିପରି ବୁଝୁଛି ସେକଥା ପଚାରୁଥିଲେ, କେତେବେଳେ ମଧ୍ୟ ତାଙ୍କର ସମସ୍ତ କଥାରେ ସେ ସମ୍ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରୁଛି କି ନାହିଁ ତାହା ଲକ୍ଷ୍ୟ କରୁଥିଲେ, ପୁଣି କେତେବେଳେ ନିଜର ସଂଘମଧ୍ୟସ୍ଥ ଯେଉଁ ସମସ୍ତ ବ୍ୟକ୍ତିଙ୍କ ସହିତ ଘନିଷ୍ଠ ଭାବରେ ମିଳିତ ହେଲେ ତାଙ୍କର ଭାବ ଗଭୀରତା ପ୍ରାପ୍ତ ହେବ, ସେମାନଙ୍କ ସହିତ ତାଙ୍କର ପରିଚୟ କରାଇଦେବା ପ୍ରଭୃତି ନାନା ଉପାୟରେ ତାକୁ ସହାୟତା କରୁଥିଲେ । ସେହିପରି ଯେତେଦିନ ପର୍ଯ୍ୟନ୍ତ ଉକ୍ତ ବ୍ୟକ୍ତି ଅନ୍ତରର ସ୍ୱାଭାବିକ ପ୍ରେରଣାରେ ତାଙ୍କୁ ଜଗତର ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ଆଦର୍ଶର ପ୍ରକାଶ ବୋଲି ଗ୍ରହଣ କରିବାକୁ ସମର୍ଥ ହେଉ ନ ଥିଲା ସେତେଦିନ ପର୍ଯ୍ୟନ୍ତ ସେ ତାର ଧର୍ମଲାଭ ସମ୍ବନ୍ଧରେ ନିଶ୍ଚିନ୍ତ ରହିପାରୁ ନ ଥିଲେ ।

## ଶେଷୋକ୍ତ ଉପାୟ ଦ୍ୱାରା ବ୍ୟକ୍ତିବିଶେଷଙ୍କର ଆଧ୍ୟାତ୍ମିକ ଉନ୍ନତିର ପରିମାଣ ନିର୍ଣ୍ଣୟ ଠାକୁରଙ୍କ ପକ୍ଷରେ ସ୍ୱାଭାବିକ କାହିଁକି :

ପୂର୍ବୋକ୍ତ କଥାଗୁଡ଼ିକରେ ପାଠକ ବିସ୍ମିତ ହେବେ ସନ୍ଦେହ ନାହିଁ । କିନ୍ତୁ ସାମାନ୍ୟ ଚିନ୍ତା କଲେ ବୁଝାଯାଏ ଯେ, ଏଥିରେ ବିସ୍ମୟ ହେବାର କୌଣସି କାରଣ ନାହିଁ ତାହା ନୁହେଁ, ମାତ୍ର ଏପରି କରିବା ହିଁ ଠାକୁରଙ୍କ ପକ୍ଷରେ ଯୁକ୍ତିଯୁକ୍ତ ଓ ସ୍ୱାଭାବିକ ଥିଲା । ଏଥିରୁ ବୁଝାଯାଏ ଯେ, ସେ ନିଜଠାରେ ଅଦୃଷ୍ଟପୂର୍ବ ଆଧ୍ୟାତ୍ମିକତା ପ୍ରକାଶର କଥା ସତରେ ଜାଣିପାରିଥିଲେ ବୋଲି ତାଙ୍କର ଏପରି ଆଚରଣ କରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । 'ଲୀଳାପ୍ରସଙ୍ଗ'ରେ ଅନ୍ୟତ୍ର ଆମେ ପାଠକଙ୍କୁ ବୁଝାଇବାକୁ ଚେଷ୍ଟା କରିଅଛୁ, ଦୀର୍ଘକାଳବ୍ୟାପୀ ଅଲୌକିକ ତପସ୍ୟା ଓ ଧ୍ୟାନସମାଧି ଯୋଗୁଁ ଠାକୁରଙ୍କ ଅନ୍ତରରେ ଅଭିମାନ-ଅହଂକାର ସର୍ବଥା ବିନଷ୍ଟ ହୋଇ ଯେତେବେଳେ ତାଙ୍କଠାରେ ଭ୍ରମପ୍ରମାଦର ସମ୍ଭାବନା ସମ୍ପୂର୍ଣ୍ଣ ରୂପରେ ତିରୋହିତ ହୋଇଥିଲା, ସେତେବେଳେ ଅଖଣ୍ଡ ସ୍ମୃତି ଓ ଅନନ୍ତ ଜ୍ଞାନପ୍ରକାଶ ଉପସ୍ଥିତ ହୋଇ ତାଙ୍କୁ ପ୍ରାଣେ ପ୍ରାଣେ ଉପଲବ୍ଧି କରାଇଥିଲା ଯେ, ତାଙ୍କର ଶରୀର ମନ ଆଶ୍ରୟରେ ଯେପରି ଅଭିନବ ଆଧ୍ୟାତ୍ମିକ ଆଦର୍ଶ ପ୍ରକାଶିତ ହୋଇଅଛି, ସଂସାରରେ ସେପରି ଏହାପୂର୍ବରୁ କେବେ କେଉଁଠାରେ ହୋଇ ନାହିଁ । ସୁତରାଂ, ସେହି କଥା ଯଥାଯଥ ହୃଦୟଙ୍ଗମ କରି ଉକ୍ତ ଆଦର୍ଶର ଅଲୋକରେ ଯେଉଁ ବ୍ୟକ୍ତି ନିଜ ଜୀବନ ଗଠନ କରିବାକୁ ପ୍ରୟାସ କରିବେ ତାଙ୍କର ହିଁ ବର୍ତ୍ତମାନ ଯୁଗରେ ଆଧ୍ୟାତ୍ମିକ ଉନ୍ନତି ଲାଭ ସୁଗମ ଓ ସହଜସାଧ ହେବ ଏବିଷୟରେ ତାଙ୍କୁ ସ୍ୱତଃ ବିଶ୍ୱାସ ସ୍ଥାପନ କରିବାକୁ ହୋଇଥିଲା । ଏଥିପାଇଁ ତାଙ୍କ ନିକଟକୁ ଆସିଥିବା ବ୍ୟକ୍ତିମାନେ ତାଙ୍କ ସମ୍ବନ୍ଧରେ ପୂର୍ବୋକ୍ତ ବିଷୟ ବୁଝିଛନ୍ତି କି ନାହିଁ ଏବଂ ତାଙ୍କ ପ୍ରଦର୍ଶିତ ମହତ୍ ଉଦାର ଭାବର ଆଶ୍ରୟରେ ନିଜ ନିଜ ଜୀବନଗଠନରେ ସଚେଷ୍ଟ ହୋଇଛନ୍ତି କି ନାହିଁ ସେବିଷୟରେ ସେ ବିଶେଷ ଭାବରେ ଅନୁସନ୍ଧାନ କରିବେ, ଏହା ବିଚିତ୍ର ନୁହେଁ ।

ଅନ୍ତରର ପୂର୍ବୋକ୍ତ ଧାରଣା ଠାକୁର ନାନାଭାବରେ ଆମ ନିକଟରେ ପ୍ରକାଶ କରୁଥିଲେ । କହୁଥିଲେ, ''ନବାବୀ ଅମଳର ମୁଦ୍ରା ବାଦଶାହୀ ଅମଳରେ ଚଳେ ନାହିଁ''; ''ମୁଁ ଯେପରି କହୁଛି ସେପରି ଯଦି ଚାଲ ତେବେ ସିଧାସଳଖ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଯିବ''; ''ଯାହାର ଶେଷ ଜନ୍ମ—ଯାହାର ସଂସାରରେ ପୁନଃପୁନଃ ଆଗମନ ଓ ଜନ୍ମ ମରଣ ଶେଷ ହୋଇଛି, ସେହି ବ୍ୟକ୍ତି ହିଁ ଏଠାକୁ ଆସିବେ ଏବଂ ଏଠାକାର ଭାବ ଗ୍ରହଣ କରିପାରିବେ''[୧]; ''ତୁମର ଇଷ୍ଟ (ଉପାସ୍ୟ ଦେବ)

---

୧. ଠାକୁରଙ୍କର ଏହି କଥାର ବିସ୍ତାରିତ ଆଲୋଚନା ଆମେ 'ଗୁରୁଭାବ-ଉତ୍ତରାର୍ଦ୍ଧ' ଶୀର୍ଷକ ଗ୍ରନ୍ଥର ଚତୁର୍ଥ ଅଧ୍ୟାୟରେ କରିଛୁ ।

(ନିଜକୁ ଦେଖାଇ) ଏହାଙ୍କ ଭିତରେ ଅଛନ୍ତି, ଏହାଙ୍କୁ ଭାବିଲେ ହିଁ ତାଙ୍କୁ ଭାବିବା ହେବ ।'' — ଇତ୍ୟାଦି ।

ଆଶ୍ରିତଗଣଙ୍କର ଅନ୍ତରରେ ପୂର୍ବୋକ୍ତ ଭାବର ଉଦୟ ହୋଇ ଦିନକୁ ଦିନ ତାହା ଦୃଢ଼ପ୍ରତିଷ୍ଠ ହେଉଅଛି କି ନାହିଁ ସେବିଷୟ ଠାକୁର କିପରି ଅନ୍ବେଷଣ କରୁଥିଲେ, ଏବିଷୟରେ କେତୋଟି ଦୃଷ୍ଟାନ୍ତ ଉଲ୍ଲେଖ କଲେ ପାଠକ ଆମମାନଙ୍କର କଥା ବୁଝିପାରିବେ :

### ''ମୋତେ କ'ଣ ବୋଲି ମନେ ହୁଏ'' — ଠାକୁରଙ୍କର ଏହି ପ୍ରଶ୍ନରେ ନାନା ଭକ୍ତଙ୍କର ନାନାପ୍ରକାର ମତ ପ୍ରକାଶ :

ଠାକୁରଙ୍କର ପୁଣ୍ୟଦର୍ଶନ ଏବଂ ଅହେତୁକୀ କୃପାଲାଭ କରିବାର ଯେଉଁମାନଙ୍କର ସୌଭାଗ୍ୟ ହୋଇଥିଲା ସେମାନେ ପ୍ରତ୍ୟେକ ହିଁ ଜାଣନ୍ତି , ସେ ସେମାନଙ୍କୁ ଏକୁଟିଆ ଅଥବା ଦୁଇଚାରିଜଣ ଭକ୍ତଙ୍କ ସମ୍ମୁଖରେ ବେଳେ ବେଳେ ହଠାତ୍ ପ୍ରଶ୍ନ କରୁଥିଲେ, ''ଆଚ୍ଛା, ମୋତେ ତୁମର କ'ଣ ମନେ ହୁଏ କୁହତ ?'' ଦକ୍ଷିଣେଶ୍ୱରକୁ କିଛିଦିନ ଗମନକରି ତାଙ୍କ ସହିତ ସମ୍ବନ୍ଧ କିଛିଟା ଘନିଷ୍ଠ ହେବାପରେ ସଚରାଚର ସେହି ପ୍ରଶ୍ନର ଉଦୟ ହେଉଥିଲା । ଏହା ବ୍ୟତୀତ ସେ ପ୍ରଥମ ଦର୍ଶନରେ ଅଥବା ତାହାର ଅଳ୍ପଦିନ ପରେ ଏହି ପ୍ରଶ୍ନ ଯେ ସେ କାହାକୁ କେବେ କରି ନାହାନ୍ତି ତାହା ନୁହେଁ । ଯେଉଁ ସମସ୍ତ ଭକ୍ତଙ୍କର ଆଗମନ କଥା ସେ ସେମାନଙ୍କର ଆସିବାର ବହୁପୂର୍ବରୁ ଯୋଗଦୃଷ୍ଟିସହାୟରେ ଜ୍ଞାତ ହୋଇଥିଲେ, ସେମାନେ କେହି କେହି ଆସିବାମାତ୍ରେ ସେ ଏପରି ପ୍ରଶ୍ନ କରିଛନ୍ତି, ତାହା ଆମେ ଜାଣିଛୁ । ଏପରି ଭାବରେ ଜିଜ୍ଞାସିତ ହୋଇ ତାଙ୍କର ଆଶ୍ରିତମାନଙ୍କର ପ୍ରତ୍ୟେକେ ତାଙ୍କୁ କେତେ ପ୍ରକାରର ଉତ୍ତର ପ୍ରଦାନ କରୁଥିଲେ, ତାହା କହିବାର ନୁହେଁ । କେହି କହୁଥିଲେ, 'ଆପଣ ଯଥାର୍ଥ ସାଧୁ' — କେହି କହୁଥିଲେ, 'ଯଥାର୍ଥ ଈଶ୍ୱରଭକ୍ତ' — କେହି 'ମହାପୁରୁଷ' — କେହି 'ସିଦ୍ଧପୁରୁଷ' — କେହି 'ଈଶ୍ୱରାବତାର' — କେହି 'ସ୍ୱୟଂ ଶ୍ରୀଚୈତନ୍ୟ' — କେହି 'ସାକ୍ଷାତ୍ ଶିବ' — କେହି 'ଭଗବାନ' — ଇତ୍ୟାଦି କହୁଥିଲେ । ବ୍ରାହ୍ମସମାଜପ୍ରତ୍ୟାଗତ କେହି କେହି — ଯେଉଁମାନେ ଈଶ୍ୱରଙ୍କ ଅବତାରତ୍ୱରେ ବିଶ୍ୱାସବାନ ନ ଥିଲେ — କହିଥିଲେ, ''ଆପଣ ଶ୍ରୀକୃଷ୍ଣ, ବୁଦ୍ଧ, ଈଶା ଓ ଶ୍ରୀଚୈତନ୍ୟପ୍ରମୁଖ ଶ୍ରେଷ୍ଠ ଭକ୍ତମାନଙ୍କର ସମତୁଲ୍ୟ, ଈଶ୍ୱରପ୍ରେମିକ ।'' ପୁଣି ଖ୍ରୀଷ୍ଟିୟାନ-ଧର୍ମାବଲମ୍ବୀ ଉଇଲିୟମ୍ସ[୧] ନାମକ ଜଣେ ବ୍ୟକ୍ତି ଏହିପରି ପ୍ରଶ୍ନରେ ତାଙ୍କୁ 'ନିତ୍ୟଚିନ୍ମୟବିଗ୍ରହ ଈଶ୍ୱରପୁତ୍ର ଈଶାମସି' ବୋଲି ନିଜର ମତ

---

୧. ଆମେ ବିଶ୍ୱସ୍ତସୂତ୍ରରୁ ଶୁଣିଛୁ ଯେ, ଏହି ବ୍ୟକ୍ତି କେତେଥର ଠାକୁରଙ୍କ ନିକଟକୁ ଗମନାଗମନ କରିବା ପରେ ହିଁ ତାହାଙ୍କୁ ଈଶ୍ୱରାବତାର ବୋଲି ସ୍ଥିର କରିଥିଲେ ଏବଂ ତାଙ୍କ ଉପଦେଶରେ ସଂସାରତ୍ୟାଗ କରି ପଞ୍ଜାବପ୍ରଦେଶର ଉତ୍ତରରେ ଅବସ୍ଥିତ ହିମାଳୟ ଗିରିର କୌଣସି ସ୍ଥାନରେ ତପସ୍ୟାଦିରେ ନିଯୁକ୍ତ ରହି ଶରୀରପାତ କରିଥିଲେ ।

ପ୍ରକାଶ କରିଥିଲେ । ଉତ୍ତରଦାତାମାନେ ଠାକୁରଙ୍କୁ କେତେଦୂର ବୁଝୁଥିଲେ ତାହା କହିହେବ ନାହିଁ, କିନ୍ତୁ ସେହି ସମସ୍ତ ବାକ୍ୟଦ୍ୱାରା ତାଙ୍କ ସମ୍ବନ୍ଧରେ ଏବଂ ତା ସହିତ ଈଶ୍ୱରଙ୍କ ସମ୍ବନ୍ଧରେ ନିଜ ନିଜର ମନୋଭାବ ଯେ ଯଥାଯଥ ବ୍ୟକ୍ତ କରୁଥିଲେ, ତାହା ବୁଝାଯାଏ । ଠାକୁର ମଧ୍ୟ ସେମାନଙ୍କର ସେପରି ଉତ୍ତରସବୁ ପୂର୍ବୋକ୍ତ ଆଲୋକରେ ଦେଖି ଯାହାର ଯେଉଁପ୍ରକାର ଭାବ ତାହା ପ୍ରତି ସେହି ପ୍ରକାର ଆଚରଣ ଓ ଉପଦେଶ ଆଦି ପ୍ରଦାନ କରୁଥିଲେ । କାରଣ, ଭାବମୟ ଠାକୁର କେବେ କାହାର ଭାବ ନଷ୍ଟ ନ କରି ତାହାର ପରିପୁଷ୍ଟିରେ ଯାହାଦ୍ୱାରା ସେହି ବ୍ୟକ୍ତି ଦେଶକାଳାତୀତ ସତ୍ୟସ୍ୱରୂପ ଶ୍ରୀଭଗବାନଙ୍କୁ ଉପଲବ୍ଧି କରିପାରେ ସେହି ବିଷୟରେ ସର୍ବଦା ସହାୟତା କରୁଥିଲେ । ତେବେ ଉତ୍ତରଦାତା ତାଙ୍କର ପ୍ରଶ୍ନରେ ନିଜ ଅନ୍ତରର ଧାରଣା ପ୍ରକାଶ କରୁଛନ୍ତି କିମ୍ବା ଅନ୍ୟଦ୍ୱାରା ପ୍ରଭାବିତ ହୋଇ ଏହିପରି କଥା କହୁଛନ୍ତି — ଏବିଷୟରେ ତାଙ୍କର ବିଶେଷ ଲକ୍ଷ୍ୟ ରହୁଥିଲା ।

## ଏହି ବିଷୟରେ ପ୍ରଥମ ଦୃଷ୍ଟାନ୍ତ —<br>ଭକ୍ତ ପୂର୍ଣ୍ଣଚନ୍ଦ୍ର ଓ 'ପିଲାଧରା ମାଷ୍ଟର' :

ପୂର୍ଣ୍ଣଚନ୍ଦ୍ର ଘୋଷ ଯେତେବେଳେ ଠାକୁରଙ୍କ ନିକଟକୁ ପ୍ରଥମେ ଆଗମନ କରିଥିଲେ ସେତେବେଳେ ତାଙ୍କୁ ନିତାନ୍ତ ବାଳକ ବୋଲି ହିଁ କୁହାଯିବ । ବୋଧହୁଏ, ସେତେବେଳେ ତାଙ୍କର ବୟସ ମାତ୍ର ତେର ବର୍ଷ ଅତିକ୍ରମ ହୋଇଥିବ । ସେତେବେଳେ ଠାକୁରଙ୍କର ପରମଭକ୍ତ ଶ୍ରୀଯୁକ୍ତ ମହେନ୍ଦ୍ର, ବିଦ୍ୟାସାଗର ମହାଶୟଙ୍କ ଦ୍ୱାରା ସଂସ୍ଥାପିତ ଶ୍ୟାମବଜାର ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତ ଥିଲେ ଏବଂ ବାଳକମାନଙ୍କ ଭିତରେ କାହାକୁ ସ୍ୱଭାବତଃ ଈଶ୍ୱରାନୁରାଗୀ ଦେଖିବାକୁ ପାଇଲେ ଦକ୍ଷିଣେଶ୍ୱରକୁ ଠାକୁରଙ୍କ ପାଖକୁ ନେଇଆସୁଥିଲେ । ସେହି ଭାବରେ ତେଜଚନ୍ଦ୍ର, ନାରାୟଣ, ହରିପଦ, ବିନୋଦ, ଛୋଟ ନରେନ୍ଦ୍ର, ପ୍ରମଥ (ପଲ୍ଟୁ) ପ୍ରଭୃତି ବାଗବଜାର ଅଞ୍ଚଳର ଅନେକଗୁଡ଼ିଏ ବାଳକଙ୍କୁ ସେ ଜଣ ଜଣ କରି ଠାକୁରଙ୍କ ଆଶ୍ରୟରେ ନେଇଆସିଥିଲେ । ଏଥିପାଇଁ ଆମମାନଙ୍କ ମଧ୍ୟରେ କେହି କେହି ଥଟ୍ଟା କରି ତାଙ୍କୁ 'ପିଲାଧରା ମାଷ୍ଟର' ବୋଲି କହୁଥିଲେ ଏବଂ ଠାକୁର ମଧ୍ୟ ଏହା ଶୁଣି ବେଳେ ବେଳେ ହସି ହସି କହୁଥିଲେ, ''ତାଙ୍କର ଏହି ନାମ ଉପଯୁକ୍ତ ହୋଇଛି !'' ବିଦ୍ୟାଳୟରେ ତୃତୀୟ ଶ୍ରେଣୀରେ ପଢ଼ାଇବା ସମୟରେ ପୂର୍ଣ୍ଣଙ୍କ ସୁନ୍ଦର ସ୍ୱଭାବ ଓ ମଧୁର କଥାରେ ତାଙ୍କର ଚିତ୍ତ ଦିନେ ଆକୃଷ୍ଟ ହେଲା ଏବଂ ଏହାର ଅନତିକାଳ ପରେ ସେ ଠାକୁରଙ୍କ ସହିତ ବାଳକର ପରିଚୟ କରାଇ ଦେବାର ବନ୍ଦୋବସ୍ତ କଲେ । ବନ୍ଦୋବସ୍ତ ଗୋପନରେ ହିଁ କରାହେଲା । କାରଣ, ପୂର୍ଣ୍ଣଙ୍କ ଅଭିଭାବକମାନେ ବିଶେଷ କଡ଼ା ମିଜାଜର ଲୋକ ଥିଲେ । ଏକଥା ଜଣା ପଡ଼ିଲେ ଶିକ୍ଷକ ଓ ଛାତ୍ର ଉଭୟ ପକ୍ଷ ଲାଞ୍ଛିତ ହେବାର ନିଶ୍ଚିତ

ସମ୍ଭାବନା ଥିଲା । ଅତଏବ ଯଥା ସମୟରେ ବିଦ୍ୟାଳୟକୁ ଆସି ପୂର୍ଣ୍ଣ ଗାଡ଼ି ଭଡ଼ା କରି ଦକ୍ଷିଣେଶ୍ୱରକୁ ଚାଲିଯାଇ ସ୍କୁଲ ଛୁଟି ହେବା ପୂର୍ବରୁ ଫେରିଆସି ଅନ୍ୟ ଦିନପରି ଘରକୁ ଫେରିଯାଇଥିଲା ।

## ପୂର୍ଣ୍ଣର ଆଗମନରେ ଠାକୁରଙ୍କର ବିଶେଷ ପ୍ରୀତି ଓ ତାର ଉଚ୍ଚାଧିକାର ସମ୍ବନ୍ଧରେ କଥା :

ପୂର୍ଣ୍ଣକୁ ଦେଖି ଠାକୁର ସେଦିନ ବିଶେଷ ପ୍ରୀତିଲାଭ କରିଥିଲେ ଏବଂ ପରମ ସ୍ନେହରେ ତାକୁ ଉପଦେଶପ୍ରଦାନ ଓ ଜଳଯୋଗ କରାଇ ଫେରିବା ସମୟରେ କହିଥିଲେ, ''ତୋର ଯେତେବେଳେ ସୁବିଧା ହେବ ଚାଲି ଆସିବୁ, ଗାଡ଼ି କରି ଆସିବୁ, ଯିବା ଆସିବାର ଭଡ଼ା ଏହିଠାରୁ ଦେବାର ବନ୍ଦୋବସ୍ତ ରହିବ ।'' ପରେ ଆମକୁ କହିଥିଲେ, ''ପୂର୍ଣ୍ଣ ନାରାୟଣଙ୍କର ଅଂଶ, ସତ୍ତ୍ୱଗୁଣୀ ଆଧାର— ନରେନ୍ଦ୍ରର (ସ୍ୱାମୀ ବିବେକାନନ୍ଦ) ତଳକୁ ପୂର୍ଣ୍ଣର ସ୍ଥାନ କୁହାଯାଇପାରେ ! ଏଠାରେ ଆସି ଧର୍ମଲାଭ କରିବେ ବୋଲି ଯେଉଁମାନଙ୍କୁ ବହୁପୂର୍ବରୁ ଦେଖିଥିଲି, ପୂର୍ଣ୍ଣର ଆଗମନରେ ସେହି ଶ୍ରେଣୀର ଭକ୍ତମାନଙ୍କର ଅଗମନ ପୂର୍ଣ୍ଣ ହେଲା— ଏହାପରେ ଏପରି ଆଉ କେହି ଏଠାକୁ ଆସିବେ ନାହିଁ ।''

## ପୂର୍ଣ୍ଣଙ୍କ ସହିତ ଠାକୁରଙ୍କର ସପ୍ରେମ ଆଚରଣ :

ପୂର୍ଣ୍ଣଙ୍କ ସେଦିନ ଅପୂର୍ବ ଭାବାନ୍ତର ହୋଇଥିଲା । ଠାକୁରଙ୍କ ସହିତ ସମ୍ବନ୍ଧବିଷୟକ ପୂର୍ବସ୍ମୃତି ଜାଗରିତ ହୋଇ ତାଙ୍କୁ ଏକାବେଳକେ ସ୍ଥିର ଓ ଅନ୍ତର୍ମୁଖୀ କରିଦେଇଥିଲା ଏବଂ ତାଙ୍କର ଦୁଇ ନୟନରୁ ଅଜସ୍ର ଆନନ୍ଦଧାରା ବିଗଳିତ ହୋଇଥିଲା । ଅଭିଭାବକମାନଙ୍କ ଭୟରେ ବହୁ ଚେଷ୍ଟାରେ ନିଜକୁ ସମ୍ଭାଳି ତାଙ୍କୁ ସେଦିନ ଘରକୁ ଫେରିବାକୁ ପଡ଼ିଥିଲା । ସେହି ଦିନରୁ ପୂର୍ଣ୍ଣକୁ ଦେଖିବାକୁ ଓ ତାକୁ ଖୁଆଇବା ପାଇଁ ଠାକୁରଙ୍କର ପ୍ରାଣରେ ବିଶେଷ ଆଗ୍ରହ ହୋଇଥିଲା । ସୁବିଧା ପାଇଲେ ହିଁ ସେ ତା ପାଇଁ ନାନାପ୍ରକାର ଖାଦ୍ୟଦ୍ରବ୍ୟ ପଠାଇ ଦେଉଥିଲେ ଏବଂ ଯେଉଁ ଲୋକ ଏହାକୁ ନେଇଯାଉଥିଲା ତାହାକୁ ବିଶେଷ କରି କହୁଥିଲେ, ସେ ଯେପରି ଲୁଚାଇ ଏସବୁ ତାଙ୍କ ହାତରେ ଦେଇ ଆସେ— କାରଣ, ଘରେ ଏକଥା ପ୍ରକାଶ ହେଲେ ତା' ଉପରେ ଅତ୍ୟାଚାର ହେବାର ସମ୍ଭାବନା ଥିଲା ।

## ଠାକୁରଙ୍କର ପୂର୍ଣ୍ଣଙ୍କୁ ଦେଖିବା ପାଇଁ ଆଗ୍ରହ ଓ ତାଙ୍କ ସହିତ ଦ୍ୱିତୀୟଥର ସାକ୍ଷାତ ସମୟରେ ପ୍ରଶ୍ନ— 'ମୋତେ ତୋର କ'ଣ ମନେ ହୁଏ ?' :

ପୂର୍ଣ୍ଣ ସହିତ ଦେଖା କରିବାର ଆଗ୍ରହରେ ଠାକୁର ବେଳେ ବେଳେ ଦରଦର ଧାରରେ ଚକ୍ଷୁରୁ ଅଶ୍ରୁ ବିସର୍ଜନ କରିବାର ଆମେ ଦେଖିଅଛୁ । ତାଙ୍କର ସେହିପରି

ଆଚରଣରେ ଆମେମାନେ ବିସ୍ମିତ ହେବା ଦେଖି ସେ ଦିନେ କହିଥିଲେ, ''ପୂର୍ଣ୍ଣ ଉପରେ ମୋର ଏପରି ଆକର୍ଷଣ ଦେଖି ତୁମେମାନେ ଅବାକ୍ ହେଉଅଛ, ନରେନ୍ଦ୍ର (ବିବେକାନନ୍ଦ) ପାଇଁ ପ୍ରାଣ ଯେପରି ପ୍ରଥମେ ପ୍ରଥମେ ବ୍ୟାକୁଳ ହେଉଥିଲା ଏବଂ ଯେପରି ଛଟପଟ ହେଉଥିଲି, ତାହା ଦେଖିଥିଲେ ଜାଣିଥାଆନ୍ତ !'' ସେ ଯାହାହେଉ, ପୂର୍ଣ୍ଣଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଲେ ହିଁ ଠାକୁର ଏବେଠାରୁ ମଧ୍ୟାହ୍ନରେ କଲିକତା ଆସି ପହଞ୍ଚୁଥିଲେ ଏବଂ ବାଗବଜାରର ବଳରାମ ବସୁଙ୍କ ଘରେ ଅଥବା ସେହି ଅଞ୍ଚଳର ଅନ୍ୟ କୌଣସି ବ୍ୟକ୍ତିଙ୍କ ଘରେ ଉପସ୍ଥିତ ହୋଇ ଖବର ପଠାଇ ତାଙ୍କୁ ବିଦ୍ୟାଳୟରୁ ଡକାଇ ଆଣୁଥିଲେ । ଏପରି କୌଣସି ସ୍ଥାନରେ ହିଁ ପୂର୍ଣ୍ଣ ଠାକୁରଙ୍କର ପୁଣ୍ୟଦର୍ଶନ ଦ୍ୱିତୀୟ ଥର ଲାଭ କରିଥିଲେ ଏବଂ ସେଦିନ ସେ ସମ୍ପୂର୍ଣ୍ଣ ଆତ୍ମହରା ହୋଇପଡ଼ିଥିଲେ । ଠାକୁର ସେଦିନ ସ୍ନେହମୟୀ ଜନନୀ ସଦୃଶ ସ୍ୱହସ୍ତରେ ତାଙ୍କୁ ଖୁଆଇ ଦେଇଥିଲେ ଏବଂ ପଚାରିଥିଲେ, ''ମୋତେ ତୋ'ର କ'ଣ ବୋଲି ମନେହୁଏ କହତ ?'' ଭକ୍ତି ଗଦ୍‌ଗଦ୍ ହୃଦୟର ଅପୂର୍ବ ପ୍ରେରଣାରେ ଅବଶ ହୋଇ ପୂର୍ଣ୍ଣ କହିଥିଲେ, ''ଆପଣ ଭଗବାନ — ସାକ୍ଷାତ୍ ଈଶ୍ୱର !''

### ପୂର୍ଣ୍ଣର ଉତ୍ତରରେ ଠାକୁରଙ୍କର ଆନନ୍ଦ ଓ ତାଙ୍କୁ ଉପଦେଶ :

ବାଳକ ପୂର୍ଣ୍ଣ ଦର୍ଶନମାତ୍ରେ ହିଁ ଯେ ତାଙ୍କୁ ସର୍ବୋଚ୍ଚ ଆଧ୍ୟାତ୍ମିକ ଆଦର୍ଶରୂପରେ ଗ୍ରହଣ କରିପାରିଛି, ଏକଥା ଜାଣି ଠାକୁରଙ୍କର ବିସ୍ମୟ ତଥା ଆନନ୍ଦର ଶେଷ ନ ଥିଲା । ସେ ତାହାକୁ ସର୍ବାନ୍ତଃକରଣରେ ଆଶୀର୍ବାଦପୂର୍ବକ ଶକ୍ତିପୂତ ମନ୍ତ୍ରସହିତ ସାଧନରହସ୍ୟର ଉପଦେଶ ଦେଇଥିଲେ । ପରେ ଦକ୍ଷିଣେଶ୍ୱରକୁ ଫେରି ଆମମାନଙ୍କୁ ବାରମ୍ବାର କହିଥିଲେ, ''ଆଚ୍ଛା, ପୂର୍ଣ୍ଣ ପିଲାଲୋକ, ବୁଦ୍ଧି ପରିପକ୍ୱ ହୋଇ ନାହିଁ, ସେ କିପରି ଏକଥା ବୁଝିଲା, କୁହ ଦେଖି ? ଆହୁରି କେହି କେହି ଦିବ୍ୟ ସଂସ୍କାରର ପ୍ରେରଣାରେ ପୂର୍ଣ୍ଣ ପରି ସେହି ପ୍ରଶ୍ନର ସେହିପରି ଉତ୍ତର ଦେଇଛନ୍ତି ! ଏହା ନିଶ୍ଚୟ ପୂର୍ବଜନ୍ମକୃତ ସଂସ୍କାର । ଏମାନଙ୍କର ଶୁଦ୍ଧ ସାତ୍ତ୍ୱିକ ଅନ୍ତର ମଧ୍ୟରେ ସତ୍ୟର ଛବି ସ୍ୱଭାବତଃ ପରିପୂର୍ଣ୍ଣଭାବରେ ଫୁଟି ଉଠେ !''

### ସଂସାରୀ ପୂର୍ଣ୍ଣର ମହତ୍ତ୍ୱ :

ଘଟଣାଚକ୍ରରେ ପୂର୍ଣ୍ଣଙ୍କୁ ଦାରପରିଗ୍ରହ କରି ସାଧାରଣ ଲୋକଙ୍କ ପରି ସଂସାର ଯାତ୍ରା ନିର୍ବାହ କରିବାକୁ ପଡ଼ିଥିଲା — କିନ୍ତୁ ତା ସହିତ ଘନିଷ୍ଠ ଭାବରେ ଯେଉଁମାନେ ମିଶିଥିଲେ, ସେମାନେ ସମସ୍ତେ ତା'ର ଅଲୌକିକ ବିଶ୍ୱାସ, ଈଶ୍ୱର ନିର୍ଭରତା, ସାଧନପ୍ରିୟତା, ନିରଭିମାନିତା ଏବଂ ସର୍ବପ୍ରକାରର ଆତ୍ମତ୍ୟାଗ ସମ୍ବନ୍ଧରେ ସମସ୍ୱରରେ କହିଥାଆନ୍ତି ।

## ଦ୍ୱିତୀୟ ଦୃଷ୍ଟାନ୍ତ—ବୈକୁଣ୍ଠନାଥଙ୍କୁ ଏହି ବିଷୟରେ ଠାକୁରଙ୍କର ପ୍ରଶ୍ନ ଓ ତାର ଉତ୍ତର :

ଆଶ୍ରିତ ଭକ୍ତଗଣଙ୍କୁ ପୂର୍ବୋକ୍ତଭାବରେ ପ୍ରଶ୍ନ କରିବା ବିଷୟରେ ଆଉ ଗୋଟିଏ ଦୃଷ୍ଟାନ୍ତ ଆମେ ଏଠାରେ ଉଲ୍ଲେଖ କରିବୁ । ଦକ୍ଷିଣେଶ୍ୱର ଆଗମନର କିଛିଦିନ ପରେ ଆମମାନଙ୍କର ସୁପରିଚିତ ଜନୈକ ବ୍ୟକ୍ତିଙ୍କୁ ଠାକୁର ଦିନେ ନିଜ ଗୃହସ୍ଥିତ ମହାପ୍ରଭୁଙ୍କର ସଂକୀର୍ତ୍ତନର ଛବିଖଣ୍ଡିକ ଦେଖାଇ କହିଲେ, ''ସମସ୍ତେ କିପରି ଈଶ୍ୱରୀୟଭାବରେ ବିଭୋର ହୋଇଛନ୍ତି ଦେଖୁଛୁ ?'' ସେହି ବ୍ୟକ୍ତି କହିଲେ ଏମାନେ ସବୁ ଛୋଟ ଲୋକ, ମହାଶୟ ।

ଠାକୁର—ସେ କ'ଣ ରେ ? ସେପରି କଥା କହନ୍ତି ନାହିଁ !

ଉକ୍ତବ୍ୟକ୍ତି—ହଁ ମହାଶୟ, ମୋର ଘର ନଦୀୟାରେ, ମୁଁ ଜାଣେ ବୈଷ୍ଣବ ଫୈଷ୍ଣବ ସବୁ ଛୋଟ ଲୋକମାନେ ହୁଅନ୍ତି ।

ଠାକୁର—ତୋର ନଦୀୟାରେ ଘର, ତୋତେ ଆଉ ଗୋଟେ ପ୍ରଣାମ[୧] ଆଚ୍ଛା, ରାମ ପ୍ରଭୃତି ଏହାକୁ (ନିଜକୁ ଦେଖାଇ) ଅବତାର କହନ୍ତି, ତୋର କ'ଣ ମନେହୁଏ, କୁହ ତ ?

ଉକ୍ତବ୍ୟକ୍ତି—ସେମାନେ ତ ଭାରି ଛୋଟ କଥା କହନ୍ତି, ମହାଶୟ !

ଠାକୁର—ସେ କ'ଣ ରେ ? ଭଗବାନଙ୍କ ଅବତାର କହନ୍ତି, ଆଉ ତୁ କହୁଛୁ ଛୋଟ କଥା କହନ୍ତି !

ଉକ୍ତବ୍ୟକ୍ତି—ହଁ ମହାଶୟ, ଅବତାର ତ ତାଙ୍କର (ଈଶ୍ୱରଙ୍କର) ଅଂଶ, ମୋର ଆପଣଙ୍କୁ ସାକ୍ଷାତ୍ ଶିବ ବୋଲି ମନେ ହୁଏ ।

ଠାକୁର—ଆରେ ତୁ କ'ଣ କହୁଛୁ ?

ଉକ୍ତବ୍ୟକ୍ତି—ସେପରି ତ ମନେ ହୁଏ, ତେଣୁ ମୁଁ କ'ଣ କରିବି କହନ୍ତୁ ? ଆପଣ ଶିବଙ୍କର ଧ୍ୟାନ କରିବାକୁ କହିଛନ୍ତି, କିନ୍ତୁ ପ୍ରତିଦିନ ଚେଷ୍ଟା କଲେ ମଧ୍ୟ ତାହା କୌଣସି ପ୍ରକାରରେ ହେଉ ନାହିଁ । ଧ୍ୟାନ କରିବାକୁ ବସିଲେ ହିଁ ଆପଣଙ୍କର ପ୍ରସନ୍ନ ମୁହଁଟି ସମ୍ମୁଖରେ ଜଳ ଜଳ ହେଉଥାଏ, ତାହାକୁ ଘୁଞ୍ଚାଇ ଶିବଙ୍କୁ କେବେହେଲେ ମନରେ ଆଣିପାରୁ ନାହିଁ, ଇଚ୍ଛା ବି ହୁଏ ନାହିଁ ! ତେଣୁ ଆପଣଙ୍କୁ ଶିବ ବୋଲି ଭାବେ ।

ଠାକୁର—(ହସି ହସି) କ'ଣ ତୁ କହୁଛୁ ! ମୁଁ କିନ୍ତୁ ଜାଣେ, ମୁଁ ତୋର ଗୋଟିଏ କେଶ ସହିତ ସମାନ (ଉଭୟଙ୍କର ହସ) । ଯା ହେଉ, ତୋ ପାଇଁ ବଡ଼ ଭାବନା ଥିଲା, ଆଜି ନିଶ୍ଚିନ୍ତ ହେଲି ।

---

୧. କାହା ସାଥିରେ ଦେଖାହେବାମାତ୍ରେ ତାଙ୍କୁ ପ୍ରଣାମ କରିବା ଠାକୁରଙ୍କର ରୀତି ଥିଲା । ଏହି ବ୍ୟକ୍ତିଙ୍କୁ ଏହା ପୂର୍ବରୁ ପ୍ରଣାମ କରିଥିଲେ ବୋଲି ପୁନରାୟ ପ୍ରଣାମ କରିବା ସମୟରେ ଠାକୁର ଏହି କଥା କହିଥିଲେ ।

ଶେଷୋକ୍ତ କଥା ଠାକୁର କାହିଁକି କହିଥିଲେ, ତାହା ଉକ୍ତବ୍ୟକ୍ତି ସେତେବେଳେ ବୁଝିଥିଲେ କି ନାହିଁ କହିପାରିବୁ ନାହିଁ । ଆମମାନଙ୍କର ଜଣାଅଛି, ଏପରି ସ୍ଥଳରେ ଠାକୁର ପ୍ରସନ୍ନ ହୋଇଛନ୍ତି — ଏହି କଥା ବୁଝି ହିଁ ଆମମାନଙ୍କ ପ୍ରାଣ ପୂର୍ଣ୍ଣ ହୋଇଉଠୁଥିଲା ଏବଂ ତାଙ୍କର ସେପରି କଥାସବୁ ବୁଝିବାକୁ ପ୍ରବୃତ୍ତି ହେଉ ନ ଥିଲା ! ଏବେ ବୁଝିପାରୁଛୁ, ତାଙ୍କୁ ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ଆଦର୍ଶ ବୋଲି ଗ୍ରହଣ କରିଅଛି ଜାଣି ଠାକୁରେ ଏହି ବ୍ୟକ୍ତିଙ୍କୁ ସେଦିନ ସେହି ସବୁ କଥା କହିଥିଲେ ।

**କଥା ଓ କାର୍ଯ୍ୟରେ ଯାହାର ମେଳ ନାହିଁ ତାକୁ ବିଶ୍ୱାସ କରିବା ଉଚିତ୍ ନୁହେଁ :**

ଆଶ୍ରିତ ଭକ୍ତଗଣ ତାଙ୍କର ସର୍ବପ୍ରକାର ଆଚରଣ ତନ୍ନ ତନ୍ନ ଭାବରେ ଲକ୍ଷ୍ୟ କରି ବୁଝିସୁଝି ଯେପରି ତାଙ୍କୁ ସେହି ଭାବରେ ଗ୍ରହଣ କରନ୍ତି, ସେଥିପାଇଁ ଠାକୁରଙ୍କର ବିଶେଷ ପ୍ରଯତ୍ନ ଥିଲା । କାରଣ, ପ୍ରାୟତଃ ସେ ଆମକୁ କହୁଥିଲେ, ‘‘ସାଧୁଙ୍କୁ ଦିନରେ ଦେଖିବ, ରାତିରେ ଦେଖିବ, ତେବେ ସାଧୁଙ୍କୁ ବିଶ୍ୱାସ କରିବ ।’’ ସାଧୁ ଅନ୍ୟମାନଙ୍କୁ ଯାହା ଶିକ୍ଷା ଦିଅନ୍ତି ସ୍ୱୟଂ ତାହା ଅନୁଷ୍ଠାନ କରୁଛନ୍ତି କି ନାହିଁ ସେବିଷୟରେ ବିଶେଷରୂପରେ ଲକ୍ଷ୍ୟ କରିବାକୁ ଠାକୁର ଆମମାନଙ୍କୁ ସର୍ବଦା ଉତ୍ସାହିତ କରୁଥିଲେ । କହୁଥିଲେ — କଥାରେ ଏବଂ କାର୍ଯ୍ୟରେ, ମନ ଓ ମୁଖରେ ଯାହାର ମେଳ ନାହିଁ, ତା କଥାରେ କେବେହେଲେ ବିଶ୍ୱାସ କରିବ ନାହିଁ । ସେହି ପ୍ରସଙ୍ଗରେ ସେ ଗୋଟିଏ ଗଳ୍ପ କେବେ କେବେ କହିବାର ଶୁଣିଛୁ ।

**ସେହି ବିଷୟରେ ଠାକୁରଙ୍କ ଗଳ୍ପ — ବୈଦ୍ୟ ଓ ଅସୁସ୍ଥ ବାଳକ :**

କୌଣସି ଜଣେ ବ୍ୟକ୍ତିଙ୍କର ସ୍ୱଳ୍ପବୟସ୍କ ପୁତ୍ର ସର୍ବଦା ଅଜୀର୍ଣ୍ଣ ରୋଗରେ କଷ୍ଟ ପାଉଥିଲା । ପିତା ତାହାର ଚିକିତ୍ସା ପାଇଁ ଗ୍ରାମାନ୍ତରର ଜଣେ ବିଖ୍ୟାତ ବୈଦ୍ୟଙ୍କ ନିକଟକୁ ନେଇଗଲେ । ବୈଦ୍ୟ ବାଳକକୁ ପରୀକ୍ଷା କରି ରୋଗ ନିର୍ଣ୍ଣୟ କଲେ, କିନ୍ତୁ ଔଷଧ ପାଇଁ ତା’ପର ଦିନ ତାକୁ ପୁନରାୟ ଆସିବାକୁ କହିଲେ ।

ପରଦିନ ପିତା ପୁତ୍ରକୁ ନେଇ ଗଲା ପରେ ବୈଦ୍ୟ ବାଳକକୁ କହିଲେ, ‘‘ତୁ ଗୁଡ଼ ଖାଇବା ପରିତ୍ୟାଗ କର, ତା’ହେଲେ ହିଁ ତୋର ରୋଗ ଭଲ ହୋଇଯିବ, ଔଷଧ ଖାଇବା ଦରକାର ନାହିଁ ।’’ ପିତା ଏକଥା ଶୁଣି କହିଲେ, ‘‘ମହାଶୟ, ଏହି କଥା କାଲି ତ କହିପାରିଥାଆନ୍ତେ; ତାହେଲେ ଏତେ କଷ୍ଟ କରି ଆଜି ଏତେ ବାଟ ଆସିବାକୁ ପଡ଼ି ନ ଥାଆନ୍ତା !’’ ବୈଦ୍ୟ ସେଥିରେ କହିଲେ, ‘କ’ଣ ଜାଣିଛ, କାଲି ମୋର ଏଠାରେ କେତୋଟି ଗୁଡ଼ କଳସୀ ଥିଲା — ବୋଧହୁଏ ଦେଖିଥିଲ । କାଲି ଯଦି ବାଳକକୁ ଗୁଡ଼ ଖାଇବାକୁ ମନା କରିଥାଆନ୍ତି, ତା’ହେଲେ ସେ ଭାବି ଥାଆନ୍ତା କବିରାଜ ଲୋକ ଠିକ୍ ନୁହଁନ୍ତି, ନିଜେ ଏତେ ଗୁଡ଼ ଖାଉଛନ୍ତି ଆଉ ମୋତେ ଗୁଡ଼ ଖାଇବାକୁ ମନା କରୁଛନ୍ତି । ଏପରି ଭାବି ସେ ମୋ କଥାରେ ଶ୍ରଦ୍ଧା କରିବା ଦୂରରେ

ଥାଉ ଆଦୌ ବିଶ୍ୱାସ କରି ନ ଥାନ୍ତା । ସେଥିପାଇଁ ଗୁଡ଼ କଳସୀଗୁଡ଼ିକୁ ଏଠାରୁ ଘୁଞ୍ଚାଇବା ପୂର୍ବରୁ ତାକୁ ସେହି କଥା କହି ନ ଥିଲି ।'

### ଭକ୍ତଗଣଙ୍କ ଠାକୁରଙ୍କୁ ପରୀକ୍ଷା :

ଠାକୁରଙ୍କର ଏପରି ଶିକ୍ଷାର ପ୍ରେରଣାରୁ ଆମେ ସମସ୍ତେ ତାଙ୍କର ଆଚରଣସମୂହ ବିଶେଷ ଭାବରେ ଲକ୍ଷ୍ୟ କରୁଥିଲୁ । କେହି କେହି ଏହା ପ୍ରଭାବରୁ ତାଙ୍କୁ ପରୀକ୍ଷା କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହେଉ ନ ଥିଲେ ! ଫଳରେ ଦେଖାଯାଇଛି, ନିଜ ନିଜର ବିଶ୍ୱାସଭକ୍ତି ବୃଦ୍ଧି ପାଇଁ ସରଳ ଅନ୍ତଃକରଣରେ ଆମେ ତାଙ୍କ ଉପରେ ଯାହା ଅଳି–ଅତ୍ୟାଚାର କରିଛୁ, ସେସମସ୍ତ ସେ ପ୍ରସନ୍ନ ମନରେ ସହ୍ୟ କରିଛନ୍ତି । ନିମ୍ନଲିଖିତ ଦୃଷ୍ଟାନ୍ତଗୁଡ଼ିକ ପାଠ କଲେ ପାଠକ ଏବିଷୟ ସମ୍ୟକ୍ ହୃଦୟଙ୍ଗମ କରିପାରିବେ ।

### ୧ମ ଦୃଷ୍ଟାନ୍ତ—ସ୍ୱାମୀ ଯୋଗାନନ୍ଦଙ୍କର କଥା :

ସ୍ୱାମୀ ଯୋଗାନନ୍ଦଙ୍କ ବିଷୟରେ ଆମେ କିଛି କଥା ଏହାପୂର୍ବରୁ ପାଠକଙ୍କୁ କହିଛୁ । ଘଟଣାଟି ତାଙ୍କୁ ନେଇ ହୋଇଥିଲା ଏବଂ ତାଙ୍କରି ନିକଟରୁ ଆମେ ପରେ ଶୁଣିଥିଲୁ । ସ୍ୱାମୀ ଯୋଗାନନ୍ଦଙ୍କର ପରିଚୟ ସଂକ୍ଷେପରେ ପ୍ରଥମେ ପ୍ରଦାନପୂର୍ବକ ଆମେ ତାହା କହିବୁ । ଯୋଗାନନ୍ଦଙ୍କର ପୂର୍ବନାମ ଥିଲା ଯୋଗୀନ୍ଦ୍ରନାଥ ରାୟଚୌଧୁରୀ । ସୁବିଖ୍ୟାତ ସାବର୍ଣ୍ଣ ଚୌଧୁରୀଙ୍କ ବଂଶରେ ସେ ଜନ୍ମଗ୍ରହଣ କରିଥିଲେ । ପିତା ନବୀନଚନ୍ଦ୍ର ଏକଦା ଧନାଢ଼୍ୟ ଜମିଦାର ଥିଲେ ଏବଂ ପୁରୁଷାନୁକ୍ରମରେ ଦକ୍ଷିଣେଶ୍ୱର ଗ୍ରାମରେ ହିଁ ବସବାସ କରୁଥିଲେ । ଯୋଗୀନ୍ଦ୍ରଙ୍କ ବାଲ୍ୟକାଳରେ ଏବଂ ତତ୍‌ପୂର୍ବେ ତାଙ୍କ ବାସଭବନ ମହାଭାରତ–ଭାଗବତ ଆଦି ଗ୍ରନ୍ଥପାଠ, ପୂଜା ଓ କୀର୍ତ୍ତନାଦିରେ ସର୍ବଦା ମୁଖରିତ ରହୁଥିଲା । ଠାକୁର କହୁଥିଲେ, ସାଧନାସମୟରେ ସେ ବହୁବାର ଉକ୍ତଗୃହକୁ ହରି କଥା ଶ୍ରବଣ କରିବାକୁ ଯାଇଥିଲେ ଏବଂ ଗୃହର କେତେକ ମୁଖ୍ୟଙ୍କ ସହିତ ପରିଚିତ ଥିଲେ । କିନ୍ତୁ ଯୋଗୀନ୍ଦ୍ର କୈଶୋରକାଳ ଅତିକ୍ରମ କରୁ ନ କରୁଣୁ ଗୃହବିବାଦ ଏବଂ ଅନ୍ୟାନ୍ୟ କାରଣରୁ ସେମାନଙ୍କର ଅଧିକାଂଶ ସମ୍ପତ୍ତି ନଷ୍ଟ ହୋଇ ଚୌଧୁରୀ ବଂଶୀୟମାନେ ଦିନକୁ ଦିନ ନିଃସ୍ୱ ହେବାରେ ଲାଗିଲେ ।

### ଯୋଗୀନ୍ଦ୍ରଙ୍କର ପୁଣ୍ୟ ସଂସ୍କାରସମୂହ ଓ ବୁଦ୍ଧିମତ୍ତା :

ଯୋଗୀନ୍ଦ୍ର ବାଲ୍ୟକାଳରୁ ହିଁ ଧୀର, ବିନୟୀ ଓ ମଧୁରପ୍ରକୃତିସମ୍ପନ୍ନ ଥିଲେ । ଅସାଧାରଣ ଶୁଭସଂସ୍କାର ନେଇ ସେ ସଂସାରରେ ଜନ୍ମଗ୍ରହଣ କରିଥିଲେ । ଜ୍ଞାନର ଉନ୍ମେଷ ସହିତ ବାଲ୍ୟକାଳରେ ସର୍ବଦା ତାଙ୍କର ମନେ ହେଉଥିଲା ସେ ଏହି ପୃଥିବୀର ଲୋକ ନୁହନ୍ତି, ଏହା ତାଙ୍କର ବାସସ୍ଥାନ ନୁହେଁ, ଅତି ଦୂରର କୌଣସି

ଏକ ନକ୍ଷତ୍ରପୁଞ୍ଜରେ ତାଙ୍କର ଯଥାର୍ଥ ଆବାସ ଏବଂ ସେଠାରେ ହିଁ ତାଙ୍କର ପୂର୍ବପରିଚିତ ସଙ୍ଗୀମାନେ ଏବେବି ରହିଛନ୍ତି ! ଆମେ ତାଙ୍କୁ କେବେ କ୍ରୋଧିତ ହେବାର ଦେଖି ନାହୁଁ । ସ୍ୱାମୀ ବିବେକାନନ୍ଦ କହୁଥିଲେ, 'ଆମମାନଙ୍କ ମଧ୍ୟରେ ଯଦି କେହି ସର୍ବତୋଭାବରେ କାମଜିତ୍ ଥାଆନ୍ତି, ତା'ହେଲେ ସେ ଯୋଗୀନ୍ ।' ସରଳ ଭାବରେ ସମସ୍ତଙ୍କୁ ବିଶ୍ୱାସ କରୁଥିବାରୁ ଠାକୁରଙ୍କ ନିକଟରୁ ବେଳେ ବେଳେ ତିରସ୍କୃତ ହେଲେ ମଧ୍ୟ ଯୋଗୀନ୍ଦ୍ର ନିର୍ବୋଧ ନ ଥିଲେ; ଏବଂ ସର୍ବଦା ଶାନ୍ତଭାବରେ ନିଜ କର୍ମରେ ବ୍ୟାପୃତ ରହିଲେ ମଧ୍ୟ ତାଙ୍କର ବିଚାରଶୀଳ ମନ ସମସ୍ତଙ୍କର ସବୁ କାର୍ଯ୍ୟ ଲକ୍ଷ୍ୟପୂର୍ବକ ସେମାନଙ୍କ ସମ୍ବନ୍ଧରେ ଯେଉଁ ମତାମତ ସ୍ଥିର କରୁଥିଲା ତାହା ସତ୍ୟ ଛଡ଼ା ପ୍ରାୟ ମିଥ୍ୟା ହେଉ ନ ଥିଲା । ସେଥିପାଇଁ ଯୋଗୀନ୍ଦ୍ର ବୁଦ୍ଧିମାନ ବୋଲି ଟିକିଏ ଅହଂକାର ଥିଲା ବୋଲି ମନେ ହୁଏ ।

### ଠାକୁରଙ୍କର କଥା—ଯୋଗୀନ୍ଦ୍ର ଈଶ୍ୱରକୋଟି ଭକ୍ତ :

ଦକ୍ଷିଣେଶ୍ୱରରେ ବାସକରୁଥିବାରୁ ଯୌବନରେ ପଦାର୍ପଣ କରୁ ନ କରୁଣୁ ଯୋଗୀନ ଠାକୁରଙ୍କର ପୁଣ୍ୟଦର୍ଶନଲାଭରେ ଧନ୍ୟ ହୋଇଥିଲେ । ପ୍ରଥମ ଆଗମନ ଦିବସରେ ଠାକୁର ତାଙ୍କୁ ଦେଖି ଏବଂ ତାଙ୍କର ପରିଚୟ ପାଇ ବିଶେଷ ପ୍ରୀତ ହୋଇଥିଲେ ଏବଂ ବୁଝିଥିଲେ ତାଙ୍କ ନିକଟକୁ ଧର୍ମ ଲାଭ କରିବାକୁ ଆସିବେ ବୋଲି ଯେଉଁ ସମସ୍ତ ବ୍ୟକ୍ତିଙ୍କୁ ଶ୍ରୀଶ୍ରୀଜଗନ୍ମାତା ତାଙ୍କୁ ବହୁପୂର୍ବରୁ ଦେଖାଇଥିଲେ, ଯୋଗୀନ୍ କେବଳ ସେମାନଙ୍କ ମଧ୍ୟରୁ ଅନ୍ୟତମ ନୁହନ୍ତି, ମାତ୍ର ଯେଉଁ ଛଅଜଣ ବିଶେଷ ବ୍ୟକ୍ତିଙ୍କୁ ଈଶ୍ୱରକୋଟି ବୋଲି ଜଗଦମ୍ବାଙ୍କ କୃପାରୁ ସେ ପରେ ଜାଣିପାରିଥିଲେ, ଇଏ ସେମାନଙ୍କ ମଧ୍ୟରେ ଅନ୍ୟତମ ।

### ଯୋଗୀନ୍ଦ୍ରଙ୍କର ବିବାହ, ମନସ୍ତାପ ଓ ଠାକୁରଙ୍କ ନିକଟକୁ ଗମନରୁ ବିରତ ହେବାରୁ ଠାକୁରଙ୍କର କୌଶଳପୂର୍ବକ ତାଙ୍କୁ ଆଣି ସାନ୍ତ୍ୱନା ଦେବା :

ଆମେ ଅନ୍ୟତ୍ର କହିଛୁ ମାତାଙ୍କ କରୁଣ କ୍ରନ୍ଦନ ଯୋଗୁଁ ଯୋଗୀନ୍ଦ୍ର ସମ୍ପୂର୍ଣ୍ଣ ଅନିଚ୍ଛାସତ୍ତ୍ୱେ ସହସା ବିବାହ କରିଥିଲେ । ସେ କହୁଥିଲେ, ''ବିବାହ କରି ମନେ ହେଲା ଈଶ୍ୱରଲାଭ ଆଶା କରିବା ଏବେ ବିଡ଼ମ୍ବନାମାତ୍ର; ଯେଉଁ ଠାକୁରଙ୍କର ପ୍ରଥମ ଶିକ୍ଷା କାମିନୀକାଞ୍ଚନତ୍ୟାଗ ତାଙ୍କ ନିକଟକୁ ଆଉ କ'ଣ ପାଇଁ ଯିବି; ହୃଦୟର କୋମଳତାରୁ ଜୀବନଟା ନଷ୍ଟ କରିଛି, ତାହା ଆଉ ଫେରିବାର ନୁହେଁ; ଏବେ ଯେତେ ଶୀଘ୍ର ମୃତ୍ୟୁ ହୁଏ ସେତେ ମଙ୍ଗଳ । ପୂର୍ବରୁ ଠାକୁରଙ୍କ ନିକଟକୁ ପ୍ରତିଦିନ ଯାଉଥିଲି, ଏହି ଘଟଣା ପରେ ଯିବା ସମ୍ପୂର୍ଣ୍ଣ ବନ୍ଦ କଲି ଏବଂ ଦାରୁଣ ହତାଶା ଓ ମନସ୍ତାପରେ ଦିନ କଟାଇବାକୁ ଲାଗିଲି । କିନ୍ତୁ ଠାକୁର ଛାଡ଼ିଲେ ନାହିଁ । ବାରମ୍ବାର ଲୋକ ପଠାଇ ଡକାଇବାକୁ ଲାଗିଲେ ଏବଂ ତଥାପି ମୁଁ ଗଲି

ନାହିଁ ଦେଖି ଅପୂର୍ବ କୌଶଳ ଅବଲମ୍ବନ କଲେ । କାଳୀମନ୍ଦିରର ଜଣେ ଲୋକ କୌଣସି ଜିନିଷ କ୍ରୟ କରି ଦେବା ପାଇଁ ବିବାହ ପୂର୍ବରୁ ମୋତେ କିଛି ଟଙ୍କା ଦେଇଥିଲେ । ଦ୍ରବ୍ୟଟିର ମୂଲ୍ୟ ଦେଇ ସାରି ଦୁଇ-ଚାରିଅଣା ପଇସା ବଳକା ରହିଥିଲା । ଜିନିଷଟି ଜଣକ ହାତରେ ତାଙ୍କୁ ପଠାଇ ଦେଇ ବାକି ପଇସା ଶୀଘ୍ର ପଠାଇଦେବି ବୋଲି କହିଥିଲି । ଠାକୁର ଏହା ଜାଣିପାରି ଦିନେ କୃତ୍ରିମ କୋପ ପ୍ରକାଶପୂର୍ବକ ମୋତେ କହି ପଠାଇଲେ, 'ତୁ କିପରି ଲୋକ ? ଲୋକ ଜିନିଷ କିଣିବାକୁ ଦେଲେ ତାର ହିସାବ ଦେବା, ବାକି ପଇସା ଫେରାଇବା ଦୂରରେ ଥାଉ, କେବେ ଦେବୁ ତା'ର କୌଣସି ଖବର ମଧ୍ୟ ନାହିଁ !' ଏକଥାରେ ମୋ ହୃଦୟରେ ଭୀଷଣ ଅଭିମାନ ହେଲା; ଭାବିଲି, ଠାକୁର ମୋତେ ଏତେଦିନ ପରେ ଜୁଆଚୋର ମନେ କଲେ ! ହେଉ, ଆଜି କୌଣସି ପ୍ରକାରରେ ଯାଇ ଏହି ଗଣ୍ଡଗୋଳ ତୁଟାଇ ଦେଇ ଆସିବି; ପରେ ଆଉ କାଳୀମନ୍ଦିରର ମାଟି ମାଡ଼ିବି ନାହିଁ । ହତାଶା, ଅନୁତାପ, ଅଭିମାନ, ଅପମାନ ଇତ୍ୟାଦି ନାନାଭାବରେ ମୃତକଳ୍ପ ହୋଇ ଅପରାହ୍ଣରେ କାଳୀମନ୍ଦିରକୁ ଗଲି । ଦୂରରୁ ଦେଖିବାକୁ ପାଇଲି, ଠାକୁର ପିନ୍ଧିବା ଲୁଗାଟିକୁ କାଖରେ ଜାକି ଘର ବାହାରକୁ ଆସି ଯେପରି ଭାବାବିଷ୍ଟ ହୋଇ ଠିଆ ହୋଇଛନ୍ତି । ମୋତେ ଦେଖିବାମାତ୍ରେ ଦ୍ରୁତ ବେଗରେ ଆଗେଇ ଆସି କହିଲେ, 'ବିବାହ କରିଛୁ, ସେଥିରେ ଭୟ କ'ଣ ? ଏଠାକାର କୃପା ଥିଲେ ଲକ୍ଷେ ବିବାହ କଲେ ମଧ୍ୟ କୌଣସି କ୍ଷତି ହେବ ନାହିଁ; ଯଦି ସଂସାରରେ ରହି ଈଶ୍ୱରଲାଭ କରିବାକୁ ଚାହୁଁ ତା'ହେଲେ ତୋର ସ୍ତ୍ରୀଙ୍କୁ ଦିନେ ଏଠାକୁ ନେଇ ଆସିବୁ—ତାଙ୍କୁ ଓ ତୋତେ ସେହି ପ୍ରକାର କରିଦେବି; ଆଉ ଯଦି ସଂସାରତ୍ୟାଗ କରି ଈଶ୍ୱରଲାଭ କରିବାକୁ ଚାହୁଁ, ତା'ହେଲେ ତାହା ହିଁ କରିଦେବି !' ଅର୍ଦ୍ଧବାହ୍ୟଦଶାରେ ଅବସ୍ଥିତ ଠାକୁରଙ୍କର ଏହି କଥାଗୁଡ଼ିକ ଏକାନ୍ତ ଭାବରେ ପ୍ରାଣକୁ ସ୍ପର୍ଶ କଲା ଏବଂ ପୂର୍ବର ହତାଶ ଅନ୍ଧକାର କେଉଁଆଡ଼େ ଅନ୍ତର୍ହିତ ହୋଇଗଲା ! ଅଶ୍ରୁପୂର୍ଣ୍ଣନୟନରେ ତାଙ୍କୁ ପ୍ରଣାମ କଲି । ସେ ମଧ୍ୟ ସସ୍ନେହରେ ମୋ ହାତ ଧରି ଗୃହରେ ପ୍ରବେଶ କଲେ ଏବଂ ପୂର୍ବୋକ୍ତ ହିସାବ ଏବଂ ବଳକା ପଇସାର କଥା ଯେତେବେଳେ କହିବାକୁ ଗଲି, ସେହି କଥାରେ କର୍ଣ୍ଣପାତ ମଧ୍ୟ କଲେ ନାହିଁ ।'' ଗୃହତ୍ୟାଗୀ ଉଦାସୀନର ଭାବ ନେଇ ଯୋଗୀନ୍ଦ୍ର ସଂସାରକୁ ଆସିଥିଲେ, ବିବାହ କରି ମଧ୍ୟ ତାଙ୍କର ଉକ୍ତ ଭାବର କୌଣସି ପରିବର୍ତ୍ତନ ହେଲା ନାହିଁ । ପୂର୍ବପରି ଠାକୁରଙ୍କ ସେବାରେ ଓ ଆଶ୍ରୟରେ ହିଁ ତାଙ୍କର ଦିନ କଟିବାକୁ ଲାଗିଲା । ପୁତ୍ରକୁ ବିଷୟକର୍ମ ଓଁ ଅର୍ଥ ଉପାର୍ଜ୍ଜନରେ ଉଦାସୀନ ଦେଖି ପିତାମାତା ଅନୁଯୋଗ କରିବାକୁ ଲାଗିଲେ । ଯୋଗୀନ୍ କହୁଥିଲେ, ''ସେହି ପ୍ରକାର ଅନୁଯୋଗ ସମୟରେ ମାତା ଦିନେ କହିଲେ, 'ଯଦି ଉପାର୍ଜ୍ଜନରେ ମନ ନ ଦେବୁ ତେବେ ବିଭା ହେଉଥିଲୁ କାହିଁକି ?' ମୁଁ କହିଲି, 'ମୁଁ ତ ସେସମୟରେ ତୁମମାନଙ୍କୁ ବାରମ୍ବାର କହିଥିଲି ବିବାହ କରିବି

ନାହିଁ; ତୁମର କ୍ରନ୍ଦନ ସହ୍ୟ କରି ନ ପାରିବାରୁ ହିଁ ତ' ପରିଶେଷରେ ଏଥିରେ ସମ୍ମତ ହେଲି ।' ମାତା ଏକଥାରେ କ୍ରୋଧିତ ହୋଇ କହିଲେ, 'ଏହା କ'ଣ ଗୋଟେ କଥା !—ଭିତରେ ଇଚ୍ଛା ନ ଥିଲେ ତୁ ମୋ ପାଇଁ ବିବାହ କରିଛୁ, ଏହା କ'ଣ ସମ୍ଭବ ?' ତାଙ୍କର ଏହି କଥାରେ ସମ୍ପୂର୍ଣ୍ଣ ନିର୍ବାକ ହୋଇ ଭାବିବାକୁ ଲାଗିଲି, ହେ ଭଗବାନ ! ଯାହାର କଷ୍ଟ ଦେଖି ନ ପାରି ତୁମକୁ ଛାଡ଼ିବାକୁ ଉଦ୍ୟତ ହେଲି, ସେ ହିଁ ଏହି କଥା କହିଲେ ! ଯାହା ହେଉ, ଏହି ସଂସାରରେ ମନ ଓ ମୁଖ ଏକ ହେବା କେବଳ ଠାକୁର ଭିନ୍ନ ଆଉ କାହାଠାରେ ନାହିଁ । ସେହି ଦିନରୁ ସଂସାର ପ୍ରତି ପୂର୍ଣ୍ଣ ବୀତରାଗ ଉପସ୍ଥିତ ହେଲା । ସେହି ଘଟଣା ପରଠାରୁ ଠାକୁରଙ୍କ ନିକଟକୁ ଯାଇ ମଝିରେ ମଝିରେ ରାତିରେ ମଧ୍ୟ ରହିବାକୁ ଲାଗିଲି ।''

## ଯୋଗୀନ୍ଦ୍ରଙ୍କର ଦକ୍ଷିଣେଶ୍ୱରରେ ରାତ୍ରିବାସ :

ଠାକୁରଙ୍କ ନିକଟରେ ସମସ୍ତ ଦିବସ ଅତିବାହିତ କରି ଦିନେ ଯୋଗୀନ୍ଦ୍ର ଦେଖିଲେ, ସନ୍ଧ୍ୟାପୂର୍ବରୁ ଭକ୍ତମାନେ ଜଣେ ଜଣେ ବିଦାୟ ଗ୍ରହଣପୂର୍ବକ ନିଜ ନିଜ ଘରକୁ ବାହୁଡ଼ି ଗଲେ । କୌଣସି ପ୍ରକାର ପ୍ରୟୋଜନ ହେଲେ ରାତ୍ରିରେ ଲୋକ ଅଭାବରୁ ଠାକୁରଙ୍କର କଷ୍ଟ ହୋଇପାରେ ଭାବି ସେ ସେଦିନ ଘରକୁ ନ ଫେରିବାକୁ ସ୍ଥିର କଲେ । ଠାକୁର ମଧ୍ୟ ଯୋଗୀନ୍ଦ୍ରଙ୍କର ଏହି କାର୍ଯ୍ୟରେ ବିଶେଷ ପ୍ରସନ୍ନ ହେଲେ । ଈଶ୍ୱରୀୟ ଆଲୋଚନାରେ ରାତି ଦଶଟା ବାଜିଲା । ଠାକୁର ଜଳଯୋଗ କଲେ ଏବଂ ଯୋଗୀନ୍ଦ୍ରଙ୍କର ଭୋଜନ ଶେଷ ହେଲା ପରେ ତାଙ୍କୁ ଘର ଭିତରେ ଶୋଇବାକୁ କହି ସ୍ୱୟଂ ଶଯ୍ୟାଗ୍ରହଣ କଲେ । ରାତିର ଦ୍ୱିତୀୟ ପ୍ରହର ଅତୀତ ହେଲେ ଠାକୁରଙ୍କର ବାହାରକୁ ଯିବା ପାଇଁ ଇଚ୍ଛା ହେବାରୁ ସେ ଯୋଗୀନ୍ଦ୍ରଙ୍କୁ ଚାହିଁ ଦେଖିଲେ, ସେ ଗଭୀର ନିଦରେ ଶୋଇଛନ୍ତି । କଞ୍ଚା ନିଦ ଭାଙ୍ଗିଲେ କଷ୍ଟ ହେବ ଭାବି ତାଙ୍କୁ ନ ଡାକି ସେ ଏକାକୀ ପଞ୍ଚବଟୀ ଅଭିମୁଖେ ଝାଉଁବଣକୁ ଗଲେ ।

## ଠାକୁରଙ୍କ ପ୍ରତି ସନ୍ଦେହ :

ଯୋଗୀନ୍ଦ୍ର ଚିରକାଳ ସ୍ୱଳ୍ପନିଦ୍ର ଥିଲେ । ଠାକୁର ଯିବାର କିଛିକ୍ଷଣ ପରେ ହିଁ ତାଙ୍କର ନିଦ୍ରାଭଙ୍ଗ ହେଲା । ଘରର ଦ୍ୱାର ଖୋଲା ହୋଇଥିବାର ଦେଖି ସେ ଉଠି ବସିଲେ, ଏବଂ ବିଛଣାରେ ଠାକୁରଙ୍କୁ ନ ଦେଖି ଭାବିବାକୁ ଲାଗିଲେ, ସେ ଏତେ ରାତିରେ କେଉଁଠାକୁ ଗଲେ । ଗଡୁ ପ୍ରଭୃତି ଜଳପାତ୍ରଗୁଡ଼ିକ ଯଥାସ୍ଥାନରେ ରହିଅଛି ଦେଖି ଭାବିଲେ, ବୋଧହୁଏ ଠାକୁର ବାହାରେ ପାଦଚାରଣ କରୁଛନ୍ତି । ଯୋଗୀନ୍ଦ୍ର ବାହାରକୁ ଆସିଲେ, ଜହ୍ନ ଆଲୁଅରେ ଚାରିଆଡ଼େ ଚାହିଁ କାହାକୁ ଦେଖିବାକୁ ପାଇଲେ ନାହିଁ । ସେତେବେଳେ ତାଙ୍କର ମନରେ ଦାରୁଣ ସନ୍ଦେହ ଉପସ୍ଥିତ ହେଲା—ତେବେ କ'ଣ ଠାକୁର ନହବତଖାନାରେ ନିଜ ପତ୍ନୀଙ୍କ ନିକଟକୁ ଶୟନ

କରିବାକୁ ଗଲେ ? ତେବେ କ'ଣ ସେ ମଧ୍ୟ ମୁହଁରେ ଯାହା କହନ୍ତି, କାର୍ଯ୍ୟରେ ତାହାର ବିପରୀତ ଅନୁଷ୍ଠାନ କରିଥାନ୍ତି ?

### ଯୋଗୀନ୍ଦ୍ରଙ୍କର ସଂଶୟର ମୀମାଂସା :

ଯୋଗୀନ୍ଦ୍ର କହୁଥିଲେ, ''ଏହି ଚିନ୍ତା ଉଦୟ ହେବାମାତ୍ରେ ସନ୍ଦେହ, ଭୟ ପ୍ରଭୃତି ନାନା ଭାବର ଯୁଗପତ୍ ସମାବେଶରେ ପୂରା ଅଭିଭୂତ ହୋଇପଡ଼ିଲି । ପରେ ସ୍ଥିର କଲି, ନିତାନ୍ତ କଠୋର ଏବଂ ରୁଚିବିରୁଦ୍ଧ ହେଲେ ମଧ୍ୟ ଯାହା ସତ୍ୟ ତାହା ଜାଣିବାକୁ ହେବ । ଅନନ୍ତର ନିକଟବର୍ତ୍ତୀ ଗୋଟିଏ ସ୍ଥାନରେ ଠିଆହୋଇ ନହବତ୍‌ଖାନାର ଦ୍ୱାରଦେଶ ଲକ୍ଷ୍ୟ କରିବାକୁ ଲାଗିଲି । କିଛି ସମୟ ଏପରି କରିଛି କି ନାହିଁ ପଞ୍ଚବଟୀ ଆଡୁ ଚପଲର ଚଟ୍ ଚଟ୍ ଶବ୍ଦ ଶୁଣିବାକୁ ପାଇଲି ଏବଂ ଅବିଳମ୍ବେ ଠାକୁର ଆସି ସମ୍ମୁଖରେ ଦଣ୍ଡାୟମାନ ହେଲେ । ମୋତେ ଦେଖି କହିଲେ, 'କି ରେ, ତୁ ଏଠାରେ କାହିଁକି ଠିଆ ହୋଇଛୁ ?' ତାଙ୍କଠାରେ ମିଥ୍ୟା ସନ୍ଦେହ କରିଛି ବୋଲି ଲଜ୍ଜା ଓ ଭୟରେ ସଙ୍କୁଚିତ ହୋଇ ଅଧୋବଦନରେ ଠିଆ ହୋଇ ରହିଲି, ତାଙ୍କ କଥାର କୌଣସି ଉତ୍ତର ଦେଇପାରିଲି ନାହିଁ । ଠାକୁର ମୋର ମୁହଁ ଦେଖି ସବୁକଥା ବୁଝିନେଲେ ଏବଂ ଅପରାଧ ଗ୍ରହଣ ନ କରି ଆଶ୍ୱାସ ପ୍ରଦାନପୂର୍ବକ କହିଲେ, 'ବେଶ୍, ବେଶ୍, ସାଧୁଙ୍କୁ ଦିନରେ ଦେଖିବୁ, ରାତିରେ ଦେଖିବୁ, ତେବେ ବିଶ୍ୱାସ କରିବୁ !' ଏକଥା କହି ଠାକୁର ମୋତେ ଅନୁସରଣ କରିବାକୁ କହି ନିଜ ଘର ଆଡ଼କୁ ଚାଲିଲେ । ସନ୍ଦିଗ୍ଧ ସ୍ୱଭାବର ପ୍ରେରଣାରେ କି ଭୟାନକ ଅପରାଧ କରିବସିଲି, ଏକଥା ଭାବି ସେରାତିରେ ମୋର ଆଉ ନିଦ୍ରା ହେଲା ନାହିଁ ।''

### ଯୋଗୀନ୍ଦ୍ରଙ୍କର ଗୁରୁପଦରେ ଆତ୍ମସମର୍ପଣ :

ଗୁରୁପଦରେ ସର୍ବତୋଭାବରେ ଆତ୍ମୋତ୍ସର୍ଗ କରି ପ୍ରଥମେ ତାଙ୍କର ଏବଂ ତାଙ୍କର ଅନ୍ତର୍ଦ୍ଧାନ ପରେ ଶ୍ରୀଶ୍ରୀମାତା ଠାକୁରାଣୀଙ୍କ ସେବାରେ ପ୍ରାଣପାତ କରି ସ୍ୱାମୀ ଯୋଗାନନ୍ଦ ପରଜୀବନରେ ପୂର୍ବୋକ୍ତ ଅପରାଧର ସମ୍ୟକ ପ୍ରାୟଶ୍ଚିତ୍ତ କରିଥିଲେ । ତାଙ୍କ ସଦୃଶ ତୀବ୍ର–ବୈରାଗ୍ୟସମ୍ପନ୍ନ, ଜ୍ଞାନ ଓ ଭକ୍ତିର ସମଭାବରେ ଅଧିକାରୀ, ସମାଧିମାନ ଯୋଗୀ ପୁରୁଷ ଶ୍ରୀଶ୍ରୀରାମକୃଷ୍ଣ–ସନ୍ନ୍ୟାସୀସଂଘରେ ବିରଳ ଦେଖିବାକୁ ମିଳନ୍ତି । ୧୮୯୯ ମସିହାର ପ୍ରାରମ୍ଭରେ ସେ ଶରୀର ତ୍ୟାଗକରି ପରମପଦରେ ମିଳିତ ହୋଇଥିଲେ ।

### ନରେନ୍ଦ୍ରଙ୍କର କାର୍ଯ୍ୟ ଲକ୍ଷ୍ୟକରି ଠାକୁର ତାଙ୍କ ସମ୍ବନ୍ଧରେ ଯେପରି ଧାରଣା କରିଥିଲେ :

ଦକ୍ଷିଣେଶ୍ୱର ଆଗମନ ପରଠାରୁ ଠାକୁର ଯେ ନରେନ୍ଦ୍ରନାଥଙ୍କର ପ୍ରତ୍ୟେକ କାର୍ଯ୍ୟ ତନ୍ନ ତନ୍ନ କରି ପ୍ରତିଦିନ ଲକ୍ଷ୍ୟ କରୁଥିଲେ ସେକଥା ଆମେ ଏହାପୂର୍ବରୁ

ହିଁ ଉଲ୍ଲେଖ କରିଅଛୁ । ତାହା ଫଳରେ ସେ ବୁଝିଥିଲେ, ଧର୍ମାନୁରାଗ, ସାହସ, ସଂଯମ, ବୀର୍ଯ୍ୟ ଓ ମହଦୁଦ୍ଦେଶ୍ୟରେ ଆତ୍ମୋତ୍ସର୍ଗ କରିବା ପ୍ରଭୃତି ସଦ୍‌ଗୁଣଗୁଡ଼ିକ ନରେନ୍ଦ୍ରଙ୍କର ହୃଦୟରେ ସ୍ୱଭାବତଃ ପ୍ରଦୀପ୍ତ ରହିଛି । ବୁଝିଥିଲେ, ଶୁଭ ସଂସ୍କାରନିଚୟ ତାଙ୍କ ହୃଦୟରେ ଏତେ ଅଧିକ ବିଦ୍ୟମାନ ରହିଅଛି ଯେ, ପ୍ରତିକୂଳ ଅବସ୍ଥାରେ ପଡ଼ି ବିଶେଷ ରୂପେ ପ୍ରଲୁବ୍ଧ ହେଲେ ମଧ୍ୟ ଇତରସାଧାରଣଙ୍କ ପରି ହୀନ କାର୍ଯ୍ୟର ଅନୁଷ୍ଠାନ ତାଙ୍କ ଦ୍ୱାରା କଦାପି ସମ୍ଭବପର ହେବ ନାହିଁ । ପୁଣି, ସତ୍ୟନିଷ୍ଠା— ନରେନ୍ଦ୍ରଙ୍କର କଠୋର ସତ୍ୟପାଳନ ଦେଖି ସେ ଯେ କେବଳ ତାଙ୍କର ସମସ୍ତ କଥାରେ ବିଶ୍ୱାସ କରୁଥିଲେ ତାହା ନୁହେଁ, କିନ୍ତୁ ତାଙ୍କ ପ୍ରାଣରେ ଦୃଢ଼ ଧାରଣା ହୋଇଥିଲା ଯେ, ଶୀଘ୍ର ତାଙ୍କର ଏପରି ଅବସ୍ଥା ଉପସ୍ଥିତ ହେବ ଯେତେବେଳେ ସତ୍ୟ ବ୍ୟତୀତ ମିଥ୍ୟା ବାକ୍ୟ ପ୍ରମାଦବଶତଃ ମଧ୍ୟ ତାଙ୍କ ମୁହଁରୁ ନିର୍ଗତ ହେବ ନାହିଁ—ସେତେବେଳେ ତାଙ୍କ ମନରେ ଉଠୁଥିବା ସମସ୍ତ ସଂକଳ୍ପ ସର୍ବଦା ସତ୍ୟରେ ପରିଣତ ହେବ । ସେଥିପାଇଁ ସେ ତାଙ୍କୁ ଏବିଷୟରେ ସର୍ବଦା ଉତ୍ସାହ ପ୍ରଦାନପୂର୍ବକ କହୁଥିଲେ, ‘‘ଯିଏ କାୟମନୋବାକ୍ୟରେ ସତ୍ୟକୁ ଜାବୁଡ଼ିଧରି ଥାଏ, ସେ ସତ୍ୟସ୍ୱରୂପ ଈଶ୍ୱରଙ୍କ ଦର୍ଶନଲାଭରେ ଧନ୍ୟ ହୁଏ,’’—‘‘ବାରବର୍ଷ କାୟମନୋବାକ୍ୟରେ ସତ୍ୟପାଳନ କଲେ ମାନବ ସତ୍ୟ ସଂକଳ୍ପ ହୁଏ ।’’

**ରହସ୍ୟଜନକ ଘଟଣା—ଚେମିଣୀକୁ ଚାତକ ନିର୍ଣ୍ଣୟ :**

ସତ୍ୟନିଷ୍ଠା ପାଇଁ ନରେନ୍ଦ୍ରଙ୍କ ଉପରେ ଠାକୁରଙ୍କ ଦୃଢ଼ ବିଶ୍ୱାସ ସମ୍ବନ୍ଧରେ ଗୋଟିଏ ରହସ୍ୟଜନକ ଘଟଣା ଆମମାନଙ୍କ ମନରେ ଉଦୟ ହେଉଅଛି । ଦିନେ କଥାପ୍ରସଙ୍ଗରେ ଠାକୁର ଭକ୍ତର ସ୍ୱଭାବ ଚାତକ ପକ୍ଷୀ ସଦୃଶ ହୋଇଥାଏ ବୋଲି ବୁଝାଇ ଦେଉଥିଲେ, ‘‘ଚାତକ ଯେପରି ନିଜର ପିପାସା ମେଣ୍ଟାଇବାକୁ ସର୍ବଦା ମେଘ ଆଡ଼କୁ ଅନାଇ ରହିଥାଏ ଏବଂ ତାହା ଉପରେ ସର୍ବତୋଭାବରେ ନିର୍ଭର କରିଥାଏ, ସେହିପରି ଭକ୍ତ ମଧ୍ୟ ନିଜର ପ୍ରାଣର ପିପାସା ଓ ସର୍ବପ୍ରକାର ଅଭାବ ମେଣ୍ଟାଇବା ନିମିତ୍ତ ଏକମାତ୍ର ଈଶ୍ୱରଙ୍କ ଉପରେ ନିର୍ଭର କରିଥାଏ’’—ଇତ୍ୟାଦି । ନରେନ୍ଦ୍ରନାଥ ସେତେବେଳେ ସେଠାରେ ଉପବିଷ୍ଟ ଥିଲେ । ସେ ହଠାତ୍ କହିଉଠିଲେ, ‘‘ମହାଶୟ, ଚାତକ ବୃଷ୍ଟିର ଜଳ ବ୍ୟତୀତ ଅନ୍ୟ କିଛି ପାନ କରେ ନାହିଁ—ଏପରି ପ୍ରସିଦ୍ଧ ଥିଲେ ମଧ୍ୟ ଏହିକଥା ସତ୍ୟ ନୁହେଁ, ଅନ୍ୟ ପକ୍ଷୀମାନଙ୍କ ସଦୃଶ ନଦୀ ପ୍ରଭୃତି ଜଳାଶୟରେ ମଧ୍ୟ ପିପାସା ମେଣ୍ଟାଇଥାଏ । ମୁଁ ଚାତକ ପକ୍ଷୀକୁ ସେହିପରି ଜଳପାନ କରିବା ଦେଖିଅଛି ।’’ ଠାକୁର କହିଲେ, ‘‘ସେ କ’ଣ ରେ—ଚାତକ ଅନ୍ୟ ପକ୍ଷୀ ପରି ଜଳପାନ କରେ ? ତେବେ ତ ମୋର ଏତେ ଦିନର ଧାରଣା ମିଥ୍ୟା ହେଲା । ତୁ ଯେତେବେଳେ ଦେଖିଛୁ ସେତେବେଳେ ତ’ ଏବିଷୟରେ ଆଉ ସନ୍ଦେହ କରିପାରିବି ନାହିଁ ।’’ ବାଳକ ସଦୃଶ ସ୍ୱଭାବସମ୍ପନ୍ନ ଠାକୁର ଏପରି କହି

ନିଶ୍ଚିନ୍ତ ରହିଲେ ନାହିଁ, ଭାବିବାକୁ ଲାଗିଲେ — ଏହି ଧାରଣା ଯେପରି ଭ୍ରମ ବୋଲି ପ୍ରମାଣିତ ହେଲା ତାଙ୍କର ଅନ୍ୟ ଧାରଣା ସବୁ ମଧ୍ୟ ତ ସେପରି ହୋଇପାରେ । ଏପରି ଭାବି ସେ ଅତ୍ୟନ୍ତ ବିଷଣ୍ଣ ହେଲେ । ଏହାର ଅଳ୍ପ ଦିନପରେ ନରେନ୍ଦ୍ର ଦିନେ ହଠାତ୍ ଠାକୁରଙ୍କୁ ଡାକି କହିଲେ, ‘‘ଏହି ଦେଖନ୍ତୁ ମହାଶୟ, ଚାତକ ଗଙ୍ଗାର ଜଳ ପାନ କରୁଅଛି ।’’ ଠାକୁର ବ୍ୟସ୍ତ ହୋଇ ଦେଖିବାକୁ ଆସି କହିଲେ, ‘‘କାହିଁ ରେ ?’’ ନରେନ୍ଦ୍ର ଦେଖାଇବାରୁ ସେ ଦେଖିଲେ ଗୋଟିଏ ଚେମିଣୀ ଜଳପାନ କରୁଛି ଏବଂ ହସି ହସି କହିଲେ, ‘‘ଏଇଟା ଚେମିଣୀ ରେ ! ଓରେ ଶଳା, ତୁ ଚେମିଣୀକୁ ଚାତକଜ୍ଞାନ କରି ମୋତେ ଏତେ ଚିନ୍ତା କରାଇଲୁ ନା ! ତୋର ସବୁ କଥା ଆଉ ବିଶ୍ୱାସ କରିବି ନାହିଁ ।’’

### ନରେନ୍ଦ୍ରଙ୍କର ସଂଯମ :

ସମ୍ମାନ, ଶିଷ୍ଟାଚାର, ସୌନ୍ଦର୍ଯ୍ୟାନୁଭବ ପ୍ରଭୃତି ଭାବସମୂହର ପ୍ରେରଣାରେ ଯେତେଦୂର କୋମଳ ହେବା ସମ୍ଭବପର, ରମଣୀ ସମ୍ମୁଖରେ ସାଧାରଣ ମାନବର ଅନ୍ତର ଅନେକ ସମୟରେ ତା ଅପେକ୍ଷା ଅଧିକ ମୃଦୁଭାବ ଅବଲମ୍ବନ କରିଥାଏ । ହୃଦୟର ସୁପ୍ରଚ୍ଛନ୍ନ ସଂସ୍କାରବିଶେଷ ତାହାକୁ ଏପରି କରାଇଥାଏ — ଏକଥା ଶାସ୍ତ୍ର-ସମ୍ମତ । ନରେନ୍ଦ୍ରନାଥଙ୍କ ହୃଦୟରେ ଏପରି ସଂସ୍କାର ଚିରକାଳ ସ୍ୱଳ୍ପ ପରିଲକ୍ଷିତ ହେଉଥିଲା ! ତାହା ଲକ୍ଷ୍ୟ କରି ଠାକୁରଙ୍କର ମନରେ ଦୃଢ଼ ଧାରଣା ହୋଇଥିଲା ଯେ, ନରେନ୍ଦ୍ର ରୂପଜ ମୋହରେ ଆତ୍ମହରା ହୋଇ ସଂଯମ ପଥରୁ କେବେ ହେଲେ ଭ୍ରଷ୍ଟ ହେବେ ନାହିଁ । ଘନ ଘନ ଭାବସମାଧି ହେବାରୁ ଆମମାନଙ୍କ ନିକଟରେ ଥରେ ଉଚ୍ଚସମ୍ମାନପ୍ରାପ୍ତ ଜନୈକଙ୍କ[୧] ସହିତ ନରେନ୍ଦ୍ରନାଥଙ୍କର ପୂର୍ବୋକ୍ତ ବିଷୟରେ ତୁଳନା କରି ଠାକୁର ଦିନେ କହିଥିଲେ, ‘‘ରମଣୀମାନଙ୍କର ଆଦରଯତ୍ନରେ ସେହି ବ୍ୟକ୍ତି ଯେପରି ଆତ୍ମହରା ହୋଇ ଗଡ଼ିପଡ଼େ, ନରେନ୍ଦ୍ର କେବେହେଲେ ସେପରି ହୁଏ ନାହିଁ; ବିଶେଷ ଭାବରେ ଲକ୍ଷ୍ୟ କରି ଦେଖିଛି, ସେପରି ସ୍ଥଳରେ ସେ ମୁହଁରେ କିଛି ନ କହିଲେ ମଧ୍ୟ ତାର ଭାବ ଦେଖି ମନେ ହୁଏ ସେ ଯେପରି ବିରକ୍ତ ହୋଇ ବେକ ବଙ୍କାଇ କହୁଛି, ‘ଏମାନେ ପୁଣି ଏଠାରେ କାହିଁକି ?’

### ଶାରିରୀକ ଲକ୍ଷଣ ଦେଖି ନରେନ୍ଦ୍ରଙ୍କର ଅନ୍ତରର ଭକ୍ତିର ପରିମାଣ ନିର୍ଣ୍ଣୟ :

ଜ୍ଞାନର ପ୍ରକାଶ ଏବଂ ପୁରୁଷୋଚିତ ଭାବସମୂହ ପ୍ରବଳ ଥିଲେ ମଧ୍ୟ ନରେନ୍ଦ୍ରନାଥଙ୍କ ଭିତରେ କୋମଳତା ଓ ଭକ୍ତିଭାବର ସ୍ୱଳ୍ପତା ନ ଥିଲା, ଠାକୁର ଏକଥା ଆମକୁ ଅନେକ ସମୟରେ କହିଛନ୍ତି । ସାମାନ୍ୟ ସାମାନ୍ୟ ଆଚରଣରେ

---

୧. ନୃତ୍ୟଗୋପାଳ—ଇଏ ପରବର୍ତ୍ତୀ ଜୀବନରେ ଜ୍ଞାନାନନ୍ଦ ସ୍ୱାମୀ ନାମ ଗ୍ରହଣ କରିଥିଲେ ।

ପ୍ରକାଶିତ କେବଳ ତାଙ୍କର ମନର ସବୁ ଭାବ ଲକ୍ଷ୍ୟ କରି ସେ ଯେ ଉକ୍ତ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ତାହା ନୁହେଁ, କିନ୍ତୁ ତାଙ୍କର ଶାରିରୀକ ଲକ୍ଷଣସମୂହ ଦେଖି ମଧ୍ୟ ସେ ସେହି ବିଷୟ ସ୍ଥିର କରିଥିଲେ । ଆମମାନଙ୍କର ସ୍ମରଣ ଅଛି, ଦିନେ ନରେନ୍ଦ୍ରନାଥଙ୍କର ମୁଖଶ୍ରୀକୁ ଦେଖୁ ଦେଖୁ ସେ କହିଥିଲେ, ''ଏପରି ଚକ୍ଷୁ କ'ଣ କେବେ ଶୁଷ୍କ ଜ୍ଞାନୀର ହୋଇପାରେ ? ଜ୍ଞାନ ସହିତ ରମଣୀସୁଲଭ ଭକ୍ତିର ଭାବ ତୋ ଭିତରେ ବିଲକ୍ଷଣ ରହିଛି । କେବଳ ପୁରୁଷୋଚିତ ଭାବସମୂହ ଯାହା ଭିତରେ ଥାଏ ତାର ସ୍ତନରେ ଭୁଣ୍ଡିର ଚାରିପାଖରେ କଳାବର୍ଣ୍ଣ ନ ଥାଏ —ମହାବୀର ଅର୍ଜ୍ଜୁନଙ୍କର ଏପରି ଥିଲା ।''

### ଠାକୁରଙ୍କର ଉଦାସୀନତାରେ ନରେନ୍ଦ୍ରଙ୍କର ଆଚରଣ :

ପୂର୍ବଲିଖିତ ଚାରିପ୍ରକାର ସାଧାରଣ ଉପାୟ ବ୍ୟତୀତ ଆମମାନଙ୍କ ଜ୍ଞାତ ଓ ଅଜ୍ଞାତ ଅନ୍ୟ ନାନାପ୍ରକାରରେ ଠାକୁର ନରେନ୍ଦ୍ରନାଥଙ୍କୁ ପରୀକ୍ଷା କରିଥିଲେ । ସେଥିମଧ୍ୟରୁ ପ୍ରଧାନ ଗୋଟିଏ-ଦୁଇଟି କଥା ଆମେ ପାଠକଙ୍କୁ ଏହାପରେ କହିବୁ । ଆମେ ଏହାପୂର୍ବରୁ କହିଛୁ, ନରେନ୍ଦ୍ରନାଥ ଦକ୍ଷିଣେଶ୍ୱର ଆସିଲେ ଠାକୁର ତାଙ୍କୁ ନେଇ ହିଁ ବ୍ୟସ୍ତ ହେଉଥିଲେ । ତାଙ୍କୁ ଦୂରରୁ ଦେଖିବା ମାତ୍ରେ ଠାକୁରଙ୍କର ସମ୍ପୂର୍ଣ୍ଣ ଅନ୍ତର ଯେପରି ପ୍ରବଳବେଗରେ ଶରୀର ମଧ୍ୟରୁ ନିର୍ଗତ ହୋଇ ତାଙ୍କୁ ପ୍ରେମାଲିଙ୍ଗନରେ ଆବଦ୍ଧ କରୁଥିଲା ! ''ଏଇ ନ—,ନ—'' କହୁ କହୁ ଆମେ ଠାକୁରଙ୍କୁ କେତେଦିନ ସେହିପରି ସମାଧିସ୍ଥ ହୋଇପଡ଼ିବା ଦେଖିଅଛୁ ତାହା କହିବାର ନୁହେଁ । ସେପରି ହେଲେ ମଧ୍ୟ ଦକ୍ଷିଣେଶ୍ୱରରେ କିଛିକାଳ ଯିବା ଆସିବା କରିବା ପରେ ଏପରି ଗୋଟିଏ ଦିନ ଆସିଥିଲା ଯେଉଁଦିନ ନରେନ୍ଦ୍ରନାଥ ଠାକୁରଙ୍କ ନିକଟକୁ ଆସିଲେ ସେ ତାଙ୍କ ସହିତ ସର୍ବପ୍ରକାରରେ ଉଦାସୀନଙ୍କ ପରି ଆଚରଣ ଆରମ୍ଭ କରିଥିଲେ । ନରେନ୍ଦ୍ର ଆସି ଠାକୁରଙ୍କୁ ପ୍ରଣାମ କଲେ, ସମ୍ମୁଖରେ ଉପବିଷ୍ଟ ହୋଇ କିଛି ସମୟ ଅପେକ୍ଷା କଲେ—ଠାକୁର କିନ୍ତୁ ଆଦରଯତ୍ନ କରିବା ଦୂରରେ ଥାଉ ଥରେ କୁଶଳପ୍ରଶ୍ନ ପର୍ଯ୍ୟନ୍ତ ନ ପଚାରି ସମ୍ପୂର୍ଣ୍ଣ ଅପରିଚିତସଦୃଶ ତାଙ୍କ ଆଡ଼େ ଥରେ ଦୃଷ୍ଟିପାତପୂର୍ବକ ଚୁପ୍‌କରି ବସିରହିଲେ । ନରେନ୍ଦ୍ର ଭାବିଲେ, ଠାକୁର ବୋଧହୁଏ ଭାବାବିଷ୍ଟ ହୋଇଅଛନ୍ତି । ଅଗତ୍ୟା କିଛି ସମୟ ପରେ ଘରୁ ବାହାରକୁ ଆସି ହାଜରା ମହାଶୟଙ୍କ ସହିତ କଥାବାର୍ତ୍ତାରେ ଏବଂ ତମାଖୁ ସେବନରେ ନିଯୁକ୍ତ ରହିଲେ । ଠାକୁର ଅନ୍ୟମାନଙ୍କ ସହିତ କଥା ହେଉଥିବାର ଶୁଣି ନରେନ୍ଦ୍ର ପୁନରାୟ ତାଙ୍କ ନିକଟରେ ଉପସ୍ଥିତ ହେଲେ, ସେତେବେଳେ ମଧ୍ୟ ଠାକୁର ତାଙ୍କୁ କିଛି ନ କହି ଅନ୍ୟ ଦିଗକୁ ମୁହଁ ବୁଲାଇ ଶଯ୍ୟାରେ ଶୟନ କଲେ । ଏହିପରି ସମସ୍ତ ଦିନ ଅତିବାହିତ ହୋଇ ସନ୍ଧ୍ୟା ଉପସ୍ଥିତ ହେଲା ପରେ ମଧ୍ୟ ଠାକୁରଙ୍କର ଭାବାନ୍ତର ନ ଦେଖି ନରେନ୍ଦ୍ର ତାଙ୍କୁ ପ୍ରଣାମ କରି କଲିକତା ଫେରିଗଲେ ।

ପୁଣି ଗୋଟିଏ ସପ୍ତାହ ନ ପୁରୁଣୁ ନରେନ୍ଦ୍ରନାଥ ପୁନର୍ବାର ଦକ୍ଷିଣେଶ୍ୱର ଆଗମନପୂର୍ବକ ଠାକୁରଙ୍କୁ ସେହିପରି ଅବସ୍ଥାରେ ଦେଖିଲେ । ସେଦିନ ମଧ୍ୟ ହାଜରା ମହାଶୟ ଓ ଅନ୍ୟାନ୍ୟ ବ୍ୟକ୍ତିଙ୍କ ସହିତ ନାନାପ୍ରକାର ଆଳାପରେ ସମସ୍ତ ଦିନ ଅତିବାହିତ କରି ସନ୍ଧ୍ୟାପୂର୍ବରୁ ସେ ଘରକୁ ଫେରିଗଲେ । ଏହିପରି ତୃତୀୟ ଓ ଚତୁର୍ଥ ଦିବସ ଦକ୍ଷିଣେଶ୍ୱରରେ ଉପସ୍ଥିତ ହୋଇ ମଧ୍ୟ ନରେନ୍ଦ୍ର ଠାକୁରଙ୍କର କିଛି ମାତ୍ର ଭାବାନ୍ତର ଦେଖିପାରିଲେ ନାହିଁ । କିନ୍ତୁ ସେଥିରେ ମଧ୍ୟ ସେ ଆଦୌ କ୍ଷୁବ୍ଧ ବା ବିଚଳିତ ନ ହୋଇ ପୂର୍ବପରି ସମଭାବରେ ଠାକୁରଙ୍କ ନିକଟକୁ ଯିବା ଆସିବା କରିବାକୁ ଲାଗିଲେ । ନରେନ୍ଦ୍ର ଘରେ ଥିବା ସମୟରେ ଠାକୁର ତାଙ୍କ କୁଶଳ ସମ୍ବାଦ ଆଦି ଆଣିବାକୁ ବେଳେ ବେଳେ କାହାକୁ ପଠାଇ ଥାଆନ୍ତି, ମାତ୍ର ନିକଟକୁ ଆସିଲେ ହିଁ ତାଙ୍କ ସହିତ ଏପରି ବ୍ୟବହାର କିଛିକାଳ ପର୍ଯ୍ୟନ୍ତ କରିଥିଲେ । ଏକମାସରୁ ଅଧିକ କାଳ ଏପରି ଗତ ହେଲା ପରେ ଠାକୁର ଯେତେବେଳେ ଦେଖିଲେ ଯେ ନରେନ୍ଦ୍ରନାଥ ଦକ୍ଷିଣେଶ୍ୱରକୁ ଆସିବାରୁ ବିରତ ହେଲେ ନାହିଁ, ସେତେବେଳେ ଦିନେ ତାଙ୍କୁ ପାଖକୁ ଡାକି ପଚାରିଲେ, ''ଆଚ୍ଛା, ମୁଁ ତ ତୋ ସହିତ ପଦେ କଥା କହୁ ନାହିଁ, ତେବେ ବି ତୁ ଏଠାକୁ କାହିଁକି ଆସୁଛୁ କହିଲୁ ଦେଖି ?'' ନରେନ୍ଦ୍ର କହିଲେ, ''ମୁଁ କ'ଣ ଆପଣଙ୍କ କଥା ଶୁଣିବାକୁ ଏଠାକୁ ଆସେ ? ଆପଣଙ୍କୁ ଭଲ ପାଏ, ଦେଖିବାକୁ ଇଚ୍ଛା ହୁଏ ତେଣୁ ଆସିଥାଏ ।'' ଠାକୁର ଏହି କଥାରେ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ, ''ମୁଁ ତୋତେ ପରୀକ୍ଷା କରି ଦେଖୁଥିଲି — ଆଦରଯତ୍ନ ନ ପାଇଲେ ତୁ ପଳାଉଛୁ କି ନାହିଁ; ତୋ ପରି ଆଧାର ହିଁ ଏତେଟା (ଅବଜ୍ଞା ଓ ଉଦାସୀନ ଭାବ) ସହ୍ୟ କରିପାରେ — ଅନ୍ୟ କିଏ ହୋଇଥିଲେ କେବେଠାରୁ ପଳାଇ ଯାଇଥାଆନ୍ତା, ଏସ୍ଥାନ ଆଉ ମାଡ଼ି ନ ଥାନ୍ତା ।''

### ଈଶ୍ୱର ଦର୍ଶନ ଆଗ୍ରହରେ ନରେନ୍ଦ୍ରଙ୍କର ଅଣିମାଦି ବିଭୂତି ପରିତ୍ୟାଗ :

ଆଉ ଗୋଟିଏ ଦୃଷ୍ଟାନ୍ତର ଉଲ୍ଲେଖ କରି ଆମେ ବର୍ତ୍ତମାନ ପ୍ରସଙ୍ଗର ଉପସଂହାର କରିବୁ । ଈଶ୍ୱରଙ୍କର ପ୍ରତ୍ୟକ୍ଷ ଦର୍ଶନଲାଭର ଆଗ୍ରହ ନରେନ୍ଦ୍ରନାଥଙ୍କର ଅନ୍ତରରେ କେତେଦୂର ପ୍ରବଳ ଥିଲା, ତାହା ଏହା ସହାୟରେ ସବିଶେଷ ହୃଦୟଙ୍ଗମ ହେବ । ଥରେ ଠାକୁର ନରେନ୍ଦ୍ରନାଥଙ୍କୁ ପଞ୍ଚବଟୀତଳକୁ ଡାକି କହିଥିଲେ, ''ଦେଖ୍, ତପସ୍ୟା ପ୍ରଭାବରେ ମୋଠାରେ ଅଣିମାଦି ବିଭୂତିସମୂହ ଅନେକ ଦିନ ହେଲା ଉପସ୍ଥିତ ହୋଇଅଛି । କିନ୍ତୁ ମୋ'ପରି ବ୍ୟକ୍ତିର, ଯାହାର ପିନ୍ଧାଲୁଗା ଠିକ୍ ରହେ ନାହିଁ, ତା'ର ଏସମସ୍ତ ଯଥାଯଥ ବ୍ୟବହାର କରିବାର ଅବସର କେଉଁଠି ? ତେଣୁ ଭାବୁଛି, ମା'କୁ କହି ତୋତେ ଏସମସ୍ତ ପ୍ରଦାନ କରିବି; କାରଣ, ମା' ଜଣାଇ ଦେଇଛନ୍ତି, ତୋତେ ତାଙ୍କର ଅନେକ କାମ କରିବାକୁ ପଡ଼ିବ । ଏସମସ୍ତ

ଶକ୍ତି ତୋ ଭିତରେ ସଞ୍ଚାରିତ ହେଲେ କାର୍ଯ୍ୟ ସମୟରେ ଏସବୁ ବ୍ୟବହାରରେ ଲଗାଇପାରିବୁ—କ'ଣ କହୁଛୁ ?'' ଠାକୁରଙ୍କର ପୁଣ୍ୟଦର୍ଶନ ଲାଭ କରିବା ଦିନଠାରୁ ନରେନ୍ଦ୍ର ତାଙ୍କଠାରେ ଦୈବୀଶକ୍ତିର ଅଶେଷ ପ୍ରକାଶ ଦେଖି ପାରିଥିଲେ । ସୁତରାଂ ତାଙ୍କର ଏହି କଥାରେ ଅବିଶ୍ୱାସ କରିବାର ନରେନ୍ଦ୍ରଙ୍କର କୌଣସି କାରଣ ନ ଥିଲା । ଅବିଶ୍ୱାସ ନ କଲେ ମଧ୍ୟ ତାଙ୍କ ହୃଦୟର ସ୍ୱାଭାବିକ ଈଶ୍ୱର ଅନୁରାଗ ତାଙ୍କୁ ଏସମସ୍ତ ବିଭୂତି ନିର୍ବିଚାରରେ ଗ୍ରହଣ କରିବାକୁ ପରାମର୍ଶ ଦେଲା ନାହିଁ । ସେ ଚିନ୍ତିତ ହୋଇ ପଚାରିଲେ, ''ମହାଶୟ, ଏସମସ୍ତ ଦ୍ୱାରା ମୋର ଈଶ୍ୱରଲାଭ ବିଷୟରେ ସହାୟତା ହେବ କି ?'' ଠାକୁର କହିଲେ, ''ସେ ବିଷୟରେ ସହାୟତା ନ ହେଲେ ମଧ୍ୟ ଈଶ୍ୱର ଲାଭ କରି ଯେତେବେଳେ ତାଙ୍କର କାର୍ଯ୍ୟ କରିବାକୁ ପ୍ରବୃତ୍ତ ହେବୁ, ସେତେବେଳେ ଏହା ବିଶେଷ ସହାୟତା କରିପାରିବ ।'' ନରେନ୍ଦ୍ର ଏକଥା ଶୁଣି କହିଲେ, ''ମହାଶୟ, ମୋର ଏସମସ୍ତ ପ୍ରୟୋଜନ ନାହିଁ । ଆଗେ ଈଶ୍ୱରଲାଭ ହେଉ, ପରେ ଏସମସ୍ତ ଗ୍ରହଣ କରିବା ନ କରିବା ସମ୍ବନ୍ଧରେ ସ୍ଥିର କରାଯିବ । ବିଚିତ୍ର ବିଭୂତିସକଳ ଏବେ ଲାଭ କରି ଯଦି ଉଦ୍ଦେଶ୍ୟ ଭୁଲିଯାଏ ଏବଂ ସ୍ୱାର୍ଥପରତାର ପ୍ରେରଣାରେ ଏଗୁଡ଼ିକୁ ଅଯଥା ବ୍ୟବହାର କରିବସେ, ତା' ହେଲେ ସର୍ବନାଶ ହେବ ଯେ !'' ଠାକୁର ନରେନ୍ଦ୍ରଙ୍କୁ ଅଣିମାଦି ବିଭୂତିସକଳ ସତକୁ ସତ ପ୍ରଦାନ କରିବାକୁ ଉଦ୍ୟତ ହୋଇଥିଲେ, ଅଥବା ତାଙ୍କର ଅନ୍ତର ପରୀକ୍ଷା କରିବା ନିମିତ୍ତ ଏକଥା କହିଥିଲେ, ତାହା ନିଶ୍ଚୟ କରି କହିବା ଆମମାନଙ୍କର ସାଧ୍ୟାତୀତ; କିନ୍ତୁ ନରେନ୍ଦ୍ର ସେସବୁ ଗ୍ରହଣ କରିବାକୁ ଅସମ୍ମତ ହେବାରୁ ଠାକୁର ଯେ ଅତ୍ୟନ୍ତ ପ୍ରସନ୍ନ ହୋଇଥିଲେ, ଏକଥା ଆମକୁ ଜଣାଅଛି ।

# ଅଷ୍ଟମ ଅଧ୍ୟାୟ—ପ୍ରଥମ ପାଦ

## ସଂସାରରେ ଓ ଠାକୁରଙ୍କ ନିକଟରେ ନରେନ୍ଦ୍ରନାଥଙ୍କର ଶିକ୍ଷା

### ନିଜକୁ ସ୍ତ୍ରୀଭାବର ଓ ନରେନ୍ଦ୍ରଙ୍କୁ ପୁରୁଷ ଭାବର ପ୍ରକାଶ ବୋଲି ଠାକୁରଙ୍କର କହିବାର ଅର୍ଥ :

ଠାକୁର ବେଳେ ବେଳେ ନରେନ୍ଦ୍ରଙ୍କ ସହିତ ନିଜ ସ୍ୱଭାବର ତୁଳନା କରି ଆମମାନଙ୍କୁ କହୁଥିଲେ, ''ଏହାର (ତାଙ୍କ ନିଜର) ଭିତରେ ଯିଏ ଅଛି ତା'ର ସ୍ତ୍ରୀଲୋକଙ୍କ ସଦୃଶ ଭାବ ଓ ନରେନ୍ଦ୍ର ଭିତରେ ଯିଏ ଅଛି ତାଙ୍କଠାରେ ପୁରୁଷୋଚିତ ଭାବର ପ୍ରକାଶ ରହିଅଛି ।'' କଥାଗୁଡ଼ିକ ସେ ଠିକ୍ କେଉଁ ଅର୍ଥରେ ପ୍ରୟୋଗ କରୁଥିଲେ ତାହା ନିର୍ଣ୍ଣୟ କରିବା ଦୁଷ୍କର । ତେବେ ଈଶ୍ୱର ବା ଚରମ ସତ୍ୟର ଅନୁସନ୍ଧାନରେ ସେମାନେ ଉଭୟ ଯେଉଁ ପଥରେ ଅଗ୍ରସର ହୋଇଥିଲେ କିମ୍ବା ଯେଉଁ ଉପାୟ ପ୍ରଧାନତଃ ଅବଲମ୍ବନ କରିଥିଲେ ତାହାର ଅନୁଶୀଳନରେ ପ୍ରବୃତ୍ତ ହେଲେ ପୂର୍ବୋକ୍ତ କଥାର ଏକ ଯୁକ୍ତିଯୁକ୍ତ ଅର୍ଥ ପ୍ରାପ୍ତ ହୋଇଥାଏ । କାରଣ, ଦେଖାଯାଏ, ଈଶ୍ୱରଲାଭ କରିବାକୁ ହେଲେ ଯେଉଁ ସମସ୍ତ ଉପାୟ ଅବଲମ୍ବନୀୟ ବୋଲି ଅଧ୍ୟାତ୍ମ ଶାସ୍ତ୍ରସମୂହ ନିର୍ଦ୍ଦେଶ କରିଛନ୍ତି, ଠାକୁର ସେହି ସକଳର ପ୍ରତ୍ୟେକଟି ଗୁରୁମୁଖରୁ ଶ୍ରବଣ ମାତ୍ରେ ସେଥିରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନପୂର୍ବକ ଅନୁଷ୍ଠାନରେ ପ୍ରବୃତ୍ତ ହୋଇଥିଲେ କିନ୍ତୁ ନରେନ୍ଦ୍ରନାଥଙ୍କର ଆଚରଣ ସେପରି ସ୍ଥଳରେ ସମ୍ପୂର୍ଣ୍ଣ ଭିନ୍ନ ଆକାର ଧାରଣ କରୁଥିଲା । ନରେନ୍ଦ୍ର ସେପରି ସ୍ଥଳରେ ଶାସ୍ତ୍ର ଏବଂ ଗୁରୁବାକ୍ୟରେ ଭ୍ରମ-ପ୍ରମାଦର ସମ୍ଭାବନା ଅଛି କି ନାହିଁ ସେବିଷୟ ନିର୍ଣ୍ଣୟ କରିବାକୁ ନିଜର ବୁଦ୍ଧିବୃତ୍ତିକୁ ପ୍ରଥମେ ନିଯୁକ୍ତ କରୁଥିଲେ ଏବଂ ଯୁକ୍ତିତର୍କ ଦ୍ୱାରା ଏଗୁଡ଼ିକର ପ୍ରତିଷ୍ଠା ସମ୍ଭବପର ବିବେଚନା କରିବା ପରେ ଏଗୁଡ଼ିକର ଅନୁଷ୍ଠାନ କରିବାକୁ ପ୍ରବୃତ୍ତ ହେଉଥିଲେ । ପୂର୍ବସଂସ୍କାରବଶରେ ଦୃଢ଼ ଆସ୍ତିକ୍ୟବୁଦ୍ଧିସମ୍ପନ୍ନ ହୋଇଥିଲେ ମଧ୍ୟ ନରେନ୍ଦ୍ରଙ୍କ ଭିତରେ ଗୋଟିଏ ଭାବ ଆଜୀବନ ଦେଖିବାକୁ ମିଳିଥିଲା ଯେ, ମନୁଷ୍ୟମାତ୍ରେ ହିଁ ନାନାପ୍ରକାର କୁସଂସ୍କାର ଓ ଭ୍ରମ ପ୍ରମାଦର ବଶବର୍ତ୍ତୀ, ଅତଏବ କାହାର କୌଣସି କଥା ନିର୍ବିଚାରରେ ଗ୍ରହଣ କରିବି କାହିଁକି ? ଏହାର ଫଳାଫଳ ଯାହା ହେଉ ନା କାହିଁକି ଏବଂ ଏହାର ଉତ୍ପତ୍ତି ଯେଉଁଠାରେ ଯେଉଁ ପ୍ରକାରର ହେଉ ନା କାହିଁକି, ବୁଦ୍ଧିବୃତ୍ତି ସହାୟରେ ବିଶ୍ୱାସଭକ୍ତିକୁ ଏପରି ସଂଯତ ରଖି ଆଧ୍ୟାତ୍ମିକ ରାଜ୍ୟରେ ଏବଂ ଅନ୍ୟ ସମସ୍ତ ବିଷୟରେ ଅଗ୍ରସର ହେବା ହିଁ ଯେ ବର୍ତ୍ତମାନ ସମୟର ମାନବସାଧାରଣଙ୍କ ନିକଟରେ ପୁରୁଷୋଚିତ ବୋଲି ବିବେଚିତ ହୁଏ, ଏକଥା କହିବା ଅନାବଶ୍ୟକ ।

## ନରେନ୍ଦ୍ରଙ୍କର ପାରିପାର୍ଶ୍ୱିକ ଅବସ୍ଥା–ଅନୁଗତ ଶିକ୍ଷା, ସ୍ୱାଧୀନ ଚିନ୍ତା, ସଂଶୟ ଏବଂ ଗୁରୁବାଦ ଅସ୍ୱୀକାର କରିବା :

ପାରିପାର୍ଶ୍ୱିକ ଅବସ୍ଥାସମୂହ ମାନବଜୀବନରେ ସର୍ବତ୍ର ସର୍ବକାଳରେ ବିଶେଷ ଅଧିକାର ବିସ୍ତାର କରି ବସିଥାଏ । କେବଳ ଅଧିକାରବିସ୍ତାର କାହିଁକି ? — ଏଗୁଡ଼ିକ ହିଁ ତାହାକୁ ଗନ୍ତବ୍ୟପଥରେ ସର୍ବଦା ନିୟମିତ କରିଥାଏ । ଅତଏବ ନରେନ୍ଦ୍ରଙ୍କ ଜୀବନରେ ଏସବୁର ପ୍ରଭାବ ଓ ପ୍ରେରଣା ପରିଲକ୍ଷିତ ହେବ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଠାକୁରଙ୍କ ନିକଟକୁ ଯିବା ପୂର୍ବରୁ ହିଁ ନରେନ୍ଦ୍ର ନିଜର ଅସାଧାରଣ ଧୀଶକ୍ତିପ୍ରଭାବରେ ଇଂରାଜୀ କାବ୍ୟ, ସାହିତ୍ୟ, ଇତିହାସ ଓ ନ୍ୟାୟରେ ସୁପ୍ରତିଷ୍ଠିତ ହୋଇ ପାଶ୍ଚାତ୍ୟଭାବରେ ବିଶେଷରୂପରେ ଭାବିତ ହୋଇଥିଲେ । ସ୍ୱାଧୀନ–ଚିନ୍ତା ସହାୟରେ ସମସ୍ତ ବିଷୟ ଅନୁସନ୍ଧାନରେ ପ୍ରବୃତ୍ତ ହେବା–ରୂପକ ପାଶ୍ଚାତ୍ୟର ମୂଳମନ୍ତ୍ର ଏହି ସମୟରେ ହିଁ ତାଙ୍କ ମନରେ ମଜ୍ଜାଗତ ହୋଇଯାଇଥିଲା । ସୁତରାଂ ଶାସ୍ତ୍ରବାକ୍ୟମାନଙ୍କରେ ସେ ଯେ ଏହି ସମୟରେ ବିଶେଷ ସନ୍ଦିହାନ ହେବେ ଓ ଅନେକ ସ୍ଥଳରେ ମିଥ୍ୟା ବୋଧ କରିବେ ଏବଂ ଅଭିଜ୍ଞ ଶିକ୍ଷକ ବ୍ୟତୀତ ଅନ୍ୟ କୌଣସି ଭାବରେ ମାନବବିଶେଷଙ୍କୁ ଗୁରୁ ବୋଲି ସ୍ୱୀକାର କରିବାକୁ ପରାଙ୍ମୁଖ ହେବେ, ଏହା ହିଁ ସ୍ୱାଭାବିକ ।

## ପିତାଙ୍କର ଜୀବନ ଏବଂ ସମାଜର ସେହି ପ୍ରକାର ଶିକ୍ଷାରେ ସହାୟତା :

ନିଜ ଅଭିଭାବକମାନଙ୍କର ଜୀବନାଦର୍ଶ ଏବଂ କଲିକତାର ତତ୍କାଳୀନ ସମାଜର ଅବସ୍ଥା ନରେନ୍ଦ୍ରନାଥଙ୍କୁ ପୂର୍ବୋକ୍ତ ଭାବ ପୋଷଣରେ ସହାୟତା କରିଥିଲା । ପିତାମହ ଆଜୀବନ ହିନ୍ଦୁଶାସ୍ତ୍ରରେ ଅଶେଷ ଆସ୍ଥାସମ୍ପନ୍ନ ରହି ସନ୍ନ୍ୟାସ ଗ୍ରହଣ କରିଥିଲେ ମଧ୍ୟ ନରେନ୍ଦ୍ରଙ୍କର ପିତା ପାଶ୍ଚାତ୍ୟ ଶିକ୍ଷା ଓ ସ୍ୱାଧୀନ ଚିନ୍ତା ଫଳରେ ଉକ୍ତ ବିଶ୍ୱାସ ହରାଇଥିଲେ । ପାରସ୍ୟ କବି ହାଫେଜ୍‌ଙ୍କର କବିତା ଏବଂ ବାଇବେଲ୍‌ରେ ଥିବା ଈଶାଙ୍କ ବାଣୀସମୂହ ତାଙ୍କ ନିକଟରେ ଆଧ୍ୟାତ୍ମିକ ଭାବର ଚୂଡ଼ାନ୍ତ ବୋଲି ପରିଗଣିତ ହୋଇଥିଲା । ସଂସ୍କୃତଭାଷାରେ ଅଜ୍ଞତାବଶତଃ ଗୀତାପ୍ରମୁଖ ହିନ୍ଦୁଶାସ୍ତ୍ରସମୂହ ଅଧ୍ୟୟନ କରି ନ ପାରିବାରୁ ହିଁ ଯେ ତାଙ୍କୁ ଆଧ୍ୟାତ୍ମିକ ଆନନ୍ଦ ନିମିତ୍ତ ସେହିସବୁ ଗ୍ରନ୍ଥର ଶରଣାପନ୍ନ ହେବାକୁ ପଡ଼ିଥିଲା ତାହା କହିବା ଅନାବଶ୍ୟକ । ଆମେ ଶୁଣିଛୁ, ନରେନ୍ଦ୍ରଙ୍କୁ ଧର୍ମାଲୋଚନାରେ ପ୍ରବୃତ୍ତ ଦେଖି ସେ ତାଙ୍କୁ ଖଣ୍ଡିଏ ବାଇବେଲ ଉପହାର ଦେଇ ଦିନେ କହିଥିଲେ, 'ଧର୍ମକର୍ମ ଯଦି କିଛି ଥାଏ ତାହା କେବଳ ଏଥିରେ ହିଁ ଅଛି ।' ହାଫେଜ୍‌ଙ୍କର କବିତାବଳୀ ଏବଂ ବାଇବେଲର ଏପରି ପ୍ରଶଂସା କଲେ ମଧ୍ୟ ତାଙ୍କ ଜୀବନ ଯେ ସେହି ସକଳ ଗ୍ରନ୍ଥୋକ୍ତ ଆଧ୍ୟାତ୍ମିକ ଭାବରେ ନିୟମିତ ଥିଲା, ତାହା ନୁହେଁ । ସେଗୁଡ଼ିକର ସହାୟତାରେ

କ୍ଷଣିକ ରସାନୁଭବ ବ୍ୟତୀତ ସେପରି କରିବାର ପ୍ରୟୋଜନୀୟତା ସେ କେବେ ଅନୁଭବ କରିଥିଲେ ବୋଲି ମନେ ହୁଏ ନାହିଁ । ଅର୍ଥ ଉପାର୍ଜ୍ଜନ କରି ସ୍ୱୟଂ ଭୋଗସୁଖରେ ରହିବେ ଏବଂ ଯଥାସମ୍ଭବ ଦାନ କରି ଦଶଜଣକୁ ସୁଖୀ କରିବେ — ଏହା ହିଁ ତାଙ୍କ ଜୀବନର ଚରମ ଉଦ୍ଦେଶ୍ୟ ଥିଲା । ଏଥିରୁ ଏବଂ ତାଙ୍କର ଦୈନନ୍ଦିନ ଜୀବନ ଆଲୋଚନାରୁ ବୁଝାଯାଏ, ଈଶ୍ୱର, ଆତ୍ମା, ପରକାଳ ପ୍ରଭୃତି ବିଷୟରେ ତାଙ୍କର ବିଶ୍ୱାସ କେତେଦୂର ଶିଥିଳ ଥିଲା । ବାସ୍ତବିକ୍ ପାଶ୍ଚାତ୍ୟର ଜଡ଼ବାଦ ଓ ଇହକାଳସର୍ବସ୍ୱତା ସେତେବେଳେ ନରେନ୍ଦ୍ରଙ୍କର ପିତାଙ୍କ ପରି ବ୍ୟକ୍ତିମାନଙ୍କଠାରେ ଆଧ୍ୟାତ୍ମିକ ବିଷୟଗୁଡ଼ିକରେ ପ୍ରଚଣ୍ଡ ସଂଶୟ ଏବଂ ଅନେକ ସମୟରେ ନାସ୍ତିକତା ଆନୟନପୂର୍ବକ ଆମମାନଙ୍କର ପ୍ରାଚୀନ ଋଷି ଓ ଶାସ୍ତ୍ରସମୂହ ନିକଟରେ ଦୁର୍ବଳତା ଏବଂ କୁସଂସ୍କାର ବ୍ୟତୀତ ଅନ୍ୟ କିଛି ଶିକ୍ଷଣୀୟ ନାହିଁ ଏହା ହିଁ ପ୍ରତିପନ୍ନ କରୁଥିଲା । ଏହାର ପ୍ରଭାବରେ ଧର୍ମବିଶ୍ୱାସ ଓ ନୈତିକ-ମେରୁଦଣ୍ଡବିହୀନ ହୋଇ ସେମାନେ ଅନ୍ତରରେ ଗୋଟିଏ ଏବଂ ବାହାରେ ଅନ୍ୟ ଏକ ଭାବ ପୋଷଣପୂର୍ବକ ଦିନକୁ ଦିନ ସ୍ୱାର୍ଥପର ଏବଂ କପଟାଚାରୀ ହୋଇଉଠିଥିଲେ । ମହାମନସ୍ୱୀ ରାଜା ରାମମୋହନ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ବ୍ରାହ୍ମସମାଜ ଦେଶବ୍ୟାପୀ ସେହି ସ୍ରୋତର ଗତି ସ୍ୱଳ୍ପକାଳ ଫେରାଇବାକୁ ଚେଷ୍ଟା କରି ପରିଣାମରେ ପାଶ୍ଚାତ୍ୟ ଭାବର ପ୍ରବଳ ପ୍ରଭାବରେ ଅନ୍ତର୍ବିବାଦ ଯୋଗୁଁ ଦୁଇ ଦଳରେ ବିଭକ୍ତ ଏବଂ କ୍ଷୀଣ ହୋଇପଡ଼ିଥିଲା ଏବଂ ସେହି ଦୁଇ ଦଳଭୁକ୍ତ ବ୍ୟକ୍ତିଙ୍କ ଭିତରେ ମଧ୍ୟ ପୂର୍ବୋକ୍ତ ସ୍ରୋତରେ ଭାସିଯିବାର ଲକ୍ଷଣ ସେତେବେଳେ କିଛି କିଛି ପ୍ରକାଶ ପାଉଥିଲା ।

### ପାଶ୍ଚାତ୍ୟ ନ୍ୟାୟ, ବିଜ୍ଞାନ ଓ ଦର୍ଶନ-ଶାସ୍ତ୍ରରେ ଅଭିଜ୍ଞତା ଲାଭ କରି ମଧ୍ୟ ନରେନ୍ଦ୍ରଙ୍କର ସତ୍ୟଲାଭ ହେଲା ନାହିଁ ବୋଲି ଅଶାନ୍ତି :

୧୮୮୧ ମସିହାରେ ଏଫ.ଏ. ପରୀକ୍ଷା ପରେ ଶ୍ରୀଯୁକ୍ତ ନରେନ୍ଦ୍ର ପାଶ୍ଚାତ୍ୟ ବିଜ୍ଞାନ ଓ ଦର୍ଶନ-ଶାସ୍ତ୍ର ସହିତ ବିଶେଷ ଭାବରେ ପରିଚିତ ହୋଇଥିଲେ । ମିଲ୍-ପ୍ରମୁଖ ପାଶ୍ଚାତ୍ୟ ନୈୟାୟିକମାନଙ୍କର ମତବାଦ ସେ ଏହାପୂର୍ବରୁ ଆୟତ୍ତ କରିଥିଲେ; ଏବେ—ଡେକାର୍ଟେଙ୍କର 'ଅହଂବାଦ', ହିଉମ୍ ଏବଂ ବେନଙ୍କର 'ନାସ୍ତିକତା', ସ୍ପିନୋଜାଙ୍କର 'ଅଦ୍ୱୈତଚିତ୍‌ବସ୍ତୁବାଦ', ଡାରଉଇନ୍‌ଙ୍କର 'ଅଭିବ୍ୟକ୍ତିବାଦ' ଓ କାଁମ୍‌ଟେ ଓ ସ୍ପେନ୍‌ସରଙ୍କର 'ଅଜ୍ଞେୟବାଦ' ଏବଂ ଆଦର୍ଶ ସମାଜର ଅଭିବ୍ୟକ୍ତି ପ୍ରଭୃତି ପାଶ୍ଚାତ୍ୟ ଦାର୍ଶନିକ ମତବାଦସମୂହ ଆୟତ୍ତ କରି ସତ୍ୟବସ୍ତୁ ନିର୍ଣ୍ଣୟ କରିବାର ପ୍ରବଳ ଉତ୍ସାହ ତାଙ୍କର ପ୍ରାଣରେ ଉପସ୍ଥିତ ହୋଇଥିଲା । ଜର୍ମାନ ଦାର୍ଶନିକମାନଙ୍କର ପ୍ରଶଂସା ଶ୍ରବଣ କରି ଦର୍ଶନ-ଇତିହାସ ଗ୍ରନ୍ଥଗୁଡ଼ିକ ସାହାଯ୍ୟରେ ସେ କାଣ୍ଟ, ଫିକ୍‌ଟେ, ହେଗେଲ୍, ସୋପେନ୍‌ହାୱାର ପ୍ରଭୃତିଙ୍କ ମତବାଦ ଯଥାସମ୍ଭବ ଜାଣିବା ପାଇଁ ଅଗ୍ରସର ହୋଇଥିଲେ । ପୁଣି ସ୍ନାୟୁ ଓ

ମସ୍ତିଷ୍କର ଗଠନ ଏବଂ କାର୍ଯ୍ୟପ୍ରଣାଳୀ ସହିତ ପରିଚିତ ହେବା ପାଇଁ ସେ ବନ୍ଧୁମାନଙ୍କ ସହିତ ବେଳେ ବେଳେ ମେଡିକାଲ କଲେଜକୁ ଯାଇ ଶାରୀରବିଜ୍ଞାନ ସମ୍ବନ୍ଧୀୟ ବକ୍ତୃତା ଶ୍ରବଣ ଓ ଗ୍ରନ୍ଥପାଠରେ ମନୋନିବେଶ କରିଥିଲେ । ଫଳରେ (୧୮୮୪) ମସିହାରେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପୂର୍ବରୁ ହିଁ ସେ ପାଶ୍ଚାତ୍ୟ-ଦର୍ଶନରେ ବିଶେଷ ଅଭିଜ୍ଞତା ଲାଭ କରିଥିଲେ । କିନ୍ତୁ ସେହି ଅଭିଜ୍ଞତାରୁ ନିରପେକ୍ଷ ସଦ୍‌ବସ୍ତୁ ଈଶ୍ୱରଙ୍କର ସାକ୍ଷାତ୍‌କାରଲାଭର ନିଶ୍ଚିତ ଉପାୟ ଜାଣିବା ଏବଂ ଶାନ୍ତିଲାଭ କରିବା ଦୂରରେ ଥାଉ, ସେ ଏହା ଅନୁଭବ କଲେ ଯେ, ମାନବର ମନ ଓ ବୁଦ୍ଧି ଏହି ତର୍କ ଜାଣିବାରେ ଅସମର୍ଥ ଯେ ତା'ର ନିଜ ମନ ଓ ବୁଦ୍ଧିର କାର୍ଯ୍ୟ କରିବାର ସୀମା ଅଛି ଏବଂ ସେହି ସୀମା ପରେ ଅବସ୍ଥିତ ସତ୍ୟ-ବସ୍ତୁକୁ ପ୍ରକାଶିତ କରିବାରେ ମଧ୍ୟ ମନ-ବୁଦ୍ଧି ଅସମର୍ଥ । ଫଳରେ ଏହି ବିଷୟ ସ୍ପଷ୍ଟ ପ୍ରତୀୟମାନ ହୋଇ ତାଙ୍କ ପ୍ରାଣରେ ଅଶାନ୍ତିର ସ୍ରୋତ ଅଧିକତର ବେଗରେ ପ୍ରବାହିତ କରାଇଥିଲା ।

### ନରେନ୍ଦ୍ରଙ୍କର ସନ୍ଦେହ—ପ୍ରାଚ୍ୟ ଅଥବା ପାଶ୍ଚାତ୍ୟ କେଉଁ ପ୍ରଥା ଅନୁସାରେ ତତ୍ତ୍ୱ ଅନୁସନ୍ଧାନରେ ଅଗ୍ରସର ହେବା କର୍ତ୍ତବ୍ୟ :

ପାଶ୍ଚାତ୍ୟ-ଦର୍ଶନ ଓ ବିଜ୍ଞାନ ସାହାଯ୍ୟରେ ନରେନ୍ଦ୍ର ସ୍ପଷ୍ଟ ଭାବରେ ହୃଦୟଙ୍ଗମ କରିଥିଲେ, ଇନ୍ଦ୍ରିୟ ଓ ମସ୍ତିଷ୍କର ଆକ୍ଷେପ ବା ଉତ୍ତେଜନା ମନୁଷ୍ୟ ମନରେ ପ୍ରତି ମୁହୂର୍ତ୍ତରେ ନାନା ବିକାର ଆନୟନପୂର୍ବକ ସେଥିରେ ସୁଖଦୁଃଖ ଆଦି ଜ୍ଞାନର ପ୍ରକାଶ କରୁଅଛି । ଏସମସ୍ତ ମାନସିକ ବିକାର ହିଁ ମାନବ ଦେଶକାଳ ଇତ୍ୟାଦି ସହାୟତାରେ ସାକ୍ଷାତ୍‌ସମ୍ବନ୍ଧରେ ଅନୁଭବ କରୁଅଛି, କିନ୍ତୁ ବହିର୍ଜଗତ ଓ ତଦନ୍ତର୍ଗତ ଯେଉଁ ସମସ୍ତ ବସ୍ତୁ ପୂର୍ବୋକ୍ତ ଉତ୍ତେଜନା ଓ ବିକାରସମୂହ ତା ଭିତରେ ଆଣୁଅଛି, ସେଗୁଡ଼ିକର ଯଥାର୍ଥ ସ୍ୱରୂପ ଚିରକାଳ ତା ନିକଟରେ ଅଜଣା ହୋଇ ରହିଅଛି । ଅନ୍ତର୍ଜଗତ ବା ମାନବର ନିଜ ସ୍ୱରୂପ ସମ୍ବନ୍ଧରେ ମଧ୍ୟ ସେହି କଥା ସମଭାବରେ ପ୍ରଯୁଜ୍ୟ ହୋଇ ରହିଅଛି । ସେଠାରେ ମଧ୍ୟ ଦେଖାଯାଉଛି କୌଣସି ଏକ ଅପୂର୍ବ ବସ୍ତୁ ନିଜଶକ୍ତି ସହାୟରେ ମନରେ ଅହଂଜ୍ଞାନ ଓ ନାନାପ୍ରକାର ଭାବର ଉଦୟ କଲେ ମଧ୍ୟ ତାର ସ୍ୱରୂପ ଦେଶକାଳର ବାହାରେ ଅବସ୍ଥାନ କରିବାରୁ ମାନବ ତାହାକୁ ଧରି ବୁଝିପାରୁ ନାହିଁ । ସେହିଭାବରେ ଅନ୍ତରରେ ଓ ବାହାରେ, ଯେଉଁଆଡ଼କୁ ମାନବ-ମନ ଚରମ ସତ୍ୟର ଅନୁସନ୍ଧାନରେ ଧାବିତ ହେଉଅଛି, ସେହି ଦିଗରେ ହିଁ ସେ ଦେଶକାଳର ଦୁର୍ଭେଦ୍ୟ ପ୍ରାଚୀରରେ ପ୍ରତିହତ ହୋଇ ନିଜର ଅକିଞ୍ଚିତ୍‌କରତ୍ୱ ସର୍ବଦା ଅନୁଭବ କରୁଅଛି । ସେହିପରି ପଞ୍ଚଜ୍ଞାନେନ୍ଦ୍ରିୟ ଏବଂ ମନ-ବୁଦ୍ଧିରୂପକ ଯେଉଁ ଯନ୍ତ୍ରସହାୟରେ ମାନବ ବିଶ୍ୱରହସ୍ୟ ଉଦ୍‌ଘାଟନରେ ଧାବିତ ହୋଇଅଛି, ତାହାର ବିଶ୍ୱର ଚରମ କାରଣ ପ୍ରକାଶ କରିବାର ସାମର୍ଥ୍ୟ ନାହିଁ । ଇନ୍ଦ୍ରିୟଜ ପ୍ରତ୍ୟକ୍ଷ ଉପରେ ଭିତ୍ତି ସ୍ଥାପନପୂର୍ବକ ସମସ୍ତ ବିଷୟରେ ଅନୁମାନ ଏବଂ

ମୀମାଂସାର ଯେଉଁ ଚେଷ୍ଟା କରାଯାଉଛି, ତାହା ଭିତରେ ନିରନ୍ତର ଭ୍ରମପ୍ରମାଦ ବିଦ୍ୟମାନ ଅଛି ।—ଶରୀର ଭିନ୍ନ ଆତ୍ମାର ପୃଥକ୍ ଅସ୍ତିତ୍ୱ ଅଛି କି ନାହିଁ ସେ ବିଷୟ ନିର୍ଣ୍ଣୟରେ ପାଶ୍ଚାତ୍ୟ ପଣ୍ଡିତକୁଳର ସକଳ ଚେଷ୍ଟାର ବିଫଳତା, ପ୍ରଭୃତି ନାନା ବିଷୟ ନରେନ୍ଦ୍ରନାଥ ଜାଣିପାରିଥିଲେ । ସେଥିପାଇଁ ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବନ୍ଧରେ ପାଶ୍ଚାତ୍ୟ ଦର୍ଶନର ଚରମ ମୀମାଂସାସମୂହ ତାଙ୍କ ନିକଟରେ ଯୁକ୍ତିଯୁକ୍ତ ବୋଲି ପ୍ରତୀତ ହୋଇ ନାହିଁ । ରୂପ-ରସାଦି ବିଷୟଭୋଗରେ ନିରନ୍ତର ଆସକ୍ତ ମାନବସାଧାରଣଙ୍କର ଅନୁଭବକୁ ସହଜ ଓ ସ୍ୱାଭାବିକ ବୋଲି ସ୍ୱୀକାର କରିନେଇ ତାହା ଉପରେ ଭିତ୍ତିସ୍ଥାପନପୂର୍ବକ ପାଶ୍ଚାତ୍ୟର ଅନୁସରଣରେ ଦର୍ଶନଶାସ୍ତ୍ର ଗଢ଼ି ତୋଳିବା ଭଲ, ଅଥବା ବୁଦ୍ଧଙ୍କ ପରି ଚରିତ୍ରବାନ ମହାପୁରୁଷମାନଙ୍କର ଅସାଧାରଣ ଅନୁଭବଗୁଡ଼ିକ ଇତରସାଧାରଣ-ମାନବ ଅନୁଭବର ବିରୋଧୀ ହେଲେ ମଧ୍ୟ, ସତ୍ୟ ବୋଲି ସ୍ୱୀକାରପୂର୍ବକ ତାହାକୁ ଭିତ୍ତିରୂପେ ଅବଲମ୍ବନ କରି ପ୍ରାଚ୍ୟର ପ୍ରଥା ଅନୁସାରେ ଦାର୍ଶନିକ ତତ୍ତ୍ୱ ଅନୁସନ୍ଧାନରେ ଅଗ୍ରସର ହେବା କର୍ତ୍ତବ୍ୟ—ଏପରି ସନ୍ଦେହ ମଧ୍ୟ ତାଙ୍କ ମନରେ ଉଦିତ ହୋଇଥିଲା ।

### ଈଶ୍ୱର ବା ଚରମ ସତ୍ୟଲାଭର ସଂକଳ୍ପ ଦୃଢ଼ ରଖି ନରେନ୍ଦ୍ରଙ୍କର ପାଶ୍ଚାତ୍ୟ ପ୍ରଥାର କେବଳ ଗୁଣଭାଗ ଗ୍ରହଣ :

ପାଶ୍ଚାତ୍ୟ ଦର୍ଶନୋକ୍ତ ଆଧ୍ୟାତ୍ମିକ ମୀମାଂସାଗୁଡ଼ିକର ଅଧିକାଂଶ ନରେନ୍ଦ୍ରନାଥଙ୍କର ଅଯୁକ୍ତିକର ବୋଲି ମନେ ହେଲେ ମଧ୍ୟ ଜଡ଼ବିଜ୍ଞାନର ଆବିଷ୍କାରସମୂହର ଏବଂ ପାଶ୍ଚାତ୍ୟର ବିଶ୍ଳେଷଣ-ପ୍ରଣାଳୀର ସେ ଭୂୟସୀ ପ୍ରଶଂସା କରୁଥିଲେ ଏବଂ ମନୋବିଜ୍ଞାନର ଓ ଆଧ୍ୟାତ୍ମିକ ରାଜ୍ୟର ତତ୍ତ୍ୱସକଳର ପରୀକ୍ଷାସ୍ଥଳରେ ସେଗୁଡ଼ିକର ସହାୟତା ସର୍ବଦା ଗ୍ରହଣ କରୁଥିଲେ । ଠାକୁରଙ୍କ ଜୀବନର ଅସାଧାରଣ ପ୍ରତ୍ୟକ୍ଷସମୂହକୁ ସେ ଏଗୁଡ଼ିକ ସାହାଯ୍ୟରେ ବିଶ୍ଳେଷଣ କରି ବୁଝିବାକୁ ଏବେଠାରୁ ସର୍ବଦା ସଚେଷ୍ଟ ରହୁଥିଲେ ଏବଂ ସେହିପରି ପରୀକ୍ଷାରେ ଯେଉଁ ସମସ୍ତ ତତ୍ତ୍ୱ ପ୍ରତିଷ୍ଠିତ ହେଉଥିଲା ସେସବୁକୁ ସତ୍ୟ ବୋଲି ଗ୍ରହଣପୂର୍ବକ ନିର୍ଭୟରେ ସେଗୁଡ଼ିକୁ ଅନୁଷ୍ଠାନ କରୁଥିଲେ । ସତ୍ୟଲାଭ ନିମନ୍ତେ ବିଷମ ଅସ୍ଥିରତା ତାଙ୍କର ପ୍ରାଣ ଅଧିକାର କରିଥିଲେ ମଧ୍ୟ ନ ବୁଝି କୌଣସି ପ୍ରକାର ଅନୁଷ୍ଠାନରେ ପ୍ରବୃତ୍ତ ହେବା ଏବଂ କାହାକୁ ଭୟରେ ଭକ୍ତି କରିବା ତାଙ୍କର ସମ୍ପୂର୍ଣ୍ଣ ପ୍ରକୃତିବିରୁଦ୍ଧ ଥିଲା । ବିଚାରବୁଦ୍ଧିର ଯଥାଶକ୍ତି ପରିଚାଳନାର ପରିଣାମ ଯଦି ନାସ୍ତିକ୍ୟ ହୁଏ ତାହା ମଧ୍ୟ ସେ ଗ୍ରହଣ କରିବାକୁ ସ୍ୱୀକୃତ ଥିଲେ ଏବଂ ସଂସାରରେ ଭୋଗସୁଖ ତ ଦୂରର କଥା, ନିଜ ପ୍ରାଣର ବିନିମୟରେ ଯଦି ଜୀବନରହସ୍ୟର ସମାଧାନ ଓ ସତ୍ୟପ୍ରକାଶ ଉପସ୍ଥିତ ହୁଏ, ସେଥିରେ ମଧ୍ୟ ସେ ପରାଙ୍ମୁଖ ନ ଥିଲେ । ସୁତରାଂ ଚରମ ସତ୍ୟର ଅନୁସନ୍ଧାନରେ ଦୃଷ୍ଟି ନିବଦ୍ଧ ରଖି ସେ ନିର୍ଭୟରେ ଏହି ସମୟରେ

ପାଶ୍ଚାତ୍ୟ ଶିକ୍ଷାର ଅନୁସରଣରେ ଓ ତାହାର ଗୁଣଭାଗ ଗ୍ରହଣରେ ନିଜକୁ ନିଯୁକ୍ତ ରଖିଥିଲେ । ଏହାର ପ୍ରଭାବରେ ସେ ବିଶ୍ୱାସ-ଭକ୍ତିର ସରଳ ପଥ ପରିତ୍ୟାଗ କରି ବେଳେ ବେଳେ ନାନା ସନ୍ଦେହଜାଲରେ ନିପୀଡ଼ିତ ଓ ଅଭିଭୂତ ହୋଇଥିଲେ, କିନ୍ତୁ ତାଙ୍କର ଅସାଧାରଣ ଅଧ୍ୟବସାୟ ଓ ଧୀଶକ୍ତି ହିଁ ଜୟୀ ହୋଇ ପରିଣାମରେ ତାଙ୍କୁ ସତ୍ୟଲାଭରେ କୃତାର୍ଥ କରିଥିଲା । କିନ୍ତୁ ସେସମୟରେ ଲୋକେ ପ୍ରାୟ ଭାବୁଥିଲେ ଯେ, ପାଶ୍ଚାତ୍ୟ ଗ୍ରନ୍ଥଗୁଡ଼ିକରେ ଯେଉଁ ସମସ୍ତ ମତ ପ୍ରକାଶିତ ହୁଏ, ନରେନ୍ଦ୍ର ସେସବୁ ନିର୍ବିଚାରରେ ଗ୍ରହଣ କରିଥାନ୍ତି । ତାଙ୍କର ପାଶ୍ଚାତ୍ୟ ମତଗୁଡ଼ିକର ପକ୍ଷପାତିତ୍ୱ ଏହି ସମୟରେ ତାଙ୍କର ବନ୍ଧୁବର୍ଗଙ୍କ ମଧ୍ୟରେ ଏତେ ପ୍ରସିଦ୍ଧି ଲାଭ କରିଥିଲା ଯେ, ଗୀତା ଅଧ୍ୟୟନ କରି ସେ ଯେଉଁଦିନ ସେମାନଙ୍କ ନିକଟରେ ଏହାର ଭୂୟସୀ ପ୍ରଶଂସା କରିବାକୁ ଆରମ୍ଭ କଲେ, ସେଦିନ ବିସ୍ମିତ ହୋଇ ସେମାନେ ତାଙ୍କର ଏପରି ଆଚରଣ ବିଷୟରେ ଠାକୁରଙ୍କର କର୍ଣ୍ଣଗୋଚର କରିଥିଲେ । ଠାକୁର ମଧ୍ୟ ସେଥିରେ ପଚାରିଥିଲେ, ''ସାହେବମାନଙ୍କ ମଧ୍ୟରେ କେହି ଗୀତା ସମ୍ବନ୍ଧରେ ଏପରି ମତ ପ୍ରକାଶ କରିଛନ୍ତି ବୋଲି ସେ ସେପରି କରି ନାହିଁ ତ ?''

### ଅଦ୍ଭୁତ ଦର୍ଶନ ଓ ଶ୍ରୀଗୁରୁଙ୍କ କୃପାରେ ନରେନ୍ଦ୍ରଙ୍କର ଆସ୍ତିକ୍ୟବୁଦ୍ଧି ଏହି ସମୟରେ ରକ୍ଷିତ ହୋଇଥିଲା :

ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରେ ଅନ୍ତରରେ ବିଶେଷ ଭାବ-ପରିବର୍ତ୍ତନ ପୂର୍ବରୁ ହିଁ ନରେନ୍ଦ୍ରନାଥ ଠାକୁରଙ୍କର ପୁଣ୍ୟଦର୍ଶନ ଲାଭପୂର୍ବକ କେତେଗୁଡ଼ିଏ ଅସାଧାରଣ ପ୍ରତ୍ୟକ୍ଷର ଅଧିକାରୀ ହୋଇଥିଲେ । ସେସମସ୍ତ କଥା ଆମେ ପୂର୍ବରୁ ପାଠକଙ୍କୁ କହିଛୁ । ନରେନ୍ଦ୍ରଙ୍କର ଆସ୍ତିକ୍ୟବୁଦ୍ଧିକୁ ସୁଦୃଢ଼ କରିବାକୁ ତାହା ଏବେ ବିଶେଷ ଭାବରେ ସହାୟତା କରିଥିଲା ବୋଲି ବୁଝାଯାଏ । ନ ହେଲେ ପାଶ୍ଚାତ୍ୟର ଭାବ ଓ ମତବାଦ ଜଗତ-କାରଣ ଈଶ୍ୱରଙ୍କୁ ଅଜ୍ଞେୟ ପ୍ରମାଣ କରି ତାଙ୍କୁ କେତେଦୂର କେଉଁଠାକୁ ନେଇଯାଇଥାଆନ୍ତା ତାହା ନିର୍ଣ୍ଣୟ କରିବା ଦୁଷ୍କର । ସ୍ୱାଭାବିକ ପୁଣ୍ୟ ସଂସ୍କାରବଶତଃ ତାଙ୍କର ଆସ୍ତିକ୍ୟବୁଦ୍ଧିର ଏଥିରେ ସମ୍ପୂର୍ଣ୍ଣ ଲୋପସାଧନ ନ ହେଲେ ମଧ୍ୟ ତାହା ଅତ୍ୟନ୍ତ ବିପର୍ଯ୍ୟସ୍ତ ହୋଇଥାନ୍ତା ବୋଲି ହିଁ ବୋଧ ହୁଏ । କିନ୍ତୁ ତାହା ହେବାର ନୁହେଁ । ନରେନ୍ଦ୍ରଙ୍କର ଦେବରକ୍ଷିତ ଜୀବନ ବିଶେଷ କାର୍ଯ୍ୟ ସମ୍ପନ୍ନ କରିବାକୁ ହିଁ ସଂସାରରେ ଅବତୀର୍ଣ୍ଣ ହୋଇଥିଲା, ଅତଏବ ସେପରି ବା କାହିଁକି ହେବ ? ଦୈବକୃପାରୁ ସେ ଯାହାଙ୍କ ଆଶ୍ରୟ ଲାଭ କରିଥିଲେ ସେହି ସଦ୍‌ଗୁରୁ ହିଁ ତାଙ୍କୁ ବାରମ୍ବାର କହିଥିଲେ, ''ମାନବର ସକରୁଣ ପ୍ରାର୍ଥନା ଈଶ୍ୱର ସର୍ବଦା ଶ୍ରବଣ କରିଥାଆନ୍ତି ଏବଂ ତୁମେ ମୁଁ ଓ ଯେପରି ବସି କଥାବାର୍ତ୍ତା ହେଉଛେ, ଏହାଠାରୁ ମଧ୍ୟ ସ୍ପଷ୍ଟତର ଭାବରେ ତାଙ୍କୁ ଦେଖିବା, ତାଙ୍କ ବାଣୀ ଶୁଣିବା ଏବଂ ତାଙ୍କୁ ସ୍ପର୍ଶ କରିବା ହୋଇପାରେ, ଏକଥା ମୁଁ ଶପଥ କରି କହିବାକୁ ପ୍ରସ୍ତୁତ

ଅଛି !'' —ପୁଣି କହିଥିଲେ, ''ସାଧାରଣ-ପ୍ରସିଦ୍ଧ ଈଶ୍ୱରଙ୍କର ଯାବତୀୟ ରୂପ ଏବଂ ଭାବକୁ ମାନବ-କଳ୍ପନାପ୍ରସୂତ ବୋଲି ଯଦି ମାନି ନ ପାରିବ ଏବଂ ଅଥଚ ଜଗତର ନିୟାମକ ଈଶ୍ୱର ଜଣେ ଅଛନ୍ତି ବୋଲି ବିଶ୍ୱାସ ଥାଏ ତା'ହେଲେ—'ହେ ଈଶ୍ୱର, ତୁମେ କିପରି ତାହା ମୁଁ ଜାଣେ ନାହିଁ; ତୁମେ ଯେପରି, ସେହିପରି ଭାବରେ ମୋତେ ଦେଖାଦିଅ'—ଏହିପରି କାତର ହୋଇ ପ୍ରାର୍ଥନା କଲେ ମଧ୍ୟ ସେ ଏହା ଶ୍ରବଣପୂର୍ବକ ନିଶ୍ଚୟ କୃପା କରିବେ !'' ଠାକୁରଙ୍କର ଏହି ସବୁ କଥା ନରେନ୍ଦ୍ରଙ୍କୁ ଅଶେଷ ଆଶ୍ୱାସ ପ୍ରଦାନପୂର୍ବକ ସାଧନାରେ ଅଧିକତର ନିବିଷ୍ଟ କରିଥିଲା ।

### ନରେନ୍ଦ୍ରଙ୍କର ସାଧନା :

ପାଶ୍ଚାତ୍ୟ-ଦାର୍ଶନିକ ହାମିଲଟନ୍ ନିଜ ଦର୍ଶନଗ୍ରନ୍ଥର ଉପସଂହାରରେ କହିଛନ୍ତି, 'ଜଗତର ନିୟାମକ ଈଶ୍ୱର ଅଛନ୍ତି—ଏହି ସତ୍ୟର ଆଭାସ ମାତ୍ର ଦେଇ ମାନବ ବୁଦ୍ଧି ନିରସ୍ତ ହୁଏ; ଈଶ୍ୱରଙ୍କ ସ୍ୱରୂପ କ'ଣ ସେବିଷୟ ପ୍ରକାଶ କରିବାକୁ ମନୁଷ୍ୟର ବୁଦ୍ଧିର ଶକ୍ତି ନାହିଁ; ସୁତରାଂ ଦର୍ଶନଶାସ୍ତ୍ରର ଏଠାରେ ହିଁ ଇତି—ଏବଂ ଦର୍ଶନର ଯେଉଁଠାରେ ଇତି ସେଠାରୁ ଆଧ୍ୟାତ୍ମିକତାର ଆରମ୍ଭ ।' ହାମିଲଟନଙ୍କର ଏହି କଥା ନରେନ୍ଦ୍ରଙ୍କର ବିଶେଷ ରୁଚିକର ଥିଲା ଏବଂ କଥାପ୍ରସଙ୍ଗରେ ଏହା ସେ ବେଳେ ବେଳେ ଆମମାନଙ୍କ ନିକଟରେ ଉଲ୍ଲେଖ କରୁଥିଲେ । ଯାହା ହେଉ, ସାଧନାରେ ମନୋନିବେଶ କଲେ ମଧ୍ୟ ନରେନ୍ଦ୍ର ଦର୍ଶନାଦି ଗ୍ରନ୍ଥପାଠ ଛାଡ଼ି ନ ଥିଲେ । ଫଳରେ ଗ୍ରନ୍ଥପାଠ, ଧ୍ୟାନ ଓ ସଙ୍ଗୀତରେ ହିଁ ସେ ଏସମୟରେ ଅନେକ ସମୟ ଅତିବାହିତ କରୁଥିଲେ ।

### ନୂତନ ପ୍ରଣାଳୀ ଅବଲମ୍ବନରେ ସାରାରାତି ଧ୍ୟାନ :

ଧ୍ୟାନାଭ୍ୟାସର ଏକ ନୂତନ ପଥ ସେ ଏବେଠାରୁ ଅବଲମ୍ବନ କରିଥିଲେ । ଆମେ ଏହାପୂର୍ବରୁ କହିଛୁ, ସାକାର ବା ନିରାକାର ଯେଉଁରୂପରେ ହିଁ ଈଶ୍ୱରଙ୍କୁ ଭାବ ନା କାହିଁକି, ମାନବୀୟ ଧର୍ମଭୂଷିତ କରି ତାଙ୍କୁ ଭାବିବା[୧] ବ୍ୟତୀତ ଆମର ଅନ୍ୟ ଗତି ନାହିଁ । ଏହି କଥା ହୃଦୟଙ୍ଗମ କରିବା ପୂର୍ବରୁ ନରେନ୍ଦ୍ରନାଥ ଧ୍ୟାନ କରିବା ସମୟରେ ବ୍ରାହ୍ମସମାଜର ପଦ୍ଧତିରେ ନିରାକାର ସଗୁଣ ବ୍ରହ୍ମଙ୍କର ଚିନ୍ତାରେ ମନକୁ ନିଯୁକ୍ତ ରଖୁଥିଲେ । ଈଶ୍ୱରୀୟ ସ୍ୱରୂପର ସେହିପ୍ରକାର ଧାରଣା ମଧ୍ୟ ମାନବୀୟ କଳ୍ପନା ଦ୍ୱାରା ଦୂଷିତ ସ୍ଥିର କରି ସେ ଏବେ ଧ୍ୟାନର ଉକ୍ତ ଅବଲମ୍ବନକୁ ମଧ୍ୟ ପରିତ୍ୟାଗ କରିଥିଲେ, ଏବଂ 'ହେ ଈଶ୍ୱର, ତୁମେ ତୁମର ସତ୍ୟସ୍ୱରୂପ ଦର୍ଶନର ମୋତେ ଅଧିକାରୀ କର'—ଏହି ମର୍ମରେ ପ୍ରାର୍ଥନା କରି ମନରୁ ସର୍ବପ୍ରକାର ଚିନ୍ତା ଦୂରୀଭୂତ କରି ନିବାତନିଷ୍କମ୍ପ ଦୀପଶିଖା ସଦୃଶ ଏହାକୁ ନିଶ୍ଚଳ ରଖି ଅବସ୍ଥାନ କରିବାର ଅଭ୍ୟାସ କରିବାକୁ ଲାଗିଲେ । ସ୍ୱଳ୍ପକାଳ ସେହିପରି କରିବା

---

୧. Anthropomorphic idea of God.

ଫଳରେ ନରେନ୍ଦ୍ରନାଥଙ୍କର ସଂଯତଚିତ୍ତ ଏଥିରେ ଏତେଦୂର ମଗ୍ନ ହୋଇଯାଉଥିଲା ଯେ, ନିଜ ଶରୀରର ଏବଂ ସମୟର ଜ୍ଞାନ ତାଙ୍କର ବେଳେ ବେଳେ ତିରୋହିତ ହୋଇଯାଉଥିଲା । ଘରେ ସମସ୍ତେ ନିଦ୍ରା ଯିବାପରେ ନିଜ କୋଠରୀରେ ଧ୍ୟାନରେ ବସି ସେ ସେହିପରି ଭାବରେ ସମସ୍ତ ରାତ୍ରି ଅନେକ ଦିନ ଅତିବାହିତ କରୁଥିଲେ ।

ଏପରି ଧ୍ୟାନ ଫଳରେ ନରେନ୍ଦ୍ରନାଥଙ୍କର ଦିନେ ଗୋଟିଏ ଦିବ୍ୟଦର୍ଶନ ହୋଇଥିଲା । ପ୍ରସଙ୍ଗକ୍ରମରେ ନିମ୍ନଲିଖିତ ଭାବରେ ସେ ତାହା ଦିନେ ଆମକୁ କହିଥିଲେ :

### ଏପରି ଧ୍ୟାନରେ ଅଦ୍ଭୁତ ଦର୍ଶନ—ବୁଦ୍ଧଦେବ :

''ଅବଲମ୍ବନଶୂନ୍ୟ କରି ମନକୁ ସ୍ଥିର ରଖିବା ସମୟରେ ଅନ୍ତର ମଧ୍ୟରେ ଏକ ପ୍ରଶାନ୍ତ ଆନନ୍ଦର ଧାରା ପ୍ରବାହିତ ହୋଇ ରହୁଥିଲା । ଧ୍ୟାନଭଙ୍ଗ ପରେ ମଧ୍ୟ ଏହାର ପ୍ରଭାବରେ ଗୋଟିଏ ନିଶା ହେବାପରି ଅବସ୍ଥା ଅନେକ ସମୟ ପର୍ଯ୍ୟନ୍ତ ଅନୁଭବ କରୁଥିଲି । ସେଥିପାଇଁ ସହସା ଆସନ ଛାଡ଼ି ଉଠିବାକୁ ପ୍ରବୃତ୍ତି ହେଉ ନ ଥିଲା । ଧ୍ୟାନ ପରେ ଦିନେ ସେହି ଭାବରେ ବସିଥିବା ବେଳେ ଦେଖିବାକୁ ପାଇଲି, ଦିବ୍ୟ ଜ୍ୟୋତିରେ ଗୃହ ପୂର୍ଣ୍ଣ କରି ଏକ ଅପୂର୍ବ ସନ୍ନ୍ୟାସୀମୂର୍ତ୍ତି କେଉଁଠୁ ସହସା ଆଗମନପୂର୍ବକ ମୋର ସମ୍ମୁଖରେ କିଛି ଦୂରରେ ଦଣ୍ଡାୟମାନ ହେଲେ ! ତାଙ୍କର ଅଙ୍ଗରେ ଗୈରିକ ବସନ, ହସ୍ତରେ କମଣ୍ଡଳୁ ଏବଂ ମୁଖମଣ୍ଡଳରେ ଏପରି ସ୍ଥିର ପ୍ରଶାନ୍ତ ଏବଂ ସର୍ବବିଷୟରେ ଉଦାସୀନତାପ୍ରସୂତ ଏକ ଅନ୍ତର୍ମୁଖୀ ଭାବ ଥିଲା ଯେ, ତାହା ମୋତେ ବିଶେଷ ଭାବରେ ଆକୃଷ୍ଟ କରି ସ୍ତମ୍ଭିତ କରି ରଖିଲା । ଯେପରି କିଛି କହିବା ଅଭିପ୍ରାୟରେ ମୋ ପ୍ରତି ଦୃଷ୍ଟି ନିବଦ୍ଧ ରଖି ସେ ମୋ ଆଡ଼କୁ ଧୀର ପଦକ୍ଷେପରେ ଅଗ୍ରସର ହେବାକୁ ଲାଗିଲେ । ତଦ୍ଦ୍ୱାରା ଭୟରେ ହଠାତ୍ ଏପରି ଅଭିଭୂତ ହୋଇପଡ଼ିଲି ଯେ, ଆଉ ସ୍ଥିର ରହି ନ ପାରି ଆସନ ତ୍ୟାଗକରି ଦ୍ୱାର ଖୋଲି ଦ୍ରୁତପଦରେ ଘର ବାହାରକୁ ଚାଲି ଆସିଲି । ପରକ୍ଷଣରେ ମନେ ହେଲା, ଏତେ ଭୟ କ'ଣ ପାଇଁ ? ସାହସ କରି ସନ୍ନ୍ୟାସୀଙ୍କର କଥା ଶୁଣିବା ପାଇଁ ପୁନରାୟ ଗୃହମଧ୍ୟରେ ପ୍ରବେଶ କଲି, କିନ୍ତୁ ଅନେକ ସମୟ ଅପେକ୍ଷା କରି ମଧ୍ୟ ତାଙ୍କୁ ଆଉ ଦେଖିପାରିଲି ନାହିଁ ! ସେତେବେଳେ ବିଷଣ୍ଣମନରେ ଭାବିବାକୁ ଲାଗିଲି, ତାଙ୍କ କଥା ନ ଶୁଣି ପଳାୟନ କରିବାର ଦୁର୍ବୁଦ୍ଧି ମୋର କାହିଁକି ହେଲା । ସନ୍ନ୍ୟାସୀ ଅନେକ ଦେଖିଛି, କିନ୍ତୁ ଏପରି ଅପୂର୍ବ ମୁଖର ଭାବ କାହାଠାରେ କେବେହେଲେ ନୟନଗୋଚର ହୋଇ ନାହିଁ । ସେହି ମୁହଁଟି ଚିରକାଳ ପାଇଁ ମୋ ହୃଦୟରେ ମୁଦ୍ରିତ ହୋଇ ରହିଅଛି । ଏହା ଭ୍ରମ ହୋଇପାରେ, କିନ୍ତୁ ଅନେକ ସମୟରେ ମନେହୁଏ ବୁଦ୍ଧଦେବଙ୍କର ଦର୍ଶନଲାଭରେ ମୁଁ ସେଦିନ ଧନ୍ୟ ହୋଇଥିଲି !''

## ଅଷ୍ଟମ ଅଧ୍ୟାୟ—ଦ୍ୱିତୀୟ ପାଦ

### ସଂସାରରେ ଓ ଠାକୁରଙ୍କ ନିକଟରେ ନରେନ୍ଦ୍ରନାଥଙ୍କର ଶିକ୍ଷା

**ଏଟର୍ଣ୍ଣିର କର୍ମଶିକ୍ଷା :**

ଏହିପରି ନିର୍ଜନବାସ, ଅଧ୍ୟୟନ, ତପସ୍ୟା ଓ ଦକ୍ଷିଣେଶ୍ୱର ଗମନାଗମନ କରି ନରେନ୍ଦ୍ରଙ୍କର ସମୟ ଅତିବାହିତ ହେବାକୁ ଲାଗିଲା । ଭବିଷ୍ୟତ କଲ୍ୟାଣ ଚିନ୍ତାପୂର୍ବକ ତାଙ୍କର ପିତା ତାଙ୍କୁ ଏହି ସମୟରେ କଲିକତାର ସୁପ୍ରସିଦ୍ଧ ଏଟର୍ଣ୍ଣି ନିମାଇଁଚରଣ ବସୁଙ୍କ ଅଧୀନରେ ଏଟର୍ଣ୍ଣି ବ୍ୟବସାୟ ଶିକ୍ଷା କରିବା ପାଇଁ ନିଯୁକ୍ତ କଲେ । ପୁତ୍ରକୁ ସଂସାରୀ କରିବା ଆଶାରେ ଶ୍ରୀଯୁକ୍ତ ବିଶ୍ୱନାଥ ଉପଯୁକ୍ତ ପାତ୍ରୀ ଅନ୍ୱେଷଣରେ ମଧ୍ୟ ଏହି ସମୟରେ ପ୍ରବୃତ୍ତ ହୋଇଥିଲେ । ମାତ୍ର ବିବାହ କରିବାକୁ ନରେନ୍ଦ୍ରଙ୍କର ବିଶେଷ ଆପତ୍ତି ଥିବାରୁ ଏବଂ ମନମୁତାବକ ପାତ୍ରୀର ସନ୍ଧାନ ନ ମିଳିବାରୁ ତାଙ୍କର ଏହି ଆଶା ସଫଳ ହେବାରେ ବିଳମ୍ବ ହେବାକୁ ଲାଗିଲା ।

**ଅଖଣ୍ଡ ବ୍ରହ୍ମଚର୍ଯ୍ୟ–ପାଳନ କରିବାକୁ ନରେନ୍ଦ୍ରଙ୍କୁ ଠାକୁରଙ୍କର ଉପଦେଶ :**

ରାମତନୁ ବସୁ ଲେନ୍‌ସ୍ଥ ନରେନ୍ଦ୍ରଙ୍କର ପାଠଗୃହରେ ଠାକୁର ବେଳେ ବେଳେ ହଠାତ୍ ଆସି ପହଞ୍ଚିଯାଉଥିଲେ ଏବଂ ସାଧନଭଜନ ସମ୍ବନ୍ଧରେ ନାନାବିଧ ଉପଦେଶ ପ୍ରଦାନ କରୁଥିଲେ । ପିତାମାତାଙ୍କର ସକରୁଣ ଅନୁରୋଧରେ କାଳେ ନରେନ୍ଦ୍ର ବିବାହ ବନ୍ଧନରେ ନିଜ ଜୀବନ ଚିରକାଳ ପାଇଁ ଆବଦ୍ଧ ଓ ସଙ୍କୁଚିତ କରିବସିବେ ସେଥିପାଇଁ ସେସମୟରେ ଠାକୁର ତାଙ୍କୁ ସତର୍କ କରାଇ ବ୍ରହ୍ମଚର୍ଯ୍ୟ–ପାଳନରେ ସତତ ଉତ୍ସାହିତ କରୁଥିଲେ । କହୁଥିଲେ, "ବାରବର୍ଷ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ ଫଳରେ ମାନବର ମେଧାନାଡ଼ୀ ଖୋଲିଯାଏ, ଏବଂ ତାର ବୁଦ୍ଧି ସେତେବେଳେ ସୂକ୍ଷ୍ମାତିସୂକ୍ଷ୍ମ ବିଷୟମାନଙ୍କରେ ପ୍ରବେଶ ଏବଂ ସେଗୁଡ଼ିକର ଧାରଣା କରିବାକୁ ସମର୍ଥ ହୋଇଥାଏ; ସେପରି ବୁଦ୍ଧି ସହାୟରେ ହିଁ ଈଶ୍ୱରଙ୍କୁ ସାକ୍ଷାତ୍ ପ୍ରତ୍ୟକ୍ଷ କରିହୁଏ; ସେ (ଈଶ୍ୱର) କେବଳ ସେହି ପ୍ରକାର ଶୁଦ୍ଧବୁଦ୍ଧିର ଗୋଚର ହୁଅନ୍ତି ।"

**ନରେନ୍ଦ୍ରଙ୍କ ଗୃହରେ ସମସ୍ତଙ୍କର ଭୟ— ସନ୍ନ୍ୟାସୀଙ୍କ ସହିତ ମିଶି ସେ ସନ୍ନ୍ୟାସୀ ହୋଇଯିବେ :**

ଠାକୁରଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ଫଳରେ ହିଁ ନରେନ୍ଦ୍ର ବିବାହ କରିବାକୁ ଚାହୁଁ ନାହାଁନ୍ତି—ଏପରି ଗୋଟିଏ ଧାରଣା ଘରର ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଏହି ସମୟରେ ଆସିଥିଲା । ନରେନ୍ଦ୍ର କହୁଥିଲେ, "ପଢ଼ାଘରେ ପହଞ୍ଚି ଠାକୁର ଯେତେବେଳେ ଦିନେ ପୂର୍ବୋକ୍ତ ଭାବରେ ବ୍ରହ୍ମଚର୍ଯ୍ୟ–ପାଳନ ବିଷୟରେ ମୋତେ

ଉପଦେଶ ଦେଉଥିଲେ, ସେତେବେଳେ ମୋର ଆଈ ଘର ଭିତରୁ ସମସ୍ତକଥା ଶୁଣି ପିତାମାତାଙ୍କ ନିକଟରେ କହିଦେଇଥିଲେ । ସନ୍ନ୍ୟାସୀଙ୍କ ସହିତ ମିଶି ଯଦି ମୁଁ ସନ୍ନ୍ୟାସୀ ହୋଇଯାଏ—ଏହି ଭୟରେ ସେମାନେ ସେହି ଦିନରୁ ମୋତେ ବିବାହ ଦେବା ପାଇଁ ବିଶେଷଭାବରେ ଚେଷ୍ଟା କରିଥିଲେ । କିନ୍ତୁ କଲେ କ'ଣ ହେବ, ଠାକୁରଙ୍କର ପ୍ରବଳ ଇଚ୍ଛା ବିରୁଦ୍ଧରେ ସେମାନଙ୍କର ସମସ୍ତ ଚେଷ୍ଟା ଭାସି ଯାଇଥିଲା । ସମସ୍ତ ବିଷୟ ସ୍ଥିର ହେବା ପରେ ମଧ୍ୟ କେତେକ ସ୍ଥଳରେ ସାମାନ୍ୟ କଥାରେ ଉଭୟ ପକ୍ଷ ମଧ୍ୟରେ ମତଭେଦ ଯୋଗୁଁ ବିବାହ ପ୍ରସ୍ତାବ ସହସା ଭାଙ୍ଗିଯାଇଥିଲା !''

## ଠାକୁରଙ୍କ ନିକଟକୁ ନରେନ୍ଦ୍ରଙ୍କର ପୂର୍ବପରି ଯିବା ଆସିବା :

ଦକ୍ଷିଣେଶ୍ୱରକୁ ଠାକୁରଙ୍କ ନିକଟକୁ ଯିବା ଆସିବା କରିବା ଘରେ ସମସ୍ତଙ୍କର ରୁଚିକର ନ ହେଲେ ମଧ୍ୟ ନରେନ୍ଦ୍ରଙ୍କୁ ସେହି ବିଷୟରେ କୌଣସି କଥା କହିବାକୁ କେହି କେବେ ହେଲେ ସାହସ କରୁ ନ ଥିଲେ । କାରଣ ଜନକ-ଜନନୀଙ୍କର ପରମ ଆଦରର ପୁତ୍ର ନରେନ୍ଦ୍ର ବାଲ୍ୟକାଳରୁ କେବେହେଲେ କାହାର ନିଷେଧ ମାନି ଚଲୁ ନ ଥିଲେ ଏବଂ ଯୌବନରେ ପଦାର୍ପଣ କରି ଆହାର-ବିହାର ଆଦି ସମସ୍ତ ବିଷୟରେ ଅସୀମ ସ୍ୱାଧୀନତା ଅବଲମ୍ବନ କରିଥିଲେ । ସୁତରାଂ ବାଳକ ବା ସରଳମତି ଯୁବକଙ୍କୁ ଆମେ ଯେପରି ଆକଟ କରିଥାଉ, ପ୍ରଖରବୁଦ୍ଧିସମ୍ପନ୍ନ ନରେନ୍ଦ୍ରଙ୍କୁ ଏବେ ସେପରି ଭାବରେ କୌଣସି ବିଷୟରେ ନିଷେଧ କଲେ ଫଳ ବିପରୀତ ହେବାର ସମ୍ଭାବନା, ଏକଥା ସମସ୍ତଙ୍କୁ ଜଣାଥିଲା । ସେଥିପାଇଁ ପୂର୍ବ ପରି ସମଭାବରେ ହିଁ ନରେନ୍ଦ୍ର ଦକ୍ଷିଣେଶ୍ୱରକୁ ଠାକୁରଙ୍କ ନିକଟକୁ ଯା-ଆସ କରୁଥିଲେ ।

## ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ସେ ଯେଉଁ ଭାବରେ ଦିନ କାଟୁଥିଲେ ସେହି ସମ୍ବନ୍ଧରେ ନରେନ୍ଦ୍ରଙ୍କର କଥା :

ଠାକୁରଙ୍କର ପୁଣ୍ୟସଙ୍ଗରେ ଶ୍ରୀଯୁକ୍ତ ନରେନ୍ଦ୍ର ଏହି ସମୟରେ ଦକ୍ଷିଣେଶ୍ୱରରେ ଯେଉଁ ସମସ୍ତ ଦିନ ଅତିବାହିତ କରିଥିଲେ, ସେହି ସବୁର ମଧୁମୟ ସ୍ମୃତି ତାଙ୍କ ଅନ୍ତରକୁ ଆଜୀବନ ଅସୀମ ଉଲ୍ଲାସରେ ପୂର୍ଣ୍ଣ କରି ରଖିଥିଲା । ସେ କହୁଥିଲେ, ''ଠାକୁରଙ୍କ ନିକଟରେ କେତେ ଆନନ୍ଦରେ ଦିନ କଟୁଥିଲା, ସେକଥା ଅନ୍ୟ କାହାକୁ ବୁଝାଇବା ଦୁଷ୍କର । ଖେଳ, ରଙ୍ଗରସ ପ୍ରଭୃତି ସାମାନ୍ୟ ଦୈନନ୍ଦିନ ଘଟଣାଗୁଡ଼ିକ ମଧ୍ୟଦେଇ ସେ କିପରି ଭାବରେ ନିରନ୍ତର ଉଚ୍ଚଶିକ୍ଷା ପ୍ରଦାନପୂର୍ବକ ଆମର ଅଜ୍ଞାତସାରରେ ଆମମାନଙ୍କର ଆଧ୍ୟାତ୍ମିକ ଜୀବନ ଗଠନ କରିଦେଇଥିଲେ, ତାହା ଏବେ ଭାବିଲେ ବିସ୍ମିତ ହେବାକୁ ପଡ଼େ । ବାଳକଟିକୁ ଶିକ୍ଷାଦାନ କଲାବେଳେ ଶକ୍ତିଶାଳୀ ମଲ୍ଲ ଯେପରି ନିଜକୁ ସଂଯତ ରଖି ତଦନୁରୂପ ଶକ୍ତି ପ୍ରକାଶପୂର୍ବକ

କେତେବେଳେ ତାକୁ ଯେପରି ଅଶେଷ ଆୟାସରେ ପରାଭୂତ କରି ଏବଂ କେତେବେଳେ ତା ନିକଟରେ ସ୍ୱୟଂ ପରାଭୂତ ହୋଇ ତା ମନରେ ଆତ୍ମପ୍ରତ୍ୟୟ ଜନ୍ମାଇ ଥାଏ, ଆମମାନଙ୍କ ସହିତ ବ୍ୟବହାରରେ ଠାକୁର ସେହି କାଳରେ ଅନେକ ସମୟରେ ସେହିପ୍ରକାର ଭାବ ଅବଲମ୍ବନ କରୁଥିଲେ । ସେ ବିନ୍ଦୁ ମଧ୍ୟରେ ସିନ୍ଧୁର ବର୍ତ୍ତମାନତା ସର୍ବଦା ପ୍ରତ୍ୟକ୍ଷ କରୁଥିଲେ । ଆମମାନଙ୍କର ପ୍ରତ୍ୟେକଙ୍କର ଅନ୍ତର୍ନିହିତ ଆଧ୍ୟାତ୍ମିକତାର ବୀଜ ଫୁଲ-ଫଳରେ ପୂର୍ଣ୍ଣ ହୋଇ ସମୟାନୁକ୍ରମେ ଯେଉଁ ଆକାର ଧାରଣ କରିବ, ତାହା ସେହି ସମୟରୁ ଭାବମୁଖରେ ପ୍ରତ୍ୟକ୍ଷ କରି ଆମମାନଙ୍କୁ ପ୍ରଶଂସା କରୁଥିଲେ, ଉତ୍ସାହିତ କରୁଥିଲେ, ଏବଂ କୌଣସି ବିଶେଷ ବାସନାରେ ଆବଦ୍ଧ ହୋଇ କାଳେ ଆମେ ଜୀବନର ସେହିପରି ସଫଳତା ହରାଇ ବସିବୁ, ସେଥିପାଇଁ ବିଶେଷ ସତର୍କତାର ସହିତ ଆମମାନଙ୍କର ପ୍ରତ୍ୟେକ ଆଚରଣକୁ ଲକ୍ଷ୍ୟ କରି ଉପଦେଶ ପ୍ରଦାନରେ ଆମମାନଙ୍କୁ ସଂଯତ ରଖୁଥିଲେ । ମାତ୍ର ସେ ଯେ ସେହି ପ୍ରକାରରେ ତନ୍ନ ତନ୍ନ କରି ଲକ୍ଷ୍ୟପୂର୍ବକ ଆମମାନଙ୍କୁ ନିତ୍ୟ ନିୟମିତ କରୁଥିଲେ, ଏକଥା ଆମେମାନେ ଆଦୌ ଜାଣିପାରୁ ନ ଥିଲୁ । ତାହା ହିଁ ଥିଲା ତାଙ୍କର ଶିକ୍ଷାପ୍ରଦାନ ଏବଂ ଜୀବନଗଠନ କରିଦେବାର ଅପୂର୍ବ କୌଶଳ । ଧ୍ୟାନ-ଧାରଣା ସମୟରେ କିଛି ଦୂର ପର୍ଯ୍ୟନ୍ତ ଅଗ୍ରସର ହୋଇ ମନ ଅଧିକତର ଏକାଗ୍ର ହେବା ପାଇଁ ଅବଲମ୍ବନ ପାଉ ନାହିଁ ଅନୁଭବ କରି ତାଙ୍କୁ କର୍ତ୍ତବ୍ୟ କ'ଣ ପ୍ରଶ୍ନ କଲେ ସେ ଏପରି ସ୍ଥଳରେ ସ୍ୱୟଂ କିପରି କରିଥିଲେ ସେକଥା ଆମକୁ ଜଣାଇ ସେହି ବିଷୟରେ ଆମକୁ ନାନା କୌଶଳ କହି ଦେଉଥିଲେ । ମୋର ସ୍ମରଣ ଅଛି, ଶେଷରାତ୍ରିରେ ଧ୍ୟାନ କରିବାକୁ ବସି ଆଲମ୍ବଜାରରେ ଅବସ୍ଥିତ ଝୋଟ କଳର ବଂଶୀ ଶବ୍ଦରେ ମନ ଲକ୍ଷ୍ୟଭ୍ରଷ୍ଟ ଓ ବିକ୍ଷିପ୍ତ ହୋଇ ପଡୁଥିଲା । ତାଙ୍କୁ ସେକଥା କହିବାରୁ ସେ ଏହି ବଂଶୀ ଶବ୍ଦରେ ହିଁ ମନ ଏକାଗ୍ର କରିବାକୁ କହିଥିଲେ ଏବଂ ସେପରି କରି ବିଶେଷ ଫଳ ପାଇଥିଲି । ଅନ୍ୟ ଗୋଟିଏ ସମୟରେ ଧ୍ୟାନ କରିବା ସମୟରେ ଶରୀରକୁ ଭୁଲି ମନକୁ ଲକ୍ଷ୍ୟରେ ସମାହିତ କରିବା ପଥରେ ବିଶେଷ ବାଧା ଅନୁଭବ କରି ତାଙ୍କ ନିକଟରେ ଉପସ୍ଥିତ ହେଲେ ସେ ବେଦାନ୍ତୋକ୍ତ ସମାଧିସାଧନକାଳରେ ଶ୍ରୀମତ୍ ତୋତାପୁରୀଙ୍କ ଦ୍ୱାରା ଭ୍ରୂମଧ୍ୟରେ ମନ ଏକାଗ୍ର କରିବାକୁ ଯେଉଁ ଭାବରେ ଆଦିଷ୍ଟ ହୋଇଥିଲେ, ସେହି କଥା ଉଲ୍ଲେଖ କରି ନିଜର ନଖାଗ୍ର ଦ୍ୱାରା ମୋର ଭ୍ରୂମଧ୍ୟରେ ତୀବ୍ର ଆଘାତ କରି କହିଥିଲେ, 'ଏହି ବେଦନା ଉପରେ ମନକୁ ଏକାଗ୍ର କର ।' ଫଳରେ ଦେଖିଲି ଏହି ଆଘାତଜନିତ ବେଦନାର ଅନୁଭବ ଯେତେକ୍ଷଣ ଇଚ୍ଛା ସମଭାବରେ ମନରେ ଧାରଣ କରି ରଖି ହୁଏ ଏବଂ ଏହି ସମୟରେ ଶରୀରର ଅନ୍ୟ କୌଣସି ଅଂଶରେ ମନ ବିକ୍ଷିପ୍ତ ହେବା ଦୂରେ ଥାଉ ସେହି ଅଂଶଗୁଡ଼ିକର ଅସ୍ତିତ୍ୱର କଥା ସମ୍ପୂର୍ଣ୍ଣ ଭୁଲି ହୋଇଯାଏ । ଠାକୁରଙ୍କ ସାଧନାର ସ୍ଥଳ, ନିର୍ଜନ ପଞ୍ଚବଟୀତଳ ହିଁ ଆମମାନଙ୍କର ଧ୍ୟାନ-

ଧାରଣା କରିବାର ବିଶେଷ ଉପଯୋଗୀ ସ୍ଥାନ ଥିଲା । କେବଳ ଧ୍ୟାନ-ଧାରଣା କାହିଁକି, କ୍ରୀଡ଼ାକୌତୁକରେ ମଧ୍ୟ ଆମେମାନେ ଅନେକ ସମୟ ଏହି ସ୍ଥାନରେ ଅତିବାହିତ କରୁଥିଲୁ । ସେସବୁ ସମୟରେ ମଧ୍ୟ ଠାକୁର ଆମମାନଙ୍କ ସହିତ ଯଥାସମ୍ଭବ ଯୋଗଦାନ କରି ଆମମାନଙ୍କର ଆନନ୍ଦବର୍ଦ୍ଧନ କରୁଥିଲେ ! ଆମେ ସେଠାରେ ଦୌଡ଼ାଦୌଡ଼ି କରୁଥିଲୁ, ଗଛରେ ଚଢୁଥିଲୁ, ଦୃଢ଼ ରଜ୍ଜୁ ସଦୃଶ ଲମ୍ବିତ ମାଧବୀଲତାର ଆବେଷ୍ଟନରେ ବସି ଦୋଳି ଖେଳୁଥିଲୁ, ଏବଂ ବେଳେ ବେଳେ ସମସ୍ତେ ମିଶି ରନ୍ଧନାଦିକରି ବଣଭୋଜି କରୁଥିଲୁ । ବଣଭୋଜିର ପ୍ରଥମ ଦିନ ମୁଁ ସ୍ୱହସ୍ତରେ ରାନ୍ଧିଛି ଦେଖି ଠାକୁର ସ୍ୱୟଂ ସେହି ଅନ୍ନ ବ୍ୟଞ୍ଜନ ଗ୍ରହଣ କରିଥିଲେ । ସେ ବ୍ରାହ୍ମଣ ଦ୍ୱାରା ରୋଷେଇ ଭିନ୍ନ ଅନ୍ୟ ବର୍ଣ୍ଣର ହସ୍ତପକ୍ୱ ଅନ୍ନ ଗ୍ରହଣ କରିପାରନ୍ତି ନାହିଁ ଜାଣି ମୁଁ ତାଙ୍କ ପାଇଁ ମନ୍ଦିରର ପ୍ରସାଦୀ ଅନ୍ନର ବନ୍ଦୋବସ୍ତ କରୁଥିଲି । କିନ୍ତୁ ସେ ସେପରି କରିବାକୁ ନିଷେଧ କରି କହିଥିଲେ, 'ତୋ ପରି ଶୁଦ୍ଧସତ୍ତ୍ୱଗୁଣୀ ହାତରୁ ଭାତ ଖାଇଲେ କୌଣସି ଦୋଷ ହେବ ନାହିଁ ।' ମୁଁ ଏହା ଦେବାକୁ ବାରମ୍ବାର ଆପତ୍ତି କଲେ ମଧ୍ୟ ସେ ମୋ କଥା ନ ଶୁଣି ମୋର ହସ୍ତପକ୍ୱ ଅନ୍ନ ସେଦିନ ଗ୍ରହଣ କରିଥିଲେ ।''

**ଭବନାଥ ଓ ନରେନ୍ଦ୍ରଙ୍କର ବରାହନଗରର ବନ୍ଧୁଗଣ :**

ଶ୍ରୀଯୁକ୍ତ ଭବନାଥ ଚଟ୍ଟୋପାଧ୍ୟାୟ ନାମକ ଜଣେ ପ୍ରିୟଦର୍ଶନ ଭକ୍ତିମାନ ଯୁବକ ଇତିମଧ୍ୟରେ ଦକ୍ଷିଣେଶ୍ୱର ଠାକୁରଙ୍କ ନିକଟକୁ ଆସି ନରେନ୍ଦ୍ରନାଥଙ୍କ ସହିତ ପରିଚିତ ଓ ବିଶେଷ ସୌହାର୍ଦ୍ଦ୍ୟବନ୍ଧନରେ ଆବଦ୍ଧ ହୋଇଥିଲେ । ବିନୟ, ନମ୍ରତା, ସରଳତା ଓ ବିଶ୍ୱାସ ଭକ୍ତି ପାଇଁ ଭବନାଥ ଠାକୁରଙ୍କର ବିଶେଷ ପ୍ରିୟପାତ୍ର ହୋଇଥିଲେ । ତାଙ୍କର ରମଣୀ ସଦୃଶ କୋମଳ ସ୍ୱଭାବ ଏବଂ ନରେନ୍ଦ୍ରନାଥଙ୍କ ପ୍ରତି ଅସାଧାରଣ ଭଲ ପାଇବା ଦେଖି ଠାକୁର ବେଳେ ବେଳେ ରହସ୍ୟ କରି କହୁଥିଲେ, ''ପୂର୍ବଜନ୍ମରେ ତୁ ନରେନ୍ଦ୍ରର ଜୀବନସଙ୍ଗିନୀ ଥିଲୁ ବୋଧ ହୁଏ ।'' ଭବନାଥ ବରାହନଗରରେ ରହୁଥିଲେ ଓ ସୁବିଧା ପାଇଲେ ହିଁ ନରେନ୍ଦ୍ରନାଥଙ୍କୁ ନିଜ ଘରକୁ ଡାକି ଆହାରାଦି କରାଉଥିଲେ । ତାଙ୍କର ପ୍ରତିବେଶୀ ସାତକଡ଼ି ଲାହିଡ଼ୀ ନରେନ୍ଦ୍ରଙ୍କ ସହିତ ବିଶେଷ ପରିଚିତ ଏବଂ ଦାଶରଥି ସାନ୍ୟାଲ ତାଙ୍କର ସହପାଠୀ ବନ୍ଧୁଥିଲେ । ଏମାନେ ମଧ୍ୟ ନରେନ୍ଦ୍ରଙ୍କୁ ପାଇଲେ ଦିନରାତି ତାଙ୍କ ସହିତ ଅତିବାହିତ କରୁଥିଲେ । ସେହିପରି ଦକ୍ଷିଣେଶ୍ୱର ଯିବା ଆସିବା ସମୟରେ ଏବଂ କେବେକେବେ ବିଶେଷଭାବରେ ନିମନ୍ତ୍ରିତ ହୋଇ ନରେନ୍ଦ୍ରନାଥ ବରାହନଗରରେ ଏହି ସମସ୍ତ ବନ୍ଧୁମାନଙ୍କ ସହିତ ବେଳେ ବେଳେ କେତେଘଣ୍ଟା ବା ଦିନେ ଦୁଇଦିନ ଅତିବାହିତ କରୁଥିଲେ ।

**ପିତାଙ୍କର ହଠାତ୍ ମୃତ୍ୟୁ କଥା ନରେନ୍ଦ୍ର ବରାହନଗରରେ ଶୁଣିବା :**

୧୮୮୪ ମସିହାର ପ୍ରଥମ ଭାଗରେ ବି. ଏ ପରୀକ୍ଷାର ଫଳାଫଳ ଜାଣିବାର କିଛିଦିନ ପୂର୍ବରୁ ଘଟଣାଚକ୍ରରେ ନରେନ୍ଦ୍ରନାଥଙ୍କ ଜୀବନରେ ବିଶେଷ ପରିବର୍ତ୍ତନ ଆସି ଉପସ୍ଥିତ ହେଲା । ଅତ୍ୟଧିକ ପରିଶ୍ରମରେ ତାଙ୍କର ପିତା ବିଶ୍ୱନାଥଙ୍କର ଶରୀର ପୂର୍ବରୁ ଅବସନ୍ନ ହୋଇଥିଲା; ଏବେ ହଠାତ୍ ଦିନେ ରାତି ପ୍ରାୟ ଦଶଟା ସମୟରେ ସେ ହୃଦ୍‌ଘାତରେ ମୃତ୍ୟୁମୁଖରେ ପତିତ ହେଲେ । ନରେନ୍ଦ୍ର ସେହି ଦିନ ନିମନ୍ତ୍ରିତ ହୋଇ ଅପରାହ୍ଣରେ ତାଙ୍କର ବରାହନଗରର ବନ୍ଧୁମାନଙ୍କ ନିକଟକୁ ଯାଇଥିଲେ ଏବଂ ରାତି ପ୍ରାୟ ଏଗାରଟା ପର୍ଯ୍ୟନ୍ତ ଭଜନ ଇତ୍ୟାଦିରେ ଅତିବାହିତ କରି ଭୋଜନ ପରେ ସେମାନଙ୍କ ସହିତ ଗୋଟିଏ ଘରେ ଶୟନ କରି ନାନାପ୍ରକାର କଥାବାର୍ତ୍ତାରେ ଲିପ୍ତ ଥିଲେ । ତାଙ୍କର ବନ୍ଧୁ 'ହେମାଳୀ' ରାତି ପ୍ରାୟ ଦୁଇଟା ସମୟରେ ସେଠାକୁ ଆଗମନପୂର୍ବକ ତାଙ୍କୁ ସେହି ନିଦାରୁଣ ବାର୍ତ୍ତା ଶୁଣାଇଲେ ଏବଂ ତାଙ୍କୁ ସାଙ୍ଗରେ ନେଇ ତତ୍‌କ୍ଷଣାତ୍ କଲିକତା ଫେରିଗଲେ ।

**ନରେନ୍ଦ୍ରଙ୍କର ସାଂସାରିକ ଅବସ୍ଥାର ଶୋଚନୀୟ ପରିବର୍ତ୍ତନ :**

ଘରକୁ ଫେରି ନରେନ୍ଦ୍ରନାଥ ପିତାଙ୍କ ସଂସ୍କାରକ୍ରିୟା ସମ୍ପନ୍ନ କଲେ । ପରେ ଅନୁସନ୍ଧାନରୁ ବୁଝିପାରିଲେ ସେମାନଙ୍କର ସାଂସାରିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇଉଠିଛି । ପିତା କିଛି ରଖିଯିବା ଦୂରରେ ଥାଉ, ଆୟ ଅପେକ୍ଷା ନିତ୍ୟ ଅଧିକ ବ୍ୟୟ କରି କିଛି ଋଣ ରଖି ଯାଇଛନ୍ତି; ଆତ୍ମୀୟବର୍ଗ ତାଙ୍କ ପିତାଙ୍କ ସହାୟତାରେ ନିଜ ନିଜର ଅବସ୍ଥାର ଉନ୍ନତିସାଧନ କରି ନେଇ ଏବେ ସମୟ ଦେଖି ଶତ୍ରୁତା ସାଧନରେ ଏବଂ ରହୁଥିବା ଘରୁ ତାଙ୍କର ପରିବାର ବର୍ଗଙ୍କୁ ଉଚ୍ଛେଦ କରିବାକୁ କୃତସଂକଳ୍ପ ହୋଇଛନ୍ତି; ସଂସାରରେ ଆୟ ଏକ ପ୍ରକାର ନାହିଁ କହିଲେ ଚଳେ, ଅଥଚ ପାଞ୍ଚ–ସାତଟି ପ୍ରାଣୀଙ୍କର ଭରଣ–ପୋଷଣ ଆଦି ପ୍ରତିଦିନ ନିର୍ବାହ ହେବା ଦରକାର । ଚିରସୁଖପାଳିତ ନରେନ୍ଦ୍ରନାଥ କିଂକର୍ତ୍ତବ୍ୟବିମୂଢ଼ ହୋଇ ନାନାସ୍ଥାନରେ ଚାକିରୀ ଅନ୍ୱେଷଣରେ ବୁଲିବାକୁ ଲାଗିଲେ । ମାତ୍ର ସମୟ ଖରାପ ପଡ଼ିଲେ ମନୁଷ୍ୟର ଶତ ଚେଷ୍ଟାରେ କିଛିମାତ୍ର ଫଳ ମିଳି ନ ଥାଏ ! ନରେନ୍ଦ୍ର ସର୍ବତ୍ର ବିଫଳମନୋରଥ ହେବାକୁ ଲାଗିଲେ ।

ପିତାଙ୍କର ମୃତ୍ୟୁପରେ ଏକ ଦୁଇ କରି ତିନି–ଚାରି ମାସ ଅତୀତ ହେଲା, ମାତ୍ର ଦୁଃଖ–ଦୁର୍ଦ୍ଦଶାର ଅବସାନ ହେବା ଦୂରରେ ଥାଉ କିଞ୍ଚିତ୍ ମାତ୍ର ଆଶାର ସଞ୍ଚାର ମଧ୍ୟ ନରେନ୍ଦ୍ରଙ୍କ ଜୀବନରେ ହେଲା ନାହିଁ । ବାସ୍ତବିକ୍, ଏପରି ଘନାନ୍ଧକାରରେ ତାଙ୍କର ଜୀବନ ଆଉ କେବେ ଆଚ୍ଛନ୍ନ ହୋଇଥିଲା କି ନାହିଁ ସନ୍ଦେହ । ସେସମୟର କଥା ସେ କେବେ କେବେ ଆମକୁ କହିଥିଲେ :

## ସେହି ଅବସ୍ଥା ସମ୍ବନ୍ଧରେ ନରେନ୍ଦ୍ରଙ୍କର ବିବରଣ—ଚାକିରୀର ଅନ୍ବେଷଣ, ପରିଚିତ ଧନୀ ବ୍ୟକ୍ତିଗଣଙ୍କର ଅବଜ୍ଞା :

‘‘ଅଶୌଚ କ୍ରିୟାର ଅବସାନ ପୂର୍ବରୁ ହିଁ କର୍ମ ଚେଷ୍ଟାରେ ବୁଲିବାକୁ ପଡ଼ିଥିଲା । ଅନାହାରରେ ଖାଲିପାଦରେ ଚାକିରୀ ଦରଖାସ୍ତ ହସ୍ତରେ ନେଇ ମଧ୍ୟାହ୍ନର ପ୍ରଚଣ୍ଡ ଖରାରେ ଗୋଟିଏ ଅଫିସ୍‌ରୁ ଅନ୍ୟ ଅଫିସ ଘୁରି ବୁଲୁଥିଲି— ଅନ୍ତରଙ୍ଗ ବନ୍ଧୁଗଣଙ୍କ ମଧ୍ୟରେ କେହି କେହି ଦୁଃଖରେ ଦୁଃଖୀ ହୋଇ କେଉଁ ଦିନ ସାଙ୍ଗରେ ରହନ୍ତି, କେଉଁଦିନ ରହିପାରନ୍ତି ନାହିଁ, ମାତ୍ର ସର୍ବତ୍ର ହିଁ ବିଫଳମନୋରଥ ହୋଇ ଫେରିବାକୁ ପଡୁଥିଲା । ସଂସାର ସହିତ ଏହି ପ୍ରଥମ ପରିଚୟରେ ହିଁ ବିଶେଷ ଭାବରେ ହୃଦୟଙ୍ଗମ ହେଉଥିଲା, ସ୍ୱାର୍ଥଶୂନ୍ୟ ସହାନୁଭୂତି ଏଠାରେ ଅତୀବ ବିରଳ—ଦୁର୍ବଳ ଓ ଦରିଦ୍ରର ଏଠାରେ ସ୍ଥାନ ନାହିଁ । ଦେଖିଲି, ଦୁଇ ତିନି ଦିନ ପୂର୍ବରୁ ଯେଉଁମାନେ ମୋତେ କୌଣସି ବିଷୟରେ କିଛି ମାତ୍ର ସାହାଯ୍ୟ କରିବାକୁ ସୁଯୋଗ ପାଇଲେ ନିଜକୁ ଧନ୍ୟ ମନେ କରୁଥିଲେ, ସମୟ ବୁଝି ସେମାନେ ହିଁ ଏବେ ମୋତେ ଦେଖି ମୁହଁ ଆଡ଼େଇ ନେଉଛନ୍ତି ଏବଂ କ୍ଷମତା ଥିଲେ ମଧ ସାହାଯ୍ୟ କରିବାକୁ ପଶ୍ଚାତ୍‌ପଦ ହୋଇଛନ୍ତି । ଏସମସ୍ତ ଦେଖି ଶୁଣି ବେଳେ ବେଳେ ସଂସାରଟା ଦାନବର ରଚନା ବୋଲି ମନେ ହେଉଥିଲା । ମନେ ପଡ଼େ, ଏହି ସମୟରେ ଦିନେ ଖରାରେ ଘୁରି ଘୁରି ପାଦତଳେ ଫୋଟକା ହୋଇଯାଇଥିଲା ଏବଂ ନିତାନ୍ତ ପରିଶ୍ରାନ୍ତ ହୋଇ ‘ଗଡ଼େର ମାଠ’ ପଡ଼ିଆରେ ମନୁମେଣ୍ଟର ଛାଇରେ ବସି ପଡ଼ିଥିଲି । ଜଣେ-ଦୁଇ ଜଣ ବନ୍ଧୁ ସେଦିନ ସାଙ୍ଗରେ ଥିଲେ, ଅଥବା ଘଟଣାଚକ୍ରରେ ସେଠାରେ ମୋ ସହିତ ମିଳିତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଜଣେ ବୋଧହୁଏ ମୋତେ ସାନ୍ତ୍ୱନା ଦେବା ପାଇଁ ଗାଇଥିଲେ—

‘ବହୁଛି କୃପାଘନ ବ୍ରହ୍ମନିଃଶ୍ୱାସ ପବନେ’ ଇତ୍ୟାଦି ।

ସେହି ସଙ୍ଗୀତ ଶୁଣି ମନେ ହୋଇଥିଲା ମୁଣ୍ଡରେ ଯେପରି ସେ ଗୁରୁତର ଆଘାତ କରୁଛି । ମା ଓ ଭାଇମାନଙ୍କର ଅସହାୟ ଅବସ୍ଥା କଥା ମନରେ ଆସିବାରୁ କ୍ଷୋଭରେ, ନିରାଶାରେ, ଅଭିମାନରେ କହିଉଠିଲି, ‘ରହ, ଚୁପ୍‌କର, କ୍ଷୁଧାର ତାଡ଼ନାରେ ଯେଉଁମାନଙ୍କର ଆତ୍ମୀୟବର୍ଗଙ୍କୁ କଷ୍ଟ ପାଇବାକୁ ପଡ଼ି ନ ଥାଏ, ଗ୍ରାସାଚ୍ଛାଦନର ଅଭାବ ଯେଉଁମାନଙ୍କୁ କେବେ ସହ୍ୟ କରିବାକୁ ପଡ଼ି ନାହିଁ, ଟଣା ପଙ୍ଖାର ପବନ ଖାଉ ଖାଉ ସେମାନଙ୍କ ନିକଟରେ ଏପରି କଳ୍ପନା ମଧୁର ବୋଧ ହୋଇପାରେ, ମୋର ବି ଦିନେ ସେପରି ଲାଗୁଥିଲା; କଠୋର ସତ୍ୟର ସମ୍ମୁଖରେ ଏହା ଏବେ ବିଷମ ବ୍ୟଙ୍ଗ ବୋଲି ବୋଧ ହେଉଅଛି ।’

**ଦାରିଦ୍ର୍ୟର ପେଷଣ :**

''ମୋର ସେପରି କଥାରେ ଉକ୍ତ ବନ୍ଧୁ ବୋଧହୁଏ ନିତାନ୍ତ କ୍ଷୁଣ୍ଣ ହୋଇଥିଲେ—ଦାରିଦ୍ର୍ୟର କିପରି କଠୋର ପେଷଣରେ ମୋ ମୁହଁରୁ ସେହି କଥା ନିର୍ଗତ ହୋଇଥିଲା ତାହା ସେ କିପରି ବୁଝିବ ! ପ୍ରାତଃକାଳରେ ଉଠି ଗୋପନରେ ଅନୁସନ୍ଧାନ କରି ଯେଉଁ ଦିନ ଦେଖେ ଘରେ ସମସ୍ତଙ୍କ ପାଇଁ ଆବଶ୍ୟକ ଆହାର୍ଯ୍ୟ ନାହିଁ ଏବଂ ହାତରେ ପଇସା ନାହିଁ, ସେଦିନ ମାତାଙ୍କୁ 'ମୋର ନିମନ୍ତ୍ରଣ ଅଛି' କହି ବାହାରିଯାଉଥିଲି ଏବଂ କେଉଁଦିନ ସାମାନ୍ୟ କିଛି ଖାଇ ଏବଂ କେଉଁ ଦିନ ଅନଶନରେ କଟାଇ ଦେଉଥିଲି । ଅଭିମାନରେ, ଘରେ କିମ୍ୱା ବାହାରେ କାହା ନିକଟରେ ମଧ୍ୟ ସେକଥା ପ୍ରକାଶ କରିପାରୁ ନ ଥିଲି । ଧନୀ ବନ୍ଧୁମାନଙ୍କ ମଧ୍ୟରୁ ଅନେକ ପୂର୍ବପରି ମୋତେ ସେମାନଙ୍କର ଘରକୁ ବା ବଗିଚାକୁ ନେଇଯାଇ ସଙ୍ଗୀତ ଦ୍ୱାରା ସେମାନଙ୍କର ଆନନ୍ଦବର୍ଦ୍ଧନ କରିବାକୁ ଅନୁରୋଧ କରୁଥିଲେ । ସେମାନଙ୍କ କଥା ଏଡ଼ାଇ ନ ପାରି ବେଳେ ବେଳେ ସେମାନଙ୍କ ସହିତ ଯାଇ ସେମାନଙ୍କର ମନୋରଞ୍ଜନରେ ପ୍ରବୃତ୍ତ ହେଉଥିଲି, ମାତ୍ର ଅନ୍ତରର କଥା ସେମାନଙ୍କ ପାଖରେ ପ୍ରକାଶ କରିବାକୁ ପ୍ରବୃତ୍ତି ହେଉ ନ ଥିଲା—ସେମାନେ ମଧ୍ୟ ସ୍ୱତଃପ୍ରବୃତ୍ତ ହୋଇ ଏବିଷୟ ଜାଣିବାକୁ କେବେହେଲେ ସଚେଷ୍ଟ ହେଉ ନ ଥିଲେ । ସେମାନଙ୍କ ମଧ୍ୟରେ ବିରଳ ଜଣେ-ଦୁଇଜଣ ବେଳେ ବେଳେ କହୁଥିଲେ, 'ତୋତେ ଆଜି ଏତେ ବିଷଣ୍ଣ ଓ ଦୁର୍ବଳ ଦେଖୁଛି କାହିଁକି, କହ ତ ?' ଜଣେ କେବଳ ମୋର ଅଜ୍ଞାତରେ ଅନ୍ୟ କାହାଠାରୁ ମୋର ଅବସ୍ଥା ଜାଣି ବେନାମୀ ପତ୍ରମଧ୍ୟରେ ମୋର ମାତାଙ୍କ ନିକଟକୁ ବେଳେ ବେଳେ ଟଙ୍କା ପଠାଇ ମୋତେ ଚିରଋଣରେ ଆବଦ୍ଧ କରିଥିଲେ ।

**ରମଣୀର ପ୍ରଲୋଭନ :**

''ଯୌବନରେ ପଦାର୍ପଣପୂର୍ବକ ଯେଉଁ ସମସ୍ତ ବାଲ୍ୟବନ୍ଧୁ ଚରିତ୍ରହୀନ ହୋଇ ଅସତ୍ ଉପାୟରେ ଯତ୍‌ସାମାନ୍ୟ ଉପାର୍ଜନ କରୁଥିଲେ, ସେମାନଙ୍କ ମଧ୍ୟରୁ କେହି କେହି ମୋର ଦାରିଦ୍ର୍ୟର କଥା ଜାଣିପାରି ସମୟ ଦେଖି ମୋତେ ତାଙ୍କ ଦଳରେ ଟାଣିବାକୁ ସଚେଷ୍ଟ ହୋଇଥିଲେ । ସେମାନଙ୍କ ମଧ୍ୟରେ ଯେଉଁମାନେ ଏହାପୂର୍ବରୁ ମୋ ପରି ଅବସ୍ଥା ପରିବର୍ତ୍ତନରେ ସହସା ପତିତ ହୋଇ ଏକପ୍ରକାର ବାଧ୍ୟ ହୋଇ ଜୀବନଯାତ୍ରା ନିର୍ବାହ ପାଇଁ ହୀନ ପଥ ଅବଲମ୍ବନ କରିଥିଲେ, ଦେଖିଲି ସେମାନେ ସତରେ ହିଁ ମୋ ପାଇଁ ବ୍ୟଥିତ ହୋଇଛନ୍ତି । ସମୟ ବୁଝି ଅବିଦ୍ୟାରୂପିଣୀ ମହାମାୟା ମଧ୍ୟ ଏସମୟରେ ପଛରେ ପଡ଼ିବାକୁ ଛାଡ଼ି ନାହାନ୍ତି । ଏକ ସଙ୍ଗତିସଂପନ୍ନା ରମଣୀଙ୍କର ପୂର୍ବରୁ ମୋ ଉପରେ ନଜର ପଡ଼ିଥିଲା । ସୁଯୋଗ ବୁଝି ସେ ପ୍ରସ୍ତାବ ପଠାଇଲେ, ତାଙ୍କ ସହିତ ତାଙ୍କ ସମ୍ପତ୍ତି ଗ୍ରହଣ କରି ଦାରିଦ୍ର୍ୟଦୁଃଖର ଅବସାନ କରିପାରିବି ! ଅତ୍ୟନ୍ତ ଅବଜ୍ଞା ଓ କଠୋରତା ପ୍ରଦର୍ଶନରେ ତାଙ୍କୁ ନିବୃତ୍ତ

କରିବାକୁ ପଡ଼ିଥିଲା । ଅନ୍ୟ ଏକ ରମଣୀ ସେହି ପ୍ରକାରରେ ପ୍ରଲୋଭିତ କରିବାକୁ ଆସିବାରୁ ତାଙ୍କୁ କହିଥିଲି, 'ଏହି ନଶ୍ୱର ଶରୀରଟାର ତୃପ୍ତି ପାଇଁ ଏତେ ଦିନ କେତେ ତ' କ'ଣ କଲ, ମୃତ୍ୟୁ ସମ୍ମୁଖରେ—ତାହାର ସମ୍ବଳ କିଛି କରିଛ କି ? ହୀନ ବୁଦ୍ଧି ଛାଡ଼ି ଭଗବାନଙ୍କୁ ଡାକ ।'

**ଈଶ୍ୱରଙ୍କ ନାମ ନେବାରୁ ମାତାଙ୍କର ତିରସ୍କାର :**

''ଯାହା ହେଉ ଏତେ ଦୁଃଖକଷ୍ଟରେ ମଧ୍ୟ ଏତେଦିନ ଆସ୍ତିକ୍ୟବୁଦ୍ଧିର ବିଲୋପ ଅଥବା 'ଈଶ୍ୱର ମଙ୍ଗଳମୟ'—ଏହି କଥାରେ ସନ୍ଦିହାନ ହୋଇ ନ ଥିଲି । ସକାଳେ ନିଦ ଭାଙ୍ଗିଲେ ତାଙ୍କୁ ସ୍ମରଣ-ମନନପୂର୍ବକ ତାଙ୍କର ନାମ କରୁ କରୁ ଶଯ୍ୟା ତ୍ୟାଗ କରୁଥିଲି, ଏବଂ ଆଶାରେ ସାହସ ବାନ୍ଧି ଉପାର୍ଜନର ଉପାୟ ଅନ୍ୱେଷଣରେ ଘୁରି ବୁଲୁଥିଲି । ଦିନେ ସେହିପରି ଶଯ୍ୟା ତ୍ୟାଗ କରୁଛି ଏହି ସମୟରେ ପାଖ ଘରୁ ମା' ଶୁଣିପାରି କହି ଉଠିଲେ, 'ଚୁପ୍‌କର ଟୋକା, ପିଲା ବେଳରୁ କେବଳ ଭଗବାନ ଭଗବାନ—ଭଗବାନ ତ ସବୁ କଲେ !' ଏହି କଥାରେ ମନରେ ଅତ୍ୟନ୍ତ ଦୁଃଖ ହେଲା । ସ୍ତମ୍ଭିତ ହୋଇ ଭାବିବାକୁ ଲାଗିଲି, ଭଗବାନ କ'ଣ ବାସ୍ତବରେ ଅଛନ୍ତି, ଏବଂ ଥିଲେ ମଧ୍ୟ ମନୁଷ୍ୟର ସକରୁଣ ପ୍ରାର୍ଥନା କ'ଣ ଶୁଣିଥାଆନ୍ତି ? ତେବେ ଏତେ ଯେଉଁ ପ୍ରାର୍ଥନା କରୁଛି ତାର କୌଣସି ଉତ୍ତର ନାହିଁ କାହିଁକି ? ଶିବଙ୍କର ସଂସାରରେ ଏତେ ଅ-ଶିବ ଆସିଲା କେଉଁଠୁ—ମଙ୍ଗଳମୟଙ୍କ ରାଜତ୍ୱରେ ଏତେ ପ୍ରକାର ଅମଙ୍ଗଳ କାହିଁକି ? ବିଦ୍ୟାସାଗର ମହାଶୟ ପରଦୁଃଖରେ କାତର ହୋଇ ଥରେ ଯାହା କହିଥିଲେ—ଭଗବାନ ଯଦି ଦୟାମୟ ଏବଂ ମଙ୍ଗଳମୟ, ତା'ହେଲେ ଦୁର୍ଭିକ୍ଷର କରାଳ କବଳରେ ପତିତ ହୋଇ ଲକ୍ଷ ଲକ୍ଷ ଲୋକ ଅନ୍ନଟିକିଏ ନ ପାଇ ମରୁଛନ୍ତି କାହିଁକି ?—ଏହିକଥା କଠୋର ବ୍ୟଙ୍ଗସ୍ୱରରେ କର୍ଣ୍ଣରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ଈଶ୍ୱରଙ୍କ ପ୍ରତି ପ୍ରଚଣ୍ଡ ଅଭିମାନରେ ହୃଦୟ ପୂର୍ଣ୍ଣ ହେଲା, ସୁଯୋଗ ପାଇ ସନ୍ଦେହ ଆସି ଅନ୍ତର ଅଧିକାର କଲା ।

**ଅଭିମାନରେ ନାସ୍ତିକ୍ୟବୁଦ୍ଧି :**

''ଗୋପନରେ କୌଣସି କାମ କରିବା ମୋର ପ୍ରକୃତିବିରୁଦ୍ଧ ଥିଲା । ବାଲ୍ୟକାଳରୁ କେବେ ଏପରି କରିବା ଦୂରରେ ଥାଉ, ଅନ୍ତରର ଚିନ୍ତା ମଧ୍ୟ ଭୟରେ ବା ଅନ୍ୟ କୌଣସି କାରଣରୁ କାହା ନିକଟରୁ କେବେ ଲୁଚାଇବାର ଅଭ୍ୟାସ କରି ନାହିଁ । ତେଣୁ ଈଶ୍ୱର ନାହାନ୍ତି, କିମ୍ବା ଯଦି ଅଛନ୍ତି ତାଙ୍କୁ ଡାକିବାର କୌଣସି ଫଳ ଏବଂ ପ୍ରୟୋଜନ ନାହିଁ, ଏହିକଥା ଜୋର୍ ଦେଇ ଲୋକଙ୍କ ନିକଟରେ ସପ୍ରମାଣ କରିବାକୁ ଅଗ୍ରସର ହେବି, ଏଥିରେ ବିଚିତ୍ର କ'ଣ ? ଫଳରେ ଅଳ୍ପଦିନରେ ହିଁ କଥା ବ୍ୟାପିଗଲା, ମୁଁ ନାସ୍ତିକ ହୋଇଯାଇଛି ଏବଂ ଦୁଶ୍ଚରିତ୍ର ଲୋକ ସହିତ ମିଶି

ମଦ୍ୟପାନ ଏବଂ ବେଶ୍ୟାଳୟ ପର୍ଯ୍ୟନ୍ତ ଯିବାକୁ କୁଣ୍ଠିତ ହେଉ ନାହିଁ ! ସଙ୍ଗେ ସଙ୍ଗେ ମୋର ଆବାଲ୍ୟ ଅନାଶ୍ରବ ହୃଦୟ ଅଯଥା ନିନ୍ଦାରେ କଠିନ ହୋଇଉଠିଲା ଏବଂ କେହି ନ ପଚାରିଲେ ମଧ୍ୟ ସମସ୍ତଙ୍କ ପାଖରେ କହି ବୁଲିଲି, ଏହି ଦୁଃଖ-କଷ୍ଟ ସଂସାରରେ ନିଜର ଦୁରବସ୍ଥାର କଥା କିଛିକ୍ଷଣ ଭୁଲି ରହିବା ପାଇଁ ଯଦି କେହି ମଦ୍ୟପାନ କରେ, ଅଥବା ବେଶ୍ୟାଗୃହକୁ ଗମନ କରି ନିଜକୁ ସୁଖୀ ମନେ କରେ, ସେଥିରେ ମୋର ଯେ ବିନ୍ଦୁମାତ୍ର ଆପତ୍ତି ନାହିଁ । କେବଳ ସେତିକି ନୁହେଁ, କିନ୍ତୁ ସେପରି କରି ମୁଁ ମଧ୍ୟ ଯଦି ସେମାନଙ୍କ ପରି କ୍ଷଣିକ ସୁଖଭୋଗୀ ହୋଇପାରେ — ସେକଥା ଯେଉଁ ଦିନ ନିଃସଂଶୟରେ ବୁଝିପାରିବି, ସେଦିନ ମୁଁ ମଧ୍ୟ ସେପରି କରିବି, କାହା ଭୟରେ ପଶ୍ଚାତ୍‌ପଦ ହେବି ନାହିଁ ।

### ନରେନ୍ଦ୍ରଙ୍କର ଅଧଃପତନରେ ଭକ୍ତଗଣଙ୍କର ବିଶ୍ୱାସ ହେଲେ ମଧ୍ୟ ଠାକୁରଙ୍କର ଅନ୍ୟ ପ୍ରକାର ଧାରଣା :

"ତୁଣ୍ଡ ବାଇଦ ସହସ୍ର କୋଶ । ମୋର ଏସବୁ କଥା ନାନାଭାବରେ ବିକୃତ ହୋଇ ଦକ୍ଷିଣେଶ୍ୱର ଠାକୁରଙ୍କ ନିକଟରେ ଏବଂ ତାଙ୍କର କଲିକତାସ୍ଥ ଭକ୍ତମାନଙ୍କ ପାଖରେ ପହଞ୍ଚିବାକୁ ବିଳମ୍ବ ହେଲା ନାହିଁ । କେହି କେହି ମୋର ସ୍ୱରୂପ ଅବସ୍ଥା ନିର୍ଣ୍ଣୟ କରିବାକୁ ଦେଖା କରିବାକୁ ଆସିଲେ ଏବଂ ଇଙ୍ଗିତ-ଇସାରାରେ ଜଣାଇଲେ ଯାହା ରଟନା ହୋଇଛି ତାହା ସମ୍ପୂର୍ଣ୍ଣ ସତ୍ୟ ନ ହେଲେ ମଧ୍ୟ କିଛିଟା ସେମାନେ ବିଶ୍ୱାସ କରିବାକୁ ପ୍ରସ୍ତୁତ । ମୋତେ ସେମାନେ ଏତେଦୂର ହୀନ ଭାବିପାରନ୍ତି ଜାଣି ମୁଁ ମଧ୍ୟ ଦାରୁଣ ଅଭିମାନରେ ସ୍ଫୀତ ହୋଇ ଦଣ୍ଡ ପାଇବା ଭୟରେ ଈଶ୍ୱରଙ୍କୁ ବିଶ୍ୱାସ କରିବା ବିଷମ ଦୁର୍ବଳତା, ଏକଥା ପ୍ରତିପନ୍ନପୂର୍ବକ ହିଉମ୍, ବେନ, ମିଲ୍, କାଁମ୍‌ଟେ ପ୍ରଭୃତି ପାଶ୍ଚାତ୍ୟ ଦାର୍ଶନିକମାନଙ୍କର ମତାମତ ଉଦ୍ଧୃତ କରି ଈଶ୍ୱରଙ୍କ ଅସ୍ତିତ୍ୱର ପ୍ରମାଣ ନାହିଁ ବୋଲି ସେମାନଙ୍କ ସହିତ ପ୍ରଚଣ୍ଡ ତର୍କ କରିବାକୁ ଲାଗିଲି । ଫଳରେ ମୋର ଅଧଃପତନ ହୋଇଅଛି, ଏହି କଥାରେ ବିଶ୍ୱାସ ଦୃଢ଼ତର କରି ସେମାନେ ବିଦାୟ ଗ୍ରହଣ କଲେ ବୁଝି ଆନନ୍ଦିତ ହେଲି ଏବଂ ଭାବିଲି ଠାକୁର ମଧ୍ୟ ହୁଏତ ଏମାନଙ୍କର ମୁହଁରୁ ଶୁଣି ତାହା ବିଶ୍ୱାସ କରିବେ । ସେହିପରି ଭାବିବାମାତ୍ରେ ପୁଣି ପ୍ରଚଣ୍ଡ ଅଭିମାନରେ ଅନ୍ତର ପୂର୍ଣ୍ଣ ହେଲା । ସ୍ଥିର କଲି, ତାହା ସେ କରନ୍ତୁ — ମନୁଷ୍ୟର ଭଲମନ୍ଦ ମତାମତର ମୂଲ୍ୟ ଯେତେବେଳେ ଏତେ ଅଳ୍ପ, ସେଥିରେ ଯାଏ କେତେ ଆସେ କେତେ ? ପରେ ଶୁଣି ସ୍ତମ୍ଭିତ ହେଲି, ଠାକୁର ସେମାନଙ୍କର ମୁହଁରୁ ଏସବୁ କଥା ଶୁଣି ପ୍ରଥମେ ହଁ କି ନା କିଛି କହିଲେ ନାହିଁ, ପରେ ଭବନାଥ କାନ୍ଦି କାନ୍ଦି ତାଙ୍କୁ ଏକଥା ଜଣାଇ ଯେତେବେଳେ କହିଲେ, 'ମହାଶୟ, ନରେନ୍ଦ୍ରଙ୍କର ଏପରି ହେବ ଏକଥା ସ୍ୱପ୍ନର ଅଗୋଚର !' — ସେତେବେଳେ ଅତ୍ୟନ୍ତ ଉତ୍ତେଜିତ ହୋଇ ସେ ତାଙ୍କୁ କହିଥିଲେ, 'ଚୁପ କର୍ ଶଳା, ମା' କହିଛି ସେ କଦାପି ସେପରି

ହୋଇପାରେ ନାହିଁ; ଆଉ କେବେ ଏସବୁ କଥା ମୋତେ କହିଲେ ତୁମମାନଙ୍କର ମୁହଁ ଦେଖିବି ନାହିଁ !'

**ଘୋର ଅଶାନ୍ତି :**

''ଏହିପରି ଅହଂକାର ଓ ଅଭିମାନରେ ନାସ୍ତିକତାର ପୋଷଣ କଲେ କ'ଣ ହେବ ? ପରମୁହୂର୍ତ୍ତରେ ବାଲ୍ୟକାଳରୁ, ବିଶେଷତଃ ଠାକୁରଙ୍କ ସହିତ ସାକ୍ଷାତ ପରଠାରୁ, ଜୀବନରେ ଯେଉଁ ସମସ୍ତ ଅଦ୍ଭୁତ ଅନୁଭୂତି ହୋଇଥିଲା, ସେହି ସମସ୍ତ କଥା ଉଜ୍ଜ୍ୱଳ ବର୍ଣ୍ଣରେ ମନରେ ଉଦୟ ହେବାରୁ ଭାବେ—ଈଶ୍ୱର ନିଶ୍ଚୟ ଅଛନ୍ତି ଏବଂ ତାଙ୍କୁ ଲାଭ କରିବାର ପଥ ମଧ୍ୟ ନିଶ୍ଚୟ ଅଛି, ନତୁବା ଏହି ସଂସାରରେ ପ୍ରାଣ ଧାରଣର କୌଣସି ଆବଶ୍ୟକତା ନାହିଁ; ଦୁଃଖକଷ୍ଟ ଜୀବନରେ ଯେତେ ଆସୁନା କାହିଁକି, ସେହି ପଥ ଖୋଜି ବାହାର କରିବାକୁ ହେବ । ସେହିପରି ଦିନପରେ ଦିନ ବିତିବାକୁ ଲାଗିଲା ଏବଂ ସଂଶୟରେ ଚିତ୍ତ ନିରନ୍ତର ଦୋଳାୟମାନ ହୋଇ ଶାନ୍ତି ସୁଦୂରପରାହତ ହୋଇ ରହିଲା—ସାଂସାରିକ ଅଭାବ ମଧ୍ୟ ହ୍ରାସ ହେଲା ନାହିଁ ।

**ଅଦ୍ଭୁତ ଦର୍ଶନରେ ନରେନ୍ଦ୍ରଙ୍କର ଶାନ୍ତି :**

''ଗ୍ରୀଷ୍ମ ପରେ ବର୍ଷା ଆସିଲା । ଏବେ ମଧ୍ୟ ପୂର୍ବପରି କର୍ମର ଅନୁସନ୍ଧାନରେ ଘୁରି ବୁଲୁଥାଏ । ଦିନେ ସମସ୍ତ ଦିବସ ଉପବାସରେ ରହି ଓ ବର୍ଷାରେ ଭିଜି ରାତିରେ ଅବସନ୍ନ ପାଦରେ ଏବଂ ତତୋଧିକ ଅବସନ୍ନ ମନରେ ଘରକୁ ଫେରୁଛି ଏପରି ସମୟରେ ଶରୀରରେ ଏତେ କ୍ଲାନ୍ତି ଅନୁଭବ କଲି ଯେ, ଆଉ ଗୋଟିଏ ପାଦ ମଧ୍ୟ ଅଗ୍ରସର ହୋଇ ନ ପାରି ପାର୍ଶ୍ୱସ୍ଥ ଘର ବାରଣ୍ଡାରେ ଜଡ଼ବସ୍ତୁ ସଦୃଶ ପଡ଼ି ରହିଲି । କିଛିକ୍ଷଣ ପାଇଁ ଚେତନାର ଲୋପ ହୋଇଥିଲା କି ନାହିଁ କହିପାରିବି ନାହିଁ । ଏହା କିନ୍ତୁ ସ୍ମରଣ ଅଛି, ମନରେ ନାନାବର୍ଣ୍ଣର ଚିନ୍ତା ଓ ଛବି ସେତେବେଳେ ଆପଣାଛାଏଁ ପରେ ପରେ ଉଦୟ ଓ ଲୟ ହେଉଥିଲା ଏବଂ ଏସବୁକୁ ଏଡ଼ାଇ ଦେଇ କୌଣସି ଏକ ବିଶେଷ ଚିନ୍ତାରେ ମନକୁ ଆବଦ୍ଧ ରଖିବି ଏପରି ସାମର୍ଥ୍ୟ ନ ଥିଲା । ସହସା ଉପଲବ୍ଧି କଲି, କୌଣସି ଏକ ଦୈବଶକ୍ତିପ୍ରଭାବରେ ଗୋଟିଏ ପରେ ଗୋଟିଏ ଏହିପରି ଭାବରେ ଭିତରର ଅନେକଗୁଡ଼ିଏ ପର୍ଦ୍ଦା ଯେପରି ଉତ୍ତୋଳିତ ହେଲା ଏବଂ ଶିବଙ୍କ ସଂସାରରେ ଅ-ଶିବ କାହିଁକି, ଈଶ୍ୱରଙ୍କର କଠୋର ନ୍ୟାୟପରାୟଣତା ଓ ଅପାର କରୁଣାର ସାମଞ୍ଜସ୍ୟ ପ୍ରଭୃତି ଯେଉଁ ସମସ୍ତ ବିଷୟ ନିର୍ଣ୍ଣୟ କରି ନ ପାରି ମନ ଏତେ ଦିନ ନାନାପ୍ରକାର ସନ୍ଦେହରେ ଆକୁଳିତ ହେଉଥିଲା, ସେହି ସମସ୍ତ ବିଷୟର ସ୍ଥିର ମୀମାଂସା ଅନ୍ତରର ନିବିଡ଼ତମ ପ୍ରଦେଶରେ ଦେଖିବାକୁ ପାଇଲି । ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠିଲି । ଏହାପରେ ଘରକୁ ଫେରିବା ବେଳେ ଦେଖିଲି, ଶରୀରରେ ବିନ୍ଦୁମାତ୍ର କ୍ଲାନ୍ତି ନାହିଁ, ମନ ଅମିତ ବଳ ଓ ଶାନ୍ତିରେ ପୂର୍ଣ୍ଣ ଏବଂ ରଜନୀ ଅବସାନ ହେବାକୁ ସ୍ୱଳ୍ପ ବିଳମ୍ବ ଅଛି ।

### ସନ୍ନ୍ୟାସୀ ହେବାର ସଂକଳ୍ପ ଓ ଦକ୍ଷିଣେଶ୍ୱର ଆଗମନରେ ଠାକୁରଙ୍କର ଅଦ୍ଭୁତ ଆଚରଣ :

''ସଂସାରର ପ୍ରଶଂସା ଓ ନିନ୍ଦାରେ ଏବେଠାରୁ ସମ୍ପୂର୍ଣ୍ଣ ଉଦାସୀନ ହେଲି ଏବଂ ଇତରସାଧାରଣଙ୍କ ପରି ଅର୍ଥ ଉପାର୍ଜ୍ଜନ କରି ପରିବାରବର୍ଗଙ୍କର ସେବା ଓ ଭୋଗସୁଖରେ କାଳଯାପନ କରିବା ପାଇଁ ମୋର ଜନ୍ମ ହୋଇ ନାହିଁ—ଏହି କଥାରେ ଦୃଢ଼ବିଶ୍ୱାସୀ ହୋଇ ପିତାମହଙ୍କ ପରି ସଂସାରତ୍ୟାଗ ନିମିତ୍ତ ଗୋପନରେ ପ୍ରସ୍ତୁତ ହେବାକୁ ଲାଗିଲି । ଯିବା ଦିନ ସ୍ଥିର ହେବା ପରେ ସମ୍ବାଦ ପାଇଲି, ଠାକୁର ସେଦିନ କଲିକତାରେ ଜନୈକ ଭକ୍ତଙ୍କ ଘରକୁ ଆସୁଛନ୍ତି । ଭାବିଲି — ଭଲ ହେଲା, ଗୁରୁଦର୍ଶନ କରି ଚିରକାଳ ପାଇଁ ଗୃହତ୍ୟାଗ କରିବି । ଠାକୁରଙ୍କ ସହିତ ସାକ୍ଷାତ ହେବା ମାତ୍ରେ ସେ ଧରିବସିଲେ, 'ତୋତେ ଆଜି ମୋ ସହିତ ଦକ୍ଷିଣେଶ୍ୱର ଯିବାକୁ ହେବ ।' ନାନା ପ୍ରକାର ଆପତ୍ତି କଲି । କିନ୍ତୁ ସେ ଶୁଣିଲେ ନାହିଁ । ଅଗତ୍ୟା ତାଙ୍କ ସହିତ ଚାଲିଲି । ଗାଡ଼ିରେ ତାଙ୍କ ସହିତ ବିଶେଷ କିଛି କଥା ହେଲା ନାହିଁ । ଦକ୍ଷିଣେଶ୍ୱର ପହଞ୍ଚି ଅନ୍ୟ କେତେଜଣଙ୍କ ସହିତ କିଛି ସମୟ ତାଙ୍କର ଘର ମଧ୍ୟରେ ବସି ରହିଛି ଏପରି ସମୟରେ ଠାକୁରଙ୍କ ଭାବାବେଶ ହେଲା । ଦେଖୁ ଦେଖୁ ସେ ହଠାତ୍ ପାଖକୁ ଆସି ମୋତେ ସସ୍ନେହରେ ଧାରଣପୂର୍ବକ ସଜଳ ନୟନରେ ଗାଇବାକୁ ଲାଗିଲେ —

କଥା କହିବାକୁ ଡରଇ<br>
ନ କହିବାକୁ ଡରଇ,<br>
(ମୋର) ମନେ ସନ୍ଦେହ ହୁଏ<br>
ବୁଝି ତୁମକୁ ହରାଏ, ହା'ରାଇ !

### ଠାକୁରଙ୍କର ଅନୁରୋଧରେ ଗୃହତ୍ୟାଗ କରିବାର ସଂକଳ୍ପ ପରିତ୍ୟାଗ :

''ଅନ୍ତରର ପ୍ରବଳ ଭାବରାଶି ଏତେକ୍ଷଣ ସଯତ୍ନରେ ରୁଦ୍ଧ କରି ରଖିଥିଲି, ଆଉ ବେଗ ସମ୍ବରଣ କରିପାରିଲି ନାହିଁ—ଠାକୁରଙ୍କ ସଦୃଶ ମୋର ବକ୍ଷ ଅଶ୍ରୁଧାରାରେ ପ୍ଲାବିତ ହେବାକୁ ଲାଗିଲା । ନିଶ୍ଚିତ ରୂପେ ବୁଝିଲି, ଠାକୁର ସମସ୍ତ କଥା ଜାଣିପାରିଛନ୍ତି ! ଆମ ଦୁଇଜଣଙ୍କର ସେପରି ଆଚରଣରେ ଅନ୍ୟ ସମସ୍ତେ ସ୍ତମ୍ଭିତ ହୋଇ ରହିଲେ । ପ୍ରକୃତିସ୍ଥ ହେବାପରେ କେହି କେହି ଠାକୁରଙ୍କୁ ତାର କାରଣ ପଚାରିବାରେ ସେ ଈଷତ୍ ହାସ୍ୟ କରି କହିଲେ, 'ଆମର ସେ ଗୋଟେ ହୋଇଗଲା ।' ପରେ ରାତିରେ ଅନ୍ୟମାନଙ୍କୁ ବିଦାୟ ଦେଇ ମୋତେ ପାଖକୁ ଡାକି କହିଲେ, 'ମୁଁ ଜାଣିଛି, ତୁ ମା'ଙ୍କ କାମ ପାଇଁ ଆସିଛୁ, ସଂସାରରେ କେବେହେଲେ ରହିପାରିବୁ ନାହିଁ, କିନ୍ତୁ ମୁଁ ଯେତେ ଦିନ ଅଛି ସେତେଦିନ ମୋ'ପାଇଁ ରହ !'

—ଏହା କହି ଠାକୁର ହୃଦୟର ଆବେଗରେ ରୁଦ୍ଧକଣ୍ଠରେ, ପୁନରାୟ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ !

### ଦୈବସହାୟତାରେ ଦାରିଦ୍ର୍ୟ ମୋଚନର ସଂକଳ୍ପ ଓ ସେଥିପାଇଁ ଠାକୁରଙ୍କୁ ଜୋର୍ କରିବାରୁ, ସେ ମୋତେ 'କାଳୀମନ୍ଦିର'କୁ ଯାଇ ପ୍ରାର୍ଥନା କରିବାକୁ କହିବା :

''ଠାକୁରଙ୍କ ନିକଟରୁ ବିଦାୟ ଗ୍ରହଣ କରି ପରଦିନ ଘରକୁ ଫେରିଲି, ସଙ୍ଗେ ସଙ୍ଗେ ସଂସାରର ଶତଚିନ୍ତା ଆସି ଅନ୍ତରକୁ ଅଧିକାର କଲା । ପୂର୍ବପରି ଉପାର୍ଜନ କରିବା ପାଇଁ ନାନା ଚେଷ୍ଟାରେ ଲାଗିଲି । ଫଳରେ 'ଏଟର୍ଣ୍ଣି'ଙ୍କ ଅଫିସ୍‌ରେ ପରିଶ୍ରମ କରି ଏବଂ କେତେଖଣ୍ଡ ପୁସ୍ତକର ଅନୁବାଦ ପ୍ରଭୃତିରେ ସାମାନ୍ୟ ଉପାର୍ଜନ କରି କୌଣସି ପ୍ରକାରେ ଦିନ କଟିବାକୁ ଲାଗିଲା, ମାତ୍ର ସ୍ଥାୟୀ କୌଣସି କର୍ମ ଜୁଟିଲା ନାହିଁ ଏବଂ ମା-ଭାଇମାନଙ୍କର ଭରଣ-ପୋଷଣର ଏକ ସ୍ୱଚ୍ଛଳ ବନ୍ଦୋବସ୍ତ ମଧ୍ୟ ହୋଇପାରିଲା ନାହିଁ । କିଛିଦିନ ପରେ ମନେ ହେଲା, ଠାକୁରଙ୍କ କଥା ତ' ଈଶ୍ୱର ଶୁଣନ୍ତି—ତାଙ୍କୁ ଅନୁରୋଧ କରି ମାତା ଓ ଭ୍ରାତାମାନଙ୍କର ଅନ୍ନବସ୍ତ୍ରର କଷ୍ଟ ଯେପରି ଦୂର ହେବ ଏପରି ପ୍ରାର୍ଥନା କରାଇ ନେବି; ମୋ' ପାଇଁ ତାହା କରିବାକୁ ସେ କେବେ ଅସ୍ୱୀକାର କରିବେ ନାହିଁ । ଦକ୍ଷିଣେଶ୍ୱରକୁ ଗଲି ଏବଂ ନାଛୋଡ଼ବନ୍ଦା ହୋଇ ଠାକୁରଙ୍କୁ ଜୋର୍ କଲି, 'ମା' ଓ ଭାଇମାନଙ୍କର ଆର୍ଥିକ କଷ୍ଟ ନିବାରଣ ପାଇଁ ଆପଣ ମା'ଙ୍କୁ ଜଣାଇବାକୁ ହେବ ।' ଠାକୁର କହିଲେ, 'ଆରେ, ମୁଁ' ଯେ ସେସବୁ କଥା କହିପାରେ ନାହିଁ । ତୁ ଯାଉ ନାହୁଁ କାହିଁକି ? ମା'କୁ ମାନୁ ନାହୁଁ ଯେ—ସେଥିପାଇଁ ତୋର ଏତେ କଷ୍ଟ !' କହିଲି, 'ମୁଁ ତ ମା'ଙ୍କୁ ଜାଣି ନାହିଁ, ଆପଣ ମୋ ପାଇଁ ମା'ଙ୍କୁ କହନ୍ତୁ—କହିବାକୁ ହିଁ ପଡ଼ିବ, ମୁଁ କୌଣସି ପ୍ରକାରେ ଆପଣଙ୍କୁ ଛାଡ଼ିବି ନାହିଁ ।' ଠାକୁର ସସ୍ନେହରେ କହିଲେ, ''ଆରେ, ମୁଁ ଯେ କେତେଥର କହିଛି, ମା', ନରେନ୍ଦ୍ରର ଦୁଃଖ କଷ୍ଟ ଦୂର କର; ତୁ ମା'କୁ ମାନୁ ନାହୁଁ । ସେଥିପାଇଁ ତ' ମା' ଶୁଣେ ନାହିଁ । ଆଚ୍ଛା, ଆଜି ମଙ୍ଗଳବାର, ମୁଁ କହୁଛି, ଆଜି ରାତିରେ 'କାଳୀ ମନ୍ଦିର' ଯାଇ ମା'କୁ ପ୍ରଣାମ କରି ତୁ ଯାହା ମାଗିବୁ, ମା' ତୋତେ ତାହା ହିଁ ଦେବେ । ମା'ମୋର ଚିନ୍ମୟୀ ବ୍ରହ୍ମଶକ୍ତି, ଇଚ୍ଛାରେ ଜଗତ ପ୍ରସବ କରିଛନ୍ତି—ସେ ଇଚ୍ଛା କଲେ କ'ଣ କରି ନ ପାରନ୍ତି !'

### ଜଗଦମ୍ବାଙ୍କର ଦର୍ଶନରେ ସଂସାର-ବିସ୍ମୃତି :

''ଠାକୁର ଯେତେବେଳେ ଏପରି କହିଲେ, ଦୃଢ଼ ବିଶ୍ୱାସ ହେଲା, ନିଶ୍ଚୟ ପ୍ରାର୍ଥନାମାତ୍ରେ ସମସ୍ତ ଦୁଃଖର ଅବସାନ ହେବ । ପ୍ରବଳ ଉତ୍କଣ୍ଠାରେ ରାତ୍ରିର ପ୍ରତୀକ୍ଷାରେ ରହିଲି । କ୍ରମେ ରାତି ହେଲା । ରାତି ପ୍ରଥମ ପ୍ରହର ଗତ ହେବା ପରେ ଠାକୁର ମୋତେ ଶ୍ରୀମନ୍ଦିରକୁ ଯିବାକୁ କହିଲେ । ଯାଉ ଯାଉ ଏକ ଗଭୀର

ନିଶାରେ ଆଚ୍ଛନ୍ନ ହୋଇପଡ଼ିଲି, ପାଦ ଟଳ ମଳ ହେବାକୁ ଲାଗିଲା ଏବଂ ମା'କୁ ସତ ସତ ଦେଖିବାକୁ ଓ ତାଙ୍କ ଶ୍ରୀମୁଖରୁ ବାଣୀ ଶୁଣିବାକୁ ପାଇବି, ଏପରି ସ୍ଥିର ବିଶ୍ୱାସରେ ମନ ଅନ୍ୟ ସମସ୍ତ ବିଷୟ ଭୁଲି ପୂର୍ଣ୍ଣ ଏକାଗ୍ର ଏବଂ ତନ୍ମୟ ହୋଇ ସେହି କଥା ହିଁ ଭାବିବାକୁ ଲାଗିଲା । ମନ୍ଦିରରେ ଉପସ୍ଥିତ ହୋଇ ଦେଖିଲି, ସତକୁ ସତ ମା' ଚିନ୍ମୟୀ, ସତରେ ହିଁ ଜୀବିତା ଏବଂ ଅନନ୍ତ ପ୍ରେମ ଓ ସୌନ୍ଦର୍ଯ୍ୟର ପ୍ରସ୍ରବଣସ୍ୱରୂପିଣୀ । ଭକ୍ତି-ପ୍ରେମରେ ହୃଦୟ ଉଚ୍ଛ୍ୱସିତ ହେଲା, ବିହ୍ୱଳ ହୋଇ ବାରମ୍ବାର ପ୍ରଣାମ କରୁ କରୁ କହିବାକୁ ଲାଗିଲି, 'ମା' ବିବେକ ଦିଅ, ବୈରାଗ୍ୟ ଦିଅ, ଜ୍ଞାନ ଦିଅ, ଭକ୍ତି ଦିଅ, ଯେଉଁଥିରେ ତୁମର ଅବାଧ-ଦର୍ଶନ ପ୍ରତିଦିନ ଲାଭ କରେ ଏପରି କରିଦିଅ !'—ଶାନ୍ତିରେ ପ୍ରାଣ ଆପ୍ଳୁତ ହେଲା, ଜଗତ ସଂସାର ନିଃଶେଷରେ ଅନ୍ତର୍ହିତ ହୋଇ ଏକମାତ୍ର ମା ହିଁ ହୃଦୟ ପୂର୍ଣ୍ଣ କରି ରହିଲେ !

### ତିନିଥର 'କାଳୀମନ୍ଦିରରେ ଆର୍ଥିକ ଉନ୍ନତି ପ୍ରାର୍ଥନା କରିବାକୁ ଯିବା ଏବଂ ଭିନ୍ନ ଭାବରେ ଆଚରଣ କରିବା :

''ଠାକୁରଙ୍କ ନିକଟକୁ ଫେରିବାମାତ୍ରେ ସେ ପଚାରିଲେ, 'କିରେ ମା'ଙ୍କ ନିକଟରେ ସାଂସାରିକ ଅଭାବ ଦୂର କରିବାକୁ ପ୍ରାର୍ଥନା କରି ଆସିଲୁ ତ ?' ତାଙ୍କ ପ୍ରଶ୍ନରେ ଚମକି ପଡ଼ି କହିଲି, 'ନା ମହାଶୟ, ଭୁଲିଗଲି ! ତା'ହେଲେ ଏବେ କ'ଣ କରିବି ?' ସେ କହିଲେ, 'ଯା, ଯା, ପୁଣି ଯା, ଯାଇ ସେହିକଥା ଜଣାଇ ଦେଇ ଆ ।' ପୁନର୍ବାର ମନ୍ଦିରକୁ ଚାଲିଲି ଏବଂ ମା'ଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ପୁନରାୟ ମୋହିତ ହୋଇ ସବୁ କଥା ଭୁଲି ପୁନଃପୁନଃ ପ୍ରଣାମପୂର୍ବକ ଜ୍ଞାନ ଭକ୍ତିଲାଭ ନିମନ୍ତେ ପ୍ରାର୍ଥନା କରି ଫେରିଲି । ଠାକୁର ହସି ହସି କହିଲେ, 'କିରେ, ଏଥର କହିଲୁ ତ ?' ପୁଣି ଚମକି ପଡ଼ି କହିଲି, ନା ମହାଶୟ, ମା'ଙ୍କୁ ଦେଖିବା ମାତ୍ରେ କେଉଁ ଏକ ଦୈବୀଶକ୍ତିପ୍ରଭାବରେ ସବୁ କଥା ଭୁଲି କେବଳ ଜ୍ଞାନ-ଭକ୍ତି ଲାଭ କଥା ହିଁ କହିଛି !—ଏବେ କ'ଣ ହେବ ?' ଠାକୁର କହିଲେ, 'ଦୂର୍ ଟୋକା, ନିଜକୁ ଟିକିଏ ସମ୍ଭାଳି ଏହି ପ୍ରାର୍ଥନାଟା କହିପାରିଲୁ ନାହିଁ ? ପାରୁ ଯଦି ଆଉ ଥରେ ଯାଇ ଏକଥାଗୁଡ଼ିକ ଜଣେଇ ଦେଇ ଆ, ଶୀଘ୍ର ଯା ।' 'ପୁନର୍ବାର ଚାଲିଲି, କିନ୍ତୁ ମନ୍ଦିର ମଧ୍ୟରେ ପ୍ରବେଶ କରିବାମାତ୍ରେ ତୀବ୍ର ଲଜ୍ଜା ଆସି ହୃଦୟ ଅଧିକାର କରିବସିଲା । ଭାବିଲି, ଏହି ତୁଚ୍ଛ କଥା ମା'କୁ କହିବାକୁ ଆସିଛି ! ଠାକୁର ଯାହା କହନ୍ତି, ରାଜାଙ୍କର ପ୍ରସନ୍ନତା ଲାଭ କରି ତାଙ୍କ ନିକଟରେ 'ଲାଉ କଖାରୁ ଭିକ୍ଷା କରିବା', ଏତ ସେହିପରି ନିର୍ବୁଦ୍ଧିତା ! ଏପରି ହୀନବୁଦ୍ଧି ମୋର ! ଲଜ୍ଜାରେ ଘୃଣାରେ ପୁନଃପୁନଃ ପ୍ରଣାମ କରୁ କରୁ କହିବାକୁ ଲାଗିଲି, 'ଅନ୍ୟ କିଛି ଚାହେଁ ନାହିଁ ମା , କେବଳ ଜ୍ଞାନ ଭକ୍ତି ଦିଅ !' ମନ୍ଦିର ବାହାରକୁ ଆସି ମନେହେଲା ଏହା ନିଶ୍ଚୟ ଠାକୁରଙ୍କର ଖେଳ, ନ ହେଲେ ତିନିଥର ମା'ଙ୍କ ନିକଟକୁ ଆସି ମଧ୍ୟ

କହି ହେଲା ନାହିଁ । ଏହାପରେ ତାଙ୍କୁ ଧରି ବସିଲି, ଆପଣ ହିଁ ନିଶ୍ଚିତ ମୋତେ ଏପରି ଭୁଲାଇ ଦେଇଛନ୍ତି, ଏବେ ଆପଣଙ୍କୁ କହିବାକୁ ହେବ, ମୋର ମା' ଓ ଭାଇମାନଙ୍କର ଖାଇବା-ପିନ୍ଧିବାର ଅଭାବ ରହିବ ନାହିଁ । ସେ କହିଲେ, 'ଆରେ ମୁଁ ତ କାହାପାଇଁ ପ୍ରାର୍ଥନା କେବେ କରିପାରେ ନାହିଁ, ମୋର ମୁହଁରୁ ଯେ ତାହା ବାହାରେ ନାହିଁ । ତୋତେ କହିଲି, ମା' ପାଖରୁ ଯାହା ମାଗିବୁ ତାହା ହିଁ ପାଇବୁ; ତୁ ମାଗି ପାରିଲୁ ନାହିଁ, ତୋର ଅଦୃଷ୍ଟରେ ସଂସାରସୁଖ ନାହିଁ, ସେଥିରେ ମୁଁ କ'ଣ କରିବି ।' କହିଲି, 'ତାହା ହେବ ନାହିଁ ମହାଶୟ, ଆପଣଙ୍କୁ ମୋ ପାଇଁ ସେକଥା କହିବାକୁ ହିଁ ହେବ; ମୋର ଦୃଢ଼ ବିଶ୍ୱାସ—ଆପଣ କହିଲେ ହିଁ ସେମାନଙ୍କର ଆଉ କଷ୍ଟ ରହିବ ନାହିଁ ।' ଏପରି କହି ଯେତେବେଳେ ତାଙ୍କୁ କୌଣସି ପ୍ରକାରରେ ଛାଡ଼ିଲି ନାହିଁ, ସେତେବେଳେ ସେ କହିଲେ, 'ଆଚ୍ଛା ଯା', ସେମାନଙ୍କର ମୋଟା ଭାତ-କପଡ଼ାର ଅଭାବ କେବେ ହେବ ନାହିଁ' ।''

### ନରେନ୍ଦ୍ରଙ୍କର ପ୍ରତୀକ ଓ ପ୍ରତିମାରେ ଈଶ୍ୱରୋପାସନାରେ ବିଶ୍ୱାସ ଏବଂ ଠାକୁରଙ୍କର ଏବିଷୟରେ ଆନନ୍ଦ :

ଯାହାସବୁ କୁହାଗଲା, ନରେନ୍ଦ୍ରନାଥଙ୍କର ଜୀବନରେ ତାହା ଯେ ଏକ ବିଶେଷ ଘଟଣା, ସେଥିରେ ସନ୍ଦେହ ନାହିଁ । ଈଶ୍ୱରଙ୍କର ମାତୃଭାବ ଏବଂ ପ୍ରତୀକ ଓ ପ୍ରତିମାରେ ତାଙ୍କୁ ଉପାସନା କରିବାର ନିଗୂଢ଼ ମର୍ମ ଏତେଦିନ ପର୍ଯ୍ୟନ୍ତ ତାଙ୍କର ହୃଦୟଙ୍ଗମ ହୋଇ ନ ଥିଲା । ମନ୍ଦିରରେ ପ୍ରତିଷ୍ଠିତ ଦେବଦେବୀ ମୂର୍ତ୍ତିକୁ ସେ ଏହା ପୂର୍ବରୁ ଅବଜ୍ଞା ବ୍ୟତୀତ କେବେ ବି ଭକ୍ତି ଭାବରେ ଦର୍ଶନ କରି ପାରୁ ନ ଥିଲେ । ଏବେଠାରୁ ସେପରି ଉପାସନାର ସମ୍ୟକ୍ ରହସ୍ୟ ତାଙ୍କ ହୃଦୟରେ ପ୍ରତିଭାସିତ ହୋଇ ତାଙ୍କର ଆଧ୍ୟାତ୍ମିକ ଜୀବନରେ ଅଧିକତର ପୂର୍ଣ୍ଣତା ଓ ପ୍ରସାରତା ଆଣିଦେଲା । ଠାକୁର ଏଥିରେ କେତେ ଆନନ୍ଦିତ ହୋଇଥିଲେ ତାହା କହିବାର ନୁହେଁ । ଆମମାନଙ୍କର ଜନୈକ ବନ୍ଧୁ[୧] ଏହି ଘଟଣାର ପରଦିନ ଦକ୍ଷିଣେଶ୍ୱର ଆସି ଯାହା ଦର୍ଶନ ଓ ଶ୍ରବଣ କରିଥିଲେ, ତାହା ଏଠାରେ ଉଲ୍ଲେଖ କଲେ ପାଠକ ସେହି କଥା ବୁଝିପାରିବେ ।

### ଠାକୁରଙ୍କର ଏବିଷୟରେ ଆନନ୍ଦ ସମ୍ବନ୍ଧରେ ବୈକୁଣ୍ଠନାଥଙ୍କ କଥା :

''ତାରାପଦ ଘୋଷ ନାମକ ଜଣେ ବ୍ୟକ୍ତିଙ୍କ ସହିତ ଗୋଟିଏ ଅଫିସ୍‌ରେ କାମ କରିଥିବାରୁ ଏହାପୂର୍ବରୁ ପରିଚିତ ହୋଇଥିଲି । ତାରାପଦଙ୍କ ସହିତ ନରେନ୍ଦ୍ରନାଥଙ୍କର ବିଶେଷ ବନ୍ଧୁତା ଥିଲା । ସେଥିପାଇଁ ଅଫିସରେ ତାରାପଦଙ୍କ ନିକଟରେ ନରେନ୍ଦ୍ରଙ୍କୁ ଏହାପୂର୍ବରୁ କେବେକେବେ ଦେଖିଥିଲି । ତାରାପଦ ଦିନେ କଥାରେ କଥାରେ କହିଥିଲେ, ପରମହଂସଦେବ ନରେନ୍ଦ୍ରବାବୁଙ୍କୁ ବିଶେଷ ଭଲ

---

୧. ଶ୍ରୀଯୁକ୍ତ ବୈକୁଣ୍ଠନାଥ ସାନ୍ୟାଲ ।

ପାଆନ୍ତି, ତଥାପି ମୁଁ ନରେନ୍ଦ୍ରଙ୍କ ସହିତ ପରିଚିତ ହେବାର ଚେଷ୍ଟା କରି ନ ଥିଲି । ଆଜି ମଧ୍ୟାହ୍ନରେ ଦକ୍ଷିଣେଶ୍ୱର ଆସି ଦେଖିଲି, ଠାକୁର ଏକାକୀ ଘରେ ବସିଛନ୍ତି ଏବଂ ନରେନ୍ଦ୍ର ବାହାରେ ଗୋଟିଏ ପାଖରେ ଶୟନ କରିଛନ୍ତି । ଠାକୁରଙ୍କର ମୁହଁ ଯେପରି ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ରହିଛି । ନିକଟକୁ ଯାଇ ପ୍ରଣାମ କରିବାମାତ୍ର ସେ ନରେନ୍ଦ୍ରନାଥଙ୍କୁ ଦେଖାଇ କହିଲେ, 'ଆରେ ଦେଖ, ଏହି ପିଲାଟି ବଡ଼ ଭଲ, ଏହାଙ୍କ ନାମ ନରେନ୍ଦ୍ର, ପୂର୍ବେ ମା'କୁ ମାନୁ ନ ଥିଲା, ଗତକାଲି ମାନିଛି । କଷ୍ଟରେ ଅଛି, ତେଣୁ ମା'ଙ୍କୁ ଟଙ୍କା ପଇସା ମାଗିବା ପାଇଁ କହିଦେଇଥିଲି, ମାତ୍ର ସେ ମାଗି ପାରିଲା ନାହିଁ—କହିଲା, ଲାଜ ମାଡ଼ିଲା !' ମନ୍ଦିରରୁ ଆସି ମୋତେ କହିଲା ମା'ଙ୍କର ଗୀତ ଶିଖାଇ ଦିଅ—'ମା' ତ୍ୱଂ ହି ତାରା' ଗୀତଟି[୨] ଶିଖାଇ ଦେଲି । କାଲି ସମସ୍ତ ରାତି ସେଇ ଗୀତଟା ଗାଇଛି ! ସେଥିପାଇଁ ଏବେ ଶୋଇ ପଡ଼ିଛି । (ଅତ୍ୟନ୍ତ ଆନନ୍ଦରେ ହସିହସି) ନରେନ୍ଦ୍ର କାଳୀ ମାନିଛି, ବେଶ୍ ହୋଇଛି—ନା ?' ତାଙ୍କର ସେହି କଥାରେ ବାଳକ ପରି ଆନନ୍ଦ ଦେଖି କହିଲି, 'ହଁ ମହାଶୟ, ବେଶ୍ ହୋଇଛି ।' କିଛିକ୍ଷଣ ପରେ ପୁନର୍ବାର ହସି ହସି କହିଲେ, ନରେନ୍ଦ୍ର ମା'କୁ ମାନିଛି ! ବେଶ୍ ହୋଇଛି—ଠିକ୍ ନା ?' ଏପରି ଦୋହରାଇ ବାରମ୍ବାର ସେହି କଥା କହି ଆନନ୍ଦ ପ୍ରକାଶ କରିବାକୁ ଲାଗିଲେ ।

### ନରେନ୍ଦ୍ରଙ୍କୁ ଠାକୁରଙ୍କର ବିଶେଷ ଆତ୍ମୀୟ ଜ୍ଞାନର ପରିଚାୟକ ଦୃଷ୍ଟାନ୍ତ :

''ନିଦ ଭାଙ୍ଗିଲା ପରେ ପ୍ରାୟ ଦିନ ଚାରିଟା ସମୟରେ ନରେନ୍ଦ୍ରନାଥ ଘର ଭିତରେ ଠାକୁରଙ୍କ ନିକଟକୁ ଆସି ବସିଲେ । ମନେହେଲା ଏଥର ସେ ତାଙ୍କଠାରୁ ବିଦାୟ ଗ୍ରହଣ କରି କଲିକତା ଫେରିବେ । ଠାକୁର କିନ୍ତୁ ତାଙ୍କୁ ଦେଖିବା ମାତ୍ରେ ଭାବାବିଷ୍ଟ ହୋଇ ତାଙ୍କ ଦେହକୁ ଲାଗି ପ୍ରାୟ ତାଙ୍କ କୋଳରେ ଆସି ବସିଲେ ଏବଂ କହିବାକୁ ଲାଗିଲେ, (ନିଜ ଶରୀର ଓ ପରେ ନରେନ୍ଦ୍ରଙ୍କ ଶରୀର ଦେଖାଇ) 'ଦେଖୁଛି ଯେ- ଏଇଟା ମୁଁ, ଏବଂ ଏଇଟା ମଧ୍ୟ ମୁଁ; ସତ କହୁଛି, କିଛି ତଫାତ୍ ବୁଝିପାରୁ ନାହିଁ ! ଯେପରି ଗଙ୍ଗାଜଳରେ ଗୋଟିଏ ଲାଠି ପକାଇ ଦେଲେ ଦୁଇ ଭାଗ ଦେଖାଯାଏ—ସତରେ କିନ୍ତୁ ଭାଗଭାଗ ନାହିଁ, ଗୋଟିଏ ହିଁ ରହିଛି !—କ'ଣ ବୁଝିପାରୁଛ ? ମା' ଛଡ଼ା ଆଉ କ'ଣ ଅଛି କହତ, ହଁ ନା ନାହିଁ ?' ସେପରି ନାନା କଥା କହି ପରେ କହିଲେ, 'ତମାଖୁ ଖାଇବି ।' ମୁଁ ବ୍ୟସ୍ତ ହୋଇ ତମାଖୁ

୨. ଗୀତ – (ଆମାର) ମା ତ୍ୱଂ ହି ତାରା ତୁମି ତ୍ରିଗୁଣଧରା ପରାତ୍ପରା ॥
ତୋରେ ଜାଣି ମା ଓ ଦୀନଦୟାମୟୀ, ତୁମି ଦୁର୍ଗମେତେ ଦୁଃଖହରା ॥
ତୁମି ଜଲେ, ତୁମି ସ୍ଥଲେ, ତୁମି ଆଦ୍ୟମୂଲେ ଗୋ ମା,
ଆଛ ସର୍ବଘଟେ, ଅକ୍ଷପୁଟେ । ସାକାର ଆକାର ନିରାକାର ॥
ତୁମି ସନ୍ଧ୍ୟା, ତୁମି ଗାୟତ୍ରୀ, ତୁମିଇ ଜଗଦ୍ଧାତ୍ରୀ ଗୋ ମା,
ତୁମି ଅକୂଲେର ତ୍ରାଣକର୍ତ୍ତୀ ସଦାଶିବେର ମନୋହରା ॥

ସଜାଇ ହୁକାଟିକୁ ତାଙ୍କୁ ଦେଲି । ଥରେ ଦୁଇଥର ଟାଣି ସେ ହୁକାଟି ଫେରାଇ ଦେଇ 'ଚିଲମରେ ଖାଇବି' କହି ଚିଲମଟି ହାତରେ ନେଇ ଟାଣିବାକୁ ଲାଗିଲେ । ଦୁଇ ଚାରି ଥର ଟାଣି ତାହା ନରେନ୍ଦ୍ରଙ୍କର ମୁହଁ ପାଖରେ ଧରି କହିଲେ, 'ଖା, ମୋ ହାତରୁ ଖା ।' ନରେନ୍ଦ୍ର ଏଥିରେ ଅତ୍ୟନ୍ତ ସଙ୍କୁଚିତ ହେବାରୁ କହିଲେ, 'ତୋର ତ ଭାରୀ ହୀନ ବୁଦ୍ଧି, ତୁ ଆଉ ମୁଁ କଣ ଅଲଗା ? ଏହା ମଧ୍ୟ ମୁଁ ତାହା ମଧ୍ୟ ମୁଁ ।' ଏକଥା କହି ନରେନ୍ଦ୍ରନାଥଙ୍କୁ ତମାଖୁ ଖୁଆଇବା ପାଇଁ ପୁନରାୟ ନିଜର ଦୁଇଟି ହାତ ତାଙ୍କ ମୁହଁ ସମ୍ମୁଖରେ ଧରିଲେ । ଅଗତ୍ୟା ନରେନ୍ଦ୍ର ଠାକୁରଙ୍କ ହାତରେ ମୁହଁ ଲଗାଇ ଦୁଇ ତିନିଥର ତମାଖୁ ଟାଣି ନିରସ୍ତ ହେଲେ । ଠାକୁର ତାଙ୍କୁ ନିରସ୍ତ ଦେଖି ସ୍ୱୟଂ ପୁନରାୟ ତମାଖୁ ସେବନ କରିବାକୁ ଉଦ୍ୟତ ହେଲେ । ନରେନ୍ଦ୍ର ବ୍ୟସ୍ତ ହୋଇ କହିଲେ, 'ମହାଶୟ, ହାତଟା ଧୋଇ ତମାଖୁ ଖାନ୍ତୁ ।' କିନ୍ତୁ ସେକଥା କିଏ ଶୁଣୁଛି ? 'ଦୂର୍ ଶଳା, ତୋର ତ ଭାରୀ ଭେଦବୁଦ୍ଧି' କହି ଠାକୁର ଅଇଁଠା ହାତରେ ତମାଖୁ ଟାଣି ଭାବାବେଶରେ ନାନା କଥା କହିବାକୁ ଲାଗିଲେ । ଖାଦ୍ୟ ଦ୍ରବ୍ୟର ଅଗ୍ରଭାଗ କାହାକୁ ଦେଲେ ଠାକୁର ତାହାକୁ ଉଚ୍ଛିଷ୍ଟ ଜ୍ଞାନରେ କେବେ ଖାଇପାରୁ ନ ଥିଲେ, କିନ୍ତୁ ନରେନ୍ଦ୍ରନାଥଙ୍କର ଉଚ୍ଛିଷ୍ଟ ସମ୍ବନ୍ଧରେ ସେ ଆଜି ଏପରି ବ୍ୟବହାର କରିବା ଦେଖି ମୁଁ ସ୍ତମ୍ଭିତ ହୋଇ ଭାବିବାକୁ ଲାଗିଲି, ନରେନ୍ଦ୍ରନାଥଙ୍କୁ ସେ କେତେଦୂର ନିଜର ବୋଲି ଜ୍ଞାନ କରନ୍ତି ।

**ନରେନ୍ଦ୍ରଙ୍କ ସହିତ ବୈକୁଣ୍ଠଙ୍କର କଲିକତାକୁ ଆସିବା :**

''କଥା ହେଉ ହେଉ ପ୍ରାୟ ରାତି ଆଠଟା ବାଜିଗଲା । ସେତେବେଳେ ଠାକୁରଙ୍କ ଭାବର ଉପଶମ ଦେଖି ନରେନ୍ଦ୍ର ଏବଂ ମୁଁ ତାଙ୍କ ନିକଟରୁ ବିଦାୟଗ୍ରହଣପୂର୍ବକ ଚାଲି ଚାଲି କଲିକତା ଫେରିଆସିଲୁ । ଏହାପରେ ଆମେ ବହୁଦିନ ନରେନ୍ଦ୍ରଙ୍କୁ କହିବା ଶୁଣିଅଛୁ, 'ଏକ ମାତ୍ର ଠାକୁର ହିଁ କେବଳ ମୋତେ ପ୍ରଥମ ଦେଖାରୁ ସବୁ ସମୟରେ ସମଭାବରେ ବିଶ୍ୱାସ କରିଆସିଛନ୍ତି, ଆଉ କେହି ନୁହଁନ୍ତି — ନିଜର ମା-ଭାଇମାନେ ମଧ୍ୟ ନୁହଁନ୍ତି । ତାଙ୍କର ସେପରି ବିଶ୍ୱାସ, ସ୍ନେହ ହିଁ ମୋତେ ଚିରକାଳ ପାଇଁ ବାନ୍ଧି ପକାଇଛି ! ଏକା ସେ ହିଁ ଭଲ ପାଇବା ଜାଣନ୍ତି ଏବଂ ଭଲ ପାଇପାରନ୍ତି — ସଂସାରରେ ଅନ୍ୟ ସମସ୍ତେ ସ୍ୱାର୍ଥସିଦ୍ଧି ପାଇଁ ଭଲ ପାଇବାର ଛଳନା ମାତ୍ର କରିଥାଆନ୍ତି' ।''

# ନବମ ଅଧ୍ୟାୟ

## ଠାକୁରଙ୍କର ଭକ୍ତସଂଘ ଏବଂ ନରେନ୍ଦ୍ରନାଥ

### ଠାକୁରଙ୍କର ବିଶେଷ ଭକ୍ତମାନଙ୍କର ଆଗମନ— ୧୮୮୪ ଖ୍ରୀଷ୍ଟାବ୍ଦ ମଧ୍ୟରେ :

ଠାକୁର ଯୋଗଦୃଷ୍ଟିସହାୟରେ ଯେଉଁ ସମସ୍ତ ଭକ୍ତମାନଙ୍କର ଦକ୍ଷିଣେଶ୍ୱର ଆସିବା କଥା ବହୁ ପୂର୍ବରୁ ଜାଣିପାରିଥିଲେ ବୋଲି ଆମେ ଏହାପୂର୍ବରୁ ଉଲ୍ଲେଖ କରିଛୁ, ସେମାନେ ସମସ୍ତେ ହିଁ ୧୮୮୪ ଖ୍ରୀଷ୍ଟାବ୍ଦ ଅତୀତ ହେବା ପୂର୍ବରୁ ତାଙ୍କ ନିକଟକୁ ଆସିଥିଲେ । କାରଣ, ୧୮୮୫ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ପୂର୍ଣ୍ଣ ତାଙ୍କ ନିକଟକୁ ଆସିଥିଲେ ଏବଂ ତାଙ୍କୁ କୃପା କରିବା ପରେ ସେ କହିଥିଲେ, ‘‘ଏଠାକୁ ଆସିବେ ବୋଲି ଯେଉଁମାନଙ୍କୁ ଦେଖିଥିଲି, ପୂର୍ଣ୍ଣଙ୍କ ଆଗମନରେ ସେହି ଶ୍ରେଣୀର ଭକ୍ତମାନଙ୍କର ଆସିବା ସମ୍ପୂର୍ଣ୍ଣ ହେଲା; ଅତଃପର ଏହି ଶ୍ରେଣୀର ଆଉ କେହି ଏଠାକୁ ଆସିବେ ନାହିଁ !’’

### ଏହି ସମସ୍ତ ଭକ୍ତଙ୍କ ସହିତ ମିଳନରେ ଠାକୁରଙ୍କର ଆଚରଣ :

ପୂର୍ବୋକ୍ତ ଶ୍ରେଣୀର ଭକ୍ତମାନଙ୍କ ମଧ୍ୟରେ ଅନେକ ପୁଣି ୧୮୮୩ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରୁ ୧୮୮୪ ଖ୍ରୀଷ୍ଟାବ୍ଦର ମଧ୍ୟଭାଗ ସୁଦ୍ଧା ଠାକୁରଙ୍କ ନିକଟରେ ପହଞ୍ଚିଥିଲେ । ନରେନ୍ଦ୍ର ସେତେବେଳେ ସାଂସାରିକ ଅଭାବ-ଅନଟନ ସହିତ ସଂଗ୍ରାମରେ ବ୍ୟସ୍ତ ଥିଲେ ଏବଂ ରାଖାଲ କିଛିଦିନ ପାଇଁ ଶ୍ରୀବୃନ୍ଦାବନ ଦର୍ଶନରେ ଗମନ କରିଥିଲେ । ଏହି ସମସ୍ତ ଭକ୍ତମାନଙ୍କ ମଧ୍ୟରେ କାହାର କାହାର ଆସିବା କଥା, ଠାକୁର ସମୀପସ୍ଥ ବ୍ୟକ୍ତିମାନଙ୍କ ପାଖରେ ‘‘ଆଜି (ଉତ୍ତର-ଦକ୍ଷିଣ ଆଦି କୌଣସି ଦିଗ ଦେଖାଇ) ସେହି ଦିଗରୁ ଏଠାର ଜଣେ ଆସୁଛନ୍ତି’’ ଏହିପରି ପୂର୍ବରୁ ନିର୍ଦ୍ଦେଶ କରୁଥିଲେ । କେହି କେହି ଉପସ୍ଥିତ ହେବା ମାତ୍ରେ ‘‘ତୁମେ ଏଠାର ଲୋକ’’ କହି ପୂର୍ବ-ପରିଚିତ ପରି ତାଙ୍କୁ ସାଦରେ ଗ୍ରହଣ କରୁଥିଲେ । କୌଣସି ଭାଗ୍ୟବାନଙ୍କ ସହିତ ପ୍ରଥମ ସାକ୍ଷାତ ପରେ ତାଙ୍କୁ ପୁନର୍ବାର ଦେଖିବାକୁ, ଖୁଆଇବାକୁ ଏବଂ ତାଙ୍କ ସହିତ ଏକାନ୍ତରେ ଧର୍ମାଳାପ କରିବା ନିମିତ୍ତ ଅଧୀର ହୋଇ ଉଠୁଥିଲେ । କୌଣସି ବ୍ୟକ୍ତିର ସ୍ୱଭାବ ସଂସ୍କାର ଇତ୍ୟାଦି ଲକ୍ଷ୍ୟ କରି ପୂର୍ବରୁ ଆଗତ ସମସଂସ୍କାରସମ୍ପନ୍ନ କୌଣସି ଭକ୍ତବିଶେଷଙ୍କ ସହିତ ତାଙ୍କୁ ପରିଚିତ କରାଇ ତାଙ୍କ ସହିତ ଧର୍ମାଲୋଚନାରେ ଯେପରି ସେ ଅବସର ସମୟ ଅତିବାହିତ କରିପାରିବେ, ସେହି ବିଷୟର ସୁଯୋଗ କରାଇଦେଉଥିଲେ । ପୁଣି କାହା ଘରେ ଅଯାଚିତଭାବରେ ପହଞ୍ଚିଯାଇ ସଦାଳାପରେ ଅଭିଭାବକମାନଙ୍କର ସନ୍ତୋଷ

ଉତ୍ପାଦନପୂର୍ବକ ଯେପରି ସେମାନେ ତାଙ୍କୁ ମଝିରେ ମଝିରେ ତାଙ୍କ ନିକଟକୁ ଆସିବାକୁ ମନା ନ କରନ୍ତି ସେହି ବିଷୟରେ ପଥ ପରିଷ୍କାର କରିଦେଉଥିଲେ ।

**ଅଧିକାରୀଭେଦରେ ଭକ୍ତମାନଙ୍କୁ ଦିବ୍ୟଭାବାବିଷ୍ଟ ଠାକୁରଙ୍କର ସ୍ପର୍ଶ, ମନ୍ତ୍ରଦାନ ଇତ୍ୟାଦି ଏବଂ ତାର ଫଳ :**

ସେହି ସମସ୍ତ ଭକ୍ତଙ୍କର ଆଗମନମାତ୍ରେ ଅଥବା ଆସିବାର ସାମାନ୍ୟ କିଛି ଦିନ ପରେ ଠାକୁର ସେମାନଙ୍କ ପ୍ରତ୍ୟେକଙ୍କୁ ଏକାନ୍ତରେ ଡାକି ଧ୍ୟାନ କରିବାକୁ ବସାଇ ସେମାନଙ୍କର ବକ୍ଷ, ଜିହ୍ୱା ପ୍ରଭୃତି ଶରୀରର କୌଣସି କୌଣସି ସ୍ଥାନ ଦିବ୍ୟାବେଶରେ ସ୍ପର୍ଶ କରୁଥିଲେ । ସେହି ଶକ୍ତିପୂର୍ଣ୍ଣ ସ୍ପର୍ଶରେ ସେମାନଙ୍କର ମନ ବାହାରର ବିଷୟସମୂହରୁ ଆଂଶିକ ବା ସମ୍ପୂର୍ଣ୍ଣଭାବରେ ସଂହୃତ ଓ ଅନ୍ତର୍ମୁଖୀ ହୋଇପଡୁଥିଲା ଏବଂ ସଞ୍ଚିତ ଧର୍ମସଂସ୍କାରସମୂହ ଅନ୍ତରରେ ସହସା ସଜୀବ ହୋଇ ଉଠି ସତ୍ୟସ୍ୱରୂପ ଈଶ୍ୱରଙ୍କ ଦର୍ଶନଲାଭ ପାଇଁ ସେମାନଙ୍କୁ ବିଶେଷଭାବରେ ନିଯୁକ୍ତ କରୁଥିଲା । ଫଳରେ, ତାହାର ପ୍ରଭାବରେ କାହାର ଦିବ୍ୟଜ୍ୟୋତି ଅଥବା ଦେବ-ଦେବୀଙ୍କର ଜ୍ୟୋତିର୍ମୟ ମୂର୍ତ୍ତିସମୂହର ଦର୍ଶନ, କାହାର ଗଭୀର ଧ୍ୟାନ ଏବଂ ଅଭୂତପୂର୍ବ ଆନନ୍ଦ, ପୁଣି କାହାର ହୃଦଗ୍ରନ୍ଥିସକଳ ସହସା ଉନ୍ମୋଚିତ ହୋଇ ଈଶ୍ୱରଲାଭ ନିମନ୍ତେ ପ୍ରବଳ ବ୍ୟାକୁଳତା, କାହାର ଭାବାବେଶ ଓ ସବିକଳ୍ପ ସମାଧି ଏବଂ କ୍ୱଚିତ କାହାର ନିର୍ବିକଳ୍ପ ସମାଧିର ପୂର୍ବାଭାସ ଆସି ଉପସ୍ଥିତ ହେଉଥିଲା । ତାଙ୍କ ନିକଟକୁ ଆସି ସେହି ପ୍ରକାର ଜ୍ୟୋତିର୍ମୟ ମୂର୍ତ୍ତି ପ୍ରଭୃତିର ଦର୍ଶନ କେତେ ଲୋକଙ୍କର ଯେ ହୋଇଥିଲା ତାର ଇୟତ୍ତା ନାହିଁ । ତାରକଙ୍କ ମନରେ ସେପରି ଅତୀବ ବ୍ୟାକୁଳତା ଓ କ୍ରନ୍ଦନର ଉଦୟ ହୋଇ ଅନ୍ତରର ଗ୍ରନ୍ଥିସକଳ ଦିନେ ସହସା ଉନ୍ମୋଚିତ ହୋଇଥିଲା ଏବଂ ଛୋଟ ନରେନ୍ ଏହାର ପ୍ରଭାବରେ ସ୍ୱଳ୍ପକାଳରେ ନିରାକାର ଧ୍ୟାନରେ ସମାଧିସ୍ଥ ହୋଇଥିଲେ, ଏକଥା ଆମେ ଠାକୁରଙ୍କ ଶ୍ରୀମୁଖରୁ ଶୁଣିଅଛୁ । କିନ୍ତୁ ସେହିପ୍ରକାର ସ୍ପର୍ଶରେ ସମ୍ପୂର୍ଣ୍ଣ ନିର୍ବିକଳ୍ପ ଅବସ୍ଥାର ଆଭାସ ପ୍ରାପ୍ତ ହେବା ଏକମାତ୍ର ନରେନ୍ଦ୍ରନାଥଙ୍କର ଜୀବନରେ ହିଁ ଦେଖାଯାଇଥିଲା । ଭକ୍ତମାନଙ୍କ ଭିତରେ କାହାର କାହାକୁ ଠାକୁର ସେପରି ସ୍ପର୍ଶ କରିବା ଛଡ଼ା ବେଳେ ବେଳେ ଆଣବୀ ମନ୍ତ୍ରଦୀକ୍ଷା ମଧ୍ୟ ପ୍ରଦାନ କରୁଥିଲେ । ସେହି ଦୀକ୍ଷା ପ୍ରଦାନକାଳରେ ସେ ସାଧାରଣ ଗୁରୁମାନଙ୍କ ପରି ଶିଷ୍ୟର କୋଷ୍ଠି-ବିଚାର ଆଦି ନାନାପ୍ରକାର ଗଣନା ଓ ପୂଜା ଇତ୍ୟାଦିରେ ପ୍ରବୃତ୍ତ ହେଉ ନ ଥିଲେ । କିନ୍ତୁ ଯୋଗଦୃଷ୍ଟିସହାୟରେ ତାଙ୍କର ଜନ୍ମଜନ୍ମାନ୍ତରର ମାନସିକ ସଂସ୍କାରସମୂହ ଅବଲୋକନପୂର୍ବକ 'ତୋର ଏହି ମନ୍ତ୍ର' କହି ମନ୍ତ୍ରନିର୍ଦ୍ଦେଶ କରିଦେଉଥିଲେ । ନିରଞ୍ଜନ, ତେଜଚନ୍ଦ୍ର, ବୈକୁଣ୍ଠ ପ୍ରଭୃତି କେତେଜଣଙ୍କୁ ସେ ସେହି ଭାବରେ କୃପା କରିଥିଲେ, ଏହା ଆମେ ସେମାନଙ୍କଠାରୁ ଶୁଣିଛୁ । ଶାକ୍ତ ବା ବୈଷ୍ଣବ ବଂଶରେ ଜନ୍ମ ଗ୍ରହଣ କରିଛନ୍ତି

ବୋଲି ହିଁ ସେ କାହାକୁ ସେହି ମନ୍ତ୍ରରେ ଦୀକ୍ଷାପ୍ରଦାନ କରୁ ନ ଥିଲେ । କିନ୍ତୁ ଅନ୍ତଃସଂସ୍କାର ନିରୀକ୍ଷଣପୂର୍ବକ ଶକ୍ତି ଉପାସକ କେଉଁ କେଉଁ ବ୍ୟକ୍ତିଙ୍କୁ ବିଷ୍ଣୁମନ୍ତ୍ରରେ ଏବଂ ବୈଷ୍ଣବମାନଙ୍କ ମଧ୍ୟରୁ କାହାକୁ କାହାକୁ ଶକ୍ତିମନ୍ତ୍ରରେ ଦୀକ୍ଷିତ କରୁଥିଲେ । ଅତଏବ ବୁଝାଯାଉଛି, ଯେଉଁ ବ୍ୟକ୍ତି ଯେଉଁ ପ୍ରକାର ଅଧିକାରୀ ତାହା ଲକ୍ଷ୍ୟ କରି ହିଁ ସେ ତାଙ୍କର ଉପଯୋଗୀ ବ୍ୟବସ୍ଥା ସର୍ବଦା ପ୍ରଦାନ କରୁଥିଲେ ।

## ଠାକୁରଙ୍କର ଦିବ୍ୟସ୍ପର୍ଶ ଯାହା ପ୍ରମାଣ କରେ :

ଇଚ୍ଛା ଓ ସ୍ପର୍ଶମାତ୍ରେ ମହାପୁରୁଷମାନେ ଅନ୍ତରର ଆଧ୍ୟାତ୍ମିକ ଶକ୍ତି ଅନ୍ୟଠାରେ ସଂକ୍ରମଣପୂର୍ବକ ତାଙ୍କ ମନର ଗତିକୁ ଉଚ୍ଚପଥରେ ପରିଚାଳିତ କରି ଦେବାକୁ ସମର୍ଥ, ଏହି କଥା ଶାସ୍ତ୍ରଗ୍ରନ୍ଥମାନଙ୍କରେ ଲିପିବଦ୍ଧ ଅଛି । ଅନ୍ତରଙ୍ଗ ଶିଷ୍ୟମାନଙ୍କର ତ' କଥା ହିଁ ନାହିଁ—ବେଶ୍ୟା, ଲମ୍ପଟ ଆଦି ଦୁଷ୍କୃତକାରୀମାନଙ୍କର ଜୀବନ ମଧ୍ୟ ସେହିପରି ମହାପୁରୁଷଗଣଙ୍କର ଶକ୍ତି ପ୍ରଭାବରେ ପରିବର୍ତ୍ତିତ ହୋଇଅଛି । ଶ୍ରୀକୃଷ୍ଣ, ବୁଦ୍ଧ, ଈଶା, ଶ୍ରୀଚୈତନ୍ୟ ଆଦି ଯେଉଁ ସମସ୍ତ ମହାପୁରୁଷଗଣ ଈଶ୍ୱରଙ୍କର ଅବତାର ବୋଲି ସଂସାରରେ ଅଦ୍ୟାବଧି ପୂଜିତ ହେଉଅଛନ୍ତି, ସେମାନଙ୍କର ପ୍ରତ୍ୟେକଙ୍କର ଜୀବନରେ ହିଁ ସେହି ଶକ୍ତିର ଅଳ୍ପ ବହୁତ ପ୍ରକାଶ ଦେଖିବାକୁ ମିଳିଥାଏ । କିନ୍ତୁ ଶାସ୍ତ୍ରରେ ସେପରି ଥିଲେ କ'ଣ ହେବ, ଏହି ଶ୍ରେଣୀର ପୁରୁଷମାନଙ୍କର ଅଲୌକିକ କାର୍ଯ୍ୟକଳାପର ସାକ୍ଷାତ ପରିଚୟ ବହୁକାଳ ପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୋଇ ନ ଥିବାରୁ ସଂସାର ଏବେ ସେବିଷୟରେ ସମ୍ପୂର୍ଣ୍ଣ ଅବିଶ୍ୱାସୀ ହୋଇଉଠିଛି । ଈଶ୍ୱରଙ୍କ ଅବତାରରେ ବିଶ୍ୱାସ କରିବା ତ ଦୂରର କଥା, ଈଶ୍ୱର-ବିଶ୍ୱାସ ମଧ୍ୟ ଏବେ ଅନେକ ସ୍ଥଳରେ କୁସଂସ୍କାରପ୍ରସୂତ ମାନସିକ ଦୁର୍ବଳତାର ପରିଚାୟକ ବୋଲି ଗଣ୍ୟ ହେଉଅଛି । ସାଧାରଣ ମାନବଙ୍କ ଚିତ୍ତରୁ ସେହି ଅବିଶ୍ୱାସ ଦୂର କରି ସେମାନଙ୍କୁ ଆଧ୍ୟାତ୍ମିକଭାବସମ୍ପନ୍ନ କରିବାକୁ ଠାକୁରଙ୍କ ପରି ଅଲୌକିକ ପୁରୁଷଙ୍କର ସଂସାରରେ ଜନ୍ମଗ୍ରହଣ କରିବା ବର୍ତ୍ତମାନ ଯୁଗରେ ଏକାନ୍ତ ଆବଶ୍ୟକ ହୋଇଥିଲା । ପୂର୍ବୋକ୍ତ ଶକ୍ତିର ପ୍ରକାଶ ତାଙ୍କଠାରେ ଅବଲୋକନ କରି ଆମେ ଏବେ ପୂର୍ବ ପୂର୍ବ ଯୁଗର ମହାପୁରୁଷମାନଙ୍କ ସମ୍ବନ୍ଧରେ ମଧ୍ୟ ସେହି ବିଷୟରେ ବିଶ୍ୱାସବାନ ହେଉଅଛୁ । ଈଶ୍ୱରାବତାର ବୋଲି ଠାକୁରଙ୍କୁ ବିଶ୍ୱାସ ନ କଲେ ମଧ୍ୟ ସେ ଯେ ଶ୍ରୀକୃଷ୍ଣ, ବୁଦ୍ଧ, ଈଶା ଓ ଶ୍ରୀଚୈତନ୍ୟପ୍ରମୁଖ ମହାପୁରୁଷମାନଙ୍କର ସମଶ୍ରେଣୀଭୁକ୍ତ ଲୋକୋତ୍ତର ପୁରୁଷ, ପୂର୍ବୋକ୍ତ କାର୍ଯ୍ୟ ଦେଖି ଏବିଷୟରେ କାହାର ମଧ୍ୟ ଅସ୍ୱୀକାର କରିବାର ଉପାୟ ନାହିଁ ।

## ଭକ୍ତମାନଙ୍କର ଠାକୁରଙ୍କୁ ନିଜ ନିଜ ଭାବର ଲୋକ ବୋଲି ଧାରଣା ଓ ଠାକୁରଙ୍କର ସେମାନଙ୍କ ସହିତ ଆଚରଣ :

ପୂର୍ବପରିଦୃଷ୍ଟ ଭକ୍ତଗଣଙ୍କ ମଧ୍ୟରେ ବାଳକ ଓ ବୃଦ୍ଧ, ସଂସାରୀ ଓ ଅସଂସାରୀ, ସାକାର ଓ ନିରାକାର ଉପାସକ, ଶାକ୍ତ, ବୈଷ୍ଣବ ଅଥବା ଅନ୍ୟ ଧର୍ମସମ୍ପ୍ରଦାୟଭୁକ୍ତ ପ୍ରଭୃତି ନାନାବିଧ ଅବସ୍ଥା ଓ ଭାବର ଲୋକ ବିଦ୍ୟମାନ ଥିଲେ । ସେହିପରି ଅଶେଷ ପ୍ରଭେଦ ବିଦ୍ୟମାନ ଥିଲେ ମଧ୍ୟ ଗୋଟିଏ ବିଷୟରେ ସେମାନେ ସମସ୍ତେ ସମଭାବାପନ୍ନ ଥିଲେ । ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ମତ ଓ ପଥରେ ଆନ୍ତରିକ ଶ୍ରଦ୍ଧାସମ୍ପନ୍ନ ଏବଂ ନିଷ୍ଠାବାନ ରହି ଈଶ୍ୱରଲାଭ ନିମିତ୍ତ ଅଶେଷ ତ୍ୟାଗ ସ୍ୱୀକାର କରିବାକୁ ସର୍ବଦା ପ୍ରସ୍ତୁତ ଥିଲେ । ଠାକୁର ସେମାନଙ୍କୁ ନିଜ ସ୍ନେହପାଶରେ ଆବଦ୍ଧ କରି ସେମାନଙ୍କ ଭାବ ରକ୍ଷାପୂର୍ବକ ସେମାନଙ୍କ ସହିତ ସାମାନ୍ୟ ବା ଗୁରୁତର ସମସ୍ତ ବିଷୟରେ ଏପରି ବ୍ୟବହାର କରୁଥିଲେ ଯେ, ସେମାନେ ପ୍ରତ୍ୟେକେ ଅନୁମାନ କରୁଥିଲେ ଠାକୁର ସମସ୍ତ ଧର୍ମମତରେ ପାରଦର୍ଶୀ ହେଲେ ମଧ୍ୟ ସେ ଯେଉଁ ପଥରେ ଅଗ୍ରସର ହେଉଛନ୍ତି ଠାକୁର ସେଥିରେ ହିଁ ଅଧିକତର ପ୍ରୀତିସମ୍ପନ୍ନ । ସେହିପ୍ରକାର ଧାରଣାବଶତଃ ତାଙ୍କ ଉପରେ ସେମାନଙ୍କର ଭକ୍ତି ଓ ଭଲ ପାଇବାର ସୀମା ରହୁ ନ ଥିଲା । ପୁଣି ତାଙ୍କର ସଦ୍‌ଗୁଣ ଯୋଗୁଁ ଏବଂ ଶିକ୍ଷାଦୀକ୍ଷାପ୍ରଭାବରେ ସଂକୀର୍ଣ୍ଣତାର ଗଣ୍ଡିସମୂହ ଗୋଟି ଗୋଟି କରି ଅତିକ୍ରମପୂର୍ବକ ଉଦାରଭାବସମ୍ପନ୍ନ ହେବାମାତ୍ରେ ତାଙ୍କଠାରେ ମଧ୍ୟ ସେହି ଭାବର ପୂର୍ଣ୍ଣତା ଦେଖିବାକୁ ପାଇ ସେମାନେ ପ୍ରତ୍ୟେକେ ବିସ୍ମିତ ଓ ମୁଗ୍ଧ ହେଉଥିଲେ । ଦୃଷ୍ଟାନ୍ତସ୍ୱରୂପ ଏଠାରେ ସାମାନ୍ୟ ଗୋଟିଏ ଘଟଣା ଉଲ୍ଲେଖ କରୁଛୁ :

## ଭକ୍ତମାନଙ୍କ ଅନ୍ତରରେ ଉଦାରତା ବୃଦ୍ଧି ସହିତ ଠାକୁରଙ୍କୁ ବୁଝିପାରିବାର ଦୃଷ୍ଟାନ୍ତ—ବଳରାମ ବସୁ :

କଲିକତା ବାଗବଜାରନିବାସୀ ଶ୍ରୀଯୁକ୍ତ ବଳରାମ ବସୁ ବୈଷ୍ଣବବଂଶରେ ଜନ୍ମଗ୍ରହଣ କରିଥିଲେ ଏବଂ ସ୍ୱୟଂ ପରମ ବୈଷ୍ଣବ ଥିଲେ । ସଂସାରରେ ରହି ମଧ୍ୟ ସେ ଅସଂସାରୀ ଥିଲେ ଏବଂ ଯଥେଷ୍ଟ ଧନସମ୍ପତ୍ତିର ଅଧିକାରୀ ହୋଇ ମଧ୍ୟ ତାଙ୍କ ହୃଦୟରେ ଅଭିମାନ କଦାପି ସ୍ଥାନ ପାଇ ନ ଥିଲା । ଠାକୁରଙ୍କ ନିକଟକୁ ଆସିବା ପୂର୍ବରୁ ସକାଳେ ପୂଜାପାଠରେ ଚାରି-ପାଞ୍ଚ ଘଣ୍ଟା ସମୟ ଅତିବାହିତ କରୁଥିଲେ । ଅହିଂସା-ଧର୍ମପାଳନରେ ସେ ଏତେଦୂର ଯତ୍ନବାନ ଥିଲେ ଯେ, କୀଟ-ପତଙ୍ଗ ଆଦିଙ୍କୁ ମଧ୍ୟ କୌଣସି କାରଣରୁ ଆଘାତ କରୁ ନ ଥିଲେ । ଠାକୁର ତାଙ୍କୁ ଦେଖି ପୂର୍ବପରିଚିତ ପରି ସାଦର ଗ୍ରହଣପୂର୍ବକ କହିଥିଲେ, ''ଏହି ମହାଶୟ ମହାପ୍ରଭୁ ଶ୍ରୀଚୈତନ୍ୟଦେବଙ୍କର ଅନ୍ତରଙ୍ଗମାନଙ୍କ ମଧ୍ୟରୁ ଅନ୍ୟତମ—ଏଠାକାର ଲୋକ; ଶ୍ରୀଅଦ୍ୱୈତ ଓ ଶ୍ରୀନିତ୍ୟାନନ୍ଦ ପ୍ରଭୁପାଦମାନଙ୍କ ସହିତ ସଂକୀର୍ତ୍ତନରେ ହରିପ୍ରେମର

ବନ୍ୟା ଆଣି କିପରି ମହାପ୍ରଭୁ ଦେଶର ଆବାଳବୃଦ୍ଧ ନରନାରୀଙ୍କୁ ମତାଇ ଥିଲେ, ଭାବାବେଶରେ ତାହା ଦର୍ଶନ କରିବା ସମୟରେ ସେହି ଅଦ୍ଭୁତ ସଂକୀର୍ତ୍ତନଦଳରେ ଏହାଙ୍କୁ (ବଳରାମଙ୍କୁ) ଦେଖିଥିଲି !''

**ଠାକୁରଙ୍କର ଦର୍ଶନଲାଭରେ ବଳରାମଙ୍କ ଉନ୍ନତି ଓ ଆଚରଣ :**

ଠାକୁରଙ୍କର ପୁଣ୍ୟଦର୍ଶନଲାଭରେ ବଳରାମଙ୍କର ମନ ନାନାରୂପରେ ପରିବର୍ତ୍ତିତ ହୋଇ ଆଧ୍ୟାତ୍ମିକ ରାଜ୍ୟରେ ଦ୍ରୁତପଦରେ ଅଗ୍ରସର ହୋଇଥିଲା । ବାହ୍ୟପୂଜା ଇତ୍ୟାଦି ବୈଧୀ ଭକ୍ତିର ସୀମା ଅତିକ୍ରମପୂର୍ବକ ସ୍ୱଳ୍ପକାଳରେ ହିଁ ସେ ଈଶ୍ୱରଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଓ ସଦସଦ୍‌ବିଚାରବାନ ହୋଇ ସଂସାରରେ ଅବସ୍ଥାନ କରିବାକୁ ସକ୍ଷମ ହୋଇଥିଲେ । ସ୍ତ୍ରୀ-ପୁତ୍ର-ଧନ-ଜନ ଇତ୍ୟାଦି ସର୍ବସ୍ୱ ଠାକୁରଙ୍କର ଶ୍ରୀପାଦପଦ୍ମରେ ନିବେଦନପୂର୍ବକ ଦାସ ସଦୃଶ ତାଙ୍କର ସଂସାରରେ ରହି ତାଙ୍କର ଆଜ୍ଞା ପ୍ରତିପାଳନ ଏବଂ ଠାକୁରଙ୍କର ପୂତସଙ୍ଗରେ ଯେତେଦୂର ସମ୍ଭବ କାଳ ଅତିବାହିତ କରିବା ହିଁ କ୍ରମେ ବଳରାମଙ୍କର ଜୀବନର ଉଦ୍ଦେଶ୍ୟ ହୋଇଉଠିଥିଲା । ଠାକୁରଙ୍କର କୃପାରେ ସ୍ୱୟଂ ଶାନ୍ତିର ଅଧିକାରୀ ହୋଇ ବଳରାମ ନିଶ୍ଚିନ୍ତ ରହିପାରି ନ ଥିଲେ । ନିଜ ଆତ୍ମୀୟ-ପରିଜନ, ବନ୍ଧୁବାନ୍ଧବ ପ୍ରଭୃତି ସମସ୍ତେ ଯେପରି ଠାକୁରଙ୍କ ନିକଟକୁ ଆସି ଯଥାର୍ଥ ସୁଖ ଆସ୍ୱାଦନରେ ପରିତୃପ୍ତ ହୁଅନ୍ତି, ସେବିଷୟରେ ସମୟ ଖୋଜି ସେ ସର୍ବଦା ସୁଯୋଗ ଆଣିଦେଉଥିଲେ । ସେହି ପ୍ରକାରରେ ବଳରାମଙ୍କର ଆଗ୍ରହରେ ବହୁ ବ୍ୟକ୍ତି ଠାକୁରଙ୍କର ଶ୍ରୀଚରଣ ଆଶ୍ରୟଲାଭରେ ଧନ୍ୟ ହୋଇଥିଲେ ।

**ବଳରାମଙ୍କ ଅହିଂସା ଧର୍ମ ସମ୍ବନ୍ଧୀୟ ମତର ପରିବର୍ତ୍ତନରେ ସଂଶୟ :**

ବାହ୍ୟପୂଜା ପରି ଅହିଂସାଧର୍ମପାଳନ ସମ୍ବନ୍ଧୀୟ ମତ ମଧ୍ୟ ବଳରାମଙ୍କର କିଛି କାଳ ପରେ ପରିବର୍ତ୍ତିତ ହୋଇଥିଲା । ଏହା ପୂର୍ବରୁ ଅନ୍ୟ ସମୟ କଥା ଦୂରେ ଥାଉ, ଉପାସନାକାଳରେ ମଧ୍ୟ ମଶକାଦି ଦ୍ୱାରା ଚିତ୍ତ ବିକ୍ଷିପ୍ତ ହେଲେ ସେ ସେମାନଙ୍କୁ ଆଘାତ କରିପାରୁ ନ ଥିଲେ । ତାଙ୍କର ମନେ ହେଉଥିଲା, ଏଥିରେ ସମୂହ ଧର୍ମହାନି ହେବ । ଏବେ ସେହିପରି ସମୟରେ ହଠାତ୍ ଦିନେ ତାଙ୍କ ମନରେ ଏପରି ଭାବ ଉଦୟ ହେଲା ଯେ, ସହସ୍ରଭାବରେ ବିକ୍ଷିପ୍ତ ଚିତ୍ତକୁ ଶ୍ରୀଭଗବାନଙ୍କଠାରେ ସମାହିତ କରିବା ହିଁ ଧର୍ମ, ମଶା ଆଦି କୀଟପତଙ୍ଗମାନଙ୍କର ଜୀବନରକ୍ଷା ନିମିତ୍ତ ତାହାକୁ ସବୁବେଳେ ନିଯୁକ୍ତ ରଖିବା ନୁହେଁ, ତେଣୁ ଦୁଇ ଚାରିଟା ମଶା ମାରି କିଛି ସମୟ ପାଇଁ ମଧ୍ୟ ଯଦି ତାଙ୍କଠାରେ ଚିତ୍ତ ସ୍ଥିର କରିହୁଏ ସେଥିରେ ଅଧର୍ମ ହେବା ଦୂରେ ଥାଉ ସମଧିକ ଲାଭ ହିଁ ହେବ । ସେ କହୁଥିଲେ, ''ଅହିଂସାଧର୍ମ ପ୍ରତିପାଳନରେ ମନର ଏତେକାଳର ଆଗ୍ରହ ସେହିପରି ଭାବନାରେ ପ୍ରତିହତ ହେଲେ ମଧ୍ୟ ଚିତ୍ତ ସେହି ବିଷୟରେ ସମ୍ପୂର୍ଣ୍ଣରୂପରେ ସନ୍ଦେହମୁକ୍ତ ହେଲା ନାହିଁ । ସୁତରାଂ ଠାକୁରଙ୍କୁ

ସେ ବିଷୟ ପଚାରିବାକୁ ଦକ୍ଷିଣେଶ୍ୱର ଗଲି । ଯିବା ସମୟରେ ଭାବିବାକୁ ଲାଗିଲି, ଅନ୍ୟମାନଙ୍କ ପରି ତାଙ୍କୁ କୌଣସି ଦିନ ମଶା ଇତ୍ୟାଦି ମାରିବା ଦେଖିଛି କି ? — ମନେ କିଛି ପଡ଼ିଲା ନାହିଁ; ସ୍ମୃତିର ଆଲୋକରେ ଯେତେଦୂର ଦେଖିଲି ସେଥିରେ ମୋ' ଅପେକ୍ଷା ତାଙ୍କୁ ଅଧିକ ଅହିଂସାବ୍ରତପରାୟଣ ବୋଲି ବୋଧ ହେଲା । ମନେ ପଡ଼ିଲା, ସବୁଜ କ୍ଷେତ୍ର ଉପର ଦେଇ ଅନ୍ୟକୁ ଚାଲିବା ଦେଖି ନିଜ ବକ୍ଷରେ ଆଘାତ ଅନୁଭବପୂର୍ବକ ସେ ଯନ୍ତ୍ରଣାରେ ଥରେ ଅଧୀର ହୋଇପଡ଼ିଥିଲେ— ତୃଣରାଜିମଧ୍ୟଗତ ଜୀବନୀଶକ୍ତି ଓ ଚୈତନ୍ୟ ଏତେ ସୁସ୍ପଷ୍ଟ ଏବଂ ପବିତ୍ର ଭାବରେ ତାଙ୍କର ଚକ୍ଷୁରେ ପ୍ରତିଭାସିତ ହୋଇଥିଲା ! ତେଣୁ ସ୍ଥିର କଲି ତାଙ୍କୁ ପଚାରିବା ଦରକାର ନାହିଁ, ମୋର ମନ ମୋତେ ପ୍ରତାରଣା କରିବାରୁ ପୂର୍ବୋକ୍ତ ଚିନ୍ତାର ଉଦୟ କରିଅଛି । ଯାହା ହେଉ, ତାଙ୍କୁ ଦର୍ଶନ କରି ଆସେ, ମନ ପବିତ୍ର ହେବ ।

### ଠାକୁରଙ୍କର ଅଦୃଷ୍ଟପୂର୍ବ ଆଚରଣ ଲକ୍ଷ୍ୟକରି ତାଙ୍କର ସନ୍ଦେହମୋଚନ :

''ଦକ୍ଷିଣେଶ୍ୱରରେ ପହଞ୍ଚି ଠାକୁରଙ୍କ ଗୃହଦ୍ୱାରରେ ଉପସ୍ଥିତ ହେଲି । କିନ୍ତୁ ଘର ମଧ୍ୟରେ ପ୍ରବେଶ କରିବା ପୂର୍ବରୁ ତାଙ୍କୁ ଯାହା କରୁଥିବାର ଦେଖିଲି, ସେଥିରେ ସ୍ତମ୍ଭିତ ହୋଇଗଲି । ଦେଖିଲି, ସେ ନିଜ ତକିଆରୁ ଛାରପୋକଗୁଡ଼ିକୁ ଧରି ସେଗୁଡ଼ିକୁ ବିନାଶ କରୁଛନ୍ତି ! ନିକଟରେ ଉପସ୍ଥିତ ହୋଇ ପ୍ରଣାମ କଲାମାତ୍ରେ ସେ କହିଲେ, 'ତକିଆଟାରେ ବହୁତ ଛାରପୋକ ହୋଇଛନ୍ତି, ଦିନରାତି ଦଂଶନ କରି ଚିତ୍ତବିକ୍ଷେପ ଏବଂ ନିଦ୍ରାରେ ବ୍ୟାଘାତ କରୁଛନ୍ତି, ସେଥିପାଇଁ ମାରି ପକାଉଛି ।' ପଚାରିବାକୁ ଆଉ କିଛି ବାକି ରହିଲା ନାହିଁ, ଠାକୁରଙ୍କ କଥା ଓ କାର୍ଯ୍ୟରେ ମନ ନିଃସଂଶୟ ହେଲା । କିନ୍ତୁ ସ୍ତମ୍ଭିତ ହୋଇ ଭାବିବାକୁ ଲାଗିଲି, ଗତ ଦୁଇ ତିନି ବର୍ଷକାଳ ଏହାଙ୍କ ନିକଟକୁ ଯେତେବେଳେ ସେତେବେଳେ ଆସିଛି, ଦିନରେ ଆସି ରାତିରେ ଫେରିଯାଇଛି, ସନ୍ଧ୍ୟାରେ ଆସି ରାତି ପ୍ରାୟ ଦୁଇ ପ୍ରହରରେ ବିଦାୟ ଗ୍ରହଣ କରିଛି । ପ୍ରତି ସପ୍ତାହରେ ତିନି-ଚାରି ଦିନ ଏପରି ଯିବା ଆସିବା କରିଛି, କିନ୍ତୁ ଦିନେ ହେଲେ ଏହାଙ୍କୁ ସେପରି କର୍ମ କରିବାର ଦେଖି ନାହିଁ—ତାହା କିପରି ହେଲା ? ସେତେବେଳେ ନିଜ ଅନ୍ତରରେ ଏବିଷୟର ମୀମାଂସା ଉଦୟ ହେବାରୁ ବୁଝିଲି, ଏହାପୂର୍ବରୁ ତାଙ୍କୁ ଏପରି କରିବାର ଦେଖିଥିଲେ ମୋର ଭାବ ନଷ୍ଟ ହୋଇ ତାଙ୍କ ଉପରେ ଅଶ୍ରଦ୍ଧା ଆସିଥାଆନ୍ତା—ପରମ କାରୁଣିକ ଠାକୁର ସେଥିପାଇଁ ଏହିପରି ଅନୁଷ୍ଠାନ ମୋ ସମ୍ମୁଖରେ ପୂର୍ବରୁ କେବେ କରି ନାହାନ୍ତି !''

### ଠାକୁରଙ୍କର ଭକ୍ତସଂଘ ଓ ବାଳକ ଭକ୍ତଗଣ :

ପୂର୍ବପରିଦୃଷ୍ଟ ଭକ୍ତଗଣଙ୍କ ବ୍ୟତୀତ ଅନ୍ୟ ଅନେକ ନରନାରୀ ଏହି ସମୟରେ ଠାକୁରଙ୍କୁ ଦର୍ଶନପୂର୍ବକ ଶାନ୍ତିଲାଭ ନିମିତ୍ତ ଦକ୍ଷିଣେଶ୍ୱର ଆସୁଥିଲେ ।

ସେମାନଙ୍କୁ ମଧ୍ୟ ସେ ସସ୍ନେହରେ ଗ୍ରହଣପୂର୍ବକ କାହାକୁ ଉପଦେଶ ପ୍ରଦାନରେ, ପୁଣି କାହାକୁ ଦିବ୍ୟ ଆବେଶରେ ସ୍ପର୍ଶ କରି କୃତାର୍ଥ କରିଥିଲେ । ସେହିପରି ଯେତେଦିନ ବିତୁଥିଲା ସେତେ ହିଁ ତାଙ୍କୁ ଆଶ୍ରୟ କରି ଏକ ବୃହତ୍ ଭକ୍ତସଂଘ ସ୍ୱତଃ ଗଢ଼ିଉଠୁଥିଲା । ତନ୍ମଧ୍ୟରେ ବାଳକ ଓ ଅବିବାହିତ ଯୁବକମାନଙ୍କର ଧର୍ମଜୀବନ ଗଠନରେ ସେ ଅଧିକତର ଲକ୍ଷ୍ୟ ରଖୁଥିଲେ । ସେହି ବିଷୟର କାରଣ ସମ୍ପର୍କରେ ସେ ଅନେକଥର କହିଛନ୍ତି, ‘‘ଷୋଳଅଣା ମନ ନ ଦେଲେ ଈଶ୍ୱରଙ୍କର ପୂର୍ଣ୍ଣଦର୍ଶନ କେବେ ଲାଭ ହୁଏ ନାହିଁ । ବାଳକମାନଙ୍କର ସମ୍ପୂର୍ଣ୍ଣ ମନ ସେମାନଙ୍କ ନିକଟରେ ଅଛି—ସ୍ତ୍ରୀ-ପୁତ୍ର, ଧନ-ସମ୍ପତ୍ତି, ମାନ-ଯଶ ପ୍ରଭୃତି ପାର୍ଥିବ ବିଷୟଗୁଡ଼ିକରେ ବିଛାଡ଼ି ହୋଇ ନାହିଁ; ଏବେଠାରୁ ଚେଷ୍ଟା କଲେ ଏମାନେ ଷୋଳଅଣା ମନ ଈଶ୍ୱରଙ୍କଠାରେ ଅର୍ପଣପୂର୍ବକ ତାଙ୍କର ଦର୍ଶନଲାଭରେ କୃତାର୍ଥ ହୋଇପାରିବେ—ସେଥିପାଇଁ ହିଁ ଏମାନଙ୍କୁ ଧର୍ମ ପଥରେ ପରିଚାଳିତ କରିବାକୁ ମୋର ଅଧିକ ଆଗ୍ରହ ।’’ ସୁଯୋଗ ଦେଖିଲେ ହିଁ ଠାକୁର ଏମାନଙ୍କ ପ୍ରତ୍ୟେକଙ୍କୁ ଏକାନ୍ତରେ ନେଇ ଯାଇ ଯୋଗଧ୍ୟାନାଦି ଧର୍ମର ଉଚ୍ଚସାଧନାଗୁଡ଼ିକର ଏବଂ ବିବାହବନ୍ଧନରେ ଆବଦ୍ଧ ନ ହୋଇ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନର ଉପଦେଶ ପ୍ରଦାନ କରୁଥିଲେ ! ଅଧିକାରୀ ନିର୍ବାଚନ କରି ଏମାନଙ୍କୁ ମଧ୍ୟ ସେ ଭିନ୍ନ ଭିନ୍ନ ଉପାସ୍ୟ ନିର୍ଦ୍ଦେଶ କରିଦେଉଥିଲେ ଏବଂ ଶାନ୍ତ ଦାସ୍ୟାଦି ଯେଉଁ ଭାବର ସମ୍ବନ୍ଧ ଇଷ୍ଟଦେବତାଙ୍କ ସହିତ ଜୋଡ଼ିଲେ ସେମାନେ ପ୍ରତ୍ୟେକେ ଉନ୍ନତିପଥରେ ସହଜରେ ଅଗ୍ରସର ହୋଇପାରିବେ ସେବିଷୟରେ ଉପଦେଶ ଦେଉଥିଲେ ।

**ଗୃହୀ ଭକ୍ତମାନଙ୍କୁ ଓ ସାଧାରଣ ନରନାରୀଙ୍କୁ**
**ଠାକୁର ଯେଉଁ ଭାବରେ ଉପଦେଶ ଦେଉଥିଲେ :**

ବାଳକମାନଙ୍କୁ ଶିକ୍ଷାପ୍ରଦାନରେ ଠାକୁରଙ୍କର ସମଧିକ ଆଗ୍ରହ କଥା ଶୁଣି କେହି ଯେପରି ନ ଭାବନ୍ତି ଯେ, ସଂସାରୀ ଗୃହସ୍ଥ ଭକ୍ତଗଣଙ୍କ ପ୍ରତି ତାଙ୍କର କୃପା ଓ କରୁଣା କମ୍ ଥିଲା । ଉଚ୍ଚାଙ୍ଗ ଧର୍ମତତ୍ତ୍ୱସକଳର ଅଭ୍ୟାସ ଓ ଅନୁଶୀଳନରେ ସେମାନଙ୍କ ଅନେକଙ୍କର ସମୟ ଓ ସାମର୍ଥ୍ୟ ନ ଥିବା ଦେଖି ସେ ସେମାନଙ୍କୁ ସେହିପରି କରିବାକୁ କହୁ ନ ଥିଲେ । କିନ୍ତୁ କାମ-କାଞ୍ଚନ-ଭୋଗ-ବାସନା ଧୀରେ ଧୀରେ କମାଇ ଭକ୍ତିମାର୍ଗ ଦେଇ ଯେପରି ସେମାନେ କାଳକ୍ରମେ ଈଶ୍ୱରଲାଭରେ ଧନ୍ୟ ହୋଇପାରିବେ, ସେପରି ଭାବରେ ସେମାନଙ୍କୁ ନିତ୍ୟ ପରିଚାଳିତ କରୁଥିଲେ । ଧନୀ ବ୍ୟକ୍ତିଙ୍କର ଘରେ ଦାସଦାସୀଙ୍କ ପରି ମମତା ବର୍ଜନପୂର୍ବକ ଈଶ୍ୱରଙ୍କର ସଂସାରରେ ଅବସ୍ଥାନ ଓ ନିଜ ନିଜ କର୍ତ୍ତବ୍ୟ ପାଳନ କରିବାକୁ ସେ ସେମାନଙ୍କୁ ସର୍ବ ପ୍ରଥମେ ଉପଦେଶ ଦେଉଥିଲେ । ‘‘ଗୋଟିଏ-ଦୁଇଟି ସନ୍ତାନ ଜନ୍ମ ହେବା ପରେ ଈଶ୍ୱରଙ୍କଠାରେ ଚିତ୍ତ ଅର୍ପଣ କରି ଭାଇ-ଭଉଣୀ ସଦୃଶ ସ୍ତ୍ରୀ-

ପୁରୁଷଙ୍କର ସଂସାରରେ ରହିବା କର୍ତ୍ତବ୍ୟ''—ଇତ୍ୟାଦି କହି ଯଥାସାଧ୍ୟ ବ୍ରହ୍ମଚର୍ଯ୍ୟ ରକ୍ଷା କରିବାକୁ ସେମାନଙ୍କୁ ଉତ୍ସାହିତ କରୁଥିଲେ । ତଦ୍‌ଭିନ୍ନ ସର୍ବଦା ସତ୍ୟପଥରେ ରହି ସମସ୍ତଙ୍କ ସହିତ ସରଳ ବ୍ୟବହାର କରିବାକୁ, ବିଳାସିତା ବର୍ଜନପୂର୍ବକ 'ମୋଟା ଭାତ, ମୋଟା ଲୁଗା' ପ୍ରାପ୍ତିରେ ସନ୍ତୁଷ୍ଟ ରହି ଶ୍ରୀଭଗବାନଙ୍କ ଆଡ଼କୁ ସର୍ବଦା ଦୃଷ୍ଟି ନିବଦ୍ଧ ରଖିବାକୁ ଏବଂ ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ଈଶ୍ୱରଙ୍କୁ ସ୍ମରଣ-ମନନ, ପୂଜା, ଜପ ଓ ସଂକୀର୍ତ୍ତନ ଆଦି କରିବାକୁ ତାଙ୍କୁ ପ୍ରବର୍ତ୍ତାଉ ଥିଲେ । ଗୃହସ୍ଥମାନଙ୍କ ମଧ୍ୟରେ ଯେଉଁମାନେ ସେସମସ୍ତ କରିବାକୁ ମଧ୍ୟ ଅସମର୍ଥ ବୁଝୁଥିଲେ, ସେମାନଙ୍କୁ ସନ୍ଧ୍ୟା ସମୟରେ ଏକାନ୍ତରେ ବସି ହାତତାଳି ଦେଇ ହରିନାମ କରିବାକୁ ଏବଂ ଆତ୍ମୀୟ ବନ୍ଧୁବାନ୍ଧବମାନଙ୍କ ସହିତ ଏକାଠି ହୋଇ ନାମ-ସଂକୀର୍ତ୍ତନର ଉପଦେଶ ଦେଉଥିଲେ । ସାଧାରଣ ନରନାରୀଗଣଙ୍କୁ ଏକତ୍ର ଉପଦେଶ ଦେବା ବେଳେ ଆମେ ତାଙ୍କୁ ଅନେକ ସମୟରେ ସେକଥା ଏହିପରି କହିବାକୁ ଶୁଣିଛୁ, କଳିରେ କେବଳ ନାରଦୀୟ-ଭକ୍ତି—ଉଚ୍ଚସ୍ୱରରେ ନାମକୀର୍ତ୍ତନ କଲେ ହିଁ ଜୀବ ଉଦ୍ଧାର ହେବେ; କଳିର ଜୀବ ଅନ୍ନଗତପ୍ରାଣ, ଅଳ୍ପାୟୁ, ସ୍ୱଳ୍ପଶକ୍ତି—ତେଣୁ ଧର୍ମଲାଭର ଏପରି ସହଜ ପଥ ସେମାନଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ହୋଇଅଛି । ପୁଣି ଯୋଗଧ୍ୟାନାଦି କଠୋର ସାଧନାମାର୍ଗର କଥାସବୁ ଶୁଣି ଯଦି ସେମାନେ ଭଗ୍ନୋତ୍ସାହ ହୁଅନ୍ତି, ସେଥିପାଇଁ ବେଳେ ବେଳେ କହୁଥିଲେ, ''ଯେଉଁମାନେ ସନ୍ନ୍ୟାସୀ ହୋଇଛନ୍ତି ସେମାନେ ତ ଭଗବାନଙ୍କୁ ଡାକିବେ ନିଶ୍ଚୟ । କାରଣ, ସେଥିପାଇଁ ତ ସେମାନେ ସଂସାରର ସମସ୍ତ କର୍ତ୍ତବ୍ୟ ତ୍ୟାଗ କରି ଆସିଛନ୍ତି—ତେଣୁ ସେମାନଙ୍କର ସେପରି କରିବାରେ ବାହାଦୁରୀ ବା ଅସାଧାରଣତ୍ୱ କ'ଣ ଅଛି ? କିନ୍ତୁ ଯିଏ ସଂସାରରେ ପିତା, ମାତା, ସ୍ତ୍ରୀ, ପୁତ୍ରାଦିଙ୍କ ପ୍ରତି କର୍ତ୍ତବ୍ୟର ବିଷମ ଭାର ସ୍କନ୍ଧରେ ବହନ କରି ଚାଲୁ ଚାଲୁ ଥରେ ମଧ୍ୟ ତାଙ୍କର ସ୍ମରଣ-ମନନ କରେ, ଈଶ୍ୱର ତାଙ୍କ ପ୍ରତି ବିଶେଷ ପ୍ରସନ୍ନ ହୋଇଥାଆନ୍ତି, ଭାବନ୍ତି, 'ଏତେ ବଡ଼ ବୋଝ କାନ୍ଧରେ ଥିବା ସତ୍ତ୍ୱେ ସେ ମୋତେ ଅଳ୍ପ ହେଉ ପଛେ ଡାକିପାରୁଛି, ଏହା କିଛି କମ୍ ବାହାଦୁରୀ ନୁହେଁ, ଏହି ବ୍ୟକ୍ତି ବୀରଭକ୍ତ' ।''

**ନରେନ୍ଦ୍ରଙ୍କୁ ଠାକୁରଙ୍କର ସମସ୍ତ ଭକ୍ତଙ୍କ ଅପେକ୍ଷା ଉଚ୍ଚାସନ ପ୍ରଦାନ :**

ନବାଗତ ଶ୍ରେଣୀଭୁକ୍ତ ନରନାରୀମାନଙ୍କର ତ' କଥା ନାହିଁ, ପୂର୍ବପରିଦୃଷ୍ଟ ଭକ୍ତମାନଙ୍କ ଭିତରେ ମଧ୍ୟ ଠାକୁର ନରେନ୍ଦ୍ରନାଥଙ୍କୁ କେତେ ଉଚ୍ଚ ଆସନ ପ୍ରଦାନ କରୁଥିଲେ ତାହା କହିହେବ ନାହିଁ । ଏମାନଙ୍କ ମଧ୍ୟରେ କେତେଜଣଙ୍କୁ ଦେଖାଇ ସେ କହୁଥିଲେ, ଏମାନେ ଈଶ୍ୱରକୋଟୀ, ଅଥବା ଶ୍ରୀଭଗବାନଙ୍କର ବିଶେଷ କାର୍ଯ୍ୟ ସାଧନ କରିବା ନିମିତ୍ତ ସଂସାରରେ ଜନ୍ମ ନେଇଛନ୍ତି । ସେହି କେତେକ ବ୍ୟକ୍ତିଙ୍କ ସହିତ ନରେନ୍ଦ୍ରଙ୍କର ତୁଳନା କରି ସେ ଦିନେ ଆମମାନଙ୍କୁ କହିଥିଲେ,

"ନରେନ୍ଦ୍ର ଯେପରି ସହସ୍ରଦଳ କମଳ; ଏହି କେତେଜଣଙ୍କୁ ସେହି ଜାତୀୟ ପୁଷ୍ପ ବୋଲି କୁହାଗଲେ ମଧ୍ୟ, ଏମାନଙ୍କ ମଧ୍ୟରେ କେହି ଦଶ, କେହି ପନ୍ଦର, କେହିବା ଅତିବେଶୀ ହେଲେ କୋଡ଼ିଏଦଳବିଶିଷ୍ଟ ।" ଅନ୍ୟ ସମୟରେ କହିଥିଲେ, "ଏତେ ଲୋକ ଏଠାକୁ ଆସିଲେ, ନରେନ୍ଦ୍ର ପରି ଜଣେ ମଧ୍ୟ ଆଉ ଆସିଲେ ନାହିଁ ।" ଅବଶ୍ୟ ଏହା ଦେଖାଯାଉଥିଲା ଯେ, ଠାକୁରଙ୍କର ଅଦ୍ଭୁତ ଜୀବନର ଅଲୌକିକ କାର୍ଯ୍ୟସମୂହର ଏବଂ ପ୍ରତ୍ୟେକ କଥାର ଯଥାଯଥ ମର୍ମ ଗ୍ରହଣ ଓ ପ୍ରକାଶ କରିବାକୁ ନରେନ୍ଦ୍ର ଯେତେଦୂର ସମର୍ଥ ଥିଲେ, ଅନ୍ୟ କେହି ସେପରି ନ ଥିଲେ । ସେହି ସମୟରେ ନରେନ୍ଦ୍ରଙ୍କ ନିକଟରୁ ଠାକୁରଙ୍କର ସବୁ କଥା ଶୁଣି ଆମେ ସମସ୍ତେ ବେଳେ ବେଳେ ସ୍ତମ୍ଭିତ ହୋଇ ଭାବୁଥିଲେ, ସତେ ତ ସେହି ସମସ୍ତ କଥା ଆମେ ମଧ୍ୟ ଠାକୁରଙ୍କ ନିକଟରୁ ଶୁଣିଛୁ, ମାତ୍ର ସେସବୁ ଭିତରେ ଯେ ଏତେ ଗଭୀର ଅର୍ଥ ରହିଅଛି ତାହା ବୁଝିପାରି ନାହୁଁ ! ଦୃଷ୍ଟାନ୍ତସ୍ୱରୂପ ସେପରି ଗୋଟିଏ କଥା ଉଲ୍ଲେଖ କରୁଅଛୁ :

### ଠାକୁରଙ୍କୁ ନରେନ୍ଦ୍ରଙ୍କର ସର୍ବାପେକ୍ଷା ଅଧିକ ବୁଝିପାରିବାର ଦୃଷ୍ଟାନ୍ତ—'ଶିବଜ୍ଞାନରେ ଜୀବସେବା' :

୧୮୮୪ ମସିହାର କୌଣସି ସମୟରେ ଆମମାନଙ୍କର ଜନୈକ ବନ୍ଧୁ ଦକ୍ଷିଣେଶ୍ୱରରେ ପହଞ୍ଚି ଦେଖିଲେ, ଠାକୁର ଘର ଭିତରେ ଭକ୍ତଗଣପରିବୃତ ହୋଇ ବସିଛନ୍ତି । ଶ୍ରୀଯୁକ୍ତ ନରେନ୍ଦ୍ର ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ବିଭିନ୍ନ ପ୍ରକାର ସଦାଳାପ ସହିତ ମଝିରେ ମଝିରେ ଥଟ୍ଟା ତାମସା ବି ଚାଲୁଛି । କଥାପ୍ରସଙ୍ଗରେ ବୈଷ୍ଣବ ଧର୍ମ କଥା ଉଠିଲା ଏବଂ ଏହି ମତର ସାରମର୍ମ ସମବେତ ସମସ୍ତଙ୍କୁ ସଂକ୍ଷେପରେ ବୁଝାଇ ଠାକୁର କହିଲେ, "ତିନୋଟି ବିଷୟ ପାଳନ କରିବାକୁ ନିରନ୍ତର ଯତ୍ନବାନ ରହିବାକୁ ଏହି ମତ ଉପଦେଶ ଦେଇଥାଏ—ନାମରେ ରୁଚି, ଜୀବରେ ଦୟା, ବୈଷ୍ଣବ-ପୂଜନ । ଯିଏ ନାମ ସେ ହିଁ ଈଶ୍ୱର—ନାମ ଓ ନାମୀ ଅଭେଦ ଜାଣି ସର୍ବଦା ଅନୁରାଗର ସହିତ ନାମ କରିବ; ଭକ୍ତ ଓ ଭଗବାନ, କୃଷ୍ଣ ଓ ବୈଷ୍ଣବ ଅଭେଦ ଜାଣି ସର୍ବଦା ସାଧୁ-ଭକ୍ତମାନଙ୍କୁ ଶ୍ରଦ୍ଧା, ପୂଜା ଓ ବନ୍ଦନା କରିବ; ଏବଂ କୃଷ୍ଣଙ୍କର ହିଁ ଜଗତ-ସଂସାର ଏକଥା ହୃଦୟରେ ଧାରଣ କରି "ସର୍ବ ଜୀବରେ ଦୟା" (ପ୍ରକାଶ କରିବ) । 'ସର୍ବ ଜୀବରେ ଦୟା' ପର୍ଯ୍ୟନ୍ତ କହି ସେ ସହସା ସମାଧିସ୍ଥ ହୋଇପଡ଼ିଲେ ! କେତେ ସମୟ ପରେ ଅର୍ଦ୍ଧବାହ୍ୟ ଅବସ୍ଥାରେ କହିବାକୁ ଲାଗିଲେ, "ଜୀବରେ ଦୟା—ଜୀବରେ ଦୟା ? ଦୂର୍ ଶଳା ! କୀଟାଣୁକୀଟ ତୁ ଜୀବକୁ ଦୟା କରିବୁ ? ଦୟା କରିବାକୁ ତୁ କିଏ ? ନା, ନା, ଜୀବରେ ଦୟା ନୁହେଁ—ଶିବଜ୍ଞାନରେ ଜୀବ ସେବା !"

## ଠାକୁରଙ୍କର ସେହି କଥାରେ ନରେନ୍ଦ୍ରଙ୍କର ଅଦ୍ଭୁତ ଆଲୋକ ଦର୍ଶନ ଏବଂ ତାହା ବୁଝାଇ କହିବା :

ଭାବାବିଷ୍ଟ ଠାକୁରଙ୍କର ଏହି କଥା ସମସ୍ତେ ଶୁଣିଲେ ଠିକ୍, କିନ୍ତୁ ତାର ଗୁଢ଼ ମର୍ମ କେହି ସେତେବେଳେ ବୁଝିବାକୁ ଓ ଧାରଣା କରିବାକୁ ସକ୍ଷମ ହୋଇ ନ ଥିଲେ । ଏକମାତ୍ର ନରେନ୍ଦ୍ରନାଥ ହିଁ ସେଦିନ ଠାକୁରଙ୍କର ଭାବଭଙ୍ଗ ପରେ ବାହାରେ ଆସି କହିଲେ, ‘‘କି ଅଦ୍ଭୁତ ଆଲୋକ ଆଜି ଠାକୁରଙ୍କ କଥାରେ ଦେଖିବାକୁ ପାଇଲି ! ଶୁଷ୍କ, କଠୋର ଓ ନିର୍ମମ ବୋଲି ପ୍ରସିଦ୍ଧ ବେଦାନ୍ତଜ୍ଞାନକୁ ଭକ୍ତି ସହିତ ସମ୍ମିଳିତ କରି କେତେ ସହଜ, ସରସ ଓ ମଧୁର ଆଲୋକରେ ହିଁ ପ୍ରଦର୍ଶନ କଲେ ! ଅଦ୍ୱୈତଜ୍ଞାନ ଲାଭ କରିବାକୁ ହେଲେ ସଂସାର ଓ ଲୋକସଙ୍ଗ ସର୍ବତୋଭାବରେ ବର୍ଜନ କରି ବଣକୁ ଯିବାକୁ ହେବ ଏବଂ ଭକ୍ତି ଭଲପାଇବା ପ୍ରଭୃତି କୋମଳ ଭାବସମୂହକୁ ହୃଦୟରୁ ସବଳେ ଉତ୍ପାଟିତ କରି ଚିରକାଳ ପାଇଁ ଦୂରକୁ ନିକ୍ଷେପ କରିବାକୁ ହେବ — ଏହି କଥା ହିଁ ଏତେ କାଳ ଧରି ଶୁଣିଆସିଛି । ଫଳରେ ସେହିଭାବରେ ତାହା ଲାଭ କରିବାକୁ ଯାଇ ଜଗତ୍–ସଂସାର ଓ ତନ୍ମଧଗତ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଧର୍ମପଥର ଅନ୍ତରାୟ ଜାଣି ସେମାନଙ୍କ ଉପରେ ଘୃଣାର ଉଦୟ ହୋଇ ସାଧକଙ୍କର ବିପଥରେ ଯିବାର ବିଶେଷ ସମ୍ଭାବନା । କିନ୍ତୁ ଠାକୁର ଆଜି ଭାବାବେଶରେ ଯାହା କହିଲେ, ସେଥିରୁ ବୁଝାଗଲା — ବଣର ବେଦାନ୍ତକୁ ଘରକୁ ଆଣିହୁଏ, ସଂସାରର ସମସ୍ତ କାର୍ଯ୍ୟରେ ଏହାକୁ ଅବଲମ୍ବନ କରି ହୁଏ । ମାନବ ଯାହା କରୁଛି, ସେ ସବୁ କରୁଥାଉ ସେଥିରେ କ୍ଷତି ନାହିଁ, କେବଳ ପ୍ରାଣର ସହିତ ଏହି କଥା ସର୍ବାଗ୍ରେ ବିଶ୍ୱାସ ଓ ଧାରଣା କଲେ ହିଁ ହେଲା ଯେ, ଈଶ୍ୱର ହିଁ ଜୀବ ଏବଂ ଜଗତରୂପରେ ତାଙ୍କ ସମ୍ମୁଖରେ ପ୍ରକାଶିତ ରହିଅଛନ୍ତି । ଜୀବନର ପ୍ରତି ମୁହୂର୍ତ୍ତରେ ସେ ଯେଉଁମାନଙ୍କ ସମ୍ପର୍କରେ ଆସୁଛି, ଯେଉଁମାନଙ୍କୁ ଭଲ ପାଉଛି, ଯେଉଁମାନଙ୍କୁ ଶ୍ରଦ୍ଧା, ସମ୍ମାନ ଅଥବା ଦୟା କରୁଛି, ସେମାନେ ସମସ୍ତେ ହିଁ ତାଙ୍କର ଅଂଶ — ସେ ନିଜେ ହିଁ ସମସ୍ତଙ୍କ ରୂପରେ ବିଦ୍ୟମାନ ଅଛନ୍ତି । ସଂସାରର ସବୁ ବ୍ୟକ୍ତିଙ୍କୁ ଯଦି ସେ ଏହିପରି ଶିବଜ୍ଞାନ କରିପାରେ, ତା’ ହେଲେ ନିଜକୁ ବଡ଼ ଭାବି ସେମାନଙ୍କ ପ୍ରତି ରାଗ, ଦ୍ୱେଷ, ଦମ୍ଭ ଅଥବା ଦୟା କରିବାକୁ ତାହାର ସାଧ୍ୟ କେଉଁଠି ? ଏହିପରି ଶିବଜ୍ଞାନରେ ଜୀବର ସେବା କରୁ କରୁ ଚିତ୍ତ ଶୁଦ୍ଧ ହୋଇ ସେ ସ୍ୱଳ୍ପକାଳ ମଧରେ ନିଜକୁ ମଧ ଚିଦାନନ୍ଦମୟ ଈଶ୍ୱରଙ୍କର ଅଂଶ, ଶୁଦ୍ଧବୁଦ୍ଧମୁକ୍ତସ୍ୱଭାବ ବୋଲି ଧାରଣା କରିପାରିବ ।

‘‘ଠାକୁରଙ୍କର ସେହି କଥାରେ, ଭକ୍ତିପଥରେ ମଧ ବିଶେଷ ଆଲୋକ ଦେଖିବାକୁ ମିଳେ । ସର୍ବଭୂତରେ ଈଶ୍ୱରଙ୍କୁ ଯେତେଦିନ ଦେଖା ନ ପାଉ, ସେତେଦିନ ପର୍ଯ୍ୟନ୍ତ ଯଥାର୍ଥ ଭକ୍ତି ବା ପରାଭକ୍ତି–ଲାଭ ସାଧକ ପକ୍ଷରେ ସୁଦୂରପରାହତ ହୋଇଥାଏ । ଶିବ ବା ନାରାୟଣ ଜ୍ଞାନରେ ଜୀବର ସେବା କଲେ ଯାଇ

ଈଶ୍ୱରଙ୍କୁ ସମସ୍ତଙ୍କ ଭିତରେ ଦର୍ଶନ ପୂର୍ବକ ଯଥାର୍ଥ ଭକ୍ତିଲାଭ କରି ଭକ୍ତସାଧକ ସ୍ୱଳ୍ପକାଳରେ ହିଁ କୃତକୃତାର୍ଥ ହେବେ, ଏଥିରେ କୌଣସି ସନ୍ଦେହ ନାହିଁ । କର୍ମ ବା ରାଜଯୋଗ ଅବଲମ୍ବନରେ ଯେଉଁ ସାଧକମାନେ ଅଗ୍ରସର ହେଉଛନ୍ତି ସେମାନେ ମଧ୍ୟ ସେହି କଥାରେ ବିଶେଷ ଆଲୋକ ପାଇବେ । କାରଣ, କର୍ମ ନ କରି ଦେହୀ ଯେତେବେଳେ ଗୋଟିଏ ମୁହୂର୍ତ୍ତ ମଧ୍ୟ ରହିପାରେ ନାହିଁ, ସେତେବେଳେ ଶିବଜ୍ଞାନରେ ଜୀବସେବାରୂପକ କର୍ମାନୁଷ୍ଠାନ ହିଁ ଯେ କର୍ତ୍ତବ୍ୟ ଏବଂ ତାହା କଲେ ହିଁ ସେମାନେ ନିଜ ଲକ୍ଷ୍ୟରେ ଯଥାଶୀଘ୍ର ପହଞ୍ଚିବେ, ଏକଥା କହିବା ଅନାବଶ୍ୟକ । ଯାହା ହେଉ, ଭଗବାନ ଯଦି କେବେ ସୁଯୋଗ ଦିଅନ୍ତି ତା' ହେଲେ ଆଜି ଯାହା ଶୁଣିଲି ଏହି ଅଦ୍ଭୁତ ସତ୍ୟ ସଂସାରରେ ସର୍ବତ୍ର ପ୍ରଚାର କରିବି—ପଣ୍ଡିତ, ମୂର୍ଖ, ଧନୀ, ଦରିଦ୍ର, ବ୍ରାହ୍ମଣ, ଚଣ୍ଡାଳ, ସମସ୍ତଙ୍କୁ ଶୁଣାଇ ମୋହିତ କରିବି !''

ଲୋକୋତ୍ତର ଠାକୁର ଏହିପରି ସମାଧିରାଜ୍ୟରେ ନିରନ୍ତର ପ୍ରବିଷ୍ଟ ହୋଇ ଜ୍ଞାନ, ପ୍ରେମ, ଯୋଗ ଓ କର୍ମ ସମ୍ବନ୍ଧରେ ଅଦୃଷ୍ଟପୂର୍ବ ଆଲୋକ ପ୍ରତିନିୟତ ଆନୟନପୂର୍ବକ ଜୀବନପଥ ସମୁଜ୍ଜ୍ୱଳ କରୁଥିଲେ । କିନ୍ତୁ ଦୁର୍ଭାଗ୍ୟ ଯେ ଆମେ ତାଙ୍କ କଥା ସେତେବେଳେ ଧାରଣା କରିପାରି ନ ଥିଲୁ । ମନସ୍ୱୀ ନରେନ୍ଦ୍ରନାଥ ହିଁ କେବଳ ସେହି ସବୁ ଦେବବାଣୀ ଯଥାସାଧ୍ୟ ହୃଦୟଙ୍ଗମ କରି ବେଳେ ବେଳେ ତାହା ପ୍ରକାଶକରି ଆମମାନଙ୍କୁ ସ୍ତମ୍ଭିତ କରୁଥିଲେ ।

# ଦଶମ ଅଧ୍ୟାୟ

## ପାନିହାଟିର ମହୋତ୍ସବ

### ନରେନ୍ଦ୍ରଙ୍କର ଶିକ୍ଷକତା ପଦଗ୍ରହଣ :

ପରିବାରବର୍ଗଙ୍କର ଗ୍ରାସାଚ୍ଛାଦନର କଷ୍ଟ ନିବାରଣ ପାଇଁ ଅବଶେଷରେ ନରେନ୍ଦ୍ରନାଥ କିପରି ଠାକୁରଙ୍କର ଶରଣାପନ୍ନ ହୋଇ 'ମୋଟା ଭାତ ମୋଟା ଲୁଗାର ଅଭାବ ରହିବ ନାହିଁ''ରୂପକ ବରଲାଭ କରିଥିଲେ, ସେକଥା ଆମେ ଏହା ପୂର୍ବରୁ କହିଅଛୁ । ଏହାପରଠାରୁ ତାଙ୍କର ଅବସ୍ଥା କ୍ରମଶଃ ପରିବର୍ତ୍ତନ ହୋଇଥିଲା ଏବଂ ସ୍ୱଚ୍ଛଳ ନ ହେଲେ ମଧ୍ୟ ପୂର୍ବପରି ଦାରୁଣ ଅଭାବ ସଂସାରରେ ଆଉ କେବେ ହୋଇ ନ ଥିଲା । ଏହି ଘଟଣାର ଅଳ୍ପ ଦିନ ପରେ କଲିକତାର ଚମ୍ପାତଲା ନାମକ ପଲ୍ଲୀରେ ମେଟ୍ରୋପଲିଟାନ ବିଦ୍ୟାଳୟର ଗୋଟିଏ ଶାଖା ସ୍ଥାପିତ ହେଲା ଏବଂ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଅନୁଗ୍ରହରେ ସେ ଏହି ଶାଖାରେ ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତ ହେଲେ । ସମ୍ଭବତଃ ୧୮୮୫ ମସିହା ମେ' ମାସରୁ ସେ ତିନି ଚାରିମାସ ପର୍ଯ୍ୟନ୍ତ ସେଠାରେ ଶିକ୍ଷକତା କରିଥିଲେ ।

### ଜ୍ଞାତିମାନଙ୍କର ଶତ୍ରୁତା, ଠାକୁରଙ୍କର ରୋହିଣୀ ରୋଗ, ଶିକ୍ଷକତା ପରିତ୍ୟାଗ :

ସାଂସାରିକ ଅବସ୍ଥାର ସାମାନ୍ୟ ଉନ୍ନତି ହେଲେ ମଧ୍ୟ ଜ୍ଞାତିବର୍ଗଙ୍କର ଶତ୍ରୁତା ଆଚରଣ ଯୋଗୁଁ ନରେନ୍ଦ୍ରଙ୍କୁ ଏହି ସମୟରେ ବ୍ୟତିବ୍ୟସ୍ତ ହେବାକୁ ପଡ଼ିଥିଲା । ସମୟ ବୁଝି ସେମାନେ ତାଙ୍କର ପୈତୃକ ଗୃହର ଭଲ ଭଲ ଘର ଏବଂ ସ୍ଥାନଗୁଡ଼ିକୁ କଳେ-ବଳେ-କୌଶଳରେ ଦଖଲ କରିନେଲେ । ସେଥିପାଇଁ ତାଙ୍କୁ କିଛିଦିନ ପାଇଁ ଏହି ଘର ତ୍ୟାଗକରି ରାମତନୁ ବସୁ ଲେନ୍‌ସ୍ଥ ତାଙ୍କର ମାତାମହୀଙ୍କ ଘରେ ବାସ କରିବାକୁ ପଡ଼ିଥିଲା ଏବଂ ନ୍ୟାଯ୍ୟ ଅଧିକାର ପାଇବା ପାଇଁ ସେମାନଙ୍କ ବିରୁଦ୍ଧରେ ହାଇକୋର୍ଟରେ ଅଭିଯୋଗ ଦାଖଲ କରି ସମସ୍ତ ବିଷୟରେ ବନ୍ଦୋବସ୍ତ କରିବାକୁ ହୋଇଥିଲା । ତାଙ୍କ ପିତାଙ୍କର ବନ୍ଧୁ ଏଟର୍ଣ୍ଣୀ ନିମାଇଁଚରଣ ବସୁ ମହାଶୟ ତାଙ୍କୁ ଏଥିରେ ବିଶେଷ ସହାୟତା କରିଥିଲେ । ମକଦ୍ଦମାରେ ଅନେକ ସମୟ ଅତିବାହିତ କରିବାକୁ ହେବ ବୁଝି ଏବଂ.ଓକିଲାତି (ବି.ଏଲ୍.) ପରୀକ୍ଷା ଦେବା ସମୟ ନିକଟବର୍ତ୍ତୀ ଜାଣି ସେ ୧୮୮୫ ମସିହା ଅଗଷ୍ଟମାସରେ ଶିକ୍ଷକତା କର୍ମ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ଏବିଷୟରେ ଅନ୍ୟ ଗୋଟିଏ ଗୁରୁତର କାରଣ ମଧ୍ୟ ଥିଲା — ଠାକୁର ଏତିକିବେଳେ ରୋହିଣୀ (ଗଳାରୋଗ) ରୋଗରେ ଆକ୍ରାନ୍ତ ହୋଇଥିଲେ ଏବଂ ଏହା କ୍ରମଶଃ ବୃଦ୍ଧି ହେବାରୁ ନରେନ୍ଦ୍ର ନିଜେ ଉପସ୍ଥିତ

ରହି ତାଙ୍କର ଚିକିତ୍ସା ଓ ସେବା ଆଦିର ବନ୍ଦୋବସ୍ତ କରିବାର ପ୍ରୟୋଜନ ଅନୁଭବ କରିଥିଲେ ।

**ଅଧିକ ବରଫ ବ୍ୟବହାର ଯୋଗୁଁ ଠାକୁରଙ୍କର ଅସୁସ୍ଥତା :**

୧୮୮୫ ମସିହାର ଅତିଶୟ ଗ୍ରୀଷ୍ମ ପ୍ରବାହ ଯୋଗୁଁ ଠାକୁରଙ୍କୁ ବିଶେଷ କଷ୍ଟ ପାଇବା ଦେଖି ଭକ୍ତମାନେ ତାଙ୍କୁ ବରଫ ବ୍ୟବହାର କରିବାକୁ ଅନୁରୋଧ କରିଥିଲେ । ବରଫ ଖାଇ ତାଙ୍କୁ ସ୍ୱଚ୍ଛନ୍ଦ ବୋଧ ହେବା ଦେଖି ଅନେକ ଭକ୍ତ ଏହି ସମୟରେ ଦକ୍ଷିଣେଶ୍ୱରକୁ ବରଫ ଆଣିବାକୁ ଲାଗିଲେ ଏବଂ ସର୍ବତରେ ଏହା ସର୍ବଦା ବ୍ୟବହାର କରି ସେ ବାଳକ ପରି ଆନନ୍ଦ କରିବାକୁ ଲାଗିଲେ । କିନ୍ତୁ ମାସେ ଦୁଇମାସ ଏପରି କରିବାରୁ ତାଙ୍କର ଗଳାରେ ବେଦନା ଉପସ୍ଥିତ ହେଲା । ବୋଧହୁଏ ଚୈତ୍ର ମାସ ଶେଷ ଅଥବା ବୈଶାଖର ପ୍ରାରମ୍ଭରେ ସେ ସେହି ପ୍ରକାର ବେଦନା ପ୍ରଥମେ ଅନୁଭବ କରିଥିଲେ ।

**ଅଧିକ କଥା କହିବାରୁ ଓ ଭାବାବେଶରେ ରୋଗ ବୃଦ୍ଧି :**

ମାସକରୁ ଅଧିକ ସମୟ ଅତୀତ ହେଲେ ମଧ୍ୟ ଏହି ଯନ୍ତ୍ରଣାର ଉପଶମ ହେଲା ନାହିଁ ଏବଂ ଜ୍ୟେଷ୍ଠ ମାସର ଅଧା ସମୟ ଯାଇଛି କି ନାହିଁ ଏହା ଏକ ନୂତନ ଆକାର ଧାରଣ କଲା—ଅଧିକ କଥା କହିଲେ ଏବଂ ସମାଧିସ୍ଥ ହେବା ପରେ ଏହାର ବୃଦ୍ଧି ହେବାକୁ ଲାଗିଲା । ଥଣ୍ଡା ଲାଗି ତାଙ୍କର କଣ୍ଠ ଓ ତାଲୁଦେଶ ଈଷତ୍ ସ୍ଫୀତ ହୋଇଛି ଭାବି ପ୍ରଥମେ ସାମାନ୍ୟ ପ୍ରଲେପର ବ୍ୟବସ୍ଥା ହେଲା । କିନ୍ତୁ କିଛିଦିନ ଔଷଧପ୍ରୟୋଗ କରି ମଧ୍ୟ ଫଳ ମିଳିଲା ନାହିଁ ଦେଖି ଜନୈକ ଭକ୍ତ ବହୁବଜାରର ରାଖାଲ ଡାକ୍ତରଙ୍କର ଏପରି ରୋଗ ଆରୋଗ୍ୟ କରିବା ଦକ୍ଷତାର କଥା ଶୁଣି ତାଙ୍କୁ ଡାକି ଆଣିଲେ । ଡାକ୍ତର ରୋଗନିର୍ଣ୍ଣୟ କରି ଗଳାର ଭିତରେ ଓ ବାହାରେ ଲଗାଇବା ପାଇଁ ଔଷଧ ଓ ମାଲିସ୍‌ର ବ୍ୟବସ୍ଥା କଲେ ଏବଂ ଠାକୁର ଯେପରି କିଛିଦିନ ଅଧିକ କଥା ନ କହନ୍ତି ଓ ବାରମ୍ବାର ସମାଧିସ୍ଥ ନ ହୁଅନ୍ତି, ସେହି ବିଷୟରେ ଯଥାସମ୍ଭବ ଲକ୍ଷ୍ୟ ରଖିବାକୁ ଆମକୁ କହିଲେ ।

**ପାନିହାଟିର ମହୋତ୍ସବର ଇତିହାସ :**

କ୍ରମେ ଜ୍ୟେଷ୍ଠ ମାସର ଶୁକ୍ଳା ତ୍ରୟୋଦଶୀ ଆଗତପ୍ରାୟ ହେଲା । କଲିକତାର କିଛି ମାଇଲ ଉତ୍ତରରେ ଅବସ୍ଥିତ ଗଙ୍ଗାତୀରସ୍ଥ ପାନିହାଟି ଗ୍ରାମରେ ପ୍ରତିବର୍ଷ ଏହି ଦିନରେ ବୈଷ୍ଣବ ସମ୍ପ୍ରଦାୟର ଏକ ବଡ଼ ମେଳା ହେଉଥିଲା । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ପ୍ରଧାନ ପାର୍ଷଦଗଣଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀରଘୁନାଥଦାସ ଗୋସ୍ୱାମୀଙ୍କର ଜ୍ୱଳନ୍ତ ତ୍ୟାଗ ବୈରାଗ୍ୟର କଥା ବଙ୍ଗଳାରେ ଚିରସ୍ମରଣୀୟ ହୋଇ ରହିଅଛି । ପରମା ସୁନ୍ଦରୀ ସ୍ତ୍ରୀ ଓ ଅତୁଳ ବୈଭବ ତ୍ୟାଗପୂର୍ବକ ପିତାଙ୍କର ଏକମାତ୍ର

ପୁତ୍ର ରଘୁନାଥ ଶ୍ରୀଚୈତନ୍ୟଦେବଙ୍କ ଚରଣାଶ୍ରୟ-ମାନସରେ ଯେତେବେଳେ ପ୍ରଥମେ ଶାନ୍ତିପୁରରେ ଆସି ଉପସ୍ଥିତ ହେଲେ, ସେତେବେଳେ ସେ ତାଙ୍କୁ 'ମର୍କଟ ବୈରାଗ୍ୟ'[୧] ପରିତ୍ୟାଗ କରି କିଛିକାଳ ପାଇଁ ଗୃହରେ ଅବସ୍ଥାନ କରିବାକୁ ଆଦେଶ ଦେଲେ । ଶ୍ରୀରଘୁନାଥ, ମହାପ୍ରଭୁଙ୍କର ସେହି ଆଦେଶ ଶିରୋଧାର୍ଯ୍ୟ କରି ଗୃହକୁ ଫେରି ଆସିଲେ ଏବଂ ସଂସାର ତ୍ୟାଗ କରିବାର ପ୍ରବଳ ବାସନା ଅନ୍ତରରେ ଲୁଚାଇ ରଖି ଇତରସାଧାରଣଙ୍କ ପରି ବିଷୟ କାର୍ଯ୍ୟର ପରିଚାଳନା ପ୍ରଭୃତି ସାଂସାରିକ ସମସ୍ତ ବିଷୟରେ ପିତା ଏବଂ ପିତୃବ୍ୟଙ୍କୁ ସାହାଯ୍ୟ କରିବାକୁ ଲାଗିଲେ । ସେହିପରି ଅବସ୍ଥାନ କରୁଥିଲେ ମଧ୍ୟ ସେ ମଝିରେ ମଝିରେ ଶ୍ରୀଚୈତନ୍ୟଙ୍କ ପାର୍ଷଦଗଣଙ୍କୁ ନ ଦେଖି ରହିପାରୁ ନ ଥିଲେ ଏବଂ ପିତାଙ୍କର ଅନୁମତି ନେଇ ବେଳେ ବେଳେ ସେମାନଙ୍କ ନିକଟରେ ଉପସ୍ଥିତ ହୋଇ କିଛିଦିନ ସେମାନଙ୍କ ପବିତ୍ର ସଙ୍ଗରେ ଦିନ ଅତିବାହିତ କରି ଘରକୁ ଫେରୁଥିଲେ । ସେହି ଭାବରେ ଦିନ କଟିବାକୁ ଲାଗିଲା ଏବଂ ତ୍ୟାଗର ସୁଯୋଗ ଅନ୍ୱେଷଣ କରି ରଘୁନାଥ ସଂସାରରେ କାଳ କଟାଇବାକୁ ଲାଗିଲେ । ସମୟ କ୍ରମେ ଶ୍ରୀଗୌରାଙ୍ଗ ସନ୍ନ୍ୟାସ ନେଇ ନୀଳାଚଳରେ ବାସ କଲେ ଏବଂ ଶ୍ରୀନିତ୍ୟାନନ୍ଦ ବୈଷ୍ଣବଧର୍ମ ପ୍ରଚାରର ଭାରପ୍ରାପ୍ତ ହୋଇ ଗଙ୍ଗାକୂଳବର୍ତ୍ତୀ ଖଡ଼ଦହ ଗ୍ରାମକୁ ପ୍ରଧାନ କେନ୍ଦ୍ରସ୍ୱରୂପ କରି ବଙ୍ଗର ନାନାସ୍ଥାନ ପରିଭ୍ରମଣ ଓ ନାମସଂକୀର୍ତ୍ତନ ଆଦି ଦ୍ୱାରା ବହୁବ୍ୟକ୍ତିଙ୍କୁ ଉକ୍ତ ଧର୍ମରେ ଦୀକ୍ଷିତ କରିବାକୁ ଲାଗିଲେ ।

ସାଙ୍ଗୋପାଙ୍ଗ-ପରିବୃତ ଶ୍ରୀନିତ୍ୟାନନ୍ଦ ଧର୍ମପ୍ରଚାର ଉଦ୍ଦେଶ୍ୟରେ ଥରେ ପାନିହାଟି ଗ୍ରାମରେ ଅବସ୍ଥାନ କରିବା ସମୟରେ ରଘୁନାଥ ତାଙ୍କୁ ଦର୍ଶନ କରିବାକୁ ଗଲେ ଏବଂ ଚୂଡ଼ା, ଦହି, ଦୁଧ, ଶର୍କରା, କଦଳୀ ପ୍ରଭୃତି ଦେବତାଙ୍କୁ ନିବେଦନପୂର୍ବକ ଭକ୍ତମଣ୍ଡଳୀସହ ତାହାଙ୍କୁ ଭୋଜନ କରାଇବାକୁ ଆଦିଷ୍ଟ ହେଲେ । ରଘୁନାଥ ଏହା ସାନନ୍ଦରେ ସ୍ୱୀକାର କରି ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କୁ ଦର୍ଶନ ପାଇଁ ସମାଗତ ଶତ ଶତ ବ୍ୟକ୍ତିଙ୍କୁ ସେଦିନ ଭାଗୀରଥୀ ତୀରରେ ଭୋଜନଦାନରେ ପରିତୃପ୍ତ କଲେ । ଉତ୍ସବ ଶେଷରେ ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କୁ ପ୍ରଣାମପୂର୍ବକ ବିଦାୟ ଗ୍ରହଣ କରିବାକୁ ଗଲାବେଳେ ପ୍ରଭୁ ନିତ୍ୟାନନ୍ଦ ଭାବାବେଶରେ ରଘୁନାଥଙ୍କୁ ଆଲିଙ୍ଗନ କରି କହିଥିଲେ, 'କାଳ ପୂର୍ଣ୍ଣ ହୋଇଅଛି, ସଂସାର ପରିତ୍ୟାଗପୂର୍ବକ ନୀଳାଚଳରେ ଶ୍ରୀମହାପ୍ରଭୁଙ୍କ ନିକଟକୁ ଗଲେ ସେ ତୁମକୁ ଏବେ ଆଶ୍ରୟ ପ୍ରଦାନ କରିବେ ଏବଂ ଧର୍ମଜୀବନ ସମ୍ପୂର୍ଣ୍ଣ କରିବା ନିମନ୍ତେ ସନାତନ ଗୋସ୍ୱାମୀଙ୍କ ହସ୍ତରେ ତୁମର ଶିକ୍ଷାର ଭାର ଅର୍ପଣ କରିବେ ।' ନିତ୍ୟାନନ୍ଦ ପ୍ରଭୁପାଦଙ୍କର ଏପରି ଆଦେଶରେ ରଘୁନାଥଙ୍କର ଆନନ୍ଦର ସୀମା ରହିଲା ନାହିଁ ଏବଂ ଘରକୁ ଫେରିବାର ଅନତିକାଳ ପରେ ସେ ଚିରକାଳ ପାଇଁ ସଂସାର ତ୍ୟାଗ କରି ନୀଳାଚଳ ଗମନ କଲେ । ରଘୁନାଥ

---

୧. ଅର୍ଥାତ୍ ଲୋକ-ଦେଖାଣିଆ ।

ଚାଲିଗଲେ, କିନ୍ତୁ ବୈଷ୍ଣବ ଭକ୍ତଗଣ ତାଙ୍କ କଥା ସ୍ମରଣ କରି ସେବେଠାରୁ ପ୍ରତିବର୍ଷ ଉକ୍ତ ଦିବସରେ ପାନିହାଟି ଗ୍ରାମସ୍ଥିତ ଗଙ୍ଗାତୀରରେ ସମବେତ ହୋଇ ତାଙ୍କ ପରି ଭଗବତପ୍ରସନ୍ନତା ଲାଭ ପାଇଁ ଶ୍ରୀଗୌରାଙ୍ଗ ଓ ଶ୍ରୀନିତ୍ୟାନନ୍ଦ ପ୍ରଭୁପାଦଙ୍କ ଉଦ୍ଦେଶ୍ୟରେ ଏପରି ଉତ୍ସବ ପାଳନ କରିବାକୁ ଲାଗିଲେ । ସମୟାନୁକ୍ରମେ ଏହା ପାନିହାଟିର 'ଚୂଡ଼ା ମହୋତ୍ସବ' ନାମରେ ଭକ୍ତ-ସମାଜରେ ଖ୍ୟାତି ଲାଭ କଲା ।

## ଠାକୁରଙ୍କର ଉକ୍ତ ମହୋତ୍ସବ ଦେଖିବାକୁ ସଂକଳ୍ପ :

ଠାକୁର ଏହାପୂର୍ବରୁ ପାନିହାଟିର ମହୋତ୍ସବରେ ଅନେକ ଥର ଯୋଗଦାନ କରିବା କଥା ଆମେ ଅନ୍ୟତ୍ର ଉଲ୍ଲେଖ କରିଛୁ । କିନ୍ତୁ ତାଙ୍କ ନିକଟକୁ ଇଂରାଜୀ ଶିକ୍ଷିତ ଭକ୍ତମାନଙ୍କର ଆଗମନ ପରଠାରୁ ନାନା କାରଣରୁ ସେ କେତେ ବର୍ଷ ଏହି ଉତ୍ସବ ଦେଖିବାକୁ ଯାଇପାରି ନ ଥିଲେ । ନିଜର ଭକ୍ତମାନଙ୍କ ସହିତ ଏବର୍ଷ ଏହି ଉତ୍ସବ ଦେଖିବାକୁ ଇଚ୍ଛାକରି ଠାକୁର ଆମକୁ କହିଲେ, ''ସେଠାରେ ସେଦିନ ଆନନ୍ଦର ମେଳା, ହରିନାମର ହାଟ-ବଜାର ବସେ—ତୁମେ ସବୁ 'ଇୟଙ୍ଗ ବେଙ୍ଗଲ' କେବେ ସେପରି ଦେଖି ନାହଁ, ଚାଲ ଦେଖିଆସିବ ।'' ରାମଚନ୍ଦ୍ର ଦତ୍ତପ୍ରମୁଖ ଭକ୍ତମାନଙ୍କ ଭିତରୁ ଗୋଟିଏ ଦଳ ଏହି କଥାରେ ବିଶେଷ ଆନନ୍ଦିତ ହେଲେ ମଧ୍ୟ କେହି କେହି ତାଙ୍କର ଗଳାରୋଗର ଯନ୍ତ୍ରଣା କଥା ଭାବି ତାଙ୍କୁ ଏହି ବିଷୟରେ ନିରସ୍ତ କରିବାକୁ ଚେଷ୍ଟା କଲେ । ସେମାନଙ୍କର ସନ୍ତୋଷ ପାଇଁ ଠାକୁର କହିଲେ, ''ଏଠାରୁ ସକାଳୁ ସକାଳୁ ଦି'ଟା ଖାଇକି ଯିବା ଏବଂ ସେଠାରେ ଘଣ୍ଟେ-ଦୁଇଘଣ୍ଟା ରହି ଫେରିଆସିବା, ସେଥିରେ ବିଶେଷ କ୍ଷତି ହେବ ନାହିଁ; ଭାବସମାଧି ଅଧିକ ହେଲେ ଗଳାର ବ୍ୟଥା ବଢ଼ିପାରେ ଠିକ୍, କିନ୍ତୁ ସେବିଷୟରେ ଟିକିଏ ସମ୍ଭାଳି ଚାଲିଲେ ହିଁ ହେବ ।'' ତାଙ୍କର ସେପରି କଥାରେ ସମସ୍ତ ଆପତ୍ତି ସମାପ୍ତ ହେଲା, ଏବଂ ଭକ୍ତଗଣ ତାଙ୍କର ପାନିହାଟି ଯିବାର ବନ୍ଦୋବସ୍ତ କରିବାକୁ ଲାଗିଲେ ।

## ଉତ୍ସବ ଦିନ ଯାତ୍ରାର ପୂର୍ବରୁ :

ଜ୍ୟେଷ୍ଠ ମାସର ଶୁକ୍ଳ ତ୍ରୟୋଦଶୀ—ଆଜି ପାନିହାଟିର ମହୋତ୍ସବ । ପ୍ରାୟ ପଚିଶ ଜଣ ଭକ୍ତ ଦୁଇଖଣ୍ଡ ନୌକା ଭଡ଼ା କରି ସକାଳ ନଅଟାରେ ଦକ୍ଷିଣେଶ୍ୱର ପହଞ୍ଚିଲେ । କେହି କେହି ମଧ୍ୟ ଚାଲି ଚାଲି ଆସିଲେ । ଠାକୁରଙ୍କ ପାଇଁ ଏକ ପୃଥକ୍ ନୌକା ଭଡ଼ା ହୋଇ ଘାଟରେ ବନ୍ଧା ହୋଇ ରହିଥିବାର ଦେଖାଗଲା । କେତେଜଣ ସ୍ତ୍ରୀ-ଭକ୍ତ ଅତି ପ୍ରତ୍ୟୁଷରୁ ଆସିଥିଲେ । ଶ୍ରୀଶ୍ରୀମାତାଠାକୁରାଣୀଙ୍କ ସହିତ ମିଳିତ ହୋଇ ସେମାନେ ଠାକୁରଙ୍କର ଏବଂ ଭକ୍ତମାନଙ୍କର ଆହାରର ବନ୍ଦୋବସ୍ତ କଲେ । ଦିନ ଦଶଟା ଭିତରେ ସମସ୍ତେ ଭୋଜନ କରିସାରି ଯିବା ପାଇଁ ପ୍ରସ୍ତୁତ ହେଲେ ।

### ଶ୍ରୀଶ୍ରୀମାତାଠାକୁରାଣୀଙ୍କର ନ ଯିବାର କାରଣ :

ଠାକୁରଙ୍କର ଭୋଜନ ପରେ ଶ୍ରୀଶ୍ରୀମାତାଠାକୁରାଣୀ ଜଣୈକା ସ୍ତ୍ରୀ–ଭକ୍ତଙ୍କ ଦ୍ୱାରା ତାଙ୍କୁ ପଚାରି ପଠାଇଲେ, ସେ (ମା') ଯିବେ କି ନାହିଁ । ଠାକୁର ତାଙ୍କୁ କହିଲେ, ''ତୁମେ ସବୁ ତ ଯାଉଛ, ଯଦି ତାଙ୍କର(ମା'ଙ୍କର) ଇଚ୍ଛା ହେଉଛି ତେବେ ଚାଲୁ ।'' ଶ୍ରୀଶ୍ରୀମା' ସେହିକଥା ଶୁଣି କହିଲେ, ''ଅନେକ ଲୋକ ସାଙ୍ଗରେ ଯାଉଛନ୍ତି, ସେଠାରେ ମଧ୍ୟ ଅତ୍ୟନ୍ତ ଭିଡ଼ ହେବ, ଅତି ଭିଡ଼ରେ ନୌକାରୁ ଓହ୍ଲାଇ ଉତ୍ସବ ଦର୍ଶନ କରିବା ମୋ ପକ୍ଷରେ ଅସମ୍ଭବ ହେବ, ମୁଁ ଯିବି ନାହିଁ ।'' ଶ୍ରୀଶ୍ରୀମା' ଯିବାର ସଂକଳ୍ପ ତ୍ୟାଗ କଲେ ଏବଂ ଦୁଇ–ତିନିଜଣ ସ୍ତ୍ରୀ–ଭକ୍ତ ଯେଉଁମାନେ ଯିବେ ବୋଲି ସ୍ଥିର କରିଥିଲେ, ସେମାନଙ୍କୁ ଭୋଜନ କରାଇ ଠାକୁରଙ୍କ ନୌକାରେ ଯିବାକୁ ଆଦେଶ କଲେ ।

### ଯାତ୍ରା ସମୟରେ ଏବଂ ଉତ୍ସବ ସ୍ଥାନରେ ପହଞ୍ଚିଲା ପରେ ଯାହା ଦେଖାଗଲା :

ବେଳ ଦ୍ୱିତୀୟ ପ୍ରହରରେ ପାନିହାଟିରେ ପହଞ୍ଚି ଦେଖାଗଲା ଗଙ୍ଗାକୂଳର ଏକ ପ୍ରାଚୀନ ଅଶ୍ୱତ୍ଥଗଛ ଚତୁଃପାର୍ଶ୍ୱରେ ଅନେକ ଲୋକ ସମାଗତ ହୋଇଛନ୍ତି ଏବଂ ବୈଷ୍ଣବ ଭକ୍ତମାନେ ସ୍ଥାନେ ସ୍ଥାନେ ସଂକୀର୍ତ୍ତନ କରି ଆନନ୍ଦ କରୁଛନ୍ତି । ସେହିପରି କରୁଥିଲେ ମଧ୍ୟ ସେମାନଙ୍କ ଭିତରେ ଅନେକ ଭଗବତ୍‌ନାମଗାନରେ ଯଥାର୍ଥ ମଗ୍ନ ହୋଇଛନ୍ତି ବୋଲି ମନେ ହେଲା ନାହିଁ । ସର୍ବତ୍ର ଗୋଟେ ଅଭାବ ଓ ପ୍ରାଣହୀନତା ଚକ୍ଷୁରେ ପଡ଼ିବାକୁ ଲାଗିଲା । ନୌକାରେ ଯିବା ସମୟରେ ଏବଂ ସେଠାରେ ଉପସ୍ଥିତ ହୋଇ ନରେନ୍ଦ୍ରନାଥ, ବଳରାମ, ଗିରିଶଚନ୍ଦ୍ର, ରାମଚନ୍ଦ୍ର, ମହେନ୍ଦ୍ରନାଥ ପ୍ରଭୃତି ପ୍ରଧାନ ଭକ୍ତମାନେ ଠାକୁରଙ୍କୁ ବିଶେଷ କରି ଅନୁରୋଧ କରିଥିଲେ ଯେପରି ସେ କୌଣସି କୀର୍ତ୍ତନସମ୍ପ୍ରଦାୟ ସହିତ ମିଳିତ ହୋଇ ମାତି ନ ଉଠନ୍ତି । କାରଣ, କୀର୍ତ୍ତନରେ ମାତିଲେ ତାଙ୍କର ଭାବାବେଶ ଅନିବାର୍ଯ୍ୟ ହୋଇ ଗଳଦେଶର ଯନ୍ତ୍ରଣା ବୃଦ୍ଧି ପାଇବ ।

### ମଣି ସେନ୍‌ଙ୍କର ଘର :

ନୌକାରୁ ଓହ୍ଲାଇ ଠାକୁର ଭକ୍ତମାନଙ୍କ ସହିତ ପ୍ରଥମେ ଶ୍ରୀଯୁକ୍ତ ମଣି ସେନ୍‌ଙ୍କ ଘରେ ଯାଇ ପହଞ୍ଚିଲେ । ତାଙ୍କର ଆଗମନରେ ଆନନ୍ଦିତ ହୋଇ ମଣିବାବୁଙ୍କ ଘରର ସମସ୍ତେ ତାଙ୍କୁ ପ୍ରଣାମପୂର୍ବକ ବୈଠକଖାନାକୁ ନେଇ ବସାଇଲେ । ଘରଟି ଟେବୁଲ, ଚେୟାର, ସୋଫା, କାର୍ପେଟ ଆଦି ଦ୍ୱାରା ଇଂରାଜୀ ଧରଣରେ ସୁସଜ୍ଜିତ । ଏଠାରେ ଦଶ–ପନ୍ଦର ମିନିଟ୍ ବିଶ୍ରାମ କରି ସେ ସମସ୍ତଙ୍କୁ

ସଙ୍ଗରେ ଧରି ସେମାନଙ୍କର ମନ୍ଦିରରେ ଶ୍ରୀରାଧାକାନ୍ତଜୀଙ୍କୁ ଦର୍ଶନ କରିବା ପାଇଁ ଗଲେ ।

## ମଣିବାବୁଙ୍କର ଠାକୁର ଘର :

ବୈଠକଖାନା ଘର ପାଖରେ ଠାକୁରଘର । ପାଖ ଦରଜା ଦେଇ ଆମେ ମନ୍ଦିରସଂଲଗ୍ନ ନାଟ ମନ୍ଦିରରେ ପହଞ୍ଚି ଯୁଗଳ ବିଗ୍ରହମୂର୍ତ୍ତିଙ୍କର ଦର୍ଶନ ଲାଭ କଲୁ । ମୂର୍ତ୍ତି ଦ୍ୱୟ ଖୁବ୍ ସୁନ୍ଦର । କିଛିକ୍ଷଣ ଦର୍ଶନ ପରେ ଠାକୁର ଅର୍ଦ୍ଧବାହ୍ୟ ଅବସ୍ଥାରେ ପ୍ରଣାମ କରିବାକୁ ଲାଗିଲେ ! ନାଟମନ୍ଦିରର ମଧ୍ୟଭାଗରୁ ପାଞ୍ଚ-ସାତଟି ପାହାଚ ଓହ୍ଲାଇଲା ପରେ ଠାକୁରଘରର ପ୍ରଶସ୍ତ ଅଗଣା ଓ ସଦର-ଫାଟକ । ଫାଟକଟି ଏପରି ସ୍ଥାନରେ ବିଦ୍ୟମାନ ଯେ ମନ୍ଦିରରେ ପ୍ରବେଶ ମାତ୍ରେ ବିଗ୍ରହ ମୂର୍ତ୍ତିଙ୍କର ଦର୍ଶନଲାଭ ହୋଇଥାଏ । ଠାକୁର ଯେତେବେଳେ ପ୍ରଣାମ କରୁଥିଲେ ସେତେବେଳେ ଦଳେ କୀର୍ତ୍ତନୀୟା ସେହି ଫାଟକ ଦେଇ ଅଗଣାରେ ପ୍ରବେଶ କରି ଗୀତ ଆରମ୍ଭ କଲେ । ଜଣାଗଲା ଯେ, ମେଳାସ୍ଥଳକୁ ଯେତେ କୀର୍ତ୍ତନଦଳ ଆସନ୍ତି ସେମାନେ ସମସ୍ତେ ପ୍ରଥମେ ଏଠାକୁ ଆସି କୀର୍ତ୍ତନ କରି ପରେ ଗଙ୍ଗାକୂଳରେ ଆନନ୍ଦ କରିବାକୁ ଯାଇଥାଆନ୍ତି । ଶିଖା-ସୂତ୍ରଧାରୀ, ତିଳକଚକ୍ରାଙ୍କିତ ଦୀର୍ଘ ସ୍ଥୂଳବପୁ, ଗୌରବର୍ଣ୍ଣ ପୌଢ଼ବୟସ୍କ ଜଣେ ବ୍ୟକ୍ତି ଝୋଲାରୁ ମାଳି ଜପୁ ଜପୁ ସେହି ସମୟରେ ଅଗଣାରେ ଆସି ଉପସ୍ଥିତ ହେଲେ । ତାଙ୍କର କାନ୍ଧରେ ଉତ୍ତରୀୟ, ପରିଧାନରେ ଧୋବ ଫରଫର ଥାନ ଧୋତି, ସୁନ୍ଦର ଭାବରେ ସଜାଡ଼ି ପିନ୍ଧା ହୋଇଛି ଏବଂ ଅଣ୍ଟିରେ ମେଞ୍ଚାଏ ପଇସା ବନ୍ଧା ହୋଇଛି — ଦେଖିଲେ ହିଁ ମନେହୁଏ କୌଣସି ଗୋସ୍ୱାମୀ ମେଳାରୁ ଦୁଇପଇସା ଆଦାୟ ପାଇଁ ସଜବାଜ ହୋଇ ବାହାରିଛନ୍ତି । କୀର୍ତ୍ତନସମ୍ପ୍ରଦାୟଙ୍କୁ ଉତ୍ତେଜିତ କରିବା ପାଇଁ ଏବଂ ବୋଧହୁଏ ସମାଗତ ବ୍ୟକ୍ତିମାନଙ୍କୁ ନିଜ ମହତ୍ତ୍ୱରେ ମୁଗ୍ଧ କରିବା ପାଇଁ ସେ ଆସି କୀର୍ତ୍ତନ ଦଳ ସହିତ ମିଳିତ ହୋଇ ଭାବାବିଷ୍ଟଙ୍କ ପରି ଅଙ୍ଗଭଙ୍ଗୀ, ହୁଙ୍କାର ଓ ନୃତ୍ୟ କରିବାକୁ ଲାଗିଲେ ।

## ଠାକୁରଙ୍କର ଭାବାବେଶ ଏବଂ ନୃତ୍ୟ :

ପ୍ରଣାମ ପରେ ଠାକୁର ନାଟମନ୍ଦିରର ଗୋଟିଏ ପାଖରେ ଦଣ୍ଡାୟମାନ ହୋଇ କୀର୍ତ୍ତନ ଶୁଣୁଥିଲେ । ଗୋସ୍ୱାମୀଜୀଙ୍କର ବେଶଭୂଷାର ପାରିପାଟ୍ୟ ଓ ଭାବାବେଶର ଛଳନା ଦେଖି ଈଷତ୍ ହସି ଠାକୁର ନରେନ୍ଦ୍ର ପ୍ରଭୃତି ପାଖରେ ଥିବା ଭକ୍ତମାନଙ୍କୁ ମୃଦୁସ୍ୱରରେ କହିଲେ, ‘‘ଢଙ୍ଗ ଦେଖ !’’ ତାଙ୍କର ସେପରି ପରିହାସରେ ସମସ୍ତଙ୍କ ମୁହଁରେ ହାସ୍ୟରେଖା ଦେଖାଗଲା ଏବଂ ସେ କିଛିମାତ୍ର ଭାବାବିଷ୍ଟ ନ ହୋଇ ନିଜକୁ ଠିକ୍ ସମ୍ଭାଳି ରଖିଛନ୍ତି ଭାବି ସେମାନେ ନିଶ୍ଚିନ୍ତ ହେଲେ । ମାତ୍ର ପରକ୍ଷଣରେ ହିଁ ଦେଖାଗଲା, ଠାକୁର କେମିତି କେଜାଣି ସେମାନେ

ବୁଝିବା ପୂର୍ବରୁ ନିମିଷକ ମଧ୍ୟରେ ସେମାନଙ୍କ ଭିତରୁ ନିଷ୍କ୍ରାନ୍ତ ହୋଇ ଏକ ଲମ୍ଫରେ କୀର୍ତ୍ତନଦଳର ମଧ୍ୟଭାଗରେ ସହସା ଅବତୀର୍ଣ୍ଣ ହୋଇଛନ୍ତି ଏବଂ ଭାବାବେଶରେ ତାଙ୍କର ବାହ୍ୟସଂଜ୍ଞା ଲୋପପାଇଛି । ଭକ୍ତଗଣ ଅସ୍ତବ୍ୟସ୍ତ ହୋଇ ନାଟମନ୍ଦିରରୁ ଓହ୍ଲାଇ ଆସି ତାଙ୍କୁ ବେଷ୍ଟନ କରି ଛିଡ଼ାହେଲେ ଏବଂ ସେ କେତେବେଳେ ଅର୍ଦ୍ଧବାହ୍ୟଦଶାରେ ସିଂହବିକ୍ରମରେ ନୃତ୍ୟ କରିବାକୁ ଲାଗିଲେ ଏବଂ କେତେବେଳେ ସଂଜ୍ଞା ହରାଇ ସ୍ଥିର ହୋଇ ରହିଲେ । ଭାବାବେଶରେ ନୃତ୍ୟ କରୁ କରୁ ଯେତେବେଳେ ସେ ଦ୍ରୁତପଦର ତାଳରେ ତାଳରେ କେତେବେଳେ ଅଗ୍ରସର ହେବାକୁ ଏବଂ କେତେବେଳେ ପଛେଇ ଯିବାକୁ ଲାଗିଲେ, ସେତେବେଳେ ମନେହେବାକୁ ଲାଗିଲା ସେ ଯେପରି 'ସୁଖମୟ ସାଗରରେ' ମୀନ ସଦୃଶ ମହାନନ୍ଦରେ ସନ୍ତରଣ ଓ ଦୌଡ଼ାଦୌଡ଼ି କରୁଛନ୍ତି । ପ୍ରତି ଅଙ୍ଗର ଗତି ଓ ଚାଳନାରେ ସେହି ଭାବ ପରିସ୍ଫୁଟ ହୋଇ ତାଙ୍କଠାରେ ଯେଉଁ ଅଦୃଷ୍ଟପୂର୍ବ କୋମଳତା ଏବଂ ମାଧୁର୍ଯ୍ୟ-ମିଶ୍ରିତ ଉଦ୍ଦାମ ଉଲ୍ଲାସମୟ ଶକ୍ତିର ପ୍ରକାଶ ହେଲା, ତାହା ବର୍ଣ୍ଣନା କରିବା ଅସମ୍ଭବ । ସ୍ତ୍ରୀ-ପୁରୁଷଙ୍କର ହାବ-ଭାବମୟ ମନୋମୁଗ୍ଧକାରୀ ନୃତ୍ୟ ଅନେକ ଦେଖିଛି, କିନ୍ତୁ ଦିବ୍ୟ ଭାବାବେଶରେ ଆତ୍ମହରା ହୋଇ ତାଣ୍ଡବନୃତ୍ୟ କରିବାବେଳେ ଠାକୁରଙ୍କ ଦେହରେ ଯେପରି ରୁଦ୍ର-ମଧୁର ସୌନ୍ଦର୍ଯ୍ୟ ଫୁଟି ଉଠୁଥିଲା, ତାହାର ଆଂଶିକ ଛାୟାପାତ ମଧ୍ୟ ସେମାନଙ୍କଠାରେ ଆମମାନଙ୍କର ନୟନଗୋଚର ହୋଇ ନାହିଁ । ପ୍ରବଳ ଭାବୋଲ୍ଲାସରେ ଉଦ୍‌ବେଳିତ ହୋଇ ତାଙ୍କର ଦେହ ଯେତେବେଳେ ହଲି ଝୁଲି ଦୌଡ଼ି ନୃତ୍ୟ କରୁଥିଲା, ସେତେବେଳେ ଭ୍ରମ ହେଉଥିଲା, ଏହା ବୋଧହୁଏ କଠିନ ଜଡ଼ ଉପାଦାନରେ ନିର୍ମିତ ନୁହେଁ, ବୋଧହୁଏ ଆନନ୍ଦସାଗରରେ ଉତ୍ତାଳ ତରଙ୍ଗ ଉଠି ପ୍ରଚଣ୍ଡ ବେଗରେ ସମ୍ମୁଖସ୍ଥ ସମସ୍ତ ପଦାର୍ଥକୁ ଭସାଇ ଅଗ୍ରସର ହେଉଅଛି— ଏବେ ପୁଣି ତରଳିଯାଇ ତାହାର ସେହି ଆକାର ଲୋକଦୃଷ୍ଟିର ଅଗୋଚର ହେବ । ଅସଲ ଓ ନକଲ ପଦାର୍ଥ ମଧ୍ୟରେ କେତେ ପ୍ରଭେଦ କାହାକୁ ବୁଝାଇବାକୁ ହେଲା ନାହିଁ, କୀର୍ତ୍ତନସମ୍ପ୍ରଦାୟ ଗୋସ୍ୱାମୀଜୀଙ୍କ ଆଡ଼କୁ ଆଉ ଦୃଷ୍ଟିପାତ ନ କରି ଠାକୁରଙ୍କୁ ବେଷ୍ଟନପୂର୍ବକ ଶତଗୁଣ ଉତ୍ସାହ-ଆନନ୍ଦରେ ଗୀତ ଗାଇବାକୁ ଲାଗିଲେ ।

**ରାଘବ ପଣ୍ଡିତଙ୍କ ଘରକୁ ଯିବା ରାସ୍ତାରେ :**

ପ୍ରାୟ ଅଧଘଣ୍ଟା କାଳ ଏପରି ଅତୀତ ହେଲା ପରେ ଠାକୁରଙ୍କୁ କିଞ୍ଚିତ୍ ପ୍ରକୃତିସ୍ଥ ଦେଖି ଭକ୍ତଗଣ ତାଙ୍କୁ କୀର୍ତ୍ତନସମ୍ପ୍ରଦାୟ ମଧ୍ୟରୁ ନେଇ ଆସିବା ପାଇଁ ଚେଷ୍ଟା କଲେ । ସ୍ଥିର ହେଲା, ଏଠାରୁ ଅଳ୍ପ ଦୂରରେ ଅବସ୍ଥିତ ମହାପ୍ରଭୁଙ୍କର ପାର୍ଷଦ ରାଘବ ପଣ୍ଡିତଙ୍କ ଘରକୁ ଯାଇ ସେ ଯେଉଁ ଯୁଗଳବିଗ୍ରହ ଓ ଶାଳଗ୍ରାମ ଶିଳାର ନିତ୍ୟ ସେବା କରୁଥିଲେ ତାହା ଦର୍ଶନ କରି ନୌକାରେ ଫେରିଯିବାକୁ ହେବ । ଏକଥାରେ ଠାକୁର ସମ୍ମତ ହୋଇ ଭକ୍ତମାନଙ୍କ ସଙ୍ଗରେ ମଣି ସେନ୍‌ଙ୍କର ମନ୍ଦିରରୁ

ବାହାରିଲେ । କୀର୍ତ୍ତନସମ୍ପ୍ରଦାୟ କିନ୍ତୁ ତାଙ୍କ ସଙ୍ଗ ଛାଡ଼ିଲେ ନାହିଁ, ଅତ୍ୟନ୍ତ ଉତ୍ସାହର ସହିତ ନାମଗାନ କରୁ କରୁ ପଛେ ପଛେ ଆସିଲେ । ଠାକୁର ସେଥିରେ ଦୁଇ ଚାରିପାଦ ଅଗ୍ରସର ହେବାମାତ୍ରକେ ଭାବାବେଶ ଯୋଗୁଁ ସ୍ଥିର ହୋଇ ରହିଲେ । ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହେଲାପରେ ଭକ୍ତମାନେ ତାଙ୍କୁ ଆଗକୁ ଯିବାକୁ ଅନୁରୋଧ କଲେ, ସେ ମଧ୍ୟ ଦୁଇ ଚାରିପାଦ ଚାଲି ପୁନରାୟ ଭାବାବିଷ୍ଟ ହେଲେ । ବାରମ୍ବାର ସେହିପରି ହେବାରୁ ଭକ୍ତମାନେ ଖୁବ୍ ଧିରେ ଧିରେ ଅଗ୍ରସର ହେବାକୁ ବାଧ୍ୟ ହେଲେ ।

### ଭାବାବିଷ୍ଟ ଠାକୁରଙ୍କର ଅପୂର୍ବ ଶ୍ରୀ :

ଭାବାବିଷ୍ଟ ଠାକୁରଙ୍କର ଶରୀରରେ ସେହିଦିନ ଯେଉଁ ଦିବ୍ୟ ଉଜ୍ଜ୍ୱଳ ସୌନ୍ଦର୍ଯ୍ୟ ଦର୍ଶନ କରିଛୁ ସେପରି ଆଉ କେବେ ନୟନଗୋଚର ହୋଇଛି ବୋଲି ସ୍ମରଣ ହୁଏ ନାହିଁ । ଦେବଦେହର ସେହି ଅପୂର୍ବ ଶ୍ରୀ ଯଥାଯଥ ବର୍ଣ୍ଣନା କରିବା ମନୁଷ୍ୟଶକ୍ତି ପକ୍ଷରେ ଅସମ୍ଭବ । ଭାବାବେଶରେ ଦେହର ଏତେଦୂର ପରିବର୍ତ୍ତନ ନିମିଷକ ମଧ୍ୟରେ ହୋଇପାରେ ଏକଥା ଆମେ ଏହାପୂର୍ବରୁ କେବେହେଲେ କଳ୍ପନା କରି ନ ଥିଲୁ । ତାଙ୍କର ଉନ୍ନତ ଶରୀର ପ୍ରତିଦିନ ଯେପରି ଦେଖୁଥିଲୁ ତା ଅପେକ୍ଷା ଅନେକ ଦୀର୍ଘ ଏବଂ ସ୍ୱପ୍ନଦୃଷ୍ଟ ଶରୀର ସଦୃଶ ଲଘୁ ବୋଲି ପ୍ରତୀତ ହେଉଥିଲା, ଶ୍ୟାମବର୍ଣ୍ଣ ଉଜ୍ଜ୍ୱଳ ହୋଇ ଗୌରବର୍ଣ୍ଣରେ ପରିଣତ ହୋଇଥିଲା; ଭାବପ୍ରଦୀପ୍ତ ମୁଖମଣ୍ଡଳ ଅପୂର୍ବ ଜ୍ୟୋତିଃ ବିକୀର୍ଣ୍ଣ କରି ଚତୁର୍ପାର୍ଶ୍ୱ ଆଲୋକିତ କରୁଥିଲା, ଏବଂ ମହିମା, କରୁଣା, ଶାନ୍ତି ଓ ଆନନ୍ଦପୂର୍ଣ୍ଣ ମୁଖର ସେହି ଅନୁପମ ହସ ଦୃଷ୍ଟିପଥରେ ପତିତ ହେବାମାତ୍ରେ ମନ୍ତ୍ରମୁଗ୍ଧ ପରି ଜନସାଧାରଣଙ୍କୁ କିଛି ସମୟ ପର୍ଯ୍ୟନ୍ତ ସମସ୍ତ କଥା ଭୁଲାଇ ତାଙ୍କର ପଦାନୁସରଣ କରାଇଥିଲା ! ଉଜ୍ଜ୍ୱଳ ଗୈରିକବର୍ଣ୍ଣର ପରିଧେୟ ବସ୍ତ୍ରଟି ଏହି ଅପୂର୍ବ ଅଙ୍ଗକାନ୍ତି ସହିତ ପୂର୍ଣ୍ଣ ସାମଞ୍ଜସ୍ୟରେ ମିଳିତ ହୋଇ ତାଙ୍କୁ ଅଗ୍ନିଶିଖା-ପରିବ୍ୟାପ୍ତ ବୋଲି ଭ୍ରମ ଜନ୍ମାଉଥିଲା ।

### ଠାକୁରଙ୍କ ଦିବ୍ୟଦର୍ଶନରେ କୀର୍ତ୍ତନସମ୍ପ୍ରଦାୟର ଉତ୍ସାହ ଓ ଉଲ୍ଲାସ :

ମଣିବାବୁଙ୍କର ମନ୍ଦିରରୁ ବାହାରି ରାଜପଥକୁ ଆସିବାମାତ୍ରେ କୀର୍ତ୍ତନ ସମ୍ପ୍ରଦାୟ ତାଙ୍କର ଦିବ୍ୟୋଜ୍ଜ୍ୱଳ ଶ୍ରୀ, ମନୋହର ନୃତ୍ୟ ଓ ପୁନଃପୁନଃ ଗଭୀର ଭାବାବେଶ ଦର୍ଶନରେ ନବୀନ ଉତ୍ସାହରେ ପୂର୍ଣ୍ଣ ହୋଇ ଗାଇବାକୁ ଲାଗିଲେ —

ସୁରଧୁନୀର ତୀରେ ହରି ବଲେ କେ ରେ,
ବୁଝି ପ୍ରେମଦାତା ନିତାଇ ଏସେଛେ ।
ଓରେ ହରି ବଲେ କେ ରେ,
ଜୟ ରାଧେ ବଲେ କେ ରେ,
ବୁଝି ପ୍ରେମଦାତା ନିତାଇ ଏସେଛେ ।

(ଆମାଦେର) ପ୍ରେମଦାତା ନିତାଇ ଏସେଛେ ।
ନିତାଇ ନଇଲେ ପ୍ରାଣ୍ ଜୁଡ଼ାବେ କିସେ—
(ଏଇ ଆମାଦେର) ପ୍ରେମଦାତା ନିତାଇ ଏସେଛେ ।

[ଅର୍ଥାତ୍:- ଗଙ୍ଗାତଟରେ କିଏ ହରିଧ୍ୱନି କରୁଛି ? ବୋଧହୁଏ ପ୍ରେମଦାତା ନିତ୍ୟାନନ୍ଦ ଆସିଛନ୍ତି । ଆଜି, କିଏ ହରି ଧ୍ୱନି କରୁଛି, କିଏ 'ଜୟରାଧେ' କହୁଛି ? ବୋଧହୁଏ ହରି-ପ୍ରେମଦାତା ନିତ୍ୟାନନ୍ଦ ଆସିଛନ୍ତି । ଆମର ପ୍ରେମଦାତା ନିତ୍ୟାନନ୍ଦ ଆସିଛନ୍ତି । ନିତ୍ୟାନନ୍ଦଙ୍କ ବିନା ହୃଦୟକୁ କିପରି ଶାନ୍ତି ମିଳିବ—ଆମମାନଙ୍କର ପ୍ରେମଦାତା ନିତ୍ୟାନନ୍ଦ ଆସିଛନ୍ତି ।]

**ଜନସାଧାରଣଙ୍କର ଆକୃଷ୍ଟ ହେବା :**

ଶେଷ ଧାଡ଼ିଟି ଗାଇବା ବେଳେ ସେମାନେ ଠାକୁରଙ୍କ ଆଡ଼କୁ ଆଙ୍ଗୁଳି ଦେଖାଇ ବାରମ୍ବାର 'ଏଇ ଆମାଦେର ପ୍ରେମଦାତା' କହି ମହା ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ ! ସେମାନଙ୍କର ଏହି ଉତ୍ସାହ ଉତ୍ସବ ସ୍ଥଳରେ ସମାଗତ ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣପୂର୍ବକ ସେମାନଙ୍କୁ ସେଠାକୁ ଆନୟନ କରିବାକୁ ଲାଗିଲା ଏବଂ ଯେଉଁମାନେ ଆସି ଥରେ ଠାକୁରଙ୍କୁ ଦର୍ଶନ କଲେ ସେମାନେ ମୋହିତ ହୋଇ ମହା ଉଲ୍ଲାସରେ କୀର୍ତ୍ତନରେ ଯୋଗଦାନ କଲେ ଅଥବା ପ୍ରାଣରେ ଅନିର୍ବଚନୀୟ ଦିବ୍ୟ ଭାବୋଦୟରେ ସ୍ତବ୍ଧ ହୋଇ ନୀରବରେ ଠାକୁରଙ୍କୁ ନିର୍ନିମେଷ ନୟନରେ ଦେଖି ଦେଖି ସାଙ୍ଗରେ ଯିବାକୁ ଲାଗିଲେ । ଜନସାଧାରଣଙ୍କର ଉତ୍ସାହ କ୍ରମେ କ୍ରମେ ସଂକ୍ରାମକ ବ୍ୟାଧି ସଦୃଶ ଚତୁର୍ଦ୍ଦିଗରେ ବିସ୍ତୃତ ହୋଇ ପଡ଼ିଲା ଏବଂ ଅନ୍ୟ କେତେଗୁଡ଼ିଏ କୀର୍ତ୍ତନସମ୍ପ୍ରଦାୟ ଆସି ପୂର୍ବୋକ୍ତ ଦଳ ସହିତ ଯୋଗଦାନ କଲେ । ଏହିପରି ଏକ ବିରାଟ ଜନସଂଘ ଭାବାବିଷ୍ଟ ଠାକୁରଙ୍କୁ ବେଷ୍ଟନ କରି ରାଘବ ପଣ୍ଡିତଙ୍କର କୁଟୀର ଅଭିମୁଖରେ ଧୀରପଦରେ ଅଗ୍ରସର ହେବାକୁ ଲାଗିଲେ ।

**ମାଟିପାତ୍ର ଭୋଗ :**

ଗଙ୍ଗାତୀରବର୍ତ୍ତୀ ଅଶ୍ୱତ୍ଥବୃକ୍ଷତଳେ ଶ୍ରୀଗୌରାଙ୍ଗ ଓ ନିତ୍ୟାନନ୍ଦ ପ୍ରଭୁଦ୍ୱୟଙ୍କର ଉଦ୍ଦେଶ୍ୟରେ ସ୍ତ୍ରୀ-ଭକ୍ତମାନେ କେତେକ ମାଟିପାତ୍ରରେ ଫଳାହାର ଉତ୍ସର୍ଗ କରାଇ ଠାକୁରଙ୍କ ନିମିତ୍ତ ଆଣୁଥିଲେ । ରାଘବ ପଣ୍ଡିତଙ୍କ ଘରେ ପହଞ୍ଚିବାର କିଛି ସମୟ ପୂର୍ବରୁ ଜଣେ ଭେକଧାରୀ କୁତ୍ସିତ କଦାକାର ବାବାଜୀ ସହସା କେଉଁଠୁ ଆସି ଗୋଟିଏ ମାଟିପାତ୍ରର ପ୍ରସାଦ ଜନୈକା ସ୍ତ୍ରୀ-ଭକ୍ତଙ୍କର ହାତରୁ ଛଡ଼ାଇ ନେଲା ଏବଂ ସତେ ଯେପରି ଭାବରେ ପ୍ରେମରେ ଗଦ୍‌ଗଦ୍ ହୋଇ ତାହାର କିୟଦଂଶ ଠାକୁରଙ୍କ ମୁହଁରେ ସ୍ୱହସ୍ତରେ ପ୍ରଦାନ କଲା । ଠାକୁର ସେତେବେଳେ ଭାବାବେଶରେ ସ୍ଥିର ହୋଇ ଠିଆ ହୋଇଥିଲେ, ବାବାଜୀ ସ୍ପର୍ଶ କରିବା ମାତ୍ରେ ତାଙ୍କର ସର୍ବାଙ୍ଗ ସହସା

ଶିହରି ଉଠି ଭାବଭଙ୍ଗ ହେଲା ଏବଂ ମୁହଁରୁ ସେହି ଖାଦ୍ୟଦ୍ରବ୍ୟ ଥୁ ଥୁ କରି ପକାଇ ଦେଇ ମୁହଁ ଧୋଇଲେ । ଏହି ଘଟଣାରେ ବାବାଜୀଙ୍କୁ ଭଣ୍ଡ ବୋଲି ବୁଝିବାକୁ କାହାରି ବିଳମ୍ବ ହେଲା ନାହିଁ ଏବଂ ସମସ୍ତେ ତା' ଉପରେ ବିରକ୍ତି ଓ ବିଦ୍ରୁପ ସହିତ କଟାକ୍ଷ କରିବା ଦେଖି ସେ ଦୂରକୁ ପଳାୟନ କଲା । ଠାକୁର ତା'ପରେ ଅନ୍ୟ ଜଣେ ଭକ୍ତଙ୍କ ନିକଟରୁ ପ୍ରସାଦକଣିକାଏ ଗ୍ରହଣପୂର୍ବକ ଭକ୍ତମାନଙ୍କୁ ଅବଶିଷ୍ଟାଂଶ ଖାଇବାକୁ ଦେଲେ ।

## ନୌକାରେ ପ୍ରତ୍ୟାବର୍ତ୍ତନ ଓ ନବଚୈତନ୍ୟଙ୍କୁ କୃପା :

ଏହିପରି ସେହି ପଥ ଅତିକ୍ରମ କରି ରାଘବ ପଣ୍ଡିତଙ୍କ ଘରେ ପହଞ୍ଚିବାକୁ ପ୍ରାୟ ତିନିଘଣ୍ଟା ଲାଗିଲା । ଏଠାରେ ଆସି ମନ୍ଦିର ମଧ୍ୟରେ ପ୍ରବେଶ କରି ଦର୍ଶନ, ସ୍ପର୍ଶନ ଓ ବିଶ୍ରାମ ଆଦି କରିବାକୁ ଠାକୁରଙ୍କର ଅଧଘଣ୍ଟା କାଳ ଅତୀତ ହେଲା ଏବଂ ସାଙ୍ଗରେ ଆସିଥିବା ସେହି ବିରାଟ ଜନସଂଘ ଧୀରେ ଧୀରେ ଇତସ୍ତତଃ ବିଛାଡ଼ି ହୋଇଗଲେ । ଭିଡ଼ କମିଯାଇଥିବା ଦେଖି ଭକ୍ତମାନେ ତାଙ୍କୁ ନୌକାକୁ ନେଇ ଆସିଲେ । କିନ୍ତୁ ଏଠାରେ ମଧ୍ୟ ଏକ ଅଦ୍ଭୁତ ଘଟଣା ଘଟିଲା । କୋନ୍ନଗରନିବାସୀ ନବଚୈତନ୍ୟ ମିତ୍ର ଉତ୍ସବସ୍ଥାନକୁ ଠାକୁର ଆସିଛନ୍ତି ଶୁଣି ଦର୍ଶନ ପାଇଁ ବ୍ୟାକୁଳ ହୋଇ ଚାରିଆଡ଼େ ଅନ୍ୱେଷଣ କରୁଥିଲେ । ଏବେ ନୌକାରେ ତାଙ୍କୁ ଦେଖିପାରି ଏବଂ ନୌକା ଛାଡ଼ିବାକୁ ଯାଉଛି ଦେଖି ସେ ଉନ୍ମତ୍ତପ୍ରାୟ ଧାଇଁ ଆସି ତାଙ୍କର ପଦପ୍ରାନ୍ତରେ କଚାଡ଼ି ହୋଇ ପଡ଼ିଲେ ଏବଂ 'କୃପା କରନ୍ତୁ' ବୋଲି ପ୍ରାଣର ଆବେଗରେ କ୍ରନ୍ଦନ କରିବାକୁ ଲାଗିଲେ । ଠାକୁର ତାଙ୍କର ବ୍ୟାକୁଳତା ଓ ଭକ୍ତି ଦେଖି ତାଙ୍କୁ ଭାବାବେଶରେ ସ୍ପର୍ଶ କଲେ । ସେଥିରେ ତାଙ୍କର କିପରି ଅଦ୍ଭୁତ ଦର୍ଶନ ଉପସ୍ଥିତ ହେଲା ତାହା କହିହେବ ନାହିଁ, କିନ୍ତୁ ତାଙ୍କର ବ୍ୟାକୁଳ କ୍ରନ୍ଦନ ନିମିଷକ ମଧ୍ୟରେ ଅସୀମ ଉଲ୍ଲାସରେ ପରିଣତ ହେଲା ଏବଂ ବାହ୍ୟଜ୍ଞାନଶୂନ୍ୟ ହୋଇ ସେ ନୌକା ଉପରେ ତାଣ୍ଡବ ନୃତ୍ୟ ଓ ଠାକୁରଙ୍କୁ ନାନାପ୍ରକାର ସ୍ତବସ୍ତୁତିପୂର୍ବକ ବାରମ୍ବାର ସାଷ୍ଟାଙ୍ଗ ପ୍ରଣାମ କରିବାକୁ ଲାଗିଲେ ! ସେହି ଭାବରେ କିଛି ସମୟ ଗଲାପରେ ଠାକୁର ତା' ପିଠିରେ ହାତ ବୁଲାଇ ନାନାପ୍ରକାର ଉପଦେଶ ପ୍ରଦାନ କରି ଶାନ୍ତ କଲେ । ନବଚୈତନ୍ୟ ଏହାପୂର୍ବରୁ ଅନେକଥର ଠାକୁରଙ୍କୁ ଦର୍ଶନ କରିଥିଲେ ମଧ୍ୟ ଏପର୍ଯ୍ୟନ୍ତ ତାଙ୍କର କୃପାଲାଭ କରିପାରି ନ ଥିଲେ, ଆଜି ସେହି କୃପା ଲାଭରେ କୃତାର୍ଥ ହୋଇ ସଂସାରର ଭାର ପୁତ୍ର ଉପରେ ଅର୍ପଣପୂର୍ବକ ନିଜଗ୍ରାମସ୍ଥିତ ଗଙ୍ଗାକୂଳରେ ଏକ ପର୍ଣ୍ଣକୁଟୀରରେ ଜୀବନର ଅବଶିଷ୍ଟ କାଳ ବାନପ୍ରସ୍ଥୀ ପରି ସାଧନ ଭଜନ ଓ ଠାକୁରଙ୍କ ନାମଗୁଣଗାନରେ ଅତିବାହିତ କରିଥିଲେ । ଏହି ସମୟଠାରୁ ବୃଦ୍ଧ ନବଚୈତନ୍ୟଙ୍କର ସଂକୀର୍ତ୍ତନ ସମୟରେ ଭାବାବେଶ ହେଉଥିଲା ଏବଂ ତାଙ୍କର ଭକ୍ତି ଏବଂ ଆନନ୍ଦମୟ ମୂର୍ତ୍ତି ଦର୍ଶନରେ ଅନେକେ ତାଙ୍କୁ ଶ୍ରଦ୍ଧା ଓ

ସମ୍ମାନ କରୁଥିଲେ । ସେହିପରି ନବଚୈତନ୍ୟ ଠାକୁରଙ୍କର କୃପାରେ ପରଜୀବନରେ ବହୁବ୍ୟକ୍ତିଙ୍କ ହୃଦୟରେ ଭଗବଦ୍‌ଭକ୍ତି ଉଦ୍ଦୀପନ କରିବାରେ ସମର୍ଥ ହୋଇଥିଲେ ।

## ଦକ୍ଷିଣେଶ୍ୱରରେ ପହଞ୍ଚିବା — ବିଦାୟକାଳରେ ଜନୈକ ଭକ୍ତଙ୍କ ସହିତ ଠାକୁରଙ୍କ କଥା :

ନବଚୈତନ୍ୟ ବିଦାୟ ଗ୍ରହଣ କରିବା ପରେ ନୌକା ଛାଡ଼ିବାକୁ ଠାକୁର ଆଦେଶ ଦେଲେ । କିଛି ଦୂର ଆସୁ ଆସୁ ସନ୍ଧ୍ୟା ହେଲା ଏବଂ ରାତି ପ୍ରାୟ ସାଢ଼େ ଆଠଟାରେ ଆମେ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଉପସ୍ଥିତ ହେଲୁ । ଏହାପରେ ଠାକୁର ନିଜ ଘରେ ଉପବେଶନ କଲେ ଏବଂ ଭକ୍ତମାନେ ତାଙ୍କୁ ପ୍ରଣାମ କରି କଲିକତା ଫେରିବା ପାଇଁ ବିଦାୟ ଗ୍ରହଣ କଲେ । ସମସ୍ତେ ନୌକାରେ ଆରୋହଣ କରୁଥିବାବେଳେ ଜଣେ ବ୍ୟକ୍ତିଙ୍କର ମନେପଡ଼ିଲା ସେ ଜୋତା ଛାଡ଼ି ଆସିଛନ୍ତି ଏବଂ ଜୋତା ଆଣିବା ପାଇଁ ସେ ପୁନରାୟ ଠାକୁରଙ୍କ ଘର ଆଡ଼କୁ ଦୌଡ଼ିଗଲେ । ତାଙ୍କୁ ଦେଖି ଠାକୁର ଫେରିବାର କାରଣ ପଚାରି ପରିହାସ କରି କହିଲେ, ''ଭାଗ୍ୟକୁ ଏକଥା ନୌକା ଛାଡ଼ିବା ପୂର୍ବରୁ ମନେପଡ଼ିଲା, ନ ହେଲେ ଆଜିର ସମସ୍ତ ଆନନ୍ଦ ଏହି ଘଟଣାରେ ନଷ୍ଟ ହୋଇଯାଇଥାଆନ୍ତା !'' ଯୁବକ ଜଣକ ଏକଥାରେ ହସି ତାଙ୍କୁ ପ୍ରଣାମ କରି ଚାଲି ଆସିବା ପାଇଁ ଉପକ୍ରମ କରିବାରୁ ଠାକୁର ପଚାରିଲେ, ''ଆଜି କିପରି ଦେଖିଲୁ କୁହତ ? ଯେପରି ହରିନାମର ହାଟବଜାର ବସିଯାଇଥିଲା — ନା ?'' ସେ ସେହିକଥାରେ ସମ୍ମତି ପ୍ରକାଶ କରିବାରୁ ଠାକୁର ନିଜ ଭକ୍ତଗଣଙ୍କ ମଧ୍ୟରେ କେଉଁ ବ୍ୟକ୍ତିମାନଙ୍କର ଉତ୍ସବସ୍ଥଳରେ ଭାବାବେଶ ହୋଇଥିଲା ସେବିଷୟରେ ଉଲ୍ଲେଖ କରି ଛୋଟ ନରେନ୍ଦ୍ରର ପ୍ରଶଂସା କରି କହିଲେ, ''କାଳିଆ ଟୋକାଟା ଅଳ୍ପଦିନ ହେଲା ଏଠାକୁ ଯା'ଆସ କରୁଛି, ଏହା ମଧ୍ୟରେ ହିଁ ତା'ର ଭାବ ହେବାକୁ ଆରମ୍ଭ ହୋଇଛି । ସେଦିନ ତାର ଭାବ ଆଦୌ ଭାଙ୍ଗୁ ନ ଥିଲା — ଏକଘଣ୍ଟାରୁ ଅଧିକ ସମୟ ତା'ର ବାହ୍ୟଚେତନା ନ ଥିଲା ! ସେ କହେ ତା'ର ମନ ଆଜିକାଲି ନିରାକାରରେ ଲୀନ ହୋଇଯାଏ ! ଛୋଟ ନରେନ୍ ବେଶ୍ ପିଲା — ନୁହଁ ? ତୁ ଦିନେ ତା ଘରକୁ ଯାଇ କଥାବାର୍ତ୍ତା ହୋଇ ଆସିବୁ — ବୁଝିଲୁ ?'' ଯୁବକ ତାଙ୍କର ସବୁକଥା ଶୁଣି କହିଲେ, ''କିନ୍ତୁ ମହାଶୟ ! ବଡ଼ ନରେନ୍‌କୁ ମୋତେ ଯେପରି ଭଲ ଲାଗେ ଏପରି ଆଉ କାହାକୁ ଲାଗେ ନାହିଁ, ସେଥିପାଇଁ ଛୋଟ ନରେନ୍‌ର ଘରକୁ ଯିବାକୁ ଇଚ୍ଛା ହେଉ ନାହିଁ ।'' ଏଥିରେ ଠାକୁର ତାକୁ ତିରସ୍କାର କରି କହିଲେ, ''ତୁ ତ ଭାରି ଏକବାଗିଆ, ଏହା ହୀନବୁଦ୍ଧିର କଥା, ଭଗବାନଙ୍କ ପାଞ୍ଚପ୍ରକାର ଫୁଲର ଡାଲା — ନାନାପ୍ରକାରର ଭକ୍ତ, ସମସ୍ତଙ୍କ ସହିତ ମିଶି ଆନନ୍ଦ ନ କରିପାରିବା ଅତ୍ୟନ୍ତ ହୀନବୁଦ୍ଧିର କାର୍ଯ୍ୟ; ତୁ ଛୋଟ ନରେନ୍ ନିକଟକୁ ଦିନେ ନିଶ୍ଚୟ ଯିବୁ — କ'ଣ, ଯିବୁ ତ ?'' ସେ ଅଗତ୍ୟା

ସମ୍ମତ ହୋଇ ତାଙ୍କୁ ପ୍ରଣାମ କରି ବିଦାୟ ଗ୍ରହଣ କଲା । ପରେ ଜଣାଗଲା, ଏହି ବ୍ୟକ୍ତି କେତେ ଦିନ ପରେ ଠାକୁରଙ୍କ କଥା ଅନୁସାରେ ଛୋଟ ନରେନ୍‌ର ଘରକୁ ବାର୍ତ୍ତାଳାପ କରିବାକୁ ଯାଇ ତା'ର କଥାରେ ନିଜ ଜୀବନର ଏକ ଗୁରୁତର ଜଟିଳ ସମସ୍ୟାର ସମାଧାନ ଲାଭ କରି ଧନ୍ୟ ହୋଇଥିଲା । ସେଦିନ ନୌକା କଲିକତାରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ଦଶଟା ବାଜିଥିଲା ।

### ରାତିରେ ଭୋଜନ ସମୟରେ ଶ୍ରୀଶ୍ରୀମା'ଙ୍କ ସମ୍ବନ୍ଧରେ ଜଣେ ସ୍ତ୍ରୀ-ଭକ୍ତଙ୍କ ସହିତ କଥା :

ସ୍ତ୍ରୀ-ଭକ୍ତମାନେ ସେହି ରାତିରେ ଶ୍ରୀଶ୍ରୀମା'ଙ୍କ ନିକଟରେ ରହିଥିଲେ ଏବଂ ସ୍ନାନଯାତ୍ରା ଦିନ ଦେବୀଙ୍କ ପ୍ରତିଷ୍ଠା-ବାର୍ଷିକୀ ଉପଲକ୍ଷେ କାଳୀମନ୍ଦିରରେ ବିଶେଷ ସମାରୋହ ହେବାର ଜାଣି ସେହି ଉତ୍ସବ ଦର୍ଶନ ପରେ କଲିକତା ଫେରିବେ ବୋଲି ସ୍ଥିର କଲେ । ରାତିରେ ଭୋଜନ କରିବାକୁ ବସି ଠାକୁର ପାନିହାଟି ଉତ୍ସବ କଥାପ୍ରସଙ୍ଗରେ ସେମାନଙ୍କ ମଧ୍ୟରୁ ଜଣକୁ କହିଲେ, ''ସେ(ଶ୍ରୀଶ୍ରୀମା) ସାଙ୍ଗରେ ନ ଯାଇ ଭଲ କରିଛି । ଏତେ ଭିଡ଼, ତା'ପରେ ଭାବସମାଧି ପାଇଁ ମୋତେ ସମସ୍ତେ ଲକ୍ଷ୍ୟ କରୁଥିଲେ । ତାଙ୍କୁ ସାଙ୍ଗରେ ଦେଖିଥିଲେ ଲୋକେ କହିଥାଆନ୍ତେ 'ହଂସ-ହଂସୀ ଆସିଛନ୍ତି !' ସେ ଖୁବ୍ ବୁଦ୍ଧିମତୀ ।'' ଶ୍ରୀଶ୍ରୀମା'ଙ୍କର ଅସାମାନ୍ୟ ବୁଦ୍ଧିର ଦୃଷ୍ଟାନ୍ତସ୍ୱରୂପ ପୁନର୍ବାର କହିବାକୁ ଲାଗିଲେ, ମାରୱାଡ଼ି ଭକ୍ତ[୧] ଯେତେବେଳେ ଦଶହଜାର ଟଙ୍କା ଦେବାକୁ ଚାହିଁଲା ସେତେବେଳେ ମୋ ମୁଣ୍ଡରେ ଯେପରି କରତ ବସାଇଦେଲା; ମା'କୁ କହିଲି, 'ମା, ଏତେଦିନ ପରେ ପୁଣି ପ୍ରଲୋଭନ ଦେଖାଇବାକୁ ଆସିଲୁ !' ସେହି ସମୟରେ ତାହାର ମନ ବୁଝିବା ପାଇଁ ଡାକି କହିଲି, 'ଆଗୋ, ଇଏ ଟଙ୍କା ଦେବାକୁ ଚାହୁଁଛି, ମୁଁ ନେଇପାରିବି ନାହିଁ କହିବାରୁ ତୁମ ନାମରେ ଦେବାକୁ ଚାହୁଁଛି, ତୁମେ ଏହାକୁ ନେଉନ କାହିଁକି — କ'ଣ କହୁଛ ?' ସେକଥା ଶୁଣି ସେ କହିଲେ, 'ସେକଥା କିପରି ହେବ ? ଟଙ୍କା ନେବା ହେବ ନାହିଁ, ମୁଁ ନେଲେ ଏଟଙ୍କା ତୁମର ହିଁ ନେବା ହେବ । କାରଣ, ମୁଁ ଏହାକୁ ରଖିଲେ ତୁମର ସେବା ଏବଂ ଅନ୍ୟାନ୍ୟ ଆବଶ୍ୟକ ଜିନିଷରେ ତାହା ବ୍ୟୟ ନ କରି ରହିପାରିବି ନାହିଁ; ସୁତରାଂ ଏହା ତୁମ ଦ୍ୱାରା ହିଁ ଗ୍ରହଣ କରିବା ହେବ । ତୁମକୁ ଲୋକମାନେ ତୁମର ତ୍ୟାଗ ପାଇଁ ଶ୍ରଦ୍ଧା ଭକ୍ତି କରନ୍ତି — ଅତଏବ ଟଙ୍କା କୌଣସି ପ୍ରକାରରେ ନିଆଯାଇପାରିବ ନାହିଁ ।' ତା'ର (ଶ୍ରୀଶ୍ରୀମାଙ୍କର) ସେହି କଥା ଶୁଣି ମୁଁ ନିଶ୍ଚିନ୍ତ ହେଲି !''

---

୧. ତାଙ୍କ ନାମ ଲକ୍ଷ୍ମୀନାରାୟଣ ।

## ଶ୍ରୀଶ୍ରୀମା'ଙ୍କ ସହିତ ଉକ୍ତ ଭକ୍ତଙ୍କର କଥା :

ଠାକୁରଙ୍କର ଭୋଜନ ସରିବା ପରେ ସ୍ତ୍ରୀ-ଭକ୍ତମାନେ ନହବତରୁ ମାତା ଠାକୁରାଣୀଙ୍କ ନିକଟକୁ ଯାଇ ତାଙ୍କ ସମ୍ବନ୍ଧରେ ଠାକୁର ଯାହା କହିଥିଲେ, ତାହା କହିବାରୁ, ଶ୍ରୀଶ୍ରୀମା' କହିଲେ, ''ସକାଳେ ସେ (ଠାକୁର) ମୋତେ ଯେପରି ଭାବରେ ଯିବାକୁ କହି ପଠାଇଲେ ସେଥିରୁ ହିଁ ବୁଝିଥିଲି—ସେ ମନ ଖୋଲି ଏବିଷୟରେ ଅନୁମତି ଦେଉ ନାହାନ୍ତି । ତା'ହେଲେ କହିଥାଆନ୍ତେ—ହଁ, ନିଶ୍ଚୟ ଯିବ । ସେପରି ନ କହି ସେ ସେହି ବିଷୟର ମୀମାଂସାର ଭାର ଯେତେବେଳେ ମୋ ଉପରେ ଛାଡ଼ିଦେଇ କହିଲେ, 'ତାର ଇଚ୍ଛା ହେଲେ ଚାଲୁ', ସେତେବେଳେ ସ୍ଥିର କଲି ଯିବାର ସଂକଳ୍ପ ତ୍ୟାଗ କରିବା ହିଁ ଭଲ ।''

## ସ୍ନାନଯାତ୍ରା ଦିନ ନାନାପ୍ରକାର ଲୋକଙ୍କ ସଂସର୍ଗରେ ଠାକୁରଙ୍କର ଭାବଭଙ୍ଗ ଓ ବିରକ୍ତି :

ଗାତ୍ରଦାହ ହେବାରୁ ସେ ରାତ୍ରି ଠାକୁରଙ୍କର ନିଦ୍ରା ହେଲା ନାହିଁ । ଉତ୍ସବ ସ୍ଥଳରେ ନାନାପ୍ରକାର ଚରିତ୍ରର ଲୋକ ତାଙ୍କ ଦେବ-ଅଙ୍ଗ ସ୍ପର୍ଶ କରିଥିଲେ ବୋଲି ବୋଧହୁଏ ସେହିପରି ହୋଇଥିଲା । କାରଣ, ଦେଖାଯାଉଥିଲା ଅପବିତ୍ର ଅଶୁଦ୍ଧମନା ବ୍ୟକ୍ତିମାନେ ବ୍ୟାଧିରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ଅଥବା ଅନ୍ୟପ୍ରକାର ସକାମ ଭାବରେ ତାଙ୍କର ଅଙ୍ଗସ୍ପର୍ଶପୂର୍ବକ ପଦଧୂଳି ଗ୍ରହଣ କଲେ ସେହି ପ୍ରକାର ଜ୍ୱାଳାରେ ସେ ଅନେକ ସମୟରେ ପ୍ରପୀଡ଼ିତ ହେଉଥିଲେ । ପାନିହାଟି ଉତ୍ସବର ଦିନକ ପରେ ସ୍ନାନଯାତ୍ରାର ପର୍ବ ଉପସ୍ଥିତ ହେଲା । ସେହିଦିନ ଆମେ ଦକ୍ଷିଣେଶ୍ୱର ଯାଇପାରି ନ ଥିଲୁ । ସ୍ତ୍ରୀ-ଭକ୍ତମାନଙ୍କ ନିକଟରୁ ଶୁଣିଛୁ ଏହି ଦିନ ଅନେକ ଜଣ ସ୍ତ୍ରୀ-ପୁରୁଷ ଠାକୁରଙ୍କୁ ଦର୍ଶନ କରିବାକୁ ଆସିଥିଲେ । ସେମାନଙ୍କ ମଧ୍ୟରେ ଅ—ର ମା ନାମ୍ନୀ ଜନୈକା ନିଜର ବିଷୟସମ୍ପତ୍ତିର ବନ୍ଦୋବସ୍ତ କରାଇ ନେବାର ଆଶାରେ ତାଙ୍କୁ ବହୁତ ପ୍ରକାରରେ କହି, ବ୍ୟସ୍ତ କରି ତାଙ୍କ ଆନନ୍ଦରେ ବିଶେଷ ବିଘ୍ନ ପହଞ୍ଚାଇଥିଲେ । ମଧ୍ୟାହ୍ନରେ ଭୋଜନ କରିବା ସମୟରେ ତାକୁ ନିକଟରେ ବସିବା ଦେଖି ସେ ବିରକ୍ତ ହୋଇ କଥା କହି ନ ଥିଲେ ଏବଂ ଅନ୍ୟ ଦିନ ପରି ଖାଇପାରିଲେ ନାହିଁ । ପରେ, ଭୋଜନାନ୍ତେ ଆମର ପରିଚିତା ଜଣେ ସ୍ତ୍ରୀଭକ୍ତ ତାଙ୍କୁ ଆଚମନ ପାଇଁ ଜଳ ଦେବାକୁ ଗଲାବେଳେ ତାକୁ ଏକାନ୍ତରେ କହିଥିଲେ, ''ଏଠାରେ ଲୋକ ଆସନ୍ତି ଭକ୍ତି, ପ୍ରେମ ହେବ ବୋଲି—ଏଠାରେ ତା'ର ବିଷୟର କ'ଣ ବନ୍ଦୋବସ୍ତ ହେବ କହିଲ ଦେଖି ? ସେ ସ୍ତ୍ରୀଲୋକ କାମନା କରି ଆମ୍ବ ସନ୍ଦେଶ ଇତ୍ୟାଦି ଆଣିଛି—ସେଥିରୁ ଟିକିଏ ମଧ୍ୟ ମୁହଁରେ ଦେଇପାରିଲି ନାହିଁ । ଆଜି ସ୍ନାନଯାତ୍ରା, ଅନ୍ୟ ବର୍ଷମାନଙ୍କରେ ଏହି ଦିନ କେତେ ଭାବସମାଧି ହେଉଥିଲା, ଦୁଇ-ତିନି ଦିନ ଧରି ଭାବର ସ୍ରୋତ ରହୁଥିଲା, ଆଜି କିଛି ହିଁ ହେଲା ନାହିଁ—ନାନା ଭାବର

ଲୋକଙ୍କର ହାଓ୍ୱା ବାଜି ଉଚ୍ଚ ଭାବ ଆସିପାରିଲା ନାହିଁ !'' ଅ—ର ମା' ସେହି ରାତିରେ ଦକ୍ଷିଣେଶ୍ୱରରେ ଅବସ୍ଥାନ କରିବାରୁ ରାତିରେ ମଧ୍ୟ ଠାକୁରଙ୍କ ବିରକ୍ତିର ଭାବ ପ୍ରଶମିତ ହେଲା ନାହିଁ । ରାତିରେ ଭୋଜନ କରିବାବେଳେ ଜଣେ ସ୍ତ୍ରୀଭକ୍ତଙ୍କୁ କହିଲେ, ''ଏଠାରେ ସ୍ତ୍ରୀଲୋକମାନଙ୍କର ଏତେ ଭିଡ଼ ଭଲ ନୁହେଁ, ମଥୁରବାବୁଙ୍କ ପୁତ୍ର ତ୍ରୈଲୋକ୍ୟବାବୁ ଏଠାରେ ଅଛନ୍ତି—କ'ଣ ମନେ କରିବେ କୁହ ତ ? ଜଣେ ଦୁଇଜଣ ବେଳେ ବେଳେ ଆସିଲେ, ଦିନେ ଅଧେ ରହି ଚାଲିଗଲେ—ସେ କଥା ନୁହେଁ, ଏକାବେଳକେ ଭିଡ଼ ଲାଗିଯାଇଛି ! ସ୍ତ୍ରୀଲୋକମାନଙ୍କ ଏତେ ଆସିବା ମୁଁ ସହ୍ୟ କରିପାରେ ନାହିଁ ।'' ଠାକୁରଙ୍କର ବିରକ୍ତିର କାରଣ ହୋଇଛନ୍ତି ବୋଲି ଭାବି ସ୍ତ୍ରୀ-ଭକ୍ତମାନେ ସେଦିନ ବିଶେଷ ବିଷଣ୍ଣା ହୋଇଥିଲେ ଏବଂ ପ୍ରଭାତ ହେଲା ମାତ୍ରେ କଲିକତା ଫେରି ଯାଇଥିଲେ । ସ୍ନାନଯାତ୍ରା ଉପଲକ୍ଷେ କାଳୀବାଡ଼ୀରେ ବିଶେଷ ସମାରୋହରେ ପୂଜା ଏବଂ ଯାତ୍ରାଦି ହୋଇଥିଲା, କିନ୍ତୁ ସେମାନେ ପୂର୍ବୋକ୍ତ କାରଣରୁ ସେଦିନ ଆଦୌ ଆନନ୍ଦ ଲାଭ କରିପାରି ନ ଥିଲେ । ନିରନ୍ତର ଉଚ୍ଚ ଭାବଭୂମିରେ ରହି ମଧ୍ୟ ଠାକୁରଙ୍କର ଦୈନନ୍ଦିନ ପ୍ରତ୍ୟେକ ଘଟଣାରେ କେତେଦୂର ଲକ୍ଷ୍ୟ ଥିଲା ଏବଂ ଭକ୍ତମାନଙ୍କର କଲ୍ୟାଣ ନିମିତ୍ତ ସେ ସେମାନଙ୍କୁ କିପରି ଶାସନ ଓ ପରିଚାଳନା କରୁଥିଲେ, ତାହା ପୂର୍ବୋକ୍ତ ବିବରଣୀରୁ ପାଠକ କିଛିଟା ବୁଝିପାରିବେ ।

# ଏକାଦଶ ଅଧ୍ୟାୟ

## ଠାକୁରଙ୍କର କଲିକତା ଆଗମନ

### ପାନିହାଟି ଯାଇ ଗଳାର ଯନ୍ତ୍ରଣା ବୃଦ୍ଧି ଓ ବାଳକ-ସ୍ୱଭାବ ଠାକୁରଙ୍କର ଆଚରଣ :

ପାନିହାଟି ମହୋତ୍ସବରେ ଯୋଗଦାନ କରି ଠାକୁରଙ୍କର ଗଳାର ଯନ୍ତ୍ରଣା ବୃଦ୍ଧି ହେଲା । ସେଦିନ ମଝିରେ ମଝିରେ ବର୍ଷା ହୋଇଥିଲା । ବର୍ଷାରେ ଭିଜି ଆର୍ଦ୍ରପାଦରେ ବହୁସମୟ ଭାବାବେଶରେ ଅତିବାହିତ କରିବା ଫଳରେ ରୋଗ ବଢ଼ିଛି ବୋଲି ଡାକ୍ତର ଭକ୍ତମାନଙ୍କୁ ବାରମ୍ବାର ଅନୁଯୋଗ କଲେ ଏବଂ ପୁନରାୟ ସେହିପ୍ରକାର ଅତ୍ୟାଚାର ହେଲେ ଏହା ଉତ୍କଟ ଅବସ୍ଥାକୁ ଆସିବ ବୋଲି ଭୟ ପ୍ରଦର୍ଶନ କରିବାକୁ ମଧ ଛାଡ଼ିଲେ ନାହିଁ । ଭକ୍ତମାନେ ଏବେଠାରୁ ସତର୍କ ରହିବାକୁ ଦୃଢ଼ସଂକଳ୍ପ କଲେ ଏବଂ ବାଳକ-ସ୍ୱଭାବ ଠାକୁର ସେହିଦିନର ଅତ୍ୟାଚାରର ସମସ୍ତ ଦୋଷ ରାମଚନ୍ଦ୍ରପ୍ରମୁଖ କେତେଜଣ ପ୍ରବୀଣ ଭକ୍ତଙ୍କ ଉପରେ ଲଦିଦେଇ କହିଲେ, ''ସେମାନେ ଯଦି ଟିକିଏ ଜୋର୍ କରି ମୋତେ ନିଷେଧ କରିଥାଆନ୍ତେ ତା ହେଲେ କ'ଣ ମୁଁ ପାନିହାଟିକୁ ଯାଇଥାଆନ୍ତି ।'' ଚିକିତ୍ସକ ନ ହୋଇଥିଲେ ମଧ ରାମବାବୁ କ୍ୟାମ୍ବେଲ ମେଡିକାଲ ସ୍କୁଲରେ ପଢ଼ି ଡାକ୍ତରୀ ପାଶ୍ କରିଥିଲେ । ବୈଷ୍ଣବ ମତ ପ୍ରତି ଅନୁରାଗବଶତଃ ପାନିହାଟିର ଉତ୍ସବକୁ ଯିବା ପାଇଁ ସେ ହିଁ ଠାକୁରଙ୍କୁ ବିଶେଷ ଭାବରେ ଉତ୍ସାହିତ କରିଥିଲେ, ସୁତରାଂ ସେ ହିଁ ଏବିଷୟରେ ସମଧିକ ଦୋଷୀ ବୋଲି ବିବେଚିତ ହେଲେ । ଆମମାନଙ୍କ ଜନୈକ ବନ୍ଧୁ ଦିନେ ଏହି ସମୟରେ ଦକ୍ଷିଣେଶ୍ୱରରେ ଉପସ୍ଥିତ ହୋଇ ଦେଖିଲେ, ଠାକୁର କଣ୍ଠ ସ୍ଥାନରେ ପ୍ରଲେପ ଲଗାଇ ଘର ଭିତରେ ଛୋଟ ତକ୍ତପୋଷ ଉପରେ ଚୁପ୍ ହୋଇ ବସିଛନ୍ତି । ସେ କହିଲେ, ''ବାଳକକୁ ଶାସନ କରିବା ପାଇଁ କୌଣସି କାର୍ଯ୍ୟ କରିବାକୁ ନିଷେଧ କରି ଗୋଟିଏ ସ୍ଥାନରେ ଆବଦ୍ଧ ରଖିଲେ ସେ ଯେପରି ବିଷଣ୍ଣ ହୋଇ ରହେ, ଠାକୁରଙ୍କ ମୁଖମଣ୍ଡଳରେ ଅବିକଳ ସେହି ଭାବ ଦେଖିବାକୁ ପାଇଲି । ପ୍ରଣାମ କରି ପଚାରିଲି, କ'ଣ ହୋଇଛି ? ସେ ଏହି ପ୍ରଶ୍ନରେ ଗଳାର ପ୍ରଲେପ ଦେଖାଇ ମୃଦୁ ସ୍ୱରରେ କହିଲେ, 'ହେଇ ଦେଖୁନ, ଯନ୍ତ୍ରଣା ବଢ଼ିଛି, ଡାକ୍ତର ବେଶୀ କଥା କହିବାକୁ ମନା କରିଛି ।' କହିଲି, ସେ ତ ଠିକ୍ ମହାଶୟ, ଶୁଣିଲି ସେଦିନ ଆପଣ ପାନିହାଟି ଯାଇଥିଲେ, ସେଥିପାଇଁ ବୋଧହୁଏ ଯନ୍ତ୍ରଣା ବଢ଼ିଛି । ସେ ସେଥିରେ ବାଳକ ପରି ଅଭିମାନରେ କହିବାକୁ ଲାଗିଲେ, 'ହଁ, ଦେଖ ତ, ଉପରେ ଜଳ, ତଳେ ଜଳ, ଆକାଶରୁ ବୃଷ୍ଟି, ରାସ୍ତାରେ କାଦୁଅ, ଆଉ ରାମ କେମିତିକା ମୋତେ ସେଠାକୁ ନେଇଯାଇ ସମସ୍ତ ଦିନ ନଚାଇ ଆଣିଲା । ସେ ପାଶ୍ କରିଥିବା ଡାକ୍ତର, ଯଦି ଭଲଭାବରେ ବାରଣ କରିଥାଆନ୍ତା ତା'ହେଲେ ମୁଁ

କ'ଣ ସେଠାକୁ ଯାଇଥାଆନ୍ତି ?' ମୁଁ କହିଲି, 'ମହାଶୟ, ରାମର ଭାରି ଅନ୍ୟାୟ ହୋଇଛି । ତେବେ ଯାହା ହେବାର ହୋଇଯାଇଛି, ଏବେ କେତେଦିନ ଟିକିଏ ସାବଧାନରେ ରହନ୍ତୁ, ତା'ହେଲେ ଭଲ ହୋଇଯିବ !' ଏହା ଶୁଣି ସେ ଖୁସି ହେଲେ ଏବଂ କହିଲେ, 'ତା ବୋଲି ସମ୍ପୂର୍ଣ୍ଣ କଥା ବନ୍ଦ କରି କ'ଣ ରହି ହେବ ? ଏହି ଦେଖୁନୁ—ତୁ କେତେ ଦୂରରୁ ଆସିଲୁ, ଆଉ ମୁଁ ତୋ'ସହିତ ପଦେ କଥା କହିବି ନାହିଁ, ଏକଥା କ'ଣ ସମ୍ଭବ ?' କହିଲି, ଆପଣଙ୍କୁ ଦେଖିଲେ ହିଁ ଆନନ୍ଦ ହୁଏ, କଥା ନ କହିଲେ ଆମର କୌଣସି କଷ୍ଟ ହେବ ନାହିଁ—ଭଲ ହୋଇଯାଆନ୍ତୁ, ପୁଣି କେତେ କଥା ଶୁଣିବି । କିନ୍ତୁ ସେକଥା କିଏ ଶୁଣୁଛି ? ଡାକ୍ତରଙ୍କର ନିଷେଧ ଓ ନିଜର କଷ୍ଟ ପ୍ରଭୃତି ସମସ୍ତ ବିଷୟ ଭୁଲିଯାଇ ସେ ପୂର୍ବପରି ମୋ ସହିତ କଥାବାର୍ତ୍ତାରେ ପ୍ରବୃତ୍ତ ହେଲେ ।''

## ଗଳାରେ କ୍ଷତ ହେବା ଓ ଡାକ୍ତରଙ୍କର ବାରଣ ନ ମାନି ଠାକୁରଙ୍କର ସମୀପାଗତ ଜନସାଧାରଣଙ୍କୁ ପୂର୍ବପରି ଉପଦେଶ ଦାନ :

କ୍ରମେ ଆଷାଢ଼ ମାସ ଅତୀତ ହେଲା । ଏକ ମାସରୁ ଅଧିକ ଚିକିତ୍ସାରେ ରହି ମଧ୍ୟ ଠାକୁରଙ୍କର ଗଳାର ଯନ୍ତ୍ରଣା ଉପଶମ ହେଲା ନାହିଁ । ଅନ୍ୟ ସମୟରେ ଯନ୍ତ୍ରଣା କମ୍ ବୋଧ ହେଲେ ମଧ୍ୟ ଏକାଦଶୀ, ପୂର୍ଣ୍ଣିମା ଓ ଅମାବସ୍ୟା ପ୍ରଭୃତି ତିଥିରେ ଏହାର ବିଶେଷ ବୃଦ୍ଧି ହେଉଥିଲା । କୌଣସି ପ୍ରକାର କଠିନ ଖାଦ୍ୟ ଓ ତରକାରି ଇତ୍ୟାଦି ଖାଇବା ପ୍ରାୟ ଅସାଧ୍ୟ ହେଉଥିଲା । ତେଣୁ ଦୁଧ ଭାତ ଓ ସୁଜି ଖିରି କେବଳ ଭୋଜନ କରି ଠାକୁର ସେହି ସମୟରେ ଦିନ କାଟୁଥିଲେ । ଡାକ୍ତରମାନେ ପରୀକ୍ଷା କରି ସ୍ଥିରକଲେ, ତାଙ୍କର Clergyman's sore-throat ହୋଇଅଛି ଅର୍ଥାତ୍ ଲୋକଙ୍କୁ ଦିନରାତି ଧର୍ମୋପଦେଶ ପ୍ରଦାନରେ ବାକ୍ୟନ୍ତ୍ରର ଅତ୍ୟଧିକ ବ୍ୟବହାର ହୋଇ ଗଳାରେ କ୍ଷତ ହେବାର ଉପକ୍ରମ ହୋଇଅଛି । ଧର୍ମପ୍ରଚାରକମାନଙ୍କର ସେପରି ବ୍ୟାଧି ହେବାର କଥା ଚିକିତ୍ସାଶାସ୍ତ୍ରରେ ଲିପିବଦ୍ଧ ଅଛି । ରୋଗ ନିରୂପଣ କରି ଡାକ୍ତରମାନେ ଔଷଧ-ପଥ୍ୟାଦିର ଯେଉଁପ୍ରକାର ବ୍ୟବସ୍ଥା କଲେ, ଠାକୁର ସେସବୁ ମାନି ଚଳିଲେ ମଧ୍ୟ ଦୁଇଟି ବିଷୟରେ ଏହାର ବ୍ୟତିକ୍ରମ ହେବାକୁ ଲାଗିଲା । ପ୍ରଗାଢ଼ ଈଶ୍ୱରପ୍ରେମ ଓ ସଂସାରତପ୍ତ ଜନଗଣଙ୍କ ପ୍ରତି ଅପାର କରୁଣାପରବଶ ହୋଇ ସେ ସମାଧି ଓ ବାକ୍ସଂଯମ ଆଡ଼କୁ ଯଥାଯଥ ଲକ୍ଷ୍ୟ ରଖିବାକୁ ସମର୍ଥ ହେଲେ ନାହିଁ । କୌଣସି ପ୍ରକାର ଈଶ୍ୱରୀୟ ପ୍ରସଙ୍ଗ ପଡ଼ିଲେ ସେ ଦେହବୁଦ୍ଧି ହରାଇ ପୂର୍ବପରି ସମାଧିସ୍ଥ ହେବାକୁ ଲାଗିଲେ ଏବଂ ଅଜ୍ଞାନ-ଅନ୍ଧକାରରେ ନିପତିତ, ଶୋକରେ ତାପରେ ମୁହ୍ୟମାନ ଜନଗଣ ପଥର ସନ୍ଧାନ ଓ ଶାନ୍ତିର ପ୍ରୟାସୀ ହୋଇ ତାଙ୍କ ନିକଟକୁ ଆସିଲା ମାତ୍ରେ

କରୁଣାରେ ଆତ୍ମହରା ହୋଇ ସେ ପୂର୍ବପରି ସେମାନଙ୍କୁ ଉପଦେଶ ପ୍ରଦାନରେ କୃତାର୍ଥ କରିବାକୁ ଲାଗିଲେ ।

### ବହୁବ୍ୟକ୍ତିଙ୍କୁ ଧର୍ମୋପଦେଶ ଦେବାରେ ଅତ୍ୟଧିକ ପରିଶ୍ରମ ଓ ମହାଭାବ ଯୋଗୁଁ ନିଦ୍ରା ନ ହେବା ହିଁ ବ୍ୟାଧିର କାରଣ :

ଠାକୁରଙ୍କ ନିକଟରେ ଏବେ ଧର୍ମପିପାସୁ ବ୍ୟକ୍ତିମାନଙ୍କର ସଂଖ୍ୟା କିଛି କମ୍ ହେଉ ନ ଥିଲା । ପୁରାତନ ଭକ୍ତମାନଙ୍କ ଛଡ଼ା ପାଞ୍ଚ–ସାତ ବା ତତୋଧିକ ନୂତନ ବ୍ୟକ୍ତି ଧର୍ମଲାଭ ଆଶାରେ ଦକ୍ଷିଣେଶ୍ୱରରେ ତାଙ୍କ ନିକଟକୁ ପ୍ରତିଦିନ ଆସୁଥିବାର ଦେଖାଯାଉଥିଲା । ୧୮୭୫ ମସିହାରେ ଶ୍ରୀଯୁକ୍ତ କେଶବଙ୍କର ଦକ୍ଷିଣେଶ୍ୱର ଆସିବାର କିଛ ଦିନ ପରଠାରୁ ପ୍ରତିଦିନ ସେପରି ହେଉଥିଲା । ତେଣୁ ଲୋକଶିକ୍ଷା ପ୍ରଦାନ ପାଇଁ ଗତ ଏଗାର ବର୍ଷ ଧରି ଠାକୁରଙ୍କର ନିୟମିତ ସମୟରେ ସ୍ନାନ, ଆହାର ଏବଂ ବିଶ୍ରାମରେ ପ୍ରାୟତଃ ଅନେକ ବ୍ୟାଘାତ ଉପୁଜୁଥିଲା । ତା’ ଉପରେ ମହାଭାବର ପ୍ରେରଣାରେ ତାଙ୍କର ନିଦ୍ରା ସ୍ୱଳ୍ପ ହେଉଥିଲା । ଦକ୍ଷିଣେଶ୍ୱରରେ ତାଙ୍କ ନିକଟରେ ଥିବାବେଳେ ଆମେମାନେ କେତେଥର ଦେଖିଛୁ, ରାତିପ୍ରାୟ ଏଗାରଟା ସମୟରେ ଶୟନ କରିବାର ଅନତିକାଳ ପରେ ହିଁ ସେ ଉଠି ଭାବାବେଶରେ ପଦଚାରଣ କରୁଥାଆନ୍ତି — କେତେବେଳେ ପଶ୍ଚିମ, କେତେବେଳେ ଉତ୍ତର ଦରଜା ଖୋଲି ବାହାରକୁ ଯାଉଛନ୍ତି, ପୁଣି କେତେବେଳେ ବିଛଣାରେ ସ୍ଥିର ହୋଇ ଶୟନ କରି ମଧ ସମ୍ପୂର୍ଣ୍ଣ ଜାଗ୍ରତ ରହିଛନ୍ତି । ଏହିପରି ରାତିରେ ତିନିଚାରିଥର ଶଯ୍ୟାତ୍ୟାଗ କରି ମଧ ରାତି ଚାରିଟା ବାଜିବାମାତ୍ରେ ସେ ପ୍ରତିଦିନ ଉଠି ଶ୍ରୀଭଗବାନଙ୍କର ସ୍ମରଣ, ମନନ, ନାମ–ଗୁଣଗାନ କରୁ କରୁ ଉଷାର ଆଲୋକକୁ ଅପେକ୍ଷା କରୁଥିଲେ ଏବଂ ପରେ ଆମକୁ ଡାକି ଉଠାଉଥିଲେ । ଅତଏବ ଦିନରେ ବହୁ ବ୍ୟକ୍ତିଙ୍କୁ ଉପଦେଶ ଦେବାର ଅତ୍ୟଧିକ ପରିଶ୍ରମ ଏବଂ ରାତି ଅନିଦ୍ରାରେ ତାଙ୍କର ଶରୀର ଯେ ଏବେ ଅବସନ୍ନ ହେବ, ସେଥିରେ ବିଚିତ୍ର କ’ଣ !

### ଭାବାବେଶ ସମୟରେ ଜଗନ୍ମାତାଙ୍କ ସହିତ କଳହରେ ଠାକୁରଙ୍କର ଶାରୀରିକ ଅବସନ୍ନତା କଥା ପ୍ରକାଶ :

ଅତ୍ୟଧିକ ପରିଶ୍ରମରେ ତାଙ୍କର ଶରୀର ଯେ କ୍ରମେ ଅବସନ୍ନ ହେଉଥିଲା, ଠାକୁର ସେବିଷୟରେ ଆମମାନଙ୍କୁ ନ କହିଲେ ମଧ ଏହାର ପରିଚୟ ଶ୍ରୀଶ୍ରୀଜଗଦମ୍ବାଙ୍କ ସହିତ ତାଙ୍କର ପ୍ରେମର କଳହରେ ଆମେ ବେଳେ ବେଳେ ଶୁଣିବାକୁ ପାଉଥିଲୁ, କିନ୍ତୁ ବିଶେଷ ବୁଝିପାରୁ ନ ଥିଲୁ । ପୀଡ଼ିତ ହେବାର କିଛିଦିନ ପୂର୍ବରୁ ଦିନେ ଦକ୍ଷିଣେଶ୍ୱରରେ ପହଞ୍ଚି ଆମମାନଙ୍କ ମଧ୍ୟରୁ ଜଣେ ଦେଖିଥିଲେ, ସେ ଭାବାବିଷ୍ଟ ହୋଇ ଛୋଟ ତକ୍ତପୋଷ ଉପରେ ବସି କାହାକୁ ସମ୍ବୋଧନ କରି ମନକୁ ମନ କହୁଛନ୍ତି, ‘‘ଯେତେ ପ୍ରକାର ଆଜେବାଜେ ଲୋକଙ୍କୁ ଏଠାକୁ ଆଣିବୁ,

ସେରେ ଦୁଧରେ ଏକାଥରକେ ପାଞ୍ଚସେର ପାଣି, ଫୁଙ୍କି ଫୁଙ୍କି ଜାଳ ଠେଲି ଠେଲି ମୋର ଆଖି ଫୁଟିବା ଉପରେ—ହାଡ଼ ମାଟି ହେଲା—ଏତେ ମୁଁ କରିପାରିବି ନାହିଁ, ତୋର ସଉକ ହେଲେ ତୁ କରିବୁ ଯା ! ଭଲ ଲୋକଙ୍କୁ ଆଣ, ଯେଉଁମାନଙ୍କୁ ଗୋଟିଏ ଦୁଇଟି କଥା କହି ଦେଲେ ହିଁ (ଚୈତନ୍ୟ) ହେବ !'' ଆଉଥରେ ଦିନେ ସେ ପାଖକୁ ଆସିଥିବା ଭକ୍ତମାନଙ୍କୁ କହିଥିଲେ, ''ମା'କୁ ଆଜି କହୁଥିଲି—ବିଜୟ, ଗିରିଶ୍, କେଦାର, ରାମ, ମାଷ୍ଟର ଏହି କେତେଜଣଙ୍କୁ ଟିକିଏ ଟିକିଏ ଶକ୍ତି ଦେ, ଯେପରି ନୂଆ କେହି ଆସିଲେ ଏମାନଙ୍କ ଦ୍ୱାରା କିଛିଟା ପ୍ରସ୍ତୁତ ହୋଇ ମୋ ନିକଟକୁ ଆସନ୍ତି ।'' ସେହି ଭାବରେ ଲୋକଶିକ୍ଷାରେ ସହାୟତାପ୍ରଦାନ ବିଷୟରେ ଭକ୍ତିମତୀ ଜନୈକା ସ୍ତ୍ରୀ-ଭକ୍ତଙ୍କୁ ଥରେ କହିଥିଲେ, ''ତୁ ପାଣି ଢାଳ, ମୁଁ କାଦୁଅ ଚକଟିବି ।'' ଧର୍ମପିପାସୁ ଜନତା ଦକ୍ଷିଣେଶ୍ୱରରେ ପ୍ରତିଦିନ ବଢୁଥିବା ଦେଖି ତାଙ୍କର କଣ୍ଠରେ ପ୍ରଥମ ଯନ୍ତ୍ରଣା ଅନୁଭବର କେତେଦିନ ପରେ ଦିନେ ଭାବାବିଷ୍ଟ ହୋଇ ସେ ଶ୍ରୀଶ୍ରୀ ଜଗନ୍ମାତାଙ୍କୁ କହିଥିଲେ, ''ଏତେ ଲୋକ କ'ଣ ଆଣିବାକୁ ହୁଏ ? ଏକାବେଳକେ ଭିଡ଼ ଲଗାଇ ଦେଇଛୁ ! ଲୋକଙ୍କ ଭିଡ଼ରେ ଗାଧୋଇବା, ଖାଇବା ସମୟ ପାଉ ନାହିଁ ! ଏକେ ତ ଏହା କଣା ଢୋଲ (ନିଜ ଶରୀରକୁ ଲକ୍ଷ୍ୟ କରି), ରାତିଦିନ ଏହାକୁ ବଜାଇଲେ ଆଉ କେତେଦିନ ରହିବ ?''

### ଦକ୍ଷିଣେଶ୍ୱରକୁ କେତେ ଧର୍ମପିପାସୁ ଆସୁଥିଲେ ତାହା ନିର୍ଣ୍ଣୟ କରିବା ଦୁଃସାଧ୍ୟ :

ବାସ୍ତବିକ୍, ୧୮୮୪ ମସିହାର ଶେଷଭାଗରେ କଲିକତାର ଜନସାଧାରଣଙ୍କ ମଧ୍ୟରେ ଠାକୁରଙ୍କର ଲୋକୋତ୍ତର ଭାବ, ପ୍ରେମ, ସମାଧି ଓ ଅମୃତମୟୀ ବାଣୀର କଥା ମୁହଁରେ ମୁହଁରେ ଏତେଦୂର ପ୍ରଚାରିତ ହୋଇଯାଇଥିଲା ଯେ, ତାଙ୍କର ପୁଣ୍ୟଦର୍ଶନଲାଭ ଆଶାରେ ପ୍ରତିଦିନ ଦଳଦଳ ହୋଇ ଲୋକ ଦକ୍ଷିଣେଶ୍ୱରକୁ ଆସୁଥିଲେ ଏବଂ ଯେଉଁମାନେ ଥରେ ଆସୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ମୋହିତ ହୋଇ ବାରମ୍ବାର ଆସୁଥିଲେ । ୧୮୮୫ ମସିହା ଜୁଲାଇ ମାସରେ ଠାକୁରଙ୍କର ଗଳାରୋଗ ହେବା ପୂର୍ବରୁ ତାଙ୍କ ନିକଟକୁ ଏପରି କେତେଲୋକ ଆସିଥିଲେ ତାର ସଂଖ୍ୟା ଜାଣିବା କଷ୍ଟକର । କାରଣ, ଗୋଟିଏ ସ୍ଥାନରେ ଗୋଟିଏ ଦିନରେ ସେମାନେ ସମସ୍ତଙ୍କର ଏକତ୍ରିତ ହେବାର ସୁଯୋଗ କେବେ ହୋଇ ନ ଥିଲା । ସେହିପରି ସୁଯୋଗ ଉପସ୍ଥିତ ନ ହେବାରୁ ଏକ ପ୍ରକାର ଭଲ ହୋଇଥିଲା, ନ ହେଲେ ମୋର ପୂଜ୍ୟ ଦେଶର ପୂଜ୍ୟ ହେଉଛନ୍ତି, ମୋର ପ୍ରିୟତମଙ୍କୁ ସମସ୍ତେ ଭଲପାଉଛନ୍ତି ଭାବି ଠାକୁରଙ୍କର ଅନ୍ତରଙ୍ଗଗଣ ତାଙ୍କର ଭକ୍ତସଂଖ୍ୟା ବୃଦ୍ଧିରେ ଏତେ ଦିନ ଯେଉଁ ଆନନ୍ଦ ଅନୁଭବ କରୁଥିଲେ ତାହା ସେହି ସଂଖ୍ୟାର ବହୁଳତା ଦର୍ଶନରେ ବହୁ ପୂର୍ବରୁ ବିଷାଦ ଓ ଭୀତିରେ ପରିଣତ ହୋଇଥାଆନ୍ତା—କାରଣ,

ତାଙ୍କର ନିଜ ମୁହଁରୁ ସେମାନେ ବାରମ୍ବାର ଶୁଣିଥିଲେ ଯେ, ''ଅଧିକ ଲୋକ ଯେତେବେଳେ (ମୋତେ) ଦେବଜ୍ଞାନରେ ମାନିବେ, ଶ୍ରଦ୍ଧା ଭକ୍ତି କରିବେ, ସେତେବେଳେ ଏହାର(ଶରୀର)ର ଅନ୍ତର୍ଦ୍ଧାନ ହେବ ।''

**ନିଜର ଦେହରକ୍ଷାର ସମୟ ନିରୂପଣ ସମ୍ବନ୍ଧରେ ଠାକୁରଙ୍କର କଥା :**

ତାଙ୍କର ଦେହରକ୍ଷା କରିବାର ସମୟ ନିରୂପଣ ବିଷୟରେ ଠାକୁରେ ଅନେକ ସଙ୍କେତ ଆମମାନଙ୍କୁ ସମୟ ସମୟରେ ପ୍ରଦାନ କରିଥିଲେ । କିନ୍ତୁ ତାଙ୍କର ପ୍ରେମରେ ଅନ୍ଧ ଆମେ ସେସମସ୍ତ କଥା ସେତେବେଳେ ଶୁଣି ମଧ୍ୟ ଶୁଣି ନ ଥିଲୁ, ବୁଝିଥିଲେ ମଧ୍ୟ ହୃଦୟଙ୍ଗମ କରିପାରି ନ ଥିଲୁ । ତାଙ୍କର ଅଲୌକିକ କୃପା ଲାଭରେ ଆମେ ଯେପରି ଧନ୍ୟ ହୋଇଅଛୁ, ଆମମାନଙ୍କର ଆତ୍ମୀୟ ବନ୍ଧୁ ଓ ପରିଚିତ ସମସ୍ତେ ତାଙ୍କର ତଦ୍ରୂପ କୃପା ଲାଭରେ ଶାନ୍ତିର ଅଧିକାରୀ ହୁଅନ୍ତୁ—ଏହି ବିଷୟ ହିଁ ସେତେବେଳେ ସମସ୍ତଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ତେଣୁ ତାଙ୍କର ଅଦର୍ଶନ କଥା ଭାବିବାର ବେଳ ଆମ ନିକଟରେ କେଉଁଠି ଥିଲା ? ଗଳାରୋଗ ହେବାର ଚାରି ପାଞ୍ଚ ବର୍ଷ ପୂର୍ବରୁ ଠାକୁର ସେହି ବିଷୟରେ ଶ୍ରୀଶ୍ରୀମାତାଠାକୁରାଣୀଙ୍କୁ କହିଥିଲେ, ''ଯେତେବେଳେ ଯାହା ତାହା ହାତରୁ ଭୋଜନ କରିବି, କଲିକତାରେ ରାତ୍ରିଯାପନ କରିବି ଏବଂ ଖାଦ୍ୟର ଅଗ୍ରଭାଗ କାହାକୁ ଦେଇ ଅବଶିଷ୍ଟ ଅଂଶ ସ୍ୱୟଂ ଗ୍ରହଣ କରିବି, ସେତେବେଳେ ଜାଣିବ ଦେହରକ୍ଷା କରିବାରେ ଅଧିକ ବିଳମ୍ବ ନାହିଁ ।'' ଗଳାରୋଗ ହେବାର କିଛି କାଳ ପୂର୍ବରୁ ବାସ୍ତବରେ ଘଟଣା ମଧ୍ୟ ସେହି ପ୍ରକାରର ହୋଇଥିଲା । କଲିକତାର ବିଭିନ୍ନ ସ୍ଥାନରେ ନାନା ଲୋକଙ୍କ ଘରେ ନିମନ୍ତ୍ରିତ ହୋଇ ଠାକୁର ଅନ୍ନ ବ୍ୟତୀତ ଅନ୍ୟ ସମସ୍ତ ଭୋଜ୍ୟପଦାର୍ଥ ଯାହା-ତାହା ହାତରୁ ଭୋଜନ କରୁଥିଲେ । କଲିକତା ଆଗମନପୂର୍ବକ ଘଟଣାଚକ୍ରରେ ଶ୍ରୀଯୁକ୍ତ ବଳରାମ ବସୁଙ୍କ ଘରେ ଏହାପୂର୍ବରୁ ରାତ୍ରି ବାସ ମଧ୍ୟ ମଝିରେ ମଝିରେ କରିଥିଲେ ଏବଂ ଅଜୀର୍ଣ୍ଣରୋଗରେ ଆକ୍ରାନ୍ତ ହୋଇ ନରେନ୍ଦ୍ରନାଥ ଏହାପୂର୍ବରୁ ଥରେ ଦକ୍ଷିଣେଶ୍ୱରରେ ତାଙ୍କ ନିକଟରେ ପଥ୍ୟର ବନ୍ଦୋବସ୍ତ ହୋଇପାରିବ ନାହିଁ ବୋଲି ବହୁଦିନ ନ ଆସିବାରୁ ଠାକୁର ଦିନେ ତାଙ୍କୁ ସକାଳୁ ସକାଳୁ ଡକାଇ ଆଣି ନିଜ ପାଇଁ ପ୍ରସ୍ତୁତ ଝୋଳଭାତର ଅଗ୍ରଭାଗ ନରେନ୍ଦ୍ରନାଥଙ୍କୁ ଭୋଜନ କରାଇ ଅବଶିଷ୍ଟ ଅଂଶ ସ୍ୱୟଂ ଗ୍ରହଣ କରିଥିଲେ । ଶ୍ରୀଶ୍ରୀମାତାଠାକୁରାଣୀ ଏଥିରେ ଆପତ୍ତି କରି ତାଙ୍କ ପାଇଁ ପୁନର୍ବାର ରନ୍ଧନ କରିବା ପାଇଁ ଇଚ୍ଛା ପ୍ରକାଶ କରିବାରୁ ସେ କହିଥିଲେ, ''ନରେନ୍ଦ୍ରଙ୍କୁ ଅଗ୍ରଭାଗ ପ୍ରଦାନରେ ମନ ସଙ୍କୁଚିତ ହେଉ ନାହିଁ । ସେଥିରେ କିଛି ଦୋଷ ହେବ ନାହିଁ, ତେଣୁ ତୁମର ପୁଣି ରାନ୍ଧିବା ଦରକାର ନାହିଁ ।'' ଶ୍ରୀଶ୍ରୀମା' କହୁଥିଲେ, ''ଠାକୁର ସେପରି ବୁଝାଇଲେ ମଧ୍ୟ ତାଙ୍କର ପୂର୍ବକଥା ସ୍ମରଣ କରି ମୋର ମନ ଖରାପ ହୋଇଯାଇଥିଲା ।''

## ଠାକୁରଙ୍କର ଶିବଜ୍ଞାନରେ ଜୀବସେବା–ଅନୁଷ୍ଠାନ :

ଲୋକଶିକ୍ଷାପ୍ରଦାନର ଅତ୍ୟଧିକ ପରିଶ୍ରମରେ ଶରୀର ଅବସନ୍ନ ହେଉଥିଲେ ମଧ୍ୟ ଠାକୁରଙ୍କ ମନର ଉତ୍ସାହ ଏବିଷୟରେ କେବେ ସ୍ୱଳ୍ପ ଦେଖାଯାଇ ନାହିଁ । ଅଧିକାରୀ ବ୍ୟକ୍ତି ପହଞ୍ଚିଲା ମାତ୍ରେ ସେ କିପରି ପ୍ରାଣେ ପ୍ରାଣେ ତାହା ବୁଝିପାରୁଥିଲେ ଏବଂ କୌଣସି ଏକ ଦୈବଶକ୍ତିର ପ୍ରେରଣାରେ ଆତ୍ମହରା ହୋଇ ତାଙ୍କୁ ଉପଦେଶ ପ୍ରଦାନ ଏବଂ ସ୍ପର୍ଶାଦି କରି ତାଙ୍କର ଆଧ୍ୟାତ୍ମିକ ଉନ୍ନତିର ପଥ ଉନ୍ମୁକ୍ତ କରିଦେଉଥିଲେ । ସେ ଯେଉଁ ଭାବର ଭାବୁକ ତାଙ୍କର ମନରେ ସେତେବେଳେ ସେହି ଭାବ ପ୍ରବଳ ହୋଇ ଅନ୍ୟ ସମସ୍ତ ଭାବକୁ କିଛି ସମୟ ପାଇଁ ପ୍ରଚ୍ଛନ୍ନ କରିଦେଉଥିଲା ଏବଂ ଉକ୍ତ ଭାବରେ ସିଦ୍ଧିଲାଭ କରିବା ଦିଗକୁ ସେହି ବ୍ୟକ୍ତି କେତେଦୂର ଯାଇ ଆଉ ଆଗେଇପାରୁ ନାହିଁ ତାହା ଦିବ୍ୟଚକ୍ଷୁରେ ଦେଖିପାରି ସେ ତାର ପଥର ସମସ୍ତ ବାଧା ଘୁଞ୍ଚାଇ ଦେଇ ତାକୁ ଉଚ୍ଚତର ଭାବଭୂମିରେ ଆରୂଢ଼ କରାଇଦେଉଥିଲେ । ସେହି ଭାବରେ ଦେହରକ୍ଷାର ପୂର୍ବକ୍ଷଣ ପର୍ଯ୍ୟନ୍ତ ସେ ଶିବଜ୍ଞାନରେ ଜୀବସେବାର ସର୍ବଦା ଅନୁଷ୍ଠାନ କରିଥିଲେ ଏବଂ ସର୍ବଶ୍ରେଷ୍ଠ ଦାନ ବୋଲି ଯାହା ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି, ସେହି ଅଭୟ ପଦବୀର ଦିବ୍ୟ ଜ୍ୟୋତିରେ ଅଭିଷିକ୍ତ କରି ଆବାଳବୃଦ୍ଧବନିତାଙ୍କର ଜନ୍ମଜନ୍ମାଗତ ବାସନାପିପାସା ଚିରକାଳ ପାଇଁ ମେଣ୍ଟାଇ ଦେଉଥିଲେ !

## ଲୋକଙ୍କ ମନର ଗୂଢ଼ଭାବ ଓ ସଂସ୍କାର ଧରିପାରିବାର ଠାକୁରଙ୍କର କ୍ଷମତା :

ଲୋକଙ୍କର ମନର ନିଗୂଢ଼ ଭାବ ଏବଂ ସଂସ୍କାରସମୂହ ଧରିପାରିବାର କ୍ଷମତା ଆମେ ତାଙ୍କଠାରେ ଚିରକାଳ ସମୁଜ୍ଜ୍ୱଳ ଦେଖିଛୁ । ଶରୀରର ସୁସ୍ଥତା ବା ଅସୁସ୍ଥତା ତାଙ୍କ ମନକୁ ଯେ କେବେ ହେଲେ ସ୍ପର୍ଶ କରୁ ନ ଥିଲା ତାହା ଏବିଷୟର ଏକ ପ୍ରକୃଷ୍ଟ ପ୍ରମାଣ ବୋଲି କୁହାଯାଇପାରେ । କିନ୍ତୁ ଅନ୍ୟମାନଙ୍କର ଅନ୍ତରର ରହସ୍ୟ ସମ୍ପୂର୍ଣ୍ଣଭାବରେ ଜାଣିପାରିଲେ ମଧ୍ୟ, ନିଜ ଅଲୌକିକ ଶକ୍ତିର ପରିଚୟ ଦେବା ପାଇଁ ସେ ତାହା କଦାପି ପ୍ରକାଶ କରୁ ନ ଥିଲେ । କିନ୍ତୁ ଯେତେବେଳେ ଯେତିକି ଟିକିଏ ପ୍ରକାଶ କଲେ କାହାର ଯଥାର୍ଥ କଲ୍ୟାଣ ସାଧିତ ହେବ, ସେତେବେଳେ ସେତିକି ମାତ୍ର ପ୍ରକାଶ କରି ତାଙ୍କୁ ଉଚ୍ଚ ପଥ ଦେଖାଇ ଦେଉଥିଲେ । ଅଥବା କୌଣସି ସୌଭାଗ୍ୟବାନ ବ୍ୟକ୍ତିଙ୍କର ହୃଦୟରେ ତାଙ୍କ ପ୍ରତି ବିଶ୍ୱାସ ଓ ନିର୍ଭରର ଭାବ ଅଚଳ ଅଟଳ ରଖିବା ପାଇଁ ତାଙ୍କ ନିକଟରେ ପୂର୍ବୋକ୍ତ ଶକ୍ତିର ପରିଚୟ ପ୍ରଦାନ କରୁଥିଲେ । ପାଠକଙ୍କର ବୁଝିବାର ସୁବିଧା ହେବ ବୋଲି ସେ ବିଷୟରେ ସାମାନ୍ୟ ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାଯାଉଛି :

**ଏ ବିଷୟରେ ଦୃଷ୍ଟାନ୍ତ :**

ଠାକୁରଙ୍କର ଗଳାର ଯନ୍ତ୍ରଣା ବୃଦ୍ଧି ହେବା ଶୁଣି ୧୮୮୫ ମସିହା ଶ୍ରାବଣ ମାସ ଶେଷରେ ଆମମାନଙ୍କର ସୁପରିଚିତା ମହିଳାଭକ୍ତ ତାଙ୍କୁ ଦେଖିବାକୁ ଯାଇଥିଲେ । ଗ୍ରାମବାସୀ ଅନ୍ୟ ଏକ ରମଣୀ ଏକଥା ଜାଣିପାରି ତାଙ୍କୁ କହିଲେ, ‘‘ଠାକୁରଙ୍କୁ ଦେବା ପାଇଁ ଘରେ ଦୁଧ ଛଡ଼ା ଅନ୍ୟ କିଛି ନାହିଁ ଯାହାକୁ ମୁଁ ତୁମ ହାତରେ ପଠାଇପାରିବି । ଗୋଟିଏ ଘଟି ଦୁଧ ନେଇଯାଇପାରିବୁ ?’’ ପୂର୍ବୋକ୍ତ ରମଣୀ ସେଥିରେ ରାଜି ନ ହୋଇ କହିଲେ, ‘‘ଦକ୍ଷିଣେଶ୍ୱରରେ ଭଲ ଦୁଧର ଅଭାବ ନାହିଁ, ତାଙ୍କ ପାଇଁ ଦୁଧ ବରାଦ ଥାଏ ଏକଥା ମୁଁ ଜାଣିଛି, ତେଣୁ ଦୁଧ ନେଇ ଯିବା ଏକ ଅଡୁଆକାମ, ଅତଏବ ଦୁଧ ନେବାର ପ୍ରୟୋଜନ ନାହିଁ ।’’

ଦକ୍ଷିଣେଶ୍ୱରରେ ପହଞ୍ଚି ସେ ଦେଖିଲେ, ଗଳାର ବ୍ୟଥା ପାଇଁ ଠାକୁର ଦୁଧ ଭାତ ଛଡ଼ା ଅନ୍ୟ କୌଣସି ପ୍ରକାର ତରକାରି ଖାଇପାରୁ ନାହାନ୍ତି ଏବଂ କୌଣସି କାରଣରୁ ଗଉଡୁଣୀ ସେଦିନ ନିତ୍ୟ ବରାଦ ଦୁଧ ପଠାଇ ନ ଥିବାରୁ ଶ୍ରୀଶ୍ରୀମାତାଠାକୁରାଣୀ ବିଶେଷ ଚିନ୍ତିତା ଅଛନ୍ତି । କଲିକତାରୁ ଆସିବା ବେଳେ ସେ ଦୁଧ ନ ନେଇ ଆସିଥିବାରୁ ଅତ୍ୟନ୍ତ ଅନୁତପ୍ତା ହେଲେ ଏବଂ ସାହିରେ କୌଣସି ସ୍ଥାନରେ ଦୁଧ ମିଳିବ କି ନାହିଁ ସନ୍ଧାନ କରି ଜାଣିଲେ, ମନ୍ଦିରର ଅନତିଦୂରରେ ‘ପାଣ୍ଡେ ଗୃହିଣୀ’ ନାମରେ ପରିଚିତା ଜଣେ ହିନ୍ଦୁସ୍ଥାନୀ ସ୍ତ୍ରୀଲୋକର ଗାଈ ଅଛି ଏବଂ ସେ ଦୁଧ ବିକେ । ତା’ଘରକୁ ଯାଇ ଜାଣିଲେ ଯେ ତାଙ୍କର ସେଦିନ ସମସ୍ତ ଦୁଧ ବିକ୍ରି ସରିଛି; କେବଳ ଦେଢ଼ ପାଆ ବଳିଥିବାରୁ ସେ ତାକୁ ସିଝାଇ ଦେଇଛି । ବିଶେଷ ଦରକାର ବୋଲି କହିବାରୁ ସେତକ ଦୁଧ ସେ ତାଙ୍କଠାରୁ କିଣି ଆଣିଲେ ଏବଂ ଏହି ଦୁଧରେ ହିଁ ସେଦିନ ଠାକୁର ଭାତ ଖାଇଲେ । ଭୋଜନ ପରେ ଠାକୁର ହାତ ଧୋଇବାକୁ ଆସିବାରୁ ଭକ୍ତ ଜଣକ ତାଙ୍କ ହାତରେ ଜଳ ଢାଳିଲେ । ଏହାପରେ ଠାକୁର ତାଙ୍କୁ ସହସା ଏକାନ୍ତରେ ଡାକି କହିଲେ, ‘‘ଆଗୋ, ମୋର ଗଳାରେ ଖୁବ୍ ଯନ୍ତ୍ରଣା ହେଉଛି, ତୁମେ ରୋଗ ଭଲ କରିବାର ଯେଉଁ ମନ୍ତ୍ରଟି ଜାଣିଛ ତାହା ଉଚ୍ଚାରଣ କରି ଥରେ ହାତରେ ଆଉଁସି ଦିଅତ ।’’ ଏହି କଥା ଶୁଣି ରମଣୀ କିଛି ସମୟ ସ୍ତବ୍ଧ ହୋଇ ରହିଲେ । ଅନନ୍ତର ଠାକୁରଙ୍କ କହିବା ଅନୁସାରେ ତାଙ୍କର ଗଳା ଆଉଁସି ଦେବା ପରେ ଶ୍ରୀଶ୍ରୀମା’ଙ୍କ ନିକଟକୁ ଆସି କହିଲେ, ‘‘ମୁଁ ଯେ ସେହି ମନ୍ତ୍ର ଜାଣେ, ସେକଥା ସେ କିପରି ଜାଣିଲେ ? ଘୋଷପଡ଼ା ସମ୍ପ୍ରଦାୟଭୁକ୍ତା ଜଣେ ରମଣୀଙ୍କ ନିକଟରୁ ମୁଁ ଏହି ମନ୍ତ୍ର ସକାମ କର୍ମସମୂହ ସାଧନରେ ବିଶେଷ ସିଦ୍ଧିପ୍ରଦ ବୋଲି ବହୁପୂର୍ବରୁ ଶିଖିଥିଲି, ପରେ ନିଷ୍କାମ ହୋଇ ଈଶ୍ୱରଙ୍କୁ ଡାକିବା ହିଁ ଜୀବନର କର୍ତ୍ତବ୍ୟ ବୋଲି ଜାଣି ତାହା ତ୍ୟାଗ କରିଛି । ଜୀବନର ସମସ୍ତ କଥା ହିଁ ଠାକୁରଙ୍କୁ କହିଛି, କିନ୍ତୁ କର୍ତ୍ତାଭଜା ମନ୍ତ୍ର ଗ୍ରହଣ କଥା ଶୁଣିଲେ ସେ ଘୃଣା କରିବେ ଭାବି ଏବିଷୟ ତାଙ୍କ ନିକଟରୁ ଲୁଚାଇ ରଖିଥିଲି—କିପରି ସେ ଏହି

କଥା ଟେର୍ ପାଇଲେ !'' ଶ୍ରୀଶ୍ରୀମାତାଠାକୁରାଣୀ ତାଙ୍କର ଏକଥା ଶୁଣି ହସିହସି କହିଲେ, ''ଆଗୋ, ସେ ସବୁ କଥା ଜାଣିପାରନ୍ତି, କିନ୍ତୁ ମନମୁଖ ଏକ କରି ସତ୍ ଉଦ୍ଦେଶ୍ୟରେ ଯିଏ ଯାହା କରିଛି, ସେଥିପାଇଁ ସେ ତାଙ୍କୁ କେବେ ଘୃଣା କରନ୍ତି ନାହିଁ; ତୁମର ଭୟ ନାହିଁ; ମୁଁ ମଧ୍ୟ ତାଙ୍କ ନିକଟକୁ ଆସିବା ପୂର୍ବରୁ ସେହି ମନ୍ତ୍ର ଗ୍ରହଣ କରିଥିଲି, ଏଠାକୁ ଆସି ସେକଥା ତାଙ୍କୁ କହିବାରୁ ସେ କହିଥିଲେ, 'ମନ୍ତ୍ର ନେଇଛ ସେଥିରେ କିଛି କ୍ଷତି ନାହିଁ, ଏହି ମନ୍ତ୍ରକୁ ଏବେ ଇଷ୍ଟଙ୍କର ପାଦପଦ୍ମରେ ସମର୍ପଣ କରିଦିଅ' ।''

## ରୋଗ ବୃଦ୍ଧିରେ ଗଳାରେ କ୍ଷତ ହୋଇ ରକ୍ତସ୍ରାବ ହେବା ଏବଂ ଭକ୍ତମାନେ ତାଙ୍କୁ କଲିକତା ଆଣିବାକୁ ପରାମର୍ଶ କରିବା :

ଶ୍ରାବଣ ପରେ ଭାଦ୍ରବ ମାସର କିଛି ଦିନ ଗତ ହେଲା, କିନ୍ତୁ ଠାକୁରଙ୍କର ଗଳାର ଯନ୍ତ୍ରଣା ବଢ଼ିବା ଛଡ଼ା କମିଲା ନାହିଁ । ଭକ୍ତମାନେ ଭାବିଚିନ୍ତି କିଛି ସ୍ଥିର କରିପାରୁ ନ ଥିଲେ, ଏପରି ସମୟରେ ହଠାତ୍ ଗୋଟିଏ ଘଟଣା ଘଟି ତାଙ୍କର କର୍ତ୍ତବ୍ୟ ପଥ ସ୍ପଷ୍ଟ ଦେଖାଇ ଦେଲା । ବାଗବଜାରନିବାସୀ ଜନୈକା ରମଣୀ ଦିନେ ତାଙ୍କ ଘରେ ଭକ୍ତମାନଙ୍କୁ ସନ୍ଧ୍ୟାରେ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ଠାକୁରଙ୍କୁ ମଧ୍ୟ ନେବାପାଇଁ ତାଙ୍କର ବିଶେଷ ଇଚ୍ଛା ଥିଲା, ମାତ୍ର ତାଙ୍କର ଶରୀର ଅସୁସ୍ଥ ଜାଣି ସେହି ଆଶା ସେ ପ୍ରାୟ ତ୍ୟାଗ କରିଥିଲେ । ତଥାପି ଯଦି ସେ କୌଣସି ପ୍ରକାରେ କିଛି ସମୟ ପାଇଁ ଥରେ ବୁଲି ଯାଇପାରନ୍ତି ଭାବି ଜଣେ ଭକ୍ତଙ୍କୁ ଅନୁରୋଧ କରି ଦକ୍ଷିଣେଶ୍ୱର ପଠାଇଥିଲେ । ରାତି ନଅଟା ବାଜିବା ପରେ ମଧ୍ୟ ସେହି ବ୍ୟକ୍ତି ଫେରି ନ ଆସିବାରୁ ଆଉ ବିଳମ୍ବ ନ କରି ସେ ସମବେତ ଭକ୍ତମାନଙ୍କୁ ଭୋଜନରେ ବସାଉଛନ୍ତି, ଏହି ସମୟରେ ସେହି ଭକ୍ତ ଖବର ଆଣିଲେ—ଠାକୁରଙ୍କର କଣ୍ଠତାଳୁଦେଶରୁ ଆଜି ରକ୍ତ ନିର୍ଗତ ହୋଇଅଛି, ସେଥିପାଇଁ ସେ ଆସିପାରିଲେ ନାହିଁ । ନରେନ୍ଦ୍ରନାଥ, ରାମ, ଗିରିଶ, ଦେବେନ୍ଦ୍ର, ମାଷ୍ଟର (ମହେନ୍ଦ୍ର) ପ୍ରଭୃତି ସମସ୍ତେ ବିଶେଷ ଚିନ୍ତିତ ହେଲେ ଏବଂ ପରାମର୍ଶ କରି ସ୍ଥିର କଲେ, କଲିକତାରେ ଗୋଟିଏ ଘର ଉଡ଼ାରେ ନେଇ ଯଥାଶୀଘ୍ର ଠାକୁରଙ୍କୁ ଆଣି ଚିକିତ୍ସା କରାଇବାକୁ ହେବ । ଭୋଜନସମୟରେ ନରେନ୍ଦ୍ରନାଥଙ୍କୁ ବିଷଣ୍ଣ ଦେଖି ଜଣେ ଯୁବକ କାରଣ ପଚାରିବାରୁ ସେ କହିଲେ, ''ଯାହାଙ୍କୁ ନେଇ ଏତେ ଆନନ୍ଦ ସେ ବୋଧହୁଏ ଏଥର ଛାଡ଼ି ଚାଲିଯିବେ, ମୁଁ ଡାକ୍ତରୀ ପୁସ୍ତକ ପଢ଼ି ଏବଂ ଡାକ୍ତର ବନ୍ଧୁମାନଙ୍କୁ ପଚାରି ଜାଣିଛି, ଏପରି କଣ୍ଠରୋଗ କ୍ରମେ କ୍ୟାନ୍‌ସରରେ ପରିଣତ ହୁଏ, ଆଜି ରକ୍ତ ପଡ଼ିବା କଥା ଶୁଣି ରୋଗ ତାହା ହିଁ ବୋଲି ସନ୍ଦେହ ହେଉଛି; ଏହି ରୋଗର ଔଷଧ ଏବେ ମଧ୍ୟ ଆବିଷ୍କାର ହୋଇ ନାହିଁ ।''

## ଠାକୁରଙ୍କ ଚିକିତ୍ସା ପାଇଁ କଲିକତା ଆସିବା ଏବଂ ବଳରାମ ଭବନରେ ଅବସ୍ଥାନ :

ପରଦିନ ଭକ୍ତମାନଙ୍କ ମଧ୍ୟରୁ ପ୍ରବୀଣ କେତେଜଣ ଦକ୍ଷିଣେଶ୍ୱର ଯାଇ ଠାକୁରଙ୍କୁ କଲିକତାରେ ରହି ଚିକିତ୍ସା କରିବା ନିମନ୍ତେ ଅନୁରୋଧ କରିବାରୁ ସେ ସମ୍ମତ ହେଲେ । ବାଗବଜାରର ଦୁର୍ଗାଚରଣ ମୁଖାର୍ଜୀ ଷ୍ଟ୍ରୀଟ୍‌ର ଗୋଟିଏ ଛୋଟ ଘରର ଛାତ ଉପରୁ ଗଙ୍ଗାଦର୍ଶନ ହୁଏ ଦେଖି ଭକ୍ତମାନେ ତାହାକୁ ଭଡ଼ାରେ ନେଇ କିଛିଦିନ ପରେ ତାଙ୍କୁ କଲିକତା ନେଇଆସିଲେ । କିନ୍ତୁ ଭାଗୀରଥୀକୂଳରେ କାଳୀବାଡ଼ୀର ପ୍ରଶସ୍ତ ଉଦ୍ୟାନର ମୁକ୍ତ ବାୟୁରେ ରହିବାରେ ଅଭ୍ୟସ୍ତ ଠାକୁର ସେହି ସ୍ୱଳ୍ପ ପରିସର ଘରେ ପ୍ରବେଶ କରିବା ମାତ୍ରେ ସେଠାରେ ରହିପାରିବେ ନାହିଁ ବୋଲି କହି ତତ୍‌କ୍ଷଣାତ୍ ପଦବ୍ରଜରେ ରମାକାନ୍ତ ବସୁ ଷ୍ଟ୍ରିଟ୍‌ରେ ଥିବା ବଳରାମ ବସୁଙ୍କ ଘରକୁ ଚାଲିଆସିଲେ । ବଳରାମ ତାଙ୍କୁ ସାଦର ଗ୍ରହଣ କଲେ ଏବଂ ମନମୁତାବକ ଘର ଯେତେଦିନ ନ ମିଳେ, ସେତେଦିନ ତାଙ୍କ ପାଖରେ ରହିବାକୁ ଅନୁରୋଧ କରିବାରୁ ସେ ସେଠାରେ ରହିଲେ ।

## ପ୍ରସିଦ୍ଧ ବୈଦ୍ୟମାନଙ୍କୁ ଡକାଇ ଠାକୁରଙ୍କର ରୋଗ ନିରୂପଣ ଓ ଶ୍ୟାମପୁକୁରରେ ଘରଭଡ଼ା :

ଘର ଖୋଜା ଚାଲିଲା । ବୃଥାରେ ସମୟ ନଷ୍ଟ କରିବା ଉଚିତ୍ ନୁହେଁ ବୋଲି ଭାବି ଭକ୍ତମାନେ ଏହା ମଧ୍ୟରେ ଦିନେ କଲିକତାର ସୁପ୍ରସିଦ୍ଧ ବୈଦ୍ୟଗଣଙ୍କୁ ଆଣି ଠାକୁରଙ୍କ ରୋଗ ବିଷୟରେ ମତାମତ ଗ୍ରହଣ କଲେ । ଗଙ୍ଗାପ୍ରସାଦ, ଗୋପୀମୋହନ, ଦ୍ୱାରିକାନାଥ, ନବଗୋପାଳ ପ୍ରଭୃତି ଅନେକ ଜଣ କବିରାଜ ସେଦିନ ଆହୂତ ହୋଇ ଠାକୁରଙ୍କୁ ପରୀକ୍ଷା କଲେ ଏବଂ ତାଙ୍କର ରୋହିଣୀ ନାମକ ଦୁଃଶ୍ଚିକିତ୍ସ୍ୟ ବ୍ୟାଧି ହୋଇଅଛି ବୋଲି ସ୍ଥିର କଲେ । ଯିବା ସମୟରେ ଏକାନ୍ତରେ ପଚାରିବାରୁ ଗଙ୍ଗାପ୍ରସାଦ ଜଣେ ଭକ୍ତଙ୍କୁ କହିଲେ, ''ଡାକ୍ତରମାନେ ଯାହାକୁ 'କ୍ୟାନ୍‌ସର' କହନ୍ତି, ରୋହିଣୀ ସେହି ରୋଗ; ଶାସ୍ତ୍ରରେ ଏହାର ଚିକିତ୍ସାର ବିଧାନ ଥିଲେ ମଧ୍ୟ ଏହା ଅସାଧ୍ୟ ରୋଗ ବୋଲି ଜଣାଯାଏ ।'' କବିରାଜମାନଙ୍କ ପାଖରୁ ବିଶେଷ ଆଶା ନ ପାଇ ଏବଂ ଅଧିକ ଔଷଧ ବ୍ୟବହାର ଠାକୁରଙ୍କ ଶରୀରରେ ସହ୍ୟ ହୁଏ ନାହିଁ ଜାଣି, ଭକ୍ତମାନେ ତାଙ୍କର ହୋମିଓପାଥି ଚିକିତ୍ସା କରାଇବା ହିଁ ଯୁକ୍ତିଯୁକ୍ତ ବିବେଚନା କଲେ । ଏକ ସପ୍ତାହ ମଧ୍ୟରେ ଶ୍ୟାମପୁକୁର ଷ୍ଟ୍ରିଟ୍‌ରେ ଅବସ୍ଥିତ ଗୋକୁଳଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କର ବୈଠକଖାନା-ଭବନଟିକୁ ଠାକୁରଙ୍କର ରହିବା ପାଇଁ ଭଡ଼ାରେ ନିଆହେଲା ଏବଂ କଲିକତାର ସୁପ୍ରସିଦ୍ଧ ଡାକ୍ତର ମହେନ୍ଦ୍ରଲାଲ ସରକାରଙ୍କର ଚିକିତ୍ସାରେ ତାଙ୍କୁ କିଛି ଦିନ ରଖିବାକୁ ସର୍ବସମ୍ମତି କ୍ରମେ ସ୍ଥିର ହେଲା ।

### ଠାକୁରଙ୍କୁ ଦେଖିବା ପାଇଁ ବଳରାମ ବସୁଙ୍କ ଘରେ ବହୁଲୋକଙ୍କର ସମାବେଶ :

ଇତିମଧ୍ୟରେ ଚିକିତ୍ସା ପାଇଁ ଠାକୁରଙ୍କୁ କଲିକତା ଅଣାଯାଇଥିବା କଥା ଲୋକଙ୍କ ମୁଖରେ ବ୍ୟାପୀ ଗଲା ଏବଂ ପରିଚିତ ଅପରିଚିତ ବହୁତ ଲୋକ ତାଙ୍କର ଦର୍ଶନ ଆଶାରେ ସମୟ ଅସମୟରେ ଦଳଦଳ ହୋଇ ଆସି ବଳରାମବାବୁଙ୍କ ଘରକୁ ଉତ୍ସବ ସ୍ଥଳପରି ଆନନ୍ଦମୟ କରି ତୋଳିଲେ । ଡାକ୍ତରଙ୍କର ବାରଣ ଓ ଭକ୍ତମାନଙ୍କର ସକରୁଣ ପ୍ରାର୍ଥନାରେ ବେଳେ ବେଳେ ନୀରବ ରହିଲେ ମଧ ଠାକୁର ଯେପରି ଉତ୍ସାହରେ ସେମାନଙ୍କ ସହିତ ଧର୍ମଚର୍ଚ୍ଚାରେ ପ୍ରବୃତ୍ତ ହେଲେ, ସେଥିରୁ ବୋଧ ହେଲା ସେ ଯେପରି ସେହି ଉଦ୍ଦେଶ୍ୟରେ ହିଁ ଏଠାକୁ ଆସିଛନ୍ତି, ଯେପରି ଦକ୍ଷିଣେଶ୍ୱର ପର୍ଯ୍ୟନ୍ତ ଯିବା ଯେଉଁମାନଙ୍କ ପକ୍ଷରେ ସୁଗମ ନୁହେଁ ସେମାନଙ୍କୁ ଧର୍ମାଲୋକପ୍ରଦାନ ପାଇଁ ହିଁ ସେ କିଛିଦିନ ପାଇଁ ସେମାନ୍‌ଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି ! ପ୍ରାତଃକାଳରୁ ଭୋଜନ କାଳ ପର୍ଯ୍ୟନ୍ତ, ଏବଂ ଭୋଜନାନ୍ତେ ଦୁଇଘଣ୍ଟା ଅନ୍ଦାଜ ବିଶ୍ରାମ ପରେ ହିଁ ରାତ୍ର ଆହାର ଏବଂ ଶୟନକାଳ ପର୍ଯନ୍ତ ପ୍ରତିଦିନ ସେ ସେହି ସପ୍ତାହକ ମଧ୍ୟରେ ବହୁ ଲୋକଙ୍କର ବ୍ୟକ୍ତିଗତ ଜୀବନର ଜଟିଳ ପ୍ରଶ୍ନସବୁ ସମାଧାନ କରିଦେଇଥିଲେ, ନାନାପ୍ରକାର ଈଶ୍ୱରୀୟ କଥା ଆଲୋଚନାରେ ବହୁ ବ୍ୟକ୍ତିଙ୍କୁ ଆଧ୍ୟାତ୍ମିକ ପଥରେ ଆକୃଷ୍ଟ କରାଇଥିଲେ ଏବଂ ଭଜନ-ସଙ୍ଗୀତ ଇତ୍ୟାଦି ଶ୍ରବଣରେ ଗଭୀର ସମାଧିରାଜ୍ୟରେ ପ୍ରବିଷ୍ଟ ହୋଇ ବହୁ ପିପାସୁଙ୍କର ପ୍ରାଣ ଶାନ୍ତି ଓ ଆନନ୍ଦର ପ୍ଳାବନରେ ପୂର୍ଣ୍ଣ କରିଥିଲେ । ସବୁ ସମୟ ରହିବାର ସୌଭାଗ୍ୟ ଆମମାନଙ୍କର କାହାରି ଘଟି ନ ଥିଲା । ଗୃହସ୍ୱାମୀଙ୍କୁ ମଧ ଠାକୁରଙ୍କ ଏବଂ ତାଙ୍କ ଭକ୍ତଗଣଙ୍କ ସମ୍ବନ୍ଧରେ ନାନା ବନ୍ଦୋବସ୍ତ କରିବା ପାଇଁ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହିବାକୁ ପଡୁଥିଲା । ତେଣୁ ଏହି ସପ୍ତାହର ବିସ୍ତାରିତ ବିବରଣ ଜାଣିବା ଏକ ପ୍ରକାର ଅସମ୍ଭବ ବୋଲି ମନେ ହୁଏ । ଅତଏବ କିପରି ଭାବରେ ଏହି ଗୋଟିଏ ସପ୍ତାହ ଠାକୁର ବଳରାମ ଭବନରେ ରହିଥିଲେ, ତାହା ପାଠକଙ୍କୁ ବୁଝାଇବା ପାଇଁ ଗୋଟିଏ ମାତ୍ର ଘଟଣା ଉଲ୍ଲେଖ କରି ଆମେ ନିରସ୍ତ ହେବୁ ।

### ବଳରାମବାବୁଙ୍କ ଘରେ ଗୋଟିଏ ଦିନର ଘଟଣା :

ଆମେ ସେତେବେଳେ କଲେଜରେ ପଢୁଥିଲୁ, ତେଣୁ ସପ୍ତାହରେ ଥରେ ଦୁଇଥର ମାତ୍ର ଠାକୁରଙ୍କୁ ଦେଖିବାର ସୁଯୋଗ ପାଉଥିଲୁ । ଦିନେ ଅପରାହ୍ଣରେ ଏହିପରି ବଳରାମବାବୁଙ୍କ ଘରେ ଆସି ଦେଖିଲୁ, ଦୋତାଲାରେ ବଡ଼ ଘରଟି

ଲୋକରେ ପୂର୍ଣ୍ଣ ହୋଇଅଛି ଓ ଗିରିଶଚନ୍ଦ୍ର ଏବଂ କାଳୀପଦ[୧] ମହା ଉତ୍ସାହରେ ଗୀତ ଗାଉଛନ୍ତି,

ଆମାୟ ଧର ନିତାଇ ।
ଆମାର ପ୍ରାଣ ଯେନ ଆଜ କରେ ରେ କେମନ ।

[ଅର୍ଥାତ୍:–ନିତାଇ ମୋତେ ଧର । ଆଜି ମୋର ପ୍ରାଣ କେଜାଣି କିପରି ହେଉଛି ।]

ଘର ମଧ୍ୟରେ କୌଣସି ପ୍ରକାରରେ ପ୍ରବେଶକରି ଦେଖିଲୁ, ଘରର ପଶ୍ଚିମ ପ୍ରାନ୍ତରେ ପୂର୍ବ ଆଡ଼କୁ ମୁହଁ କରି ଉପବିଷ୍ଟ ରହି ଠାକୁର ସମାଧିସ୍ଥ ହୋଇଛନ୍ତି । ତାଙ୍କ ମୁହଁରେ ପ୍ରସନ୍ନତା ଓ ଆନନ୍ଦର ଅପୂର୍ବ ହସ, ଦକ୍ଷିଣ ପଦ ଉଠିଯାଇ ପ୍ରସାରିତ ହୋଇଛି ଏବଂ ସମ୍ମୁଖରେ ବସି ଜଣେ ବ୍ୟକ୍ତି ପରମ ପ୍ରେମର ସହିତ ସେହି ଚରଣକୁ ଅତି ସନ୍ତର୍ପଣରେ ନିଜ ବକ୍ଷରେ ଧାରଣ କରି ରହିଛନ୍ତି । ଠାକୁରଙ୍କ ପଦପ୍ରାନ୍ତରେ ଯିଏ ସେହି ପ୍ରକାର ବସିଛନ୍ତି, ତାଙ୍କର ଚକ୍ଷୁ ନିମୀଳିତ ଏବଂ ମୁଖ ଓ ବକ୍ଷ ଅଶ୍ରୁଧାରାରେ ସିକ୍ତ ହେଉଅଛି । ଘର ନିସ୍ତବ୍ଧ ଏବଂ ଏକ ଦିବ୍ୟ ଆବେଶରେ ଭରି ରହିଛି । ଗୀତ ଗାଇବା ଚାଲିଲା ।

ଆମାର ପ୍ରାଣ ଯେନ ଆଜ କରେ ରେ କେମନ,
ଆମାୟ ଧର ନିତାଇ ।
(ନିତାଇ) ଜୀବକେ ହରିନାମ ବିଲାତେ
ଉଠଲ ଯେ ଢେଉ ପ୍ରେମ ନଦୀତେ
ସେଇ ତରଙ୍ଗେ ଏଖନ ଆମି ଭାସିୟେ ଯାଇ ।
(ନିତାଇ) ଖତ ଲିଖେଛି ଆପନ ହାତେ
ଅଷ୍ଟସଖୀ ସାକ୍ଷୀ ତାତେ
(ଏଖନ) କି ଦିଏ ଶୁଧିବ ଆମି ପ୍ରେମେର ମହାଜନ ।
(ଆମାର) ସଞ୍ଚିତ ଧନ ଫୁରାଇଲ
ତବୁ ଋଣେର ଶୋଧ ନା ହଲ,
ପ୍ରେମେର ଦାୟେ ଏଖନ ଆମି ବିକାୟିଏ ଯାଇ ।

[ଅର୍ଥାତ୍:– ମୋ ମନ ଆଜି କାହିଁକି କେଜାଣି କିପରି ହେଉଛି । (ନିତାଇ) ମୋତେ ଧର । (ନିତାଇ) ଜୀବଙ୍କୁ ହରିନାମ ବାଣ୍ଟିବା ପାଇଁ ପ୍ରେମନଦୀରେ ଲହରି ଉଠିଲା; ସେହି ଲହରୀରେ ମୁଁ ଏବେ ଭାସିଯାଉଛି । (ନିତାଇ) ମୁଁ ନିଜ ହାତରେ ଦଲିଲ ଲେଖିଛି, ଅଷ୍ଟସଖୀ ସେଥିରେ ସାକ୍ଷୀ ଅଛନ୍ତି । ଏବେ ମୁଁ ସେହି ଋଣ ପ୍ରେମ ମହାଜନକୁ କିପରି ସୁଝିବି ? ମୋ ସଞ୍ଚିତ ଧନ ସମାପ୍ତ ହୋଇଯାଇଛି, ତେବେ ବି ଋଣ ପରିଶୋଧ ହୋଇ ନାହିଁ; ପ୍ରେମ ଋଣରେ ମୁଁ ଏବେ ବିକ୍ରି ହୋଇଯିବି ।]

---

୧. ଶ୍ରୀ ଗିରିଶ ଚନ୍ଦ୍ର ଘୋଷ ଓ ଶ୍ରୀ କାଳୀପଦ ଘୋଷ

ଗୀତ ଶେଷ ହେବାର କେତେକ୍ଷଣ ପରେ ଠାକୁର ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇ ସମ୍ମୁଖସ୍ଥ ବ୍ୟକ୍ତିଙ୍କୁ କହିଲେ, "କୁହ ଶ୍ରୀକୃଷ୍ଣଚୈତନ୍ୟ—କୁହ ଶ୍ରୀକୃଷ୍ଣଚୈତନ୍ୟ—କୁହ ଶ୍ରୀକୃଷ୍ଣଚୈତନ୍ୟ ।" ଏହିପରି ତାଙ୍କୁ ତିନିଥର ନାମ ଉଚ୍ଚାରଣ କରାଇବା ପରେ ଠାକୁର ପୁନର୍ବାର ପ୍ରକୃତିସ୍ଥ ହୋଇ ଅନ୍ୟମାନଙ୍କ ସହିତ ବାକ୍ୟାଳାପରେ ପ୍ରବୃତ୍ତ ହେଲେ । ପରେ ପଚାରି ବୁଝିଲୁ ଏହି ବ୍ୟକ୍ତିଙ୍କ ନାମ ନୃତ୍ୟ ଗୋପାଳ ଗୋସ୍ୱାମୀ, ଢାକାର କୌଣସି କଲେଜରେ ସେ ଅଧ୍ୟୟନ କରନ୍ତି, ଠାକୁରଙ୍କର ପୀଡ଼ା କଥା ଶୁଣି ତାଙ୍କୁ ଦେଖିବାକୁ ଆସିଛନ୍ତି । ଗୋସ୍ୱାମୀ ଯେପରି ଭକ୍ତିମାନ, ଦେଖିବାକୁ ସେପରି ସୁପୁରୁଷ ଥିଲେ ।

# ଦ୍ୱାଦଶ ଅଧ୍ୟାୟ—ପ୍ରଥମ ପାଦ

## ଠାକୁରଙ୍କର ଶ୍ୟାମପୁକୁରରେ ଅବସ୍ଥାନ

### ଶ୍ୟାମପୁକୁର ଘରର ପରିଚୟ :

ଠାକୁରଙ୍କ ପାଇଁ ଯେଉଁ ଘରଟି ଭଡ଼ା ନିଆଗଲା, ତାହା ପୂର୍ବ-ପଶ୍ଚିମକୁ ବିସ୍ତୃତ ଶ୍ୟାମପୁକୁର ଷ୍ଟ୍ରୀଟ୍‌ର ଉତ୍ତର ପାର୍ଶ୍ୱରେ ଅବସ୍ଥିତ । ଉତ୍ତର ମୁହାଁ ହୋଇ ଘରକୁ ପ୍ରବେଶ କଲେ ବାଁମରେ ଓ ଦକ୍ଷିଣରେ ବସିବାର ଚଉତରା ଓ ସ୍ୱଳ୍ପ ପରିସର ବାରଣ୍ଡା ଦେଖାଯାଉଥିଲା । ଏହା ଆଗକୁ କେତେ ପାଦ ଗଲେ ଡାହାଣରେ ଦୋତାଲାକୁ ଉଠିବାର ସିଡ଼ି ଏବଂ ସାମନାରେ ଅଗଣା । ଅଗଣାର ପୂର୍ବ ପଟରେ ଦୁଇ-ତିନୋଟି ଛୋଟ ଛୋଟ ଘର । ସିଡ଼ିଦେଇ ଉପରକୁ ଉଠିଗଲେ ଦକ୍ଷିଣ ଆଡ଼କୁ ଉତ୍ତର-ଦକ୍ଷିଣରେ ବିସ୍ତୃତ ଗୋଟିଏ ଲମ୍ବା ଘର, ଏହି ଘରଟି ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ଏବଂ ବାମଆଡ଼କୁ ପୂର୍ବ-ପଶ୍ଚିମରେ ବିସ୍ତୃତ ଘରମାନଙ୍କୁ ଯିବାର ବାଟ ଥିଲା । ଏହିବାଟ ଦେଇ ପ୍ରଥମେ 'ବୈଠକଖାନା' ଘର ବୋଲି ଜଣା ସୁପ୍ରଶସ୍ତ ଘରଟିକୁ ପଶିବା ପାଇଁ ଦ୍ୱାର ଥିଲା—ଏହି ଘରେ ଠାକୁର ରହୁଥିଲେ । ଏହାର ଉତ୍ତର ଓ ଦକ୍ଷିଣରେ ବାରଣ୍ଡା, ତା ଭିତରେ ଉତ୍ତରରେ ବାରଣ୍ଡା ପ୍ରଶସ୍ତତର ଥିଲା ଏବଂ ପଶ୍ଚିମରେ ଦୁଇଟି ଛୋଟ ଘର—ଗୋଟିକରେ ଭକ୍ତମାନଙ୍କ ମଧ୍ୟରୁ କେହି କେହି ରାତିରେ ଶୟନ କରୁଥିଲେ ଏବଂ ଅନ୍ୟଟି ଶ୍ରୀଶ୍ରୀମାତାଠାକୁରାଣୀଙ୍କ ରାତ୍ରିବାସ ପାଇଁ ଉଦ୍ଦିଷ୍ଟ ଥିଲା । ଏହା ଛଡ଼ା ସାଧାରଣ ଲୋକଙ୍କ ପାଇଁ ନିର୍ଦ୍ଦିଷ୍ଟ ଘର ଖଣ୍ଡିକର ପଶ୍ଚିମରେ ସ୍ୱଳ୍ପପରିସର ବାରଣ୍ଡା ଥିଲା । ଠାକୁରଙ୍କ ଘରକୁ ଯିବାର ରାସ୍ତାରେ ପୂର୍ବ ପାର୍ଶ୍ୱରେ ଛାତ ଉପରକୁ ଉଠିବାପାଇଁ ସିଡ଼ି ଓ ଛାତକୁ ଯିବାର ଦରଜା ପାଖରେ ଚାରି ହାତ ଲମ୍ବା ଓ ସେହିପରି ପ୍ରଶସ୍ତ ଗୋଟିଏ ଆଚ୍ଛାଦନଯୁକ୍ତ ଚଉତରା ଥିଲା । ଶ୍ରୀଶ୍ରୀମାତାଠାକୁରାଣି ଏହି ସ୍ଥାନରେ ହିଁ ସମସ୍ତ ଦିନ ଅତିବାହିତ କରୁଥିଲେ ଏବଂ ଏଠାରେ ହିଁ ଠାକୁରଙ୍କ ପାଇଁ ପ୍ରୟୋଜନୀୟ ପଥ୍ୟ ଇତ୍ୟାଦି ରନ୍ଧନ କରୁଥିଲେ । ଭାଦ୍ରବ ମାସର ଶେଷଭାଗର କୌଣସି ସମୟରେ ଇଂରାଜୀ ୧୮୮୫ ମସିହାର ସେପ୍ଟେମ୍ବରର ପ୍ରାରମ୍ଭରେ ଠାକୁର ବଳରାମବାବୁଙ୍କ ଘରୁ ଆସି ଏଠାରେ ତିନିମାସରୁ କିଛି ଅଧିକ ସମୟ କଟାଇଥିଲେ ଏବଂ ମାର୍ଗଶୀର ଶେଷ ହେବାକୁ ଦିନେ ଦୁଇ ଦିନ ବାକି ଥିବାବେଳେ କାଶୀପୁର ବଗିଚାଘରକୁ ଚାଲିଯାଇଥିଲେ ।

### ଡାକ୍ତର ମହେନ୍ଦ୍ରଲାଲ ସରକାରଙ୍କର ଚିକିତ୍ସାର ଦାୟିତ୍ୱ ଗ୍ରହଣ :

ଶ୍ୟାମପୁକୁର ଘର୍‌କୁ ଆସିବାର କିଛିଦିନ ପରେ ହିଁ ଭକ୍ତମାନେ ପୂର୍ବ ପରାମର୍ଶ ମୁତାବକ ଡାକ୍ତର ମହେନ୍ଦ୍ରଲାଲ ସରକାରଙ୍କୁ ଠାକୁରଙ୍କର ଚିକିତ୍ସା ପାଇଁ ଡାକି ଆଣିଲେ । ମଥୁରବାବୁ ଜୀବିତ ଥିବାବେଳେ ତାଙ୍କର ପରିବାରବର୍ଗଙ୍କର

ଚିକିତ୍ସା ପାଇଁ ଡାକ୍ତର କେତେଥର ଦକ୍ଷିଣେଶ୍ୱରକୁ ଆସି ଠାକୁରଙ୍କ ସହିତ ସାମାନ୍ୟ ପରିଚିତ ହୋଇଥିଲେ, କିନ୍ତୁ ତାହା ଅନେକ ଦିନ ତଳର କଥା ଥିଲା । ଲବ୍ଧପ୍ରତିଷ୍ଠିତ ଡାକ୍ତରଙ୍କର ଏକଥା ମନେ ନ ରହିପାରେ, ତେଣୁ କାହାକୁ ଦେଖିବାକୁ ଆସିବେ ତାହା ନ କହି ଭକ୍ତଗଣ ତାଙ୍କୁ ଡାକି ଆଣିଥିଲେ । ଡାକ୍ତରବାବୁ ଦେଖିବା ମାତ୍ରେ ଠାକୁରଙ୍କୁ ଚିହ୍ନି ପାରିଥିଲେ ଏବଂ ଅତ୍ୟନ୍ତ ଯତ୍ନରେ ପରୀକ୍ଷା ଓ ରୋଗନିର୍ଣ୍ଣୟପୂର୍ବକ ଔଷଧ ଓ ପଥ୍ୟର ବ୍ୟବସ୍ଥା କରିବା ପରେ ଦକ୍ଷିଣେଶ୍ୱର-କାଳୀମନ୍ଦିର ସମ୍ବନ୍ଧୀୟ କଥା ଓ ଧର୍ମାଲୋଚନାରେ ଅଳ୍ପ ସମୟ ଅତିବାହିତ କରି ତାଙ୍କ ନିକଟରୁ ସେଦିନ ବିଦାୟ ନେଲେ । ଯେତେଦୂର ମନେ ଅଛି, ଡାକ୍ତର ବିଦାୟ ନେବାବେଳେ ଭକ୍ତମାନଙ୍କୁ ପ୍ରତିଦିନ ସକାଳେ ଠାକୁରଙ୍କ ଶାରୀରିକ ଅବସ୍ଥା କଥା ତାଙ୍କୁ ଜଣାଇବାକୁ କହିଥିଲେ ଏବଂ ଯିବାବେଳେ ସେମାନେ ତାଙ୍କୁ ତାଙ୍କର ପାରିଶ୍ରମିକ ପ୍ରଦାନ କରିବାରୁ ସେ ତାହା ଗ୍ରହଣ କରିଥିଲେ । କିନ୍ତୁ ଦ୍ୱିତୀୟ ଦିନ ଠାକୁରଙ୍କୁ ଦେଖିବାକୁ ଆସି ସେ ଯେତେବେଳେ ଜାଣିଲେ ଯେ, ଭକ୍ତମାନେ ତାଙ୍କୁ ଚିକିତ୍ସା ପାଇଁ କଲିକତା ଆଣି ତାଙ୍କର ସମସ୍ତ ବ୍ୟୟ ବହନ କରୁଛନ୍ତି, ସେତେବେଳେ ସେମାନଙ୍କର ଗୁରୁଭକ୍ତିଦର୍ଶନରେ ପ୍ରୀତ ହୋଇ ଆଉ ପାରିଶ୍ରମିକ ଗ୍ରହଣ କଲେ ନାହିଁ—କହିଲେ, 'ମୁଁ ବିନା ପାରିଶ୍ରମିକରେ ଯଥାସାଧ୍ୟ ଚିକିତ୍ସା କରି ତୁମମାନଙ୍କର ଏହି ସତ୍‌କାର୍ଯ୍ୟରେ ସହାୟତା କରିବି ।'

### ପଥ୍ୟ ଓ ରାତିରେ ସେବା ପାଇଁ ବନ୍ଦୋବସ୍ତର ପରାମର୍ଶ :

ଏହିପରି ସୁବିଜ୍ଞ ଚିକିତ୍ସକଙ୍କର ସହାୟତା ଲାଭ କରି ମଧ୍ୟ ଭକ୍ତମାନେ ନିଶ୍ଚିନ୍ତ ହୋଇପାରିଲେ ନାହିଁ । କେତେଦିନ ଭିତରେ ହିଁ ସେମାନେ ବୁଝିପାରିଲେ ଯେ, ବିଶେଷ ସତର୍କତାର ସହିତ ତାଙ୍କର ପଥ୍ୟ ପ୍ରସ୍ତୁତ କରିବା ଓ ଦିନ ପରି ରାତି ସମୟରେ ମଧ୍ୟ ଠାକୁରଙ୍କର ଆବଶ୍ୟକ ଅନୁଯାୟୀ ସେବା କରିବାକୁ ଲୋକ ନିଯୁକ୍ତ କରିବା ଦରକାର । କେବଳ ବ୍ୟୟନିର୍ବାହ କରି ଏହି ଦୁଇ ଅଭାବର ଗୋଟିଏ ମଧ୍ୟ ଯଥାଯଥ ନିବାରଣ ହୋଇପାରିବ ନାହିଁ ଭାବି ସେମାନେ ଦକ୍ଷିଣେଶ୍ୱରରୁ ଶ୍ରୀଶ୍ରୀମାତାଠାକୁରାଣୀଙ୍କୁ ଆଣି ତାଙ୍କ ପଥ୍ୟ ପ୍ରସ୍ତୁତ କରିବାର ବ୍ୟବସ୍ଥା କରାଇବା ଏବଂ ବାଳକ-ଭକ୍ତଗଣଙ୍କ ସହାୟତାରେ ଦ୍ୱିତୀୟ ବ୍ୟବସ୍ଥା କରାଯାଇପାରିବ ବୋଲି ସ୍ଥିର କଲେ । ମାତ୍ର ଏପରି ବ୍ୟବସ୍ଥାରେ ଅନ୍ୟ ଏକ ଅସୁବିଧାର ସମ୍ମୁଖୀନ ହେଲେ । କାରଣ, ଘରେ ସ୍ତ୍ରୀଲୋକମାନଙ୍କର ରହିବା ପାଇଁ ନିର୍ଦ୍ଦିଷ୍ଟ ଅନ୍ଦରମହଲ ନ ଥିବାରୁ ଶ୍ରୀଶ୍ରୀମା ଏକୁଟିଆ କିପରି ଏଠାରେ ରହିବେ ସେ ବିଷୟ ଚିନ୍ତା ହେଲା ଏବଂ ସ୍କୁଲ-କଲେଜର ଛାତ୍ର ବାଳକ-ଭକ୍ତମାନେ ପ୍ରତିଦିନ ଏଠାକୁ ଆସି ଠାକୁରଙ୍କ ସେବାରେ ରାତି ଅନିଦ୍ରା ରହିଲେ ତାଙ୍କର ଅଭିଭାବକଙ୍କ ମନରେ ପ୍ରଚଣ୍ଡ ଅସନ୍ତୋଷ ହେବ, ଏକଥା ବୁଝିବାକୁ କାହାରି ବିଳମ୍ବ ହେଲା ନାହିଁ ।

## ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଲଜ୍ଜାଶୀଳତାର ଦୃଷ୍ଟାନ୍ତ :

ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଅପୂର୍ବ ଲଜ୍ଜାଶୀଳତାର କଥା ସ୍ମରଣ କରି ଭକ୍ତମାନଙ୍କ ମଧ୍ୟରୁ ଅନେକେ ତାଙ୍କର ଏଠାକୁ ଆସିବା ବିଷୟରେ ବିଶେଷ ସନ୍ଦିହାନ ହେଲେ । ଦକ୍ଷିଣେଶ୍ୱର ବଗିଚାର ଉତ୍ତରର ନହବତଖାନାରେ ରହି ଠାକୁରଙ୍କ ସେବାରେ ନିତ୍ୟ ନିଯୁକ୍ତା ରହିଥିଲେ ମଧ୍ୟ ଦୁଇ-ଚାରିଜଣ ବାଳକଭକ୍ତ ଛଡ଼ା— ଯେଉଁମାନଙ୍କ ସହିତ ଠାକୁର ନିଜେ ତାଙ୍କୁ ପରିଚିତ କରାଇ ଦେଇଥିଲେ— ଅନ୍ୟ କେହି ଏତେକାଳ କେବେ ମଧ୍ୟ ତାଙ୍କର ଶ୍ରୀଚରଣଦର୍ଶନ କିମ୍ବା ବାକ୍ୟାଳାପ ଶ୍ରବଣ କରି ନାହାନ୍ତି । ସେହି ସ୍ୱଳ୍ପପରିସର ସ୍ଥାନରେ ସମସ୍ତ ଦିନ ରହି ଠାକୁର ଏବଂ ଭକ୍ତମାନଙ୍କ ନିମିତ୍ତ ଅନ୍ନ-ବ୍ୟଞ୍ଜନାଦି ଖାଦ୍ୟଦ୍ରବ୍ୟ ଦୁଇବେଳା ପ୍ରସ୍ତୁତ କରି ଦେଲେ ମଧ୍ୟ ସେସ୍ଥାନରେ କେହି ଯେ ଏପରି କର୍ମରେ ନିଯୁକ୍ତା ଅଛନ୍ତି ତାହା କେହି ବୁଝିପାରୁ ନ ଥିଲେ । ରାତି ତିନିଟା ବାଜିବାର ଅଳ୍ପ ସମୟ ପରେ ଅନ୍ୟ କେହି ଉଠିବାର ବହୁ ପୂର୍ବରୁ ଶଯ୍ୟାତ୍ୟାଗପୂର୍ବକ ନିତ୍ୟକର୍ମ ସାରି ସେ ସେହି ଛୋଟ ଘରଟିରେ ପ୍ରବେଶ କରି ସେହି ଗୃହ ମଧ୍ୟରେ ସମସ୍ତ ଦିନ ରହୁଥିଲେ ଏବଂ ଘରୁ ବାହାରୁ ନ ଥିଲେ — ନୀରବରେ, ନିଃଶବ୍ଦରେ ଅଦ୍ଭୁତ କ୍ଷିପ୍ରତାର ସହିତ ସମସ୍ତ କାର୍ଯ୍ୟ ସମାପନ କରି ପୂଜା-ଜପ-ଧ୍ୟାନରେ ନିଯୁକ୍ତା ରହୁଥିଲେ । ଅନ୍ଧକାର ରାତିରେ ନହବତଖାନା ସମ୍ମୁଖସ୍ଥ ବକୁଳତଳା ଘାଟରେ ସିଡ଼ିଦେଇ ଗଙ୍ଗାରେ ଅବତରଣ କରିବା ସମୟରେ ସେ ଦିନେ ଗୋଟିଏ ପ୍ରକାଣ୍ଡ କୁମ୍ଭୀରର ଦେହ ଉପରେ ପ୍ରାୟ ପଦାର୍ପଣ କରିଥିଲେ— କୁମ୍ଭୀର ସେତେବେଳେ ସିଡ଼ି ଉପରେ ଶୋଇଥିଲା, ଶ୍ରୀମାତାଙ୍କର ଆସିବାର ସୁରାକ ପାଇ ଜଳ ମଧ୍ୟକୁ ଡେଇଁ ପଡ଼ିଲା ! ସେହି ଦିନଠାରୁ ଆଲୁଅ ନ ଧରି ସେ ଘାଟକୁ ଯାଉ ନ ଥିଲେ ।

## ଶ୍ରୀଶ୍ରୀମା'ଙ୍କୁ ଶ୍ୟାମପୁକୁରକୁ ଆଣିବାର ପ୍ରସ୍ତାବ :

ଏତେଦିନ ଏହି ସ୍ଥାନରେ ରହି ମଧ୍ୟ ଯିଏ କେବେହେଲେ କାହାର ଦୃଷ୍ଟିରେ ପଡ଼ି ନ ଥିଲେ, ସର୍ବପ୍ରକାରର ସଙ୍କୋଚ ଓ ଲଜ୍ଜା ସହସା ପରିତ୍ୟାଗକରି ସେ କିପରି ଏହିଘରେ ପୁରୁଷମାନଙ୍କ ମଧ୍ୟରେ ଆସି ସର୍ବକ୍ଷଣ ବାସ କରିବେ — ଏହା ଭକ୍ତମାନେ କେହି ଭାବି ସ୍ଥିର କରିପାରିଲେ ନାହିଁ । ଅଥଚ ଅନ୍ୟ କୌଣସି ଉପାୟ ନ ଦେଖି ସେମାନେ ତାଙ୍କୁ ଆଣିବାର ପ୍ରସ୍ତାବ ଠାକୁରଙ୍କ ନିକଟରେ ଉପସ୍ଥାପିତ କରିବାକୁ ବାଧ୍ୟ ହେଲେ । ଠାକୁର ସେଥିରେ ଶ୍ରୀଶ୍ରୀମା'ଙ୍କର ପୂର୍ବୋକ୍ତ ପ୍ରକାର ସ୍ୱଭାବ କଥା ସ୍ମରଣ କରାଇ କହିଲେ, 'ସେ କ'ଣ ଆସି ଏଠାରେ ରହିପାରିବ ? ଯାହା ହେଉ, ତାକୁ ପଚାରି ଦେଖ, ସବୁକଥା ଜାଣି ଶୁଣି ସେ ଯଦି ଆସିବାକୁ ଇଚ୍ଛା କରେ ତା'ହେଲେ ଆସୁ ।' ଏହାପରେ ଦକ୍ଷିଣେଶ୍ୱରରେ ଶ୍ରୀଶ୍ରୀମା'ଙ୍କ ନିକଟକୁ ଲୋକ ପଠାଗଲା ।

## ଶ୍ରୀଶ୍ରୀମା'ଙ୍କର ଦେଶ-କାଳ-ପାତ୍ର ଅନୁସାରେ କାର୍ଯ୍ୟ କରିବାର ଶକ୍ତି :

'ଯେତେବେଳେ ଯେପରି ସେତେବେଳେ ସେପରି, ଯେଉଁଠାରେ ଯେପରି ସେଠାରେ ସେପରି, ଯାହାକୁ ଯେପରି ତାହାକୁ ସେପରି' — ଠାକୁର କହୁଥିଲେ, ସେହି ପ୍ରକାର ଦେଶ-କାଳ-ପାତ୍ର-ଭେଦ ବିବେଚନାପୂର୍ବକ ସଂସାରରେ ସମସ୍ତ ବିଷୟର ଅନୁଷ୍ଠାନ କରିବାକୁ ଏବଂ ନିଜକୁ ଚଳାଇ ନ ପାରିଲେ ଶାନ୍ତିଲାଭରେ, ଅଥବା ନିଜର ଅଭୀଷ୍ଟ ଲକ୍ଷ୍ୟରେ ପହଞ୍ଚିବାକୁ କେହି ସମର୍ଥ ହୁଏ ନାହିଁ । ସଙ୍କୋଚ ଏବଂ ଲଜ୍ଜାରୂପକ ଆବରଣର ଦୁର୍ଭେଦ୍ୟ ଅନ୍ତରାଳରେ ସର୍ବଦା ଅବସ୍ଥାନ କଲେ ମଧ୍ୟ ଶ୍ରୀଶ୍ରୀମାତାଠାକୁରାଣୀ ଠାକୁରଙ୍କ ନିକଟରେ ପୂର୍ବୋକ୍ତ ଉପଦେଶ ଲାଭ କରି ନିଜ ଜୀବନ ନିୟମିତ କରିବାକୁ ଶିକ୍ଷା କରିଥିଲେ । ଦରକାର ପଡ଼ିଲେ ସେ ପୂର୍ବ ସଂସ୍କାର ଓ ଅଭ୍ୟାସର ଆବରଣସମୂହରୁ ନିଜକୁ ନିଷ୍କ୍ରାନ୍ତ କରି ନିର୍ଭୟରେ ଯଥାଯଥ ଆଚରଣ କରିବାକୁ କେତେଦୂର ସମର୍ଥ ଥିଲେ, ତାହା ତାଙ୍କର ଦକ୍ଷିଣେଶ୍ୱରକୁ ପ୍ରଥମ ଆଗମନର ବର୍ଣ୍ଣନାରେ[୧] ଏବଂ ନିମ୍ନଲିଖିତ ଘଟଣାରୁ ପାଠକଙ୍କର ସମ୍ୟକ୍ ହୃଦୟଙ୍ଗମ ହେବ :

## କାମାରପୁକୁରଠାରୁ ଦକ୍ଷିଣେଶ୍ୱର ଆସିବାର ରାସ୍ତା :

ସ୍ୱଳ୍ପବ୍ୟୟସାଧ୍ୟ ମନୋଭାବ, ଅର୍ଥାଭାବ ପ୍ରଭୃତି ନାନା କାରଣରୁ ଶ୍ରୀଶ୍ରୀମାତାଠାକୁରାଣୀଙ୍କୁ ସେ ସମୟରେ ଅନେକ ଥର ଜୟରାମବାଟୀ ଏବଂ କାମାରପୁକୁରରୁ ଦକ୍ଷିଣେଶ୍ୱର ପଦବ୍ରଜରେ ଆସିବାକୁ ପଡୁଥିଲା । ଏପରି ଆସିବାକୁ ହେଲେ ଜାହାନାବାଦ (ଆରାମବାଗ୍) ପର୍ଯ୍ୟନ୍ତ ଆସି ପଥିକଗଣଙ୍କୁ ଆଠ ଦଶ ମାଇଲ ବ୍ୟାପୀ ତେଲୋଭେଲୋର ପଡ଼ିଆ ପାର ହୋଇ ତାରକେଶ୍ୱର ଏବଂ ସେଠାରୁ କୈକଲାର ପଡ଼ିଆ ଉତ୍ତୀର୍ଣ୍ଣ ହୋଇ ବୈଦ୍ୟବାଟୀ ଆସି ଗଙ୍ଗା ପାର ହେବାକୁ ପଡୁଥିଲା । ଏହି ବିସ୍ତୀର୍ଣ୍ଣ ପ୍ରାନ୍ତର ଦୁଇଟି ସେତେବେଳେ ଡକାୟତମାନଙ୍କର ଆଡ୍ଡାସ୍ଥଳ ଥିଲା । ସକାଳେ, ମଧ୍ୟାହ୍ନରେ ଓ ପ୍ରଦୋଷରେ ଅନେକ ପଥିକଙ୍କର ସେମାନଙ୍କ ଦ୍ୱାରା ପ୍ରାଣ ନାଶ ହେବାର କଥା ଏବେ ମଧ୍ୟ ଶୁଣିବାକୁ ମିଳେ । ପ୍ରାୟ ପାଖାପାଖି ଅବସ୍ଥିତ ତେଲୋ-ଭେଲୋ ନାମକ ଛୋଟ ଗ୍ରାମ ଦୁଇଟିର ଏକକ୍ରୋଶ ଅନ୍ଦାଜ ଦୂରରେ ପ୍ରାନ୍ତରର ମଧ୍ୟଭାଗରେ କରାଳବଦନା ସୁଭୀଷଣା ଏକ କାଳୀମୂର୍ତ୍ତିର ଏବେ ମଧ୍ୟ ଦର୍ଶନ ମିଳିଥାଏ । ଜନସାଧାରଣଙ୍କ ନିକଟରେ ଏହି ଦେବୀ ତେଲୋଭେଲୋର 'ଡକାୟତ କାଳୀ' ନାମରେ ପ୍ରସିଦ୍ଧି ଲାଭ କରିଛନ୍ତି । ଲୋକେ କହନ୍ତି, ଏହାଙ୍କୁ ପୂଜା କରି ଡକାୟତମାନେ ନରହତ୍ୟା ପରି ନୃଶଂସ କାର୍ଯ୍ୟରେ ଅଗ୍ରସର ହେଉଥିଲେ । ଡକାୟତଙ୍କ ହାତରୁ ରକ୍ଷା ପାଇବା ନିମନ୍ତେ ପଥିକମାନେ

---

୧. 'ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗ—ସାଧକଭାବ', ବିଂଶ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ଏହି ସମୟରେ ଦଳବଦ୍ଧ ନ ହୋଇ ଏହି ପ୍ରାନ୍ତଦ୍ୱୟ ଅତିକ୍ରମ କରିବାକୁ ସାହସ କରୁ ନ ଥିଲେ ।

### ୮ ଶ୍ରୀଶ୍ରୀମା'ଙ୍କର ପଦବ୍ରଜରେ ତାରକେଶ୍ୱର ଆଗମନ କାଳର ଘଟଣା :

ଠାକୁରଙ୍କର ମଧ୍ୟମାଗ୍ରଜ ରାମେଶ୍ୱରଙ୍କ କନ୍ୟା ଓ କନିଷ୍ଠ ପୁତ୍ର ଏବଂ ଅନ୍ୟ କେତେଜଣ ସ୍ତ୍ରୀ–ପୁରୁଷଙ୍କ ସହିତ ଶ୍ରୀଶ୍ରୀ ମାତାଠାକୁରାଣୀ ଥରେ କାମାରପୁକୁରରୁ ଦକ୍ଷିଣେଶ୍ୱର ଆସୁଥିଲେ । ଆରାମବାଗଠାରେ ପହଞ୍ଚି ତେଲୋଭେଲୋର ପ୍ରାନ୍ତର ସନ୍ଧ୍ୟା ପୂର୍ବରୁ ପାର ହୋଇଯିବା ପାଇଁ ଯଥେଷ୍ଟ ସମୟ ଅଛି ଭାବି ତାଙ୍କର ସାଥିମାନେ ସେହି ସ୍ଥାନରେ ଅବସ୍ଥାନ ଓ ରାତ୍ରିଯାପନ କରିବାକୁ ଅନିଚ୍ଛା ପ୍ରକାଶ କଲେ । ପଥଶ୍ରମ ଯୋଗୁଁ କ୍ଳାନ୍ତି ଅନୁଭବ କଲେ ମଧ୍ୟ ଶ୍ରୀଶ୍ରୀମା' ସେହି ବିଷୟ କାହାକୁ ନ କହି ସେମାନଙ୍କ ସହିତ ଅଗ୍ରସର ହେଲେ । କିନ୍ତୁ ଦୁଇକ୍ରୋଶ ପଥ ଯାଇଛନ୍ତି କି ନାହିଁ ଦେଖିଲେ, ସେ ସାଥିମାନଙ୍କ ସହିତ ସମଭାବରେ ଚାଲି ନ ପାରି ପଛରେ ପଡ଼ିଯାଇଛନ୍ତି । ତେଣୁ ତାଙ୍କ ପାଇଁ କିଛି ସମୟ ଅପେକ୍ଷା କରି ଏବଂ ସେ ଆସିଲେ ତାଙ୍କୁ ଦ୍ରୁତ ଚାଲିବାକୁ କହି ସେମାନେ ପୁନରାୟ ଗନ୍ତବ୍ୟ ପଥ ଚାଲିବାକୁ ଲାଗିଲେ । ଏହାପରେ ପଡ଼ିଆ ମଝିରେ ଆସି ସେମାନେ ଦେଖିଲେ, ସେ ପୁଣି ସମସ୍ତଙ୍କର ବହୁତ ପଛରେ ଧୀରେ ଧୀରେ ଆଗମନ କରୁଅଛନ୍ତି । ପୁଣି ତାଙ୍କ ପାଇଁ ସେମାନେ ଅପେକ୍ଷା କରି ରହିଲେ ଏବଂ ସେ ନିକଟକୁ ଆସିବାରୁ କହିଲେ, ଏପରି ଚାଲିଲେ ରାତ୍ରିର ଏକ ପ୍ରହରରେ ମଧ୍ୟ ପଡ଼ିଆ ଅତିକ୍ରମ କରି ହେବ ନାହିଁ ଓ ସମସ୍ତଙ୍କୁ ଡକାୟତଙ୍କ ହାତରେ ପଡ଼ିବାକୁ ହେବ । ଏତେ ଲୋକଙ୍କର ଅସୁବିଧା ଓ ଆଶଙ୍କାର କାରଣ ହେଉଛନ୍ତି ଦେଖି ଶ୍ରୀଶ୍ରୀମା' ସେମାନଙ୍କୁ ତାଙ୍କ ପାଇଁ ପଥ ମଧ୍ୟରେ ଅପେକ୍ଷା କରିବାକୁ ନିଷେଧ କରି କହିଲେ, "ତୁମେ ସବୁ ତାରକେଶ୍ୱର ଚଟିରେ ପହଞ୍ଚି ବିଶ୍ରାମ କର, ମୁଁ ଯେତେଶୀଘ୍ର ପାରେ ତୁମମାନଙ୍କ ସହିତ ମିଶିବି ।" ବେଳ ଆଉ ଅଧିକ ନ ଥିବା ଦେଖି ଏବଂ ତାଙ୍କ କଥାରେ ନିର୍ଭର କରି ତାଙ୍କ ସାଥିମାନେ କାଳବିଳମ୍ବ ନ କରି ଅଧିକତର ବେଗରେ ପଥ ଅତିକ୍ରମ କରି ଶୀଘ୍ର ହିଁ ତାଙ୍କର ଦୃଷ୍ଟି ବହିର୍ଭୂତ ହେଲେ ।

### ତେଲୋଭେଲୋର ପ୍ରାନ୍ତରରେ :

ଶ୍ରୀଶ୍ରୀମା' ଯଥାସାଧ୍ୟ ଦ୍ରୁତପଦରେ ଚାଲିବାକୁ ଲାଗିଲେ, ମାତ୍ର ଶରୀର ଅତ୍ୟନ୍ତ ଅବସନ୍ନ ହେବାରୁ ପଡ଼ିଆ ମଧ୍ୟରେ ପହଞ୍ଚିବାର କିଛି ସମୟ ପରେ ହିଁ ସନ୍ଧ୍ୟା ହୋଇଗଲା । ଅତ୍ୟନ୍ତ ଚିନ୍ତିତା ହୋଇ ସେ କ'ଣ କରିବେ ଭାବୁଛନ୍ତି, ଏତିକି ବେଳେ ଦେଖିଲେ ଦୀର୍ଘାକାର ଘୋର କୃଷ୍ଣବର୍ଣ୍ଣ ଜଣେ ପୁରୁଷ ବାଡ଼ିଟିଏ କାନ୍ଧରେ ନେଇ ତାଙ୍କ ଆଡ଼କୁ ଦ୍ରୁତପଦରେ ଅଗ୍ରସର ହେଉଛି । ତାଙ୍କ ପଶ୍ଚାତରେ ଦୂରରେ

ତାର ସାଥୀ ପରି ଏକ ବ୍ୟକ୍ତି ମଧ୍ୟ ଆସୁଛି ବୋଲି ବୋଧ ହେଲା । ପଳାୟନ ବା ଚିତ୍କାର କରିବା ବୃଥା ମନେକରି ଶ୍ରୀଶ୍ରୀମା' ସ୍ଥିରଭାବରେ ଦଣ୍ଡାୟମାନ ହୋଇ ସେମାନଙ୍କର ଆଗମନକୁ ସଶଙ୍କ ଚିତ୍ତରେ ପ୍ରତୀକ୍ଷା କରିବାକୁ ଲାଗିଲେ ।

### ବାଗ୍‌ଦୀ ପାଇକ ଓ ତାଙ୍କର ପତ୍ନୀ :

କିଛି ସମୟରେ ସେହି ପୁରୁଷ ନିକଟକୁ ଆସି ତାଙ୍କୁ କର୍କଶ ସ୍ୱରରେ ପଚାରିଲେ, ''କିଏ ତୁମେ, ଏପରି ସମୟରେ କାହିଁକି ଏଠି ଠିଆହୋଇ ରହିଛ ?'' ଶ୍ରୀଶ୍ରୀମା' ତାଙ୍କୁ ପ୍ରସନ୍ନ କରିବା ଆଶାରେ ପିତୃସମ୍ବୋଧନପୂର୍ବକ ସମ୍ପୂର୍ଣ୍ଣ ତାହାର ଶରଣାପନ୍ନ ହୋଇ କହିଲେ, ''ବାବା, ମୋର ସାଥିମାନେ ମୋତେ ଛାଡ଼ି ଯାଇଛନ୍ତି, ବୋଧହୁଏ ମୁଁ ପଥ ମଧ୍ୟ ଭୁଲି ଯାଇଛି, ତୁମେ ମୋତେ ସାଙ୍ଗରେ ନେଇ ଯଦି ସେମାନଙ୍କ ପାଖରେ ପହଞ୍ଚାଇ ଦିଅ । ତୁମର ଜ୍ୱାଇଁ ଦକ୍ଷିଣେଶ୍ୱରରେ ରାଣୀ ରାସମଣିଙ୍କର କାଳୀମନ୍ଦିରରେ ରହନ୍ତି, ମୁଁ ତାଙ୍କ ନିକଟକୁ ଯାଉଛି, ତୁମେ ଯଦି ସେପର୍ଯ୍ୟନ୍ତ ମୋତେ ନେଇ ଯାଅ ତାହେଲେ ସେ ତୁମକୁ ଅତ୍ୟନ୍ତ ସମାଦର କରିବେ ।'' ଏହି କଥା କହୁ କହୁ ଦ୍ୱିତୀୟ ବ୍ୟକ୍ତିଜଣକ ମଧ୍ୟ ସେଠାରେ ପହଞ୍ଚିଗଲେ ଏବଂ ଶ୍ରୀଶ୍ରୀମା' ଦେଖିଲେ ସେ ପୁରୁଷ ନୁହଁନ୍ତି ରମଣୀ, ପ୍ରଥମାଗତ ପୁରୁଷର ପତ୍ନୀ । ସେହି ରମଣୀଙ୍କୁ ଦେଖି ବିଶେଷ ଆଶ୍ୱସ୍ତା ହୋଇ ଶ୍ରୀଶ୍ରୀମା' ତାର ହସ୍ତଧାରଣ ଓ ମାତୃସମ୍ବୋଧନପୂର୍ବକ କହିଲେ, ''ମା', ମୁଁ ତୁମର ଝିଅ ସାରଦା, ସାଙ୍ଗମାନେ ଛାଡ଼ିଯିବାରୁ ଅତ୍ୟନ୍ତ ବିପଦରେ ପଡ଼ିଥିଲି; ଭାଗ୍ୟବଳରୁ ବାବା ଓ ତୁମେ ଆସିଗଲ, ନଚେତ୍ କ'ଣ କରିଥାଆନ୍ତି ଭାବିପାରୁ ନାହିଁ ।''

### ତେଲୋଭେଲୋରେ ରାତ୍ରିବାସ ଓ<br>ପାଇକ ଏବଂ ତାଙ୍କର ପତ୍ନୀଙ୍କ ଯତ୍ନ :

ଶ୍ରୀଶ୍ରୀମା'ଙ୍କର ଏପରି ନିଃସଙ୍କୋଚ ସରଳ ବ୍ୟବହାର, ଏକାନ୍ତ ବିଶ୍ୱାସ ଓ ମଧୁର କଥାରେ ବାଗଦୀ ପାଇକ ଏବଂ ତାଙ୍କର ପତ୍ନୀଙ୍କର ପ୍ରାଣ ବିଗଳିତ ହେଲା । ସାମାଜିକ ଆଚାର ଏବଂ ଜାତି କଥା ଭୁଲି ସେମାନେ ସତକୁ ସତ ହିଁ ନିଜର କନ୍ୟା ସଦୃଶ ଦେଖି ତାଙ୍କୁ ଅଶେଷ ସାନ୍ତ୍ୱନା ପ୍ରଦାନ କରିବାକୁ ଲାଗିଲେ ! ପରେ ତାଙ୍କର ଶାରୀରିକ ଅବସନ୍ନତା କଥା ଆଲୋଚନା କରି ତାଙ୍କୁ ଆଗକୁ ଯିବାକୁ ନ ଦେଇ ସମୀପବର୍ତ୍ତୀ ତେଲୋଭେଲୋ ଗ୍ରାମର ଗୋଟିଏ କ୍ଷୁଦ୍ର ଦୋକାନଘରେ ତାଙ୍କୁ ନେଇ ଯାଇ ରାତ୍ରିବାସର ବନ୍ଦୋବସ୍ତ କଲେ । ସ୍ତ୍ରୀଲୋକଟି ନିଜର ବସ୍ତ୍ରାଦି ବିଛାଇ ଦେଇ ତାଙ୍କ ପାଇଁ ଶଯ୍ୟା ପ୍ରସ୍ତୁତ କଲେ ଏବଂ ପୁରୁଷ ବ୍ୟକ୍ତି ଜଣକ ଦୋକାନରୁ ମୁଢ଼ି–ଉଖୁଡ଼ା କିଣି ତାଙ୍କୁ ଖାଇବାକୁ ଦେଲେ । ସେହିପରି ପିତାମାତାଙ୍କ ଭଳି ଆଦର ଓ ସ୍ନେହରେ ତାଙ୍କୁ ଶୁଆଇ ତଥା ରକ୍ଷା କରି ସେମାନେ ସମସ୍ତ ରାତ୍ରି ଅତିବାହିତ କଲେ ଏବଂ ପ୍ରତ୍ୟୁଷରୁ ତାଙ୍କୁ ଉଠାଇ ସାଙ୍ଗରେ ନେଇ ଦୁଇ ଚାରିଦଣ୍ଡ ବେଳ

ପରେ ତାରକେଶ୍ୱରରେ ପହଞ୍ଚି ଗୋଟିଏ ଦୋକାନରେ ଆଶ୍ରୟ ଗ୍ରହଣପୂର୍ବକ ତାଙ୍କୁ ବିଶ୍ରାମ କରିବାକୁ କହିଲେ । ଏହାପରେ ରମଣୀ ତାଙ୍କର ସ୍ୱାମୀଙ୍କୁ କହିଲେ, ''ମୋ ଝିଅ ଗତ କାଲି କିଛି ଖାଇବାକୁ ପାଇ ନାହିଁ, ବାବା(ତାରକେଶ୍ୱର)ଙ୍କର ପୂଜାଦି ଶୀଘ୍ର ସାରି ବଜାରରୁ ମାଛ, ପନିପରିବା ନେଇ ଆସ, ଆଜି ତାକୁ ଭଲ କରି ଖୁଆଇବାକୁ ହେବ ।''

## ତାରକେଶ୍ୱର ପହଞ୍ଚିବା ପରେ ଓ ପାଇକଙ୍କଠାରୁ ବିଦାୟ ଗ୍ରହଣ ସମୟରେ :

ପୁରୁଷ ବ୍ୟକ୍ତି ଜଣକ ଏସବୁ କାମ କରିବାକୁ ଚାଲିଗଲା ପରେ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ସଙ୍ଗୀ ଓ ସଙ୍ଗିନୀଗଣ ତାଙ୍କୁ ଅନ୍ୱେଷଣ କରି ସେଠାରେ ଆସି ଉପସ୍ଥିତ ହେଲେ ଏବଂ ସେ ନିରାପଦରେ ପହଞ୍ଚିବା ଦେଖି ଆନନ୍ଦିତ ହେଲେ । ସେତେବେଳେ ଶ୍ରୀଶ୍ରୀମା' ତାଙ୍କୁ ରାତିରେ ଆଶ୍ରୟ ଦେଇଥିବା ପିତାମାତାଙ୍କ ସହିତ ସେମାନଙ୍କୁ ପରିଚୟ କରାଇ କହିଲେ, ''ଏମାନେ ଆସି ମୋତେ ରକ୍ଷା ନ କରିଥିଲେ ଗତକାଲି ରାତିରେ କ'ଣ ଯେ କରିଥାଆନ୍ତି କହିହେବ ନାହିଁ ।'' ଏହା ପରେ ପୂଜା, ରନ୍ଧନ ଓ ଭୋଜନ ଆଦି ଶେଷ କରି କିଛି ସମୟ ସେଠାରେ ବିଶ୍ରାମ କରି ସମସ୍ତେ ବୈଦ୍ୟବାଟୀ ଅଭିମୁଖେ ଯାତ୍ରା କରିବାକୁ ପ୍ରସ୍ତୁତ ହେବାରୁ ଶ୍ରୀଶ୍ରୀମାତାଠାକୁରାଣୀ ସେହି ପୁରୁଷ ଓ ରମଣୀଙ୍କୁ ଅଶେଷ କୃତଜ୍ଞତା ଜଣାଇ ବିଦାୟ ପ୍ରାର୍ଥନା କଲେ । ଶ୍ରୀଶ୍ରୀମା' କହିଥିଲେ, ''ଗୋଟିଏ ରାତି ମଧ୍ୟରେ ଆମେ ପରସ୍ପରକୁ ଏତେ ଆପଣାର କରିନେଇଥିଲୁ ଯେ, ବିଦାୟ ଗ୍ରହଣ ବେଳେ ବ୍ୟାକୁଳ ହୋଇ ଅଜସ୍ର କ୍ରନ୍ଦନ କରିବାକୁ ଲାଗିଲି । ଅବଶେଷରେ ସୁବିଧା ଦେଖି ଦକ୍ଷିଣେଶ୍ୱରରେ ମୋତେ ଦେଖିବାକୁ ଆସିବା ପାଇଁ ବାରମ୍ବାର ଅନୁରୋଧ କରି ସେହିକଥା ସ୍ୱୀକାର କରାଇ ଅତି କଷ୍ଟରେ ସେମାନଙ୍କୁ ଛାଡ଼ିଆସିଲି । ଆସିବା ସମୟରେ ସେମାନେ ଅନେକ ଦୂର ପର୍ଯ୍ୟନ୍ତ ଆମ ସାଙ୍ଗରେ ଆସିଥିଲେ, ଏବଂ ରମଣୀ ପାର୍ଶ୍ୱବର୍ତ୍ତୀ ବିଲରୁ କେତେଗୁଡିଏ ମଟରଛୁଇଁ ତୋଳି କାନ୍ଦି କାନ୍ଦି ମୋର ଲୁଗା କାନିରେ ବାନ୍ଧି କାତର କଣ୍ଠରେ କହିଥିଲେ, 'ମା, ସାରଦା, ରାତିରେ ଯେତେବେଳେ ମୁଢ଼ି ଖାଇବୁ ସେତେବେଳେ ଏଗୁଡ଼ିକ ସେଥିରେ ମିଶାଇ ଖାଇବୁ ।' ପୂର୍ବୋକ୍ତ ଅଙ୍ଗୀକାର ସେମାନେ ରକ୍ଷା କରିଥିଲେ । ମିଠାଇ ପ୍ରଭୃତି ଦ୍ରବ୍ୟ ନେଇ ମୋତେ ଦେଖିବାକୁ କେତେଥର ଦକ୍ଷିଣେଶ୍ୱରକୁ ଆସିଥିଲେ । ସେ ମଧ୍ୟ (ଠାକୁର) ମୋଠାରୁ ସମସ୍ତ କଥା ଶୁଣି ସେହି ସମୟରେ ସେମାନଙ୍କ ସହିତ ଜ୍ୱାଇଁ ପରି ବ୍ୟବହାର ଓ ଆଦର ଅଭ୍ୟର୍ଥନାରେ ସେମାନଙ୍କୁ ପରିତୃପ୍ତ କରିଥିଲେ । ଏପରି ସରଳ ଏବଂ ସଚ୍ଚରିତ୍ର ହୋଇଥିଲେ ମଧ୍ୟ ମୋର ଡକାୟତ ବାବା ପୂର୍ବେ ବେଳେ ବେଳେ ଯେ ଡକାୟତି କରିଥିଲେ ଏପରି ମୋର ମନେ ହୁଏ ।''

## ଶ୍ରୀଶ୍ରୀମା' ଶ୍ୟାମପୁକୁରକୁ ଆଗମନ କରି ଯେପରି ଭାବରେ ରହୁଥିଲେ :

ଡାକ୍ତରଙ୍କର ପରାମର୍ଶ ଅନୁସାରେ ସୁପଥ୍ୟ ପ୍ରସ୍ତୁତ କରିବା ପାଇଁ ଲୋକ ନ ମିଳିବାରୁ ଠାକୁରଙ୍କର ରୋଗବୃଦ୍ଧି ସମ୍ଭାବନା ହେଉଅଛି, ଶୁଣିବାମାତ୍ରେ ଶ୍ରୀଶ୍ରୀମାତାଠାକୁରାଣୀ ନିଜର ରହିବାର ସୁବିଧା ଅସୁବିଧା କଥା ଆଦୌ ଚିନ୍ତା ନ କରି ଶ୍ୟାମପୁକୁର ଘରକୁ ଆସି ଏହି ଦାୟିତ୍ୱ ଆନନ୍ଦରେ ଗ୍ରହଣ କଲେ । ଏକ ମହଲା ଘରେ, ଅପରିଚିତ ପୁରୁଷମାନଙ୍କ ମଧ୍ୟରେ, ସମସ୍ତ ପ୍ରକାର ଶାରୀରିକ ଅସୁବିଧା ସହ୍ୟ କରି ଏଠାରେ ତିନିମାସ ଅବସ୍ଥାନପୂର୍ବକ ସେ ଯେଉଁ ଭାବରେ ନିଜ କର୍ତ୍ତବ୍ୟ ପାଳନ କରିଥିଲେ, ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ସ୍ନାନ ଇତ୍ୟାଦି କରିବା ପାଇଁ ଗୋଟିଏ ମାତ୍ର ସ୍ଥାନ ସମସ୍ତଙ୍କ ପାଇଁ ଥିବାରୁ ରାତି ତିନିଟା ପୂର୍ବରୁ ଶଯ୍ୟା ତ୍ୟାଗ କରି ସେ କେତେବେଳେ ଯେ ନିଜର ନିତ୍ୟକର୍ମ ଶେଷ କରି ତିନିତାଲା ଛାତ ସିଡ଼ି ପାର୍ଶ୍ୱସ୍ଥ ସ୍ଥାନକୁ ଉଠିଯାଉଥିଲେ ତାହା କେହି ଜାଣିପାରୁ ନ ଥିଲେ । ସମସ୍ତ ଦିନ ସେଠାରେ ରହି ଯଥାସମୟରେ ଠାକୁରଙ୍କର ପଥ୍ୟାଦି ପ୍ରସ୍ତୁତ କରିସାରି ସେ ବୃଦ୍ଧ ସ୍ୱାମୀ ଅଦ୍ୱୈତାନନ୍ଦ, ଅଥବା ସ୍ୱାମୀ ଅଦ୍ଭୁତାନନ୍ଦଙ୍କ ଦ୍ୱାରା ସେହି ସମ୍ବାଦ ପ୍ରେରଣ କରୁଥିଲେ—ତା'ପରେ ସୁବିଧା କରି ଲୋକଙ୍କୁ ଘୁଞ୍ଚାଇ ତାଙ୍କୁ ଠାକୁରଙ୍କ ପାଖକୁ ଯାଇ ଠାକୁରଙ୍କୁ ଖୁଆଇବାକୁ କୁହା ହେଉଥିଲା, ନ ହେଲେ ଆମେମାନେ ହିଁ ତାହା ନେଇ ଆସୁଥିଲୁ । ମଧ୍ୟାହ୍ନରେ ସେ ସେହି ସ୍ଥାନରେ ସ୍ୱୟଂ ଭୋଜନ ଏବଂ ବିଶ୍ରାମ କରୁଥିଲେ ଏବଂ ରାତି ୧୧ଟା ସମୟରେ ସମସ୍ତେ ଶୋଇଯିବା ପରେ ଶ୍ରୀଶ୍ରୀମାତାଠାକୁରାଣୀ ସେଠାରୁ ଦୋତାଲାରେ ତାଙ୍କ ନିମିତ୍ତ ନିର୍ଦ୍ଦିଷ୍ଟ ଘରକୁ ଆସି ରାତି ଦୁଇଟା ପର୍ଯ୍ୟନ୍ତ ଶୟନ କରୁଥିଲେ । ଠାକୁରଙ୍କୁ ରୋଗମୁକ୍ତ କରିବା ଆଶାରେ ଛାତିକୁ ପଥର କରି ସେ ଦିନ ପରେ ଦିନ ସେହି ଭାବରେ କଟାଇ ଦେଉଥିଲେ ଏବଂ ଏପରି ନୀରବରେ ନିଃଶବ୍ଦରେ ସର୍ବଦା ଅବସ୍ଥାନ କରୁଥିଲେ ଯେ, ଯେଉଁମାନେ ପ୍ରତିଦିନ ଏଠାକୁ ଯିବା ଆସିବା କରୁଥିଲେ ସେମାନଙ୍କ ମଧ୍ୟରୁ ଅନେକେ ଜାଣିପାରୁ ନ ଥିଲେ ଯେ ଶ୍ରୀମା ଏଠାରେ ରହି ଠାକୁରଙ୍କର ସର୍ବଶ୍ରେଷ୍ଠ ସେବାକାର୍ଯ୍ୟର ଦାୟିତ୍ୱ ତୁଲାଉଛନ୍ତି ।

### ବାଳକଭକ୍ତଗଣଙ୍କର ଠାକୁରଙ୍କ ସେବାର ଭାର ଗ୍ରହଣ :

ଠାକୁରଙ୍କର ପଥ୍ୟ ବିଷୟ ଏପରି ସମାଧାନ ହେବାରୁ ରାତି ସମୟରେ ତାଙ୍କର ସେବା ନିମିତ୍ତ ଲୋକାଭାବ ଦୂର କରିବା ପାଇଁ ଭକ୍ତମାନେ ମନୋନିବେଶ କଲେ । ଶ୍ରୀଯୁକ୍ତ ନରେନ୍ଦ୍ର ସେତେବେଳେ ଏବିଷୟର ଭାର ସ୍ୱୟଂ ଗ୍ରହଣକରି ରାତିରେ ଏଠାରେ ରହିବାକୁ ଲାଗିଲେ ଏବଂ ନିଜ ଦୃଷ୍ଟାନ୍ତରେ ଉତ୍ସାହିତ କରି ଗୋପାଳ (ଛୋଟ), କାଳୀ, ଶଶୀ ପ୍ରଭୃତି କେତେଜଣ କର୍ମଠ ଯୁବକଭକ୍ତଙ୍କୁ

ଏପରି କରିବାକୁ ଆକୃଷ୍ଟ କଲେ । ଠାକୁରଙ୍କ ପ୍ରତି ପ୍ରେମରେ ତାଙ୍କର ଅସୀମ ସ୍ୱାର୍ଥତ୍ୟାଗ, ପ୍ରବଳ ଉତ୍ତେଜନାପୂର୍ଣ୍ଣ ପୂତ ଆଳାପ ଓ ପବିତ୍ର ସଙ୍ଗରେ ସେମାନେ ସମସ୍ତେ ନିଜ ନିଜ ସ୍ୱାର୍ଥତ୍ୟାଗପୂର୍ବକ ଶ୍ରୀଗୁରୁଙ୍କର ସେବା ଏବଂ ଈଶ୍ୱରଲାଭରୂପକ ଉଚ୍ଚ ଉଦ୍ଦେଶ୍ୟରେ ଜୀବନ ପରିଚାଳିତ କରିବାକୁ ଦୃଢ଼ସଂକଳ୍ପ କଲେ । ସେମାନଙ୍କର ଅଭିଭାବକମାନେ ଯେପର୍ଯ୍ୟନ୍ତ ଏକଥା ବୁଝି ନ ଥିଲେ ସେତେଦିନ ପର୍ଯ୍ୟନ୍ତ ସେମାନେ ଶ୍ୟାମପୁକୁର ଘରକୁ ଆସି ଠାକୁରଙ୍କ ସେବା କରିବା ବିଷୟରେ ଆପତ୍ତି କଲେ ନାହିଁ । କିନ୍ତୁ ଠାକୁରଙ୍କର ରୋଗବୃଦ୍ଧି ସଙ୍ଗେ ସଙ୍ଗେ ଯେତେବେଳେ ସେମାନେ ସେବାକାର୍ଯ୍ୟରେ ସମଗ୍ର ମନ ପ୍ରାଣ ଢାଳି କଲେଜର ଅଧ୍ୟୟନ ଏବଂ ନିଜ ନିଜ ଘରକୁ ଖାଇବାକୁ ଯିବା ପର୍ଯ୍ୟନ୍ତ ବନ୍ଦ କଲେ, ସେତେବେଳେ ସେମାନଙ୍କର ପ୍ରାଣରେ ପ୍ରଥମେ ସନ୍ଦେହ ଏବଂ ପରେ ଆତଙ୍କ ସୃଷ୍ଟି ହେବାରୁ ପିଲାମାନଙ୍କୁ ଫେରାଇ ନେବା ପାଇଁ ନ୍ୟାୟ–ଅନ୍ୟାୟ ନାନା ଉପାୟ ଅବଲମ୍ବନ କରିବାକୁ ଲାଗିଲେ । ନରେନ୍ଦ୍ରନାଥଙ୍କର ଦୃଷ୍ଟାନ୍ତ, ଉତ୍ତେଜନା ଏବଂ ଉତ୍ସାହ ବ୍ୟତୀତ ସେମାନେ ଏସମସ୍ତ ବାଧାବିଘ୍ନ ଅତିକ୍ରମ କରି ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ପଥରେ ଯେ କେବେ ହେଲେ ଅଚଳ ଅଟଳ ରହିପାରି ନ ଥାନ୍ତେ, ଏହା ଏଥିରୁ ବୁଝାଯାଏ । ଏହିପରି ଶ୍ୟାମପୁକୁର ଘରେ ଚାରି ପାଞ୍ଚ ଜଣ ମାତ୍ର ଜୀବନୋତ୍ସର୍ଗ କରି ଏହି ସେବାବ୍ରତ ଆରମ୍ଭ କଲେ ମଧ୍ୟ କାଶୀପୁରର ଉଦ୍ୟାନରେ ଏହି ସେବା ପୂର୍ଣ୍ଣାନୁଷ୍ଠାନ ସମୟରେ ବ୍ରତଧାରୀଙ୍କ ସଂଖ୍ୟା ପ୍ରାୟ ଚତୁର୍ଗୁଣ ବୃଦ୍ଧିପ୍ରାପ୍ତ ହୋଇଥିଲା ।

# ଦ୍ୱାଦଶ ଅଧ୍ୟାୟ — ଦ୍ୱିତୀୟ ପାଦ

## ଠାକୁରଙ୍କର ଶ୍ୟାମପୁକୁରରେ ଅବସ୍ଥାନ

### ଗୃହୀଭକ୍ତମାନଙ୍କର ସେବାଭାର ଗ୍ରହଣ ଏବଂ ଠାକୁରଙ୍କ ଭିତରେ ବେଳେ ବେଳେ ଅପୂର୍ବ ଆଧ୍ୟାତ୍ମିକ ପ୍ରକାଶ ଦେଖାଯିବା :

ଔଷଧ, ପଥ୍ୟ ଏବଂ ଦିନରାତି ସେବାର ବନ୍ଦୋବସ୍ତ ହେବା ପରେ ଭକ୍ତମାନେ ନିଶ୍ଚିନ୍ତ ହୋଇଥିଲେ, ଏକଥା କୁହାଯାଇପାରେ ନାହିଁ । କାରଣ, କଲିକତାର ପ୍ରସିଦ୍ଧ ଚିକିତ୍ସକଗଣଙ୍କ ମତାମତ ଗ୍ରହଣପୂର୍ବକ ସେମାନେ ଭଲ ଭାବରେ ହୃଦୟଙ୍ଗମ କରିଥିଲେ ଯେ, ଠାକୁରଙ୍କର କଣ୍ଠରୋଗ ଚିକିତ୍ସାର ସମ୍ପୂର୍ଣ୍ଣ ଅସାଧ୍ୟ ନ ହେଲେ ମଧ୍ୟ ବିଶେଷ କଷ୍ଟସାଧ୍ୟ ଏଥିରେ ସନ୍ଦେହ ନାହିଁ ଏବଂ ତାଙ୍କର ଆରୋଗ୍ୟ ହେବା ଦୀର୍ଘ ସମୟସାପେକ୍ଷ । ତେଣୁ ଶେଷ ପର୍ଯ୍ୟନ୍ତ ଏହି ସେବା କାର୍ଯ୍ୟ ଚଳାଇବାର ଖର୍ଚ୍ଚ କିପରି ଯୋଗାଡ଼ ହେବ, ତାହା ହିଁ ଏବେ ସେମାନଙ୍କର ଚିନ୍ତାର ବିଷୟ ହେଲା । ସେପରି ହେବା ସ୍ୱଭାବିକ ଥିଲା — କାରଣ ବଳରାମ, ସୁରେନ୍ଦ୍ର, ରାମଚନ୍ଦ୍ର, ଗିରିଶଚନ୍ଦ୍ର, ମହେନ୍ଦ୍ରନାଥ ପ୍ରଭୃତି ଯେଉଁମାନେ ଠାକୁରଙ୍କୁ କଲିକତା ଆଣି ଚିକିତ୍ସାର ଭାର ନେଇଥିଲେ, ସେମାନେ କେହି ଧନୀ ନ ଥିଲେ । ନିଜର ପରିବାରବର୍ଗଙ୍କର ଭରଣପୋଷଣ ନିର୍ବାହ କରି ସେବକଗଣଙ୍କର ଓ ଠାକୁରଙ୍କର ଭାର ଏକାକୀ ଗ୍ରହଣ କରିବେ, ଏପରି ସାମର୍ଥ୍ୟ ସେମାନଙ୍କର କାହାରି ନ ଥିଲା । ଠାକୁରଙ୍କର ଅସାଧାରଣ ଅଲୌକିକତ୍ୱ ସେମାନଙ୍କ ପ୍ରାଣରେ ଯେଉଁ ଦିବ୍ୟ ଆଶା, ଆଲୋକ, ଆନନ୍ଦ ଓ ଶାନ୍ତିର ଧାରା ପ୍ରବାହିତ କରାଇଥିଲା, କେବଳ ସେହି ପ୍ରେରଣାରେ ସେମାନେ ଭବିଷ୍ୟତ ଆଡ଼କୁ କିଛିମାତ୍ର ଦୃଷ୍ଟିପାତ ନ କରି ସେହି କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲେ । କିନ୍ତୁ ଏହି ପବିତ୍ରଧାରା ଯେ ସର୍ବକ୍ଷଣ ଏକ ଭାବରେ ବହି ଚାଲିବ ଏବଂ ଭବିଷ୍ୟତର ଭାବନା, ଏହାର ଭଟ୍ଟା ସମୟରେ ସେମାନଙ୍କୁ ବିଚଳିତ ନ କରିବ, ଏକଥା କହିବା ନିତାନ୍ତ ଅସ୍ୱାଭାବିକ । ସେହି ପବିତ୍ର ଧାରା ସମାନ ଭାବରେ ବହି ନ ଥିଲା ମଧ୍ୟ । ମାତ୍ର ଆଶ୍ଚର୍ଯ୍ୟର କଥା, ସେପରି ସମୟ ଉପସ୍ଥିତ ହେବାମାତ୍ରେ ସେମାନେ ଠାକୁରଙ୍କ ଭିତରେ ଏପରି ନୂତନ ଆଧ୍ୟାତ୍ମିକ ପ୍ରକାଶସବୁ ଦେଖିବାକୁ ପାଉଥିଲେ ଯେ, ସେହି ଦୁର୍ଭାବନା କେଉଁଠି ବିଲୀନ ହୋଇଯାଉଥିଲା ଏବଂ ସେମାନଙ୍କର ଅନ୍ତର ପୁନରାୟ ନୂତନ ଉତ୍ସାହ ଓ ବଳରେ ପୂର୍ଣ୍ଣ ହୋଇଉଠୁଥିଲା । ସେତେବେଳେ ଆନନ୍ଦର ଉଦ୍ଦାମ ଉଲ୍ଲାସରେ ଯେପରି ବିଚାରବୁଦ୍ଧିର ଅତୀତ ଭୂମିରେ ଆରୋହଣପୂର୍ବକ ସେମାନେ ଦିବ୍ୟାଲୋକରେ ଦେଖିବାକୁ ପାଉଥିଲେ ଯେ, ଯାହାଙ୍କୁ ସେମାନେ ଜୀବନପଥର ପରମ ଅବଲମ୍ବନସ୍ୱରୂପ ଗ୍ରହଣ କରିଛନ୍ତି, ସେ କେବଳମାତ୍ର ଅତିମାନବ ନୁହନ୍ତି କିନ୍ତୁ ଆଧ୍ୟାତ୍ମିକ ଜଗତର ଆଶ୍ରୟ, ଜୀବକୁଳର ପରମଗତି — ଦେବମାନବ ନାରାୟଣ !

ତାଙ୍କର ଜନ୍ମ, କର୍ମ, ତପସ୍ୟା, ଆହାର, ବିହାର—ଏପରିକି ଦେହର ଅସୁସ୍ଥତା ଯୋଗୁଁ ନିବନ୍ଧନ ଯନ୍ତ୍ରଣାଭୋଗ ପର୍ଯ୍ୟନ୍ତ ସମସ୍ତ ହିଁ ବିଶ୍ୱମାନବର କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ । ନ ହେଲେ ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି-ଦୁଃଖ-ଦୋଷାଦିର ଅତୀତ ସତ୍ୟସଂକଳ୍ପ ପୁରୁଷୋତ୍ତମଙ୍କର ଦେହର ଅସୁସ୍ଥତା କେଉଁଠି ? ସେବାଧିକାର ପ୍ରଦାନ କରି ସେମାନଙ୍କୁ ଧନ୍ୟ ଏବଂ କୃତାର୍ଥ କରିବେ ବୋଲି ହିଁ ସେ ଏବେ ରୋଗଗ୍ରସ୍ତ ପରି ହିଁ ଅବସ୍ଥାନ କରୁଛନ୍ତି ! ଦକ୍ଷିଣେଶ୍ୱର ପର୍ଯ୍ୟନ୍ତ ଗମନ କରି ଯେଉଁମାନଙ୍କର ତାଙ୍କୁ ଦର୍ଶନ କରିବାର ଅବସର ଓ ସୁଯୋଗ ନ ଥିଲା, ସେମାନଙ୍କର ପ୍ରାଣରେ ଦିବ୍ୟାଲୋକର ଉନ୍ମେଷ ଆଣିବା ପାଇଁ ସେ ସମ୍ପ୍ରତି ସେମାନଙ୍କ ନିକଟରେ ଆସି ଅବସ୍ଥାନ କରୁଛନ୍ତି ! ପାଶ୍ଚାତ୍ୟ ଶିକ୍ଷାସମ୍ପନ୍ନ ଜଡ଼ବାଦୀ ମାନବ, ଯେଉଁ ବିଜ୍ଞାନର ଛାୟାତଳେ ଦଣ୍ଡାୟମାନ ହୋଇ ନିଜକୁ ନିରାପଦ ଓ ସର୍ବଜ୍ଞପ୍ରାୟ ଭାବି ଭୋଗ ବାସନାର ତୃପ୍ତିସାଧନକୁ ହିଁ ଜୀବନର ଲକ୍ଷ୍ୟ କରିଛନ୍ତି, ଈଶ୍ୱରସାକ୍ଷାତକାରରୂପକ ଦିବ୍ୟ ବିଜ୍ଞାନର ଉଚ୍ଚତର ଆଲୋକରେ ତାହାର ଅକିଞ୍ଚିତ୍କରତ୍ୱ ପ୍ରତିପାଦନପୂର୍ବକ ତାଙ୍କର ଜୀବନ ତ୍ୟାଗ ପଥରେ ପ୍ରବର୍ତ୍ତିତ କରିବା ପାଇଁ ହିଁ ସେ ଏବେ ସେହି ପ୍ରକାର ହୋଇ ରହିଛନ୍ତି ! —ତେଣୁ କାହିଁକି ଏପରି ଆଶଙ୍କା, ଅର୍ଥାଭାବ ହେବ ବୋଲି କ'ଣ ପାଇଁ ଦୁର୍ଭାବନା ? ଯିଏ ସେବାର ଅଧିକାର ପ୍ରଦାନ କରିଛନ୍ତି, ତାହା ସମ୍ପୂର୍ଣ୍ଣ କରିବାର ସାମର୍ଥ୍ୟ ସେ ସେମାନଙ୍କୁ ପ୍ରଦାନ କରିବେ ।

**ଗୃହୀଭକ୍ତମାନଙ୍କର ଠାକୁରଙ୍କ ନିମିତ୍ତ ସ୍ୱାର୍ଥତ୍ୟାଗର କଥା :**

ଭାବୁକତାର ଉଚ୍ଛ୍ୱାସରେ ଅତିରଞ୍ଜିତ କରି ଆମେ ଉପରୋକ୍ତ କଥାସବୁ କହୁଛୁ ବୋଲି ପାଠକମାନେ ଯେପରି ମନେ ନ କରନ୍ତି । ଠାକୁରଙ୍କର ସଙ୍ଗ ଗୁଣରେ ଭକ୍ତମାନଙ୍କୁ ସେହିପରି ଅନୁଭବ ଓ ଆଲୋଚନା କରିବାର ନିତ୍ୟ ପ୍ରତ୍ୟକ୍ଷ କରିଅଛୁ ବୋଲି ହିଁ ଆମମାନଙ୍କୁ ଏସମସ୍ତ କଥା ଲିପିବଦ୍ଧ କରିବାକୁ ପଡୁଛି । ଦେଖିଛି, ଅର୍ଥାଭାବବଶତଃ ଠାକୁରଙ୍କ ସେବାରେ ତ୍ରୁଟି ହେବାର ଆଶଙ୍କାରେ ମନ୍ତ୍ରଣା କରିବାକୁ ଯାଇ ସେମାନେ ପୂର୍ବୋକ୍ତ ଭାବର ପ୍ରେରଣାରେ ଆଶ୍ୱସ୍ତ ଓ ନିଶ୍ଚିନ୍ତ ହୋଇ ଫେରିଯାଇଛନ୍ତି । କେହି କେହି ମଧ୍ୟ କହୁଥିଲେ, 'ଠାକୁର ନିଜ ଯୋଗାଡ଼ ନିଜେ ହିଁ କରି ନେବେ, ଯଦି ନ କଲେ ତେବେ ସେଥିରେ କ୍ଷତି କ'ଣ ? (ନିଜ ଘର ଦେଖାଇ) ଯେତେ ସମୟ ଇଟା ଉପରେ ଇଟା ରହିଛି, ସେତେ ସମୟ ଭାବନା କ'ଣ ?—ଘର ବନ୍ଧକ ଦେଇ ତାଙ୍କର ସେବା ଚାଲୁ ରଖିବା ।' କେହି କେହି ମଧ୍ୟ କହିଥିଲେ, ପୁତ୍ରକନ୍ୟାଙ୍କର ବିବାହ ଓ ଅସୁସ୍ଥତା ସମୟରେ ଯେମିତି ଚଳାଇ ଥାଉ ସେପରି କରିବୁ, ସ୍ତ୍ରୀଙ୍କ ଦେହରେ ଦୁଇଚାରିଖଣ୍ଡ ଅଳଙ୍କାର ଯେପର୍ଯ୍ୟନ୍ତ ଅଛି ସେପର୍ଯ୍ୟନ୍ତ ଭାବନା କ'ଣ ? ପୁଣି କେହି କେହି ମୁହଁରେ ଏକଥା ସବୁ ନ କହି ନିଜର ସଂସାରର ଖର୍ଚ୍ଚ କମାଇ ଅକାତରରେ ଠାକୁରଙ୍କ

ସେବାର ବ୍ୟୟଭାର ଗ୍ରହଣ କରି ସେବିଷୟର ପରିଚୟ ପ୍ରଦାନ କରିଥିଲେ । ସେହି ପ୍ରକାର ଭାବର ପ୍ରେରଣାରେ ହିଁ ସୁରେନ୍ଦ୍ରନାଥ ଘରଭଡ଼ାର ସମସ୍ତ ଖର୍ଚ୍ଚ ଏକାକୀ ବହନ କରିଥିଲେ ଏବଂ ବଳରାମ, ରାମ, ମହେନ୍ଦ୍ର, ଗିରିଶଚନ୍ଦ୍ର ପ୍ରଭୃତି ସମସ୍ତେ ମିଶି ଠାକୁର ଏବଂ ତାଙ୍କର ସେବକମାନଙ୍କ ପାଇଁ ଏହି ସମୟରେ ଯାହା କିଛି ପ୍ରୟୋଜନ ହେଉଥିଲା ସେସବୁ ଯୋଗାଇ ଦେଉଥିଲେ ।

**ଭକ୍ତସଂଘ ଗଠନ କରିବା ହିଁ ଠାକୁରଙ୍କର ବ୍ୟାଧିର କାରଣ :**

ଭକ୍ତମାନେ ଯେଉଁ ଦିବ୍ୟୋଲ୍ଲାସ ପ୍ରାଣରେ ଅନୁଭବ କରୁଥିଲେ, ତାହା ଏବେ ଠାକୁରଙ୍କୁ ଅବଲମ୍ବନ କରି ସେମାନଙ୍କୁ ପରସ୍ପର ପ୍ରତି ଆକୃଷ୍ଟ ଏବଂ ସହାନୁଭୂତିସମ୍ପନ୍ନ କରିବାକୁ ବିଶେଷ ସହାୟତା କରିଥିଲା । ଶ୍ରୀରାମକୃଷ୍ଣ-ଭକ୍ତ ସଂଘରୂପକ ମହୀରୁହ ଦକ୍ଷିଣେଶ୍ୱରରେ ଅଙ୍କୁରିତ ହୋଇଥିଲା ବୋଲି କୁହାଗଲେ ମଧ୍ୟ ଶ୍ୟାମପୁକୁର ଓ କାଶୀପୁର-ଉଦ୍ୟାନରେ ଏହା ନିଜର ଆକାର ଧାରଣପୂର୍ବକ ଏତେ ଦ୍ରୁତ ବର୍ଦ୍ଧିତ ହୋଇଉଠିଥିଲା ଯେ, ଭକ୍ତମାନଙ୍କ ମଧ୍ୟରେ ଅନେକେ ସେତେବେଳେ ସ୍ଥିର କରିଥିଲେ, ଏବିଷୟରେ ସାଫଲ୍ୟ ଆନୟନ ହିଁ ଠାକୁରଙ୍କର ଶାରୀରିକ ବ୍ୟାଧିର ଅନ୍ୟତମ କାରଣ ।

**ଭକ୍ତଗଣଙ୍କ ଠାକୁରଙ୍କ ସମ୍ବନ୍ଧରେ ଧାରଣାର ଶ୍ରେଣୀ ବିଭାଗ— ଯୁଗାବତାର, ଗୁରୁ, ଅତିମାନବ, ଦେବମାନବ :**

ଯେତେ ଦିନ ବିତୁଥିଲା ସେତେ ହିଁ ଠାକୁରଙ୍କର ଅସୁସ୍ଥ ହେବାର କାରଣ ଏବଂ କେତେଦିନରେ ତାଙ୍କର ଆରୋଗ୍ୟ ହେବା ସମ୍ଭବ ଇତ୍ୟାଦି ବିଷୟ ନେଇ ନାନା କଳ୍ପନା-ଜଳ୍ପନା ଓ ବିଶ୍ୱାସ ଭକ୍ତମାନଙ୍କ ମଧ୍ୟରେ ଆସି ସେମାନଙ୍କୁ ଯେପରି କେତୋଟି ଶ୍ରେଣୀରେ ବିଭକ୍ତ କରିଦେଇଥିଲା । ତାଙ୍କର ଅତୀତ ଜୀବନର ଅଦୃଷ୍ଟପୂର୍ବ ଘଟଣାବଳୀର ଆଲୋଚନା ହିଁ ଯେ ଏସମସ୍ତର ମୂଳରେ ରହି ଭକ୍ତଗଣଙ୍କୁ ଅଦ୍ଭୁତ ମୀମାଂସାସବୁ ଆଣିଦେଇଥିଲା, ତାହା ସ୍ପଷ୍ଟ ବୁଝି ହୁଏ । ଦଳେ ଭାବୁଥିଲେ—କେବଳ ଭାବନା କାହିଁକି, ସମସ୍ତଙ୍କ ନିକଟରେ ପ୍ରକାଶ ମଧ୍ୟ କରୁଥିଲେ—ଯୁଗାବତାର ଠାକୁରଙ୍କର ଶାରୀରିକ ବ୍ୟାଧି ମିଥ୍ୟା ଛଳନା ମାତ୍ର, ବିଶେଷ ଉଦ୍ଦେଶ୍ୟ ସଂସାଧନ ପାଇଁ ତାହା ସେ ଜାଣିଶୁଣି ଅବଲମ୍ବନ କରିଅଛନ୍ତି; ଯେତେବେଳେ ଇଚ୍ଛା ହେବ ପୁନର୍ବାର ପୂର୍ବପରି ଆମ ନିକଟରେ ପ୍ରକାଶିତ ହେବେ । ବିଶାଳ କଳ୍ପନାଶକ୍ତି ନେଇ ଶ୍ରୀଯୁକ୍ତ ଗିରିଶଚନ୍ଦ୍ର ହିଁ ଏହି ଦଳର ନେତା ହୋଇଥିଲେ । ଅନ୍ୟ ଗୋଟିଏ ଦଳ କହୁଥିଲେ, ଯାହାଙ୍କର ବିରାଟ ଇଚ୍ଛାର ସମ୍ପୂର୍ଣ୍ଣ ଅନୁଗତ ହୋଇ ଅବସ୍ଥାନ ଓ ସର୍ବପ୍ରକାର କର୍ମ ଅନୁଷ୍ଠାନ କରିବାକୁ ଠାକୁର ଅଭ୍ୟସ୍ତ ହୋଇଛନ୍ତି, ସେହି ଜଗଦମ୍ବା ହିଁ ଜନକଲ୍ୟାଣସାଧନ କରିବା ଉଦ୍ଦେଶ୍ୟରେ ନିଜର ବିଶେଷ ଗୂଢ଼ ଅଭିପ୍ରାୟ ସିଦ୍ଧି ନିମିତ୍ତ ତାଙ୍କୁ କିଛିକାଳ ପାଇଁ ବ୍ୟାଧିଗ୍ରସ୍ତ

କରି ରଖିଛନ୍ତି; ଏହାର ସମ୍ୟକ୍ ରହସ୍ୟଭେଦ ଠାକୁର ମଧ୍ୟ ସ୍ୱୟଂ କରିପାରିଛନ୍ତି କି ନାହିଁ କହିହେବ ନାହିଁ; ତାଙ୍କର ସେହି ଉଦ୍ଦେଶ୍ୟ ସଂସାଧିତ ହେଲେ ହିଁ ଠାକୁର ପୁନରାୟ ସୁସ୍ଥ ହେବେ । ଅନ୍ୟ ଗୋଟିଏ ଦଳ ପ୍ରକାଶ କରୁଥିଲେ — ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି ଏସମସ୍ତ ଶରୀରର ଧର୍ମ, ଶରୀର ରହିଲେ ସେସବୁ ନିଶ୍ଚୟ ଆସିବ, ଠାକୁରଙ୍କର ଶାରୀରିକ ବ୍ୟାଧି ମଧ୍ୟ ଏପରି କାରଣରୁ ହୋଇଅଛି, ଅତଏବ ଏହାର ଏକ ଅଲୌକିକ ଗୂଢ଼ କାରଣ ଅଛି ଭାବି ଏତେ ଜଳ୍ପନାର ପ୍ରୟୋଜନ କ'ଣ ? ଯେତେଦିନ ପର୍ଯ୍ୟନ୍ତ ସ୍ୱୟଂ ପ୍ରତ୍ୟକ୍ଷ ନ କରିଛୁ, ସେତେଦିନ ପର୍ଯ୍ୟନ୍ତ ଠାକୁର ସମ୍ବନ୍ଧୀୟ କୌଣସି ବିଷୟକ ମୀମାଂସା ଆମେ ଯୁକ୍ତିତର୍କ ଦ୍ୱାରା ବିଶେଷ ଭାବରେ ବିଶ୍ଳେଷଣ ନ କରି ଗ୍ରହଣ କରିବାକୁ ସ୍ୱୀକୃତ ନୋହୁଁ; ଆମେ ତାଙ୍କୁ ଆରୋଗ୍ୟ କରିବା ପାଇଁ ପ୍ରାଣପଣେ ସେବା କରିବା ଏବଂ ସେ ମନୁଷ୍ୟ ଜୀବନର ଯେଉଁ ଉଚ୍ଚ ଆଦର୍ଶ ସମ୍ମୁଖରେ ଧାରଣ କରିଛନ୍ତି, ସେହି ଛାଞ୍ଚରେ ନିଜ ନିଜ ଜୀବନ ଗଠନ କରିବାକୁ ଯଥାସାଧ୍ୟ ଚେଷ୍ଟା ଓ ସାଧନ-ଭଜନରେ ନିଯୁକ୍ତ ରହିବା । କହିବା ଅନାବଶ୍ୟକ ଯେ, ଶ୍ରୀଯୁକ୍ତ ନରେନ୍ଦ୍ରନାଥ ହିଁ ଠାକୁରଙ୍କର ଯୁବକ ଶିଷ୍ୟବର୍ଗଙ୍କର ପ୍ରତିନିଧିସ୍ୱରୂପ ଶେଷୋକ୍ତ ମତ ପ୍ରଚାର କରୁଥିଲେ ।

### ଭକ୍ତମାନଙ୍କର ପରସ୍ପର ପ୍ରତି ଶ୍ରଦ୍ଧା :

ଠାକୁରଙ୍କର ବିଭିନ୍ନ ପ୍ରକୃତିବିଶିଷ୍ଟ ଶିଷ୍ୟବର୍ଗ ତାଙ୍କ ସମ୍ବନ୍ଧରେ ସେହିପ୍ରକାର ନାନା ଭାବ ଓ ମତ ପୋଷଣ କଲେ ମଧ୍ୟ, ତାଙ୍କର ମହଦୁଦାର ଶିକ୍ଷା ଅନୁସାରେ ଜୀବନ ଅତିବାହିତ କଲେ ଏବଂ ସର୍ବାନ୍ତଃକରଣରେ ତାଙ୍କ ସେବାରେ ନିଯୁକ୍ତ ରହି ତାଙ୍କର ପ୍ରସନ୍ନତା ଲାଭ କରିପାରିଲେ ସେମାନଙ୍କର ପରମ ମଙ୍ଗଳ ହେବ, ଏକଥାରେ ପୂର୍ଣ୍ଣ ବିଶ୍ୱାସବାନ ଥିଲେ । ଏଥିପାଇଁ ହିଁ ଗୋଟିଏ ଦଳ ତାଙ୍କୁ ଯୁଗାବତାର ବୋଲି, ଅନ୍ୟ ଏକ ଦଳ ଗୁରୁ ଓ ଅତିମାନବ ବୋଲି ଏବଂ ତୃତୀୟ ଦଳ ତାଙ୍କୁ ଦେବମାନବ ବୋଲି ବିଶ୍ୱାସ କଲେ ମଧ୍ୟ ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଶ୍ରଦ୍ଧାର ଅଭାବ କେବେ ହୋଇ ନ ଥିଲା ।

### ଭକ୍ତମାନଙ୍କ ଦ୍ୱାରା ପରିଦୃଷ୍ଟ ଠାକୁରଙ୍କର ଆଧ୍ୟାତ୍ମିକ ପ୍ରକାଶର ଦୃଷ୍ଟାନ୍ତସମୂହ :

ଯାହା ହେଉ, କେଉଁ ପ୍ରକାର ଆଧ୍ୟାତ୍ମିକ ପ୍ରକାଶସମୂହ ଠାକୁରଙ୍କୁ ଅବଲମ୍ବନ କରି ଏବେ ଭକ୍ତମାନଙ୍କର ନିତ୍ୟ ପ୍ରତ୍ୟକ୍ଷଗୋଚର ହେଉଥିଲା, ପାଠକଙ୍କୁ ତାହା ବୁଝାଇବା ପାଇଁ ଆମେ ଯାହା ଦେଖିଅଛୁ, ସେହିପରି କେତୋଟି ଘଟଣା ଏହିଠାରେ ଉଲ୍ଲେଖ କରିବୁ । ଘଟଣାଗୁଡ଼ିକ ଠାକୁରଙ୍କ ଭକ୍ତବୃନ୍ଦଙ୍କ ବ୍ୟତୀତ ଅନ୍ୟ ଯେଉଁ ସମସ୍ତେ ତାଙ୍କୁ ଏହି ସମୟରେ ଦର୍ଶନ କରିବାକୁ ଆସିଥିଲେ, ସେମାନେ ମଧ୍ୟ ପ୍ରତ୍ୟକ୍ଷ କରିଥିଲେ ।

### ଡାକ୍ତର ସରକାରଙ୍କର ଠାକୁରଙ୍କ ପ୍ରତି ଆକୃଷ୍ଟ ହେବା ଓ ଆଚରଣ ଏବଂ ତାଙ୍କର ଗୋଟିଏ ଦିନର କଥୋପକଥନ :

ଆମେ ଏହାପୂର୍ବରୁ କହିଛୁ, ଠାକୁରଙ୍କର ଚିକିତ୍ସାର ଭାର ଗ୍ରହଣ କରି ଡାକ୍ତର ମହେନ୍ଦ୍ରଲାଲ ସରକାର ପରମ ଉତ୍ସାହରେ ତାଙ୍କୁ ଆରୋଗ୍ୟ କରିବାକୁ ଆପ୍ରାଣ ଯତ୍ନ କରିଥିଲେ । ସକାଳେ, ମଧ୍ୟାହ୍ନରେ ଓ ଉପରବେଳା ଠାକୁରଙ୍କର ଦେହ କିପରି ରହୁଛି କେତେଦିନ ତାହା ପରକୁ ପର ଆସି ଦେଖି ସେ ଔଷଧ ପ୍ରଭୃତିର ବ୍ୟବସ୍ଥା ସ୍ଥିର କରିଥିଲେ ଏବଂ ଚିକିତ୍ସକର କର୍ତ୍ତବ୍ୟ ଶେଷ କରିବା ପରେ ସେହିସବୁ ଦିନମାନଙ୍କରେ ଧର୍ମସମ୍ବନ୍ଧୀୟ ନାନାପ୍ରକାର ପ୍ରସଙ୍ଗରେ କିଛିକାଳ ଠାକୁରଙ୍କ ସହିତ କଟାଉଥିଲେ । ଫଳରେ ଠାକୁରଙ୍କର ଉଦାର ଆଧ୍ୟାତ୍ମିକତାରେ ସେ ବିଶେଷରୂପେ ଆକୃଷ୍ଟ ହୋଇ ସମୟ ପାଇଲେ ହିଁ ତାଙ୍କ ନିକଟରେ ବସି ଦୁଇ ଚାରି ଘଣ୍ଟା କଟାଇ ଯାଉଥିଲେ । ତାଙ୍କର ମୂଲ୍ୟବାନ ସମୟର ଏତେ ଅଧିକ ଭାଗ ଏଠାରେ କଟାଇବା ପାଇଁ ଠାକୁର ଦିନେ ତାଙ୍କୁ କୃତଜ୍ଞତା ଜଣାଇବାକୁ ଉପକ୍ରମ କରିବାରୁ ସେ ବ୍ୟସ୍ତ ହୋଇ କହିଲେ, ''ଆହେ, ତୁମେ କ'ଣ ଭାବୁଛ କେବଳ ତୁମରି ପାଇଁ ମୁଁ ଏଠାରେ ଏତେ ସମୟ କଟାଉଛି ? ଏଥିରେ ମୋର ମଧ୍ୟ ସ୍ୱାର୍ଥ ରହିଛି । ତୁମ ସହିତ ଆଲୋଚନାରେ ମୁଁ ବିଶେଷ ଆନନ୍ଦ ପାଇଥାଏ । ପୂର୍ବରୁ ତୁମକୁ ଦେଖିଥିଲେ ମଧ୍ୟ ଏତେ ଘନିଷ୍ଠଭାବରେ ମିଶି ତୁମକୁ ଜାଣିବାର ସୁଯୋଗ ପାଇ ନ ଥିଲି—ସେତେବେଳେ ଏହା କରିବି, ତାହା କରିବି, ସେସବୁଥିରେ ବ୍ୟସ୍ତ ରହୁଥିଲି । କ'ଣ ଜାଣ, ତୁମର ସତ୍ୟାନୁରାଗ ପାଇଁ ହିଁ ତୁମକୁ ଏତେ ଭଲ ଲାଗେ; ତୁମେ ଯାହା ସତ୍ୟ ବୋଲି ବୁଝ ତା'ର ତିଳେ ମାତ୍ର ଏପାଖ ସେପାଖ କରିପାର ନାହିଁ; ଅନ୍ୟ ସ୍ଥଳରେ ଦେଖିଛି, ସେମାନେ ଗୋଟିଏ ପ୍ରକାର କହନ୍ତି, ଅନ୍ୟ ପ୍ରକାର କରନ୍ତି; ସେକଥା ମୁଁ ଆଦୌ ସହ୍ୟ କରିପାରେ ନାହିଁ । ମନେକର ନାହିଁ, ମୁଁ ତୁମକୁ ଖୋସାମଦ କରୁଛି, ଏପରି ବ୍ୟକ୍ତି ମୁଁ ନୁହେଁ ; ମୁଁ ବାପାଙ୍କର କୁପୁତ୍ର !—ବାପା ଅନ୍ୟାୟ କଲେ ତାଙ୍କୁ ମଧ୍ୟ ସ୍ପଷ୍ଟ କଥା ନ କହି ରହିପାରେ ନାହିଁ; ଏଥିପାଇଁ ମୋର ନାମ ଦୁର୍ମୁଖ ବୋଲି ଚାରି ଆଡ଼େ ପ୍ରଚାର ହୋଇଯାଇଛି ।''

### ଡାକ୍ତରଙ୍କର ସତ୍ୟାନୁରାଗରେ ସମସ୍ତ କାର୍ଯ୍ୟର ଅନୁଷ୍ଠାନ :

ଠାକୁର ହସି ହସି କହିଲେ, ''ତା ତ ଶୁଣୁଛି ଠିକ୍; କିନ୍ତୁ ଏହି ଯେ ଏତେଦିନ ଧରି ଏଠାକୁ ଆସୁଛ, ମୁଁ ତ ତା'ର କିଛି ପରିଚୟ ପାଇଲି ନାହିଁ ।''

ଡାକ୍ତର ହସି ହସି କହିଲେ, ''ତାହା ଆମ ଉଭୟଙ୍କ ସୌଭାଗ୍ୟ ! ନ ହେଲେ ଅନ୍ୟାୟ ବୋଲି କୌଣସି ବିଷୟ ମନେହେଲେ ଦେଖିଥାନ୍ତ, ମହେନ୍ଦ୍ର ସରକାର ଚୁପ୍ ହୋଇ ବସିବା ଲୋକ ନୁହେଁ । ଯାହା ହେଉ, ସତ୍ୟପ୍ରତି ଅନୁରାଗ ଆମର ନାହିଁ, ଏକଥା ଯେପରି ନ ଭାବ । ସତ୍ୟ ବୋଲି ଯାହା ବୁଝିଛି, ତାହା

ପ୍ରତିଷ୍ଠା କରିବାକୁ ତ ଆଜୀବନ ଦୌଡ଼ାଦୌଡ଼ି କରିଛି, ସେଥିପାଇଁ ହୋମିଓପ୍ୟାଥି ଚିକିତ୍ସା ଆରମ୍ଭ, ସେଥିପାଇଁ ବିଜ୍ଞାନଚର୍ଚ୍ଚାର ମନ୍ଦିର ନିର୍ମାଣ—ଏହିପରି ମୋର ସମସ୍ତ କାର୍ଯ୍ୟ ।''

ଯେତେଦୂର ମନେହୁଏ, ଆମମାନଙ୍କ ମଧ୍ୟରେ କେହି ଏହି ସମୟରେ ଇଙ୍ଗିତ କରିଥିଲେ, ସତ୍ୟାନୁରାଗ ଥିଲେ ମଧ୍ୟ ଡାକ୍ତରବାବୁଙ୍କର ଅପରାବିଦ୍ୟା ଶ୍ରେଣୀଭୁକ୍ତ ଆପେକ୍ଷିକ (Relative) ସତ୍ୟ-ଆବିଷ୍କାର ଆଡ଼କୁ ହିଁ ଅନୁରାଗ—ଠାକୁରଙ୍କର କିନ୍ତୁ ପରାବିଦ୍ୟା ପ୍ରତି ଚିରକାଳ ଭଲ ପାଇବା ।

### ଅପରା ବିଦ୍ୟା ସାହାଯ୍ୟରେ ପରାବିଦ୍ୟା ଲାଭ :

ଡାକ୍ତର ଏଥିରେ ଟିକିଏ ଉତ୍ତେଜିତ ହୋଇ କହିଲେ, ''ସେହି ତୁମମାନଙ୍କର ଗୋଟିଏ କଥା; ବିଦ୍ୟାର ପୁଣି ପରା, ଅପରା କ'ଣ ? ଯେଉଁଥିରୁ ସତ୍ୟର ପ୍ରକାଶ ହୁଏ, ସେଥିରେ ପୁଣି ଉଚ୍ଚନୀଚ କ'ଣ ? ପୁଣି ଯଦି ଏପରି ଏକ ମନଗଢ଼ା ଭାଗ କର, ତା ହେଲେ ଏହା ତ ସ୍ୱୀକାର କରିବାକୁ ହିଁ ହେବ, ଅପରାବିଦ୍ୟା ମଧ୍ୟଦେଇ ହିଁ ପରାବିଦ୍ୟା ଲାଭ କରିବାକୁ ହେବ—ବିଜ୍ଞାନର ଚର୍ଚ୍ଚା ଦ୍ୱାରା ଆମେ ଯେଉଁ ସମସ୍ତ ସତ୍ୟ ପ୍ରତ୍ୟକ୍ଷ କରିଥାଉ, ସେଥିରୁ ହିଁ ଜଗତର ଆଦି କାରଣର ବା ଈଶ୍ୱରଙ୍କର କଥା ଆହୁରି ବିଶେଷଭାବରେ ବୁଝିପାରୁ । ମୁଁ ନାସ୍ତିକ ବୈଜ୍ଞାନିକ ଲୋକଙ୍କ କଥା କହୁ ନାହିଁ ! ମୁଁ ସେମାନଙ୍କର କଥା ବୁଝିପାରେ ନାହିଁ—ଚକ୍ଷୁ ଥାଇ ମଧ୍ୟ ସେମାନେ ଅନ୍ଧ । ତେବେ ଏକଥା ଯଦି କେହି କହନ୍ତି ଯେ, ଅନାଦି ଅନନ୍ତ ଈଶ୍ୱରଙ୍କ କଥା ସବୁ ସେ ବୁଝି ପାରିଛନ୍ତି, ତା'ହେଲେ ସେ ମିଥ୍ୟାବାଦୀ, ଜୁଆଚୋର—ତା'ପାଇଁ ପାଗଳ ଖାନା ବ୍ୟବସ୍ଥା କରିବା ଉଚିତ୍ ।''

### ଈଶ୍ୱରଙ୍କର 'ଇତି' କରିବା ହୀନବୁଦ୍ଧି :

ଠାକୁର ଡାକ୍ତରଙ୍କ ପ୍ରତି ପ୍ରସନ୍ନ ଦୃଷ୍ଟିପାତପୂର୍ବକ ହସିହସି କହିଲେ, ''ଠିକ୍ କହିଛ, ଈଶ୍ୱରଙ୍କର 'ଇତି' ଯେଉଁମାନେ କରନ୍ତି ସେମାନେ ହୀନବୁଦ୍ଧି, ସେମାନଙ୍କ କଥା ମୁଁ ସହ୍ୟ କରିପାରେ ନାହିଁ ।''

### ମନ ବୁଝେ ପ୍ରାଣ ବୁଝେ ନାହିଁ :

ଏହା କହି ଠାକୁର ଆମମାନଙ୍କ ମଧ୍ୟରୁ ଜଣଙ୍କୁ ଭକ୍ତାଗ୍ରଣୀ ଶ୍ରୀରାମପ୍ରସାଦଙ୍କର—'କେ ଜାନେ ମନ କାଲୀ କେମନ, ଷଡ଼ଦର୍ଶନେ ନା ପାୟ ଦରଶନ'[୧] ଗୀତଟି ଗାଇବାକୁ କହିଲେ ଏବଂ ଏହା ଶୁଣୁ ଶୁଣୁ ତାହାର ଭାବାର୍ଥ

୧. କେ ଜାନେ ମନ କାଲୀ କେମନ ।
ଷଡ଼ଦର୍ଶନରେ ନା ପାଏ ଦରଶନ ॥
ତାଁକେ ମୂଳାଧାରେ ସହସ୍ରାରେ ସଦା ଯୋଗୀ କରେ ମନନ ।
କାଲୀ ପଦ୍ମବନେ ହଂସ ସନେ, ହଂସୀରୂପେ କରେ ରମଣ ॥

ମୃଦୁସ୍ୱରରେ ଡାକ୍ତରଙ୍କୁ ମଝିରେ ମଝିରେ ବୁଝାଇ ଦେବାକୁ ଲାଗିଲେ । 'ଆମାର ପ୍ରାଣ ବୁଝେଛେ ମନ ବୋଝେ ନା, ଧରବେ ଶଶୀ ହୟେ ବାମନ' ଗୀତର ଏହି ଅଂଶଟି ଗାଇବା ସମୟରେ ଠାକୁର ଗାୟକଙ୍କୁ ବାଧାଦେଇ କହିଲେ, "ଉଁ ହୁଁ ଓଲଟାପଲଟା ହେଉଛି; 'ଆମାର ମନ ବୁଝେଛେ ପ୍ରାଣ ବୋଝେ ନା'—ଏପରି ହେବ । ମନ ତାଙ୍କୁ (ଈଶ୍ୱରଙ୍କୁ) ଜାଣିବାକୁ ଯାଇ ସହଜରେ ହିଁ ବୁଝେ ଯେ, ଅନାଦି ଅନନ୍ତ ଈଶ୍ୱରଙ୍କୁ ଧରିବା ତାର କର୍ମ ନୁହେଁ, ପ୍ରାଣ କିନ୍ତୁ ସେହି କଥା ବୁଝିବାକୁ ଚାହେଁ ନାହିଁ, ସେ କେବଳ କହେ— "କିପରି ମୁଁ ତାଙ୍କୁ ପାଇବି ।"

ଡାକ୍ତର ସେହିକଥା ଶୁଣି ମୁଗ୍ଧ ହୋଇ କହିଲେ, "ଠିକ୍ କହିଛନ୍ତି, ମନଟା ଛୋଟ ଲୋକ, ସାମାନ୍ୟ ଟିକିଏରେ ହିଁ ପାରିବି ନାହିଁ, ହେବ ନାହିଁ ବୋଲି କହି ଛାଡ଼ିଦିଏ; କିନ୍ତୁ ପ୍ରାଣ ଏକଥା ଶୁଣେ ନାହିଁ ବୋଲି ତ ଯେତେ କିଛି ସତ୍ୟର ଆବିଷ୍କାର ହୋଇଛି ଏବଂ ହେଉଛି ।"

**ଭାବାବିଷ୍ଟ ଯୁବକର ନାଡ଼ୀ ପରୀକ୍ଷା :**

ଗୀତ ଶୁଣୁ ଶୁଣୁ ଜଣେ ଦୁଇଜଣ ଯୁବକ ଭକ୍ତଙ୍କର ଭାବାବେଶରେ ବାହ୍ୟ ଚୈତନ୍ୟ ଲୋପ ହେବା ଦେଖି ଡାକ୍ତର ତାଙ୍କ ନିକଟକୁ ଯାଇ ନାଡ଼ୀ ପରୀକ୍ଷା କରି କହିଲେ, "ମୂର୍ଚ୍ଛିତ ପରି ବାହ୍ୟ ବିଷୟରେ ଜ୍ଞାନ ନାହିଁ ବୋଲି ବୋଧ ହେଉଛି ।" ଛାତି ଆଉଁସି ମୃଦୁସ୍ୱରରେ ନାମ ଶୁଣାଇବା ପରେ ସେମାନଙ୍କୁ ପୂର୍ବପରି ପ୍ରକୃତିସ୍ଥ ହେବା ଦେଖି ସେ ଠାକୁରଙ୍କୁ ଲକ୍ଷ୍ୟ କରି ପୁନରାୟ କହିଲେ, "ଏସବୁ ତୁମରି ଖେଳ, ବୋଧ ହେଉଛି ।" ଠାକୁର ହସି ହସି କହିଲେ, "ମୋର ନୁହେଁ ଗୋ, ଏସବୁ ତାଙ୍କରି (ଈଶ୍ୱରଙ୍କ) ଇଚ୍ଛାରେ । ଏମାନଙ୍କର ମନ ଏବେ ମଧ୍ୟ ସ୍ତ୍ରୀ-ପୁତ୍ର,

---

ଆତ୍ମାରାମେର ଆତ୍ମା କାଲୀ, ପ୍ରମାଣ ପ୍ରଣବେର ମତନ ।
ତାରା ଘଟେ ଘଟେ ବିରାଜ କରେନ, ଇଚ୍ଛାମୟୀର ଇଚ୍ଛା ଯେମନ ।।
ମାୟେର ଉଦରେ ବ୍ରହ୍ମାଣ୍ଡଭାଣ୍ଡ, ପ୍ରକାଣ୍ଡ ତା ଜାନ୍ କେମନ ।
ମହାକାଲ ଜେନେଛେନ କାଲୀର ମର୍ମ, ଅନ୍ୟ କେବା ଜାନେ ତେମନ ।।
ପ୍ରସାଦ ଭାସେ ଲୋକେ ହାସେ, ସନ୍ତରଣେ ସିନ୍ଧୁତରଣ ।
ଆମାର ମନ ବୁଝେଛେ* ପ୍ରାଣ ବୋଝେ ନା ଧରବେ ଶଶୀ ହୟେ ବାମନ ।।

*ଗାୟକ ଭୁଲ କରି 'ପ୍ରାଣ ବୁଝେଛେ ମନ ବୁଝେ ନା' ଗାଇଥିଲେ ।

[ଅର୍ଥାତ୍—ରେ ମନ, କାଳୀ କିପରି କିଏ ଜାଣେ ? ଷଡ଼୍‌ଦର୍ଶନ ତାଙ୍କର ଦର୍ଶନ ପାଆନ୍ତି ନାହିଁ । କାଳୀ କମଳବନରେ ହଂସ ସାଥିରେ ହଂସୀରୂପରେ ରମଣ କରନ୍ତି । ଯୋଗୀଗଣ ସର୍ବଦା ମୂଳାଧାର ଚକ୍ର ଓ ସହସ୍ରାରରେ ତାଙ୍କର ମନନ କରିଥାଆନ୍ତି । କାଳୀ ଆତ୍ମାରାମଙ୍କ ମଧ୍ୟ ଆତ୍ମା, ଏପରି ଅନେକ ପ୍ରମାଣ ପ୍ରୟୋଗ ହୁଏ । ଇଚ୍ଛାମୟୀ ମା' ନିଜ ଇଚ୍ଛାରେ ଘଟ ଘଟରେ ବିରାଜମାନ କରନ୍ତି । ମା'ଙ୍କ ଉଦର ବ୍ରହ୍ମାଣ୍ଡଭାଣ୍ଡ, ତାହା କେତେ ବିଶାଳ ତାହା କ'ଣ ତୁ ଜାଣୁ ? ମହାକାଳ ଯେପରି କାଳୀଙ୍କ ମର୍ମ ଜାଣିଛନ୍ତି ଅନ୍ୟ କିଏ ସେପରି ଜାଣିପାରିବ ? ରାମପ୍ରସାଦ କହୁଛନ୍ତି, ଲୋକମାନେ ହସୁଛନ୍ତି—ସନ୍ତରଣ କରି କେହି କଣ ସିନ୍ଧୁ ପାର ହୋଇପାରିବ । ମୋର ମନ ବୁଝିଛି କିନ୍ତୁ ପ୍ରାଣ ବୁଝୁ ନାହିଁ । ଯେପରି ବାମନ ଚନ୍ଦ୍ର ଧରିବାକୁ ଚାହୁଁଛି ।]

ଟଙ୍କା-କଉଡ଼ି, ମାନ-ଯଶାଦିରେ ବିଛାଡ଼ି ଯାଇ ନାହିଁ ବୋଲି ହିଁ ତାଙ୍କର ନାମଗୁଣ ଶ୍ରବଣରେ ତନ୍ମୟ ହୋଇ ସେହିପରି ହୋଇଥାଏ ।''

**ବିଦ୍ୟାର ବଦହଜମ :**

ପୂର୍ବ ପ୍ରସଙ୍ଗ ପୁନର୍ବାର ଉଠାଇ ଡାକ୍ତରଙ୍କୁ କୁହାଗଲା, ସେ ଈଶ୍ୱରଙ୍କୁ ମାନିଲେ ମଧ ଏବଂ ତାଙ୍କର 'ଇତି' ନ କଲେ ବି ଯେଉଁମାନେ ବିଜ୍ଞାନଚର୍ଚ୍ଚାରେ ରତ ଅଛନ୍ତି, ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ଈଶ୍ୱରଙ୍କୁ ସମ୍ପୂର୍ଣ୍ଣ ଉଡ଼ାଇ ଦେଇଥାଆନ୍ତି ଏବଂ ଅନ୍ୟ ଏକ ଗୋଷ୍ଠୀ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କଲେ ମଧ ସେ ଏହିପରି ଭିନ୍ନ ଅନ୍ୟ କୌଣସି ରୂପ ହୋଇପାରନ୍ତି ନାହିଁ, ଏହି କଥା ଉଚ୍ଚସ୍ୱରରେ ପ୍ରଚାର କରିଥାନ୍ତି । ଡାକ୍ତର କହିଲେ, ''ହଁ, ସେକଥା ଅନେକାଂଶରେ ସତ; କିନ୍ତୁ ଏହା କ'ଣ ଜାଣ ? —ଏହା ହେଉଛି ବିଦ୍ୟାର ଗରମ ବା ବଦହଜମ—ଈଶ୍ୱରଙ୍କ ସୃଷ୍ଟିର ଦୁଇ ଚାରୋଟି ବିଷୟ ବୁଝିପାରିଛନ୍ତି ବୋଲି ସେମାନେ ମନେ କରନ୍ତି, ଦୁନିଆଁର ସମସ୍ତ ରହସ୍ୟ ସେମାନେ ବୁଝିପାରିଛନ୍ତି । ଯେଉଁମାନେ ଅଧିକ ପଢ଼ିଛନ୍ତି ଦେଖିଛନ୍ତି, ଏହି ଦୋଷ ସେମାନଙ୍କର ହୁଏ ନାହିଁ; ମୁଁ ଏହି କଥା କେବେ ହେଲେ ମନରେ ଆଣିପାରେ ନାହିଁ ।''

**ପାଣ୍ଡିତ୍ୟର ଅହଂକାର :**

ଠାକୁର ତାଙ୍କ କଥା ଶୁଣି କହିଲେ, ''ଠିକ୍ କହିଛ, ବିଦ୍ୟାଲାଭ ସଙ୍ଗେ ସଙ୍ଗେ ମୁଁ ପଣ୍ଡିତ, ମୁଁ ଯାହା ଜାଣିଛି-ବୁଝିଛି ତାହା ହିଁ ସତ୍ୟ, ଅନ୍ୟମାନଙ୍କର କଥା ମିଥ୍ୟା—ଏପରି ଏକ ଅହଂକାର ଆସେ । ମନୁଷ୍ୟ ନାନା ପାଶରେ ଆବଦ୍ଧ ରହିଛି, ବିଦ୍ୟାଭିମାନ ତା ଭିତରୁ ଗୋଟିଏ; ଏତେ ଲେଖାପଢ଼ା ଶିଖି ମଧ ତୁମର ସେ ପ୍ରକାର ଅହଙ୍କାର ନାହିଁ, ଏହା ହିଁ ତାଙ୍କର କୃପା ।''

**ଡାକ୍ତରଙ୍କର ନିରଭିମାନତା :**

ଡାକ୍ତର ଏହି କଥାରେ ଉତ୍ତେଜିତ ହୋଇ କହିଲେ, ''ଅହଂକାର ହେବା ଦୂରରେ ଥାଉ, ମନେ ହୁଏ ଯାହା ଜାଣିଛି ବୁଝିଛି ତାହା ଯତ୍‌ସାମାନ୍ୟ । କିଛି ନୁହଁ କହିଲେ ଚଳେ—ଶିଖିବା ପାଇଁ ଏତେ ବିଷୟ ଅଛି ଯେ, ମନେହୁଏ, କେବଳ ମନେହୁଏ କାହିଁକି, ମୁଁ ଦେଖିପାରେ—ପ୍ରତ୍ୟେକ ମଣିଷ ଏପରି ଅନେକ ବିଷୟ ଜାଣେ, ଯାହା ମୁଁ ଜାଣେ ନାହିଁ; ସେଥିପାଇଁ କାହା ନିକଟରୁ କିଛି ଶିଖିବାକୁ ମୋତେ ଅପମାନବୋଧ ହୁଏ ନାହିଁ । ମନେହୁଏ, ଏମାନଙ୍କ ନିକଟରୁ ମଧ (ଆମମାନଙ୍କୁ ଦେଖାଇ) ମୋର ଶିଖିବା ଭଳି ଅନେକ ଜିନିଷ ଥାଇପାରେ, ସେହି ହିସାବରେ ମୁଁ ସମସ୍ତଙ୍କର ପଦଧୂଳି ଗ୍ରହଣ କରିବାକୁ ମଧ ପ୍ରସ୍ତୁତ ଅଛି ।''

## ଭିତରେ ମାଲ୍ ଅଛି :

ଠାକୁର ଏସବୁ ଶୁଣି କହିଲେ, ''ମୁଁ ମଧ ଏମାନଙ୍କୁ କହେ, (ଆମମାନଙ୍କୁ ଦେଖାଇ) 'ସଖି, ଯେତେଦିନ ବଞ୍ଚିବି ସେତେଦିନ ଶିଖିବି' !'' ପରେ ଡାକ୍ତରଙ୍କୁ ଦେଖାଇ ଆମକୁ କହିଲେ, ''କିପରି ନିରଭିମାନ ଦେଖୁଛ ? ଭିତରେ ମାଲ (ପଦାର୍ଥ) ଅଛି, ତେଣୁ ଏପରି ବୁଦ୍ଧି ।'' ଏପରି ନାନାପ୍ରକାର କଥାବାର୍ତ୍ତା ପରେ ସେଦିନ ଡାକ୍ତର ବିଦାୟ ଗ୍ରହଣ କଲେ ।

## ଠାକୁରଙ୍କର ଡାକ୍ତରଙ୍କୁ ଧର୍ମପଥରେ ଅଗ୍ରସର କରାଇ ଦେବାର ଚେଷ୍ଟା :

ଡାକ୍ତର ମହେନ୍ଦ୍ରଲାଲ ସେହିପରି ଧୀରେ ଧୀରେ ଠାକୁରଙ୍କ ପ୍ରତି ଯେପରି ଶ୍ରଦ୍ଧା ଏବଂ ପ୍ରୀତିସମ୍ପନ୍ନ ହୋଇଉଠୁଥିଲେ ଠାକୁର ମଧ ସେପରି ତାଙ୍କୁ ଧର୍ମପଥରେ ଅଗ୍ରସର କରାଇ ଦେବା ପାଇଁ ଯତ୍ନବାନ ହୋଇଥିଲେ । ଏହାଛଡ଼ା ଗୁଣୀ ବ୍ୟକ୍ତିଙ୍କ ସହିତ ଆଳାପରେ ହିଁ ଗୁଣୀର ସମଧିକ ପ୍ରୀତି ଜାଣି ଠାକୁର ତାଙ୍କର ଶିଷ୍ୟବର୍ଗଙ୍କ ମଧ୍ୟରେ ମହେନ୍ଦ୍ରନାଥ, ଗିରିଶଚନ୍ଦ୍ର, ନରେନ୍ଦ୍ରନାଥପ୍ରମୁଖ ବଛା ବଛା ଲୋକମାନଙ୍କୁ ବେଳେ ବେଳେ ସୁବିଦ୍ୱାନ ଡାକ୍ତରଙ୍କ ସହିତ ଆଳାପ କରିବାକୁ ପଠାଉଥିଲେ । ଗିରିଶଚନ୍ଦ୍ରଙ୍କ ସହିତ ପରିଚିତ ହେବା ପରେ ଡାକ୍ତର ଦିନେ ବୁଦ୍ଧ ଚରିତର ଅଭିନୟ ଦର୍ଶନ କରି ତାହାର ଶତମୁଖରେ ପ୍ରଶଂସା କରିଥିଲେ ଏବଂ ସେ କରିଥିବା ଅନ୍ୟ କେତୋଟି ନାଟକର ମଧ ଅଭିନୟ ଦେଖିବାକୁ ଯାଇଥିଲେ । ସେହିପରି ନରେନ୍ଦ୍ରନାଥଙ୍କ ସହିତ କଥାବାର୍ତ୍ତାରେ ମୁଗ୍ଧ ହୋଇ ସେ ତାଙ୍କୁ ଦିନେ ନିମନ୍ତ୍ରଣ କରି ଭୋଜନ କରାଇଥିଲେ ଏବଂ ସଙ୍ଗୀତବିଦ୍ୟାରେ ମଧ ତାଙ୍କର ପାରଦର୍ଶିତା ଅଛି ଜାଣି ତାଙ୍କୁ ଦିନେ ଭଜନ ଶୁଣାଇବା ପାଇଁ ଅନୁରୋଧ କରିଥିଲେ । ଏହାର କେତେଦିନ ପରେ ଡାକ୍ତର ଦିନେ ଅପରାହ୍ଣରେ ଠାକୁରଙ୍କୁ ଦେଖିବା ପାଇଁ ଆସିଥିବା ବେଳେ ନରେନ୍ଦ୍ରନାଥ ତାଙ୍କର ପ୍ରତିଶ୍ରୁତି ରକ୍ଷାକରି ଦୁଇ-ତିନିଘଣ୍ଟା କାଳ ତାଙ୍କୁ ଭଜନ ଶୁଣାଇଥିଲେ । ଡାକ୍ତର ସେଦିନ ଏଥିରେ ଏତେ ଆନନ୍ଦିତ ହୋଇଥିଲେ ଯେ, ବିଦାୟ ଗ୍ରହଣ ପୂର୍ବରୁ ନରେନ୍ଦ୍ରଙ୍କୁ ପୁତ୍ର ସଦୃଶ ସ୍ନେହରେ ଆଶୀର୍ବାଦ ଆଲିଙ୍ଗନ ଓ ଚୁମ୍ବନ କରି ଠାକୁରଙ୍କୁ କହିଥିଲେ, ''ଏହାଙ୍କ ପରି ପିଲା ଧର୍ମଲାଭ କରିବାକୁ ଆସିଅଛି ଦେଖି ମୁଁ ବିଶେଷ ଆନନ୍ଦିତ; ଇଏ ଗୋଟିଏ ରତ୍ନ, ଯେଉଁଥିରେ ହାତଦେବ ସେହି ବିଷୟରେ ହିଁ ଉନ୍ନତି ସାଧନ କରିବ ।'' ଠାକୁର ଏଥିରେ ନରେନ୍ଦ୍ରନାଥଙ୍କ ପ୍ରତି ପ୍ରସନ୍ନ ଦୃଷ୍ଟିପାତପୂର୍ବକ କହିଥିଲେ, ''କଥାରେ କୁହନ୍ତି, ଅଦ୍ୱୈତର ହୁଙ୍କାର ଯୋଗୁଁ ହିଁ ଗୌର ନଦୀୟା ଆସିଥିଲେ, ସେପରି ଏହାର (ନରେନ୍ଦ୍ରଙ୍କର)ପାଇଁ ତ ସବୁ ଗୋ !'' ସେବେଠାରୁ ଠାକୁରଙ୍କୁ ଦେଖିବାକୁ

ଆସି ନରେନ୍ଦ୍ରଙ୍କୁ ସେଠାରେ ଉପସ୍ଥିତ ଥିବାର ଦେଖିଲେ ହିଁ ଡାକ୍ତର ତାଙ୍କ ନିକଟରୁ କେତୋଟି ଭଜନ ନ ଶୁଣି ଛାଡ଼ୁ ନ ଥିଲେ ।

## ଔଷଧରେ ସମ୍ୟକ୍ ଫଳ ନ ହେବାରୁ ଡାକ୍ତରଙ୍କର ଚିନ୍ତା ଏବଂ ଆଚରଣର ଦୃଷ୍ଟାନ୍ତ :

ଏହିପରି ଭାଦ୍ରବ-ଆଶ୍ୱିନର କିୟଦଂଶ ଅତୀତ ହୋଇ କ୍ରମେ ଦୁର୍ଗାପୂଜାର ସମୟ ଉପସ୍ଥିତ ହେଲା । ଠାକୁରଙ୍କର ଅସୁସ୍ଥତା ସେହି ସମୟରେ ଦିନେ ଦିନେ କିଛି ଅଧିକ ଏବଂ ଅନ୍ୟ ଦିନେ ଅଳ୍ପ, ଏପରି ଭାବରେ ଚାଲୁଥିଲା । ଔଷଧରେ ସମ୍ୟକ୍ ଫଳ ମିଳୁ ନ ଥିଲା । ଡାକ୍ତର ଦିନେ ଆସି ରୋଗ ବଢ଼ିଛି ଦେଖି କହିଲେ, ''ନିଶ୍ଚୟ ପଥ୍ୟର କିଛି ଅନିୟମ ହେଉଅଛି; ଆଚ୍ଛା କହିଲ, ଆଜି କ'ଣ କ'ଣ ଖାଇଛ ?''

ସକାଳେ ଭାତର ମଣ୍ଡ, ଝୋଳ ଓ ଦୁଧ ଏବଂ ସନ୍ଧ୍ୟାରେ ଦୁଧ ଓ ଯବ ମଣ୍ଡ ଆଦି ତରଳ ପଦାର୍ଥ ଠାକୁର ଖାଇଥିଲେ, ତେଣୁ ସେହି କଥା ହିଁ କହିଲେ । ଡାକ୍ତର କହିଲେ, ''ତଥାପି ନିଶ୍ଚୟ କୌଣସି ନିୟମର ବ୍ୟତିକ୍ରମ ହୋଇଥିଲା । ଆଚ୍ଛା କୁହ ତ, କ'ଣ କ'ଣ ପରିବା ଦେଇ ଝୋଳ ରନ୍ଧା ହୋଇଥିଲା ?'' ଠାକୁର କହିଲେ, ଆଳୁ, କଞ୍ଚା କଦଳୀ, ବାଇଗଣ, ଗୋଟିଏ ଦୁଇ ଟୁକୁରା ଫୁଲକୋବି ମଧ୍ୟ ଥିଲା !''

ଡାକ୍ତର କହିଲେ, ''ଆଁ — ଫୁଲକୋବି ଖାଇଛନ୍ତି ? ଏହା ତ' ଅତ୍ୟାଚାର ହୋଇଛି, ଫୁଲକୋବି ଅତ୍ୟନ୍ତ ଗରମ ଏବଂ ଦୁଷ୍ପାଚ୍ୟ । କେତେ ଟୁକୁରା ଖାଇଛ?''

ଠାକୁର କହିଲେ, ''ଗୋଟିଏ ଟୁକୁରା ବି ଖାଇ ନାହିଁ, ତେବେ ଝୋଳରେ ତାହା ଥିବାର ମୁଁ ଦେଖିଛି ।'' ଡାକ୍ତର କହିଲେ, ''ଖାଇଥାଆନ୍ତୁ ବା ନ ଖାଇଥାଆନ୍ତୁ, ଝୋଳରେ ତାହା ତ ଥିଲା — ସେଥିପାଇଁ ଆପଣଙ୍କର ହଜମରେ ବ୍ୟାଘାତ ହୋଇ ଆଜି ବେମାର ବୃଦ୍ଧି ହୋଇଅଛି ।''

ଠାକୁର କହିଲେ, ''ସେ କଣ ଗୋ ! କୋବି ଖାଇ ନାହିଁ, ପେଟ ଖରାପ ହୋଇ ନାହିଁ, ଝୋଳରେ କୋବିର ରସ ଥିଲା ବୋଲି ବେମାର ବଢ଼ିଛି, ଏକଥା ଆଦୌ ମନକୁ ପାଉ ନାହିଁ ।''

## ସାମାନ୍ୟ ଅତ୍ୟାଚାର ଅନିୟମରେ କେତେ ଯେ ଅପକାର ହୁଏ ତାହାର ଦୃଷ୍ଟାନ୍ତ :

ଡାକ୍ତର କହିଲେ, ''ଏପରି ଅଳ୍ପ ଯେ କେତେଦୂର ଅପକାର କରିପାରେ ତାହା ତୁମମାନଙ୍କର ଧାରଣା ନାହିଁ । ମୋ ଜୀବନର ଗୋଟିଏ ଘଟଣା କହୁଛି, ଶୁଣିଲେ ବୁଝିପାରିବ । ମୋର ହଜମଶକ୍ତି ବରାବର କମ୍; ବେଳେ ବେଳେ ଅଜୀର୍ଣ୍ଣରେ ଖୁବ୍ ଭୋଗିବାକୁ ପଡୁଥିଲା; ସେଥିପାଇଁ ଖାଦ୍ୟ ସମ୍ବନ୍ଧରେ ଅତ୍ୟନ୍ତ ସତର୍କ ହୋଇ ନିୟମ ରକ୍ଷା କରି ସର୍ବଦା ଚଳେ । ଦୋକାନର କୌଣସି ଜିନିଷ ଖାଏ ନାହିଁ;

ଘିଅ, ତେଲ ପର୍ଯ୍ୟନ୍ତ ଘରେ କରାଇଥାଏ । ତଥାପି ଥରେ ଜୋର୍ ସର୍ଦ୍ଦି ହୋଇ ବ୍ରୋଙ୍କାଇଟି୍ସ ହେଲା, କୌଣସି ପ୍ରକାରରେ କମୁ ନ ଥାଏ । ସେତେବେଳେ ମନେ ହେଲା, ନିଶ୍ଚୟ ଖାଇବାରେ କୌଣସି ପ୍ରକାର ଦୋଷ ହେଉଅଛି । ମାତ୍ର ସନ୍ଧାନ କରି ସେଥିରେ ମଧ କୌଣସି ପ୍ରକାର ଦୋଷ ଧରିପାରିଲି ନାହିଁ । ଏହାପରେ ହଠାତ୍ ଦିନେ ଦୃଷ୍ଟିକୁ ଆସିଲା, ଯେଉଁ ଗାଇର ଦୁଧ ଖାଉଛି, ତାକୁ ଚାକରଟା କେତେଗୁଡ଼ିଏ ବିରି ଖାଇବାକୁ ଦେଉଛି । ପଚାରିବାରୁ ଜଣାପଡ଼ିଲା, କୌଣସି ସ୍ଥାନରୁ କେତେ ମହଣ ବିରି ମିଳିଥିଲା, ସର୍ଦ୍ଦି ଭୟରେ, ଏହାକୁ କେହି ଖାଇବାକୁ ଚାହୁଁ ନ ଥିବାରୁ ସେସମସ୍ତ ଗାଈକୁ ଖାଇବାକୁ ଦିଆଯାଉଛି । ହିସାବ କରି ଦେଖିଲି, ଯେବେଠାରୁ ଏହି ଜିନିଷ ଗୋରୁକୁ ଦିଆଯାଇଛି ପ୍ରାୟ ସେହି ସମୟରୁ ମୋର ସର୍ଦ୍ଦି ହୋଇଛି । ତେଣୁ ଗୋରୁକୁ ଏହି ବିରି ଖୋଇବା ବନ୍ଦ କଲି, ସଙ୍ଗେ ସଙ୍ଗେ ମୋର ସର୍ଦ୍ଦି ମଧ ଧୀରେ ଧୀରେ କମିବାକୁ ଲାଗିଲା । ସମ୍ପୂର୍ଣ୍ଣ ରୂପରେ ଆରୋଗ୍ୟ ହେବାକୁ ସେଥର ଅନେକ ଦିନ ଲାଗିଥିଲା ଏବଂ ବାୟୁ ପରିବର୍ତ୍ତନ ଇତ୍ୟାଦି ପାଇଁ ମୋର ଚାରି ପାଞ୍ଚହଜାର ଟଙ୍କା ଖର୍ଚ୍ଚ ହୋଇଯାଇଥିଲା ।''

ଠାକୁର ଏହା ଶୁଣି ହସି ହସି କହିଲେ, ''ଓଃ ବାବା, ଏହା ଯେ ତେନ୍ତୁଳି ଗଛ ତଳ ଦେଇ ଯାଇଥିଲା ବୋଲି ସର୍ଦ୍ଦି ହେଲା—ସେହିପରି ଅବସ୍ଥା !''

ସମସ୍ତେ ହସିବାକୁ ଲାଗିଲେ । ଡାକ୍ତରଙ୍କର ଏପରି ଅନୁମାନ କରିବା, ଅତିରିକ୍ତ ବୋଧ ହେଲେ ମଧ, ସେଥିରେ ତାଙ୍କର ଦୃଢ଼ ବିଶ୍ୱାସ ଦେଖି ଏବିଷୟରେ ଆଉ କୌଣସି କଥା କେହି ଉଠାଇଲେ ନାହିଁ ଏବଂ ତାଙ୍କର ନିଷେଧ ମାନିନେଇ ସେବେଠାରୁ ଠାକୁରଙ୍କ ଝୋଳତରକାରୀରେ କୋବି ପକାଇବା ବନ୍ଦ କରାଗଲା ।

### ଡାକ୍ତରଙ୍କର ଠାକୁରଙ୍କ ପ୍ରତି ଶ୍ରଦ୍ଧାର ବୃଦ୍ଧି ଓ ଭକ୍ତଗଣଙ୍କୁ ଭଲପାଇବା :

ଠାକୁରଙ୍କର ଭଲ ପାଇବା, ସରଳ ବ୍ୟବହାର ଏବଂ ଆଧାତ୍ମିକତାରେ ଡାକ୍ତରଙ୍କର ମନ ତାଙ୍କ ପ୍ରତି କ୍ରମେ କେତେଦୂର ଶ୍ରଦ୍ଧାସମ୍ପନ୍ନ ହୋଇ ଉଠୁଥିଲା, ତାହା ତାଙ୍କର ଗୋଟିଏ ଗୋଟିଏ ଦିନର କଥା ଏବଂ କାର୍ଯ୍ୟରୁ ବେଶ୍ ବୁଝାଯାଉଥିଲା । କେବଳ ଠାକୁରଙ୍କୁ କାହିଁକି, ତାଙ୍କର ଭକ୍ତମାନଙ୍କୁ ମଧ ସେ ଏବେ ସ୍ନେହ ଚକ୍ଷୁରେ ଦେଖୁଥିଲେ ଏବଂ ଠାକୁରଙ୍କୁ ନେଇ ସେମାନେ ଯେ ଏକ ମିଥ୍ୟା ପ୍ରଚାର କରିବାକୁ ବସି ନାହାନ୍ତି, ସେବିଷୟରେ ବିଶ୍ୱାସବାନ ହୋଇଥିଲେ । କିନ୍ତୁ ଠାକୁରଙ୍କୁ ସେମାନେ ଯେପରି ପ୍ରଗାଢ଼ ଭକ୍ତି ବିଶ୍ୱାସ କରୁଥିଲେ ସେକଥା ସେ କିପରି ଦେଖୁଥିଲେ କହି ହେବ ନାହିଁ । ବୋଧହୁଏ ତାଙ୍କ ପାଖରେ ଏହା କିଛି ଅତିରିକ୍ତ ମନେ ହେଉଥିଲା । ଅଥଚ ସେମାନେ ଯେ ଏହା କୌଣସି ପ୍ରକାର ସ୍ୱାର୍ଥ ପାଇଁ ଅଥବା 'ଲୋକ-ଦେଖାଣିଆ' ଭାବରେ କରୁ ନ ଥିଲେ ତାହା ସେ ବେଶ୍ ବୁଝିପାରୁଥିଲେ । ତେଣୁ

ତାଙ୍କ ନିକଟରେ ଏହା ଏକ ବିଚିତ୍ର ରହସ୍ୟ ପରି ପ୍ରତିଭାତ ହେଉଥିଲା ବୋଲି ମନେହୁଏ । ଭକ୍ତମାନଙ୍କ ସହିତ ଘନିଷ୍ଠ ଭାବରେ ମିଶି ତାଙ୍କର ତୀକ୍ଷ୍ଣ ବୁଦ୍ଧି ଏବିଷୟ ସମାଧାନରେ ସର୍ବଦା ନିଯୁକ୍ତ ରହିଥିଲେ ମଧ୍ୟ ସେହି ପ୍ରହେଳିକାଭେଦରେ ସମର୍ଥ ହୋଇ ନ ଥିଲା । କାରଣ, ଈଶ୍ୱରବିଶ୍ୱାସୀ ହେଲେ ମଧ୍ୟ ମାନବ ଭିତରେ ତାଙ୍କର ଅସାଧାରଣ ଶକ୍ତି ପ୍ରକାଶ ଦେଖି ତାଙ୍କୁ ଗୁରୁ ଏବଂ ଅବତାର ବୋଲି ଶ୍ରଦ୍ଧା-ପୂଜାଦି କରିବା ସେ ପାଶ୍ଚାତ୍ୟ ଶିକ୍ଷାପ୍ରଭାବରେ ବୁଝିପାରୁ ନ ଥିଲେ ଏବଂ ବୁଝିପାରୁ ନ ଥିଲେ ବୋଲି ତାହାର ବିରୋଧୀ ଥିଲେ । ବିରୋଧର କାରଣ, ସଂସାରରେ ଯେଉଁମାନେ ଅବତାର ବୋଲି ପୂଜା ପାଉଛନ୍ତି, ସେମାନଙ୍କର ଶିଷ୍ୟ-ପରମ୍ପରା ସେମାନଙ୍କର ମହିମା ପ୍ରଚାର କରିବାକୁ ଯାଇ ବୁଦ୍ଧି ଦୋଷରେ କୌଣସି କୌଣସି ବିଷୟ ଏପରି ଅତିରଞ୍ଜିତ କରି ପ୍ରଚାର କରିଛନ୍ତି ଯେ, ସେମାନେ ସ୍ୱରୂପତଃ କିପରି ଥିଲେ ଲୋକଙ୍କର ସେକଥା ଧରିବା-ବୁଝିବା ଏବେ ଏକ ପ୍ରକାର ଅସମ୍ଭବ ହୋଇଉଠିଛି । ଏହି ପ୍ରସଙ୍ଗରେ ଡାକ୍ତର ଦିନେ ଠାକୁରଙ୍କ ସାମନାରେ ସ୍ପଷ୍ଟ କରି କହିଥିଲେ, ''ଈଶ୍ୱରଙ୍କୁ ଭକ୍ତି, ପୂଜା ଇତ୍ୟାଦି ଯାହା କୁହନ୍ତୁ ସେକଥା ବୁଝିପାରୁଛି, କିନ୍ତୁ ସେହି ଅନନ୍ତ ଭଗବାନ ମନୁଷ୍ୟ ହୋଇ ଆସିଛନ୍ତି ଏକଥାରେ ଯେତେ ସବୁ ଅସୁବିଧା ହୋଇଥାଏ । ସେ ଯଶୋଦାନନ୍ଦନ, ମେରୀନନ୍ଦନ, ଶଚୀନନ୍ଦନ ହୋଇ ଆସିଥିଲେ, ଏକଥା ବୁଝିବା କଠିନ—ଏହି ନନ୍ଦନର ଦଳ ହିଁ ଦେଶଟାକୁ ଉଚ୍ଛନ୍ନ କରିଦେଇଛନ୍ତି !'' ଠାକୁର ଏହି କଥାରେ ହସି ଆମମାନଙ୍କୁ କହିଥିଲେ, ''ଇଏ କ'ଣ କହୁଛନ୍ତି ? ତେବେ ହୀନବୁଦ୍ଧି ଲୋକ ଅନେକ ସମୟରେ ତାଙ୍କୁ ବଡ଼ କରିବାକୁ ଯାଇ ଏପରି କରନ୍ତି, ଏହା ଠିକ୍ ।''

### ଡାକ୍ତରଙ୍କର ଅବତାର ସମ୍ବନ୍ଧୀୟ ମତ ଏବଂ ତା'ର ପ୍ରତିବାଦ— ଦୁର୍ଗାପୂଜା ସମୟରେ ଠାକୁରଙ୍କର ଭାବାବେଶ ଦର୍ଶନରେ ଡାକ୍ତରଙ୍କର ବିସ୍ମୟ :

ଅବତାର ସମ୍ବନ୍ଧୀୟ ପୂର୍ବୋକ୍ତ ମତ ପ୍ରକାଶ ଯୋଗୁଁ ଡାକ୍ତରଙ୍କ ସହିତ ଗିରିଶଚନ୍ଦ୍ର ଓ ନରେନ୍ଦ୍ରନାଥଙ୍କର ବେଳେ ବେଳେ ଅନେକ ବାଦାନୁବାଦ ହେଉଥିଲା । ଫଳରେ, ଏହାର ବିପରୀତରେ ଅନେକ ଯୁକ୍ତିଗର୍ଭ କଥା କୁହାଯାଇପାରେ, ଏହା ବୁଝି ଏପରି ଏକାନ୍ତ ବିରୋଧୀ ମତ ହଠାତ୍ ପ୍ରକାଶ କରିବାକୁ ସେ ସତର୍କତା ଅବଲମ୍ବନ କରିଥିଲେ । କିନ୍ତୁ ତର୍କରେ ଯାହା ହୋଇ ନାହିଁ, ଠାକୁରଙ୍କର ମନର ଅଲୌକିକ ମାଧୁର୍ଯ୍ୟ ଓ ପ୍ରେମ ଏବଂ ତାଙ୍କ ଭିତରୁ ଯେଉଁ ଅଦୃଷ୍ଟପୂର୍ବ ଆଧ୍ୟାତ୍ମିକ ପ୍ରକାଶ ଡାକ୍ତରଙ୍କର ବେଳେ ବେଳେ ନୟନଗୋଚର ହେଉଥିଲା, ତାହାଦ୍ୱାରା ସେହି ବିଷୟ ସଂସିଦ୍ଧ ହୋଇଥିଲା । ତାଙ୍କର ଏପରି ମତ ଧୀରେ ଧୀରେ ଅନେକାଂଶରେ ପରିବର୍ତ୍ତିତ ହୋଇଥିଲା । ସେହି ବର୍ଷର ଦୁର୍ଗାପୂଜାର ସନ୍ଧିକ୍ଷଣରେ ଯେଉଁ ଅଲୌକିକ ବିଭୂତିପ୍ରକାଶ ଠାକୁରଙ୍କ ଭିତରେ ସହସା ଉପସ୍ଥିତ ହୋଇଥିବାର

ଆମେ ସମସ୍ତେ ପ୍ରତ୍ୟକ୍ଷ କରିଥିଲୁ,[୧] ଡାକ୍ତର ସରକାର ମଧ୍ୟ ତାହା ଦେଖିବାର ଓ ପରୀକ୍ଷା କରିବାର ସୁଯୋଗ ପାଇଥିଲେ । ସେ ସେହିଦିନ ଅନ୍ୟ ଜଣେ ଡାକ୍ତର ବନ୍ଧୁଙ୍କ ସହିତ ସେଠାରେ ଉପସ୍ଥିତ ହୋଇ ଭାବାବେଶ ସମୟରେ ଠାକୁରଙ୍କର ହୃଦୟର ସ୍ପନ୍ଦନ ଇତ୍ୟାଦି ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରିଥିଲେ ଏବଂ ତାଙ୍କର ଡାକ୍ତର ବନ୍ଧୁ ଠାକୁରଙ୍କର ଉନ୍ମୀଳିତ ନୟନ ସଙ୍କୁଚିତ ହେଉଛି କି ନାହିଁ, ଦେଖିବା ପାଇଁ ଆଖିରେ ଆଙ୍ଗୁଳି ପ୍ରବେଶ କରାଇବାକୁ ମଧ୍ୟ ହେଳା କରି ନ ଥିଲେ ! ଫଳରେ ହତବୁଦ୍ଧି ହୋଇ ସେମାନଙ୍କୁ ସ୍ୱୀକାର କରିବାକୁ ପଡ଼ିଥିଲା ଯେ, ବାହାରେ ଦେଖିବାକୁ ସମ୍ପୂର୍ଣ୍ଣ ମୃତସଦୃଶ ପ୍ରତୀୟମାନ ଠାକୁରଙ୍କର ଏହି ସମାଧି ଅବସ୍ଥା ସମ୍ବନ୍ଧରେ ବିଜ୍ଞାନ କୌଣସି ପ୍ରକାରର ଆଲୋକ ଏପର୍ଯ୍ୟନ୍ତ ପ୍ରଦାନ କରିପାରି ନାହିଁ । ପାଶ୍ଚାତ୍ୟ ଦାର୍ଶନିକ ଏହାକୁ ଜଡ଼ତ୍ୱ ବୋଲି କହି ଏବଂ ଘୃଣା ପ୍ରକାଶପୂର୍ବକ ନିଜର ଅଜ୍ଞତା ଓ ଇହସର୍ବସ୍ୱତାର ହିଁ ପରିଚୟ ପ୍ରଦାନ କରିଛନ୍ତି । ଈଶ୍ୱରଙ୍କ ସଂସାରରେ ଏପରି ଅନେକ ବିଷୟ ବିଦ୍ୟମାନ, ଯାହାର ରହସ୍ୟଭେଦ ଦର୍ଶନ-ବିଜ୍ଞାନ ଆଦୌ କରିବାକୁ ସକ୍ଷମ ହୋଇ ନାହିଁ — କେବେହେଲେ ପାରିବ ବୋଲି ମଧ୍ୟ ମନେହୁଏ ନାହିଁ । ବାହାରେ ମଧ୍ୟ ମୃତ ସଦୃଶ ଅବସ୍ଥିତ ହୋଇ ସେଦିନ ଠାକୁର ସେ ସମୟରେ ଯାହା ଦର୍ଶନ ଓ ଉପଲବ୍ଧି କରିଥିଲେ, ତାହା କେତେଦୂର ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ଭକ୍ତମାନେ ବୁଝିପାରିଥିଲେ, ସେସବୁ କଥା ଆମେ ଅନ୍ୟ ସ୍ଥାନରେ ଉଲ୍ଲେଖ କରିଛୁ ବୋଲି ଏଠାରେ ଏହାର ପୁନରାବୃତ୍ତି ନିଷ୍ପ୍ରୟୋଜନ ।

### ରୋଗବୃଦ୍ଧି :

ଆଶ୍ୱିନ ଅତୀତ ହୋଇ କାର୍ତ୍ତିକ ଏବଂ ଶ୍ରୀଶ୍ରୀ କାଳୀପୂଜା ଦିନ କ୍ରମେ ପାଖେଇ ଆସିଲା; ମାତ୍ର ଠାକୁରଙ୍କର ଶାରୀରିକ ଅବସ୍ଥାର ବିଶେଷ କିଛି ଉନ୍ନତି ଦେଖାଗଲା ନାହିଁ । ଚିକିତ୍ସାର ପ୍ରାରମ୍ଭରେ ଯେଉଁ ଫଳ ମିଳିଥିଲା, ତାହା ଦିନକୁ ଦିନ ନଷ୍ଟ ହେବାରୁ ରୋଗ ପ୍ରବଳ ଭାବ ଧାରଣ କରିବ ବୋଲି ଆଶଙ୍କା ଜାତ ହେଲା । କିନ୍ତୁ ଠାକୁରଙ୍କର ମନର ଆନନ୍ଦ ଓ ପ୍ରସନ୍ନତା ଆଦୌ ହ୍ରାସ ନ ହୋଇ ବରଂ ଅଧିକତର ବୋଲି ଭକ୍ତଗଣ ଜାଣିପାରିଲେ । ଡାକ୍ତର ସରକାର ପୂର୍ବଭଳି ଘନ ଘନ ଯିବା ଆସିବା ଏବଂ ବାରମ୍ବାର ଔଷଧ ପରିବର୍ତ୍ତନ କରି ମଧ୍ୟ ଆଶାନୁରୂପ ଫଳ ନ ପାଇ ଭାବିବାକୁ ଲାଗିଲେ ଋତୁ ପରିବର୍ତ୍ତନ ଯୋଗୁଁ ଏପରି ହେଉଅଛି, ଶୀତ ଟିକିଏ ଜୋର୍ ହେଲେ ବୋଧହୁଏ ଏହି ଭାବ କଟିଯିବ ।

### କାଳୀପୂଜା ଦିନ ଠାକୁରଙ୍କର ଅଦ୍ଭୁତ ଭାବାବେଶର ବିବରଣ :

ଦୁର୍ଗାପୂଜା ପରି କାଳୀପୂଜା ସମୟରେ ମଧ୍ୟ ଠାକୁରଙ୍କ ଭିତରେ ଅଦ୍ଭୁତ ଆଧ୍ୟାତ୍ମିକ ପ୍ରକାଶ ଭକ୍ତମାନଙ୍କର ନୟନଗୋଚର ହୋଇଥିଲା । ଦେବେନ୍ଦ୍ରନାଥ

---

୧. ସାଧକଭାବ, ୮ମ ଅଧ୍ୟାୟ ।

କୌଣସି ସମୟରେ ପ୍ରତିମା ଆଣି କାଳୀପୂଜା କରିବାକୁ ସଂକଳ୍ପ କରିଥିଲେ । ଠାକୁର ଓ ତାଙ୍କର ଭକ୍ତମାନଙ୍କ ସମ୍ମୁଖରେ ଏହି ସଂକଳ୍ପ କାର୍ଯ୍ୟରେ ପରିଣତ କରିପାରିଲେ ପରମ ଆନନ୍ଦ ହେବ ଭାବି ସେ ଶ୍ୟାମପୁକୁର ଘରେ ଉକ୍ତ ପୂଜା କରିବା ପାଇଁ କହିଲେ । କିନ୍ତୁ ପୂଜାର ଉତ୍ସାହ, ଉତ୍ତେଜନା ଓ ଗୋଳମାଳରେ ଠାକୁରଙ୍କର ଶରୀର ଅଧିକ ଅବସନ୍ନ ହେବ ଭାବି ଭକ୍ତମାନେ ତାଙ୍କୁ ଏପରି କାର୍ଯ୍ୟରୁ କ୍ଷାନ୍ତ ହେବା ପାଇଁ ପରାମର୍ଶ ଦେଲେ । ଦେବେନ୍ଦ୍ର ଭକ୍ତମାନଙ୍କ କଥା ଯୁକ୍ତିଯୁକ୍ତ ଭାବି ଏହି ସଂକଳ୍ପ ତ୍ୟାଗ କଲେ । କିନ୍ତୁ ଠାକୁର ପୂଜାର ପୂର୍ବଦିନ କେତେଜଣ ଭକ୍ତଙ୍କୁ ହଠାତ୍ କହିଲେ, ''ପୂଜାର ଉପକରଣ ସବୁ ସଂଗ୍ରହ କରି ରଖିବ — କାଲି କାଳୀପୂଜା କରିବାକୁ ହେବ ।'' ସେମାନେ ସେହି କଥାରେ ଆନନ୍ଦିତ ହୋଇ ଅନ୍ୟ ସମସ୍ତଙ୍କ ସହିତ ପରାମର୍ଶ କରିବାକୁ ବସିଲେ । କିନ୍ତୁ ପୂର୍ବୋକ୍ତ କଥାଗୁଡ଼ିକ ବ୍ୟତୀତ ପୂଜାର ଆୟୋଜନ ସମ୍ବନ୍ଧରେ ଅନ୍ୟ କୌଣସି କଥା ଠାକୁରଙ୍କ ନିକଟରୁ ନ ପାଇବାରୁ କିପରି ଭାବରେ ଏହା ସମ୍ପନ୍ନ କରିବାକୁ ହେବ ସେବିଷୟ ନେଇ ସେମାନଙ୍କ ମଧ୍ୟରେ ନାନା ପ୍ରକାର କଳ୍ପନା ଜଳ୍ପନା ଉପସ୍ଥିତ ହେଲା । ପୂଜା ଷୋଡ଼ଶ ଉପଚାରରେ ଅଥବା ପଞ୍ଚ ଉପଚାରରେ ହେବ, ଏଥିରେ ଅନ୍ନ ଭୋଗ ଦିଆଯିବ କି ନାହିଁ, ପୂଜକର ପଦ କିଏ ଗ୍ରହଣ କରିବେ ଇତ୍ୟାଦି ବିଷୟରେ କୌଣସି ମୀମାଂସା କରି ନ ପାରି ଅବଶେଷରେ ସ୍ଥିର ହେଲା, ଗନ୍ଧ-ପୁଷ୍ପ, ଧୂପ-ଦୀପ, ଫଳମୂଳ ଏବଂ ମିଷ୍ଟାନ୍ନ ଇତ୍ୟାଦି ସଂଗ୍ରହ କରି ରଖାଯାଉ, ପରେ ଠାକୁର ଯେପରି କହିବେ ସେପରି ହେବ । କିନ୍ତୁ ସେଦିନ ଏବଂ ପୂଜା ଦିନର ଅଧାଦିନ ଅତୀତ ହେଲେ ମଧ୍ୟ ଠାକୁର ସେବିଷୟରେ ଆଉ କିଛି କଥା ସେମାନଙ୍କୁ କହିଲେ ନାହିଁ ।

### ପୂଜାର ଆୟୋଜନ :

କ୍ରମେ ସୂର୍ଯ୍ୟାସ୍ତ ହୋଇ ରାତି ପ୍ରାୟ ସାତଟା ବାଜିଗଲା । ଠାକୁର ସେପର୍ଯ୍ୟନ୍ତ ସେମାନଙ୍କୁ ପୂଜା ସମ୍ବନ୍ଧରେ କିଛି ନ କହି ଅନ୍ୟ ଦିନ ପରି ସ୍ଥିରଭାବରେ ବିଛଣାରେ ବସିଥିବାର ଦେଖି ସେମାନେ ତାଙ୍କ ନିକଟରେ ପୂର୍ବ ଦିଗରେ ଅଳ୍ପ ସ୍ଥାନ ମାର୍ଜନା କରି ସଂଗୃହୀତ ଜିନିଷଗୁଡ଼ିକ ଆଣି ସେଠାରେ ରଖିଲେ । ଦକ୍ଷିଣେଶ୍ୱରରେ ଥିବାବେଳେ ଗନ୍ଧପୁଷ୍ପାଦି ପୂଜା ଉପକରଣ ନେଇ ଠାକୁର ବେଳେ ବେଳେ ନିଜକୁ ନିଜେ ପୂଜା କରୁଥିଲେ । ଭକ୍ତମାନଙ୍କ ମଧ୍ୟରୁ କେହି କେହି ଏହା ଦେଖିଥିଲେ । ଆଜି ମଧ୍ୟ ସେହିପରି ସେ ନିଜ ଦେହମନରୂପକ ପ୍ରତୀକାବଲମ୍ବନରେ ଜଗତ୍‌ଚୈତନ୍ୟ ଓ ଜଗତ୍ ଶକ୍ତିରୂପିଣୀଙ୍କର ପୂଜା କରିବେ, ଅଥବା ଜଗଦମ୍ବାଙ୍କ ସହିତ ଅଭେଦଜ୍ଞାନରେ ଶାସ୍ତ୍ରୋକ୍ତ ଆତ୍ମପୂଜା ସମ୍ପନ୍ନ କରିବେ, ସେମାନେ ପରିଶେଷରେ ଏହି ମୀମାଂସାରେ ଉପନୀତ ହୋଇଥିଲେ । ସୁତରାଂ

ସମସ୍ତ ପୂଜା-ଉପକରଣ ସେମାନେ ଠାକୁରଙ୍କର ବିଛଣା ପାଖରେ ସଜାଇ ରଖିବେ, ଏଥିରେ କୌଣସି ବିଚିତତ୍ରା ନାହିଁ ! ଠାକୁର ସେମାନଙ୍କୁ ଏପରି କରିବାର ଦେଖି କୌଣସି ଅସମ୍ମତି ପ୍ରକାଶ କଲେ ନାହିଁ ।

### ଠାକୁରଙ୍କର ନୀରବରେ ଅବସ୍ଥାନ :

କ୍ରମେ କ୍ରମେ ସମସ୍ତ ଉପକରଣ ଅଣାଗଲା ଏବଂ ଧୂପ ଦୀପ ସବୁ ପ୍ରଜ୍ୱଳିତ ହେବାରୁ ଘରଟି ଆଲୋକମୟ ଏବଂ ସୌରଭରେ ଆମୋଦିତ ହେଲା । ଠାକୁର ସେତେବେଳେ ମଧ୍ୟ ସ୍ଥିର ହୋଇ ବସିରହିଛନ୍ତି ଦେଖି ଭକ୍ତମାନେ ତାଙ୍କ ନିକଟରେ ବସି ରହିଲେ ଏବଂ କେହି କେହି ତାଙ୍କର ଆଦେଶ ପ୍ରତୀକ୍ଷା କରି ଏକ ମନରେ ତାଙ୍କୁ ଦେଖିବାକୁ ଲାଗିଲେ ଏବଂ କେହି ମଧ୍ୟ ଜଗଜ୍ଜନନୀଙ୍କର ଚିନ୍ତା କରିବାକୁ ଲାଗିଲେ । ଏପରି ଭାବରେ ଘରଟି ସମ୍ପୂର୍ଣ୍ଣ ନୀରବ ଏବଂ ତିରିଶ ବା ତାଠାରୁ ଅଧିକ ବ୍ୟକ୍ତି ଘର ଭିତରେ ଅବସ୍ଥାନ କଲେ ମଧ୍ୟ ଜନଶୂନ୍ୟ ବୋଲି ପ୍ରତୀୟମାନ ହେଲା । କେତେ ସମୟ ଏପରି ଭାବରେ କଟିଗଲା, କିନ୍ତୁ ଠାକୁର ସେତେବେଳେ ମଧ୍ୟ ସ୍ୱୟଂ ପୂଜା କରିବାକୁ ଆଗେଇ ଆସିବା କିମ୍ବା ଆମମାନଙ୍କ ମଧ୍ୟରୁ କାହାକୁ ଏବିଷୟରେ ଆଦେଶ କରିବା, ଇତ୍ୟାଦି କିଛି ନ କରି ପୂର୍ବପରି ନିଶ୍ଚିନ୍ତ ଭାବରେ ବସିରହିଲେ ।

### ଗିରିଶଚନ୍ଦ୍ରଙ୍କର ମୀମାଂସା ଓ ଠାକୁରଙ୍କର ପାଦପଦ୍ମରେ ପୁଷ୍ପାଞ୍ଜଳି ପ୍ରଦାନ—ଠାକୁରଙ୍କର ଭାବାବେଶ :

ଯୁବକ ଭକ୍ତମାନଙ୍କ ସହିତ ମହେନ୍ଦ୍ରନାଥ, ରାମଚନ୍ଦ୍ର, ଦେବେନ୍ଦ୍ରନାଥ, ଗିରିଶଚନ୍ଦ୍ର ପ୍ରଭୃତି ପ୍ରବୀଣ ବ୍ୟକ୍ତିମାନେ ଉପସ୍ଥିତ ଥିଲେ—ସେମାନଙ୍କ ମଧ୍ୟରେ ଗିରିଶଚନ୍ଦ୍ରଙ୍କର 'ପାଞ୍ଚସୁଉକି ପାଞ୍ଚ ଅଣା' ବିଶ୍ୱାସ[୧] ବୋଲି ଠାକୁର ବେଳେ ବେଳେ କହୁଥିଲେ । ପୂଜା ବିଷୟରେ ଠାକୁରଙ୍କୁ ଏପରି ବ୍ୟବହାର କରିବା ଦେଖି ସେମାନଙ୍କ ମଧ୍ୟରୁ ଅନେକେ ଏବେ ବିସ୍ମିତ ହେବାକୁ ଲାଗିଲେ । ଠାକୁରଙ୍କ ପ୍ରତି ଅଶେଷ ବିଶ୍ୱାସବାନ୍ ଗିରିଶଚନ୍ଦ୍ରଙ୍କର ପ୍ରାଣରେ କିନ୍ତୁ ଏଥିରେ ଅନ୍ୟ ଭାବର ଉଦୟ ହେଲା । ତାଙ୍କର ମନେ ହେଲା, ନିଜ ପାଇଁ ଠାକୁରଙ୍କର କାଳୀପୂଜା କରିବାର କୌଣସି ପ୍ରୟୋଜନ ନାହିଁ । ଯଦି କୁହାଯାଏ ଅହେତୁକୀ ଭକ୍ତିର ପ୍ରେରଣାରେ ତାଙ୍କର ପୂଜା କରିବାକୁ ଇଚ୍ଛା ହୋଇଅଛି—ତେବେ ସେ ତାହା ନ କରି ଏପରି ସ୍ଥିର ହୋଇ ବସି ରହିଛନ୍ତି କାହିଁକି ? ଅତଏବ ତାହା ମଧ୍ୟ ମନେ ହେଉ ନାହିଁ; ତେବେ କ'ଣ ତାଙ୍କର ଶରୀରରୂପକ ଜୀବନ୍ତ ପ୍ରତିମାରେ ଜଗଦମ୍ବାଙ୍କର ପୂଜା କରି ଭକ୍ତଗଣ ଧନ୍ୟ ହେବେ ବୋଲି ଏହି ପୂଜାର ଆୟୋଜନ ? —ତାହା ହିଁ ନିଶ୍ଚୟ । ଏପରି ଭାବି ସେ ଉଲ୍ଲାସରେ ଅଧୀର ହୋଇପଡ଼ିଲେ ଏବଂ ସମ୍ମୁଖସ୍ଥ ପୁଷ୍ପଚନ୍ଦନ

---

୧. ଅର୍ଥାତ୍ ଷୋହଳ ଅଣା ଉପରେ ଚାରି-ପାଞ୍ଚ ଅଣା ଅଧିକ ବିଶ୍ୱାସ ।

ସହସା ଗ୍ରହଣପୂର୍ବକ 'ଜୟ ମା' ବୋଲି ଠାକୁରଙ୍କର ପାଦପଦ୍ମରେ ଅଞ୍ଜଳି ପ୍ରଦାନ କଲେ । ଠାକୁରଙ୍କର ସମସ୍ତ ଶରୀର ଏଥିରେ ଶିହରି ଉଠିଲା ଏବଂ ସେ ଗଭୀର ସମାଧିରେ ମଗ୍ନ ହେଲେ ! ତାଙ୍କର ମୁଖମଣ୍ଡଳ ଜ୍ୟୋତିର୍ମୟ ଏବଂ ଦିବ୍ୟ ହାସ୍ୟରେ ବିକଶିତ ହୋଇଉଠିଲା ଏବଂ ହସ୍ତଦ୍ୱୟ ବରାଭୟ-ମୁଦ୍ରା ଧାରଣପୂର୍ବକ ସେଥିରେ ଜଗଦମ୍ବାଙ୍କର ଆବେଶର ପରିଚୟ ପ୍ରଦାନ କରିବାକୁ ଲାଗିଲା । ଏତେ ଅଳ୍ପ ସମୟ ମଧ୍ୟରେ ଏସବୁ ଘଟଣା ଉପସ୍ଥିତ ହେଲା ଯେ, ପାଖରେ ଥିବା ଭକ୍ତମାନଙ୍କ ମଧ୍ୟରୁ ଅନେକେ ଭାବିଲେ ଠାକୁରଙ୍କୁ ସେହିପ୍ରକାର ଭାବାବିଷ୍ଟ ହେବା ଦେଖି ହିଁ ଗିରିଶ ତାଙ୍କର ଶ୍ରୀପଦରେ ବାରମ୍ବାର ଅଞ୍ଜଳି ପ୍ରଦାନ କରୁଛନ୍ତି ଏବଂ ଯେଉଁମାନେ କିଞ୍ଚିତ୍ ଦୂରରେ ଥିଲେ ସେମାନେ ଦେଖିଲେ ଯେପରି ଠାକୁରଙ୍କର ଶରୀର ଅବଲମ୍ବନରେ ଜ୍ୟୋତିର୍ମୟୀ ଦେବୀପ୍ରତିମା ସହସା ସେମାନଙ୍କ ସମ୍ମୁଖରେ ଆବିର୍ଭୂତା ହୋଇଛନ୍ତି !

**ଭାବାବିଷ୍ଟ ଠାକୁରଙ୍କୁ ଭକ୍ତମାନଙ୍କର ପୂଜା :**

କହିବା ବାହୁଲ୍ୟ, ଭକ୍ତମାନଙ୍କ ପ୍ରାଣରେ ଆନନ୍ଦର ସୀମା ରହିଲା ନାହିଁ । ସେମାନେ ପ୍ରତ୍ୟେକେ କୌଣସି ପ୍ରକାରେ ପୁଷ୍ପପାତ୍ରରୁ ଫୁଲଚନ୍ଦନ ନେଇ ଯାହାର ଯେଉଁ ପ୍ରକାର ଇଚ୍ଛା ମନ୍ତ୍ର ଉଚ୍ଚାରଣ ସହିତ ଠାକୁରଙ୍କର ଶ୍ରୀପାଦପଦ୍ମ ପୂଜା ପୂର୍ବକ, 'ଜୟ ଜୟ' ଧ୍ୱନିରେ ଗୃହ ମୁଖରିତ କରିପକାଇଲେ । କେତେକ୍ଷଣ ଏପରି ଅତୀତ ହେବାପରେ ଭାବାବେଶର ଉପଶମ ହୋଇ ଠାକୁରଙ୍କର ଅର୍ଦ୍ଧବାହ୍ୟ ଅବସ୍ଥା ଉପସ୍ଥିତ ହେଲା । ସେତେବେଳେ ପୂଜା ପାଇଁ ସଂଗୃହୀତ, ଫଳମୂଳମିଷ୍ଟାନ୍ନ ଆଦି ସମସ୍ତ ପଦାର୍ଥ ତାଙ୍କ ସାମନାକୁ ଆଣି ତାଙ୍କୁ ଖାଇବାକୁ ଦିଆହେଲା । ସେ ମଧ୍ୟ ସବୁଥିରୁ କିଛି କିଛି ଗ୍ରହଣ କରି ଭକ୍ତି ଓ ଜ୍ଞାନବୃଦ୍ଧି ନିମିତ୍ତ ଭକ୍ତଗଣଙ୍କୁ ଆଶୀର୍ବାଦ କଲେ । ଏହାପରେ ତାଙ୍କ ପ୍ରସାଦ ଗ୍ରହଣ କରି ଗଭୀର ରାତି ପର୍ଯ୍ୟନ୍ତ ସେମାନେ ସମସ୍ତେ ପ୍ରାଣର ଉଲ୍ଲାସରେ ଦେବୀଙ୍କର ମହିମା କୀର୍ତ୍ତନ ଓ ନାମଗୁଣ-ଗାନରେ ଅତିବାହିତ କଲେ ।

ସେହି ଭାବରେ ଭକ୍ତମାନେ ସେହି ବର୍ଷ ଅଭିନବ ପ୍ରଣାଳୀରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜା କରି ଯେଉଁ ଅଦ୍ଭୁତପୂର୍ବ ଆନନ୍ଦ ଅନୁଭବ କରିଥିଲେ ତାହା ଚିରଦିନ ପାଇଁ ସେମାନଙ୍କ ପ୍ରାଣରେ ଜାଗରୂକ ହୋଇ ରହିଥିଲା ଏବଂ ଦୁଃଖଦୁର୍ଦ୍ଦିନ ଉପସ୍ଥିତ ହୋଇ ଯେତେବେଳେ ହିଁ ସେମାନେ ଅବସନ୍ନ ହୋଇପଡୁଥିଲେ ସେତେବେଳେ ହିଁ ଠାକୁରଙ୍କର ସେହି ଦିବ୍ୟ ହାସ୍ୟଫୁଲ୍ଲ ପ୍ରସନ୍ନ ଆନନ ଓ ବରାଭୟଯୁକ୍ତ କରଦ୍ୱୟ ସେମାନଙ୍କ ସମ୍ମୁଖରେ ଉଦିତ ହୋଇ ସେମାନଙ୍କର ଜୀବନ ସର୍ବଥା 'ଦେବରକ୍ଷିତ', ଏହି କଥା ସେମାନଙ୍କୁ ସ୍ମରଣ କରାଇ ଦେଉଥିଲା ।

## ବିଶେଷ ପର୍ବ ଛଡ଼ା ଅନ୍ୟ ସମୟରେ ଭକ୍ତଗଣଙ୍କର ଠାକୁରଙ୍କ ସମ୍ବନ୍ଧୀୟ ଅନୁଭବର ଦୃଷ୍ଟାନ୍ତ :

ଶ୍ୟାମପୁକୁରରେ ଅବସ୍ଥାନ ସମୟରେ ଠାକୁରଙ୍କ ଭିତରେ ଦିବ୍ୟଶକ୍ତି ଓ ଦେବଭାବର ପରିଚୟ ଭକ୍ତମାନେ ପୂର୍ବୋକ୍ତ ରୂପରେ କେବଳ ବିଶେଷ ବିଶେଷ ପର୍ବ ଦିନମାନଙ୍କରେ ହିଁ ଯେ ପାଇଥିଲେ ତାହା ନୁହେଁ, କିନ୍ତୁ ବେଳେ ବେଳେ ହଠାତ୍ ତାଙ୍କଠାରେ ଏପରି ଭାବର ବିକାଶ ଦେଖିବାର ସୁଯୋଗ ଲାଭ କରି ତାଙ୍କ ପ୍ରତି ସେମାନଙ୍କର ଦେବମାନବ ବୋଲି ବିଶ୍ୱାସ ଦିନକୁ ଦିନ ଦୃଢ଼ୀଭୂତ ହୋଇଥିଲା । ଏହି ଭାବର ଘଟଣାଗୁଡ଼ିକ ଏହାପୂର୍ବରୁ ଉଲ୍ଲିଖିତ ଘଟଣାବଳୀ ସଦୃଶ ଅନେକ ସମୟରେ ସମସ୍ତଙ୍କ ସମ୍ମୁଖରେ ନ ହୋଇଥିଲେ ମଧ୍ୟ, ଭକ୍ତଗଣଙ୍କ ମଧ୍ୟରେ ଯେଉଁମାନେ ଏସବୁ ପ୍ରତ୍ୟକ୍ଷ କରିଥିଲେ ପ୍ରଥମେ ସେମାନଙ୍କ ପ୍ରାଣରେ ଏବଂ ପରେ ସେମାନଙ୍କ ନିକଟରୁ ଶୁଣି ଅନ୍ୟ ସମସ୍ତଙ୍କ ପ୍ରାଣରେ ପୂର୍ବୋକ୍ତ ଫଳର ଉଦୟ କରିଥିଲା ଏବିଷୟରେ ସନ୍ଦେହ ନାହିଁ । ଦୃଷ୍ଟାନ୍ତସ୍ୱରୂପ କେତୋଟି ବିଷୟ ଏଠାରେ ଉଲ୍ଲେଖ କଲେ ପାଠକଙ୍କର ଏବିଷୟରେ ହୃଦ୍‌ବୋଧ ହେବ :

## ଠାକୁରଙ୍କୁ ଶ୍ରଦ୍ଧାଭକ୍ତି କରିବାରୁ ବଳରାମଙ୍କର ଆତ୍ମୀୟବର୍ଗଙ୍କର ଅପ୍ରସନ୍ନତା :

ବଳରାମଙ୍କ ସମ୍ବନ୍ଧରେ କିଛି କିଛି କଥା ଆମେ ଅନ୍ୟ ସ୍ଥାନରେ ଉଲ୍ଲେଖ କରିଛୁ । ସେ ଏବଂ ତାଙ୍କର ପରିବାରବର୍ଗ ଠାକୁରଙ୍କୁ ଶ୍ରଦ୍ଧା-ଭକ୍ତି କରୁଥିଲେ ବୋଲି ତାଙ୍କର ଆତ୍ମୀୟମାନଙ୍କ ମଧ୍ୟରେ କେହି କେହି ତାଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ସେପରି ହେବାର କାରଣ ମଧ୍ୟ ଯଥେଷ୍ଟ ଥିଲା । ପ୍ରଥମତଃ ସେମାନେ ବୈଷ୍ଣବ ବଂଶରେ ଜନ୍ମ ହୋଇଥିବାରୁ ପ୍ରଚଳିତ ଶିକ୍ଷା-ଦୀକ୍ଷାନୁସାରେ ସେମାନଙ୍କର ଧର୍ମମତ ଯେ ପ୍ରାୟତଃ ଏକଦେଶୀ ଏବଂ ଅତିମାତ୍ରାରେ ବାହ୍ୟାଚାରନିଷ୍ଠ ହେବ—ଏହା ବିଚିତ୍ର ନୁହେଁ । ସୁତରାଂ ସମସ୍ତ ପ୍ରକାର ଧର୍ମମତର ସତ୍ୟତାରେ ସ୍ଥିର ବିଶ୍ୱାସସମ୍ପନ୍ନ, ବାହ୍ୟଚିହ୍ନମାତ୍ର ଧାରଣରେ ପରାଙ୍‌ମୁଖ ଠାକୁରଙ୍କର ଭାବ ସେମାନେ ହୃଦୟଙ୍ଗମ କରିପାରୁ ନ ଥିଲେ—ତାହା କରିବାର ପ୍ରୟୋଜନୀୟତା ମଧ୍ୟ ଅନୁଭବ କରୁ ନ ଥିଲେ । ଅତଏବ ଠାକୁରଙ୍କର ସଙ୍ଗଗୁଣରେ ଏବଂ କୃପାଲାଭରେ ବଳରାମଙ୍କର ଦିନକୁ ଦିନ ଉଦାରଭାବସମ୍ପନ୍ନ ହେବା ସେମାନେ ଧର୍ମହୀନତାର ପରିଚାୟକ ବୋଲି ଧାରଣା କରିଥିଲେ ! ଦ୍ୱିତୀୟତଃ—ଧନ, ମାନ, ଆଭିଜାତ୍ୟାଦି ପାର୍ଥିବ ଜିନିଷ ମାନବର ଅନ୍ତରରେ ପ୍ରାୟ ଅଭିମାନ-ଅହଂକାର ହିଁ ପରିପୁଷ୍ଟ କରେ । ପୁଣ୍ୟକୀର୍ତ୍ତି ⁄କୃଷ୍ଣରାମ ବସୁ ଯେଉଁ କୁଳ ଉଜ୍ଜ୍ୱଳ କରିଥିଲେ, ସେହି କୁଳରେ ଜନ୍ମଗ୍ରହଣ କରି ସେମାନେ ମଧ୍ୟ ନିଜକୁ ସମଧିକ ମହିମାନ୍ୱିତ ଜ୍ଞାନ କରୁଥିଲେ । ସେହି ବଂଶମର୍ଯ୍ୟାଦା ବିସ୍ମୃତ ହୋଇ ବଳରାମ ସାଧାରଣ ମନୁଷ୍ୟଙ୍କ ପରି

ଦକ୍ଷିଣେଶ୍ୱରରେ ଠାକୁରଙ୍କର ଶ୍ରୀପଦପ୍ରାନ୍ତରେ ଧର୍ମଲାଭ ନିମିତ୍ତ ପ୍ରାୟତଃ ଉପସ୍ଥିତ ହେଉଛନ୍ତି ଏବଂ ନିଜର ସ୍ତ୍ରୀକନ୍ୟା ପ୍ରଭୃତିଙ୍କୁ ମଧ୍ୟ ସେଠାକୁ ନେବାକୁ କୁଣ୍ଠିତ ହେଉ ନାହାନ୍ତି ଏହା ଜାଣି ସେମାନଙ୍କର ଅଭିମାନ ଯେ ବିଶେଷ ପ୍ରତିହତ ହେବ, ଏହା ବୁଝାଯାଏ । ଅତଏବ ଏହି କାର୍ଯ୍ୟରୁ ତାଙ୍କୁ ନିବୃତ୍ତ କରିବାକୁ ସେମାନେ ଏହି ସମୟରେ ଅତ୍ୟନ୍ତ ଆଗ୍ରହାନ୍ୱିତ ହୋଇଥିଲା ।

### ବଳରାମଙ୍କର ଠାକୁରଙ୍କ ନିକଟକୁ ଗମନ<br>ନିବାରଣ କରିବାକୁ ସେମାନଙ୍କର ଚେଷ୍ଟା :

ସତ୍ ଉପାୟ ଅବଲମ୍ବନରେ କାର୍ଯ୍ୟସିଦ୍ଧି ନ ହେଲେ ଅହଙ୍କୃତ ମାନବକୁ ଅସଦୁପାୟ ଗ୍ରହଣ କରିବାକୁ ଅନେକ ସମୟରେ ଦେଖିବାକୁ ମିଳେ । ବଳରାମଙ୍କର ଆତ୍ମୀୟବର୍ଗଙ୍କ ମଧ୍ୟରେ କୌଣସି କୌଣସି ବ୍ୟକ୍ତିଙ୍କର ପ୍ରାୟ ସେପରି ଅବସ୍ଥା ହୋଇଥିଲା । କାଲ୍‌ନାର ଭଗବାନଦାସପ୍ରମୁଖ ବୈଷ୍ଣବବାବାଜୀମାନଙ୍କର ନିଷ୍ଠା ଓ ଭକ୍ତିପ୍ରେମର ଆତିଶଯ୍ୟ କୀର୍ତ୍ତନ କରି ଏବଂ ନିଜର ବଂଶଗୌରବ କଥା ବାରମ୍ବାର ସ୍ମରଣ କରାଇ ଦେଇ ମଧ୍ୟ ଯେତେବେଳେ ସେମାନେ ବଳରାମଙ୍କର ଠାକୁରଙ୍କ ନିକଟକୁ ଯିବା ବନ୍ଦ କରିପାରିଲେ ନାହିଁ, ସେତେବେଳେ ଠାକୁରଙ୍କ ପ୍ରତି ବିଦ୍ୱେଷଭାବାପନ୍ନ ହୋଇ ସେମାନେ ବେଳେ ବେଳେ ତାଙ୍କର ଅଯଥା ନିନ୍ଦା କରିବାକୁ ମଧ୍ୟ କୁଣ୍ଠିତ ହୋଇ ନ ଥିଲେ । ଅବଶ୍ୟ, ଅନ୍ୟମାନଙ୍କଠାରୁ ଶୁଣି ଯେ ସେମାନେ ଠାକୁରଙ୍କୁ ନିଷ୍ଠାଶୂନ୍ୟ, ସଦାଚାରବିରହିତ, ଖାଦ୍ୟଖାଦ୍ୟବିଚାରବିହୀନ, କଣ୍ଠି–ତିଳକ ଆଦି ବୈଷ୍ଣବ ଚିହ୍ନଧାରଣର ବିରୋଧୀ ଇତ୍ୟାଦି ବୋଲି ଧାରଣା କରିଥିଲେ । ସେ ଯାହା ହେଉ, ସେଥିରେ ମଧ୍ୟ କୌଣସି ଫଳ ନ ହେବାର ଦେଖି ସେମାନେ ଅବଶେଷରେ ଠାକୁର ଏବଂ ବଳରାମଙ୍କ ସମ୍ବନ୍ଧରେ ନାନାକଥାର ବିକୃତ ଆଲୋଚନା ତାଙ୍କର ଦାଦାଙ୍କ ପୁଅ ନିମାଇଁଚରଣ ଓ ହରିବଲ୍ଲଭ ବସୁଙ୍କ ନିକଟରେ ଉତ୍‌ଥାପିତ କଲେ ।

### ବଳରାମଙ୍କର ପୂର୍ବଜୀବନ :

ଆମେମାନେ ଏହାପୂର୍ବରୁ ଗୋଟିଏ ସ୍ଥାନରେ କହିଛୁ, ବଳରାମଙ୍କ ଭିତରେ ଦୟା ଓ ତ୍ୟାଗବୈରାଗ୍ୟର ଭାବ ବିଶେଷ ପ୍ରବଳ ଥିଲା । ଜମିଦାରୀ ପ୍ରଭୃତି ତତ୍ତ୍ୱାବଧାନରେ ଅନେକ ସମୟରେ ନିର୍ମମ ହୋଇ ନାନା ପ୍ରକାର ହାଙ୍ଗାମା ନ କଲେ ଚଳେ ନାହିଁ ଦେଖି, ସେ ନିଜର ବିଷୟସମ୍ପତ୍ତିର ଭାର ନିମାଇଁବାବୁଙ୍କ ଉପରେ ନ୍ୟସ୍ତ କରି ତାଙ୍କ ନିକଟରୁ ପ୍ରତି ମାସରେ ଆୟସ୍ୱରୂପ ଯାହା ପାଉଥିଲେ, ଅନେକ ସମୟରେ ତାହା ପର୍ଯ୍ୟାପ୍ତ ନ ହେଲେ ମଧ୍ୟ ସେଥିରେ ହିଁ କୌଣସି ପ୍ରକାରରେ ସଂସାରଯାତ୍ରା ନିର୍ବାହ କରୁଥିଲେ । ତାଙ୍କର ଶରୀର ମଧ୍ୟ ଏସବୁ କାମ କରିବା ପାଇଁ ଉପଯୋଗୀ ନ ଥିଲା । ଯୌବନରେ ଅଜୀର୍ଣ୍ଣରୋଗରେ ତାଙ୍କର ଏତେ

ଦୂର ସ୍ୱାସ୍ଥ୍ୟହାନି ହୋଇଥିଲା ଯେ, ଏକାଦିକ୍ରମେ ବାରବର୍ଷ ଅନ୍ନ ତ୍ୟାଗପୂର୍ବକ ତାଙ୍କୁ ଯବ ମଣ୍ଡ ଏବଂ ଦୁଧ ପିଇ କଟାଇବାକୁ ପଡ଼ିଥିଲା । ଭଗ୍ନସ୍ୱାସ୍ଥ୍ୟ ଉଦ୍ଧାର କରିବା ପାଇଁ ସେ ସେହି ସମୟରେ ଅନେକ ଦିନ ପୁରୀଧାମରେ କଟାଇଥିଲେ । ଶ୍ରୀଭଗବାନଙ୍କର ନିତ୍ୟ ଦର୍ଶନ, ପୂଜା, ଜପ, ଭାଗବତ ଇତ୍ୟାଦି ଶାସ୍ତ୍ର ଶ୍ରବଣ ଏବଂ ସାଧୁସଙ୍ଗ ଆଦି କାର୍ଯ୍ୟରେ ହିଁ ସେତେବେଳେ ତାଙ୍କର ଦିନ କଟୁଥିଲା ଏବଂ ସେହି ଭାବରେ ସେ ବୈଷ୍ଣବ ସମ୍ପ୍ରଦାୟ ଭିତରେ ଭଲ ଏବଂ ମନ୍ଦ ଯାହା କିଛି ଥିଲା ସେସବୁ ସହିତ ସୁପରିଚିତ ହେବାର ବିଶେଷ ସୁଯୋଗ ସେହି ସମୟରେ ପାଇଥିଲେ । ପରେ କାର୍ଯ୍ୟବଶତଃ କଲିକତା ଆସିବାର କିଛି କାଳ ପରେ ହିଁ ଠାକୁରଙ୍କ ଦର୍ଶନ ଓ ପବିତ୍ରସଙ୍ଗଲାଭରେ ତାଙ୍କର ଜୀବନ କିପରି ଦିନକୁ ଦିନ ପରିବର୍ତ୍ତିତ ହେଲା, ସେବିଷୟରେ ଆଭାସ ଆମେ ଏହାପୂର୍ବରୁ ଦେଇଅଛୁ ।

**ବଳରାମଙ୍କର କଲିକତା ଆଗମନ ଓ ଠାକୁରଙ୍କୁ ଦର୍ଶନ :**

ପ୍ରଥମ କନ୍ୟାର ବିବାହ ଦେବା ସମୟରେ ବଳରାମ କେତେ ସପ୍ତାହ ପାଇଁ କଲିକତା ଆସିଥିଲେ । ନତୁବା ପୁରୀଧାମରେ ରହିବାର ଏଗାର ବର୍ଷ ମଧ୍ୟରେ ତାଙ୍କ ଜୀବନରେ ଅନ୍ୟ କୌଣସି ପ୍ରକାରର ଶାନ୍ତିଭଙ୍ଗ ହୋଇ ନାହିଁ । ଏହି ଘଟଣାର କିଛି କାଳ ପରେ ହିଁ ତାଙ୍କର ଅନ୍ୟ ଦାଦାଙ୍କ ପୁଅ ହରିବଲ୍ଲଭ ବସୁ ରାମକାନ୍ତ ବସୁ ଷ୍ଟ୍ରୀଟ୍‌ସ୍ଥ ୫୭ ନଂ ଘର କିଣିଥିଲେ ଓ ସାଧୁମାନଙ୍କ ସହିତ ଘନିଷ୍ଠ ସମ୍ବନ୍ଧବଶତଃ କାଳେ ବଳରାମ ସଂସାର ପରିତ୍ୟାଗ କରିବେ, ଏହି ଭୟରେ ତାଙ୍କର ପିତା ଓ ଭ୍ରାତୃଗଣ ଗୋପନରେ ପରାମର୍ଶ କରି ତାଙ୍କୁ ସେହି ଘରେ ରହିବାକୁ ଅନୁରୋଧ କରିଥିଲେ । ସେହି ଭାବରେ ସାଧୁମାନଙ୍କର ପବିତ୍ର ସଙ୍ଗ ଏବଂ ଶ୍ରୀଶ୍ରୀଜଗନ୍ନାଥଦେବଙ୍କର ନିତ୍ୟ ଦର୍ଶନରୁ ବଞ୍ଚିତ ହୋଇ ବଳରାମ କ୍ଷୁଣ୍ଣମନରେ କଲିକତାକୁ ଆସି ରହିଲେ । ଏଠାରେ କିଛି ଦିନ ରହି ପୁଣି ପୁରୀଧାମକୁ କୌଣସି ମତେ ଚାଲିଯିବେ, ବୋଧହୁଏ ତାଙ୍କର ଏପରି ଅଭିପ୍ରାୟ ଥିଲା, କିନ୍ତୁ ଠାକୁରଙ୍କର ଦର୍ଶନଲାଭ ପରେ ସେହି ସଂକଳ୍ପ ସମ୍ପୂର୍ଣ୍ଣ ପରିତ୍ୟାଗ କରି ସେ ଠାକୁରଙ୍କ ନିକଟରେ କଲିକତାରେ ସ୍ଥାୟୀ ଭାବରେ ବସବାସର ବନ୍ଦୋବସ୍ତ କରିଥିଲେ । ସୁତରାଂ କାଳେ ହରିବଲ୍ଲଭବାବୁ ତାଙ୍କୁ ଉକ୍ତ ଘର ଖାଲି କରିବାକୁ କହିବେ, ଅଥବା ନିମାଇବାବୁ ବିଷୟ ସମ୍ପତ୍ତିର ତତ୍ତ୍ୱାବଧାନ କରିବା ପାଇଁ ତାଙ୍କୁ କୋଠାରକୁ ଡାକି ନେଇ ଠାକୁରଙ୍କର ପୁଣ୍ୟ ସଙ୍ଗରୁ ବଞ୍ଚିତ କରିବେ, ଏହି ଭୟରେ ତାଙ୍କର ଅନ୍ତର ବେଳେ ବେଳେ ବିଶେଷ ବ୍ୟାକୁଳ ହେଉଥିଲା ।

**ବଳରାମଙ୍କର ଭ୍ରାତା ହରିବଲ୍ଲଭଙ୍କର କଲିକତା ଆଗମନ :**

ଅନ୍ତରର ଚିନ୍ତା ବେଳେ ବେଳେ ଭବିଷ୍ୟତ ଘଟଣାର ସୂଚନା ଦେଇଥାଏ । ବଳରାମଙ୍କର ଏବେ ସେପରି ହୋଇଥିଲା । ସେ ଯାହା ଭୟ କରୁଥିଲେ ପ୍ରାୟ

ତାହା ହିଁ ହେଲା । ଆତ୍ମୀୟବର୍ଗଙ୍କର ଗୁପ୍ତ ପ୍ରେରଣାରେ ତାଙ୍କର ଉଭୟ ଭ୍ରାତା ହିଁ ତାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇଛନ୍ତି ବୋଲି ଚିଠି ପଠାଇଲେ ଏବଂ ହରିବଲ୍ଲଭବାବୁ ତାଙ୍କ ସହିତ ପରାମର୍ଶ ଅତ୍ୟନ୍ତ ଜରୁରୀ ବୋଲି ଶୀଘ୍ର କଲିକତାକୁ ଆସି ତାଙ୍କ ସହିତ କେତେ ଦିନ ଏକାଠି ରହିବେ, ଏସମ୍ବାଦ ମଧ୍ୟ ତାଙ୍କୁ ଅବିଳମ୍ବେ ଜଣାଇଥିଲେ ! କିଛି ଅନ୍ୟାୟ କରି ନାହାନ୍ତି ବୋଲି ବଳରାମଙ୍କର ଅନ୍ତରାତ୍ମା ଏଥିରେ କ୍ଷୁବ୍ଧ ନ ହେଲେ ମଧ୍ୟ ଘଟଣାଚକ୍ର ତାଙ୍କୁ ଠାକୁରଙ୍କଠାରୁ ଦୂରକୁ ନେଇଯିବ, ଏହି ଭୟରେ ଅବସନ୍ନ ହେଲା । ପରେ ଅନେକ ଚିନ୍ତା କରିବା ପରେ ସେ ସ୍ଥିର କଲେ, ଭାଇମାନେ ଅନ୍ୟମାନଙ୍କର କଥାଶୁଣି ଯଦି ତାଙ୍କୁ ଦୋଷୀ ସାବ୍ୟସ୍ତ କରନ୍ତି ତଥାପି ସେ ଠାକୁରଙ୍କର ଅସୁସ୍ଥତା ସମୟରେ ତାଙ୍କୁ ଛାଡ଼ି ଅନ୍ୟତ୍ର ଯିବେ ନାହିଁ । ଇତିମଧ୍ୟରେ ହରିବଲ୍ଲଭବାବୁ ମଧ୍ୟ କଲିକତାରେ ଉପସ୍ଥିତ ହେଲେ । ତାଙ୍କ ସହିତ ରହିବାବେଳେ ଭାଇର ଯେପରି କୌଣସି ପ୍ରକାରର କଷ୍ଟ ବା ଅସୁବିଧା ନ ହେବ, ସେହି ଭାବରେ ସମସ୍ତ ବିଷୟରେ ସୁବନ୍ଦୋବସ୍ତ କରି ବଳରାମ ନିଜ ସଂକଳ୍ପ ଦୃଢ଼ ରଖି ନିଶ୍ଚିନ୍ତ ମନରେ ରହିଲେ ଏବଂ ଠାକୁରଙ୍କ ନିକଟକୁ ପ୍ରତିଦିନ ଯେପରି ଯିବା ଆସିବା କରୁଥିଲେ, ପ୍ରକାଶ୍ୟଭାବରେ ସେପରି କରିବାକୁ ଲାଗିଲେ ।

### ବଳରାମଙ୍କ ପ୍ରତି କୃପାରେ ଠାକୁରଙ୍କର ହରିବଲ୍ଲଭଙ୍କୁ ଦେଖିବାର ସଂକଳ୍ପ :

ମୁଖ ହିଁ ମନର ପ୍ରକୃତ ଦର୍ପଣ । ହରିବଲ୍ଲଭ ବସୁଙ୍କର କଲିକତା ଆସିବା ଦିନ ବଳରାମ ଠାକୁରଙ୍କ ନିକଟରେ ଉପସ୍ଥିତ ହେବାରୁ ଠାକୁର ତାଙ୍କ ମୁହଁ ଦେଖି ହିଁ ବୁଝିପାରିଲେ ତାଙ୍କର ଅନ୍ତର ମଧ୍ୟରେ କୌଣସି ଏକ ସଂଗ୍ରାମ ଚାଲିଛି । ବଳରାମଙ୍କୁ ସେ ବିଶେଷ ଭାବରେ ନିଜର ବୋଲି ଜ୍ଞାନ କରୁଥିଲେ; ତାଙ୍କ ଦୁଃଖରେ ବ୍ୟଥିତ ହୋଇ ତାଙ୍କୁ ନିଜ ସମୀପକୁ ଡାକି ପ୍ରଶ୍ନ ପଚାରି ସମସ୍ତ ବିଷୟ ଜାଣି ନେଲେ ଏବଂ କହିଲେ, ''ସେ କିପରି ଲୋକ ? ତାଙ୍କୁ (ହରିବଲ୍ଲଭଙ୍କୁ) ଦିନେ ଏଠାକୁ ଆଣିପାରିବ ?'' ବଳରାମ କହିଲେ, ''ଖୁବ୍ ଭଲ ଲୋକ ମହାଶୟ ! ବିଦ୍ୱାନ, ବୁଦ୍ଧିମାନ, ସଦାଶୟ, ପରୋପକାରୀ, ଯଥେଷ୍ଟ ଦାନୀ, ଭକ୍ତିମାନ ମଧ୍ୟ, ଦୋଷ ମଧ୍ୟରେ ବଡ଼ଲୋକଙ୍କର ଯାହା ଅନେକ ସମୟରେ ହୋଇଥାଏ ଟିକିଏ 'କାନ ପତଳା'[୧] — ଏହି ବିଷୟରେ ଅନ୍ୟମାନଙ୍କ କଥାରେ ପଡ଼ି କ'ଣ ଗୋଟିଏ ଠଉରାଇଛନ୍ତି । ଏଠାକୁ ଆସୁଛି ବୋଲି ମୋ ଉପରେ ଅସନ୍ତୁଷ୍ଟ, ଅତଏବ ମୁଁ କହିଲେ ଏଠାକୁ କ'ଣ ଆସିବେ ?'' ଠାକୁର କହିଲେ, ''ତେବେ ଥାଉ, ତୁମେ କହିବା ଦରକାର ନାହିଁ; ଥରେ ଗିରିଶକୁ ଡାକି ଆଣ ତ ।''

---

୧. ଘଟଣାର ସତ୍ୟାସତ୍ୟ ନ ଜାଣି ପରକଥାରେ ବିଶ୍ୱାସ କରିବା ।

ଗିରିଶଚନ୍ଦ୍ର ଆସି ସାନନ୍ଦରେ ଏକାର୍ଯ୍ୟର ଭାର ଗ୍ରହଣ କଲେ ଏବଂ କହିଲେ, ''ହରିବଲ୍ଲଭ ଓ ମୁଁ ଯୌବନର ପ୍ରାରମ୍ଭରେ କିଛିକାଳ ସହପାଠୀ ଥିଲୁ, ସେଥିପାଇଁ କଲିକତାକୁ ଆସିଛି ଶୁଣିଲେ ହିଁ ମୁଁ ତାହା ସହିତ ଥରେ ଦେଖା କରି ଆସେ; ଅତଏବ ଏହି କାମ ମୋ ପକ୍ଷରେ ଆଦୌ କଷ୍ଟକର ନୁହେଁ, ଆଜି ହିଁ ମୁଁ ତାଙ୍କ ସହିତ ସାକ୍ଷାତ କରିବାକୁ ଯିବି ।''

**ଗିରିଶଚନ୍ଦ୍ର ହରିବଲ୍ଲଭଙ୍କୁ ଆଣିବା ଓ ଠାକୁରଙ୍କର ଆଚରଣରେ ତାଙ୍କର ସମ୍ପୂର୍ଣ୍ଣ ବିପରୀତ ଭାବାପନ୍ନ ହେବା :**

ପରଦିନ ଅପରାହ୍ଣ ପ୍ରାୟ ପାଞ୍ଚଟା ସମୟରେ ଗିରିଶଚନ୍ଦ୍ର ହରିବଲ୍ଲଭବାବୁଙ୍କୁ ସାଙ୍ଗରେ ନେଇ ଆସିଲେ ଏବଂ ଠାକୁରଙ୍କ ସହିତ ତାଙ୍କୁ ପରିଚିତ କରାଇବା ପାଇଁ କହିଲେ, ''ଏ ମୋର ବାଲ୍ୟବନ୍ଧୁ, କଟକର ସରକାରୀ ଓକିଲ ହରିବଲ୍ଲଭ ବସୁ, ଆପଣଙ୍କୁ ଦର୍ଶନ କରିବାକୁ ଆସିଛନ୍ତି ।'' ଠାକୁର ସେକଥା ଶୁଣି ତାଙ୍କୁ ପରମ ଆଦରରେ ନିଜ ପାଖରେ ବସାଇ କହିଲେ, ''ତୁମ କଥା ଅନେକଙ୍କଠାରୁ ଶୁଣି ତୁମକୁ ଦେଖିବାକୁ ଇଚ୍ଛା ହେଉଥିଲା, ପୁଣି ମନରେ ଭୟ ଥିଲା — ଯଦି ତୁମର ଦୁନିଆଦାରୀ ବୁଦ୍ଧି ହୁଏ ! (ଗିରିଶଙ୍କୁ ଲକ୍ଷ୍ୟ କରି) କିନ୍ତୁ ଏବେ ଦେଖୁଛି ତାହା ତ ନୁହେଁ, (ହରିବଲ୍ଲଭ ବସୁଙ୍କୁ ଦେଖାଇ) ଇଏ ଯେ ବାଳକ ସଦୃଶ ସରଳ ! (ଗିରିଶଙ୍କୁ) କିପରି ଚକ୍ଷୁ ଦେଖୁଛ ? ଭକ୍ତିପୂର୍ଣ୍ଣ ଅନ୍ତର ନ ହେଲେ ଏପରି ଚକ୍ଷୁ କଦାପି ହୁଏ ନାହିଁ ! (ହରିବଲ୍ଲଭବାବୁଙ୍କୁ ହଠାତ୍ ସ୍ପର୍ଶ କରି) ହଁ ଗୋ, ଭୟ କରିବା ଦୂରରେ ଥାଉ, ତୁମକୁ ଯେପରି ଆତ୍ମୀୟ ବୋଲି ମନେ ହେଉଛି ।''ହରିବଲ୍ଲଭବାବୁ ପ୍ରଣାମ ଓ ପଦଧୂଳି ଗ୍ରହଣପୂର୍ବକ କହିଲେ, ''ତାହା ଆପଣଙ୍କର କୃପା ।''

ଗିରିଶଚନ୍ଦ୍ର ଏଥର କହିଲେ, ''ଯେଉଁ ବଂଶରେ ଜନ୍ମଗ୍ରହଣ କରିଛନ୍ତି ସେଥିରେ ତାଙ୍କର ତ ଭକ୍ତିମାନ ହେବାର ହିଁ କଥା; କୃଷ୍ଣରାମ ବସୁଙ୍କର ଭକ୍ତି ତାଙ୍କୁ ପ୍ରାତଃସ୍ମରଣୀୟ କରି ରଖିଅଛି, ତାଙ୍କର କୀର୍ତ୍ତିରେ ଦେଶ ଉଜ୍ଜ୍ୱଳ ହୋଇ ରହିଅଛି । ତାଙ୍କ ବଂଶରେ ଯେଉଁମାନେ ଜନ୍ମିଛନ୍ତି ସେମାନେ ଭକ୍ତିମାନ ହେବେ ନାହିଁ ତ ଆଉ କିଏ ହେବ ।''

ଏହିପରି ଭଗବତ୍ ଭକ୍ତିର ପ୍ରସଙ୍ଗ ଉଠିଲା, ଏବଂ ଈଶ୍ୱର ବିଶ୍ୱାସ, ଭକ୍ତି ଓ ଐକାନ୍ତିକ ନିର୍ଭରତା ହିଁ ମାନବଜୀବନର ଚରମ ସାର୍ଥକତା — ସେବିଷୟରେ ଅନେକ କଥା ଉପସ୍ଥିତ ସମସ୍ତଙ୍କୁ କହୁ କହୁ ଠାକୁରଙ୍କର ଭାବାବେଶ ହେଲା । ଅନନ୍ତର ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇ ଠାକୁର ଆମମଧ୍ୟରୁ ଜଣଙ୍କୁ ଗୋଟିଏ ଭଜନ ଗାଇବାକୁ କହିଲେ ଏବଂ ତାହାର ମର୍ମ ହରିବଲ୍ଲଭବାବୁଙ୍କୁ ମୃଦୁସ୍ୱରରେ ବୁଝାଇ କହୁ କହୁ ପୁନରାୟ ଗଭୀର ଭାବାବିଷ୍ଟ ହୋଇପଡ଼ିଲେ । ସଙ୍ଗୀତ ଶେଷ ହେଲା ବେଳକୁ ଦେଖାଗଲା, ଦୁଇ-ତିନିଜଣ ଯୁବକ ଭକ୍ତଙ୍କ ମଧ୍ୟ ଭାବାବେଶ

ହୋଇଛି ଏବଂ ଠାକୁରଙ୍କର ଭାବୋଜ୍ଜ୍ୱଳ ମୂର୍ତ୍ତି ଏବଂ ମର୍ମସ୍ପର୍ଶୀ ବାଣୀରେ ଏକାନ୍ତ ଭାବରେ ମୁଗ୍ଧ ହୋଇ ହରିବଲ୍ଲଭବାବୁଙ୍କର ନୟନଦ୍ୱୟରୁ ପ୍ରେମଧାରା ବିଗଳିତ ହେଉଅଛି । ସନ୍ଧ୍ୟାର କିଛି ସମୟ ପରେ ହରିବଲ୍ଲଭବାବୁ ସେଦିନ ଠାକୁରଙ୍କ ନିକଟରୁ ବିଦାୟ ଗ୍ରହଣ କରିଥିଲେ ।

**କଥାବାର୍ତ୍ତା କରିବା ସମୟରେ ଠାକୁରଙ୍କର ଅନ୍ୟକୁ ସ୍ପର୍ଶ କରିବାର କାରଣ ଓ ଫଳ :**

ଦକ୍ଷିଣେଶ୍ୱରରେ ଥିବା ସମୟରେ ଆମେ ଅନେକ ସମୟ ଦେଖିବାକୁ ପାଉଥିଲୁ, ଆଗନ୍ତୁକ କୌଣସି ବ୍ୟକ୍ତି ଠାକୁରଙ୍କ ମତର ବିରୋଧୀ ହୋଇ ତାଙ୍କ ସହିତ ବାଦାନୁବାଦ ଆରମ୍ଭ କଲେ, ଅଥବା କୌଣସି କାରଣରୁ ତାଙ୍କ ପ୍ରତି ବିରୁଦ୍ଧଭାବାପନ୍ନ ହୋଇ କେହି ପହଞ୍ଚିଲେ, ଠାକୁର କଥା କହୁ କହୁ ସେମାନଙ୍କୁ କୌଶଳ କ୍ରମେ ସ୍ପର୍ଶ କରୁଥିଲେ ଏବଂ ସେପରି କରିବାର ପରମୁହୂର୍ତ୍ତରୁ ହିଁ ସେମାନେ ତାଙ୍କ କଥା ମାନି ନେଉଥିଲେ । ଅବଶ୍ୟ ଯେଉଁମାନଙ୍କୁ ଦେଖି ତାଙ୍କର ମନ ପ୍ରସନ୍ନ ହେଉଥିଲା, ସେମାନଙ୍କ ସହିତ ହିଁ ସେ ଏପ୍ରକାର ବ୍ୟବହାର କରୁଥିଲେ । ସ୍ୱତଃପ୍ରବୃତ୍ତ ହୋଇ ସେ ଦିନେ ଆମମାନଙ୍କୁ ଏବିଷୟର କାରଣ ଏହିପରି କହିଥିଲେ—''ଅହଂକାରର ବଶବର୍ତ୍ତୀ ହୋଇ ଅଥବା ମୁଁ କାହାଠାରୁ କୌଣସି ଅଂଶରେ ନ୍ୟୁନ ନୁହେଁ, ଏପ୍ରକାର ଭାବ ନେଇ ହିଁ ଲୋକେ କାହା କଥା ସହଜରେ ମାନିବାକୁ ଚାହିଁ ନ ଥାନ୍ତି । (ନିଜର ଶରୀରକୁ ଦେଖାଇ) ଏହା ଭିତରେ ଯିଏ ରହିଛନ୍ତି ତାକୁ ସ୍ପର୍ଶମାତ୍ରେ ତାଙ୍କର ଦିବ୍ୟଶକ୍ତି ପ୍ରଭାବରେ ସେମାନଙ୍କର ସେହି ଭାବ ଆଉ ମୁଣ୍ଡ ଟେକିପାରେ ନାହିଁ । ସର୍ପ ଯେପରି ଫଣା ଟେକିବା ବେଳେ ଓଷଧିସ୍ପୃଷ୍ଟ ହୋଇ ମୁଣ୍ଡ ତଳକୁ କରେ, ସେମାନଙ୍କର ଅନ୍ତରର ଅହଂକାରର ଅବସ୍ଥା ମଧ୍ୟ ସେତେବେଳେ ଠିକ୍ ସେହିପରି ହୋଇଥାଏ । ସେଥିପାଇଁ କଥା କହୁ କହୁ କୌଶଳରେ ସେମାନଙ୍କର ଅଙ୍ଗ ସ୍ପର୍ଶ କରିଥାଏ ।''

ହରିବଲ୍ଲଭବାବୁ ସେଦିନ ଠାକୁରଙ୍କ ନିକଟରୁ ସମ୍ପୂର୍ଣ୍ଣ ବିପରୀତ ଭାବ ନେଇ ସଶ୍ରଦ୍ଧ ହୃଦୟରେ ଫେରିଯିବା ଦେଖି ଆମମାନଙ୍କ ମନରେ ଠାକୁରଙ୍କର ପୂର୍ବୋକ୍ତ କଥାର ଉଦୟ ହୋଇଥିଲା । କହିବା ବାହୁଲ୍ୟ, ବଳରାମ ଠାକୁରଙ୍କ ନିକଟକୁ ଯିବା ଆସିବା କରି ଅନ୍ୟାୟ କରୁଛନ୍ତି, ଏପରି ଭାବ ତାଙ୍କ ଭ୍ରାତୃଦ୍ୱୟଙ୍କ ହୃଦୟରେ ସେବେଠାରୁ ଆଉ କେବେ ଦେଖାଦେଇ ନାହିଁ ।

**ଭକ୍ତସଂଖ୍ୟା ବୃଦ୍ଧି, ସାଧନପଥ ନିର୍ଦ୍ଦେଶ କରିବା—ସାକାର ଓ ନିରାକାର ଚିନ୍ତାର ଉପଯୋଗୀ ଆସନ :**

ଶ୍ୟାମପୁକୁରରେ ଅବସ୍ଥାନ ସମୟରେ ଠାକୁରଙ୍କର ଶାରୀରିକ ବ୍ୟାଧି ଯେପରି ବୃଦ୍ଧି ହୋଇଥିଲା, ତାଙ୍କର ପୁଣ୍ୟଦର୍ଶନ ଓ କୃପାଲାଭରେ ସମାଗତ

ଜନଗଣଙ୍କ ସଂଖ୍ୟା ମଧ୍ୟ ସେପରି ଦିନକୁ ଦିନ ବଢ଼ି ଚାଲିଥିଲା । ଶ୍ରୀଯୁକ୍ତ ହରିଶଚନ୍ଦ୍ର ମୁସ୍ତଫିପ୍ରମୁଖ ଅନେକ ଗୃହସ୍ଥଭକ୍ତଙ୍କ ପରି ଶ୍ରୀରାମକୃଷ୍ଣ-ଭକ୍ତ ସଂଘରେ ଯିଏ ପରେ ସ୍ୱାମୀ ତ୍ରିଗୁଣାତୀତ ନାମରେ ସୁପରିଚିତ ହୋଇଥିଲେ—ଶ୍ରୀଯୁକ୍ତ ସାରଦାପ୍ରସନ୍ନ ମିତ୍ର,[୧] ମଣୀନ୍ଦ୍ର କୃଷ୍ଣ ଗୁପ୍ତ[୨] ପ୍ରଭୃତି ଅନେକ ଯୁବକ ଭକ୍ତମାନେ ମଧ୍ୟ ଏଠାରେ ଠାକୁରଙ୍କର ପ୍ରଥମଦର୍ଶନ ଲାଭ କରିଥିଲେ । ଅନେକ ବ୍ୟକ୍ତି ଏହାପୂର୍ବରୁ ଥରେ ଦୁଇଥର ଦକ୍ଷିଣେଶ୍ୱର ଯିବା ଆସିବା କରିଥିଲେ ମଧ୍ୟ ଏଠାରେ ହିଁ ଠାକୁରଙ୍କ ସହିତ ଘନିଷ୍ଠ ଭାବରେ ମିଶିବାର ସୁଯୋଗ ପାଇଥିଲେ । ନବାଗତ ଏହି ସମସ୍ତ ବ୍ୟକ୍ତିମାନଙ୍କର ପ୍ରକୃତି ଓ ସଂସ୍କାର ଲକ୍ଷ୍ୟ କରି ଠାକୁର ପ୍ରତ୍ୟେକଙ୍କୁ ଭକ୍ତିପ୍ରଧାନ ଅଥବା ଜ୍ଞାନମିଶ୍ରା ଭକ୍ତିପ୍ରଧାନ ସାଧନମାର୍ଗ ନିର୍ଦ୍ଦେଶ କରିଦେଉଥିଲେ ଏବଂ ସୁଯୋଗ ପାଇଲେ ନିଭୃତରେ ନାନାପ୍ରକାର ଉପଦେଶ ଦେଇ ସେହି ପଥରେ ଅଗ୍ରସର କରାଉଥିଲେ । ଆମକୁ ଜଣାଅଛି, ଜନୈକ ଯୁବକଙ୍କୁ ସେହି ପ୍ରକାରରେ ଠାକୁର ଦିନେ ସାକାର ଓ ନିରାକାର ଧ୍ୟାନର ଉପଯୋଗୀ ନାନାପ୍ରକାର ଆସନ ଏବଂ ଅଙ୍ଗସଂସ୍ଥାନ ଦେଖାଉଥିଲେ । ପଦ୍ମାସନରେ ଉପବିଷ୍ଟ ହୋଇ ବାମ କରତଳ ଉପରେ ଦକ୍ଷିଣକରପୃଷ୍ଠ ସଂସ୍ଥାନପୂର୍ବକ ଏହି ଭାବରେ ଉଭୟହସ୍ତ ବକ୍ଷରେ ଧାରଣ ଓ ଚକ୍ଷୁ ନିମୀଳନ କରି କହିଲେ, ଏହା ହିଁ ସମସ୍ତ ପ୍ରକାର ସାକାର ଧ୍ୟାନର ପ୍ରଶସ୍ତ ଆସନ । ପରେ ସେହି ଆସନରେ ହିଁ ଉପବିଷ୍ଟ ରହି ବାମ ଓ ଦକ୍ଷିଣ ହସ୍ତଦ୍ୱୟ ବାମ ଓ ଦକ୍ଷିଣ ଜାନୁ ଉପରେ ରକ୍ଷାପୂର୍ବକ ପ୍ରତ୍ୟେକ ହସ୍ତର ଅଙ୍ଗୁଷ୍ଠ ଓ ତର୍ଜନୀର ଅଗ୍ରଭାଗ ସଂଯୁକ୍ତ ଏବଂ ଅନ୍ୟ ସମସ୍ତ ଆଙ୍ଗୁଳି ସିଧା ରଖି ଏବଂ ଭ୍ରୂମଧ୍ୟରେ ଦୃଷ୍ଟି ସ୍ଥିର କରି କହିଲେ, ଏହା ହିଁ ନିରାକାର ଧ୍ୟାନର ପ୍ରଶସ୍ତ ଆସନ । ସେହିକଥା କହୁ କହୁ ଠାକୁର ସମାଧିସ୍ଥ ହୋଇପଡ଼ିଲେ ଏବଂ କିଛି ସମୟ ପରେ ବଳପୂର୍ବକ ମନକୁ ସାଧାରଣ ଜ୍ଞାନଭୂମିକୁ ଅବତରଣ କରାଇ କହିଲେ, "ଆଉ ଦେଖାଇବା ହେଲା ନାହିଁ; ସେପରି ଉପବିଷ୍ଟ ହେଲେ ହିଁ ଉଦ୍ଦୀପନା ହୋଇ ମନ ତନ୍ମୟ ଓ ସମାଧିଲୀନ ହୁଏ ଏବଂ ବାୟୁ ଊର୍ଦ୍ଧ୍ୱଗାମୀ ହୋଇ କଣ୍ଠଦେଶର କ୍ଷତସ୍ଥାନରେ ଆଘାତ ଲାଗେ; ଡାକ୍ତର ସେଥିପାଇଁ ସମାଧି ଯେପରି ନ ହୁଏ ତାହା କରିବାକୁ ବିଶେଷ ଭାବରେ କହିଛନ୍ତି ।" ଯୁବକ ଏଥିରେ କାତର ହୋଇ କହିଲେ, "ଆପଣ କାହିଁକି ଏସବୁ ଦେଖାଇବାକୁ ଗଲେ, ମୁଁ ତ ଦେଖିବାକୁ ଚାହିଁ ନ ଥିଲି ।" ସେ କହିଲେ, "ତା ତ ଠିକ୍, କିନ୍ତୁ ତୁମମାନଙ୍କୁ ଟିକିଏ ଅଧେ ନ କହି, ନ ଦେଖାଇ କିପରି ରହିପାରିବି ?"

---

୧. ସାରଦାପ୍ରସନ୍ନ ୧୮୮୪ ଖ୍ରୀ.ର ଡିସେମ୍ବର ମଝିରେ ଆସିଥିଲେ—ବଙ୍ଗଳା 'କଥାମୃତ' ୨ୟ ଭାଗ ୨୧୫ପୃଷ୍ଠା ଓ ୧ମ ଭାଗ, ୬ ପୃ. ଦ୍ରଷ୍ଟବ୍ୟ—ପ୍ରଃ

୨. ଶ୍ରୀରାମକୃଷ୍ଣ ଦେବଙ୍କ ସହିତ ମଣୀନ୍ଦ୍ରକୃଷ୍ଣ ଗୁପ୍ତ ମହାଶୟଙ୍କ ପ୍ରଥମେ ଏଠାରେ ପରିଚୟ ହୁଏ । ଏହାର ୨/୩ ବର୍ଷ ପୂର୍ବରୁ ଦକ୍ଷିଣେଶ୍ୱରରେ କେତେଥର ଦର୍ଶନ ମାତ୍ର କରିଥିଲେ—ତାଙ୍କ ଦ୍ୱାରା ଲିଖିତ 'ଶ୍ରୀଶ୍ରୀଠାକୁର ରାମକୃଷ୍ଣଦେବଙ୍କ ପୁଣ୍ୟସ୍ମୃତି', ଉଦ୍‌ବୋଧନ, ୩୯ଶ ବର୍ଷ, ଭାଦ୍ର ସଂଖ୍ୟା ଦ୍ରଷ୍ଟବ୍ୟ । —ପ୍ରଃ

ଯୁବକ ଏହି କଥାରେ ବିସ୍ମିତ ହୋଇ ଠାକୁରଙ୍କର ଅପାର କରୁଣା ଏବଂ ତାଙ୍କର ମନର ଅଲୌକିକ ସମାଧିପ୍ରବଣତା କଥା ଭାବି ସ୍ତବ୍ଧ ହୋଇ ରହିଲେ ।

**ଠାକୁରଙ୍କର ପ୍ରତି କାର୍ଯ୍ୟର ମାଧୁର୍ଯ୍ୟ ଓ ଅସାଧାରଣତ୍ୱ ଦେଖି ଅନେକଙ୍କର ଆକୃଷ୍ଟ ହେବା । ଦୃଷ୍ଟାନ୍ତ —ଉପେନ୍ଦ୍ର ମୁନ୍‌ସେଫ :**

ଠାକୁରଙ୍କର ଦୈନନ୍ଦିନ ବ୍ୟବହାର ମଧ୍ୟରେ ଏପରି ମାଧୁର୍ଯ୍ୟ ଓ ଅସାଧାରଣତ୍ୱର ପରିଚୟ ମିଳୁଥିଲା ଯେ, ନବାଗତ ଅନେକ ବ୍ୟକ୍ତି ତାହା ଦେଖି ହିଁ ମୁଗ୍ଧ ହୋଇଯାଉଥିଲେ । ଦୃଷ୍ଟାନ୍ତସ୍ୱରୂପ ନିମ୍ନରେ ଗୋଟିଏ ଘଟଣା ଉଲ୍ଲେଖ କରୁଛୁ । ଘଟଣାଟି ଆମେ ମହାକବି ଗିରିଶଚନ୍ଦ୍ରଙ୍କର ବନ୍ଧୁବତ୍ସଳ କନିଷ୍ଠ ସହୋଦର ପରଲୋକଗତ ଅତୁଳଚନ୍ଦ୍ର ଘୋଷ ମହାଶୟଙ୍କ ନିକଟରୁ ଶୁଣିଥିଲୁ । ଯଥାସମ୍ଭବ ତାଙ୍କରି ଭାଷାରେ ଆମେ ଏହା ଲିପିବଦ୍ଧ କରିବାକୁ ଚେଷ୍ଟା କରିବୁ— ''ଉପେନ୍ଦ୍ର[୧] ମୋର ବିଶେଷ ବନ୍ଧୁ ଥିଲା, ବିଦେଶରେ ଡେପୁଟି ଚାକିରି କରୁଥିଲା । ଠାକୁରଙ୍କ ସହିତ ପରିଚୟ ହେବାପରେ ତାକୁ ଚିଠି ଲେଖିଥିଲି, 'ଏଥର ଆସିଲେ ତୁମକୁ ଏକ ଅଦ୍ଭୁତ ଜିନିଷ ଦେଖାଇବି ।' ବଡ଼ଦିନ ଛୁଟିରେ ଆସି ସେ ସେହିକଥା ମନେପକାଇ ଦେଲା । ମୁଁ କହିଲି, 'ମନେ କରିଥିଲି ତୁମକୁ ରାମକୃଷ୍ଣ ପରମହଂସଦେବଙ୍କୁ ଦେଖାଇବି—କିନ୍ତୁ ଏବେ ସେ ଅସୁସ୍ଥ, ଶ୍ୟାମପୁକୁରରେ ଅଛନ୍ତି, କଥା କହିବାକୁ ଡାକ୍ତର ବାରଣ କରିଛନ୍ତି—ତୁମେ ନୂଆ ଲୋକ, ତୁମକୁ ଏବେ କିପରି ନେଇଯିବି ?' ସେଦିନ ଗଲା । ତା'ପରେ ଉପେନ୍ଦ୍ର ଆଉ ଦିନେ ମଝିଆ ଭାଇଙ୍କୁ (ଗିରିଶ ଚନ୍ଦ୍ରଙ୍କୁ) ଦେଖା କରିବାକୁ ଆସିଥିଲେ, ଠାକୁରଙ୍କ କଥା ଉଠିଲା ଏବଂ ମଝିଆ ଭାଇ ତାଙ୍କୁ କହିଲେ, 'ଯାଅ ଦିନେ ଅତୁଳ ସହିତ, ତାଙ୍କୁ ଦେଖି ଆସିବ ।' ଉପେନ୍ଦ୍ର କହିଲେ, 'ସେ ତ ଛଅମାସ ହେଲା କହୁଥିଲେ ନେଇଯିବି, କିନ୍ତୁ ଯେତେବେଳେ ଏଠାକୁ ଆସି ସେହି କଥା କହିଲି, ସେତେବେଳେ କହିଲେ—ଏବେ ହୋଇପାରିବ ନାହିଁ ।' ମୁଁ ଶୁଣି ମଝିଆ ଭାଇକୁ କହିଲି, 'ଆମେମାନେ ହିଁ ଏବେ ସବୁ ସମୟରେ ସେଠାକୁ ପଶି ପାରୁ ନାହୁଁ, ନୂଆ ଲୋକଙ୍କୁ କେମିତି ନେଇଯିବି ।' ମଝିଆ ଭାଇ କହିଲେ, 'ଯାହାହେଉ ପଛେ ଦିନେ ନେଇଯା, ତାପରେ ଯଦି ତା' ଭାଗ୍ୟରେ ଥାଏ ତେବେ ସେ ତାକୁ ଦର୍ଶନ ଦେବେ, ଆଦର କରିବେ ।'

**ଉପେନ୍ଦ୍ରଙ୍କର ଶ୍ୟାମପୁକୁର ଆସିବା ଓ ଠାକୁରଙ୍କର ସପ୍ରେମ ବ୍ୟବହାର ଉପଲବ୍ଧି କରିବା :**

''ତା ପରେ ଦିନେ ଅପରାହ୍ଣରେ ଉପେନଙ୍କୁ ନେଇ ଗଲି । ସେଦିନ ଠାକୁରଙ୍କ ଘରେ ତାଙ୍କ ବିଛଣା ପାଖରୁ ଦୁଇଟି ମଶିଣା ବିଛାଇ ଘର ଭର୍ତ୍ତି ଲୋକ

---

୧. ଶ୍ରୀଯୁକ୍ତ ଉପେନ୍ଦ୍ରନାଥ ଘୋଷ, ଶ୍ୟାମବଜାରସ୍ଥ ସୁପ୍ରସିଦ୍ଧ ଶ୍ରୀଯୁକ୍ତ ଭୁପେନ୍ଦ୍ର ନାଥ ବସୁ ମହାଶୟଙ୍କ କୌଣସି ଆତ୍ମୀୟଙ୍କୁ ବିବାହ କରିଥିଲେ ଏବଂ ମୁନ୍‌ସେଫ ଥିଲେ ।

ବସି ନାନା ପ୍ରକାର ଆଜେ-ବାଜେ କଥା ହେଉଛନ୍ତି—ଯେପରି, ଛବି ଆଙ୍କିବା କଥା (କାରଣ, ଚିତ୍ରବିଦ୍ୟାନିପୁଣ ଅନ୍ନଦା ବାଗ୍‌ଚି ସେଦିନ ସେଠାରେ ଥଲେ), ବଣିଆ ଦୋକାନରେ ସୁନାରୂପା ତରଳାଇବା କଥା[୧] ଇତ୍ୟାଦି । ଅନେକ ସମୟ

୧. ବଣିଆମାନଙ୍କର ସୁନାରୂପା ଚୋରି କରିବାର ଦକ୍ଷତା ସମ୍ବନ୍ଧରେ ଠାକୁର ଆମମାନଙ୍କୁ ଗୋଟିଏ ମଜା ଗଳ୍ପ ବେଳେ ବେଳେ କହୁଥିଲେ । ଅତୁଲବାବୁ ଏଠାରେ ସେହି ଗଳ୍ପଟିର ଇଙ୍ଗିତ କରିଛନ୍ତି । ଗଳ୍ପଟି ଏପରି—କେତେଜଣ ବନ୍ଧୁଙ୍କୁ ନେଇ ଜଣେ ବ୍ୟକ୍ତି ଗୋଟିଏ ଗହଣା ବିକ୍ରୟ ପାଇଁ ଏକ ବଣିଆ ଦୋକାନ୍‌ରେ ପହଞ୍ଚି ଦେଖିଲେ, ସର୍ବାଙ୍ଗ ତିଳକାଙ୍କିତ ଶିଖାମାଲ୍ୟଧାରୀ ବୃଦ୍ଧ ସ୍ୱର୍ଣ୍ଣକାର ସମ୍ମୁଖରେ ବସି ଗମ୍ଭୀରଭାବରେ ହରି-ନାମ କରୁଛନ୍ତି ଏବଂ ତାଙ୍କର ତିନି-ଚାରିଜଣ ସହକାରୀ ସେହିପ୍ରକାର ତିଳକମାଳାଦି ଧାରଣ କରି ଗୃହ ମଧ୍ୟରେ ନାନାବିଧ ଅଳଙ୍କାର ଗଠନରେ ନିଯୁକ୍ତ ଅଛନ୍ତି । ବୃଦ୍ଧ ସ୍ୱର୍ଣ୍ଣକାର ଓ ତାଙ୍କର ସହକାରୀମାନଙ୍କର ସାତ୍ତ୍ୱିକ ବେଶଭୂଷା ଦେଖି ସେହି ବ୍ୟକ୍ତି ଓ ତାଙ୍କର ବନ୍ଧୁଗଣ ଭାବିଲେ—ଏମାନେ ଧାର୍ମିକ, ଆମକୁ ଠକିବେ ନାହିଁ । ପରେ ଯେଉଁ ଅଳଙ୍କାର ଖଣ୍ଡିକ ସେମାନେ ବିକ୍ରୟ କରିବାକୁ ଆସିଥିଲେ, ତାହା ବୃଦ୍ଧଙ୍କ ସମ୍ମୁଖରେ ରଖି ତାହାର ପ୍ରକୃତ ମୂଲ୍ୟ ନିର୍ଦ୍ଧାରଣ ପାଇଁ ଅନୁରୋଧ କଲେ । ବୃଦ୍ଧ ମଧ୍ୟ ତାଙ୍କୁ ସାଦର ବସାଇ ଜଣେ ସହକାରୀଙ୍କୁ ତମାଖୁ ଦେବାକୁ କହିଲେ ଏବଂ କଷ୍ଟି ପଥରରେ ପରୀକ୍ଷା କରି ଅଳଙ୍କାରର ସ୍ୱର୍ଣ୍ଣର ଦାମ୍ କହି ସେମାନଙ୍କ ଅନୁମତି ଗ୍ରହଣପୂର୍ବକ ତାହା ତରଳାଇବା ନିମିତ୍ତ ଗୃହମଧ୍ୟସ୍ଥ ଏକ ସହକାରୀଙ୍କୁ ପ୍ରଦାନ କଲେ । ସେ ମଧ୍ୟ ତାହା ତତ୍‌କ୍ଷଣାତ୍ ତରଳାଇବାକୁ ଆରମ୍ଭ କରି ସହସା ଦେବତା ସ୍ମରଣପୂର୍ବକ କହିଉଠିଲା, 'କେଶବ, କେଶବ ।' ଈଶ୍ୱରୀୟ ଭାବର ଉଦ୍ଦୀପନାରେ ବୃଦ୍ଧ ମଧ୍ୟ ସଙ୍ଗେ ସଙ୍ଗେ କହିଉଠିଲେ, 'ଗୋପାଳ, ଗୋପାଳ ।' ଗୃହମଧ୍ୟସ୍ଥ ଏକ ସହକାରୀ ଏହା ପରେ ହିଁ କହି ଉଠିଲା, 'ହରି, ହରି, ହରି ।' ଯିଏ ତମାଖୁ ଆଣିଥିଲା ସେ ଇତି ମଧ୍ୟରେ ହୁକ୍‌କାଟି ଆଗନ୍ତୁକମାନଙ୍କୁ ପ୍ରଦାନପୂର୍ବକ ଗୃହମଧ୍ୟକୁ ପ୍ରବେଶ କରୁ କରୁ କହି ଉଠିଲା, 'ହର, ହର, ହର ।' ସେହିପ୍ରକାର କହିବା ମାତ୍ରେ ପ୍ରଥମୋକ୍ତ ସହକାରୀ କିଛିଟା ଗଳିତ ସ୍ୱର୍ଣ୍ଣ ସମ୍ମୁଖସ୍ଥ ଜଳପୂର୍ଣ୍ଣ ପାତ୍ରରେ ଦକ୍ଷତାର ସହିତ ନିକ୍ଷେପ କରି ଆତ୍ମସାତ୍ କଲା । ସ୍ୱର୍ଣ୍ଣକାର ଓ ତାହାର ସହକାରୀଗଣ ଶ୍ରୀଭଗବାନଙ୍କ ପୂର୍ବୋକ୍ତ ସବୁ ନାମ ଯେ ଭିନ୍ନ ଅର୍ଥରେ ବ୍ୟବହାର କରୁଛନ୍ତି, ଅର୍ଥାତ୍ 'କେଶବ' ନ କହି 'କେ ସବ' (କିଏ ଏମାନେ)—ଏମାନେ ଚତୁର ଅଥବା ନିର୍ବୋଧ, ଏହି କଥା ପଚାରୁଛନ୍ତି ଏବଂ ସେହି ପ୍ରଶ୍ନର ଉତ୍ତର ସ୍ୱରୂପ ହିଁ 'ଗୋ-ପାଳ' ଅଥବା ଗୋରୁ ପଲ ପରି ନିର୍ବୋଧ, ଏହି କଥା କହୁଛନ୍ତି ଏବଂ 'ହରି' ଓ 'ହର' ଶବ୍ଦଦ୍ୱୟ ଅପହରଣ 'କରେ' ଓ 'କର', ଏହି ଅର୍ଥରେ ଉଚ୍ଚାରଣ କରୁଛନ୍ତି—ଏକଥା ବୁଝି ନ ପାରି ଆଗନ୍ତୁକ ବ୍ୟକ୍ତିଗଣ ଏମାନଙ୍କର ଭକ୍ତି ଓ ଧର୍ମନିଷ୍ଠାରେ ପ୍ରୀତ ହୋଇ ନିଶ୍ଚିନ୍ତମନରେ ତମାଖୁ ସେବନ କରିବାକୁ ଲାଗିଲେ । ଅନନ୍ତର ଗଳିତ ସ୍ୱର୍ଣ୍ଣ ଓଜନ କରାଇ ତାହାର ମୂଲ୍ୟ ନେଇ ସେମାନେ ପ୍ରସନ୍ନ ମନରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଠାକୁରଙ୍କର ପରମଭକ୍ତ ଅଧରଚନ୍ଦ୍ର ସେନଙ୍କ ଭବନରେ ବଙ୍ଗର ସୁପ୍ରସିଦ୍ଧ ଔପନ୍ୟାସିକ ଶ୍ରୀଯୁକ୍ତ ବଙ୍କିମଚନ୍ଦ୍ରଙ୍କ ସହିତ ଯେଉଁ ଦିନ ତାଙ୍କର ସାକ୍ଷାତ୍ ହୋଇଥିଲା, ସେଦିନ ବଙ୍କିମବାବୁ ସନ୍ଦେହବାଦୀଙ୍କ ପକ୍ଷ ଅବଲମ୍ବନପୂର୍ବକ ଠାକୁରଙ୍କୁ ଧର୍ମ ବିଷୟକ ନାନା କୂଟ ପ୍ରଶ୍ନ କରିଥିଲେ । ଠାକୁର ସେଗୁଡ଼ିକର ଯଥାଯଥ ଉତ୍ତର ଦେବାପରେ ବଙ୍କିମଚନ୍ଦ୍ରଙ୍କୁ ପରିହାସପୂର୍ବକ କହିଥିଲେ, "ତୁମେ ନାମରେ ବଙ୍କିମ, କାର୍ଯ୍ୟରେ ମଧ୍ୟ ବଙ୍କିମ ।" ପ୍ରଶ୍ନଗୁଡ଼ିକର ହୃଦୟସ୍ପର୍ଶୀ ଉତ୍ତରଲାଭରେ ପ୍ରୀତ ହୋଇ ବଙ୍କିମବାବୁ କହିଥିଲେ, "ମହାଶୟ, ଆପଣଙ୍କୁ ଦିନେ ଆମ କାଁଠାଲପଡ଼ା ଗୃହକୁ ଯିବାକୁ ହେବ, ସେଠାରେ ଠାକୁରସେବାର ବନ୍ଦୋବସ୍ତ ଅଛି ଏବଂ ଆମେମାନେ ମଧ୍ୟ ହରିନାମ କରିଥାଉ ।" ଠାକୁର ଉତ୍ତରରେ ରହସ୍ୟକରି କହିଥିଲେ, "କିଭଳି ହରିନାମ ଗୋ, ବଣିଆମାନଙ୍କ ପରି ନୁହେଁ ତ ?"—କହି ପୂର୍ବୋକ୍ତ ଗଳ୍ପଟି ବଙ୍କିମ ଚନ୍ଦ୍ରଙ୍କୁ କହିଥିଲେ ଏବଂ ସଭାରେ ହାସ୍ୟରୋଳ ଉଠିଥିଲା ।

ବସି ରହିଲି, (ସେପରି କଥା ଛଡ଼ା) ଗୋଟିଏ ମଧ୍ୟ ଭଲ କଥା ହେଲା ନାହିଁ ! ଭାବିବାକୁ ଲାଗିଲି, ଆଜି ଏହି ନୂଆ ଲୋକକୁ ନେଇ ଆସିଲି ଆଉ ଆଜି ହିଁ ଯେତେ ଆଜେ-ବାଜେ କଥା ! ସେ (ଉପେନ)ଠାକୁରଙ୍କ ସମ୍ବନ୍ଧରେ କେଉଁ ପ୍ରକାର ଭାବ ନେଇ ଫେରିବ ! —ଏକଥା ଭାବି ମୋର ମୁହଁ ଶୁଖିବାକୁ ଲାଗିଲା ଏବଂ ମଝିରେ ମଝିରେ ଉପେନ୍ଦ୍ର ଆଡ଼କୁ ଡରି ଡରି ଅନାଇ ଦେଖିବାକୁ ଲାଗିଲି । କିନ୍ତୁ ଯେତେଥର ଦେଖିଲି, ଦେଖିଲି ତା'ର ମୁହଁ ବେଶ ପ୍ରସନ୍ନ—ଯେପରି ଏସବୁ କଥାରେ ସେ ବେଶ୍ ଆନନ୍ଦ ପାଉଛି । ସେତେବେଳେ ଈଶାରା କରି ତାକୁ ଉଠିବାକୁ କହିଲି, ସେ ସେଠାରେ ଆଉ କିଛି ସମୟ ବସିବାକୁ ଈଶାରାରେ ଜଣାଇଲା । ଏପରି ଦୁଇ-ତିନିଥର ଈଶାରା କରିବା ପରେ ସେ ଉଠିଆସିଲା । ସେତେବେଳେ ତାକୁ କହିଲି, 'ଏତେ ସମୟ କ'ଣ ଶୁଣୁଥିଲ ? ଏସବୁ କଥାରେ ଶୁଣିବାର କ'ଣ ଅଛି କୁହତ ? —ମିଛରେ କ'ଣ ତୋତେ ବାଙ୍ଗାଲ୍ କହେ !' ତାଙ୍କର କପାଳରେ ଗୋଟିଏ ଚିତା କୁଟାଯାଇଥିବା ଟିପା ଚିହ୍ନ ଥିଲା ବୋଲି ତାକୁ ଆମେ ସେପରି କହୁଥିଲୁ । ସେ କହିଲା, 'ନା ହେ, ବେଶ୍ ତ ଶୁଣୁଥିଲି । ପୂର୍ବେ ସମସ୍ତଙ୍କ ପ୍ରତି ସମାନ (universal love) ଭଲ ପାଇବା କଥାଟି ଶୁଣିଛି, କିନ୍ତୁ କାହାଠାରେ ମଧ୍ୟ ଏହାର ପ୍ରକାଶ ଦେଖି ନାହିଁ । ସବୁ ବିଷୟ ନେଇ ସମସ୍ତଙ୍କ ସାଙ୍ଗରେ ତାଙ୍କୁ (ଠାକୁରଙ୍କୁ) ଆନନ୍ଦ କରିବା ଦେଖି ଆଜି ତାହା ପ୍ରତ୍ୟକ୍ଷ କଲି । କିନ୍ତୁ ଆଉ ଦିନେ ଆସିବାକୁ ହେବ—ମୋର ତିନୋଟି ପ୍ରଶ୍ନ ଅଛି, ପଚାରିବି ।

''ତା'ପରେ ଦିନେ ସକାଳୁ ଉପେନ୍ଦ୍ରକୁ ନେଇଗଲି । ସେତେବେଳେ ଠାକୁରଙ୍କ ନିକଟରେ ବିଶେଷ କେହି ନ ଥିଲେ—କେବଳ, ସେବକମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ଏବଂ ମୋର ଭଗ୍ନୀପତି 'ମଲ୍ଲିକ ମହାଶୟ' ଥିଲେ ! ଯିବାବେଳେ ଉପେନ୍ଦ୍ରକୁ ବାରବାର କହିଥିଲି, 'ଯାହା ପଚାରିବା କଥା ନିଜେ ପଚାରିବୁ, ତା'ହେଲେ ମନ ମୁତାବକ ଉତ୍ତର ପାଇବୁ; କାହା ଦ୍ୱାରା ପ୍ରଶ୍ନ ପଚାରିବୁ ନାହିଁ ।' କିନ୍ତୁ ସେ ଚୁପଚାପ ପ୍ରକୃତିର ଥିଲା, ଯାହା ମନା କରିଥିଲି ସେଠାକୁ ଯାଇ ତାହା ହିଁ କଲା—ମଲ୍ଲିକ ମହାଶୟଙ୍କ ଦ୍ୱାରା ପ୍ରଶ୍ନ ପଚାରିଲା । ଠାକୁର ଉତ୍ତର ଦେଲେ, କିନ୍ତୁ ଉପେନ୍ଦ୍ରର ମୁହଁ ଦେଖି ବୁଝିଲି, ଉତ୍ତରଟି ତାର ମନ ମୁତାବକ ହେଲା ନାହିଁ । ମୁଁ ପୁଣି ତାକୁ ଆସ୍ତେ ଆସ୍ତେ କହିଲି, 'ଏପରି ତ ହେବ ହିଁ, ମୁଁ ତ' ତୋତେ ବାରମ୍ବାର କହିଥିଲି, ଯାହା ପଚାରିବା କଥା ନିଜେ ପଚାରିବୁ; ନିଜେ ନ ପଚାରି ମୋକ୍ତିଆର ଧରିଛୁ କାହିଁକି ?'

**ଈଶ୍ୱର ସାକାର ଓ ନିରାକାର ଉଭୟ; ଯେପରି ଜଳ ଏବଂ ବରଫ :**

''ସାହସ କରି ସେ ଏଥର ସ୍ୱୟଂ ପଚାରିଲା, 'ମହାଶୟ, ଈଶ୍ୱର ସାକାର ନା ନିରାକାର ? ପୁଣି ଯଦି ଉଭୟ ହୋଇଥାଆନ୍ତି ତା'ହେଲେ ଏକ ସଙ୍ଗରେ

ଏପରି ସମ୍ପୂର୍ଣ୍ଣ ବିପରୀତ ଭାବର ଦୁଇଟି କିପରି ହେବେ ?' ଠାକୁର ଏହା ଶୁଣି କହିଲେ, 'ସେ (ଈଶ୍ୱର) ସାକାର ଓ ନିରାକାର ଉଭୟ—ଯେପରି ଜଳ ଏବଂ ବରଫ' । ଉପେନ୍ କଲେଜରେ ବିଜ୍ଞାନ (Science Course)ପଢ଼ିଥିଲା, ସେଥିପାଇଁ ଠାକୁରଙ୍କର ପୂର୍ବୋକ୍ତ ଦୃଷ୍ଟାନ୍ତ ତାର ମନକୁ ପାଇଲା ଏବଂ ତାହା ସହାୟତାରେ ସେ ତାର ପ୍ରଶ୍ନର ଯଥାଯଥ ଉତ୍ତର ପାଇ ଆନନ୍ଦିତ ହେଲା । ସେହି ପ୍ରଶ୍ନ କରି ହିଁ ସେ ଚୁପ୍ ରହିଲା ଏବଂ କିଛି ସମୟ ପରେ ଠାକୁରଙ୍କୁ ପ୍ରଣାମ କରି ବିଦାୟ ନେଲା । ବାହାରେ ଆସି ତାକୁ ପଚାରିଲି, 'ଉପେନ୍, ତୁମେ ମୋତେ ତିନୋଟି ପ୍ରଶ୍ନର କଥା କହିଥିଲ, ଗୋଟିଏ ମାତ୍ର ପ୍ରଶ୍ନ ପଚାରି ଉଠି ଆସିଲ କାହିଁକି ?' ସେ କହିଲା, 'ତାହା ତୁମେ ବୁଝିପାରିଲ ନାହିଁ—ସେହି ଗୋଟିଏ ପ୍ରଶ୍ନର ଉତ୍ତରରେ ମୋର ତିନୋଟିଯାକ ପ୍ରଶ୍ନର ସମାଧାନ ହୋଇଯାଇଛି ।'

**ରାମଭାଇଙ୍କ କଥାରେ ଅତୁଲଙ୍କର ବିରକ୍ତି :**

''ତୁମର ବୋଧହୁଏ ମନେଅଛି, ରାମ ଭାଇ[1] ଏହି ସମୟରେ ପ୍ରାୟତଃ ଘରୁ ସକାଳୁ ଭୋଜନ କରି ଅଫିସର ଲୁଗାପଟା ସାଥିରେ ନେଇ ଠାକୁରଙ୍କ ନିକଟକୁ ଆସୁଥିଲେ ଏବଂ ଘଣ୍ଟାଏ-ଦୁଇଘଣ୍ଟା ଏଠାରେ କଟାଇ ପୋଷାକ ପରିବର୍ତ୍ତନ କରି କର୍ମସ୍ଥଳକୁ ଯାଉଥିଲେ । ଠାକୁର ଯେତେବେଳେ ଆଜି ଉପେନ୍ଦ୍ରଙ୍କର ପ୍ରଶ୍ନର ଉତ୍ତର ଦେଉଥିଲେ, ସେତେବେଳେ ସେ ଅଫିସ୍ ଯିବାର ପୋଷାକ ପିନ୍ଧୁ ପିନ୍ଧୁ ସେହି ଘରେ ହଠାତ୍ ଆସି ଠାକୁରଙ୍କ କଥାଗୁଡ଼ିକ ଶୁଣିଥିଲେ । ଆମେ ଯେମିତି ବାହାରକୁ ଆସିଲୁ ସଙ୍ଗେ ସଙ୍ଗେ ରାମଭାଇ କହିଲେ, 'ଅତୁଲ ଭାଇ, ତାକୁ (ଉପେନଙ୍କୁ) ଏଆଡ଼କୁ ନେଇ ଆସ; ଠାକୁର ତାଙ୍କ ପ୍ରଶ୍ନର ଉତ୍ତରରେ ବଡ଼ କଠିନ କଥା କହିଛନ୍ତି, ସେ ବୁଝିପାରିବେ ନାହିଁ । ମୋର ଏହି ବହିଟିକୁ[2] ତାଙ୍କୁ ପଢ଼ିବାକୁ ହେବ, ତା ହେଲେ ସେ ଠାକୁରଙ୍କ ସେହି କଥା ବୁଝିପାରିବେ ।' ସେକଥା ଶୁଣି ମୋର ଖୁବ୍ ରାଗ ହେଲା, କହିଲି, 'ରାମଭାଇ, ତୁମେ ପରା ଆମଠାରୁ ସାତବର୍ଷ ପୂର୍ବରୁ ଠାକୁରଙ୍କୁ ଦେଖିଛ ଏବଂ ତାଙ୍କ ନିକଟକୁ ଯିବା ଆସିବା କରୁଛ ? ସେ (ଠାକୁର) ଯାହା କହିଲେ ତାହା ବୁଝିପାରିବେ ନାହିଁ, ଆଉ ତୁମର ବହି ପଢ଼ି ସେ ଯାହା ବୁଝାଇ ପାରିଲେ ନାହିଁ ତା ବୁଝିପାରିବେ ! ଏହା ତୁମର କିପରି କଥା ? ତେବେ ଉପେନ୍‌କୁ ତୁମର ବହିଟା ପଢ଼ିବାକୁ ଦେବ, ଦିଅ—ତାହା ଅଲଗା କଥା ।' ରାମଭାଇ ଏକଥାରେ ଟିକିଏ ଅପ୍ରସ୍ତୁତ ହୋଇ ପୁସ୍ତକଟିକୁ ଉପେନ୍ଦ୍ରଙ୍କୁ ଦେଲେ ।''

---

୧. ଶ୍ରୀରାମଚନ୍ଦ୍ର ଦତ୍ତ ।

୨. ଶ୍ରୀରାମଚନ୍ଦ୍ର ଦତ୍ତ ପ୍ରଣୀତ 'ତତ୍ତ୍ୱପ୍ରକାଶିକା'

# ଦ୍ୱାଦଶ ଅଧ୍ୟାୟ — ତୃତୀୟ ପାଦ

## ଠାକୁରଙ୍କର ଶ୍ୟାମପୁକୁରରେ ଅବସ୍ଥାନ

### ଠାକୁରଙ୍କର ନିଜ ସୂକ୍ଷ୍ମଶରୀରରେ କ୍ଷତ ଦର୍ଶନ — ଅନ୍ୟର ପାପଭାର ଗ୍ରହଣ କାରଣରୁ ଏପରି ହେବା ଓ ତାହାର ଫଳ :

ଶ୍ୟାମପୁକୁରରେ ଅବସ୍ଥାନ ସମୟରେ ଠାକୁରଙ୍କର ଦିନେ ଗୋଟିଏ ଅଦ୍ଭୁତ ଦର୍ଶନ ହୋଇଥିଲା । ସେ ଦେଖିଥିଲେ, ତାଙ୍କର ସୂକ୍ଷ୍ମଶରୀର ସ୍ଥୂଳଦେହ ମଧ୍ୟରୁ ନିର୍ଗତ ହୋଇ ଘର ମଧ୍ୟରେ ଇତସ୍ତତଃ ବୁଲୁଅଛି ଏବଂ ତାଙ୍କର ଗଳାର ସଂଯୋଗ ସ୍ଥଳର ପୃଷ୍ଠଦେଶରେ କେତୋଟି କ୍ଷତ ହୋଇଅଛି । ବିସ୍ମିତ ହୋଇ ସେ ଏପରି କ୍ଷତ ହେବାର କାରଣ କ'ଣ ଭାବୁଛନ୍ତି ଏପରି ସମୟରେ ଶ୍ରୀଶ୍ରୀଜଗଦମ୍ବା ତାଙ୍କୁ ବୁଝାଇ ଦେଲେ, ନାନାପ୍ରକାର ଦୁଷ୍କର୍ମ କରି ଲୋକମାନେ ତାଙ୍କୁ ସ୍ପର୍ଶ କରି ପବିତ୍ର ହୋଇଛନ୍ତି, ମାତ୍ର ସେମାନଙ୍କର ପାପଭାର ତାଙ୍କଠାରେ ସଂକ୍ରମିତ ହୋଇ ତାଙ୍କ ଶରୀରରେ କ୍ଷତରୋଗ ସୃଷ୍ଟି କରିଛି । ଜୀବର କଲ୍ୟାଣ ସାଧନ ପାଇଁ ସେ ଲକ୍ଷ ଲକ୍ଷ ବାର ଜନ୍ମଗ୍ରହଣପୂର୍ବକ ଦୁଃଖଭୋଗ କରିବାକୁ କାତର ନୁହଁନ୍ତି, ଏକଥା ଆମେ ଦକ୍ଷିଣେଶ୍ୱରରେ ଠାକୁରଙ୍କୁ ବେଳେ ବେଳେ କହିବାର ଶୁଣିଥିଲୁ । ତେଣୁ ପୂର୍ବୋକ୍ତ ଦର୍ଶନରେ ଆଦୌ ବିଚଳିତ ନ ହୋଇ ଆନନ୍ଦର ସହିତ ସେ ଯେ ଏବେ ଏବିଷୟରେ ଆମକୁ କହିବେ, ଏହା କିଛି ବିଚିତ୍ର ନୁହେଁ ଏବଂ ଏଥିରେ ତାଙ୍କର ଅପାର କରୁଣାର କଥା ମନେପକାଇ ଓ ଆଲୋଚନା କରି ଆମେ ମୁଗ୍ଧ ହେଲୁ । କିନ୍ତୁ ଠାକୁରଙ୍କ ଶରୀର ପୂର୍ବପରି ସୁସ୍ଥ ନ ହେବା ପର୍ଯ୍ୟନ୍ତ ଯେପରି କୌଣସି ନୂତନ ଲୋକ ଆସି ତାଙ୍କର ଚରଣ ସ୍ପର୍ଶକରି ପ୍ରଣାମ ନ କରେ, ସେବିଷୟରେ ଭକ୍ତମାନଙ୍କ ମଧ୍ୟରେ — ବିଶେଷତଃ ଯୁବକ-ଭକ୍ତମାନଙ୍କ ମଧ୍ୟରେ ବିଶେଷ ଚେଷ୍ଟା ରହିଲା ଏବଂ ଭକ୍ତଗଣଙ୍କ ମଧ୍ୟରେ କେହି କେହି ପୂର୍ବ ଜୀବନର ଉଚ୍ଛୃଙ୍ଖଳତା ସ୍ମରଣପୂର୍ବକ ଏବେଠାରୁ ଠାକୁରଙ୍କର ପବିତ୍ର ଦେହ ଆଉ ସ୍ପର୍ଶ କରିବେ ନାହିଁ, ଏପରି ସଂକଳ୍ପ କଲେ । ପୁଣି ନରେନ୍ଦ୍ରଙ୍କ ପରି ବିରଳ କେହି କେହି ଉକ୍ତ ଦର୍ଶନ କଥା ଶୁଣି ଅନ୍ୟକୃତ କର୍ମ ପାଇଁ ସ୍ୱେଚ୍ଛାରେ ଫଳଭୋଗ କରିବା ରୂପକ ଯେଉଁ ମତବାଦ ଖ୍ରୀଷ୍ଟିୟାନ୍, ବୈଷ୍ଣବ ପ୍ରଭୃତି କୌଣସି କୌଣସି ଧର୍ମର ମୂଳଭିତ୍ତିସ୍ୱରୂପ ହୋଇ ରହିଛି, ଏଥିରେ ତାହାର ହିଁ ସତ୍ୟତାର ଇଙ୍ଗିତପ୍ରାପ୍ତ ହୋଇ, ସେହି ବିଷୟର ଚିନ୍ତା ଓ ଗବେଷଣାରେ ନିଯୁକ୍ତ ରହିଲେ ।

### ଭକ୍ତଗଣଙ୍କର ନବାଗତ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ନିୟମବନ୍ଧନ :

ଠାକୁରଙ୍କ ନିକଟକୁ ନୂଆ ନୂଆ ଲୋକଙ୍କର ଯିବା ଆସିବା ବନ୍ଦ କରିବାର ଚେଷ୍ଟା ଦେଖି ଗିରିଶଚନ୍ଦ୍ର କହିଥିଲେ, ''ଚେଷ୍ଟା କରୁଛ ତ କର, କିନ୍ତୁ ଏହା ସମ୍ଭବପର

ନୁହେଁ—କାରଣ, ସେ (ଠାକୁର) ତ ଏଥିପାଇଁ ହିଁ ଦେହ ଧାରଣ କରିଛନ୍ତି ।'' ଫଳରେ ଦେଖାଗଲା, ସମ୍ପୂର୍ଣ୍ଣ ଅପରିଚିତ ଲୋକଙ୍କୁ ନିଷେଧ କରିପାରିଲେ ମଧ୍ୟ ଭକ୍ତମାନଙ୍କର ପରିଚିତ ନବାଗତ ବ୍ୟକ୍ତିମାନଙ୍କୁ ନିବାରଣ କରିବା ସମ୍ଭବପର ହେଲା ନାହିଁ । ସୁତରାଂ ନିୟମ ହେଲା, ଭକ୍ତମାନଙ୍କ ମଧ୍ୟରୁ କାହା ସହିତ ବିଶେଷ ପରିଚୟ ନ ଥିଲେ ନବାଗତ କାହାକୁ ମଧ୍ୟ ଠାକୁରଙ୍କ ନିକଟକୁ ଯିବାକୁ ଦିଆଯିବ ନାହିଁ ଏବଂ ଏପରି ଲୋକମାନଙ୍କୁ ଆଗରୁ କହି ଦିଆଯିବ, ଯେପରି ଠାକୁରଙ୍କର ଚରଣସ୍ପର୍ଶ କରି ପ୍ରଣାମ ନ କରନ୍ତି । ମାତ୍ର ସମ୍ପୂର୍ଣ୍ଣ ଅପରିଚିତ କାହାର କାହାର ବ୍ୟାକୁଳତା ଦେଖି ବେଳେ ବେଳେ ଉକ୍ତ ନିୟମର ମଧ୍ୟ ବ୍ୟତିକ୍ରମ ହେବାକୁ ଲାଗିଲା ।

### କାଳୀପଦଙ୍କ ସାହାଯ୍ୟରେ ଅଭିନେତ୍ରୀଙ୍କର ଠାକୁରଙ୍କୁ ଦର୍ଶନ :

ଏପରି ନିୟମ ଯୋଗୁଁ ଦିନେ ଏକ ଆମୋଦଦାୟକ ଘଟଣା ଘଟିଥିଲା । ଦକ୍ଷିଣେଶ୍ୱରରେ ଥିବାବେଳେ ଗିରିଶଚନ୍ଦ୍ରଙ୍କ ଦ୍ୱାରା ପରିଚାଳିତ ନାଟ୍ୟଶାଳାରେ କୌଣସି ଗୋଟିଏ ଧର୍ମମୂଳକ ନାଟକ ଅଭିନୟ ଦର୍ଶନ କରିବାକୁ ଠାକୁର ଥରେ ଯାଇଥିଲେ ଏବଂ ଏହି ନାଟକରେ ପ୍ରଧାନ ଭୂମିକା ଯେଉଁ ଅଭିନେତ୍ରୀ ଗ୍ରହଣ କରିଥିଲେ, ତାଙ୍କର ଅଭିନୟ-ଦକ୍ଷତାର ପ୍ରଶଂସା କରିଥିଲେ । ଅଭିନୟ ପରେ ସେଦିନ ଉକ୍ତ ଅଭିନେତ୍ରୀ ଭାବାବିଷ୍ଟ ଠାକୁରଙ୍କର ପଦ-ବନ୍ଦନା କରିବା ପାଇଁ ସୌଭାଗ୍ୟର ଅଧିକାରିଣୀ ହୋଇଥିଲେ । ସେହି ଦିନରୁ ସେ ତାଙ୍କୁ ସାକ୍ଷାତ୍ ଦେବତା ବୋଲି ମନେ ମନେ ବିଶେଷ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ଏବଂ ଆଉ ଦିନେ ତାଙ୍କର ପୁଣ୍ୟ ଦର୍ଶନଲାଭ କରିବାର ସୁଯୋଗ ଖୋଜୁଥିଲେ । ଠାକୁରଙ୍କର ନିଦାରୁଣ ପୀଡ଼ା କଥା ଶୁଣି ସେ ତାଙ୍କୁ ଥରେ ଦେଖିବା ପାଇଁ ବ୍ୟାକୁଳ ହେଲେ ଏବଂ ଶ୍ରୀଯୁକ୍ତ କାଳୀପଦ ଘୋଷଙ୍କ ସହିତ ପରିଚିତ ଥିବାରୁ ବିଶେଷ ଅନୁନୟ ବିନୟପୂର୍ବକ ଏଥିପାଇଁ ତାଙ୍କର ଶରଣାପନ୍ନା ହେଲେ । କାଳୀପଦ ସବୁ ବିଷୟରେ ଗିରିଶଚନ୍ଦ୍ରଙ୍କର ଅନୁଗାମୀ ଥିଲେ ଏବଂ ଠାକୁରଙ୍କୁ ଯୁଗାବତାର ବୋଲି ଧାରଣା କରିବାରୁ ଦୁଷ୍କୃତକାରୀ ଅନୁତପ୍ତ ହୋଇ ତାଙ୍କର ଶ୍ରୀଚରଣସ୍ପର୍ଶ କଲେ ତାଙ୍କର ରୋଗ ବୃଦ୍ଧି ହେବ—ଏକଥାରେ ଆସ୍ଥାବାନ ନ ଥିଲେ । ତେଣୁ ଠାକୁରଙ୍କ ନିକଟକୁ ଉକ୍ତ ଅଭିନେତ୍ରୀଙ୍କୁ ଆଣିବାକୁ ତାଙ୍କର କୌଣସି ଦ୍ୱିଧା ବା ଭୟ ହେଲା ନାହିଁ । ଗୋପନରେ ପରାମର୍ଶ କରି ଦିନେ ସନ୍ଧ୍ୟାର ପ୍ରାରମ୍ଭରେ ସେ ତାଙ୍କୁ ପୁରୁଷ ପରି 'ହ୍ୟାଟ୍-କୋଟ'ରେ ସଜାଇ ଶ୍ୟାମପୁକୁର ବସାରେ ପହଞ୍ଚିଲେ ଏବଂ ନିଜର ବନ୍ଧୁ ବୋଲି ଆମ ନିକଟରେ ପରିଚିତ କରାଇ ଠାକୁରଙ୍କ ନିକଟକୁ ନେଇଯାଇ ତାଙ୍କର ଯଥାର୍ଥ ପରିଚୟ ଦେଲେ । ଠାକୁରଙ୍କ ଘରେ ସେତେବେଳେ ଆମେ କେହି ନ ଥିଲୁ, ତେଣୁ ଏପରି କରିବାରେ ତାଙ୍କୁ କୌଣସି ବାଧା ହେଲା ନାହିଁ । ଆମମାନଙ୍କ

ଆଖିରେ ଧୂଳି ପକାଇବା ପାଇଁ ଅଭିନେତ୍ରୀ ଏପରି ବେଶରେ ଆସିଅଛି ଜାଣି ପରିହାସପ୍ରିୟ ଠାକୁର ହସିବାକୁ ଲାଗିଲେ ଏବଂ ତାଙ୍କର ସାହସ ଓ ଦକ୍ଷତାର ପ୍ରଶଂସାପୂର୍ବକ ତାର ଶ୍ରଦ୍ଧା-ଭକ୍ତି ଦେଖି ସନ୍ତୁଷ୍ଟ ହେଲେ । ଅନନ୍ତର ଈଶ୍ୱରଙ୍କଠାରେ ବିଶ୍ୱାସବତୀ ଓ ତାଙ୍କର ଶରଣାପନ୍ନ ହୋଇ ରହିବା ପାଇଁ ତାଙ୍କୁ ଦୁଇ-ଚାରୋଟି ତତ୍ତ୍ୱକଥା କହି କିଛି ସମୟ ପରେ ବିଦାୟ ଦେଲେ । ସେ ମଧ୍ୟ ଅଶ୍ରୁବିସର୍ଜନ କରୁ କରୁ ତାଙ୍କର ଶ୍ରୀଚରଣରେ ମସ୍ତକ ସ୍ପର୍ଶକରି କାଳୀପଦଙ୍କ ସହିତ ଚାଲିଗଲେ । ଠାକୁରଙ୍କ ନିକଟରୁ ଆମେ ଏହିକଥା ପରେ ଜାଣିପାରିଲୁ ଏବଂ ଆମେ ପ୍ରତାରିତ ହୋଇଥିବାରୁ ସେ ହାସ୍ୟ-ପରିହାସ ଓ ଆନନ୍ଦ କରୁଛନ୍ତି ଦେଖି କାଳୀପଦଙ୍କ ଉପରେ ଆମେ ବିଶେଷ କ୍ରୋଧ କରିପାରିଲୁ ନାହିଁ ।

**ଭକ୍ତମାନଙ୍କ ମଧ୍ୟରେ ଭାବୁକତା ବୃଦ୍ଧିର କାରଣ :**

ଠାକୁରଙ୍କ ସଙ୍ଗଗୁଣରେ ଓ ତାଙ୍କର ସେବା କରିବା ଫଳରେ ଭକ୍ତମାନଙ୍କ ହୃଦୟରେ ଭକ୍ତି-ବିଶ୍ୱାସ ଦିନକୁ ଦିନ ବର୍ଦ୍ଧିତ ହେଉଥିଲେ ମଧ୍ୟ ଗୋଟିଏ ବିଷୟରେ ସେମାନଙ୍କର ମନର ଗତି ବିପଦସଙ୍କୁଳ ବିପରୀତ ପଥରେ ଯିବାର ସମ୍ଭାବନା ଏବେ ଉପୁଜିଥିଲା । କଠୋର ତ୍ୟାଗ ଏବଂ କଷ୍ଟସାଧ୍ୟ ସଂଯମର ଆଦର୍ଶ ଅପେକ୍ଷା ସାମୟିକ ଭାବର ଉଚ୍ଛ୍ୱାସ ହିଁ ସେମାନଙ୍କ ନିକଟରେ ଏସମୟରେ ଅଧିକତର ପ୍ରିୟ ହେଉଥିଲା । ତ୍ୟାଗ ଓ ସଂଯମକୁ ଭିତ୍ତିସ୍ୱରୂପ ଅବଲମ୍ବନପୂର୍ବକ ସଂଗଠିତ୍ ନ ହେଲେ ସେହି ପ୍ରକାର ଭାବୋଚ୍ଛ୍ୱାସଗୁଡ଼ିକ ଧର୍ମମୂଳକ ହେଲେ ମଧ୍ୟ ଯେ ମନୁଷ୍ୟକୁ କାମ-କ୍ରୋଧ ଆଦି ରିପୁ ସହିତ ସଂଗ୍ରାମରେ ଜୟୀ ହେବାର ସାମର୍ଥ୍ୟ ଦେଇପାରେ ନାହିଁ, ଏକଥା ସେମାନେ ବୁଝିପାରୁ ନ ଥିଲେ । ସେପରି ହେବାର ଅନେକଗୁଡ଼ିଏ କାରଣ ଗୋଟି ଗୋଟି କରି ଉପସ୍ଥିତ ହୋଇଥିଲା । ପ୍ରଥମେ ସହଜ ବା ସ୍ୱାଚ୍ଛନ୍ଦ୍ୟ ପଥ ଓ ବିଷୟକୁ ଅବଲମ୍ବନ କରିବା ହିଁ ମନୁଷ୍ୟର ସାଧାରଣ ପ୍ରକୃତି । ଧର୍ମାନୁଷ୍ଠାନ କରିବାକୁ ଯାଇ ମଧ୍ୟ ସେ ସେଥିପାଇଁ ସଂସାର ଓ ଈଶ୍ୱର — ଭୋଗ ଓ ତ୍ୟାଗ ଉଭୟ ଦିଗ ରକ୍ଷାକରି ଚଳିବାକୁ ଚାହେଁ । ଭାଗ୍ୟବାନ କୌଣସି କୌଣସି ବ୍ୟକ୍ତି ହିଁ ସେହି ଉଭୟକୁ ଆଲୋକ ଏବଂ ଅନ୍ଧକାର ସଦୃଶ ବିପରୀତ ଧର୍ମବିଶିଷ୍ଟ ବୋଲି ଧାରଣା କରନ୍ତି ଏବଂ ଈଶ୍ୱରାର୍ଥେ ସର୍ବସ୍ୱତ୍ୟାଗରୂପକ ଆଦର୍ଶକୁ କାଣ୍ଟଛାଣ୍ଟ କରି ଅନେକାଂଶରେ ହ୍ରାସ ନ କଲେ ଯେ ଉଭୟର ସାମଞ୍ଜସ୍ୟ ହେବା ଅସମ୍ଭବ ଏକଥା ବୁଝି ସେପରି ଭ୍ରମରେ ପଡ଼ି ନ ଥାନ୍ତି । ଏହିପରି ଉଭୟ ଦିଗ ରକ୍ଷା କରି ଯେଉଁମାନେ ଚଳିବାକୁ ଚାହାନ୍ତି, ସେମାନେ ଶୀଘ୍ର ହିଁ ତ୍ୟାଗାଦର୍ଶ ଆଡ଼କୁ ଏତିକି ଅଗ୍ରସର ହେବା ହିଁ କର୍ତ୍ତବ୍ୟ ଭାବି ସୀମା ନିର୍ଦ୍ଦେଶପୂର୍ବକ ଚିରକାଳ ନିମିତ୍ତ ସଂସାରରେ ବାନ୍ଧିହୋଇ ରହିଯାନ୍ତି । ଠାକୁର ସେଥିପାଇଁ କେହି ତାଙ୍କ ନିକଟରେ ପହଞ୍ଚିବା ମାତ୍ରେ ତାଙ୍କୁ ନାନାରୂପରେ ପରୀକ୍ଷା କରି ଦେଖୁଥିଲେ,

ସେ ବ୍ୟକ୍ତି ଏପରି ଖୁଣ୍ଟ ପକାଇ ନିଶ୍ଚିନ୍ତରେ ବସିଛି କି ନାହିଁ ଏବଂ ସେପରି କରିଥିବା ବୁଝିଲେ ଈଶ୍ୱରାର୍ଥେ ସର୍ବସ୍ୱ-ତ୍ୟାଗରୂପକ ଆଦର୍ଶର ସେ ଯେତେଟା ନେଇପାରିବେ ସେତେଟା ହିଁ ପ୍ରଥମେ ତାହା ନିକଟରେ ପ୍ରକାଶ କରୁଥିଲେ । ଏଥିପାଇଁ ଦେଖାଯାଏ, ଅଧିକାରୀଭେଦରେ ତାଙ୍କର ଉପଦେଶ ବିଭିନ୍ନ ପ୍ରକାରର ହେଉଅଛି ଅଥବା ତାଙ୍କର ଗୃହୀ ଓ ଯୁବକ-ଭକ୍ତମାନଙ୍କୁ ସେ ସାଧନ ସମ୍ବନ୍ଧରେ ଭିନ୍ନ ପ୍ରକାରର ଶିକ୍ଷା ଦେଉଛନ୍ତି । ଏଥିପାଇଁ ପୁଣି ସର୍ବସାଧାରଣଙ୍କୁ ଉପଦେଶ ଦେବା ସମୟରେ ସେ କହୁଥିଲେ, 'କଳିରେ ଏକମାତ୍ର ଶ୍ରୀହରିଙ୍କର ନାମକୀର୍ତ୍ତନ ଓ ନାରଦୀୟ-ଭକ୍ତି ।' ସାଧାରଣ ଲୋକଙ୍କ ମଧ୍ୟରେ ସେତେବେଳେ ଧର୍ମ ଓ ଶାସ୍ତ୍ର-ଚର୍ଚ୍ଚା ଏତେ ଲୁପ୍ତ ହୋଇଥିଲା ଯେ, 'ନାରଦୀୟ-ଭକ୍ତି' କଥାର ଅର୍ଥ ମଧ୍ୟ ଶହେ ଲୋକରୁ ଜଣେ ବୁଝୁଥିଲେ କି ନାହିଁ ସନ୍ଦେହ । ସେଥିରେ ମଧ୍ୟ ଯେ ଈଶ୍ୱର-ପ୍ରେମରେ ସର୍ବସ୍ୱ ତ୍ୟାଗର୍ କଥା ଉପଦିଷ୍ଟ ହୋଇଅଛି ଏକଥା ଲୋକଙ୍କର ହୃଦୟଙ୍ଗମ ହେଉ ନ ଥିଲା । ସୁତରାଂ ଠାକୁରଙ୍କର ଅନଭିଜ୍ଞ ଭକ୍ତମାନେ ଯେ ଦୁର୍ବଳ ପ୍ରକୃତିର ବଶବର୍ତ୍ତୀ ହୋଇ ବେଳେ ବେଳେ ସଂସାର ଓ ଧର୍ମ ଉଭୟ ବଜାୟ ରଖିବାର ଭ୍ରମରେ ପତିତ ହେବେ ଏବଂ ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ଭାବୁକତାର ବୃଦ୍ଧିକୁ ହିଁ ଧର୍ମଲାଭର ଚୂଡାନ୍ତ ବୋଲି ଧରିନେବେ, ଏକଥା ବିଚିତ୍ର ନୁହେଁ ।

ପୁଣି ଠାକୁରଙ୍କର କଠୋର ସଂଯମ ଓ ତପସ୍ୟା ଆଦି ଆମେ ତାଙ୍କ ନିକଟକୁ ଯିବା ପୂର୍ବରୁ ଅନୁଷ୍ଠିତ ହୋଇଥିବାରୁ, ତାଙ୍କର ଅଲୌକିକ ଭାବୁକତା କେଉଁ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ରହିଅଛି, ତାହା ଦେଖି ନ ପାରିବା ଭକ୍ତମାନଙ୍କର ଏପରି ଭ୍ରମରେ ପତିତ ହେବାର ଅନ୍ୟତମ କାରଣ ବୋଲି ବୋଧ ହୁଏ । କିନ୍ତୁ ସେହି ବିଷୟରେ ଚୂଡ଼ାନ୍ତ କାରଣ ଉପସ୍ଥିତ ହେଲା, ଯେତେବେଳେ ଗିରିଶଚନ୍ଦ୍ର ଠାକୁରଙ୍କର ଆଶ୍ରୟ ଲାଭ ଏବଂ ତାଙ୍କୁ ଯୁଗାବତାର ବୋଲି ସ୍ଥିର ଧାରଣାପୂର୍ବକ ପ୍ରାଣର ଉଲ୍ଲାସରେ ସର୍ବସାଧାରଣଙ୍କ ସମ୍ମୁଖରେ ସେହିକଥା ମୁକ୍ତ କଣ୍ଠରେ ଘୋଷଣା କଲେ । ଠାକୁରଙ୍କ ସମ୍ବନ୍ଧରେ ଏପରି ଧାରଣା ଏହାପୂର୍ବରୁ ଅନେକଙ୍କ ପ୍ରାଣରେ ଆସିଥିଲେ ମଧ୍ୟ ସେମାନେ ସମସ୍ତେ ତାଙ୍କର ନିଷେଧ ମାନି ସେହି ବିଷୟ ପ୍ରାଣ ମଧ୍ୟରେ ଲୁଚାଇ ରଖିଥିଲେ—କାରଣ ଠାକୁର ଚିରକାଳ ଏକଥା କହି ଆସୁଥିଲେ, ତାଙ୍କର ଦେହରକ୍ଷାର ଅନତିକାଳ ପୂର୍ବରୁ ହିଁ ବହୁ ଲୋକ ତାଙ୍କୁ ଈଶ୍ୱରାବତାର ବୋଲି ଜାଣିପାରିବେ । ଗିରିଶଚନ୍ଦ୍ରଙ୍କର ମନର ଗଠନ ଅନ୍ୟ ପ୍ରକାରର ଥିଲା, ସେ ଦୁଷ୍କର୍ମ ବା ସୁକର୍ମ ଯାହା କିଛି କରିଛନ୍ତି ଆଜୀବନ କେବେହେଲେ ଲୁଚାଇ କରିପାରି ନ ଥିଲେ, ସୁତରାଂ ଏବିଷୟରେ ମଧ୍ୟ ଠାକୁରଙ୍କ ନିଷେଧ ମାନି ଚଳିପାରିଲେ ନାହିଁ । ତାଙ୍କର ପ୍ରଖର ବୁଦ୍ଧି, ଉଚ୍ଚନୀଚ ଘଟଣାବଳୀପୂର୍ଣ୍ଣ ବିଚିତ୍ର ଜୀବନ ଏବଂ ପ୍ରାଣର ଅସୀମ ଉତ୍ସାହ ଓ ବିଶ୍ୱାସ ହିଁ ଯେ ତାଙ୍କୁ ଠାକୁରଙ୍କର ଦିବ୍ୟଶକ୍ତିର ଅନନ୍ତ ପ୍ରଭାବ କଥା ବୁଝାଇ ତାଙ୍କ ହସ୍ତରେ

ସମ୍ପୂର୍ଣ୍ଣରୂପରେ ଆତ୍ମସମର୍ପଣ କରିବାକୁ ସହାୟତା କରିଅଛି, ଏକଥା ଭୁଲିଯାଇ ସେ ସ୍ୱୟଂ ଯାହା କରିଛନ୍ତି ତାହା ହିଁ କରିବା ପାଇଁ ସମସ୍ତଙ୍କୁ ମୁକ୍ତ କଣ୍ଠରେ ଆହ୍ୱାନ କରିବାକୁ ଲାଗିଲେ । ଫଳରେ ଆନ୍ତରିକତା ପରିବର୍ତ୍ତେ ଲୋକମାନେ ମୁହଁରେ ବକଲ୍‌ମା ଦେଇଛି, ଆତ୍ମସମର୍ପଣ କରିଅଛି ଇତ୍ୟାଦି କହି ସାଧନ, ଭଜନ, ତ୍ୟାଗ ଓ ତପସ୍ୟାଦିର ପ୍ରୟୋଜନୀୟତା ଉପେକ୍ଷାକରି ଧର୍ମଲାଭ ବିଷୟଟିକୁ ସୁଖସାଧ କରିନେଲେ । ଠାକୁରଙ୍କ ପ୍ରତି ଗିରିଶଚନ୍ଦ୍ରଙ୍କର ଅସୀମ ସ୍ନେହ ଓ ଶ୍ରଦ୍ଧା ଏବିଷୟ ପ୍ରଚାର ପଥରେ ଅନ୍ତରାୟ ହୋଇ ପାରିଥାନ୍ତା, କିନ୍ତୁ ତାଙ୍କର ବୁଦ୍ଧି ତାଙ୍କୁ ବୁଝାଇ ଦେଲା, ଯୁଗଯୁଗାନ୍ତରର ଗ୍ଲାନି ଦୂରକରି ଅଭିନବ ଧର୍ମଚକ୍ର ପ୍ରବର୍ତ୍ତନ ପାଇଁ ଯାହାଙ୍କର ଦେହଧାରଣ ଏବଂ ତ୍ରିତାପରେ ତାପିତ ଜୀବସମୂହଙ୍କୁ ଆଶ୍ରୟ ଦେବା ପାଇଁ ହିଁ ଯିଏ ଜନ୍ମଜରାଦି ଦୁଃଖକଷ୍ଟ ସ୍ୱେଚ୍ଛାରେ ବହନ କରୁଛନ୍ତି, ଅଭୀଷ୍ଟ କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ପୂର୍ବରୁ ତାଙ୍କର ଦେହାବସାନ କଦାପି ସମ୍ଭବପର ନୁହେଁ । ସୁତରାଂ ଠାକୁରଙ୍କର ଆଶ୍ରୟ ଲାଭପୂର୍ବକ ଲୋକମାନେ ତାଙ୍କ ପରି ଶାନ୍ତି ଏବଂ ଦିବ୍ୟୋଲ୍ଲାସର ଅଧିକାରୀ ହେବେ ବୋଲି ସେ ଯେ ସେମାନଙ୍କୁ ଆହ୍ୱାନ କରୁଛନ୍ତି ଏଥିରେ ଦୋଷଣୀୟ କିଛି ନାହିଁ ।

### ଗିରିଶଙ୍କର ଅନୁସରଣରେ ରାମଚନ୍ଦ୍ରଙ୍କର ଚେଷ୍ଟା :

ଗିରିଶଚନ୍ଦ୍ରଙ୍କର ପ୍ରଖର ବୁଦ୍ଧି ଓ ଯୁକ୍ତିତର୍କ ସମ୍ମୁଖରେ ରାମଚନ୍ଦ୍ରପ୍ରମୁଖ ଅନେକ ପ୍ରବୀଣ ଗୃହୀ ଭକ୍ତଙ୍କର ବୁଦ୍ଧି ସେତେବେଳେ ଭାସିଯାଇଥିଲା । ଆମେ ଏହାପୂର୍ବରୁ କହିଛୁ, ରାମଚନ୍ଦ୍ର ବୈଷ୍ଣବବଂଶରେ ଜନ୍ମଗ୍ରହଣ କରିଥିଲେ, ତେଣୁ ଦିବ୍ୟ-ଶକ୍ତିର ବିକାଶ ଦେଖି ସେ ଯେ ଠାକୁରଙ୍କୁ ଶ୍ରୀକୃଷ୍ଣ ଏବଂ ଶ୍ରୀଗୌରାଙ୍ଗ ବୋଲି ବିଶ୍ୱାସ କରିବେ, ଏହା ବିଚିତ୍ର ନୁହେଁ । କିନ୍ତୁ ଗିରିଶଚନ୍ଦ୍ରଙ୍କର ପ୍ରଚାର ପୂର୍ବରୁ ସେ ଏହାକୁ ଅନେକାଂଶରେ ଗୋପନରଖି ଲୋକ ସମ୍ମୁଖରେ ପ୍ରକାଶ କରୁଥିଲେ । ଏବେ ଗିରିଶଚନ୍ଦ୍ରଙ୍କର ସହାୟତା ପାଇ ତାଙ୍କର ଉତ୍ସାହ ସେହି ବିଷୟରେ ସମ୍ୟକ୍ ବୃଦ୍ଧିପ୍ରାପ୍ତ ହେଲା । ସେ ଏବେ ଠାକୁରଙ୍କୁ ଅବତାର ବୋଲି କହି କ୍ଷାନ୍ତ ରହି ନ ଥିଲେ, କିନ୍ତୁ ତାଙ୍କର ଭକ୍ତଗଣ ଶ୍ରୀଗୌରାଙ୍ଗ ଓ ଶ୍ରୀକୃଷ୍ଣ ଅବତାରରେ କିଏ କେଉଁ ସାଙ୍ଗପାଙ୍ଗରୂପରେ ଆବିର୍ଭୂତ ହୋଇଥିଲେ ବେଳେ ବେଳେ ସେବିଷୟରେ ମଧ୍ୟ କଳ୍ପନା-ଜଳ୍ପନା କରିବାକୁ ଲାଗିଲେ ଏବଂ କହିବା ବାହୁଲ୍ୟ, ସାମୟିକ ଭାବୁକତାର ଉଚ୍ଛ୍ୱାସରେ ଯେଉଁମାନଙ୍କର ଏବେ ଶାରୀରିକ ବିକୃତି ଏବଂ କେବେକେବେ ବାହ୍ୟ ସଂଜ୍ଞାର ଲୋପ ହେଉଥିଲା ସେମାନେ ତାଙ୍କ ସିଦ୍ଧାନ୍ତରେ ଉଚ୍ଚସ୍ଥାନ ଲାଭ କରିବାକୁ ଲାଗିଲେ ।

**ବିଜୟକୃଷ୍ଣ ଗୋସ୍ୱାମୀଙ୍କର ସେହି ବିଷୟରେ ସହାୟତା :**

ଠାକୁରଙ୍କର ଯୁଗାବତାରତ୍ୱରେ ବିଶ୍ୱାସ ସ୍ଥାପନପୂର୍ବକ ଭକ୍ତମାନଙ୍କ ମଧ୍ୟରେ ଅନେକେ ଯେତେବେଳେ ଏପରି ଭାବୁକତାର ଉଚ୍ଛ୍ୱାସରେ ନିଜକୁ ସାମିଲ କରୁଥିଲେ, ସେତେବେଳେ ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ଢାକାରୁ ଠାକୁରଙ୍କୁ ଦର୍ଶନ କରିବାକୁ ଆସି ସର୍ବସମକ୍ଷରେ ମୁକ୍ତକଣ୍ଠରେ ଘୋଷଣା କଲେ ଯେ, ସେ ଢାକାରେ ଗୃହ ମଧ୍ୟରେ ବସି ଧ୍ୟାନ କରିବା ସମୟରେ ଠାକୁର ସେଠାରେ ସଶରୀରରେ ଆବିର୍ଭୂତ ହୋଇଥିଲେ ଏବଂ ସେ ଠାକୁରଙ୍କର ଅଙ୍ଗପ୍ରତ୍ୟଙ୍ଗ ନିଜ ହସ୍ତରେ ସ୍ପର୍ଶ କରି ଦେଖିଥିଲେ[1]—ଅଗ୍ନିରେ ଇନ୍ଧନ ସଂଯୋଗ ସଦୃଶ ଏହା ଫଳପ୍ରଦ ହୋଇଥିଲା । ସେହିପରି ନାନାପ୍ରକାରରେ ଭାବୁକତାର ବୃଦ୍ଧିଯୋଗୁଁ ଭକ୍ତଗଣଙ୍କ ଭିତରେ ପାଞ୍ଚ ସାତଜଣଙ୍କର ସେତେବେଳେ ଭଜନ ସଙ୍ଗୀତ ଇତ୍ୟାଦି ଶୁଣିବା ମାତ୍ରେ ବାହ୍ୟସଂଜ୍ଞାର ଆଂଶିକ ଲୋପ ଓ ଶାରୀରିକ ବିକୃତି ହେଉଥିଲା ଏବଂ ଅନେକ ଭକ୍ତ ସହଜବୁଦ୍ଧି ଓ ଜ୍ଞାନ-ବିଚାରର ପ୍ରଶସ୍ତ ପଥ ପରିତ୍ୟାଗକରି ଠାକୁରଙ୍କର ଦୈବଶକ୍ତି ପ୍ରଭାବରେ କେତେବେଳେ କଣ ଅଘଟଣ ଘଟିଯିବ, ଏପରି ଏକ ଭାବ ନେଇ ସର୍ବଦା ଉଦ୍‌ଗ୍ରୀବ ହୋଇ ରହିବାକୁ ଅଭ୍ୟସ୍ତ ହେଉଥିଲେ ।

**ନରେନ୍ଦ୍ରଙ୍କର ଏବିଷୟ ଖର୍ବ କରି ଭକ୍ତମାନଙ୍କ ମଧ୍ୟରେ ତ୍ୟାଗ-ସଂଯମାଦି ବୃଦ୍ଧିର ଚେଷ୍ଟା— ଠାକୁର ଏହି ଚେଷ୍ଟା କରି ନ ଥିଲେ କାହିଁକି :**

ଏହିପରି ଭାବୁକତାର ବୃଦ୍ଧି ହିଁ ଯେତେବେଳେ ଧର୍ମର ଚୂଡ଼ାନ୍ତ ବୋଲି ଭକ୍ତମାନଙ୍କ ମଧ୍ୟରେ ପରିଗଣିତ ହେଉଥିଲା, ସେତେବେଳେ ସଂଯମ, ତ୍ୟାଗ ଓ ନିଷ୍ଠା ଇତ୍ୟାଦିର ତୁଳନାରେ ଏହା ଯେ ଅତି ଅକିଞ୍ଚିତ୍‌କର ବସ୍ତୁ ଏବଂ ଏହାର ନିର୍ବାଧ ପ୍ରଶ୍ରୟରେ ଭବିଷ୍ୟତରେ ବିଷମ ବିପଦର ସମ୍ଭାବନା ଅଛି—ଏକଥା ଠାକୁର ଯାହାଙ୍କୁ ଭକ୍ତମାନଙ୍କ ମଧ୍ୟରେ ସର୍ବାପେକ୍ଷା ଉଚ୍ଚାସନ ପ୍ରଦାନ କରୁଥିଲେ, ସେହି ସୂକ୍ଷ୍ମଦର୍ଶୀ ନରେନ୍ଦ୍ରନାଥଙ୍କର ଦୃଷ୍ଟି ଏଡ଼ାଇ ପାରି ନ ଥିଲା । ସେ ସେହି ବିଷୟ ବୁଝାଇ ସେଥିରୁ ସେମାନଙ୍କୁ ରକ୍ଷା କରିବାକୁ ବିଶେଷ ପ୍ରୟାସୀ ହୋଇଥିଲେ । ଏଠାରେ ପ୍ରଶ୍ନ ଉଠିପାରେ, ଭକ୍ତଗଣଙ୍କର ଏପରି ବିପଥରେ ଯିବାର ସମ୍ଭାବନା ଦେଖି ମଧ୍ୟ ଠାକୁର ନିଃଶ୍ଚେଷ୍ଟ ରହିଥିଲେ କାହିଁକି ? ଏହାର ଉତ୍ତରରେ କୁହାଯାଇପାରେ, ସେ ନିଃଶ୍ଚେଷ୍ଟ ନ ଥିଲେ, କିନ୍ତୁ ଯେଉଁ ଭାବୁକତାରେ କୌଣସି ପ୍ରକାର କୃତ୍ରିମତା ନାହିଁ, ତାହାକୁ ଈଶ୍ୱରଲାଭର ଅନ୍ୟତମ ପଥ ଜାଣି ସେହି ସମସ୍ତ ଭକ୍ତମାନଙ୍କ ମଧ୍ୟରୁ କେଉଁ କେଉଁ ବ୍ୟକ୍ତି ଏହି ପଥର ଯଥାର୍ଥ ଅଧିକାରୀ ତାହା ଲକ୍ଷ୍ୟ କରି ସେମାନଙ୍କୁ ସେହି ପଥରେ ଚାଳିତ କରିବାର ସମୟ ସୁଯୋଗ ଅନ୍ୱେଷଣ କରୁଥିଲେ—

୧. 'ଲୀଳାପ୍ରସଙ୍ଗ—ଗୁରୁଭାବ, ଉତ୍ତରାର୍ଦ୍ଧ, ୫ମ ଅଧ୍ୟାୟ ଦ୍ରଷ୍ଟବ୍ୟ ।

କାରଣ, ତାଙ୍କୁ ଆମେ ବାରମ୍ବାର କହିବାର ଶୁଣିଛୁ, 'ଇଚ୍ଛା କଲେ ହିଁ ସହସା କୌଣସି ବିଷୟ ସିଦ୍ଧି ହୁଏ ନାହିଁ, କାଳକ୍ରମେ ହୋଇଥାଏ', ଅଥବା କୌଣସି ବିଷୟର ସିଦ୍ଧି ଉପଯୁକ୍ତ କାଳର ଆଗମନ ପାଇଁ ପ୍ରତୀକ୍ଷା କରିଥାଏ । ହୋଇପାରେ ଯେ, ଭକ୍ତଗଣଙ୍କର ସେହି ଭ୍ରମ ଦୂର କରିବାକୁ ନରେନ୍ଦ୍ରନାଥଙ୍କୁ ବଦ୍ଧପରିକର ଦେଖି ଠାକୁର ତାହାର ଫଳାଫଳ ଲକ୍ଷ୍ୟ କରୁଥିଲେ, ଅଥବା ନରେନ୍ଦ୍ରନାଥଙ୍କୁ ଯନ୍ତ୍ରସ୍ୱରୂପ କରି ସେହି ବିଷୟ ସିଦ୍ଧ କରାଇବା ହିଁ ତାଙ୍କର ଅଭୀପ୍‌ସିତ ଥିଲା ।

## ଜୀବନରେ ସ୍ଥାୟୀ ପରିବର୍ତ୍ତନ ଆଣେ ନାହିଁ ବୋଲି ଭାବୁକତାର ମୂଲ୍ୟ ଅଳ୍ପ :

ଦୃଢ଼ବଦ୍ଧ ଶରୀର ଏବଂ ସ୍ଥିରପ୍ରତିଜ୍ଞ ମନ–ବିଶିଷ୍ଟ ଯୁବକ ଭକ୍ତମଣ୍ଡଳୀ ହିଁ ତାଙ୍କ କଥା ସହଜରେ ବୁଝିପାରିବେ ଭାବି ନରେନ୍ଦ୍ରନାଥ ନାନା ଯୁକ୍ତିତର୍କ ସାହାଯ୍ୟରେ ସେମାନଙ୍କୁ ସର୍ବଦା କହିବାକୁ ଲାଗିଲେ, ''ଯେଉଁ ଭାବୋଚ୍ଛ୍ୱାସ ମାନବ ଜୀବନରେ ସ୍ଥାୟୀ ପରିବର୍ତ୍ତନ ଆଣି ନ ପାରେ, ଯାହାର ପ୍ରଭାବ ମନୁଷ୍ୟକୁ ଏହି ମୁହୂର୍ତ୍ତରେ ଈଶ୍ୱରଲାଭ ପାଇଁ ବ୍ୟାକୁଳ କରି ପର ମୁହୂର୍ତ୍ତରେ କାମକାଞ୍ଚନର ଅନୁସରଣରୁ ନିବୃତ୍ତ କରିପାରେ ନାହିଁ, ତାର ଗଭୀରତା ନ ଥାଏ, ସୁତରାଂ ତାର ମୂଲ୍ୟ ଅତି ଅଳ୍ପ । ତାହାର ପ୍ରଭାବରେ କାହାର ଶାରୀରିକ ବିକୃତି ଯଥା ଅଶ୍ରୁପୁଲକ ଇତ୍ୟାଦି, ଅଥବା କିଛି ସମୟ ପାଇଁ ବାହ୍ୟଚେତନାର ଆଂଶିକ ଲୋପ ହେଲେ ମଧ୍ୟ ମୋର ନିଶ୍ଚୟ ଧାରଣା ଏହା ସ୍ନାୟବିକ ଦୌର୍ବଲ୍ୟପ୍ରସୂତ; ମାନସିକ ଶକ୍ତିବଳରେ ତାହାକୁ ଦମନ କରି ନ ପାରିଲେ ପୁଷ୍ଟିକର ଖାଦ୍ୟ ଏବଂ ଚିକିତ୍ସକଙ୍କର ସହାୟତା ଗ୍ରହଣ କରିବା ମନୁଷ୍ୟର ଅବଶ୍ୟ କର୍ତ୍ତବ୍ୟ ।''

## ଅଶ୍ରୁପୁଲକାଦି ଶାରୀରିକ ବିକୃତି ମଧ୍ୟରେ ଅନେକ ସମୟରେ କୃତ୍ରିମତା ରହିଥାଏ :

ନରେନ୍ଦ୍ର କହୁଥିଲେ, ''ଏପରି ଅଙ୍ଗବିକାର ଏବଂ ବାହ୍ୟଚେତନା ଲୋପ ମଧ୍ୟରେ ଅନେକ କୃତ୍ରିମତା ରହିଛି । ସଂଯମର ବନ୍ଧ ଯେତେ ଉଚ୍ଚ ଏବଂ ଦୃଢ଼ ହେବ ମାନସିକ ଭାବ ସେତେ ଗଭୀର ହେଉଥିବ ଏବଂ କ୍ୱଚିତ୍ କୌଣସି କୌଣସି ବ୍ୟକ୍ତିଙ୍କର ଜୀବନରେ ହିଁ ଆଧ୍ୟାତ୍ମିକ ଭାବରାଶିର ପ୍ରବଳତାରେ ଉତ୍ତାଳ ତରଙ୍ଗର ଆକାର ଧାରଣ କରି ସେପରି ସଂଯମର ବନ୍ଧକୁ ମଧ୍ୟ ଅତିକ୍ରମ କରି ଅଙ୍ଗ–ବିକାର ଏବଂ ବାହ୍ୟ ଚେତନାର ବିଲୋପ ରୂପରେ ପ୍ରକାଶିତ ହୋଇଥାଏ । ନିର୍ବୋଧ ମନୁଷ୍ୟ ଏକଥା ବୁଝି ନ ପାରି ବିପରୀତ ଭାବି ବସେ ! ସେ ମନେକରେ, ଏପରି ଅଙ୍ଗ ବିକୃତି ଓ ଚେତନାବିଲୁପ୍ତି ଫଳରେ ହିଁ ବୋଧହୁଏ ଭାବର ଗଭୀରତା ସମ୍ପାଦିତ ହୁଏ ଏବଂ ସେଥିପାଇଁ ଏସମସ୍ତ ଯେପରି ତାର ଶୀଘ୍ର ଶୀଘ୍ର ଉପସ୍ଥିତ ହୁଏ, ସେବିଷୟରେ ଇଚ୍ଛାପୂର୍ବକ ଚେଷ୍ଟା କରିଥାଏ । ସେହି ରୂପରେ ସ୍ୱେଚ୍ଛାପ୍ରଣୋଦିତ

ଚେଷ୍ଟା କ୍ରମେ ଅଭ୍ୟାସରେ ପରିଣତ ହୁଏ ଏବଂ ତାର ସ୍ନାୟୁଗୁଡ଼ିକ ଦିନକୁ ଦିନ ଦୁର୍ବଳ ହୋଇ ସାମାନ୍ୟ ଭାବର ଉଦୟରେ ମଧ ତା'ଠାରେ ଏସମସ୍ତ ବିକୃତି ଉପସ୍ଥିତ କରେ । ଫଳରେ ଏହାର ଅବାଧ ପ୍ରଶ୍ରୟରେ ମନୁଷ୍ୟ ଶେଷରେ ଚିରରୁଗ୍ଣ ଅଥବା ବାତୁଳ ହୋଇଥାଏ । ଧର୍ମସାଧନରେ ଅଗ୍ରସର ହୋଇ ଶତକଡ଼ା ଅଶୀ ଜଣ ଜୁଆଚୋର ଏବଂ ପ୍ରାୟ ପନ୍ଦର ଜଣ ଉନ୍ମାଦ ହୋଇଯାଆନ୍ତି । ଅବଶିଷ୍ଟ ପାଞ୍ଚଜଣ ମାତ୍ର ପୂର୍ଣ୍ଣ ସତ୍ୟର ସାକ୍ଷାତ୍କାରରେ ଧନ୍ୟ ହୋଇଥାଆନ୍ତି । ଅତଏବ ସାବଧାନ ।''

## କୌଣସି କୌଣସି ଭକ୍ତଙ୍କର ଆଚରଣ ଦେଖି ନରେନ୍ଦ୍ରଙ୍କ କଥାରେ ବିଶ୍ୱାସ :

ନରେନ୍ଦ୍ରନାଥଙ୍କର ପୂର୍ବୋକ୍ତ କଥାଗୁଡ଼ିକ ସମ୍ପୂର୍ଣ୍ଣ ସତ୍ୟ ବୋଲି ଆମେ ପ୍ରଥମେ ବିଶ୍ୱାସ କରିପାରୁ ନ ଥିଲୁ । କିନ୍ତୁ ଅଳ୍ପ ଦିନ ମଧରେ ଘଟଣାଚକ୍ରରେ ଯେତେବେଳେ ଜଣାଗଲା ନିର୍ଜନରେ ବସି ଭାବୋଦ୍ଦୀପକ ପଦାବଳୀ ଗାଉ ଗାଉ ଅନୁରୂପ ଅଙ୍ଗ-ବିକୃତି ଆଣିବା ପାଇଁ ଜନୈକ ଭକ୍ତ ଚେଷ୍ଟା କରିଥାଏ — ଅନ୍ୟ ଜଣେ ଭକ୍ତ ଭାବାବେଶରେ ବାହ୍ୟଚେତନା ଆଂଶିକ ବିଲୋପ ହେଲେ ଯେପରି ମଧୁର ନୃତ୍ୟ କରାଯାଏ, ସେହିପରି ନୃତ୍ୟ ସେ ପୂର୍ବରୁ ଅଭ୍ୟାସ କରିଥିଲା — ଏବଂ ପୂର୍ବୋକ୍ତ ବ୍ୟକ୍ତିର ନୃତ୍ୟ ଦେଖିବାର ସ୍ୱଳ୍ପକାଳ ପରେ ଅନ୍ୟ ଜଣେ ମଧ ଭାବାବିଷ୍ଟ ହୋଇ ତଦନୁରୂପ ନୃତ୍ୟ କରିବାକୁ ଆରମ୍ଭ କଲେ, ସେତେବେଳେ ନରେନ୍ଦ୍ରନାଥଙ୍କ କଥାର ସତ୍ୟତା ସ୍ପଷ୍ଟ ଭାବରେ ଆମମାନଙ୍କର ହୃଦୟଙ୍ଗମ ହେଲା । ପୁଣି, ଜଣେ ଭକ୍ତର ପୂର୍ବାପେକ୍ଷା ଘନ ଘନ ଭାବାବେଶ ହେବା ଦେଖି ଯେଉଁଦିନ ସେ ତାଙ୍କୁ ଏକାନ୍ତରେ ବିଶେଷ କରି ବୁଝାଇ ଭାବସଂଯମ ଅଭ୍ୟାସ ଏବଂ ଅପେକ୍ଷାକୃତ ପୁଷ୍ଟିକର ଖାଦ୍ୟ ଭୋଜନ କରିବାକୁ ଅନୁରୋଧ କଲେ ଏବଂ ପନ୍ଦର ଦିନ ପର୍ଯ୍ୟନ୍ତ ସେପରି କରିବା ଫଳରେ ସେ ଅନେକ ସୁସ୍ଥ ଓ ସଂଯତ ହେଲେ, ସେତେବେଳେ ନରେନ୍ଦ୍ରନାଥଙ୍କ କଥାରେ ଅନେକେ ବିଶ୍ୱାସ ସ୍ଥାପନ କରି ସେମାନଙ୍କ ପରି ଭାବାବେଶରେ ଅଙ୍ଗବିକୃତି ଓ ବାହ୍ୟଚେତନା ଲୁପ୍ତ ହୋଇ ନାହିଁ ବୋଲି ନିଜକୁ ଅଭାଗ୍ୟବାନ ବୋଲି ଆଉ ଧାରଣା କଲେ ନାହିଁ ।

## ଭାବୁକତା ନେଇ ନରେନ୍ଦ୍ରନାଥଙ୍କର ବ୍ୟଙ୍ଗ ପରିହାସ — ଦାନା ଓ ସଖୀ :

ଯୁକ୍ତିତର୍କ ଅବଲମ୍ବନରେ ସେହି ବିଷୟ ପ୍ରଚାର କରି ନରେନ୍ଦ୍ର କ୍ଷାନ୍ତ ହୋଇ ନ ଥିଲେ, ମାତ୍ର କାହାର ଭାବୁକତାରେ କିଛିମାତ୍ର କୃତ୍ରିମତାର ସନ୍ଧାନ ପାଇଲେ ସେହି ବିଷୟ ନେଇ ସମସ୍ତଙ୍କ ସାମନାରେ ବ୍ୟଙ୍ଗ ପରିହାସରେ ତାଙ୍କୁ ବେଳେ ବେଳେ ଅପ୍ରତିଭ କରୁଥିଲେ । ପୁଣି, ପୁରୁଷର ସ୍ତ୍ରୀଜନୋଚିତ ଭାବାନୁକରଣ,

ଯଥା — ବୈଷ୍ଣବ ସମ୍ପ୍ରଦାୟରେ ପ୍ରଚଳିତ ସଖୀଭାବାଦି ସାଧନର ଅଭ୍ୟାସ ବେଳେ ବେଳେ କିପରି ହାସ୍ୟାସ୍ପଦ ଆକାର ଧାରଣ କରେ, ସେବିଷୟରେ ପ୍ରସଙ୍ଗ ପକାଇ ସେ ଭକ୍ତମାନଙ୍କ ମଧ୍ୟରେ ବେଳେ ବେଳେ ହାସ୍ୟରୋଳ ସୃଷ୍ଟି କରୁଥିଲେ ଏବଂ ଆମମାନଙ୍କ ମଧ୍ୟରେ ଯେଉଁମାନଙ୍କର ସେହିପ୍ରକାର ଭାବପ୍ରବଣତା ଥିଲା ସେମାନଙ୍କୁ ସଖୀ-ଶ୍ରେଣୀଭୁକ୍ତ ବୋଲି ଦେଖାଇ ପରିହାସ କରୁଥିଲେ । ଉଦ୍ଦେଶ୍ୟ ହେଉଛି, ଧର୍ମସାଧନରେ ଅଗ୍ରସର ହୋଇଛନ୍ତି ବୋଲି ପୁରୁଷ ନିଜର ପୁରୁଷକାର, ତତ୍ତ୍ୱାନୁସନ୍ଧାନପ୍ରବୃତ୍ତି, ଓଜସ୍ୱୀତାଦି ବିସର୍ଜନ ଦେଇ ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ ନିଜକୁ ଆବଦ୍ଧ କରିବେ ଏବଂ ସ୍ତ୍ରୀଜନୋଚିତ ଭାବାନୁକରଣ, ବୈଷ୍ଣବ ପଦାବଳୀ ଓ ରୋଦନ ମାତ୍ର ଅବଲମ୍ବନ କରିବେ — ଏହା ପୁରୁଷସିଂହ ନରେନ୍ଦ୍ରନାଥ ଆଦୌ ସହ୍ୟ କରିପାରୁ ନ ଥିଲେ । ସେଥିପାଇଁ ଠାକୁରଙ୍କର ପୁରୁଷଭାବାଶ୍ରୟ ଜ୍ଞାନମିଶ୍ରା ଭକ୍ତିବିଶିଷ୍ଟ ଭକ୍ତମାନଙ୍କୁ 'ଶିବଙ୍କ ଭୂତ' ଅଥବା 'ଦାନା'-ଶ୍ରେଣୀଭୁକ୍ତ ବୋଲି ପରିହାସ ପୂର୍ବକ ଦର୍ଶାଉଥିଲେ ଏବଂ ଏହାର ବିପରୀତ ସମସ୍ତଙ୍କୁ ପୂର୍ବୋକ୍ତ ରୂପରେ 'ସଖୀ'-ଶ୍ରେଣୀଭୁକ୍ତ କହୁଥିଲେ ।

### ଭାବୁକତା ସ୍ଥଳରେ ଯଥାର୍ଥ ବୈରାଗ୍ୟ ଓ ଈଶ୍ୱରପ୍ରେମ ପ୍ରତିଷ୍ଠା କରିବାର ଚେଷ୍ଟା :

ସେହି ପ୍ରକାର ଯୁକ୍ତିତର୍କ ଏବଂ ବ୍ୟଙ୍ଗ ପରିହାସ ସାହାଯ୍ୟରେ ଭାବୁକତାର ଗଣ୍ଡି ଭଗ୍ନ କରି ହିଁ ନରେନ୍ଦ୍ରନାଥ ନିଶ୍ଚିନ୍ତ ହୋଇ ନ ଥିଲେ । କାହାରି କୌଣସି ପ୍ରକାର ଭାବ ଭଙ୍ଗ କରି ସେହି ସ୍ଥଳରେ ଅବଲମ୍ବନ ପାଇଁ ଅନ୍ୟଭାବ ଯେପର୍ଯ୍ୟନ୍ତ ପ୍ରତିଷ୍ଠିତ କରା ନ ଯାଏ, ସେପର୍ଯ୍ୟନ୍ତ ପ୍ରଚାର-କାର୍ଯ୍ୟ ସୁସମ୍ପନ୍ନ ଓ ଫଳଦାୟକ ହୁଏ ନାହିଁ — ଏକଥା ସେ ସମ୍ପୂର୍ଣ୍ଣରୂପରେ ହୃଦୟଙ୍ଗମ କରୁଥିଲେ ଏବଂ ସେଥିପାଇଁ ସେହି ବିଷୟରେ ଏବେଠାରୁ ବିଶେଷ ଚେଷ୍ଟା କରିଥିଲେ । ଅବସର ସମୟରେ ଯୁବକ-ଭକ୍ତମାନଙ୍କୁ ଦଳବଦ୍ଧ କରି ସେ ସଂସାରର ଅନିତ୍ୟତା, ବୈରାଗ୍ୟ ଓ ଈଶ୍ୱରଭକ୍ତିମୂଳକ ସଙ୍ଗୀତସବୁ ସେମାନଙ୍କ ସହିତ ମିଳିତ ହୋଇ ଗାନ କରି ସେମାନଙ୍କର ପ୍ରାଣରେ ତ୍ୟାଗ, ବୈରାଗ୍ୟ ଏବଂ ଭକ୍ତିଭାବ ଅନୁକ୍ଷଣ ପ୍ରଦୀପ୍ତ ରଖୁଥିଲେ । ଠାକୁରଙ୍କୁ ଦର୍ଶନ କରିବାକୁ ଆସି ଅନେକେ ସେତେବେଳେ ତାଙ୍କର ମଧୁର କଣ୍ଠରେ ନିମ୍ନଲିଖିତ ସଙ୍ଗୀତ ତଥା ସ୍ତୋତ୍ର ଆଦି ଶୁଣି ବୈରାଗ୍ୟ ଏବଂ ଈଶ୍ୱର-ପ୍ରେମର ଉତ୍ତେଜନାରେ ଅଶ୍ରୁ ବିସର୍ଜନ କରୁ କରୁ ପ୍ରତ୍ୟାବର୍ତ୍ତନ କରୁଥିଲେ ।

(୧) କ୍ୟା ଦିଲମାନ ତାମିଲ ପ୍ୟାରା ଆଖିର ମିଚ୍ଛି ମେ ମିଲ ଜାନା ।

(୨) ଜୀବନ ମଧୁମୟ ତବ ନାମ ଗାନେ ହୟ ହେ

(୩) ଅମୃତସିନ୍ଧୁ ଚିଦାନନ୍ଦଘନ ହେ । ଅଥବା —

ମନବୁଦ୍ଧି ଅହଂକାର ଚିତ୍ତାନି ନାହଂ
ନ ଚ ଶ୍ରୋତ୍ରଜିହ୍ୱେ ନ ଚ ଘ୍ରାଣନେତ୍ରେ ।
ନ ଚ ବ୍ୟୋମ ଭୂମିର୍ନ ତେଜୋ ନ ବାୟୁ–
ଶ୍ଚିଦାନାନନ୍ଦ ରୂପଃ ଶିବୋଽହମ୍ ଶିବୋଽହମ୍ ।।

**ଠାକୁରଙ୍କୁ ଭଲ ପାଇଲେ ତାଙ୍କ ସଦୃଶ ଜୀବନ ହେବ :**

ଠାକୁରଙ୍କ ଜୀବନର ଗଭୀର ଈଶ୍ୱର ଅନୁରାଗପ୍ରସୂତ ସାଧନା–କଥାସବୁ ବିବୃତ କରି କେତେବେଳେ ସେ ସେମାନଙ୍କୁ ତାଙ୍କର ମହିମାଜ୍ଞାପନରେ ମୁଗ୍ଧ ଓ ସ୍ତମ୍ଭିତ କରୁଥିଲେ ଏବଂ 'ଈଶାନୁସରଣ' ଗ୍ରନ୍ଥରୁ ଉକ୍ତି ଉଦ୍ଧୃତ କରି କହୁଥିଲେ, 'ପ୍ରଭୁଙ୍କୁ ଯିଏ ଯଥାର୍ଥ ଭଲ ପାଇବେ ତାହାର ଜୀବନ ସର୍ବତୋଭାବରେ ଶ୍ରୀପ୍ରଭୁଙ୍କ ଜୀବନ ଅନୁଯାୟୀ ଗଠିତ ହେବ,—ଅତଏବ ଠାକୁରଙ୍କୁ ଆମେ ଠିକ୍ ଭାବରେ ଭଲ ପାଉଛୁ କି ନାହିଁ ତାହାର ପ୍ରକୃଷ୍ଟ ପ୍ରମାଣ ସେଥିରୁ ହିଁ ପାଇହେବ ।' ପୁଣି 'ଅଦ୍ୱୈତଜ୍ଞାନ କାନିରେ ବାନ୍ଧି ଯାହା ଇଚ୍ଛା ତାହା କର'—ଠାକୁରଙ୍କର ସେହିକଥା ସେମାନଙ୍କୁ ସ୍ମରଣ କରାଇ ବୁଝାଇ ଦେଉଥିଲେ ଯେ, ତାଙ୍କର ସମସ୍ତପ୍ରକାର ଭାବୁକତା ଏହି ଜ୍ଞାନକୁ ମୂଳଦୁଆ ସ୍ୱରୂପ ଅବଲମ୍ବନ କରି ଉତ୍‌ଥିତ ହୋଇଥାଏ— ଅତଏବ ସେହି ଜ୍ଞାନ ଯେପରି ସର୍ବାଗ୍ରେ ଲାଭ ହୁଏ ସେଥିପାଇଁ ସେମାନଙ୍କୁ ସଚେଷ୍ଟ ହେବାକୁ ହେବ ।

**ଭକ୍ତମାନଙ୍କୁ ନୂତନ ତତ୍ତ୍ୱସମୂହ ପରୀକ୍ଷାପୂର୍ବକ ଗ୍ରହଣ କରାଇବାର ଚେଷ୍ଟା :**

ନୂତନ ତତ୍ତ୍ୱସମୂହ ପରୀକ୍ଷାପୂର୍ବକ ଗ୍ରହଣ କରିବାକୁ ସେ ସେମାନଙ୍କୁ ଅନେକ ସମୟରେ ପ୍ରୋତ୍ସାହିତ କରୁଥିଲେ । ଆମର ମନେ ଅଛି, ଧ୍ୟାନ କିମ୍ବା ଚିତ୍ତର ଏକାଗ୍ରତା ସହାୟରେ ନିଜର ଓ ଅନ୍ୟର ଶାରୀରିକ ବ୍ୟାଧି ଦୂର କରାଯାଇପାରେ, ଏକଥା ଶୁଣି ସେ ଦିନେ ଆମକୁ ଏକତ୍ର କରି ଠାକୁରଙ୍କର ଶାରୀରିକ ବ୍ୟାଧି ଦୂର କରିବାର ପ୍ରୟାସରେ ଦ୍ୱାର ବନ୍ଦ କରି ଗୃହ ମଧ୍ୟରେ ସେହିପ୍ରକାର ଅନୁଷ୍ଠାନରେ ନିଯୁକ୍ତ କରିଥିଲେ । ସେପରି ପୁଣି, ଅଯୁକ୍ତିକର ବିଷୟମାନଙ୍କରୁ ଭକ୍ତମାନେ ଯେପରି ଦୂରରେ ରହନ୍ତି, ସେବିଷୟରେ ମଧ୍ୟ ସେ ସର୍ବଦା ପ୍ରୟାସ କରୁଥିଲେ । ଦୃଷ୍ଟାନ୍ତସ୍ୱରୂପ ନିମ୍ନଲିଖିତ ଘଟଣାଟି ଉଲ୍ଲେଖ କରାଯାଇପାରେ ।

**ମହିମ ଚକ୍ରବର୍ତ୍ତୀଙ୍କର ଲୋକମାନ୍ୟ ପ୍ରାପ୍ତି ଲାଳସା :**

ମୋତିଝିଲର ଦକ୍ଷିଣାଂଶ ଯେଉଁଠାରେ କାଶୀପୁର ରାସ୍ତା ସହିତ ସଂଯୁକ୍ତ ହୋଇଅଛି, ତାହାର ସାମନା ରାସ୍ତାର ଅପର ପାର୍ଶ୍ୱରେ ମହିମାଚରଣ ଚକ୍ରବର୍ତ୍ତୀଙ୍କର ଘର ଥିଲା । ନାନା ସଦ୍‌ଗୁଣଭୂଷିତ ହୋଇ ମଧ୍ୟ ଚକ୍ରବର୍ତ୍ତୀ ମହାଶୟ ଲୋକମାନ୍ୟ

ନିମନ୍ତେ ବିଶେଷ ଲାଳାୟିତ ଥିଲେ । ଏପରିକି ମିଥ୍ୟାର ଆଶ୍ରୟ ଗ୍ରହଣ କଲେ ଯଦି ଲୋକମାନ୍ୟ ମିଳିଯାଏ ତାହା କରିବାକୁ ମଧ୍ୟ ସେ କୁଣ୍ଠିତ ହେଉ ନ ଥିଲେ । କେଉଁଥିରେ ଲୋକମାନେ ତାଙ୍କୁ ଧନୀ, ବିଦ୍ୱାନ, ବୁଦ୍ଧିମାନ, ଧାର୍ମିକ, ଦାନଶୀଳ ଇତ୍ୟାଦି ଯାବତୀୟ ସଦ୍‌ଗୁଣଶାଳୀ କହିବେ, ଏହି ଭାବନା ତାଙ୍କର ଜୀବନର ପ୍ରତ୍ୟେକଟି କାର୍ଯ୍ୟ ନିୟନ୍ତ୍ରିତ କରି ବେଳେ ବେଳେ ତାଙ୍କୁ ଲୋକଙ୍କ ନିକଟରେ ହାସ୍ୟାସ୍ପଦ କରୁଥିଲା । ଚକ୍ରବର୍ତ୍ତୀ ମହାଶୟ କୌଣସି ସମୟରେ ଗୋଟିଏ ଅବୈତନିକ ବିଦ୍ୟାଳୟ ଖୋଲି ତାର ନାମ ରଖିଥିଲେ, 'ପ୍ରାଚ୍ୟ-ଆର୍ଯ୍ୟ-ଶିକ୍ଷା କାଣ୍ଡ ପରିଷଦ୍' । ତାଙ୍କର ଏକମାତ୍ର ପୁତ୍ରର ନାମ ରଖିଥିଲେ 'ମୃଗାଙ୍କ-ମୌଳି ପୁତତୁଣ୍ଡୀ' । ଘରେ ଗୋଟିଏ ହରିଣ ଥିଲା, ତାର ନାମ ଦେଇଥିଲେ 'କପିଞ୍ଜଳ' । କାରଣ ତାଙ୍କ ପରି ପଣ୍ଡିତ ବ୍ୟକ୍ତିଙ୍କର ସରଳ ନାମ ରଖିବା କ'ଣ ଶୋଭା ପାଏ ? ତାଙ୍କର ଇଂରାଜୀ, ସଂସ୍କୃତ ନାନା ଗ୍ରନ୍ଥ ସଂଗ୍ରହ ଥିଲା । ଆଳାପ ହେବା ପରେ ଦିନେ ନରେନ୍ଦ୍ରନାଥଙ୍କ ସହିତ ତାଙ୍କ ଘରକୁ ଯାଇ ଆମେ ପଚାରିଥିଲୁ, 'ଚକ୍ରବର୍ତ୍ତୀ ମହାଶୟ, ଆପଣ କ'ଣ ଏତେସବୁ ଗ୍ରନ୍ଥ ପଢ଼ିଛନ୍ତି ?' ଉତ୍ତରରେ ସେ ସବିନୟରେ ତାହା ସ୍ୱୀକାର କରିଥିଲେ । କିନ୍ତୁ ପରକ୍ଷଣରେ ହିଁ ନରେନ୍ଦ୍ର ତାହା ମଧ୍ୟରୁ କେତେକ ଗ୍ରନ୍ଥ ବାହାର କରି ସେଗୁଡ଼ିକର ପୃଷ୍ଠା କଟା ହୋଇ ନାହିଁ ଦେଖି କାରଣ ପଚାରିବାରୁ ସେ କହିଲେ, 'କ'ଣ ଜାଣ ଭାଇ, ଲୋକମାନେ ମୋର ପଢ଼ା ପୁସ୍ତକ ସବୁ ନେଇ ଯାଇ ଆଉ ଫେରାଇ ନାହାନ୍ତି, ସେହି ସ୍ଥାନରେ ଏହି ପୁସ୍ତକ ସବୁ ପୁନରାୟ କିଣି ରଖିଛି, ତେଣୁ ଏବେ ଆଉ କାହାକୁ ପୁସ୍ତକ ନେବା ପାଇଁ ଦେଉ ନାହିଁ ।' କିନ୍ତୁ ନରେନ୍ଦ୍ରନାଥ ଅଳ୍ପ ଦିନ ମଧ୍ୟରେ ହିଁ ଆବିଷ୍କାର କରିଥିଲେ ଯେ, ଚକ୍ରବର୍ତ୍ତୀ ମହାଶୟଙ୍କର ସଂଗୃହୀତ ଯାବତୀୟ ପୁସ୍ତକର ପୃଷ୍ଠା କଟା ହୋଇ ନାହିଁ ! ସୁତରାଂ ସେସମସ୍ତ ଗ୍ରନ୍ଥ ସେ କେବଳ ଲୋକମାନ୍ୟଲାଭ ଓ ଗୃହର ଶୋଭାବର୍ଦ୍ଧନ ପାଇଁ ରଖିଥିଲେ, ସେବିଷୟରେ ନରେନ୍ଦ୍ରନାଥଙ୍କର ଦୃଢ଼ ଧାରଣା ହୋଇଥିଲା ।

### ଜ୍ଞାନୀ ମହିମଙ୍କର ବ୍ୟାଘ୍ରଚର୍ମ :

ଆମମାନଙ୍କ ସହିତ ଆଳାପ କରିବା ସମୟରେ ଧର୍ମସାଧନାର କଥାପ୍ରସଙ୍ଗରେ ଚକ୍ରବର୍ତ୍ତୀ ମହାଶୟ ନିଜକୁ ଜ୍ଞାନମାର୍ଗର ସାଧକ ବୋଲି ପରିଚୟ ଦେଇଥିଲେ । କଲିକତାବାସୀ ଭକ୍ତମାନଙ୍କର ଠାକୁରଙ୍କ ନିକଟକୁ ଯିବାର ବହୁ ବର୍ଷ ପୂର୍ବରୁ ମହିମାଚରଣ ଦକ୍ଷିଣେଶ୍ୱରକୁ ଯାତାୟାତ କରୁଥିଲେ ଏବଂ କୌଣସି କୌଣସି ପର୍ବ ଦିନମାନଙ୍କରେ ପଞ୍ଚବଟୀ ତଳେ ବ୍ୟାଘ୍ରଚର୍ମ ବିଛାଇ ଗେରୁଆବସ୍ତ୍ର ପରିଧାନ, ରୁଦ୍ରାକ୍ଷ ଧାରଣ ଓ ଏକତାରା ଗ୍ରହଣପୂର୍ବକ ଆଡ଼ମ୍ବର ସହକାରେ ସାଧନାରେ ବସୁଥିଲେ । ଘରକୁ ଫେରିବା ସମୟରେ ବ୍ୟାଘ୍ରଚର୍ମଟିକୁ ଠାକୁରଙ୍କ

ଘରର ଏକ କୋଣରେ କାନ୍ଥରେ ଝୁଲାଇ ରଖି ଯାଉଥିଲେ ! ଠାକୁର ତାଙ୍କୁ ଠିକ୍ ଠିକ୍ ଚିହ୍ନିଥିଲେ । କାରଣ ଏହି ବ୍ୟାଘ୍ରଚର୍ମଟି କାହାର, ତାଙ୍କୁ ଏକଥା ଦିନେ ଜଣେ ପଚାରିବାରୁ, ସେ କହିଥିଲେ, ''ଏହାକୁ ମହିମ ଚକ୍ରବର୍ତ୍ତୀ ରଖି ଯାଇଛନ୍ତି । କାହିଁକି ଜାଣିଛ ? ଲୋକେ ଏହା ଦେଖି ପଚାରିବେ ଏବଂ ମୁଁ ତା'ର ନାମ କହିଲେ ସେମାନଙ୍କର ଧାରଣା ହେବ ମହିମ ଚକ୍ରବର୍ତ୍ତୀ ଜଣେ ଖୁବ୍ ବଡ଼ ସାଧକ ।''

## ମହିମଙ୍କର ଗୁରୁ :

ଦୀକ୍ଷା ସମ୍ବନ୍ଧରେ କଥା ପଡ଼ିଲେ ମହିମବାବୁ କେବେ କେବେ କହୁଥିଲେ, ''ମୋର ଗୁରୁଦେବଙ୍କର ନାମ ଆଗମାଚାର୍ଯ୍ୟ ଡମ୍ବରୁବଲ୍ଲଭ ।'' ପୁଣି କେତେବେଳେ କହୁଥିଲେ, ''ଠାକୁରଙ୍କ ପରି ସେ ମଧ୍ୟ ପରମହଂସ ପରିବ୍ରାଜକ ଶ୍ରୀଯୁକ୍ତ ତୋତାପୁରୀଙ୍କ ନିକଟରୁ ଦୀକ୍ଷାଗ୍ରହଣ କରିଛନ୍ତି ! ପଶ୍ଚିମରେ ତୀର୍ଥପର୍ଯ୍ୟଟନ ସମୟରେ ଗୋଟିଏ ସ୍ଥାନରେ ତାଙ୍କ ଦର୍ଶନ ପାଇଥିଲି ଏବଂ ଦୀକ୍ଷିତ ହୋଇଥିଲି, ଠାକୁରଙ୍କୁ ସେ ଭକ୍ତି ଅବଲମ୍ବନ କରି ରହିବାକୁ କହିଛନ୍ତି ଏବଂ ମୋତେ ଜ୍ଞାନମାର୍ଗର ସାଧକ ହୋଇ ସଂସାରରେ ରହିବାକୁ ଉପଦେଶ ଦେଇଛନ୍ତି ।'' ଏକଥା କେତେଦୂର ସତ୍ୟ ତାହା ସେ ସ୍ୱୟଂ ଏବଂ ସର୍ବାନ୍ତର୍ଯ୍ୟାମୀ ପୁରୁଷ ହିଁ ଜାଣନ୍ତି ।

## ମହିମବାବୁଙ୍କର ଧର୍ମ ସାଧନା :

ସାଧନା ମଧ୍ୟରେ ଦେଖାଯାଉଥିଲା ମହିମବାବୁ ଯେତେବେଳେ ସେତେବେଳେ ଏବଂ ଯେଉଁଠି ସେଇଠି ଏକତାରା ସୁରରେ ସ୍ୱର ମିଳାଇ ପ୍ରଣବ ଉଚ୍ଚାରଣ, ତା' ମଧ୍ୟରେ ଗୋଟେ ଅଧେ ଉତ୍ତରଗୀତାଦି ପୁସ୍ତକର ଶ୍ଳୋକ ପାଠ ଓ ହୁଙ୍କାର ଧ୍ୱନି କରୁଥିଲେ । ସେ କହୁଥିଲେ, ତାହା ହିଁ ସନାତନ ଜ୍ଞାନ ମାର୍ଗର ସାଧନା, ତାହା କଲେ ଅନ୍ୟ କୌଣସି ସାଧନାର ଆବଶ୍ୟକ ନାହିଁ । ସେଥିରେ ହିଁ କୁଳକୁଣ୍ଡଳିନୀ ଜାଗ୍ରତ ହେବ ଏବଂ ଈଶ୍ୱରଦର୍ଶନ ହେବ । ମହିମବାବୁଙ୍କ ଘରେ ଶ୍ରୀଶ୍ରୀଅନ୍ନପୂର୍ଣ୍ଣା ମୂର୍ତ୍ତି ପ୍ରତିଷ୍ଠିତ ଥିଲା ଏବଂ ବୋଧହୁଏ ପ୍ରତିବର୍ଷ ଜଗଦ୍ଧାତ୍ରୀ ପୂଜା ମଧ୍ୟ ହେଉଥିଲା—ଏଥିରୁ ଅନୁମାନ କରାଯାଏ ସେ ଶାକ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଶେଷଜୀବନରେ ସେ ଶକ୍ତିସାଧନପ୍ରଣାଳୀ ହିଁ ଅବଲମ୍ବନ କରିଥିଲେ ବୋଲି ବୋଧ ହୁଏ । କାରଣ ସେତେବେଳେ ତାଙ୍କୁ ଖଣ୍ଡିଏ ଛୋଟ ଘୋଡ଼ାଗାଡ଼ି ଚଢ଼ି ଇତସ୍ତତଃ ପରିଭ୍ରମଣ କରିବା ସମୟରେ ବେଳେ ବେଳେ ଚିତ୍କାର କରି କହିବାର ଶୁଣାଯାଉଥିଲା, 'ତାରା ତତ୍ତ୍ୱମସି, ତ୍ୱମସି ତତ୍ ।' ଚକ୍ରବର୍ତ୍ତୀ ମହାଶୟଙ୍କର ଅଳ୍ପ କିଛି ଜମିଦାରୀ ଥିଲା, ସେଥିରୁ ଯାହା ଆୟ ହୁଏ, ସେଥିରେ ତାଙ୍କର ସଂସାର ଚଳିଯାଉଥିଲା ।

## ଶ୍ୟାମପୁକୁରରେ ମହିମାଚରଣ :

ଠାକୁର ଶ୍ୟାମପୁକୁରରେ ଥିବାବେଳେ ମହିମବାବୁ ଦୁଇ ତିନି ଥର ତାଙ୍କୁ ଦେଖିବାକୁ ଆସିଥିଲେ । ସେତେବେଳେ ଠାକୁରଙ୍କ ସହିତ କୁଶଳ ପ୍ରଶ୍ନ ଆଦି କରିବା ପରେ ସେ ସାଧାରଣ ଲୋକଙ୍କ ପାଇଁ ନିର୍ଦ୍ଦିଷ୍ଟ ଘରେ ଆସି ବସୁଥିଲେ ଏବଂ ଏକତାରା-ସଂଯୋଗରେ ମନ୍ତ୍ରସାଧନାରେ ଏବଂ ତାହାରି ଭିତରେ ବେଳେ ବେଳେ ଅନ୍ୟମାନଙ୍କ ସହିତ ଧର୍ମାଲୋଚନାରେ ଲିପ୍ତ ରହୁଥିଲେ । ତାଙ୍କର ଗୈରିକପରିହିତ ସୁନ୍ଦର କାନ୍ତି, ବିଶାଳ ବପୁ ଏବଂ ବାକ୍ୟବିନ୍ୟାସରେ ମୁଗ୍ଧ ହୋଇ ଅନେକେ ତାଙ୍କୁ ଆଧ୍ୟାତ୍ମିକତା ସମ୍ବନ୍ଧରେ ନାନା ପ୍ରଶ୍ନ କରୁଥିଲେ । ଠାକୁର ମଧ୍ୟ ତାଙ୍କୁ ବେଳେ ବେଳେ କହୁଥିଲେ, ''ତୁମେ ପଣ୍ଡିତ, (ଉପସ୍ଥିତ ସମସ୍ତଙ୍କୁ ଦେଖାଇ) ଏମାନଙ୍କୁ କିଛି ଉପଦେଶ ଦିଅ ।'' କାରଣ, କେତେଗୁଡ଼ିଏ ଶିଷ୍ୟ ସଂଗ୍ରହପୂର୍ବକ ଧର୍ମୋପଦେଷ୍ଟା ବୋଲି ନିଜର ନାମ ଜାହିର କରିବା ଯେ ତାଙ୍କର ଆନ୍ତରିକ ଇଚ୍ଛା, ଏକଥା ଜାଣିବାକୁ ଠାକୁରଙ୍କର ବାକି ନ ଥିଲା ।

## ମହିମ ଓ ନରେନ୍ଦ୍ରଙ୍କ ମଧ୍ୟରେ ତର୍କ :

ଶ୍ୟାମପୁକୁର ଆସି ମହିମବାବୁ ଦିନେ ଏପରି ନାନାପ୍ରକାର କଥା କହିବାକୁ ଲାଗିଲେ ଏବଂ ଅନ୍ୟାନ୍ୟ ସମସ୍ତ ପ୍ରକାର ସାଧନାର ଉପାୟକୁ ହୀନ କରି ତାଙ୍କର ଅବଲମ୍ବିତ ସାଧନପଥ ହିଁ ଶ୍ରେଷ୍ଠ ଏବଂ ସହଜ, ଏହା ପ୍ରତିପନ୍ନ କରିବାକୁ ଲାଗିଲେ । ଠାକୁରଙ୍କର ଯୁବକଭକ୍ତଗଣ ତାଙ୍କର ସେହି ସବୁ କଥା ବିନା ପ୍ରତିବାଦରେ ଶୁଣୁଛନ୍ତି ଦେଖି ନରେନ୍ଦ୍ରନାଥଙ୍କର ଆଉ ସହ୍ୟ ହେଲା ନାହିଁ । ସେ ବିପରୀତ ତର୍କ ଉଠାଇ ମହିମବାବୁଙ୍କର କଥା ଅଯୁକ୍ତିକର ବୋଲି ଦେଖାଇବାକୁ ଲାଗିଲେ ଏବଂ କହିଲେ, ''ଆପଣଙ୍କ ପରି ଏକତାରା ବଜାଇ ମନ୍ତ୍ର ଉଚ୍ଚାରଣ କଲେ ହିଁ ଯେ ଈଶ୍ୱର-ଦର୍ଶନ ହେବ ତାର ପ୍ରମାଣ କ'ଣ ?'' ଏହାର ଉତ୍ତରରେ ମହିମବାବୁ କହିଲେ, 'ନାଦ ହିଁ ବ୍ରହ୍ମ, ଏହି ସ୍ୱରସଂଯୁକ୍ତ ମନ୍ତ୍ର ଉଚ୍ଚାରଣ ପ୍ରଭାବରେ ଈଶ୍ୱରଙ୍କୁ ଦେଖା ଦେବାକୁ ହିଁ ହେବ, ଅନ୍ୟ କିଛି କରିବାର ଆବଶ୍ୟକତା ନାହିଁ ।' ନରେନ୍ଦ୍ର କହିଲେ, 'ଈଶ୍ୱର ଆପଣଙ୍କ ସହିତ ସେହିପରି ଲେଖାପଢ଼ା କରିଛନ୍ତି ନା କ'ଣ ? କିମ୍ବା ଈଶ୍ୱର ମନ୍ତ୍ରୌଷଧି-ବଶ ସର୍ପସଦୃଶ —ସୁର ଚଢ଼ାଇ ହୁମ୍-ହାମ୍ କଲେ ହିଁ ଅବଶ ହୋଇ ସମ୍ମୁଖରେ ଓହ୍ଲାଇ ଆସିବେ !' କହିବା ବାହୁଲ୍ୟ, ନରେନ୍ଦ୍ରନାଥଙ୍କର ତର୍କ ଯୋଗୁଁ ମହିମବାବୁଙ୍କର ପ୍ରଚାର କାର୍ଯ୍ୟ ସେଦିନ ବିଶେଷ ଜମି ନ ଥିଲା ଏବଂ ସେଦିନ ସେ ଶୀଘ୍ର ବିଦାୟ ନେଇଥିଲେ ।

## ନରେନ୍ଦ୍ରଙ୍କର ଯଥାର୍ଥ ସାଧକମାନଙ୍କୁ ସମାନ ଜ୍ଞାନ କରିବାକୁ ଶିକ୍ଷାଦେବା :

ଭିନ୍ନ ସମ୍ପ୍ରଦାୟଭୁକ୍ତ ଯଥାର୍ଥ ସାଧକମାନେ ଯେପରି ଠାକୁରଙ୍କର ଭକ୍ତମାନଙ୍କ ନିକଟରେ ବିଶେଷ ସମ୍ମାନ ପାଆନ୍ତି, ସେ ବିଷୟରେ ମଧ୍ୟ ନରେନ୍ଦ୍ରନାଥଙ୍କର ବିଶେଷ ଦୃଷ୍ଟି ଥିଲା । ସେ କହୁଥିଲେ, ସାଧାରଣ ଲୋକେ ଯେପରି ଅନ୍ୟ ସମସ୍ତଙ୍କୁ ନିନ୍ଦା ଏବଂ କେବଳ ନିଜ ସମ୍ପ୍ରଦାୟର ସାଧକମାନଙ୍କୁ ହିଁ ଶ୍ରଦ୍ଧା ଭକ୍ତି କରନ୍ତି, ସେପରି କଲେ ଠାକୁରଙ୍କର, 'ଯେତେ ମତ ସେତେ ପଥ' ରୂପକ ମତବାଦ ଉପରେ— ସୁତରାଂ ଠାକୁରଙ୍କ ଉପରେ ହିଁ ଅଶ୍ରଦ୍ଧା ପ୍ରକାଶ କରାହୁଏ । ଶ୍ୟାମପୁକୁରରେ ଥିବା ସମୟରେ ଏପରି ଗୋଟିଏ ଘଟଣା ଆମର ମନେ ପଡୁଛି :

## ଖ୍ରୀଷ୍ଟିୟାନ ଧର୍ମଯାଜକ ପ୍ରଭୁଦୟାଲ ମିଶ୍ର :

ପ୍ରଭୁଦୟାଲ ମିଶ୍ର ନାମକ ଜନୈକ ଖ୍ରୀଷ୍ଟିୟାନ ଧର୍ମଯାଜକ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଦିନେ ଆସିଥିଲେ । ଗେରୁଆ ପରିହିତ ଦେଖି ଆମେ ପ୍ରଥମେ ତାଙ୍କୁ ଖ୍ରୀଷ୍ଟିୟାନ ବୋଲି ବୁଝିପାରି ନ ଥିଲୁ । ପରେ କଥାପ୍ରସଙ୍ଗରେ ସେ ଯେତେବେଳେ ତାଙ୍କର ସ୍ୱରୂପ ପରିଚୟ ପ୍ରଦାନ କଲେ, ସେତେବେଳେ ତାଙ୍କୁ ପଚରାଗଲା 'ସେ ଖ୍ରୀଷ୍ଟିୟାନ ହୋଇ ଗୈରିକ ବସ୍ତ୍ର ପରିଧାନ କରୁଛନ୍ତି କାହିଁକି ? ସେଥିରେ ସେ ଉତ୍ତର ଦେଲେ, ''ବ୍ରାହ୍ମଣବଂଶରେ ଜନ୍ମଗ୍ରହଣ କରିଛି, ଭାଗ୍ୟକ୍ରମେ ଈଶାମସିଙ୍କ ଉପରେ ବିଶ୍ୱାସସ୍ଥାପନପୂର୍ବକ ତାଙ୍କୁ ନିଜ ଇଷ୍ଟଦେବତାରୂପରେ ଗ୍ରହଣ କରିଛି ବୋଲି କ'ଣ ମୋତେ ମୋର ପିତୃପିତାମହଙ୍କ ଚାଲିଚଳଣ ଇତ୍ୟାଦି ଛାଡ଼ିଦେବାକୁ ହେବ ? ମୁଁ ଯୋଗଶାସ୍ତ୍ରରେ ବିଶ୍ୱାସୀ ଏବଂ ଈଶାଙ୍କୁ ଇଷ୍ଟ-ଦେବତା ରୂପେ ଅବଲମ୍ବନ କରି ପ୍ରତିଦିନ ଯୋଗାଭ୍ୟାସ କରିଥାଏ । ଜାତିଭେଦରେ ମୋର ବିଶ୍ୱାସ ନ ଥିଲେ ମଧ୍ୟ ଯାହା-ତାହା ହାତରୁ ଭୋଜନ କଲେ ଯୋଗାଭ୍ୟାସର ହାନି ହେବ, ଏକଥାରେ ମୁଁ ବିଶ୍ୱାସ କରେ ଏବଂ ପ୍ରତିଦିନ ସ୍ୱପାକରେ ହବିଷ୍ୟାନ୍ନ ଖାଇଥାଏ । ଏହା ଫଳରେ ଖ୍ରୀଷ୍ଟିୟାନ ହେଲେ ମଧ୍ୟ ଯୋଗାଭ୍ୟାସର ଫଳ— ଯଥା, ଜ୍ୟୋତିଃଦର୍ଶନ ଇତ୍ୟାଦି ମୋର ଗୋଟି ଗୋଟି କରି ହେଉଅଛି । ଭାରତର ଈଶ୍ୱରପ୍ରେମିକ ଯୋଗୀମାନେ ସନାତନ କାଳରୁ ଗୈରିକ ପରିଧାନ କରିଆସିଛନ୍ତି, ତେଣୁ ତାହା ଅପେକ୍ଷା ମୋ ପାଖରେ ଅନ୍ୟ କୌଣସି ପ୍ରକାର ବସ୍ତ୍ର କ'ଣ ପ୍ରିୟତର ହୋଇପାରେ ?'' ପ୍ରଶ୍ନ ପରେ ପ୍ରଶ୍ନ କରି ନରେନ୍ଦ୍ରନାଥ ତାଙ୍କର ପ୍ରାଣର ସମସ୍ତ କଥା ସେହିପରି ଗୋଟି ଗୋଟି ବାହାର କରି ନେଇଥିଲେ ଏବଂ ସାଧୁ ଓ ଯୋଗୀ ବୋଲି ଜାଣି ତାଙ୍କୁ ବିଶେଷ ସମ୍ମାନ ପ୍ରଦର୍ଶନପୂର୍ବକ ଆମମାନଙ୍କୁ ମଧ୍ୟ ସେପରି କରିବାକୁ ଶିକ୍ଷାପ୍ରଦାନ କରିଥିଲେ । ଏହାପରେ ଆମମାନଙ୍କ ମଧ୍ୟରୁ ଅନେକେ ତାଙ୍କର ପାଦସ୍ପର୍ଶପୂର୍ବକ

ପ୍ରଣାମ ଏବଂ ତାଙ୍କ ସହିତ ଏକତ୍ର ଠାକୁରଙ୍କର ପ୍ରସାଦୀ ମିଷ୍ଟାନ୍ନ ଆଦି ଭୋଜନ କରିଥିଲେ । ଠାକୁରଙ୍କୁ ସେ ସାକ୍ଷାତ୍ ଈଶ୍ୱର ବୋଲି ନିଜର ମତ ପ୍ରକାଶ କରିଥିଲେ ।

## ଠାକୁରଙ୍କର ରୋଗର ବୃଦ୍ଧି ଏବଂ ଭକ୍ତମାନେ ତାଙ୍କୁ କାଶୀପୁର ବଗିଚାକୁ ନେଇଯିବା :

ଏହିପରି ନରେନ୍ଦ୍ରନାଥ ଯେତେବେଳେ ଠାକୁରଙ୍କର ଭକ୍ତମାନଙ୍କୁ ସୁପଥରେ ପରିଚାଳିତ କରିବାରେ ନିଯୁକ୍ତ ଥିଲେ ସେତେବେଳେ ଠାକୁରଙ୍କର ଶାରୀରିକ ବ୍ୟାଧି ଦିନକୁ ଦିନ ବୃଦ୍ଧି ପାଉଥିଲା । ଡାକ୍ତର ସରକାରଙ୍କର ଔଷଧରେ ପୂର୍ବରୁ ଯେପରି ଅଳ୍ପ ବହୁତ ଉପକାର ମିଳୁଥିଲା ଏବେ ସେସବୁ ଔଷଧରେ କିଛି ଉପକାର ନ ହେବା ଦେଖି ଡାକ୍ତର ଚିନ୍ତିତ ହୋଇପଡ଼ିଲେ ଏବଂ କଲିକତାର ରୁଦ୍ଧ ଦୂଷିତ ବାୟୁ ପାଇଁ ଏପରି ହେଉଛି ବୋଲି ମତ ପ୍ରକାଶ କରି ସହରର ବାହାରେ କୌଣସି ଉଦ୍ୟାନ-ଗୃହରେ ଠାକୁରଙ୍କୁ ରଖିବା ପାଇଁ ପରାମର୍ଶ କଲେ । ସେତେବେଳେ ମାର୍ଗଶୀର ମାସରୁ ଅଧା ସରିଯାଇଥିଲା । ପୌଷ ମାସରେ ଠାକୁର ଘର ପରିବର୍ତ୍ତନ କରିବାକୁ ଚାହିଁବେ ନାହିଁ ଜାଣି ଭକ୍ତମାନେ ଏବେ ଉଠିପଡ଼ି ସେପରି ବଗିଚାଘର ଅନୁସନ୍ଧାନରେ ଲାଗିପଡ଼ିଲେ ଏବଂ ଅଳ୍ପ ଦିନ ମଧ୍ୟରେ ହିଁ କାଶୀପୁରସ୍ଥିତ ମୋତିଝିଲର ଉତ୍ତରାଂଶ ଯେଉଁଠି ବରାହନଗର-ବଜାରକୁ ଯିବାର ବଡ଼ ରାସ୍ତା ସହିତ ସଂଯୁକ୍ତ ହୋଇଛି, ତାହାରି ସମ୍ମୁଖରେ ରାସ୍ତାର ପୂର୍ବ ପାର୍ଶ୍ୱରେ ଅବସ୍ଥିତ ରାଣୀ କାତ୍ୟାୟନୀଙ୍କର ଜ୍ୱାଇଁ ଗୋପାଳଚନ୍ଦ୍ର ଘୋଷଙ୍କର ଉଦ୍ୟାନ-ଗୃହ ୮୦ଟଙ୍କା ମାସିକ ଭଡ଼ାରେ ଠାକୁରଙ୍କର ରହିବା ପାଇଁ ନିଆଗଲା । ଠାକୁରଙ୍କର ପରମଭକ୍ତ କଲିକତାର ସିମୁଳିଆ ପଲ୍ଲୀନିବାସୀ ସୁରେନ୍ଦ୍ରନାଥ ମିତ୍ର ମହାଶୟ ଉକ୍ତ ଘରଭଡ଼ାର ସମସ୍ତ ବ୍ୟୟ ବହନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ ।

ଘର ଠିକ୍ ହେଲା ପରେ ଶୁଭଦିନ ଦେଖି ଶ୍ୟାମପୁକୁରରୁ ଜିନିଷପତ୍ର ନେଇ ଉକ୍ତଘରେ ରହିବାର ବନ୍ଦୋବସ୍ତ ହେଲା । ଶେଷରେ ମାର୍ଗଶୀର ମାସ ସଂକ୍ରାନ୍ତିର ଦିନକ ପୂର୍ବରୁ ଅପରାହ୍ଣରେ ଭକ୍ତଗଣ ଶ୍ୟାମପୁକୁର ବସାରୁ ଠାକୁରଙ୍କୁ କାଶୀପୁରର ଉଦ୍ୟାନ-ଗୃହକୁ ଆନୟନ କଲେ ଏବଂ ଫଳ ପୁଷ୍ପସମନ୍ୱିତ ବୃକ୍ଷରାଜିଶୋଭିତ ସେହି ସ୍ଥାନର ମୁକ୍ତବାୟୁ, ନିର୍ଜନତା ପ୍ରଭୃତି ଦର୍ଶନରେ ଠାକୁର ଆନନ୍ଦିତ ହେବା ଦେଖି ପରମ ଆନନ୍ଦ ଲାଭ କଲେ ।

# ପରିଶିଷ୍ଟ

## କାଶୀପୁରର ଉଦ୍ୟାନ–ଗୃହ

କଲିକତାର ଉତ୍ତରାଂଶରେ ଯେଉଁ ପ୍ରଶସ୍ତ ରାସ୍ତାଟି ପ୍ରାୟ ତିନିମାଇଲ ଦୂରରେ ଅବସ୍ଥିତ ବରାହନଗରକୁ ବାଗବଜାର ପଲ୍ଲୀ ସହିତ ସଂଯୁକ୍ତ ରଖିଛି ତାହା ଉପରେ ହିଁ କାଶୀପୁରର ଉଦ୍ୟାନ–ଗୃହ ବିଦ୍ୟମାନ ।

ବାଗ୍‌ବଜାର ପୋଲର ଉତ୍ତରରୁ ଆରମ୍ଭ କରି ଉକ୍ତ ଉଦ୍ୟାନର କିଛିଦୂର ଦକ୍ଷିଣରେ ଅବସ୍ଥିତ କାଶୀପୁର ଚାରିଛକ ପର୍ଯ୍ୟନ୍ତ ଏହି ରାସ୍ତାର ପ୍ରାୟ ଉଭୟ ପାର୍ଶ୍ୱରେ ହିଁ ଦରିଦ୍ର ଦିନ–ମଜୁରିଆ ଶ୍ରେଣୀର ଲୋକମାନଙ୍କର ରହିବାର ଝୁମ୍ପୁଡ଼ି ଘର ଏବଂ ସେମାନଙ୍କର ଦୈନନ୍ଦିନ ଜୀବନନିର୍ବାହର ଉପଯୋଗୀ ନାନାଦି ଦ୍ରବ୍ୟ ସମ୍ଭାରପୂର୍ଣ୍ଣ କ୍ଷୁଦ୍ର କ୍ଷୁଦ୍ର ଦୋକାନ ସବୁ ଦେଖିବାକୁ ମିଳେ । ଏହା ମଧ୍ୟରେ ଇତସ୍ତତଃ ବିକ୍ଷିପ୍ତ କେତୋଟି କୋଠାଘର — ଯଥା, କେତୋଟି ଝୋଟ ପୁଟୁଳି ବାନ୍ଧିବା କୋଠି, ଦାସ କମ୍ପାନୀର ଲୁହା କାରଖାନା, ରେଳିର କୋଠି, ଗୋଟିଏ ଦୁଇଟି ବଗିଚା ବା ବାସଭବନ ଏବଂ କାଶୀପୁରର ଚାରିଛକର ଦକ୍ଷିଣ–ପଶ୍ଚିମ କୋଣରେ ଅବସ୍ଥିତ ପୁଲିସ୍‌ଙ୍କର ଏବଂ ଅଗ୍ନି–ଭୟନିବାରକ ଇଞ୍ଜିନ୍ ଆଦି ରଖିବାର କୋଠା ଏବଂ ଏହାର ପଶ୍ଚିମରେ ଅନତିଦୂରରେ ସର୍ବମଙ୍ଗଳାଦେବୀଙ୍କର ସୁପ୍ରସିଦ୍ଧ ମନ୍ଦିର — ଯେପରି ମାନବମାନଙ୍କ ମଧ୍ୟରେ ବିଷମ ଅବସ୍ଥାଭେଦର ସାକ୍ଷ୍ୟପ୍ରଦାନ କରିବା ପାଇଁ ହିଁ ଦଣ୍ଡାୟମାନ ଅଛି । ଶିଆଲଦା ଷ୍ଟେସନର ଉନ୍ନତି ଓ ବିସ୍ତୃତି ହେବାରୁ ଏବେ ପୁଣି ଉକ୍ତ ରାସ୍ତାର ପାର୍ଶ୍ୱରେ ଅନେକଗୁଡ଼ିଏ ଟିଣ ଛାତବିଶିଷ୍ଟ ଗୋଦାମଘର ନିର୍ମିତ ହୋଇ କେତେବର୍ଷ ପୂର୍ବରୁ ତାହାର ଯାହା କିଛି ସୌନ୍ଦର୍ଯ୍ୟ ଥିଲା ତାହାର ଅଧିକାଂଶର ବିଲୋପସାଧନ କରିଅଛି । ସେହିପରି ସେହି ପୁରାତନ ରାସ୍ତାଟି ନୟନପ୍ରୀତିକର ନ ହେଲେ ମଧ୍ୟ ଐତିହାସିକଙ୍କର ଚକ୍ଷୁରେ ଏହାର କିଛି ମୂଲ୍ୟ ଅଛି । କାରଣ ଶୁଣାଯାଏ, ଏହିପଥ ଦେଇ ଅଗ୍ରସର ହୋଇ ହିଁ ନବାବ ସିରାଜ ଗୋବିନ୍ଦପୁରର ବ୍ରିଟିଶଦୁର୍ଗ ଅଧିକାର କରିଥିଲେ ଏବଂ ବାଗବଜାରରୁ ପ୍ରାୟ ଅଧମାଇଲ ଉତ୍ତରରେ ଏହାର ଏକାଂଶରେ ମସିମୁଖ ନବାବ ମୀର୍ଜାଫରଙ୍କର ଗୋଟିଏ ପ୍ରାସାଦ କୌଣସି ସମୟରେ ଅବସ୍ଥିତ ଥିଲା । ବାଗବଜାରରୁ କାଶୀପୁର ଚାରିଛକ ପର୍ଯ୍ୟନ୍ତ ପଥଟି ବିଶେଷ ଦର୍ଶନୀୟ ନ ହେଲେ ବି ଏହାପରଠାରୁ ବରାହନଗର ବଜାର ପର୍ଯ୍ୟନ୍ତ ବିସ୍ତୃତ ଅଂଶଟି ଦେଖିବାକୁ ଖରାପ ନ ଥିଲା । ଉକ୍ତ ଚାରିଛକରୁ ଉତ୍ତରରେ ଅଳ୍ପଦୂର ଗଲେ ମୋତିଝିଲର ଦକ୍ଷିଣାଂଶ ଏବଂ ତାହାର ବିପରୀତ ରାସ୍ତାର ପୂର୍ବ ପାର୍ଶ୍ୱରେ ଆମର ପରିଚିତ ମହିମାଚରଣ ଚକ୍ରବର୍ତ୍ତୀଙ୍କର ସୁନ୍ଦର ବାସଗୃହ ସେତେବେଳେ ଦେଖାଯାଉଥିଲା । ରେଳ କମ୍ପାନୀ ଏବେ ଉକ୍ତ ଗୃହର ଚତୁଷ୍ପାର୍ଶ୍ୱସ୍ଥ ଉଦ୍ୟାନର ଅଧିକାଂଶ କ୍ରୟ କରି ତାହା ମଧ୍ୟ ଦେଇ ରେଳର

ଏକ ଶାଖା ଗଙ୍ଗାତୀର ପର୍ଯ୍ୟନ୍ତ ବିସ୍ତୃତ କରି ଏହାକୁ ଶ୍ରୀହୀନ କରିଦେଇଛି । ଏହି ସ୍ଥାନରୁ ଆଉ କିଛି ଦୂର ଉତ୍ତରରେ ଅଗ୍ରସର ହେଲେ ବାମରେ ମୋତିଝିଲର ଉତ୍ତରାଂଶ ଏବଂ ତା'ର ବିପରୀତ ରାସ୍ତାର ପୂର୍ବପାର୍ଶ୍ୱରେ କାଶୀପୁର ଉଦ୍ୟାନର ଉଚ୍ଚ ପ୍ରାଚୀର ଓ ଲୌହମୟ ଫାଟକ ନୟନଗୋଚର ହୁଏ । ମୋତିଝିଲର ପଶ୍ଚିମରେ ଅବସ୍ଥିତ ରାସ୍ତା ପାର୍ଶ୍ୱରେ କେତୋଟି ସୁନ୍ଦର ଉଦ୍ୟାନ-ଗୃହ ଗଙ୍ଗାକୂଳରେ ଅବସ୍ଥିତ ଥିଲା, ତାହା ମଧ୍ୟରେ ମୋତିଲାଲ ଶୀଲଙ୍କର ପ୍ରଶସ୍ତ ଓ ବିଶେଷ ମନୋଜ୍ଞ ବଗିଚା ଅନ୍ୟତମ; ଯାହା ଏବେ କଲିକତା ଇଲେକ୍‌ଟ୍ରିକ୍ କମ୍ପାନୀର ହସ୍ତଗତ ହୋଇ ଏହାପୂର୍ବର ବିରାମ ଓ ସୌନ୍ଦର୍ଯ୍ୟ ଭାବ ହରାଇ କର୍ମ ଏବଂ ବ୍ୟବସାୟର ବ୍ୟସ୍ତତା ଓ କୋଳାହଳରେ ସର୍ବଦା ମୁଖରିତ ରହିଛି । ମୋତି ଶୀଲଙ୍କ ଉଦ୍ୟାନର ଉତ୍ତରରେ ସେତେବେଳେ ବସାକମାନଙ୍କର ଖଣ୍ଡିଏ ଭଙ୍ଗାଘର ଗଙ୍ଗାକୂଳରେ ଥିଲା । ରାସ୍ତାରୁ ଉକ୍ତ ଜୀର୍ଣ୍ଣ ଭବନକୁ ଯିବାର ଯେଉଁ ବାଟଥିଲା ତାହାର ଉଭୟ ପାର୍ଶ୍ୱରେ ବୃହତ୍ ଝାଉଁଗଛଶ୍ରେଣୀ ଥିବାରୁ ସେତେବେଳେ ଏକ ଅପୂର୍ବ ଶୋଭା ଓ ଦିବ୍ୟଧ୍ୱନି ସର୍ବଦା ନୟନ ଓ ଶ୍ରବଣର ସୁଖ ସମ୍ପାଦନ କରୁଥିଲା । କାଶୀପୁରର ଉଦ୍ୟାନ-ଗୃହରେ ଠାକୁରଙ୍କ ନିକଟରେ ରହିବା ବେଳେ ଆମେମାନେ ଉକ୍ତ ଶୀଲ ମହାଶୟଙ୍କ ଉଦ୍ୟାନକୁ ଅନେକ ସମୟରେ ଗଙ୍ଗାସ୍ନାନ ଉଦ୍ଦେଶ୍ୟରେ ଯାଉଥିଲୁ ଏବଂ ଠାକୁର ଭଲ ପାଉଥିବାରୁ ଘାଟର ଧାରରେ ଥିବା ବୃହତ୍ 'ଗୁଲୁଚି' ଫୁଲ ଗଛରୁ ଫୁଲ ତୋଳି ତାଙ୍କୁ ଉପହାର ପ୍ରଦାନ କରୁଥିଲୁ । ଅନେକ ସମୟରେ ପୁଣି ଅପୂର୍ବ ଝାଉଁ ବୃକ୍ଷରାଜିଶୋଭିତ ପଥ ଦେଇ ଚାଲି ବସାକମାନଙ୍କର ଜନମାନବଶୂନ୍ୟ ଉଦ୍ୟାନଭବନକୁ ଯାଇ ଗଙ୍ଗାକୂଳରେ ବସିରହିଥିଲୁ । ସେହି ବଗିଚାର ସାମାନ୍ୟ ଉତ୍ତରରେ ପ୍ରାଣନାଥ ଚୌଧୁରୀଙ୍କର ପ୍ରଶସ୍ତ ସ୍ନାନ ଘାଟ ଏବଂ ତାର ଉତ୍ତରରେ ସୁପ୍ରସିଦ୍ଧ ଲାଲାବାବୁଙ୍କର ପତ୍ନୀ ରାଣୀ କାତ୍ୟାୟନୀଙ୍କର ବିଚିତ୍ର ଗୋପାଳ-ମନ୍ଦିର ଅବସ୍ଥିତ । ଏହି ସ୍ଥାନକୁ ମଧ୍ୟ ଆମେ ବେଳେ ବେଳେ ସ୍ନାନ ଏବଂ ଗୋପାଳଜୀଙ୍କର ଦର୍ଶନ ନିମିତ୍ତ ଯାଉଥିଲୁ । ରାଣୀ କାତ୍ୟାୟନୀଙ୍କର ଜ୍ୱାଇଁ ଗୋପାଳଚନ୍ଦ୍ର ଘୋଷ କାଶୀପୁର ଉଦ୍ୟାନ-ଗୃହର ସ୍ୱତ୍ୱାଧିକାରୀ ଥିଲେ । ଭକ୍ତମାନେ ତାଙ୍କରି ନିକଟରୁ ତାହା ଠାକୁରଙ୍କର ରହିବା ପାଇଁ ମାସିକ ୮୦ ଟଙ୍କା ଭଡ଼ାରେ ପ୍ରଥମ ଛଅମାସର ଏବଂ ପରେ ଆହୁରି ତିନିମାସ ପାଇଁ ଚୁକ୍ତିପତ୍ର ପ୍ରଦାନ କରି ଭଡ଼ା ନେଇଥିଲେ । ଠାକୁରଙ୍କର ପରମଭକ୍ତ ସିମଳାପଲ୍ଲୀ-ନିବାସୀ ସୁରେନ୍ଦ୍ରନାଥ ମିତ୍ର ହିଁ ଉକ୍ତ ଚୁକ୍ତିପତ୍ରରେ ଦସ୍ତଖତ କରି ଏହି ବ୍ୟୟଭାର ଗ୍ରହଣ କରିଥିଲେ ।

ବଡ଼ ନ ହେଲେ ମଧ୍ୟ କାଶୀପୁର ଉଦ୍ୟାନ-ଗୃହ ବେଶ ରମଣୀୟ ଥିଲା । ଆକାରରେ ଏହା ଚଉଦ ବିଘା ଅନ୍ଦାଜ ହେବ । ଉତ୍ତର-ଦକ୍ଷିଣ ଅପେକ୍ଷା ଏହି ଚତୁଷ୍କୋଣ ଭୂମିର ପ୍ରସାର ପୂର୍ବ-ପଶ୍ଚିମରେ କିଛି ଅଧିକ ଥିଲା ଏବଂ ଏହାର ଚତୁର୍ଦ୍ଦିଗ ଉଚ୍ଚ ପ୍ରାଚୀରବେଷ୍ଟିତ ଥିଲା । ବଗିଚାର ଉତ୍ତର ସୀମାର ପ୍ରାୟ ମଧ୍ୟ ଭାଗରେ

ପ୍ରାଚୀର ସଂଲଗ୍ନ ପାଖାପାଖି ତିନି ଚାରୋଟି ଛୋଟ ଛୋଟ କୋଠରୀ ରନ୍ଧନ ଓ ଭଣ୍ଡାର ପାଇଁ ନିର୍ଦ୍ଦିଷ୍ଟ ଥିଲା । ସେହି କୋଠରୀଗୁଡ଼ିକର ସମ୍ମୁଖସ୍ଥ ଉଦ୍ୟାନପଥର ଅପର ପାର୍ଶ୍ୱରେ ଗୋଟିଏ ଦ୍ୱିତଳ ବାସଗୃହ; ତାହାର ତଳେ ଚାରୋଟି ଏବଂ ଉପରେ ଦୁଇଟି ଘର ଥିଲା । ନିମ୍ନସ୍ଥିତ ଘରଗୁଡ଼ିକ ଭିତରେ ମଧ୍ୟଭାଗର ଘରଟି ହିଁ ପ୍ରଶସ୍ତ ହଲ୍ ପରି ଥିଲା । ତାହାର ଉତ୍ତରରେ ପାଖାପାଖି ଦୁଇଟି ଛୋଟ ଘର, ତନ୍ମଧ୍ୟରେ ପଶ୍ଚିମସ୍ଥିତ ଘରଠାରୁ କାଠ ନିର୍ମିତ ସୋପାନ ସାହାଯ୍ୟରେ ଦ୍ୱିତଳକୁ ଉଠାଯାଏ ଏବଂ ପୂର୍ବ ଦିଗର ଘରଟି ଶ୍ରୀଶ୍ରୀମାତାଠାକୁରାଣୀଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ପୂର୍ବ-ପଶ୍ଚିମରେ ବିସ୍ତୃତ ପୂର୍ବୋକ୍ତ ପ୍ରଶସ୍ତ ହଲ୍‌ଘର ଓ ତାହାର ଦକ୍ଷିଣର ଘରଟି — ଯାହାର ପୂର୍ବ ଦିଗକୁ ଗୋଟିଏ ଛୋଟ ବାରଣ୍ଡା ଥିଲା — ତାହା ସେବକ ଓ ଭକ୍ତମାନଙ୍କର ଶୋଇବା ଓ ବସିବା ପାଇଁ ବ୍ୟବହୃତ ହେଉଥିଲା । ନିମ୍ନର ହଲଘର ଉପରେ ଦୋତାଲାରେ ସମପରିସର ଗୋଟିଏ ଘର, ସେଠାରେ ହିଁ ଠାକୁର ରହୁଥିଲେ । ଏହାର ଦକ୍ଷିଣରେ ପ୍ରାଚୀରବେଷ୍ଟିତ ସ୍ୱଳ୍ପପରିସର ଛାତ, ସେଠାରେ ଠାକୁର ବେଳେ ବେଳେ ପଦଚାରଣ ଓ ଉପବେଶନ କରୁଥିଲେ । ଉତ୍ତରରେ ସିଡ଼ି ଘର ଏବଂ ଉପର ଛାତ ଏବଂ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ନିମିତ୍ତ ନିର୍ଦ୍ଦିଷ୍ଟ ଘରଟିର ଉପରେ ଅବସ୍ଥିତ ସମପରିସର ଗୋଟିଏ କ୍ଷୁଦ୍ର ଘର, ତାହା ଠାକୁରଙ୍କର ସ୍ନାନ ଆଦି ଏବଂ ଜଣେ ଦୁଇଜଣ ସେବକଙ୍କ ଦ୍ୱାରା ରାତ୍ରିବାସ ପାଇଁ ବ୍ୟବହୃତ ହେଉଥିଲା ।

ରହିବା ଘରର ପୂର୍ବ ଓ ପଶ୍ଚିମରେ ପାହାଚ ଦେଇ ତଳ ହଲଘରକୁ ଯାଇ ହେଉଥିଲା ଏବଂ ଏହାର ଚତୁର୍ଦ୍ଦିଗରେ ଇଟାରେ ତିଆରି ସୁନ୍ଦର ଉଦ୍ୟାନପଥ ପ୍ରାୟ ଗୋଲାକାରରେ ପ୍ରସାରିତ ଥିଲା । ବଗିଚାର ଦକ୍ଷିଣ-ପଶ୍ଚିମ କୋଣରେ ଏହାର ପଶ୍ଚିମଦିଗ ପ୍ରାଚୀରସଂଲଗ୍ନ ହୋଇ ଦରଓ୍ୱାନ ପାଇଁ ଏକ କ୍ଷୁଦ୍ର ଘର ଏବଂ ତାପରେ ଲୌହମୟ ଫାଟକ ଥିଲା । ଏହି ଫାଟକରୁ ଆରମ୍ଭ ହୋଇ ଗାଡ଼ି ଯିବା ପାଇଁ ପ୍ରଶସ୍ତ ଉଦ୍ୟାନ ପଥ ପୂର୍ବ-ଉତ୍ତରରେ ଅର୍ଦ୍ଧଚନ୍ଦ୍ରାକାରରେ ଅଗ୍ରସର ହୋଇ ରହିବା ଘରର ଚତୁଃପାର୍ଶ୍ୱସ୍ଥ ଗୋଲାକାର ପଥ ସହିତ ସଂଯୁକ୍ତ ହୋଇଥିଲା । ରହିବା ଘରର ପଶ୍ଚିମରେ ଗୋଟିଏ ଛୋଟ ପୋଖରୀ ଥିଲା । ହଲ୍‌ଘରେ ପ୍ରବେଶ କରିବାର ପଶ୍ଚିମସ୍ଥିତ ପାହାଚଗୁଡ଼ିକର ବିପରୀତରେ ଉଦ୍ୟାନପଥର ଅନ୍ୟ ଦିଗରେ ମଧ୍ୟ ଉକ୍ତ ପୋଖରୀରେ ଓହ୍ଲାଇବାକୁ ପାହାଚ ଥିଲା । ବଗିଚାର ଉତ୍ତର-ପୂର୍ବ କୋଣରେ ଉକ୍ତ ଗାଡ଼ିଆ ଅପେକ୍ଷା ଚାରିପାଞ୍ଚ ଗୁଣ ବଡ଼ ଆଉ ଗୋଟିଏ ପୁଷ୍କରିଣୀ ଓ ତା'ର ଉତ୍ତର-ପଶ୍ଚିମ କୋଣରେ ଦୁଇ-ତିନୋଟି ଏକତାଲା ଘର ଥିଲା । ଏହାଛଡ଼ା ଉଦ୍ୟାନର ଉତ୍ତର ପଶ୍ଚିମକୋଣରେ ଗୋଟିଏ ଘୋଡ଼ାଶାଳ ଓ ବଗିଚାର ଦକ୍ଷିଣ ସୀମାର ପ୍ରାଚୀରର ମଧ୍ୟଭାଗ ସମ୍ମୁଖରେ ମାଳୀମାନଙ୍କ ନିମିତ୍ତ ଦୁଇଟି ପାଖାପାଖି ଅବସ୍ଥିତ ଭଙ୍ଗା ଇଟା-ନିର୍ମିତ ଘର ଥିଲା । ବଗିଚାରେ ଅନ୍ୟ ସର୍ବତ୍ର ଆମ୍ବ, ପଣସ,

ଲିଚୁ ପ୍ରଭୃତି ଫଳବୃକ୍ଷସମୂହ ଏବଂ ଉଦ୍ୟାନପଥର ଉଭୟ ପାର୍ଶ୍ୱ ପୁଷ୍ପବୃକ୍ଷରାଜିରେ ଶୋଭିତ ଥିଲା ଏବଂ ଗାଡ଼ିଆ ଓ ପୁଷ୍କରିଣୀର ପାର୍ଶ୍ୱସ୍ଥିତ ଭୂମିର ଅନେକ ସ୍ଥାନ ନିତ୍ୟ ଆବଶ୍ୟକୀୟ ଶାଗ-ପରିବା ଉତ୍ପାଦନ ନିମିତ୍ତ ବ୍ୟବହୃତ ହେଉଥିଲା । ପୁଣି, ବୃହତ୍ ବୃକ୍ଷମାନଙ୍କ ଅନ୍ତରାଳରେ ମଧ୍ୟେ ମଧ୍ୟେ ଶ୍ୟାମଳ ତୃଣଆଚ୍ଛାଦିତ ଭୂମିଖଣ୍ଡ ବିଦ୍ୟମାନ ଥାଇ ଉଦ୍ୟାନର ସୌନ୍ଦର୍ଯ୍ୟ ଅଧିକତର ବର୍ଦ୍ଧିତ କରାଉଥିଲା ।

ଏହି ଉଦ୍ୟାନକୁ ଠାକୁର ମାର୍ଗଶୀର ଶେଷରେ ଆଗମନ କରି ୧୨୯୧ ବଙ୍ଗାବ୍ଦର ଶୀତ ଓ ବସନ୍ତକାଳ ଏବଂ ୧୨୯୨ ବଙ୍ଗାବ୍ଦର ଗ୍ରୀଷ୍ମ ଏବଂ ବର୍ଷାଋତୁ ଅତିବାହିତ କରିଥିଲେ ।[୧] ଏହି ଆଠ ମାସକାଳ ବ୍ୟାଧି ଯେପରି ପ୍ରତିନିୟତ ବୃଦ୍ଧି ହୋଇ ତାଙ୍କର ଦୀର୍ଘ ବଳିଷ୍ଠ ଶରୀରକୁ ଜୀର୍ଣ୍ଣ-ଭଗ୍ନ କରି କଙ୍କାଳସାର କରିଥିଲା, ତାଙ୍କର ସଂଯମସିଦ୍ଧ ମନ ମଧ୍ୟ ସେପରି ରୋଗର ପ୍ରକୋପ ଓ ଯନ୍ତ୍ରଣା ସମ୍ପୂର୍ଣ୍ଣ ଅଗ୍ରାହ୍ୟ କରି ସେ ବ୍ୟକ୍ତିଗତ ଏବଂ ମଣ୍ଡଳୀଗତଭାବରେ ଭକ୍ତସଂଘ ମଧ୍ୟରେ ଯେଉଁ କାର୍ଯ୍ୟ ଏହାପୂର୍ବରୁ ଆରମ୍ଭ କରିଥିଲେ, ତାହାର ପରିସମାପ୍ତି ପାଇଁ ନିରନ୍ତର ନିଯୁକ୍ତ ରହି ପ୍ରୟୋଜନ ଅନୁଯାୟୀ ସେମାନଙ୍କୁ ଶିକ୍ଷାଦୀକ୍ଷାଦି- ପ୍ରଦାନରେ ପ୍ରବୃତ୍ତ ହୋଇଥିଲା । କେବଳ ତାହା ନୁହେଁ, ଠାକୁର ଦକ୍ଷିଣେଶ୍ୱରରେ ଅବସ୍ଥାନ କାଳରେ ନିଜ ସମ୍ବନ୍ଧରେ ଯେଉଁ ସମସ୍ତ ଭବିଷ୍ୟତ କଥା ଭକ୍ତମାନଙ୍କୁ ଅନେକ ସମୟରେ କହିଥିଲେ, ଯଥା—‘‘ଯିବା ପୂର୍ବରୁ (ସଂସାର ପରିତ୍ୟାଗ କରିବା ପୂର୍ବରୁ) ହାଟରେ ହାଣ୍ଡି ଭାଙ୍ଗିଦେବି (ଅର୍ଥାତ୍ ନିଜ ଦେବ-ମାନବତ୍ୱ ସମସ୍ତଙ୍କ ଆଗରେ ପ୍ରକାଶ କରିବି)’’; ‘‘ଯେତେବେଳେ ଅଧିକ ଲୋକେ (ତାଙ୍କର ଦିବ୍ୟ ମହିମା ବିଷୟ) ଜାଣିପାରିବେ, କୁହାକୁହି ହେବେ ସେତେବେଳେ (ନିଜ ଶରୀର ଦେଖାଇ) ଏହି ଖୋଳଟା ଆଉ ରହିବ ନାହିଁ, ମା’ର (ଜଗନ୍ମାତାର) ଇଚ୍ଛାରେ ଭାଙ୍ଗିଯିବ’’; ‘‘(ଭକ୍ତଗଣଙ୍କ ମଧ୍ୟରେ) କେଉଁମାନେ ଅନ୍ତରଙ୍ଗ ଓ କେଉଁମାନେ ବହିରଙ୍ଗ ତାହା ଏହି ସମୟରେ (ତାଙ୍କର ଶାରୀରିକ ଅସୁସ୍ଥତା ସମୟରେ) ନିରୂପିତ ହେବ’’ ଇତ୍ୟାଦି—ସେହି ସବୁ କଥାର ସାଫଲ୍ୟ ଆମେ ଏଠାରେ ପ୍ରତିନିୟତ ପ୍ରତ୍ୟକ୍ଷ କରିଥିଲୁ । ନରେନ୍ଦ୍ରନାଥପ୍ରମୁଖ ଭକ୍ତଗଣଙ୍କ ସମ୍ବନ୍ଧୀୟ ତାଙ୍କର ଭବିଷ୍ୟତ ବାଣୀର ସଫଳତା ମଧ୍ୟ ଆମେ ଏହି ସ୍ଥାନରେ ବୁଝିବାକୁ ସମର୍ଥ ହୋଇଥିଲୁ । ଯଥା —‘‘ମା’ତୋତେ(ନରେନ୍ଦ୍ରକୁ) ତାଙ୍କର କାର୍ଯ୍ୟ କରିବା ପାଇଁ ସଂସାରକୁ ଟାଣି ଆଣିଛି’’ ,‘‘ମୋ ପରେ ତୋତେ ହିଁ କରିବାକୁ ହେବ, ତୁ ଯିବୁ କୁଆଡ଼େ’’, ‘‘ଏମାନେ ସବୁ (ବାଳକ ଭକ୍ତଗଣ) ଯେପରି ହୋମା ପକ୍ଷୀ ଶାବକ ସଦୃଶ; ହୋମା ପକ୍ଷୀ ଆକାଶରେ ବହୁ ଉଚ୍ଚକୁ ଉଠି ଅଣ୍ଡା ଦେଇଥାଏ, ତେଣୁ ଅଣ୍ଡା ଦେବା ପରେ ତାହାର ଅଣ୍ଡାଗୁଡ଼ିକ ପ୍ରବଳ ବେଗରେ ପୃଥିବୀ ଆଡ଼କୁ ଖସୁଥାଏ—

---

୧. ଠାକୁର କାଶୀପୁର ଉଦ୍ୟାନ-ଗୃହକୁ ୧୧ଡିସେମ୍ବର ୧୮୮୫ରେ ଆସି ଶୀତ, ବସନ୍ତ, ଗ୍ରୀଷ୍ମ ଓ ବର୍ଷାଋତୁ ଅତିବାହିତ କରିଥିଲେ ।

ଭୟ ହୁଏ ମାଟିରେ ପଡ଼ି ଚୂର୍ଣ୍ଣ-ବିଚୂର୍ଣ୍ଣ ହୋଇଯିବ; କିନ୍ତୁ ତାହା ହୁଏ ନାହିଁ, ଭୂମି ସ୍ପର୍ଶ କରିବା ପୂର୍ବରୁ ହିଁ ଅଣ୍ଡା ଫୁଟି ଶାବକ ନିର୍ଗତ ହୁଏ ଏବଂ ପକ୍ଷ ପ୍ରସାରିତ କରି ପୁନରାୟ ଊର୍ଦ୍ଧ୍ୱ ଆକାଶକୁ ଉଡ଼ିଯାଏ; ଏମାନେ ମଧ୍ୟ ସେହିପରି ସଂସାରରେ ଆବଦ୍ଧ ହେବା ପୂର୍ବରୁ ହିଁ ସଂସାର ତ୍ୟାଗ କରି ଈଶ୍ୱରଙ୍କ ଆଡ଼କୁ ଅଗ୍ରସର ହେବେ !'' ତଦ୍‌ଭିନ୍ନ ନରେନ୍ଦ୍ରନାଥଙ୍କର ଜୀବନଗଠନପୂର୍ବକ ତାଙ୍କ ଉପରେ ନିଜର ଭକ୍ତମଣ୍ଡଳୀର, ବିଶେଷତଃ ବାଳକ-ଭକ୍ତଗଣଙ୍କର ଭାର ଅର୍ପଣ କରିବା ଏବଂ ସେମାନଙ୍କୁ କିପରି ପରିଚାଳନା କରିବାକୁ ହେବ ସେବିଷୟରେ ଶିକ୍ଷାପ୍ରଦାନ ଠାକୁର ଏହି ସ୍ଥାନରେ ହିଁ କରିଥିଲେ । ସୁତରାଂ କାଶୀପୁର ଉଦ୍ୟାନରେ ସଂସାଧିତ ଠାକୁରଙ୍କ କାର୍ଯ୍ୟଗୁଡ଼ିକର ଯେ ବିଶେଷ ଗୁରୁତ୍ୱ ଥିଲା ତାହା କହିବା ଅନାବଶ୍ୟକ ।

ଠାକୁରଙ୍କର ଜୀବନର ସେହି ସମସ୍ତ ଗୁରୁଗମ୍ଭୀର କାର୍ଯ୍ୟ ଯେଉଁଠାରେ ସଂସାଧିତ ହୋଇଥିଲା, ସେହି ସ୍ଥାନଟି ଯେପରି ତାଙ୍କର ପୁଣ୍ୟସ୍ମୃତି ବକ୍ଷରେ ଧାରଣପୂର୍ବକ ଚିରଦିନ ମନୁଷ୍ୟକୁ ଏସବୁ କଥା ସ୍ମରଣ କରାଇ ବିମଳ ଆନନ୍ଦର ଅଧିକାରୀ କରାଇବ ସେବିଷୟରେ ସମସ୍ତଙ୍କର ମନରେ ହିଁ ପ୍ରବଳ ଇଚ୍ଛା ସ୍ୱତଃ ଜାଗ୍ରତ ହୋଇଥାଏ । କିନ୍ତୁ ହାୟ, ଏବିଷୟରେ ବିଶେଷ ବିଘ୍ନ ଏବେ ଉପସ୍ଥିତ ହୋଇଅଛି । ଆମେ ଶୁଣିଛୁ, ଉକ୍ତ ଉଦ୍ୟାନ-ଗୃହ ରେଳ କମ୍ପାନୀ ହସ୍ତଗତ କରିବାକୁ ଅଗ୍ରସର ହୋଇଅଛି । ତେଣୁ ଠାକୁରଙ୍କର ଏହି ଅପୂର୍ବ ଲୀଳାସ୍ଥଳ ଯେ ଶୀଘ୍ର ହିଁ ରୂପାନ୍ତରିତ ହୋଇ ଝୋଟ ଗୋଦାମ ବା ଅନ୍ୟ କୌଣସି ପ୍ରକାର ଶ୍ରୀହୀନ ପଦାର୍ଥରେ ପରିଣତ ହେବ, ତାହା ସହଜରେ ଅନୁମିତ ହୁଏ ।[୧] କିନ୍ତୁ ବିଧାତାଙ୍କ ଇଚ୍ଛା ଯଦି ସେପରି ହୁଏ ତା ହେଲେ ଦୁର୍ବଳ ମନୁଷ୍ୟ ଆମେ କ'ଣ ବା କରିପାରିବା ? ଅତଏବ 'ଯଦ୍ୱିଧେର୍ମନସି ସ୍ଥିତମ୍' କହି ଏଠାରେ ଉପସଂହାର କରୁଛୁ ।

---

୧. ଆନନ୍ଦର ବିଷୟ ଏହି ଯେ, ବେଲୁଡ଼ ଶ୍ରୀରାମକୃଷ୍ଣ ମଠର କର୍ତ୍ତୃପକ୍ଷ ଏହି ଉଦ୍ୟାନ-ଗୃହ କ୍ରୟ କରି ନିଜ ଅଧିନକୁ ଆଣିଛନ୍ତି । ଶ୍ରୀଶ୍ରୀଠାକୁରଙ୍କର ସ୍ମୃତି ଏହିଠାରେ ଯଥୋଚିତ ରକ୍ଷିତ ହୋଇଛି ।—ପ୍ରଃ

# କାଶୀପୁରରେ ସେବାବ୍ରତ

ଆମେ ଏହାପୂର୍ବରୁ କହିଛୁ, ପୌଷ ମାସରେ ଯାତ୍ରା ନିଷିଦ୍ଧ ବୋଲି ଠାକୁର ମାର୍ଗଶୀର ମାସ ଶେଷ ହେବାର ଦୁଇଦିନ ପୂର୍ବରୁ ଶ୍ୟାମପୁକୁରଠାରୁ କାଶୀପୁର ଉଦ୍ୟାନକୁ ଚାଲି ଆସିଥିଲେ । କଲିକତାର ଜନକୋଳାହଳପୂର୍ଣ୍ଣ ରାସ୍ତା କଡ଼ରେ ଅବସ୍ଥିତ ଶ୍ୟାମପୁକୁର ଘର ଅପେକ୍ଷା ଉଦ୍ୟାନର ରହିବାଗୃହ ଅଧିକ ପ୍ରଶସ୍ତ ଓ ନିର୍ଜନ ଥିଲା ଏବଂ ଏହା ମଧ୍ୟରୁ ଯେଉଁ ଦିଗକୁ ଦେଖିଲେ ବୃକ୍ଷରାଜିର ସବୁଜ ପତ୍ର, ପୁଷ୍ପମାନଙ୍କର ଉଜ୍ଜ୍ୱଳ ବର୍ଣ୍ଣ ଏବଂ ତୃଣରାଜିର ଶ୍ୟାମଳତା ନୟନଗୋଚର ହେଉଥିଲା । ଦକ୍ଷିଣେଶ୍ୱର କାଳୀମନ୍ଦିରର ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟ ତୁଳନାରେ ଏହି ଉଦ୍ୟାନର ଶୋଭା ଅକିଞ୍ଚିତ୍କର ହେଲେ ମଧ୍ୟ ନିରନ୍ତର ଚାରି ମାସ କାଳ କଲିକତା ବାସ ପରେ ଠାକୁରଙ୍କ ନିକଟରେ ଏହା ରମଣୀୟ ବୋଲି ବୋଧ ହୋଇଥିଲା । ଉଦ୍ୟାନର ମୁକ୍ତ ବାୟୁରେ ପ୍ରବେଶ କଲା ମାତ୍ରେ ସେ ପ୍ରଫୁଲ୍ଲ ହୋଇ ଚତୁର୍ଦ୍ଦିଗ ଲକ୍ଷ୍ୟ କରୁ କରୁ ଅଗ୍ରସର ହୋଇଥିଲେ । ପୁଣି, ଦୋତାଲାରେ ତାଙ୍କର ରହିବା ପାଇଁ ନିର୍ଦ୍ଦିଷ୍ଟ ପ୍ରଶସ୍ତ ଘରଟିରେ ପ୍ରବେଶ କରି ପ୍ରଥମେ ସେ ଏହାର ଦକ୍ଷିଣରେ ଥିବା ଛାତକୁ ଯାଇ ସେହି ସ୍ଥାନରୁ ମଧ୍ୟ କିଛିକ୍ଷଣ ଉଦ୍ୟାନର ଶୋଭା ନିରୀକ୍ଷଣ କରିଥିଲେ । ଶ୍ୟାମପୁକୁର ଘରେ ଯେପରି ରୁଦ୍ଧ, ସଙ୍କୁଚିତ ଭାବରେ ରହିବାକୁ ହୋଇଥିଲା ଏଠାରେ ସେପରି ରହିବାକୁ ହେବ ନାହିଁ, ଅଥଚ ଠାକୁରଙ୍କର ସେବା ପୂର୍ବ ପରି କରିହେବ ଏକଥା ଭାବି ଶ୍ରୀଶ୍ରୀମାତାଠାକୁରାଣୀ ମଧ୍ୟ ଯେ ଆନନ୍ଦିତା ହୋଇଥିଲେ, ତାହା ବୁଝାଯାଏ । ଅତଏବ ଉଭୟଙ୍କର ଆନନ୍ଦରେ ସେବକମାନଙ୍କର ମନ ପ୍ରଫୁଲ୍ଲ ହୋଇଥିଲା, ଏକଥା କହିବା ଅନାବଶ୍ୟକ ।

ଉଦ୍ୟାନ-ଗୃହରେ ବାସ କରିବାକୁ ଯାଇ ଯେଉଁ ସମସ୍ତ ଛୋଟ ବଡ଼ ଅସୁବିଧା ପ୍ରଥମେ ଦୃଷ୍ଟିଗୋଚର ହେଲା ସେସବୁ ଦୂର କରିବାକୁ କିଛି ଦିନ ଲାଗିଲା । ଏସବୁ ଆଲୋଚନାରେ ନରେନ୍ଦ୍ରନାଥ ସହଜରେ ହିଁ ବୁଝିପାରିଲେ, ଠାକୁରଙ୍କ ସେବାର ଦାୟିତ୍ୱ ଯେଉଁମାନେ ସ୍ୱେଚ୍ଛାରେ ଗ୍ରହଣ କରିଛନ୍ତି, ସେମାନଙ୍କୁ ମଧ୍ୟ ଚିକିତ୍ସକମାନଙ୍କର ଘରଠାରୁ ଦୂରରେ ଅବସ୍ଥିତ ଏହି ସ୍ଥାନରେ ରହିବାକୁ ହେଲେ ଲୋକବଳ ଏବଂ ଅର୍ଥବଳ ଉଭୟ ହିଁ ପୂର୍ବାପେକ୍ଷା ଅଧିକ ପ୍ରୟୋଜନ । ପ୍ରଥମରୁ ଏହି ଦୁଇବିଷୟ ଲକ୍ଷ୍ୟ ରଖି କାର୍ଯ୍ୟରେ ଅଗ୍ରସର ନ ହେଲେ ସେବାରେ ତ୍ରୁଟି ହେବା ଅବଶ୍ୟମ୍ଭାବୀ । ବଳରାମ, ସୁରେନ୍ଦ୍ର, ରାମ, ଗିରିଶ, ମହେନ୍ଦ୍ର ପ୍ରଭୃତି ଯେଉଁମାନେ ଅର୍ଥବଳ କଥା ଏପର୍ଯ୍ୟନ୍ତ ଚିନ୍ତା କରିଆସିଥିଲେ ସେମାନେ ଏବିଷୟରେ ଭାବିଚିନ୍ତି କୌଣସି ଗୋଟିଏ ଉପାୟ ନିଶ୍ଚୟ ସ୍ଥିର କରିବେ । କିନ୍ତୁ ଲୋକବଳସଂଗ୍ରହ ପାଇଁ ତାଙ୍କୁ ଏହା ପୂର୍ବରୁ ଚିନ୍ତା କରିବାକୁ ପଡୁଥିଲା ଏବଂ ଏବେ

ମଧ୍ୟ ପଡ଼ିବ । ସେଥିପାଇଁ କାଶୀପୁର ଉଦ୍ୟାନରେ ଏବେଠାରୁ ତାଙ୍କୁ ଅଧିକାଂଶ ସମୟ ଅତିବାହିତ କରିବାକୁ ପଡ଼ିବ । ସେ ଏପରି ଭାବରେ ପଥ ନ ଦେଖାଇଲେ ଅଭିଭାବକମାନଙ୍କର ଅସନ୍ତୋଷ ଏବଂ ଚାକିରୀ ଓ ପାଠପଢ଼ାହାନିର ଆଶଙ୍କାରେ ଯୁବକ-ଭକ୍ତମାନଙ୍କ ମଧ୍ୟରୁ ଅନେକେ ସେପରି କରିପାରିବେ ନାହିଁ । କାରଣ, ଠାକୁର ଶ୍ୟାମପୁକୁରରେ ଥିବା ସମୟରେ ସେମାନେ ଯେପରି ନିଜ ନିଜ ଘରେ ଆହାରାଦି କରି ଆସି ତାଙ୍କର ସେବାରେ ନିଯୁକ୍ତ ହେଉଥିଲେ ଏଠାରୁ ସେପରି କରିବା କେବେହେଲେ ସମ୍ଭବପର ନୁହେଁ ।

ଆଇନ୍ (ବି.ଏଲ୍.) ପରୀକ୍ଷା ଦେବା ନିମନ୍ତେ ନରେନ୍ଦ୍ର ସେବର୍ଷ ପ୍ରସ୍ତୁତ ହେଉଥିଲେ । ଉକ୍ତ ପରୀକ୍ଷାର ଓ ଜ୍ଞାତିମାନଙ୍କର ଶତ୍ରୁତା ଆଚରଣରେ ବାସଗୃହ ବିଭାଜନ ନେଇ ହାଇକୋର୍ଟରେ ଯେଉଁ ଅଭିଯୋଗ ହୋଇଥିଲା ଏହି ଦୁଇଟି ବିଷୟ ନେଇ ତାଙ୍କର କଲିକତାରେ ରହିବା ଏବେ ଏକାନ୍ତ ପ୍ରୟୋଜନୀୟ ହେଲେ ମଧ୍ୟ ସେ ଶ୍ରୀଗୁରୁଙ୍କର ସେବା ନିମିତ୍ତ ଏହି ଅଭିପ୍ରାୟ ମନରୁ ସମ୍ପୂର୍ଣ୍ଣ ପରିତ୍ୟାଗପୂର୍ବକ ଆଇନ୍-ସଂକ୍ରାନ୍ତ ପୁସ୍ତକଗୁଡ଼ିକୁ କାଶୀପୁର ଉଦ୍ୟାନକୁ ଆଣି ଅବସରବେଳେ ଯେତେଦୂର ସମ୍ଭବ ଅଧ୍ୟୟନ କରିବେ, ଏହିପରି ସଂକଳ୍ପ କଲେ । ତେଣୁ ସର୍ବାଗ୍ରେ ଠାକୁରଙ୍କ ସେବା କରିବାର ସଂକଳ୍ପ ସହିତ ସୁବିଧା ମୁତାବକ ସେହିବର୍ଷ ଆଇନ୍-ପରୀକ୍ଷା ଦେବାର ସଂକଳ୍ପ ମଧ୍ୟ ନରେନ୍ଦ୍ରଙ୍କ ମନରେ ଏପର୍ଯ୍ୟନ୍ତ ଦୃଢ଼ ରହିଲା । କାରଣ, ଅନ୍ୟ କୌଣସି ଉପାୟ ଦେଖି ନ ପାରି ସେ ଏହାପୂର୍ବରୁ ସ୍ଥିର କରିଥିଲେ ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କେତେବର୍ଷ ପରିଶ୍ରମ କରି ମା' ଓ ଭାଇମାନଙ୍କ ପାଇଁ ମୋଟାମୋଟି ଖାଇବା-ପିନ୍ଧିବାର ଏକ ସଂସ୍ଥାନ କରି ସଂସାରରୁ ଅବସର ଗ୍ରହଣ କରି ଈଶ୍ୱର ସାଧନାରେ ବୁଡ଼ିଯିବେ । କିନ୍ତୁ ହାୟ, ସେହି ପ୍ରକାର ଶୁଭ ସଂକଳ୍ପ ତ ଆମେ ଅନେକେ ହିଁ କରିଥାଉ—ସଂସାରର ପ୍ରବଳ ଘୂର୍ଣ୍ଣିବଳୟରେ କେବେ କେବେ ବୁଡ଼ି ଯାଉଥିବା ସମୟରେ ବି ଭାବୁ ଯେ ପୁରୁଷାର୍ଥ ଦ୍ୱାରା ଏଥିରୁ ବାହାରି ଖୁବ୍ ଶୀଘ୍ର ଶୁଭ ମାର୍ଗରେ ଅଗ୍ରସର ହେବୁ କିନ୍ତୁ ସଂସାରର ଆବର୍ତ୍ତରେ ନ ପଡ଼ି ପରିଣାମରେ କେତେଜଣ ସେପରି କରିବାକୁ ସମର୍ଥ ହେଉ ? ଉତ୍ତମ ଅଧିକାରୀଗଣଙ୍କର ଅଗ୍ରଣୀ ହୋଇ ଠାକୁରଙ୍କର ଅଶେଷ କୃପାଲାଭରେ ସମର୍ଥ ହେଲେ ମଧ୍ୟ ନରେନ୍ଦ୍ରନାଥଙ୍କର ସେହି ସଂକଳ୍ପ ସଂସାରର ସଂଘର୍ଷରେ ବିଧ୍ୱସ୍ତ ଓ ବିପର୍ଯ୍ୟସ୍ତ ହୋଇ କାଳକ୍ରମେ ଅନ୍ୟ ଆକାର ଧାରଣ କରିବ ନାହିଁ ତ ? —ହେ ପାଠକ, ଧୈର୍ଯ୍ୟଧର, ଠାକୁରଙ୍କର ଅମୋଘ ଇଚ୍ଛାଶକ୍ତି ନରେନ୍ଦ୍ରନାଥଙ୍କୁ କେଉଁଠାରୁ କିପରି ଭାବରେ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ଦେଇଥିଲା ତାହା ଆମେ ଶୀଘ୍ର ଦେଖିବାକୁ ପାଇବା ।

ଠାକୁରଙ୍କର ସେବା ପାଇଁ ଭକ୍ତମାନେ ଯାହା କରୁଥିଲେ, ସେସମସ୍ତ କଥା ଆମେ ଏପର୍ଯ୍ୟନ୍ତ କହିଆସିଛୁ । ସୁତରାଂ ପ୍ରଶ୍ନ ହୋଇପାରେ, ଦକ୍ଷିଣେଶ୍ୱରରେ

ଅବସ୍ଥାନକାଳରେ ଯାହାଙ୍କୁ ଆମେମାନେ ବେଦ-ବେଦାନ୍ତର ଅତୀତ ତତ୍ତ୍ୱସମୂହର ସାକ୍ଷାତ ଉପଲବ୍ଧି ସହିତ ସମାନଭାବରେ ଛୋଟ ଛୋଟ ଦୈନନ୍ଦିନ ବିଷୟସମୂହରେ ଏବଂ ପ୍ରତ୍ୟେକ ଭକ୍ତର ସାଂସାରିକ ଓ ଆଧ୍ୟାତ୍ମିକ ଅବସ୍ଥା ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବାର ଦେଖିଅଛୁ, ସେହି ଠାକୁର କ'ଣ ଏହି ସମୟରେ ନିଜ ସମ୍ବନ୍ଧରେ କୌଣସି ଚିନ୍ତା ନ କରି ସମସ୍ତ ବିଷୟରେ ସର୍ବଦା ଭକ୍ତମାନଙ୍କ ଉପରେ ନିର୍ଭରଶୀଳ ହୋଇ ରହୁଥିଲେ ? ଉତ୍ତରରେ କୁହାଯାଇପାରେ, ସେ ଚିରକାଳ ଯାହା ଉପରେ ନିର୍ଭରଶୀଳ ହୋଇ ରହୁଥିଲେ ସେହି ଜଗନ୍ମାତାଙ୍କ ଉପରେ ହିଁ ଦୃଷ୍ଟି ନିବଦ୍ଧ ଓ ଏକାନ୍ତ ନିର୍ଭର କରି ଏବେ ମଧ୍ୟ ଥିଲେ ଏବଂ ଭକ୍ତଗଣଙ୍କ ପ୍ରତ୍ୟେକଙ୍କଠାରୁ ଯେଉଁ ପ୍ରକାରର ଯେତେଟିକିଏ ସେବା ଗ୍ରହଣ କରିଥିଲେ ତାହା ଶ୍ରୀଶ୍ରୀଜଗଦମ୍ବାଙ୍କର ଅଭିପ୍ରେତ ଓ ସେମାନଙ୍କର କଲ୍ୟାଣ ନିମିତ୍ତ—ଏହି କଥା ପୂର୍ବରୁ ହିଁ ସେ ଜାଣିଥିଲେ । ତାଙ୍କ ଜୀବନର ଆଖ୍ୟାୟିକା କହିବାକୁ ଆମେମାନେ ଯେତେ ଅଗ୍ରସର ହେବୁ ସେତେ ହିଁ ସେହି ବିଷୟର ପରିଚୟ ପାଇବୁ ।

ପୁଣି ଭକ୍ତଗଣକୃତ ଯେଉଁ ସମସ୍ତ ବନ୍ଦୋବସ୍ତ ତାଙ୍କ ମନକୁ ପାଉ ନ ଥିଲା ସେସବୁ ସେ ସେମାନଙ୍କର ଜ୍ଞାତସାରରେ ଏବଂ ଯେଉଁଠି ବୁଝୁଥିଲେ ସେମାନଙ୍କ ମନରେ କଷ୍ଟ ହେବ ସେସ୍ଥଳରେ ସେମାନଙ୍କର ଅଜ୍ଞାତସାରରେ ପରିବର୍ତ୍ତନ କରିନେଉଥିଲେ । ଚିକିତ୍ସା ପାଇଁ ଠାକୁର କଲିକତା ଆସିବା ବେଳେ ସେଥିପାଇଁ ବଳରାମଙ୍କୁ ଡାକି କହିଥିଲେ, ''ଦେଖ, ଦଶ ଜଣ ଚାନ୍ଦା କରି ମୋର ଦୈନନ୍ଦିନ ଭୋଜନର ବନ୍ଦୋବସ୍ତ କରିବେ ଏହା ମୋର ନିତାନ୍ତ ରୁଚିବିରୁଦ୍ଧ, କାରଣ ମୁଁ କଦାପି ସେପରି କରି ନାହିଁ । ଯଦି କୁହ, ଦକ୍ଷିଣେଶ୍ୱର କାଳୀମନ୍ଦିରରେ ସେପରି କେମିତି କରିଛି, କର୍ତ୍ତୃପକ୍ଷମାନେ ତ' ଏବେ ଭାଗବଣ୍ଟା ହୋଇ ନାନା ଭାଗରେ ବିଭକ୍ତ ହୋଇଛନ୍ତି ଏବଂ ସମସ୍ତେ ମିଶି ଦେବସେବା ଚଳାଉଛନ୍ତି ? —ସେଥିରେ କହୁଛି ଏଠାରେ ମଧ୍ୟ ମୋତେ ଚାନ୍ଦାରେ ଖାଇବାକୁ ହେଉ ନାହିଁ; କାରଣ ରାସମଣୀଙ୍କ ସମୟରୁ ହିଁ ବନ୍ଦୋବସ୍ତ କରାହୋଇଛି, ପୂଜା କରିବା ସମୟରେ ସାତଟଙ୍କା କରି ପ୍ରତି ମାସରେ ଯେଉଁ ଦରମା ପାଉଥିଲି ତାହା ଏବଂ ଯେତେଦିନ ଏଠାରେ ଥିବି ସେତେଦିନ ଦେବତାଙ୍କ ପ୍ରସାଦ ମୋତେ ଦିଆହେବ । ସେଥିପାଇଁ ମୁଁ ଏଠାରେ ଏକପ୍ରକାର ପେନ୍‌ସନରେ[୧] ଖାଉଛି କୁହାଯାଇପାରେ । ଅତଏବ ଚିକିତ୍ସା ପାଇଁ ଯେତେଦିନ ଦକ୍ଷିଣେଶ୍ୱରର ବାହାରେ ରହିବି ସେତେଦିନ ମୋର ଖାଇବାର ଖର୍ଚ୍ଚ ତୁମେ ହିଁ ଦେବ ।'' ସେହିପ୍ରକାରରେ କାଶୀପୁର ଉଦ୍ୟାନ-ଗୃହ ଯେତେବେଳେ ତାଙ୍କ ପାଇଁ ଭଡ଼ା ନିଆଗଲା ସେତେବେଳେ ତାହାର ମାସିକ ଭଡ଼ା ଅଧିକ ଟଙ୍କା (୮୦ଟଙ୍କା) ଜାଣିପାରି ତାଙ୍କର ଅଳ୍ପ ଆୟକାରୀ ଭକ୍ତମାନେ ଏହି ଟଙ୍କା କେଉଁଠୁ ଆଣିବେ ଏକଥା ଭାବିବାକୁ ଲାଗିଲେ; ପରିଶେଷରେ ଡଷ୍ଟ କମ୍ପାନୀର ଚାକିରିଆ

୧. ପେନ୍‌ସନ ନ କହି ଠାକୁର କହିଥିଲେ, ''ପେନ୍‌ସିଲେ ଖାଉଛି'' ।

ପରମଭକ୍ତ ସୁରେନ୍ଦ୍ରନାଥଙ୍କୁ ଡାକି କହିଲେ, ''ଦେଖ ସୁରେନ୍ଦ୍ର, ଏମାନେ ସମସ୍ତେ କିରାନୀ-ଫିରାନୀ ମଧ୍ୟବିତ୍ତ ଲୋକ, ଏମାନେ ଏତେ ଟଙ୍କା ଚାନ୍ଦା କିପରି ଉଠାଇ ପାରିବେ, ଅତଏବ ଭଡ଼ାର ପୂରା ଟଙ୍କା ତୁମେ ହିଁ ଦିଅ ।'' ସୁରେନ୍ଦ୍ରନାଥ ମଧ୍ୟ ହାତଯୋଡ଼ି 'ଯେ ଆଜ୍ଞା' କହି ସେପରି କରିବାକୁ ଆନନ୍ଦରେ ସ୍ୱୀକୃତି ପ୍ରଦାନ କଲେ । ଏହିପରି ପରେ ପୁଣି ଦିନେ ଦୁର୍ବଳତା ପାଇଁ ଘରର ବାହାରକୁ ଶୌଚାଦି କରିବାକୁ ଯିବା ଅସମ୍ଭବ ହେବ ବୋଲି ଆମକୁ କହୁଥିଲେ । ଯୁବକ ଭକ୍ତ ଲାଟୁ[୧] ସେଦିନ ତାଙ୍କର ଏକଥାରେ ବ୍ୟଥିତ ହୋଇ ହଠାତ୍ ଯୋଡ଼ହସ୍ତ ହୋଇ ସରଳ ଗମ୍ଭୀର ଭାବରେ ''ଯେ ଆଜ୍ଞା ମହାଶୟ, ହାମିତ (ମୁଁ ତ) ଆପଣଙ୍କର ମେଥ୍ତର (ମେହେନ୍ତର) ହାଜିର ଅଛି'' ବୋଲି କହି ତାଙ୍କୁ ଓ ଆମମାନଙ୍କୁ ଦୁଃଖ ଭିତରେ ମଧ୍ୟ ହସାଇ ଦେଇଥିଲେ । ଯାହା ହେଉ, ସେହିପରି ଭାବରେ କ୍ଷୁଦ୍ର ଅନେକ ବିଷୟରେ ଠାକୁର ନିଜର ବନ୍ଦୋବସ୍ତ ଯଥା ଯୋଗ୍ୟ ଭାବରେ ନିଜେ ହିଁ କରି ଭକ୍ତଗଣଙ୍କର ସୁବିଧା କରିଦେଉଥିଲେ ।

ସମୟାନୁକ୍ରମେ ସମସ୍ତ ବିଷୟରେ ସୁବନ୍ଦୋବସ୍ତ ହେବାକୁ ଲାଗିଲା ଏବଂ ଯୁବକ ଭକ୍ତମାନେ ସମସ୍ତେ ଏଠାରେ ଜଣେ ଜଣେ କରି ପହଞ୍ଚିଲେ । ଠାକୁରଙ୍କର ସେବାସମୟ ବ୍ୟତୀତ ଅନ୍ୟ ସମୟରେ ନରେନ୍ଦ୍ର ସେମାନଙ୍କୁ ଧ୍ୟାନ, ଭଜନ, ପାଠ, ସଦାଳାପ, ଶାସ୍ତ୍ରଚର୍ଚ୍ଚା ଇତ୍ୟାଦିରେ ଏପରି ଭାବରେ ନିଯୁକ୍ତ ରହିବାକୁ ଲାଗିଲେ ଯେ, ପରମ ଆନନ୍ଦରେ କିପରି ଦିନଗୁଡ଼ିକ ବିତିବାକୁ ଲାଗିଲା ତାହା ସେମାନଙ୍କର ବୋଧଗମ୍ୟ ହେଉ ନ ଥିଲା । ଗୋଟିଏ ଦିଗରେ ଠାକୁରଙ୍କର ଶୁଦ୍ଧ ନିଃସ୍ୱାର୍ଥ ଭଲ ପାଇବାର ପ୍ରବଳ ଆକର୍ଷଣ, ଅନ୍ୟ ଦିଗରେ ନରେନ୍ଦ୍ରନାଥଙ୍କର ଅପୂର୍ବ ସଖ୍ୟଭାବ ଏବଂ ଉନ୍ନତ ସଙ୍ଗ ଏକତ୍ର ମିଳିତ ହୋଇ ଭକ୍ତମାନଙ୍କୁ ଲଳିତ-କର୍କଶ ଏପରି ଏକ ମଧୁର ବନ୍ଧନରେ ଆବଦ୍ଧ କଲା ଯେ, ଗୋଟିଏ ପରିବାର ମଧ୍ୟଗତ ବ୍ୟକ୍ତିମାନଙ୍କ ଅପେକ୍ଷା ମଧ୍ୟ ସେମାନେ ପରସ୍ପରକୁ ଆପଣାର ବୋଲି ସତକୁ ସତ ଅନୁଭବ କଲେ । ସୁତରାଂ ନିତାନ୍ତ ଆବଶ୍ୟକ ହେଲେ କେହି କୌଣସି ଦିନ ଘର୍‌କୁ ଗଲେ ମଧ୍ୟ ସେହି ଦିନ ସନ୍ଧ୍ୟାରେ ଅଥବା ପରଦିନ ସକାଳେ ତା'ର ଏଠାକୁ ଆସିବା ସମ୍ପୂର୍ଣ୍ଣ ଅନିବାର୍ଯ୍ୟ ହୋଇପଡ଼ିଲା । ସେହିପରି ଶେଷ ପର୍ଯ୍ୟନ୍ତ ସେଠାରେ ରହି ସେମାନେ ସଂସାରତ୍ୟାଗରେ ସେବାବ୍ରତ ଉଦ୍‌ଯାପନ କରିଥିଲେ । ସଂଖ୍ୟାରେ ସେମାନେ ବାର ଜଣରୁ[୨] ଅଧିକ ନ ହେଲେ ମଧ୍ୟ ପ୍ରତ୍ୟେକେ ଗୁରୁଗତପ୍ରାଣ ଓ ଅସାମାନ୍ୟ କର୍ମକୁଶଳ ଥିଲେ ।

---

୧. ସ୍ୱାମୀ ଅଦ୍ଭୁତାନନ୍ଦ ନାମରେ ଅଧୁନା ଭକ୍ତସଂଘରେ ସୁପରିଚିତ । ସେ ଛାପରା ନିବାସୀ ଥିଲେ । ବଙ୍ଗଳା ବୁଝିବାରେ ସମର୍ଥ ହେଲେ ମଧ୍ୟ ସେହି ଭାଷାରେ କଥା କହିଲେ ତାଙ୍କର ନାନାପ୍ରକାର ବିଶେଷତ୍ୱ ପ୍ରକାଶ ପାଇ ଛୋଟ ପିଲାଙ୍କ କଥା ପରି ସୁମିଷ୍ଟ ଲାଗୁଥିଲା ।

୨. ପାଠକମାନଙ୍କ କୌତୂହଳ ନିବାରଣ ପାଇଁ ସେହି ବାରଜଣଙ୍କର ନାମ ଏଠାରେ ଦିଆହେଲା । ଯଥା—ନରେନ୍ଦ୍ର, ରାଖାଲ, ବାବୁରାମ, ନିରଞ୍ଜନ, ଯୋଗୀନ୍ଦ୍ର, ଲାଟୁ, ତାରକ,

କାଶୀପୁର ଆସିବାର କେତେଦିନ ମଧ୍ୟରେ ହିଁ ଠାକୁର ଦିନେ ଉପରୁ ତଳକୁ ଓହ୍ଲାଇ ଘରର ଚତୁଃପାର୍ଶ୍ୱସ୍ଥ ଉଦ୍ୟାନ ପଥରେ ଅଳ୍ପ ସମୟ ପଦଚାରଣ କରିଥିଲେ । ପ୍ରତିଦିନ ଏପରି କରିପାରିଲେ ଶୀଘ୍ର ସୁସ୍ଥ ଏବଂ ସବଳ ହେବେ ଭାବି ଭକ୍ତମାନେ ଏଥିରେ ଆନନ୍ଦ ପ୍ରକାଶ କରିଥିଲେ । ମାତ୍ର ବାହାରର ଶୀତଳ ପବନରେ ଥଣ୍ଡାଲାଗି ବା ଅନ୍ୟ କାରଣରୁ ପରଦିନ ଅଧିକତର ଦୁର୍ବଳ ବୋଧ ହେବାରୁ କିଛିଦିନ ପର୍ଯ୍ୟନ୍ତ ଆଉ ସେପରି କରିପାରି ନ ଥିଲେ । ଥଣ୍ଡା ଦୁଇ ତିନି ଦିନରେ କଟିଗଲା, କିନ୍ତୁ ଦୁର୍ବଳତା-ବୋଧ ଦୂର ନ ହେବାରୁ ଡାକ୍ତରମାନେ ତାଙ୍କୁ କଅଁଳ ଛେଳି ମାଂସର ସୁପ୍ ଖାଇବାକୁ ପରାମର୍ଶ ଦେଲେ । ଏହା ବ୍ୟବହାରରେ ଅଳ୍ପ କେତେଦିନରେ ହିଁ ପୂର୍ବୋକ୍ତ ଦୁର୍ବଳତା ଅନେକାଂଶରେ ହ୍ରାସ ହୋଇ ସେ ପୂର୍ବାପେକ୍ଷା ସୁସ୍ଥ ବୋଧ କରିଥିଲେ । ସେହି ପ୍ରକାରରେ ଏଠାକୁ ଆସି କମ୍ ବେଶୀ ଏକପକ୍ଷ କାଳ ପର୍ଯ୍ୟନ୍ତ ତାଙ୍କର ସ୍ୱାସ୍ଥ୍ୟର ଉନ୍ନତି ହୋଇଥିଲା ବୋଲି ବୋଧ ହୁଏ । ଡାକ୍ତର ମହେନ୍ଦ୍ରଲାଲ୍ ମଧ୍ୟ ଥରେ ତାଙ୍କୁ ଦେଖିବାକୁ ଆସି ଏବିଷୟ ଲକ୍ଷ୍ୟ କରି ହର୍ଷ ପ୍ରକାଶ କରିଥିଲେ ।

ଠାକୁରଙ୍କର ସ୍ୱାସ୍ଥ୍ୟର ସମ୍ବାଦ ଚିକିତ୍ସକଙ୍କୁ ଜଣାଇବା ପାଇଁ ଏବଂ ପଥ୍ୟ ନିମିତ୍ତ ମାଂସ ଆଣିବାକୁ ଯୁବକ ସେବକମାନଙ୍କୁ ପ୍ରତିଦିନ କଲିକତା ଯିବାକୁ ପଡୁଥିଲା । ଜଣକ ଉପରେ ଏହି ଦୁଇଟି କାର୍ଯ୍ୟର ଭାର ପ୍ରଥମେ ଅର୍ପଣ କରାଯାଇଥିଲା । ସେଥିରେ ବିଶେଷ ଅସୁବିଧା ହେବା ଦେଖି ତା'ପରଠାରୁ ଦୁଇଜଣଙ୍କୁ ଏହି କାର୍ଯ୍ୟଭାର ଦିଆଗଲା । କଲିକତାରେ ଅନ୍ୟ କୌଣସି ଦରକାର ଥିଲେ ଏହି ଦୁଇଜଣଙ୍କ ବ୍ୟତୀତ ଅନ୍ୟ ଜଣେ ଯାଉଥିଲେ । ଏହାଛଡ଼ା ଘରଦ୍ୱାର ପରିଷ୍କାର ରଖିବା, ବରାହନଗରରୁ ପ୍ରତିଦିନ ବଜାର କରି ଆଣିବା, ଦିନରେ ଓ ରାତିରେ ଠାକୁରଙ୍କ ନିକଟରେ ରହି ତାଙ୍କର ଆବଶ୍ୟକୀୟ ସମସ୍ତ ବିଷୟ ଦେଖିବା ପ୍ରଭୃତି ସମସ୍ତ କାର୍ଯ୍ୟ ପାଳିକରି ଯୁବକ ଭକ୍ତମାନେ ସମ୍ପାଦନ କରିବାକୁ ଲାଗିଲେ ଏବଂ ନରେନ୍ଦ୍ରନାଥ ସେମାନଙ୍କର ପ୍ରତ୍ୟେକ କାର୍ଯ୍ୟ ତତ୍ତ୍ୱାବଧାନ ଏବଂ ହଠାତ୍ ଉପୁଜୁଥିବା ସମସ୍ୟାଗୁଡ଼ିକର ବନ୍ଦୋବସ୍ତ କରିବାକୁ ନିଯୁକ୍ତ ରହିଲେ ।

ଠାକୁରଙ୍କର ପଥ୍ୟ ପ୍ରସ୍ତୁତ କରିବାର ଭାର ପୂର୍ବପରି ଶ୍ରୀଶ୍ରୀମାତାଠାକୁରାଣୀଙ୍କ ହାତରେ ରହିଲା । ସାଧାରଣ ପଥ୍ୟ ଛଡ଼ା ବିଶେଷ କୌଣସି ପ୍ରକାର ଖାଦ୍ୟ

---

ବୃଦ୍ଧ ଗୋପାଳ (ଯୁବକ ଭକ୍ତମାନଙ୍କ ମଧ୍ୟରେ କେବଳ ଇଏ ହିଁ ଏକମାତ୍ର ବୃଦ୍ଧ ଥିଲେ), କାଳୀ, ଶଶୀ, ଶରତ, ଏବଂ (ହୁଟ୍‌କୋ) ଗୋପାଳ । ସାରଦା ପିତାଙ୍କ ନିର୍ଯ୍ୟାତନା ଯୋଗୁଁ ମଝିରେ ମଝିରେ ଆସି ଦିନେ ଦୁଇଦିନ ରହିବାକୁ ସମର୍ଥ ହେଉଥିଲେ । ହରିଶ କିଛିଦିନ ଆସିବା ପରେ ଗୃହକୁ ଫେରି ତାଙ୍କର ମସ୍ତିଷ୍କ ବିକାର ହୋଇଥିଲା । ହରି, ତୁଳସୀ ଓ ଗଙ୍ଗାଧର ଘରେ ରହି ତପସ୍ୟା କରୁଥାଆନ୍ତି ଓ ମଝିରେ ମଝିରେ ଯିବା ଆସିବା କରୁଥାନ୍ତି; ଏମାନଙ୍କ ବ୍ୟତୀତ ଅନ୍ୟ ଦୁଇଜଣ ଅଳ୍ପଦିନ ପରେ ମହିମାଚରଣ ଚକ୍ରବର୍ତ୍ତୀଙ୍କ ସହିତ ମିଳିତ ହୋଇ ତାଙ୍କ ଘରେ ହିଁ ରହିଗଲେ ।

ଠାକୁରଙ୍କ ନିମିତ୍ତ ବ୍ୟବସ୍ଥା କରାହେଲେ ଚିକିତ୍ସକଙ୍କ ନିକଟରୁ ଏହାର ପ୍ରସ୍ତୁତ କରିବାର ପ୍ରଣାଳୀ ବିଶେଷରୂପରେ ଜ୍ଞାତ ହୋଇ ବୃଦ୍ଧ ଗୋପାଳପ୍ରମୁଖ ଜଣେ ଦୁଇଜଣ, ଯାହାଙ୍କ ସହିତ ସେ ନିଃସଙ୍କୋଚରେ କଥାବାର୍ତ୍ତା କରୁଥିଲେ ସେମାନେ ତାଙ୍କୁ ଉକ୍ତ ପ୍ରଣାଳୀରେ ରୋଷାଇ କରିବାକୁ ବୁଝାଇ ଦେଉଥିଲେ । ପଥ୍ୟ ପ୍ରସ୍ତୁତ କରିବା ଛଡ଼ା ଶ୍ରୀଶ୍ରୀମାତାଠାକୁରାଣୀ ମଧ୍ୟାହ୍ନ ପୂର୍ବରୁ ଏବଂ ସନ୍ଧ୍ୟା ପରେ ଠାକୁର ଯାହା ଆହାର କରନ୍ତି ତାହା ସ୍ୱୟଂ ନେଇ ତାଙ୍କୁ ଭୋଜନ କରାଇ ଆସୁଥିଲେ । ରନ୍ଧନ ଇତ୍ୟାଦି ସମସ୍ତ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ଏବଂ ତାଙ୍କର ସଙ୍ଗିନୀର ଅଭାବ ଦୂର କରିବାକୁ ଠାକୁରଙ୍କର ଭ୍ରାତୁଷ୍ପୁତ୍ରୀ ଶ୍ରୀମତୀ ଲକ୍ଷ୍ମୀଦେବୀଙ୍କୁ ଏହି ସମୟରେ ଅଣାଇ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ନିକଟରେ ରଖାଯାଇଥିଲା । ଏହାଛଡ଼ା ଦକ୍ଷିଣେଶ୍ୱରକୁ ଯେଉଁମାନେ ଠାକୁରଙ୍କ ନିକଟକୁ ସବୁବେଳେ ଯିବାଆସିବା କରୁଥିଲେ ସେ ସମସ୍ତ ସ୍ତ୍ରୀ–ଭକ୍ତଗଣଙ୍କ ମଧ୍ୟରୁ କେହି କେହି ଏଠାକୁ ବେଳେ ବେଳେ ଆସି ଶ୍ରୀଶ୍ରୀମାତାଠାକୁରାଣୀଙ୍କ ସହିତ କେତେଘଣ୍ଟା ଅଥବା କେବେକେବେ ଦିନେ ଦୁଇଦିନ ପର୍ଯ୍ୟନ୍ତ ରହିଯାଉଥିଲେ । ସେହିପରି ଭାବରେ ପ୍ରାୟ ସପ୍ତାହକ ମଧ୍ୟରେ ସମସ୍ତ ବିଷୟ ସୁଶୃଙ୍ଖଳରେ ସମ୍ପାଦିତ ହେବାକୁ ଲାଗିଲା ।

ଗୃହୀ–ଭକ୍ତମାନେ ମଧ୍ୟ ସେ ସମୟରେ ନିଶ୍ଚିନ୍ତ ରହି ନ ଥିଲେ । ରାମଚନ୍ଦ୍ର କିମ୍ବା ଗିରିଶଚନ୍ଦ୍ରଙ୍କ ଘରେ ସୁବିଧା ଦେଖି ସମ୍ମିଳିତ ହୋଇ ଠାକୁରଙ୍କର ସେବା ପାଇଁ କିଏ କେଉଁ ବିଷୟରେ କେତେ ସମୟ କଟାଇପାରିବେ ଏବଂ ଅର୍ଥ ସାହାଯ୍ୟ ପ୍ରଦାନ କରି ପାରିବେ ତାହା ସ୍ଥିର କରି ସେହି ଅନୁସାରେ କାର୍ଯ୍ୟ କରିବାକୁ ଲାଗିଲେ । ସବୁ ମାସରେ ସମସ୍ତେ ସମାନ ଭାବରେ ସାହାଯ୍ୟ ପ୍ରଦାନ କରିବା ସୁବିଧାଜନକ ନ ହୋଇପାରେ ଭାବି ସେମାନେ ପ୍ରତି ମାସରେ ହିଁ ଥରେ ଦୁଇଥର ଏକାଠି ମିଶି ସମସ୍ତ ବିଷୟ ଆଗରୁ ସ୍ଥିର କରିବାର ସଂକଳ୍ପ ମଧ୍ୟ ଏହି ସମୟରେ କରିଥିଲେ ।

ଯୁବକ ଭକ୍ତମାନଙ୍କ ମଧ୍ୟରୁ ଅନେକେ ସବୁ କାର୍ଯ୍ୟ ଶୃଙ୍ଖଳିତ ନ ହେବା ପର୍ଯ୍ୟନ୍ତ ନିଜ ନିଜ ଘରକୁ ଅଳ୍ପ ସମୟ ପାଇଁ ମଧ୍ୟ ଯାଉ ନ ଥିଲେ । ନିତାନ୍ତ ଆବଶ୍ୟକ ହେଲେ ଯେଉଁମାନଙ୍କୁ ଯିବାକୁ ହେଉଥିଲା ସେମାନେ କେତେ ଘଣ୍ଟା ପରେ ଫେରି ଆସୁଥିଲେ ଏବଂ ଘରେ ଖବର ଦେଉଥିଲେ ଯେ, ଠାକୁର ସୁସ୍ଥ ନ ହେବା ପର୍ଯ୍ୟନ୍ତ ସେମାନେ ପୂର୍ବପରି ନିୟମିତଭାବରେ ଘରକୁ ଯାଇପାରିବେ ନାହିଁ କି ରହିପାରିବେ ନାହିଁ । କୌଣସି ଅଭିଭାବକ ଯେ ପ୍ରସନ୍ନଚିତ୍ତରେ ଏକଥାରେ ଅନୁମତି ପ୍ରଦାନ କରିନାହାନ୍ତି, ଏକଥା କହିବାକୁ ହେବ ନାହିଁ । କିନ୍ତୁ କ'ଣ କରିବେ, ପିଲାଙ୍କର ମଥା ବିଗିଡ଼ିଛି, ଧୀରେ ଧୀରେ ସେମାନଙ୍କୁ ଫେରାଇ ନ ଆଣିଲେ ଭଲ ପରିବର୍ତ୍ତେ ବିପରୀତ ଫଳ ହେବାର ସମ୍ଭାବନା — ଏପରି ଭାବି ସେମାନଙ୍କର

ସେପରି ଆଚରଣ କିଛି ଦିନ କୌଣସି ପ୍ରକାରରେ ସହ୍ୟ କରିବାକୁ ଓ ସେମାନଙ୍କୁ ଫେରାଇ ଆଣିବା ପାଇଁ ଉପାୟ ଚିନ୍ତା କରିବାକୁ ଲାଗିଲେ । ଏପରି ଗୃହୀ ଓ ବ୍ରହ୍ମଚାରୀ ଠାକୁରଙ୍କର ଉଭୟ ପ୍ରକାର ଭକ୍ତମାନେ ଯେତେବେଳେ ଦୃଢ଼ନିଷ୍ଠାର ସହିତ ସେବାବ୍ରତରେ ଯୋଗଦାନ କଲେ ଏବଂ ସୁବନ୍ଦୋବସ୍ତ ହୋଇ ସମସ୍ତ କାର୍ଯ୍ୟ ଯେତେବେଳେ ଶୃଙ୍ଖଳାର ସହିତ ଯନ୍ତ୍ରପରିଚାଳିତ ପରି ନିତିଦିନ ସମ୍ପାଦିତ ହେବାକୁ ଲାଗିଲା, ସେତେବେଳେ ନରେନ୍ଦ୍ରନାଥ ନିଶ୍ଚିନ୍ତ ହୋଇ ନିଜ ବିଷୟରେ ଚିନ୍ତା କରିବା ପାଇଁ ସମୟ ପାଇଲେ ଏବଂ ଶୀଘ୍ର ଦିନେ ଦୁଇଦିନ ପାଇଁ ଘରକୁ ଯିବାର ସଂକଳ୍ପ କଲେ । ରାତିରେ ଏକଥା ଆମକୁ ଜଣାଇ ସେ ଶୋଇବାକୁ ଗଲେ, ମାତ୍ର ନିଦ୍ରା ହେଲା ନାହିଁ । କିଛି ସମୟ ପରେ ଉଠି ପଡ଼ିଲେ ଏବଂ ଗୋପାଳପ୍ରମୁଖ ଆମମାନଙ୍କ ମଧ୍ୟରୁ ଜଣେ ଦୁଇଜଣଙ୍କୁ ଜାଗ୍ରତ ଦେଖି କହିଲେ, ''ଚାଲ ବାହାରକୁ ଟିକିଏ ଯିବା ଏବଂ ବଗିଚା ରାସ୍ତାରେ ବୁଲିବା ଓ ତମାଖୁ ସେବନ କରିବା ।'' ବୁଲୁ ବୁଲୁ କହିବାକୁ ଲାଗିଲେ, ''ଠାକୁରଙ୍କର ଯେଉଁ ଭୀଷଣ ବ୍ୟାଧି, ସେ ଦେହରକ୍ଷାର ସଂକଳ୍ପ କରିଛନ୍ତି କି ନାହିଁ କିଏ କହିପାରିବ ? ବେଳ ଥାଉ ଥାଉ ତାଙ୍କର ସେବା ଓ ଧ୍ୟାନଭଜନ କରି ଯିଏ ଯେତେଟା ପାରୁଛ ଆଧ୍ୟାତ୍ମିକ ଉନ୍ନତି କରି ନିଅ, ନ ହେଲେ ସେ ଚାଲିଗଲେ ପଶ୍ଚାତ୍ତାପ କରିବାକୁ ହେବ । ଏହା କରିସାରି ଭଗବାନଙ୍କୁ ଡାକିବା ଏବଂ ତାହା ହୋଇଗଲେ ସାଧନ-ଭଜନରେ ଲାଗିବା, ଏପରି ହିଁ ତ ଦିନଗୁଡ଼ିକ ଚାଲିଯାଉଛି ଏବଂ ବାସନା ଜାଲରେ ଛନ୍ଦି ହୋଇ ପଡ଼ିବାକୁ ହେଉଛି । ଏହି ବାସନାରେ ହିଁ ସର୍ବନାଶ, ମୃତ୍ୟୁ—ବାସନା ତ୍ୟାଗ କର, ତ୍ୟାଗ କର ।''

ପୌଷର ଶୀତରାତି ନୀରବତାରେ ଝିମ୍‌ଝିମ୍ କରୁଛି । ଉପରେ ଅନନ୍ତ ନୀଳିମା ଅଗଣିତ ନକ୍ଷତ୍ରଚକ୍ଷୁରେ ଧରା ଆଡ଼କୁ ସ୍ଥିର ଦୃଷ୍ଟିରେ ଚାହିଁ ରହିଛି । ତଳେ ସୂର୍ଯ୍ୟଙ୍କର ପ୍ରଖର କିରଣରେ ଉଦ୍ୟାନର ବୃକ୍ଷତଳସକଳ ଶୁଷ୍କ ଏବଂ ସମ୍ପ୍ରତି ସୁସଂସ୍କୃତ ହେବାରୁ ଉପବେଶନ ଯୋଗ୍ୟ ହୋଇରହିଅଛି । ନରେନ୍ଦ୍ରଙ୍କର ବୈରାଗ୍ୟପ୍ରବଣ, ଧ୍ୟାନପରାୟଣ ମନ ଯେପରି ବାହାରର ସେହି ନୀରବତାକୁ ଅନ୍ତରରେ ଉପଲବ୍ଧି କରି ନିଜ ଭିତରେ ନିଜେ ବୁଡ଼ିଯିବାକୁ ଲାଗିଲା । ଆଉ ପଦଚାରଣ ନ କରି ସେ ଗୋଟିଏ ବୃକ୍ଷତଳେ ଉପବିଷ୍ଟ ହେଲେ ଏବଂ କିଛିକ୍ଷଣ ପରେ ତୃଣପଲ୍ଲବ ଓ ଭଗ୍ନ ବୃକ୍ଷଶାଖାସମୂହର ଗୋଟିଏ ଶୁଷ୍କ ସ୍ତୂପ ନିକଟରେ ରହିଥିବାର ଦେଖି କହିଲେ, ''ଏଥିରେ ଅଗ୍ନିସଂଯୋଗ କର, ସାଧୁମାନେ ଏହି ସମୟରେ ବୃକ୍ଷତଳେ ଧୁନି ଜଳାଇଥାଆନ୍ତି, ଆଉ ଆମେ ମଧ୍ୟ ସେହିପରି ଧୁନି ଜଳାଇ ଅନ୍ତରର ନିଭୃତ ବାସନାସମୂହ ଦଗ୍ଧ କରିବା ।'' ଅଗ୍ନି ପ୍ରଜ୍ୱଳିତ ହେଲା ଏବଂ ଚତୁର୍ଦ୍ଦିଗରେ ଅବସ୍ଥିତ ପୂର୍ବୋକ୍ତ ଇନ୍ଧନସ୍ତୁପସମୂହ ଟାଣି ଆଣି ଆମେ ସେଥିରେ ଆହୁତିପ୍ରଦାନପୂର୍ବକ ଅନ୍ତରର ବାସନାସମୂହ ହୋମ କରୁଛୁ ଏହି ଚିନ୍ତାରେ ନିମଗ୍ନ ରହି ଅପୂର୍ବ ଉଲ୍ଲାସ ଅନୁଭବ କରିବାକୁ ଲାଗିଲୁ । ମନେ ହେଲା ଯେପରି ସତକୁ

ସତ ପାର୍ଥିବ ବାସନାସମୂହ ଭସ୍ମୀଭୂତ ହୋଇ ମନ ପ୍ରସନ୍ନ ନିର୍ମଳ ହେଉଅଛି ଓ ଶ୍ରୀଭଗବାନଙ୍କର ନିକଟବର୍ତ୍ତୀ ହେଉଅଛୁ ! ଭାବିଲୁ ଠିକ୍ ତ, କାହିଁକି ପୂର୍ବରୁ ଏପରି କରି ନ ଥିଲୁ, ଏଥିରେ ଏତେ ଆନନ୍ଦ ଅଛି ! ଏବେଠାରୁ ସୁବିଧା ପାଇଲେ ହିଁ ଏପରି ଧୁନି ଜଳାଇବୁ । ଏପରି ଦୁଇତିନି ଘଣ୍ଟା କଟିବା ପରେ, ଯେତେବେଳେ ଆଉ ଇନ୍ଧନ ମିଳିଲା ନାହିଁ ସେତେବେଳେ ଅଗ୍ନିକୁ ଶାନ୍ତ କରି ଆମେ ଘରକୁ ଫେରି ପୁନରାୟ ଶୟନ କଲୁ । ରାତି ସେତେବେଳେ ଚାରିଟା ବାଜିଯାଇଛି । ଯେଉଁମାନେ ଆମମାନଙ୍କ ସେହି କାର୍ଯ୍ୟରେ ଯୋଗଦାନ କରିପାରି ନ ଥିଲେ, ପ୍ରଭାତରେ ଉଠି ସେମାନେ ଯେତେବେଳେ ସେ କଥା ଶୁଣିଲେ ସେତେବେଳେ ତାଙ୍କୁ ଡକା ଯାଇ ନ ଥିବାରୁ ଦୁଃଖ ପ୍ରକାଶ କରିବାକୁ ଲାଗିଲେ । ନରେନ୍ଦ୍ରନାଥ ସେଥିରେ ସେମାନଙ୍କୁ ସାନ୍ତ୍ୱନା ପ୍ରଦାନ କରିବା ପାଇଁ କହିଲେ, ''ଆମେ ତ' ପୂର୍ବରୁ ଯୋଜନା କରି ସେହି କାର୍ଯ୍ୟ କରି ନାହୁଁ ଏବଂ ଏତେ ଆନନ୍ଦ ପାଇବୁ ତାହା ମଧ ଜାଣି ନ ଥିଲୁ, ଏବେଠାରୁ ସୁଯୋଗ ପାଇଲେ ହିଁ ସମସ୍ତେ ମିଶି ଧୁନି ଜଳାଇବା, ଭାବନା କାହିଁକି ।''

ପୂର୍ବକଥାନୁସାରେ ସକାଳୁ ନରେନ୍ଦ୍ରନାଥ କଲିକତା ଗଲେ ଏବଂ ଦିନକ ପରେ କେତେଖଣ୍ଡ ଆଇନ୍‌ପୁସ୍ତକ ନେଇ ପୁନରାୟ କାଶୀପୁର ଫେରିଆସିଲେ ।

# ଆତ୍ମପ୍ରକାଶରେ ଅଭୟ-ପ୍ରଦାନ

କାଶୀପୁର ଉଦ୍ୟାନକୁ ଆସିବାର କିଛିଦିନ ପରେ ଠାକୁର ଯେ ଦିନେ ନିଜ କକ୍ଷରୁ ବାହାରକୁ ଆସି ଉଦ୍ୟାନପଥରେ ସ୍ୱଳ୍ପକ୍ଷଣ ପାଇଁ ପଦଚାରଣ କରିଥିଲେ, ତାହା ଆମେ ପାଠକଙ୍କୁ ଏହାପୂର୍ବରୁ କହିଛୁ । ସେଥିରେ ଦୁର୍ବଳ ବୋଧ ହେବାରୁ ପ୍ରାୟ ପନ୍ଦର ଦିନ କାଳ ସେ ଆଉ ସେପରି କରିବାକୁ ସାହସ କରି ନ ଥିଲେ । ସେହି ସମୟ ଭିତରେ ତାଙ୍କର ଚିକିତ୍ସାର ନ ହେଲେ ମଧ୍ୟ ଚିକିତ୍ସକଙ୍କର ପରିବର୍ତ୍ତନ ହୋଇଥିଲା । କଲିକତାର ବହୁବଜାର-ପଲ୍ଲୀନିବାସୀ ପ୍ରସିଦ୍ଧ ଧନୀ ଅକ୍ରୁର ଦତ୍ତଙ୍କ ବଂଶରେ ଜାତ ରାଜେନ୍ଦ୍ରଲାଲ ଦତ୍ତ ମହାଶୟ ହୋମିଓପ୍ୟାଥି ଚିକିତ୍ସା ଓ ତାହା ସହରରେ ପ୍ରଚଳନ ପାଇଁ ଏହାପୂର୍ବରୁ ଯଥେଷ୍ଟ ପରିଶ୍ରମ ଓ ଅର୍ଥବ୍ୟୟ କରିଥିଲେ । ସୁପ୍ରସିଦ୍ଧ ଡାକ୍ତର ମହେନ୍ଦ୍ରଲାଲ ସରକାର ଏହାଙ୍କ ସହିତ ମିଶି ହୋମିଓ-ମତର ସାଫଲ୍ୟ ଓ ଉପକାରିତା ହୃଦୟଙ୍ଗମପୂର୍ବକ ସେହି ପ୍ରଣାଳୀ-ଅବଲମ୍ବନରେ ଚିକିତ୍ସା କରିବାକୁ ଅଗ୍ରସର ହୋଇଥିଲେ । ଠାକୁରଙ୍କ ବ୍ୟାଧି କଥା ରାଜେନ୍ଦ୍ରବାବୁ ଲୋକମୁଖରେ ଶ୍ରବଣ କରି ଏବଂ ତାଙ୍କୁ ଆରୋଗ୍ୟ କରିପାରିଲେ ହୋମିଓପାଥିର ସୁନାମ ଅନେକଙ୍କ ନିକଟରେ ସୁପ୍ରତିଷ୍ଠିତ ହେବାର ସମ୍ଭାବନା ବୁଝି ଚିନ୍ତା ଏବଂ ଅଧ୍ୟୟନାଦିସହାୟରେ ସେହି ବ୍ୟାଧିର ଔଷଧ ମଧ୍ୟ ନିର୍ବାଚନ କରି ରଖିଥିଲେ । ଗିରିଶଚନ୍ଦ୍ରଙ୍କର କନିଷ୍ଠଭ୍ରାତା ଅତୁଳକୃଷ୍ଣଙ୍କ ସହିତ ସେ ପରିଚିତ ଥିଲେ । ଆମର ଯେତେଦୂର ସ୍ମରଣ ହୁଏ, ଅତୁଳକୃଷ୍ଣଙ୍କୁ ଏହି ସମୟରେ ଦିନେ କୌଣସିଠାରେ ଦେଖି ସେ ସହସା ଠାକୁରଙ୍କର ଶାରୀରିକ ଅସୁସ୍ଥତାର କଥା ପଚାରି ତାଙ୍କୁ ଚିକିତ୍ସା କରିବାର ମନୋଗତ ଅଭିପ୍ରାୟ ବ୍ୟକ୍ତ କଲେ ଏବଂ କହିଲେ, ''ମହେନ୍ଦ୍ରଙ୍କୁ କହିବ ମୁଁ ଅନେକ ଭାବିଚିନ୍ତି ଗୋଟିଏ ଔଷଧ ନିର୍ବାଚନ କରି ରଖିଛି, ସେ ଔଷଧଟି ପ୍ରୟୋଗ କଲେ ବିଶେଷ ଉପକାର ହେବ ବୋଲି ଆଶା କରୁଛି, ତାଙ୍କର ସମ୍ମତି ଥିଲେ ମୁଁ ଥରେ ଏହି ଔଷଧ ପ୍ରୟୋଗ କରି ଦେଖିବି ।'' ଅତୁଳକୃଷ୍ଣ ଭକ୍ତମାନଙ୍କୁ ଏବଂ ଡାକ୍ତର ମହେନ୍ଦ୍ରଲାଲଙ୍କୁ ସେହି ବିଷୟ ଜଣାଇଲେ ଏବଂ ଏଥିରେ କାହାର ଆପତ୍ତି ନ ହେବାରୁ କେତେଦିନ ପରେ ହିଁ ରାଜେନ୍ଦ୍ରବାବୁ ଠାକୁରଙ୍କୁ ଦେଖିବାକୁ ଆସିଲେ ଏବଂ ବ୍ୟାଧିର ଆଦ୍ୟୋପାନ୍ତ ବିବରଣ ଶ୍ରବଣ ପୂର୍ବକ 'ଲାଇକୋପୋଡିୟମ୍-୨୦୦' ପ୍ରୟୋଗ କଲେ । ଠାକୁର ଏହି ଔଷଧରେ ପନ୍ଦର ଦିନରୁ ଅଧିକ କାଳ ବିଶେଷ ଉପକାର ଅନୁଭବ କରିଥିଲେ । ଭକ୍ତମାନଙ୍କର ସେଥିରେ ମନେ ହୋଇଥିଲା, ସେ ବୋଧହୁଏ ଏଥର ଅଳ୍ପ ଦିନରେ ହିଁ ପୂର୍ବପରି ସୁସ୍ଥ ଓ ସବଳ ହୋଇଉଠିବେ ।

କ୍ରମେ ପୌଷ ମାସରୁ ଅଧା ଅତୀତ ହୋଇ ୧୮୮୬ ମସିହାର ପହିଲା ଜାନୁଆରୀ ହେଲା । ଠାକୁର ସେହି ଦିନ ବିଶେଷ ସୁସ୍ଥ ବୋଧ କରିବାରୁ କିଛି ସମୟ ଉଦ୍ୟାନରେ ବୁଲିବାକୁ ଇଚ୍ଛା ପ୍ରକାଶ କଲେ । ଛୁଟିଦିନ ଥିବାରୁ ସେଦିନ ଗୃହସ୍ଥ ଭକ୍ତମାନେ ମଧ୍ୟାହ୍ନ ପରେ ଜଣେ ଜଣେ କରି କିମ୍ବା ଦଳବଦ୍ଧ ହୋଇ ଉଦ୍ୟାନରେ ଆସି ପହଞ୍ଚିବାକୁ ଲାଗିଲେ । ତଦନୁଯାୟୀ ଅପରାହ୍ନ ତିନିଟାରେ ଠାକୁର ଯେତେବେଳେ ଉଦ୍ୟାନରେ ବୁଲିବା ପାଇଁ ଉପରୁ ତଳକୁ ଓହ୍ଲାଇଲେ ସେତେବେଳେ ତିରିଶଜଣରୁ ଅଧିକ ବ୍ୟକ୍ତି ଘର ମଧ୍ୟରେ ବା ଉଦ୍ୟାନସ୍ଥ ବୃକ୍ଷତଳେ ବସି ପରସ୍ପର ସହିତ କଥାବାର୍ତ୍ତା କରୁଥିଲେ । ଠାକୁରଙ୍କୁ ଦେଖି ହିଁ ସମସ୍ତେ ସସମ୍ଭ୍ରମରେ ଉଠି ପ୍ରଣାମ କଲେ ଏବଂ ସେ ତଳେ ଥିବା ହଲ୍‌ଘରର ପଶ୍ଚିମ ଦ୍ୱାର ଦେଇ ଉଦ୍ୟାନପଥରେ ଓହ୍ଲାଇ ଦକ୍ଷିଣ ପଟର ଫାଟକ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେବାରୁ ପଶ୍ଚାତ୍‌ରେ କିଛି ଦୂରରେ ରହି ସେମାନେ ତାଙ୍କୁ ଅନୁସରଣ କରିବାକୁ ଲାଗିଲେ । ଏପରି ବାସଗୃହ ଏବଂ ଫାଟକର ମଧ୍ୟଭାଗରେ ପହଞ୍ଚି ଠାକୁର ଗିରିଶ, ରାମ, ଅତୁଲ ପ୍ରଭୃତି କେତେଜଣଙ୍କୁ ପଶ୍ଚିମର ବୃକ୍ଷତଳେ ଦେଖିବାକୁ ପାଇଲେ । ସେମାନେ ମଧ୍ୟ ଠାକୁରଙ୍କୁ ଦେଖି ସେଠାରୁ ପ୍ରଣାମ କରି ସାନନ୍ଦରେ ତାଙ୍କ ନିକଟକୁ ଆସିଲେ । କେହି କିଛି କଥା କହିବା ପୂର୍ବରୁ ଠାକୁର ସହସା ଗିରିଶଚନ୍ଦ୍ରଙ୍କୁ ସମ୍ବୋଧନ କରି କହିଲେ, ''ଗିରିଶ୍, ତୁମେ ଯେ ସମସ୍ତଙ୍କୁ ଏତେ କଥା (ମୋର ଅବତାରତ୍ୱ ସମ୍ବନ୍ଧରେ) କହି ବୁଲୁଛ, ତୁମେ (ମୋ ସମ୍ବନ୍ଧରେ) କ'ଣ ଦେଖିଛ ଓ ବୁଝିଛ ?'' ଗିରିଶ୍ ସେଥିରେ ବିନ୍ଦୁମାତ୍ର ବିଚଳିତ ନ ହୋଇ ତାଙ୍କର ପଦପ୍ରାନ୍ତରେ ଭୂମିରେ ଜାନୁ ସଂଲଗ୍ନ କରି ଉପବିଷ୍ଟ ହୋଇ ଉର୍ଦ୍ଧ୍ୱମୁଖରେ କରଯୋଡ଼ି ଗଦ୍‌ଗଦ୍ ସ୍ୱରରେ କହିଲେ, ''ବ୍ୟାସ–ବାଲ୍ମୀକି ଯାହାଙ୍କର ଇୟତ୍ତା କରିପାରି ନାହାନ୍ତି, ମୁଁ ତାଙ୍କ ସମ୍ବନ୍ଧରେ ଅଧିକ କ'ଣ କହିପାରିବି ।'' ଗିରିଶଙ୍କର ଅନ୍ତରର ସରଳ ବିଶ୍ୱାସ ପ୍ରତିକଥାରେ ବ୍ୟକ୍ତ ହେଉଥିବାରୁ ଠାକୁର ମୁଗ୍ଧ ହେଲେ ଏବଂ ତାଙ୍କୁ ଉପଲକ୍ଷ କରି ସମବେତ ଭକ୍ତମାନଙ୍କୁ କହିଲେ, ''ତୁମମାନଙ୍କୁ କ'ଣ ଆଉ କହିବି, ଆଶୀର୍ବାଦ କରୁଛି ତୁମମାନଙ୍କର ଚୈତନ୍ୟ ହେଉ ।'' ଭକ୍ତମାନଙ୍କ ପ୍ରତି ପ୍ରେମ ଓ କରୁଣାରେ ଆତ୍ମହରା ହୋଇ ସେ ସେକଥା କହିବା ମାତ୍ରେ ଭାବାବିଷ୍ଟ ହୋଇପଡ଼ିଲେ । ସ୍ୱାର୍ଥଗନ୍ଧହୀନ ତାଙ୍କର ସେହି ଗଭୀର ଆଶୀର୍ବାଣୀ ପ୍ରତ୍ୟେକଙ୍କ ଅନ୍ତରରେ ପ୍ରବଳ ଆଘାତ ପ୍ରଦାନପୂର୍ବକ ଆନନ୍ଦସ୍ପନ୍ଦନରେ ଉଦ୍‌ବେଳିତ କରିଦେଲା । ସେମାନେ ଦେଶ କାଳ ଭୁଲିଗଲେ, ଠାକୁରଙ୍କର ରୋଗର କଥା ଭୁଲିଗଲେ, ବ୍ୟାଧି ଆରୋଗ୍ୟ ନ ହେବା ପର୍ଯ୍ୟନ୍ତ ତାଙ୍କୁ ସ୍ପର୍ଶ ନ କରିବାକୁ ଏହାପୂର୍ବର ପ୍ରତିଜ୍ଞା ଭୁଲିଗଲେ ଏବଂ ସାକ୍ଷାତ୍ ଅନୁଭବ କରିବାକୁ ଲାଗିଲେ ଯେପରି ତାଙ୍କର ଦୁଃଖରେ ବ୍ୟଥିତ ହୋଇ କୌଣସି ଏକ ଅପୂର୍ବ ଦେବତା ହୃଦୟରେ ଅନନ୍ତ ଯାତନା ଓ କରୁଣା ପୋଷଣପୂର୍ବକ ବିନ୍ଦୁମାତ୍ର ନିଜ ପ୍ରୟୋଜନ ନ ଥିଲେ ମଧ୍ୟ ମାତାଙ୍କ ସଦୃଶ ସେମାନଙ୍କୁ

ସ୍ନେହାଞ୍ଚଳରେ ଆଶ୍ରୟ ପ୍ରଦାନ କରିବାକୁ ସ୍ୱର୍ଗଲୋକରୁ ସମ୍ମୁଖରେ ଅବତୀର୍ଣ୍ଣ ହୋଇ ସେମାନଙ୍କୁ ସସ୍ନେହରେ ଆହ୍ୱାନ କରୁଛନ୍ତି ! ତାଙ୍କୁ ପ୍ରଣାମ କରିବା ଏବଂ ତାଙ୍କର ପଦଧୂଳି ଗ୍ରହଣ କରିବାକୁ ସେମାନେ ସେତେବେଳେ ବ୍ୟାକୁଳ ହୋଇଉଠିଲେ ଏବଂ ଜୟ ଜୟ ଧ୍ୱନିରେ ଦିଗ ମୁଖରିତ କରି ଜଣେ ଜଣେ କରି ଆସି ପ୍ରଣାମ କରିବାକୁ ଆରମ୍ଭ କଲେ । ସେହିପରି ପ୍ରଣାମ କରିବା ସମୟରେ ଠାକୁରଙ୍କର କରୁଣାବାରିଧି ଆଜି ବେଳାଭୂମି ଅତିକ୍ରମ କରି ଏକ ଅଦୃଷ୍ଟପୂର୍ବ ଘଟଣା ଉପସ୍ଥିତ କଲା । କୌଣସି କୌଣସି ଭକ୍ତଙ୍କ ପ୍ରତି କରୁଣାରେ ଓ ପ୍ରସନ୍ନତାରେ ଆତ୍ମହରା ହୋଇ ଦିବ୍ୟ ଶକ୍ତିପୂତ ସ୍ପର୍ଶରେ ତାଙ୍କୁ କୃତାର୍ଥ କରିଥିବା କଥା ଆମେ ଏହାପୂର୍ବରୁ ଦକ୍ଷିଣେଶ୍ୱରରେ ପ୍ରାୟ ପ୍ରତିଦିନ ହିଁ ଦେଖିଥିଲୁ, କିନ୍ତୁ ଆଜି ଅର୍ଦ୍ଧବାହ୍ୟଦଶାରେ ସେ ସମବେତ ପ୍ରତ୍ୟେକ ଭକ୍ତଙ୍କୁ ସେହି ଭାବରେ ସ୍ପର୍ଶ କରିବାକୁ ଲାଗିଲେ । କହିବା ବାହୁଲ୍ୟ, ତାଙ୍କର ସେପରି ଆଚରଣରେ ଭକ୍ତମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ବୁଝିଗଲେ ଆଜିଠାରୁ ସେ ନିଜର ଦେବତ୍ୱର କଥା କେବଳ ସେମାନଙ୍କ ପାଖରେ ନୁହେଁ, କିନ୍ତୁ ସଂସାରରେ କାହାରି ନିକଟରେ ଆଉ ଲୁକ୍କାୟିତ ରଖିବେ ନାହିଁ ଏବଂ ସେମାନଙ୍କୁ ନିଜ ନିଜର ତ୍ରୁଟି, ଅଭାବ ଓ ଅସାମର୍ଥ୍ୟତା ବୋଧ ହେବାରୁ ଏବିଷୟରେ ମଧ୍ୟ ବିନ୍ଦୁମାତ୍ର ସଂଶୟ ରହିଲା ନାହିଁ ଯେ, ପାପୀ-ତାପୀ ସମସ୍ତେ ଏବେଠାରୁ ସମଭାବରେ ତାଙ୍କର ଅଭୟପଦରେ ଆଶ୍ରୟ ଲାଭ କରିବେ । ସୁତରାଂ ଏହି ଅପୂର୍ବ ଘଟଣାରେ କେହି କଥା କହିବାକୁ ଅକ୍ଷମ ହୋଇ ମନ୍ତ୍ରମୁଗ୍ଧବତ୍ ତାଙ୍କୁ କେବଳ ନିରୀକ୍ଷଣ କରିବାକୁ ଲାଗିଲେ, କେହି ଗୃହମଧ୍ୟସ୍ଥ ସମସ୍ତଙ୍କୁ ଠାକୁରଙ୍କ କୃପାଲାଭରେ ଧନ୍ୟ ହେବା ନିମିତ୍ତ ଚିତ୍କାର କରି ଆହ୍ୱାନ କରିବାକୁ ଲାଗିଲେ, ପୁଣି କେହି କେହି ପୁଷ୍ପଚୟନପୂର୍ବକ ମନ୍ତ୍ର ଉଚ୍ଚାରଣ କରୁ କରୁ ଠାକୁରଙ୍କ ଅଙ୍ଗରେ ତାହା ନିକ୍ଷେପ କରି ତାଙ୍କୁ ପୂଜା କରିବାକୁ ଲାଗିଲେ । କିଛିକ୍ଷଣ ସେହିପରି ହେବାପରେ ଠାକୁରଙ୍କର ଭାବ ଶାନ୍ତ ହେବା ଦେଖି ଭକ୍ତଗଣ ମଧ୍ୟ ପୂର୍ବପରି ପ୍ରକୃତିସ୍ଥ ହେଲେ ଏବଂ ଆଜିର ଉଦ୍ୟାନ-ଭ୍ରମଣ ସେହି ଭାବରେ ପରିସମାପ୍ତ କରି ସେ ଗୃହ ମଧ୍ୟରେ ନିଜ କକ୍ଷରେ ଯାଇ ଉପବିଷ୍ଟ ହେଲେ ।

ରାମଚନ୍ଦ୍ରପ୍ରମୁଖ କୌଣସି କୌଣସି ଭକ୍ତ ଏହି ଘଟଣାକୁ ଠାକୁରଙ୍କ 'କଳ୍ପତରୁ' ହୋଇଥିବା କହିଛନ୍ତି । କିନ୍ତୁ ଆମମାନଙ୍କର ମନେହୁଏ, ଏହାକୁ ଠାକୁରଙ୍କର ଅଭୟ-ପ୍ରକାଶ ଅଥବା ଆତ୍ମପ୍ରକାଶପୂର୍ବକ ସମସ୍ତଙ୍କୁ ଅଭୟ-ପ୍ରଦାନ ବୋଲି ଅଭିହିତ କରିବା ହିଁ ଅଧିକତର ଯୁକ୍ତିଯୁକ୍ତ । କଥିତ ଅଛି, ଭଲ ବା ମନ୍ଦ ଯିଏ ଯାହା ପ୍ରାର୍ଥନା କରେ କଳ୍ପତରୁ ତାହା ହିଁ ତାହାଙ୍କୁ ପ୍ରଦାନ କରିଥାଆନ୍ତି । କିନ୍ତୁ ଠାକୁର ତ ସେପରି କରି ନାହାନ୍ତି, ନିଜ ଦେବ-ମାନବତ୍ୱର ଏବଂ ଜନସାଧାରଣଙ୍କୁ ନିର୍ବିଚାରରେ ଅଭୟ ଆଶ୍ରୟପ୍ରଦାନର ପରିଚୟ ହିଁ ସେହି ଘଟଣାରେ ସୁବ୍ୟକ୍ତ କରିଥିଲେ । ସେ ଯାହାହେଉ, ଯେଉଁ ସମସ୍ତ ବ୍ୟକ୍ତି ଆଜି ତାଙ୍କର କୃପାଲାଭରେ ଧନ୍ୟ

ହୋଇଥିଲେ ସେମାନଙ୍କ ଭିତରେ ହାରାଣଚନ୍ଦ୍ର ଦାସଙ୍କର ନାମ ବିଶେଷଭାବରେ ଉଲ୍ଲେଖଯୋଗ୍ୟ । କାରଣ, ହାରାଣ[୧] ପ୍ରଣାମ କରିବା ମାତ୍ରେ ଭାବାବିଷ୍ଟ ଠାକୁର ତାଙ୍କର ମସ୍ତକରେ ନିଜ ପାଦପଦ୍ମ ରଖିଥିଲେ । ଠାକୁର ସେପରି କୃପା କରିବା ଆମେ ଅଳ୍ପ ହିଁ ଦେଖିଛୁ । ଠାକୁରଙ୍କର ଭ୍ରାତୁଷ୍ପୁତ୍ର ଶ୍ରୀଯୁକ୍ତ ରାମଲାଲ ଚଟ୍ଟୋପାଧ୍ୟାୟ ସେହି ଦିନ ସେହି ସ୍ଥାନରେ ଉପସ୍ଥିତ ଥିଲେ ଏବଂ ତାଙ୍କ କୃପାଲାଭରେ ଧନ୍ୟ ହୋଇଥିଲେ । ପଚାରିବାରୁ ସେ ଆମକୁ କହିଥିଲେ, ''ଏହାପୂର୍ବରୁ ଇଷ୍ଟମୂର୍ତ୍ତି ଧ୍ୟାନ କରିବାକୁ ବସି ତାଙ୍କର ଶ୍ରୀଅଙ୍ଗର କିଛିଅଂଶ କେବଳ ମାନସ ନୟନରେ ଦେଖିବାକୁ ପାଉଥିଲି, ଯେତେବେଳେ ପାଦପଦ୍ମ ଦେଖୁଛି ସେତେବେଳେ ମୁହଁ ଦେଖିପାରେ ନାହିଁ, ପୁଣି ମୁହଁରୁ କଟିଦେଶ ପର୍ଯ୍ୟନ୍ତ ହିଁ ହୁଏ ତ ଦେଖିବାକୁ ପାଏ, ଶ୍ରୀଚରଣ ଦେଖିପାରି ନ ଥାଏ, ସେହିପରି ଯାହା ଦେଖୁଥିଲି ତାହା ସଜୀବ ବୋଲି ମଧ୍ୟ ମନେ ହେଉ ନ ଥିଲା । କିନ୍ତୁ ଆଜି ଠାକୁର ସ୍ପର୍ଶ କରିବାମାତ୍ରେ ସର୍ବାଙ୍ଗସମ୍ପୂର୍ଣ୍ଣ ଇଷ୍ଟମୂର୍ତ୍ତି ହୃଦୟପଦ୍ମରେ ସହସା ଆବିର୍ଭୂତ ହୋଇ ଜୀବନ୍ତ ଓ ଜ୍ୟୋତିର୍ମୟ ଦର୍ଶନ ହେଲା ।''

ଆଜିକାରଘଟଣାସ୍ଥଳରେଯେଉଁମାନେସେଠାରେଉପସ୍ଥିତଥିଲେସେମାନଙ୍କ ମଧ୍ୟରୁ ଆଠ-ଦଶଜଣଙ୍କର ନାମ ହିଁ ଆମର ମନେଅଛି, ଯଥା — ଗିରିଶ, ଅତୁଲ, ରାମ, ନବଗୋପାଳ, ହରମୋହନ, ବୈକୁଣ୍ଠ, କିଶୋରୀ (ରାୟ), ହାରାଣ, ରାମଲାଲ ଏବଂ ଅକ୍ଷୟ । 'କଥାମୃତ'-ଲେଖକ ମହେନ୍ଦ୍ରନାଥ ମଧ୍ୟ ବୋଧହୁଏ ଥିଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଠାକୁରଙ୍କର ସନ୍ନ୍ୟାସୀ ଭକ୍ତଗଣଙ୍କ ମଧ୍ୟରୁ ଜଣେ ହେଲେ ସେହି ଦିନ ଘଟଣାସ୍ଥଳରେ ଉପସ୍ଥିତ ନ ଥିଲେ । ନରେନ୍ଦ୍ରନାଥପ୍ରମୁଖ ଅନେକେ ଠାକୁରଙ୍କ ସେବା ଇତ୍ୟାଦି କାରଣରୁ ଏବଂ ପୂର୍ବ ରାତ୍ରିରେ ଅଧିକ ସମୟ ସାଧନ-ଭଜନରେ ନିଯୁକ୍ତ ଥିବାରୁ କ୍ଳାନ୍ତ ହୋଇ ଘର ମଧ୍ୟରେ ନିଦ୍ରିତ ଥିଲେ । ଲାଟୁ ଓ ଶରତ ଜାଗ୍ରତ ଥିଲେ ଏବଂ ଠାକୁରଙ୍କ ଘରର ଦକ୍ଷିଣରେ ଅବସ୍ଥିତ ଦୁଇତାଲା ଛାତରୁ ସେହି ଘଟଣା ଦେଖିପାରିଥିଲେ ମଧ୍ୟ ସ୍ୱେଚ୍ଛାରେ ଘଟଣାସ୍ଥଳକୁ ଯାଇ ନ ଥିଲେ । କାରଣ, ଠାକୁର ଉଦ୍ୟାନରେ ପଦଚାରଣ କରିବା ପାଇଁ ତଳକୁ ଓହ୍ଲାଇବା କ୍ଷଣି ସେହି ସୁଯୋଗରେ ସେମାନେ ସମୟ ପାଇଥିବାରୁ ଠାକୁରଙ୍କର ଶଯ୍ୟାଦି ଖରାରେ ପକାଇ ଘର ପରିଷ୍କାର କରୁଥିଲେ ଏବଂ କର୍ତ୍ତବ୍ୟ କାର୍ଯ୍ୟ ଅର୍ଦ୍ଧନିଷ୍ପନ୍ନ କରି ଚାଲିଗଲେ ଠାକୁରଙ୍କର ଅସୁବିଧା ହୋଇପାରେ ଭାବି ଘଟଣା ସ୍ଥଳକୁ ଯାଇ ନ ଥିଲେ ।

---

୧. ବେଲିଆଘାଟାନିବାସୀ ହାରାଣଚନ୍ଦ୍ର କଲିକତାର ଫିନ୍‌ଲେ ମିଓର କମ୍ପାନୀ ଅଫିସରେ କାମ କରୁଥିଲେ । ଠାକୁରଙ୍କ କୃପା ସ୍ମରଣାର୍ଥେ ସେ ଇଦାନୀଂ ପ୍ରତି ବର୍ଷ ମହୋତ୍ସବ କରୁଥିଲେ ।

ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରେ ଆହୁରି ଅନେକଙ୍କୁ ଆମେ ସେଦିନର ଅନୁଭବର କଥା ପଚାରିଥିଲୁ । ସେମାନଙ୍କ ମଧ୍ୟରୁ ବୈକୁଣ୍ଠନାଥ ଆମକୁ ଯାହା କହିଥିଲେ ତାହା ଲିପିବଦ୍ଧ କରି ଆମେ ଏବିଷୟର ଉପସଂହାର କରିବୁ । ବୈକୁଣ୍ଠନାଥ ଆମମାନଙ୍କର ସମସାମୟିକ କାଳରେ ଠାକୁରଙ୍କର ପୁଣ୍ୟ-ଦର୍ଶନ ଲାଭ କରିଥିଲେ । ସେଦିନରୁ ଠାକୁର ତାଙ୍କୁ ଉପଦେଶାଦି ପ୍ରଦାନପୂର୍ବକ ଯେଉଁ ଭାବରେ ଗଢ଼ି ତୋଳୁଥିଲେ ସେବିଷୟରେ କିଛି କିଛି ତଥ୍ୟ ଆମେ 'ଲୀଳାପ୍ରସଙ୍ଗ'ରେ ସ୍ଥାନେ ସ୍ଥାନେ ପାଠକଙ୍କୁ କହିଛୁ । ମନ୍ତ୍ରଦୀକ୍ଷାପ୍ରଦାନରେ ଠାକୁର ବୈକୁଣ୍ଠନାଥଙ୍କ ଜୀବନ ଧନ୍ୟ କରିଥିଲେ । ସେହି ଦିନରୁ ସେ ସାଧନ-ଭଜନରେ ନିଯୁକ୍ତ ରହି ଯେଉଁଥିରେ ଇଷ୍ଟଦେବଙ୍କର ଦର୍ଶନଲାଭ ହୁଏ, ସେବିଷୟରେ ଯଥାସାଧ୍ୟ ଚେଷ୍ଟା କରୁଥିଲେ । ଠାକୁରଙ୍କର କୃପା ବ୍ୟତୀତ ଏବିଷୟରେ ସଫଳତା ଲାଭ କରିବା ଅସମ୍ଭବ ଜାଣି ସେ ତାଙ୍କ ନିକଟରେ ବେଳେ ବେଳେ କାତର ପ୍ରାର୍ଥନା କରୁଥିଲେ । ମାତ୍ର ଏପରି ସମୟରେ ଠାକୁରଙ୍କ ଶାରୀରିକ ବ୍ୟାଧି ହେବାରୁ ଚିକିତ୍ସା ପାଇଁ କଲିକତା ଆସିବା ଏବଂ ପରେ କାଶୀପୁର ଯିବା ପରି ଘଟଣା ଘଟିଥିଲା । ଏହି ସମୟରେ ମଧ୍ୟ ବୈକୁଣ୍ଠନାଥ ସମୟ କରି ଦୁଇ-ତିନିଥର ଠାକୁରଙ୍କୁ ନିଜର ମନୋଗତ ବାସନା ନିବେଦନ କରିଥିଲେ । ଠାକୁର ସେଥିରେ ପ୍ରସନ୍ନ ହାସ୍ୟରେ ତାଙ୍କୁ ଶାନ୍ତ କରି କହିଥିଲେ, ''ଟିକିଏ ଅପେକ୍ଷା କର, ମୋର ଦେହଟା ଭଲ ହେଉ, ତା' ପରେ ତୋର ସବୁ କରିଦେବି ।''

ଆଜିର ଘଟଣାସ୍ଥଳରେ ବୈକୁଣ୍ଠନାଥ ଉପସ୍ଥିତ ଥିଲେ । ଠାକୁର ଭକ୍ତମାନଙ୍କ ମଧ୍ୟରୁ ଦୁଇ-ତିନି ଜଣଙ୍କୁ ଦିବ୍ୟଶକ୍ତିପୂତ ସ୍ପର୍ଶରେ କୃତାର୍ଥ କରିବା ମାତ୍ରେ ସେ ତାଙ୍କ ସମ୍ମୁଖୀନ ହୋଇ ତାଙ୍କୁ ଭକ୍ତି ସହକାରେ ପ୍ରଣାମପୂର୍ବକ କହିଲେ, ''ମହାଶୟ, ମୋତେ କୃପା କରନ୍ତୁ ।'' ଠାକୁର କହିଲେ, ''ତୋର ତ ସବୁ ହୋଇଯାଇଛି ।'' ବୈକୁଣ୍ଠ କହିଲେ, ''ଆପଣ ଯେତେବେଳେ କହୁଛନ୍ତି ହୋଇଯାଇଛି ତାହେଲେ ନିଶ୍ଚୟ ହୋଇଛି, କିନ୍ତୁ ମୁଁ ଯେପରି ତାହା ଅଳ୍ପବହୁତ ବୁଝିପାରିବି ତାହା କରି ଦିଅନ୍ତୁ ।'' ଠାକୁର ସେଥିରେ 'ଆଚ୍ଛା' କହି କ୍ଷଣକ ପାଇଁ ସାମାନ୍ୟ ଭାବରେ ମୋର ବକ୍ଷଃସ୍ଥଳ ସ୍ପର୍ଶ ମାତ୍ର କଲେ । ଏହାର ପ୍ରଭାବରେ ମୋର ଅନ୍ତରରେ ଅପୂର୍ବ ଭାବାନ୍ତର ଉପସ୍ଥିତ ହେଲା । ଆକାଶ, ଘର, ଗଛଲତା, ମନୁଷ୍ୟ ଇତ୍ୟାଦି ଯେଉଁ ଦିଗରେ ଯାହା କିଛି ଦେଖିବାକୁ ଲାଗିଲି ତାହାରି ଭିତରେ ଠାକୁରଙ୍କ ପ୍ରସନ୍ନ ହାସ୍ୟଦୀପ୍ତ ମୂର୍ତ୍ତି ଦେଖିବାକୁ ଲାଗିଲି । ପ୍ରବଳ ଆନନ୍ଦରେ ଏକାବେଳକେ ଉଲ୍ଲସିତ ହୋଇଉଠିଲି ଏବଂ ସେହି ସମୟରେ ତୁମମାନଙ୍କୁ ଛାତ ଉପରେ ଦେଖିପାରି 'କିଏ କେଉଁଠି ଅଛ ଶୀଘ୍ର ଚାଲିଆସ' ବୋଲି ଚିତ୍କାର କରି ଡାକିବାକୁ ଲାଗିଲି । କେତେଦିନ ପର୍ଯ୍ୟନ୍ତ ମୋର ଏପରି ଭାବ ଓ ଦର୍ଶନ ଜାଗ୍ରତକାଳରେ ସର୍ବକ୍ଷଣ ରହିଲା । ସମସ୍ତ ପଦାର୍ଥଭିତରେ ଠାକୁରଙ୍କର ପୁଣ୍ୟଦର୍ଶନ ଲାଭରେ ସ୍ତମ୍ଭିତ ଓ ମୁଗ୍ଧ

ହେବାକୁ ଲାଗିଲି । ଅଫିସ୍‌ରେ ବା ଅନ୍ୟ କାମ ପାଇଁ ଯେଉଁଠାକୁ ଗଲି ସବୁଠି ଏପରି ହେବାକୁ ଲାଗିଲା । ଏଥିରେ ଉପସ୍ଥିତ କର୍ମରେ ମନୋନିବେଶ କରି ନ ପାରିବାରୁ କ୍ଷତି ହେବାକୁ ଲାଗିଲା ଏବଂ କର୍ମରେ କ୍ଷତି ହେଉଛି ଦେଖି ଉକ୍ତ ଦର୍ଶନକୁ କିଛିକାଳ ବନ୍ଦ କରିବାକୁ ଚେଷ୍ଟା କରି ମଧ ତାହା କରିପାରିଲି ନାହିଁ । ଅର୍ଜୁନ ଭଗବାନଙ୍କର ବିଶ୍ୱରୂପ ଦେଖି ଭୟଭୀତ ହୋଇ କାହିଁକି ଏହାକୁ ସଂହାର ନିମିତ୍ତ ତାଙ୍କ ନିକଟରେ ପ୍ରାର୍ଥନା କରିଥିଲେ ତାର କିଞ୍ଚିତ୍ ଆଭାସ ହୃଦୟଙ୍ଗମ ହେଲା । ମୁକ୍ତ ପୁରୁଷମାନେ ସର୍ବଦା ଏକରସ ହୋଇଥାଆନ୍ତି ଇତ୍ୟାଦି ଶାସ୍ତ୍ରବାକ୍ୟ ସ୍ମରଣ ହେବାରୁ କିଛିଟା ନିର୍ବାସନା ହେଲେ ମନ ଉକ୍ତ ଏକରସ ଅବସ୍ଥାରେ ରହିବାର ସାମର୍ଥ୍ୟ ଲାଭ କରେ ତାହାର କିଞ୍ଚିତ୍ ଆଭାସ ମଧ ଏଘଟଣାରେ ବୁଝିପାରିଲି । କାରଣ, କିଛିଦିନ ଏପରି ଗଲାପରେ ସେଭଳି ଗୋଟିଏ ଭାବରେ ହିଁ ଦର୍ଶନ ଓ ଚିନ୍ତାପ୍ରବାହ ନେଇ ରହିବା କଷ୍ଟକର ବୋଧ ହେଲା । ବେଳେ ବେଳେ ମନେ ହେବାକୁ ଲାଗିଲା, ପାଗଳ ହୋଇଯିବି ନା କ'ଣ ? ସେତେବେଳେ ଠାକୁରଙ୍କ ନିକଟରେ ଭୟରେ ପ୍ରାର୍ଥନା କରିବାକୁ ଲାଗିଲି, 'ପ୍ରଭୁ, ମୁଁ ଏହି ଭାବଧାରଣରେ ସକ୍ଷମ ହୋଇପାରୁ ନାହିଁ, ଯେଉଁଥିରେ ଏହାର ଉପଶମ ହେବ ତାହା କରିଦିଅନ୍ତୁ ।' ହାୟ, ମାନବର ଦୁର୍ବଳତା ଓ ବୁଦ୍ଧିହୀନତା ! ଏବେ ଭାବେ କାହିଁକି ସେପରି ପ୍ରାର୍ଥନା କଲି — କାହିଁକି ତାଙ୍କ ଉପରେ ବିଶ୍ୱାସ ସ୍ଥିର ରଖି ସେହି ଭାବର ଚରମ ପରିଣତି ଦେଖିବା ପାଇଁ ଧୈର୍ଯ୍ୟଧାରଣ କଲି ନାହିଁ ? — ହୁଏତ ଉନ୍ମାଦ ହୋଇଥାଆନ୍ତି, ଅଥବା ଦେହର ପତନ ହୋଇଥାଆନ୍ତା । କିନ୍ତୁ ସେହିପରି ପ୍ରାର୍ଥନା କରିବା ପରେ ଉକ୍ତ ଦର୍ଶନ ଓ ଭାବର ସହସା ଦିନେ ବିରାମ ହୋଇଗଲା । ମୋର ଦୃଢ଼ ଧାରଣା, ଯାହାଙ୍କଠାରୁ ସେହି ଭାବ ପ୍ରାପ୍ତ ହୋଇଥିଲି ତାହାଙ୍କ ଦ୍ୱାରା ହିଁ ତାହା ଶାନ୍ତ ହେଲା । ତେବେ ସେହି ଦର୍ଶନର ଏକାନ୍ତ ବିଲୋପ ହେବା ପାଇଁ ପ୍ରାର୍ଥନା ମୋ ମନରେ କେବେ ଉଦିତ ହୋଇ ନ ଥିଲା ବୋଲି ବୋଧହୁଏ ସେ କୃପାକରି ତାହାର ସାମାନ୍ୟ ଟିକିଏ ଅବଶେଷ ମାତ୍ର ରଖିଥିଲେ । ଫଳରେ ଦିନ ମଧରେ ଯେତେବେଳେ ସେତେବେଳେ କେତେଥର ତାଙ୍କର ସେହି ଦିବ୍ୟଭାବୋଦ୍ଦୀପ୍ତ ପ୍ରସନ୍ନ ମୂର୍ତ୍ତିର ଅହେତୁକ ଦର୍ଶନଲାଭରେ ଆନନ୍ଦରେ ସ୍ତମ୍ଭିତ ଓ କୃତକୃତାର୍ଥ ହେଉଥିଲି ।''

---

ଧର୍ମର ବ୍ୟାବହାରିକ ପ୍ରୟୋଗ ହିଁ ଶ୍ରୀରାମକୃଷ୍ଣଙ୍କର ଜୀବନବୃତ୍ତାନ୍ତ । ତାଙ୍କର ଜୀବନ ଆମମାନଙ୍କୁ ଭଗବାନଙ୍କ ସାକ୍ଷାତ୍କାର ପାଇଁ ସମର୍ଥ କରାଏ ।

—ମହାତ୍ମା ଗାନ୍ଧୀ

ଶ୍ରୀରାମକୃଷ୍ଣଙ୍କର ସର୍ବଧର୍ମ ସମନ୍ୱୟର ଆଦର୍ଶ ହିଁ କେବଳ ମାନବ ଜାତିକୁ ଗୋଟିଏ ପରିବାରର ମର୍ଯ୍ୟାଦା ଦେଇପାରେ । ଏହି ପାରମାଣବିକ ଯୁଗରେ ଅବଶ୍ୟମ୍ଭାବୀ ଧ୍ୱଂସର ହାତରୁ ପରିତ୍ରାଣ ପାଇଁ ଆମମାନଙ୍କର ଏହା ହିଁ ଏକମାତ୍ର ଉପାୟ ।

—ଆର୍ନଲ୍ଡ ଜେ. ଟୟେନ୍‌ବୀ




RAMAKRISHNA MATH
BHUBANESWAR - 2




SRI RAMAKRISHNA
LILAPRASANGA (Vol. - II)

114811

Subsidized Price
(Per Set) : ₹. 100.00

ISBN 81-936053-3-0 (Set)
ISBN 81-936053-2-2 (Vol. - II)